# ଆମେରିକାରୁ

## ଇଉରୋପ

## ଆଫ୍ରିକା

---

ଅଧ୍ୟାପକ ଡକ୍ଟର **କୁଞ୍ଜବିହାରୀ ଦାଶ** ଏମ୍. ଏ. ପିଏଚ୍. ଡି.

# ଅମେରିକାରୁ
# ଇଉରୋପ
# ଆଫ୍ରିକା

ଲେଖକ :
ଡକ୍ଟର କୁଞ୍ଜବିହାରୀ ଦାଶ ଏମ୍. ଏ. ପିଏଚ୍. ଡି.

ପ୍ରକାଶିକା :
ଶ୍ରୀମତୀ ପ୍ରେମଲତା ଦାଶ

ପ୍ରଥମ ପ୍ରକାଶ :
ଶ୍ରୀପଞ୍ଚମୀ, ଫେବୃୟାରୀ ୭ମ ତାରିଖ
୧୯୭୮

ପ୍ରଚ୍ଛଦ :
ଅସିତ୍ ମୁଖର୍ଜୀ

ମୁଦ୍ରାକର :
ସତ୍ୟରେଖା ପ୍ରିଣ୍ଟର୍ସ
କଟକ—୧

ମୂଲ୍ୟ :
କୋଡ଼ିଏ ଟଙ୍କା

ସ୍ନେହର ଉଦ,                                                    ଶ୍ରୀପଞ୍ଚମୀ
ସ୍ନେହର ଇଭା,                                                    କଟକ
                                                          ତା ୩. ୨. ୬୮

ଏକା ପରିବାରର ହେଲେ ବି ଅବସ୍ଥାଚକ୍ରରେ ତୁମେ ଦୁ'ଜଣ ଆମେରିକାନ୍, ମୁଁ ଭାରତୀୟ—ଏଇ ସୁଦୂର ବିଚ୍ଛେଦ ଆମମାନଙ୍କୁ ବହୁତ ପାଖକୁ ଟାଣି ଆଣିଛି—ମିଳାଇଛି ସ୍ନେହୋଚ୍ଛଳ, ସୁନ୍ଦରତମ ଗୋଟିଏ ବନ୍ଧୁତ୍ୱରେ—'ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।'

ଗାଉଁଲି ଭାଇନାଙ୍କୁ ଆଧୁନିକ କରିବାରେ ତୁମମାନଙ୍କ ଚେଷ୍ଟାର ଅନ୍ତ ନାହିଁ; ଅକାତରରେ ଖର୍ଚ୍ଚ କରି ଯାଇଛ, ଆମେରିକାରେ ଯାହା କିଛି ସୁନ୍ଦର, ଦେଖାଇବା ଲାଗି ଡ୍ରାଇଭ୍ କରି ନେଇଛ ଦୁର୍ଗମ ଗିରି ଉପତ୍ୟକା ଅରଣ୍ୟ କାନ୍ତାରେ । ମନରେ ମୋର ଯାହା କିଛି ଐଶ୍ୱର୍ଯ୍ୟ ଥିଲା, ତାକୁ ଗୋଟେଇପୋଟେଇ ଠୁଳ କରିଛି ଏଇ କାହାଣୀରେ—ନିଅ ମୋର ସେଇ ସ୍ନେହୋପହାର ।

ଭାଇନା



ସାନ ଭାଇ ଉଦୟନାଥ, ଭାଇବୋହୂ ଇରା ଓ ପିଲାମାନେ

ପଟେ ... ...

ଊକ, ଟେଗେକ, ଆଲ୍ପସ୍‌ର ଭୂଲପାଶ ନ ଥିଲ ମୋ ପ୍ରଦେଶର ପ୍ରିୟ ପର୍ବତମାଳା—ମହେନ୍ଦ୍ର, ମେଘାସନ, ମାଲ୍ୟଗିଶ; ସାଲୁର୍, କଳଙ୍ଗା ଘାଟି; ନାଏଗ୍ରା ଓ ଘାଇନ୍ ନଦୀର ପ୍ରପାତ ଦେଖି ସ୍ମରଣ କରିଥିଲ ଡୁଡୁମା, ବାଗ୍ରା, ପ୍ରଧାନପାଟ, ଖଣ୍ଡାଧାର; ଏକ୍ଲୀଷ୍ଟୋନ୍, ଲେକ୍ ଜେନେଭା ଦେଖି ମନେ ପଡ଼ିଥିଲା ଚିଲିକା, ଅଂଶୁପା; 'ଓଲ୍ଡ ଫେଥ୍‌ଫୁଲ' ସ୍ମରଣ କରାଇ ଥିଲ ଅତ୍ରିକେଶ୍ୱରକୁ; ଲୋହିତ ପାରଶ୍ୟ ଦେଖି ଆଖି ଆଗରେ ନାଚିଉଠିଥିଲେ ସାନ୍ତାଳ, କୋହ୍ଲ ଆଦି ଆଦିବାସୀ; ଉତ୍ତିମସ୍ତ ରୋମ୍ ଦେଖି ମନେ ପଡ଼ିଥିଲ ମନ୍ଦିରନଗର ଭୁବନେଶ୍ୱର; ପାଇନ୍‌ବନର ମର୍ମର ଶୁଣୁ ଶୁଣୁ ଧାଇଁ ଯାଇଥିଲ ପୁରୀରୁ କୋଣାର୍କ ପର୍ଯ୍ୟନ୍ତ ବିସ୍ତୃତ ଝାଉଁ ଅରଣ୍ୟକୁ; ଓକ୍, ସିକାମୋର୍ ଦେଖି ଶାଳ ପିଆଶାଳ ଜଙ୍ଗଲକୁ । ସତେ ମୋ ଓଡ଼ିଶା ଟି ଗୋଟିଏ ସଂକ୍ଷିପ୍ତ ପୃଥିବୀ—

କେଡ଼େ ସୁନ୍ଦର ! —ମହାବିନାୟକ ଶୈଳ, ସୋଲର, ଭାଲେଶ, ରମ୍ଭାନାସି, ବୁଦ୍ଧଖୋଲ, ଧାମରାର ନଦୀ ସମୁଦ୍ର ସଙ୍ଗମ, ମହୋଦଧିର ବାଲୁକାମୟ ବେଳାଭୂମି, ଧବଳେଶ୍ୱର, ସିଦ୍ଧନାଥ, ପାରିକୁଦ ଦ୍ୱୀପ, ବହୁଳକୃଷ୍ଣିଆ ନାରିକେଳ ନିକୁଞ୍ଜ । ମନରେ ଆସି-ଥିଲା କ୍ଷୋଭ—ପ୍ରକୃତି ସହିତ ମନୁଷ୍ୟର ଆତ୍ମିକ ଯୋଗ ଏଠି ନାହିଁ; ଚିଲିକାରେ ଗୋଟିଏ ହେଲେ 'ଶିକାରା'; ହୀରାକୁଦ ବା ଧାମରାରେ ଗୋଟିଏ ହେଲେ ମଟରବୋଟ୍; ରସୁଲ୍‌କୁଣ୍ଡା ଘାଇରେ ହୋଇ ନାହିଁ ରଙ୍ଗୀନ୍ ବିଦ୍ୟୁତ ଜଳୋତ୍ସବ ବା ଓ୍ୱାଟର୍ ସ୍କିଙ୍ଗ୍‌ର ବ୍ୟବସ୍ଥା; ଗଢ଼ା ହୋଇନାହିଁ ନଗରେ ନଗରେ

ଶିଳ୍ପ, କଳା, ସ୍ଥାପତ୍ୟ, ଜୀବଜନ୍ତୁ ସରୀସୃପର ନବ ନବ ଯାଦୁଘର, ଆକ୍ୱେରିଅମ୍ ବା ପ୍ଲାନେଟୋରିଅମ୍; ଆର୍ଟ ଗ୍ୟାଲେରି, ଫଟୋ ବା ଫଟୋଚିତ୍ରର ନିକେତନ, କବି, ନେତା, ବୈଜ୍ଞାନିକଙ୍କ ସ୍ମୃତିମନ୍ଦିର, ଲୋକସାହିତ୍ୟ, ଲୋକଶିଳ୍ପର ଭଣ୍ଡାର; ଅସ୍ତମିତ ରାଜା, ସାମନ୍ତଙ୍କ ପ୍ରାସାଦର ଅପୂର୍ବ ଶିଳ୍ପସମ୍ଭାର, ପାଣ୍ଡୁଲିପି ଆମେ ସଂଗ୍ରହ କରି ରଖି ପାରି ନାହୁଁ ଗୋଟିଏ ଯାଦୁଘରେ; ବୈଜ୍ଞାନିକ ବ୍ୟବସ୍ଥା ଅଭାବରୁ ପ୍ରକୃତି ରହିଛି ମୃତ ପରି ନିର୍ଜନ, ଚରମ୍ପରା ବିସ୍ମୃତ ପରି ମଳିନ; ବ୍ୟବସାୟ ବୁଦ୍ଧି ବା ପୁଞ୍ଜି ଅଭାବରୁ ଆମେ ଅତୀତକୁ ଜୀବନ୍ତ ରଖି ପାରିନାହୁଁ । କେବେ ମୋ ଦେଶ ଗଢ଼ା ହେବ ଇଉରୋପ, ଆମେରିକା ଭଳି ? କେବେ ସେସବୁ ଦେଶ ପରି ଅର୍ଜନ କରି ପାରିବ ପ୍ରଚୁର ବୈଦେଶିକ ମୁଦ୍ରା ?

ଅଳ୍ପ ସମୟ ମଧ୍ୟରେ ବିପୁଳ ବିସ୍ତୃତ ଭୂମି ପରିକ୍ରମା କରିଛି—କିଛି ନିରେଖି ଦେଖିବାକୁ ବେଳ ପାଇନାହିଁ, ଆଖି ବୁଲାଇ ଆଣିଛି ମାତ୍ର—ଅଙ୍କନ କରିଛି ଯତ୍‌ସାମାନ୍ୟ ସ୍ଥୂଳ ଛବି—କିଛି ପୂର୍ଣ୍ଣାଙ୍ଗ ନୁହେଁ, ମୁହୂର୍ତ୍ତେ ଧରା ଦେଇ ସବୁ କିଛି ଦୃଷ୍ଟିରୁ ଅପସରି ଯାଇଛନ୍ତି—ପଳାତକ ଭାବରାଶିକୁ ଧରି ରଖିବାକୁ ଚେଷ୍ଟା କରିଛି ଲେଖଣୀ ମୁନରେ—ଟ୍ରେନ୍‌ରେ, ବସ୍‌ରେ, କେତେ ବା ଜେଟ୍‌ରେ; ସଦ୍ୟ, ପ୍ରତ୍ୟକ୍ଷ ସବୁ; ସ୍ମୃତିରୁ ପ୍ରାୟ କିଛି ଲେଖି ନାହିଁ ।

ମୋ ଭ୍ରମଣରେ ପ୍ରାୟ ୩୦ ହଜାର ଟଙ୍କା ଖର୍ଚ୍ଚ ହୋଇଛି—ଏତିକରେ ଗୋଟିଏ ହାଇସ୍କୁଲ ଗଢ଼ା ଯାଇ ପାରିଥାନ୍ତା; ଯଦି କେତୋଟି ମନ ଗଢ଼ି ପାରେ, ଦେଶକୁ ସୁନ୍ଦରତର କରିବାରେ କିଞ୍ଚିତ୍ ସାହାଯ୍ୟ କରି ପାରେ, ଏଇ ମୋର ବାରବୁଲା କାହାଣୀ, ତେବେ ଶ୍ରମ ଓ ବ୍ୟୟ ସାର୍ଥକ ହେବ ।

ଲେଖକ

'ଏୟାର୍ ଫ୍ରାନ୍ସ'ର ଗୋଟିଏ ଜେଟ୍‌ରେ ଆଜ ଉଡ଼ିଯିବା କଥା । କଲିକତାର ଜଣେ ବନ୍ଧୁ କାର୍ ଧେଇ ଉପସ୍ଥିତ, 'ଦମ୍‌ଦମ୍'ରେ ଛାଡ଼ିଦେବେ । 'ଆଗତ ପାଞ୍ଚ ସବୁ କଞ୍ଚା ।' ; କିନ୍ତୁ ପାଞ୍ଚ କଣ ମନା ମାନେ ? ଭାବୁଥିଲି—ଲୋକେ ଯେତେବେଳେ ରଜଦୋଳିରେ ବସିଥିବେ, ନଈବାଲିରେ ଡୁଡୁ ଖେଳୁଥିବେ, ରଜ ମୁଢ଼ି ଚୋବାଉଥିବେ, ମୁଁ ବସିଥିବି ଉଡ଼ାଜାହାଜରେ । ଏ ବର୍ଷର ରଜ କଟିବ ଆକାଶରେ—ଏକ ବୃହତ ଦୋଳିରେ, ଯାହାର ଅଗ୍ରଗତି ଅଛି, ପଶ୍ଚାତ୍ ଅପସରଣ ନାହିଁ ।

କଲିକତାରୁ ଟେହେରାନ୍, କାଏରୋ, ଏଥେନ୍ସ, ପ୍ୟାରିସ୍, ଲଣ୍ଡନ, ଶିକାଗୋ, ବ୍ଲୁମିଂଟନ—ଏଇ ମୋର ଯାତ୍ରାପଥ ; ଯାତ୍ରା ସମ୍ବାଦ ପ୍ରକାଶିତ ହୋଇଛି ଖବର କାଗଜରେ । ସ୍ତ୍ରୀ ଓ ପିଲାମାନେ ଆସିଛନ୍ତି କଟକରୁ କଲିକତା, ମନର ପାଥେୟ ପରିପୂର୍ଣ୍ଣ କରିଦେବା ଲାଗି ସ୍ନେହ ଶ୍ରଦ୍ଧାରେ, ବିଦାୟବେଳେ । ବନ୍ଧୁମାନେ ଦେବାଲାଗି ପ୍ରସ୍ତୁତ ଏକ ଆନନ୍ଦୀ-ବିଦାୟ, ପଛକୁ ଫେରି ଚାହିଁବା ଲାଗି ଯାହା ମନକୁ ପ୍ରେରଣା ଦେବ, ନିର୍ଜନ ମୁହୂର୍ତ୍ତରେ ସ୍ମରଣ କରାଇବ ।

ପାସ୍‌ପୋର୍ଟ, ଭିସା, ହେଲ୍‌ଥ ସାର୍ଟିଫିକେଟ୍ ମୋର ପକେଟରେ; ଇଉନିଭର୍ସିଟି ଗ୍ରାଣ୍ଟସ୍ କମିସନ ଓ ଓଡ଼ିଶା ସାଂସ୍କୃତିକ ବିଭାଗ ମୋର

ଯାତାୟାତ ବ୍ୟୟ ବହନ କରିଛନ୍ତି ଅଧା ଅଧା । ଭାରତୀୟ ମୁଦ୍ରାର ମୂଲ୍ୟାୟନ ଯୋଗୁଁ ପ୍ରାୟ ଦୋହରି ଭଡ଼ା ଦେବାକୁ ହୋଇଛି—୯୭୨୬ ଟଙ୍କା । କଲିକତାର ବ୍ୟବସାୟୀ ପ୍ରତିଷ୍ଠାନ 'ଟ୍ରେଭ୍ଲ୍ ଜଲିଙ୍ଗସ୍' ମୋର ଯାତ୍ରା ଏଜେଣ୍ଟ । ଅଫିସରେ ଧାରଣା ଦେଇ ବସିଛି ପ୍ରାୟ ଦଶଟା ବେଳୁ । ପ୍ରାୟ ତିନଟା ବେଳେ ରିଜର୍ଭବ୍ୟାଙ୍କରୁ ଆଦେଶ ଆସିଲା ଦରଖାସ୍ତ ନାମଞ୍ଜୁର । ପାଦତଳ ଭୂଇଁ ଦୁଲୁକିଲା । ଆକାଶଟା ମୁଣ୍ଡରେ ସତେ କି ଛିଡ଼ି ପଡ଼ିଲା ।

ଦୁର୍ଭାଗ୍ୟ ଓ ବିପଦ ଏକା ପ୍ରକାରର; ତେବେ ଦୁର୍ଭାଗ୍ୟଟିର ବିଶେଷତ୍ୱ ଯେ ଏହା ଅତି ଅପ୍ରତ୍ୟାଶିତ ଭାବରେ ଆସେ, ସ୍ୱପ୍ନର ରଙ୍ଗୀନ୍ ଫୁଆରାକୁ ବିପର୍ଯ୍ୟସ୍ତ କରିଦିଏ ହଠାତ୍ । କଟକ ଫେରି କିପରି ବନ୍ଧୁମାନଙ୍କୁ ମୁହଁ ଦେଖାଇବି ? ଶତ୍ରୁଙ୍କୁ ମଉକା ମିଳିଯିବ ନାନା ଅପପ୍ରଚାରର ଲାଗି ।

ମନେ ପଡ଼ିଲା ସେଇ ପୁରୁଣା ବନ୍ଧୁ କଥା—ଶ୍ୱାସ ! ସେ ଏବେ ମୋର ଉପକାରରେ ଆସିବ । କହିବି—ଆଗେ ଜୀବନ, ପରେ ଯାତ୍ରା । ଭୟଙ୍କର ଶ୍ୱାସ ହେବାରୁ ଉଡ଼ାଜାହାଜ ଷ୍ଟେସନରୁ ଫେରିଆସିଲି—ଯୋଗ ନାହିଁ, ଭାଗ୍ୟ ମନ୍ଦ । ଶତ୍ରୁ ହୁଏତ ବିଶ୍ୱାସ କରିବେ, ବନ୍ଧୁ ଦୁଃଖିତ ହେବେ ।

ଗତ ବହୁମାସର ଶ୍ରମ ବୃଥା । ଗୋଟିଏ ଧାଡ଼ି ପଢ଼ିନାହିଁ, କିନ୍ତୁ ଲେଖିଛି, ସେ କେବଳ ପତ୍ର, ସ୍ୱଦେଶ ବିଦେଶକୁ, କେତେକ ବୃଥାକ୍ଷେପ, କେତେକ ଲକ୍ଷ୍ୟସିଦ୍ଧି ଲାଗି । ଅଫସର୍ ମୋତେ ବୁଝାଇଛନ୍ତି—ପାଠକ ଉଦ୍ୟମ ବ୍ୟର୍ଥ । ନିଜେ ଦଉଡ଼ଧାପଡ଼ ନ କଲେ କିଛି ଫଳ ହୁଏନାହିଁ ।

୧୮୬୬ର ପୁନରାବୃତ୍ତି ହେବାକୁ ଯାଉଛି; ମରୁଡ଼ି; ଅଭାବ ଅନାଟନ ଲାଗି ଲଢୁଛି । ପେଟ ଲାଗି ନାନା ଅପକର୍ମ ହେଉଛି । ଧର୍ମ ବା ନୀତି ଆଉ ଆଖି ଦେଖାଉ ନାହିଁ । ପ୍ରକୃତି ଭୟଙ୍କରୀ, ମଣିଷ ନିଷ୍ଠୁର । ବ୍ୟବସାୟୀ ସମସ୍ତ ଦାନା ହରଣଚାଳ କରି ନେଇଛନ୍ତି । କଳାହାଣ୍ଡିରେ ଦୁର୍ଭିକ୍ଷ । କଙ୍କାଳର ଛବିସବୁ ସମ୍ବାଦପତ୍ରରେ ଦେଖୁଛି । ଗୋଟିଏ ଦିଗରେ ଲୋକସେବାର ଆହ୍ୱାନ, ଅନ୍ୟ

ଦିଗରେ ସୌନ୍ଦର୍ଯ୍ୟ ଓ ସଂସ୍କୃତିର ଆକର୍ଷଣ । ଦେଶରେ କର୍ମୀ ଓ ସେବକର ଅଭାବ ନାହାନ୍ତି । ଏ ଜୀବନ ଅନ୍ୟ ଏକ ପଥରେ ଗତି କରୁଛି । ଏଇ ଆଶ୍ୱାସ ଦେଇ ବିଦେଶ ଯାତ୍ରା କଥା ସ୍ଥିର କରିଥିଲି ।

କିନ୍ତୁ ଏଇ ବିପଦ; 'ବିପଦ ଧୈର୍ଯ୍ୟଂ;' ବିନା ସଂଗ୍ରାମରେ ଜୀବନରେ କିଛି ହୋଇନାହିଁ । ବାଧାବିଘ୍ନ ସଙ୍ଗୀ, ଆକାଂକ୍ଷା; ସନ୍ତୁଷ୍ଟି ତା ଏଠି ଖୋଜୁଛି । ପରିଜନଙ୍କ ଭାବ ଦେଇ ଘରକୁ ଫେରିବି ନାହିଁ, ସ୍ଥିର କଲି ।

ସର୍କାର୍ ପାସ୍‌ପୋର୍ଟ ଦେଲେ କାହିଁକି ? ପାଥେୟ ଦେବେ ବୋଲି ଜବାବ୍ ଦେଲେ କାହିଁକି ? ଅନେକ ଦୂର ଆଗେଇଲି ପରେ ଏବେ ମନା କରୁଛନ୍ତି କାହିଁକି ?

ପରିବାରର ବ୍ୟାକୁଳତା, ବନ୍ଧୁବର୍ଗଙ୍କ ନାନା ପ୍ରଶ୍ନ ହୃଦୟକୁ ବିଦୀର୍ଣ୍ଣ କରୁଥାଏ । ଏତେ ଲାଞ୍ଛନା ନୀରବରେ ବରଦାସ୍ତ କରିଗଲେ ମିଥ୍ୟାଚାର, ଶାଠ୍ୟ ବିରୁଦ୍ଧରେ ଆଜି ଦିନେ ଲେଖନୀ ସଂଚାଳନ କରି-ପାରିବି ନାହିଁ । ଲଢ଼ା ସଂଗ୍ରାମ, ଶେଷ ଫଳ ଯାହା ହେଉ ପଛେ ।

କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ମହେଶ୍ୱର ଦାସ ମୋର ଗୁରୁ, ଭଗବତ୍ ଭକ୍ତ; ତାଙ୍କ ପରାମର୍ଶ ଇଷ୍ଟଦେବଙ୍କୁ ଧ୍ୟାନ କରି । ଆପଦର ରକ୍ଷା କବଚ—'ଆହେ ପ୍ରଭୁ ନୀଳଚକ୍ରଧାରୀ
ଶରଣ ମୁଁ ଗଲି ହେ ତୁମର ।'

'ମାମେକଂ ଶରଣଂ ବ୍ରଜ'—ଈଶ୍ୱରଙ୍କ ଶରଣ ପଶିବା ଛଡ଼ା ମୋର ଆଉ କି ଉପାୟ ଅଛି ?

ମହେଶ୍ୱରବାବୁ ଜୀବନଯୁଦ୍ଧରେ ଦୈବୀ ଆଶ୍ରୟ ନେଇଛନ୍ତି । ତାଙ୍କ ଶିଷ୍ୟମାନେ ହୋଇଛନ୍ତି ଅବନତ, ଅପଦସ୍ଥ । ଧ୍ୟାନ ଛଡ଼ା ପ୍ରତିଦିନ ଦାନ ମଧ୍ୟ ସେ କରିଥାନ୍ତି । ପ୍ରତିଦିନ ପାଦୁକାହୀନ ପଦରେ ଦୁଇମାଇଲ ଯାଇ ସେ ଗଙ୍ଗାସ୍ନାନ କରନ୍ତି, ଏକକାଳେ ଅଠାର ରୁଟି ସଙ୍ଗେ ନେଇ ଯାଇଥାନ୍ତି, ଦୁଃଖୀ ଦରିଦ୍ରଙ୍କୁ ବିତରଣ କରନ୍ତି । ଏଇ ମହଙ୍ଗା ଯୁଗରେ କେଜାଣି ତାଙ୍କ

ଗୃହରୁ ଅଭୁକ୍ତ ଫେରେ ନାହିଁ । ତାଙ୍କ ବିଶ୍ୱାସ—ଦେଇଥିଲେ ପାଇ । ଯୁଦ୍ଧ, ଦୁର୍ଭିକ୍ଷରେ କେବେ ତାଙ୍କ ଗୃହରେ ଅନ୍ନାଭାବ ଘଟିନାହିଁ ।

ତାଙ୍କ ଦୀକ୍ଷା ମୁଁ ଗ୍ରହଣ କଲି—ଈଶ୍ୱରେଚ୍ଛା ବଳୀୟସୀ—କର କରାଉଥାଏ ମୁହିଁ—ଦୃଢ଼ ଅଟଳ ବିଶ୍ୱାସ ।

ଅଭିମାନ ଆସିଲା ଈଶ୍ୱରଙ୍କ ଉପରେ—ଯଦି ନ ପଠେଇବାର କଥା, ପଦେ ପଦେ ସାହାଯ୍ୟ କରୁଥିଲ କାହିଁକି ?

କଟକରୁ କଲିକତା—ଗାଡ଼ି ଟିକଟଗୁଡ଼ିକ ଧନେ ବ୍ୟାଗ୍‌ରେ ହଜିଥିଲା । ତା ପରଦିନ ସେଇ ବ୍ୟାଗ୍‌ର କଣ୍ଡକ୍ଟରଙ୍କୁ ପଚାରିଲି—ପାଇଛ ?

'ପୁରୁଣା ଟିକଟ ଭାବି ମେହେନ୍ତର ବ୍ୟାଗ୍‌ଗୁଡ଼ିକ ଓଳାଇ ଫିଙ୍ଗି ଦେଇଥିବ !'

'ଘରେ ନ ପଶୁଣୁ ଗୁଳି ବାଜିଲାଣି; ବୋଧେ ଈଶ୍ୱରଙ୍କ ଇଚ୍ଛା—ମୁଁ ବିଦେଶ ନ ଯାଏଁ—ନିଷେଧ ସଙ୍କେତ ଏ ।'

'ଟିକେଟ୍, କି ଟିକେଟ୍ ? ମୁଁ କାଲି ପାଞ୍ଚଖଣ୍ଡ ରେଲ୍ ଟିକେଟ୍ ପାଇ ଅଧ୍ୟକ୍ଷ ବୈଦ୍ୟନାଥ ରଥଙ୍କ ପାଖେ ଜମା ଦେଇଛି ।'

ଅଜଣା ବ୍ୟକ୍ତି ଜଣେ କହିଲି; ଏଇ ବ୍ୟାଗ୍‌ରେ ବସିଯାଉଥିବା ରଥେ ବି ଟିକେଟ୍ ରଖିଥିବା କଥା କହିଲେ । ଏହିପରି କେତେକ ଘଟଣାରୁ ବିଶ୍ୱାସ ଆସିଲା ଯେ ପ୍ରଭୁଙ୍କ ଅଦୃଶ୍ୟ ହସ୍ତ ମୋ ଯାତ୍ରା ପଛରେ ରହିଛି ।

## ଡକ୍ଟର ଆଶୁତୋଷ—

ଡକ୍ଟର ଆଶୁତୋଷ ଏସିଅନେକ ସଂସ୍କୃତ ସମିତିର କାର୍ଯ୍ୟକାରୀ କମିଟିର ସଭ୍ୟ, ଏସିଆ ଲୋକ ସଂସ୍କୃତ ସମ୍ମେଳନରେ ଯୋଗ ଦେବା

ଲାଗି ସେ ନିମନ୍ତ୍ରିତ, ଦୁହେଁ ଏକା ପ୍ଲେନ୍‌ରେ ଯାତ୍ରା କରିବୁ, ଟିକେଟ୍ କରିଚି । ସୁଟ୍‌କେସ, ହାଣ୍ଡବ୍ୟାଗ୍ ଧରି ସେ ଆସିଛନ୍ତି, ଟ୍ରେଡ୍ ଡଇଙ୍ଗସ୍ ଅଫିସ୍‌କୁ । ଶେଷ ମୁହୂର୍ତ୍ତରେ ରିଜର୍ଭବ୍ୟାଙ୍କ୍ ଏପରି ନିର୍ଦ୍ଦେଶ କରିବାରେ ମର୍ମାହତ ହୋଇ ସେ କହିଲେ—ଆମେ ଦୁହେଁ କାର୍ଯ୍ୟକାରୀ ସମିତିର ସଭ୍ୟ, ସମ୍ମିଳନୀର କର୍ତ୍ତାମାନେ ଆମର ଉପସ୍ଥିତି ଚାହାନ୍ତି । ଭାରତ ସରକାର ଆମକୁ ବାଦ୍ ଦେଇ ଅନ୍ୟମାନଙ୍କୁ ପଠାଉଛନ୍ତି କିପରି ? ବାହାରେ ଆମ ଦେଶ ବିଷୟରେ କି ଧାରଣା ହେବ !

କିଏ ବୋଧେ ଧରାଧରି କରିଛି ! ଧରାଧରିରେ ଯଦି ସବୁ ହେବ ଆମ ପରି ଲୋକଙ୍କର ଭୂଭାରତରେ ଆଉ ସ୍ଥାନ କାହିଁ ?

ଡକ୍ଟର ଆଶୁତୋଷ କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗଳା ଅଧ୍ୟାପକ । ପୂର୍ବବଙ୍ଗରେ ଘର; ଢାକାରେ ପି. ଏଚ୍. ଡି କରିଛନ୍ତି । 'ବାଙ୍ଗାଲ୍' ବୋଲି ତାଙ୍କ ପ୍ରତି ଅବଜ୍ଞାର ହୋଇଛି, ମନରେ ଧାରଣା । ଅସଲ କଥା, ଚକ୍ରାନ୍ତମୂଳ ପ୍ରତିଯୋଗିତାରେ ସେ ପଛେଇ ପଡ଼ନ୍ତି ! କୁଆଡ଼େ ଯିବେ ନାହିଁ, କାହାକୁ କହିବେ ନାହିଁ; ତାଙ୍କପରି ଚରିତ୍ର ପକ୍ଷେ ଏହା ସ୍ୱାଭାବିକ । ସାଧନାରେ ସେ ମାତିଛନ୍ତି । ବଙ୍ଗଳାର ଶ୍ରେଷ୍ଠ ଲୋକ-ସଂସ୍କୃତିବିତ୍, 'ବାଂଲା ଲୋକସାହିତ୍ୟ,' 'ମଙ୍ଗଲ କାବ୍ୟେର ଇତିହାସ, ପ୍ରଭୃତି ବହୁ ପୁସ୍ତକର ରଚୟିତା । ଭେରିଅର୍ ଏଲୱିନ୍‌ଙ୍କ ସହିତ କୋରାପୁଟ ଜଙ୍ଗଲରେ ଆଦିବାସୀ ଅଞ୍ଚଳରେ ସେ ଅନେକ ଦିନ କାର୍ଯ୍ୟ କରିଛନ୍ତି, ବହୁ ଲୋକସଂସ୍କୃତିକ ଉପାଦାନ ସଂଗ୍ରହ କରିଛନ୍ତି । ସରଳ, ଅମାୟିକ ଲୋକ । ଏଜେଣ୍ଟ ଉପରେ ଅତ୍ୟଧିକ ବିଶ୍ୱାସ କରି ସେ ଠକେଇରେ ପଡ଼ିଛନ୍ତି । ତାଙ୍କ ଉଦ୍ୟମ ଉପରେ ଆସ୍ଥା ସ୍ଥାପନ କରି ଏକା ନାବରେ ବସିଛି ମୁଁ ।

## ଟ୍ରେଡ୍ ୱିଙ୍ଗସ୍ ଓ ସିନ୍ହା—

'ଟ୍ରେଡ୍‌ୱିଙ୍ଗସ୍' ଏକ ଯାତ୍ରା ବ୍ୟବସାୟୀ ଅନୁଷ୍ଠାନ । ସେ ପାନ୍ ଆମେରିକାନ୍, ଏୟାର୍ ଫ୍ରାନ୍ସ, ଲୁଫ୍ଟହାଂସ, ଏୟାର ଇଣ୍ଡିଆ ପ୍ରଭୃତି ପୃଥିବୀର ବ୍ୟୋମକମ୍ପାନୀମାନଙ୍କୁ ଯାତ୍ରୀ ଯୋଗାଇଥାନ୍ତି, ସେ ବାବଦକୁ କମ୍ପାନୀରୁ ୫ ପରସେଣ୍ଟ୍ କମିସନ୍ ପାଇଥାନ୍ତି । ଏହା ଛଡ଼ା

ଟ୍ରେଡ଼୍‌ଓ୍ୱିଙ୍ଗସ୍‌ର ମୁଖ୍ୟ ଅଫିସ୍ । ୩୨ ନମ୍ବର ଚୌରଙ୍ଗୀ, କଲିକତା; ଅଫିସରଗୁଡ଼ ଶୀତତାପ ନିୟନ୍ତ୍ରିତ । ଏସ୍. ପି. ସିହ୍ନା ଟ୍ରେଡ଼୍‌ଓ୍ୱିଙ୍ଗସ୍‌ର ଜଣେ ଅଫିସର—ଯାତ୍ରୀ ଲାଗି ପାସପୋର୍ଟ, ଭିସା, ରିଜର୍ଭବ୍ୟାଙ୍କ ଅନୁମତି ଯୋଗାଡ଼ ଓ ଟିକେଟ କରିବା ଦାୟିତ୍ୱ ତାଙ୍କର । ଝଡ଼ବା ଝଞ୍ଜାଳରୁ ଅବ୍ୟାହତି ପାଇବା ପାଇଁ ଯାତ୍ରୀ ଏଜେଣ୍ଟ କରିଥାଏ । ସିହ୍ନା ନିଷ୍ଠାପର, ଦାୟିତ୍ୱସମ୍ପନ୍ନ ବୋଲି ସାଧାରଣ ଧାରଣା । ବହୁ ଦାୟିତ୍ୱ ତାଙ୍କ ମୁଣ୍ଡରେ, ସେଥିଲାଗି କିଛି ଭୁଲିଯାନ୍ତି । 'କିଛି' ମଧ୍ୟରେ ଆମେ ପଡ଼ିଗଲୁ । ଶେଷ ମୁହୂର୍ତ୍ତରେ ପାସ୍‌ପୋର୍ଟ ଭିସା ଲାଗି ଦୌଡ଼ିବାକୁ ହେଲା ।

'ତାର ଯୋଗେ ରିଜର୍ଭବ୍ୟାଙ୍କ ଅନୁମତି ଆସିଯିବ, ପ୍ରସ୍ତୁତ ହୋଇ ରହନ୍ତୁ' । ଏଜେଣ୍ଟ ସେ; ଅବିଶ୍ୱାସର କାରଣ ନାହିଁ; ନିଶ୍ଚିନ୍ତ ହେଲୁ; ନିଶ୍ଚିନ୍ତ ହୋଇ ମଲୁ ।

ପ୍ରତିକୂଳ ଟେଲିଗ୍ରାମରେ ସିହ୍ନାଙ୍କ ମୁହଁ ଶୁଖିଗଲା । ତଥାପି ଆଶା-ବାଦୀ ସେ । 'Clear case ବୈଦେଶିକ ମୁଦ୍ରା ପ୍ରଶ୍ନ ଜଡ଼ିତ ନାହିଁ । ଆପଣମାନେ ଦିଲ୍ଲୀ ଚାଲିଯାନ୍ତୁ, ସବୁ ଠିକ୍ ହୋଇଯିବ ।' ଦୁଇଖଣ୍ଡି ପ୍ରଥମ ଶ୍ରେଣୀ ଟିକଟ କିଣିଆଣି ସେ ଦେଲେ ।

କେତେ କେନ୍ଦ୍ରମନ୍ତ୍ରୀ, ତଥା ଅତଥା ପାର୍ଲିମେଣ୍ଟ ସଭ୍ୟଙ୍କ ପାଖକୁ ତାର କଲି । କୋଉଠୁ କିଛି ଭରସା ମିଳିଲା ନାହିଁ । ଆଶୁଦା କହୁଥାନ୍ତି, ଯାହାତ ହେବାର ହେଲା, ପୁଣି ଅପବ୍ୟୟ କାହିଁକି ?

ହୃଦୟ ଭାଙ୍ଗିବାର ସିଧା କାରଣ ରହିଛି । ଏତେ ଖୁସି ଲାଗୁଛି କାହିଁକି ? ବିଶ୍ୱାସ—ଏତେ ନିଷ୍ଠା କେବେ ବିଫଳ ହୁଏ ନାହିଁ, ଏତେ ଚେଷ୍ଟା କେବେ ବ୍ୟର୍ଥ ହୁଏ ନାହିଁ । ଭଗବାନ୍ ବିଶ୍ୱକର୍ମା । ତାଙ୍କଠାରୁ କର୍ମର ମୂଲ୍ୟ କିଏ ଅଧିକ ଦେଇ ପାରିବ ?

'ଈଶ୍ୱର ଯାହା କରନ୍ତି ମଙ୍ଗଳ ନିମନ୍ତେ'; ହୁଏତ ଏଥର ଫ୍ରାନ୍‌ସରେ ଯାଇଥିଲେ ଆମର କିଛି କ୍ଷତି ହୋଇ ନ ଥାନ୍ତା । କେତେବେଳେ ପ୍ରଭୁଙ୍କ ନିର୍ଦ୍ଦେଶ କେଉଁରୂପରେ ଆସେ କଳନା କରିବା

କଷ୍ଟକର । କରୁଣାର ରୂପ ସର୍ବଦା କୋମଳ ନୋହିପାରେ । ଏହି ଜାଗାପୁ ଚନ୍ଦ୍ରାରୁ ଆଶ୍ୱାସନା ସଂଗ୍ରହ କରୁ କରୁ ଯାଇ କାଲ୍କାମେଲ୍‌ରେ ବସିଲି । ନାଦ ଗର୍ଜିଲ ଗମ୍ଭୀରେ ।

ସାମାନ୍ୟ ବର୍ଷା, ଶିରଶିର ଶୀତ । କିନ୍ତୁ ମୋଗଲସରାଇ ଶୁଷ୍କ ରୁକ୍ଷ । ଗୋରୁ, ମଇଁଷି ଭୂଇଁ ଚାଟୁଛନ୍ତି, କଙ୍କାଳ ରୂପ । ଦଳଦଳ ମାଇପେ ଖୁରୁପିରେ ଶୁଖିଲା ଘାସ ଚାଞ୍ଛୁଛନ୍ତି । ମାଟି ଧଳା, ଗାଡ଼ି ଚାଲିଲେ ଧୂଳି ଉଡ଼ୁଛି ।

## ଦିଲ୍ଲୀ ମାଟିରୁ ଅନେକ ଆକାଶ—

ଦିଲ୍ଲୀ ଦରିଆଗଞ୍ଜର 'ଆଗ୍ରା ହୋଟେଲ୍'ରେ ରହିଲୁ । ବାହାର ସହିତ ଆମ କୋଠରୀର ଦୁଆର ଝରକାର ନିକଟ ସଂପର୍କ ନାହିଁ । ଫ୍ୟାନ୍ ବୁଲିଲେ ବି ଶ୍ୱାସ ରୁଦ୍ଧ ହେଲାପରି ଲାଗୁଥାଏ । ଗୁଳଗୁଳ; ମୁଣ୍ଡରେ ଦୁଶ୍ଚିନ୍ତା । ଆଖିରେ ପଲକ ପଡ଼ିଲା ନାହିଁ । ସକାଳୁ ଉଠି ବାହାରିଲୁ ସତ୍ୟେନ୍ଦ୍ରମୋହନ ଗୁପ୍ତଙ୍କ ନିକଟକୁ । ସେ ଆଶୁବାବୁଙ୍କ ଶାଳା ।

ଦିଲ୍ଲୀ ବଙ୍ଗାଳୀ ଆସୋସିଏସନ୍‌ର ଜଏଣ୍ଟ ସେକ୍ରେଟାରୀ, ବଙ୍ଗାଳୀ ମହଲରେ ତାଙ୍କର ପ୍ରଭାବ ରହିଛି । ମଝେ ମଝେ ସେ କଲିକତାରୁ ନାଟ୍ୟଦଳ ଅଣାଇ ଥାନ୍ତି । ବଙ୍ଗଳା ନାଟକ ଓ ସଙ୍ଗୀତ ପ୍ରତି ଦିଲ୍ଲୀର ବିଦଗ୍ଧ ମହଲରେ ଶ୍ରଦ୍ଧା ସୃଷ୍ଟି କରାଯାଇ ପାରିଛି; ମିସେସ୍ ଗୁପ୍ତ ମଧ୍ୟ ମହିଳା ମହଲରେ ନାନା ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟ କରି- ଥାନ୍ତି । ଏଇ ଦମ୍ପତିଙ୍କର ଗୋଟିଏ ମାତ୍ର ପୁତ୍ର, ସୁଯୋଗ୍ୟ । ଇଂରାଜୀରେ କୃତିତ୍ୱର ସହିତ ଏମ୍. ଏ. ପାସ୍ କରିଛି । କାର୍ ଡ୍ରାଇଭ୍ କରି ସେ ଆମକୁ ଘେନିଗଲା ପାର୍ଲିମେଣ୍ଟର ପ୍ରଭାବଶାଳୀ ସଭ୍ୟ ସତ୍ୟେନ୍ଦ୍ରମୋହନ ବାନାର୍ଜିଙ୍କ ନିକଟକୁ ।

ବାନାର୍ଜି ଅସୁସ୍ଥ, ରୋଗଶଯ୍ୟାରୁ ହିଁ ସେ ଟେଲିଫୋନ୍ କଲେ ଶିକ୍ଷା ବିଭାଗର ସେକ୍ରେଟାରୀ ଏ. କେ. ଘୋଷଙ୍କୁ । ଶ୍ରୀ ଘୋଷ କହିଲେ—

ପଦ ସରକାରୀ ଅର୍ଥ ବା ବୈଦେଶିକ ମୁଦ୍ରା ସାହାଯ୍ୟ ପ୍ରଶ୍ନ ଆସ ଯାହା ସହିତ ଜଡ଼ିତ ନ ଥାଏ, ତେବେ ସେ ବାଧା ଦେବେ ନାହିଁ ।

ସାଢ଼େ ଦଶଟାବେଳେ ଆମେ ଅଫିସରେ ତାଙ୍କ ସହିତ ସାକ୍ଷାତ କଲୁ । ପୁରୁଣା ଆଇ. ସି. ଏସ୍.; କ୍ଷୀଣକାୟ, ସ୍ୱର କ୍ଷୀଣତର । ଆମ ଦରଖାସ୍ତଟି ମଞ୍ଜୁର କରି ସେ ସଙ୍ଗେ ସଙ୍ଗେ ଅର୍ଥବିଭାଗକୁ ପଠାଇଦେଲେ । ଦରଖାସ୍ତ ସଙ୍ଗେ ସଙ୍ଗେ ଆମେ ଗୁଲଲୁ ।

ଏ ମଧ୍ୟରେ ଏସିଆ ଲୋକସଂସ୍କୃତି ସମ୍ମେଳନର ଏକ୍ଜିକ୍ୟୁଟିଭ୍ ଆସିଷ୍ଟାଣ୍ଟ ଭାରତ ସରକାରଙ୍କ ନିକଟକୁ କେବଲ୍ କରିଥାନ୍ତି—କାର୍ଯ୍ୟକାରୀ ସମିତିର ସଭ୍ୟମାନଙ୍କୁ ଆଗେ ପଠାଅ, ତାପରେ ଅନ୍ୟ କାହା କଥା ବିବେଚନା କଲେ କର ।

ଏହାର ପ୍ରଭାବ ବେଶ୍ ପଡ଼ିଲା; ମୋ ଯାତ୍ରାପଥ ନିଷ୍କଣ୍ଟକ ହୋଇ-ଗଲା । ଭାରତ ସରକାର ମୋତେ ଟ ୩୧୫ଙ୍କା ବା ୪୨ ଡଲାର ପାଥେୟ ଦେଲେ । ମୁଁ ହେଲି ଭାରତ ସରକାରଙ୍କ ଡେଲିଗେଟ୍; ଭଗବାନ୍‌ଙ୍କୁ ଅଶେଷ ଧନ୍ୟବାଦ ଦେଲି; ଗୌରବାନନ୍ଦରେ ମୋ ହୃଦୟ ପରିପୂର୍ଣ୍ଣ ହୋଇଗଲା । କିନ୍ତୁ ଆଶୁଦା ?

ବଙ୍ଗଳାରୁ ଇଂରେଜୀ ମାସିକ 'Folk lore' ର ସମ୍ପାଦକ ଶଙ୍କର ସେନଗୁପ୍ତଙ୍କୁ ସରକାର ଅନୁମତି ଦେଇ ସାରିଥିଲେ । ସେଇ ରାଜ୍ୟରୁ ଆଉ ଜଣକୁ ପଠାଇବାକୁ ଅମଙ୍ଗ ହେଲେ । ସରକାରୀ କଦ୍ ଅଂଶକ ଭାବେ ହେଉ ପଛେ ବଜାୟ ରହିଲା । ଆଶୁଦାଙ୍କ ଚେଷ୍ଟାର ଫଳ ମୁଁ ପାଇଲି । ସେ ଅତି ଦୁଃଖରେ ଫେରିଆସିଲେ ହୋଟେଲକୁ, ତାଙ୍କ ବନ୍ଧୁ ଡାକ୍ତର ଫେରିଗଲେ ନିଜ ଘରକୁ । ଏଇ ଯାତ୍ରା ଲଗି ସେ ଦେଢ଼ ହଜାର ଟଙ୍କା ଖର୍ଚ୍ଚ କରିଥିଲେ । ଲୋକସାହିତ୍ୟରେ ତାଙ୍କ ପରି ପ୍ରବୀଣ ବ୍ୟକ୍ତି ଅତି ଅଳ୍ପ; ତଥାକଥିତ ବନ୍ଧୁମାନଙ୍କର ବିଦ୍ରୂପର ବର୍ଚ୍ଛା ତାଙ୍କୁ ସହିବାକୁ ହେବ । ନୈରାଶ୍ୟ ମନୁଷ୍ୟକୁ ଏତେ ତୃଷାର୍ତ୍ତ କରେ ! ଆଶୁଦା

ମିନିଟିକେ ଗିଲାସେ ପାଣି ପିଉଥାନ୍ତି—'କେନ ଏମନ୍ ହଲ ? ମୋ ଆଶ୍ୱାସନା ତାଙ୍କୁ ଅଧିକ ବ୍ୟଥିତ କରୁଥିବା ଦେଖି ବିରତ ହେଲି ।

ଦିଲ୍ଲୀର ୬୦ ନମ୍ବର ଜନପଥକୁ ଯାଇ ଟ୍ରେଭ୍‌ଲିଙ୍ଗ୍ ଅଫିସିରୁ ଟିକେଟ୍ ଆଣିଲି । ଗ୍ରିଣ୍ଡଲେଜ୍ ବ୍ୟାଙ୍କ୍‌କୁ ଯାଇ ୪୨ ଡଲାରର ଚେକ୍ ଆଣିଲି, ଘଣ୍ଟାକ ମଧ୍ୟରେ ସବୁ କାମ ତୁଟିଗଲା । ହଠାତ୍ ଅସରା ବର୍ଷା ! ଶାନ୍ତବାର । ବଡ଼ ଆଶ୍ୱାସନା ପାଇଲି । ଆଜ ଦିଲ୍ଲୀର ଗୁଳଗୁଳ ହାଓ୍ୱା ବଦଳିଲା, ମୋ ମନର ମଧ୍ୟ, ଏ ବର୍ଷର ଜ୍ୟେଷ୍ଠ ମନୋବ୍ୟଥାର ତୀବ୍ରତା ସଙ୍ଗେ ମିଶି ଅତି ଭୟଙ୍କର ହୋଇଥିଲା, ଆଜ ସେଇ ଜ୍ୟେଷ୍ଠର ଅବସାନ । ମନର ଉତ୍ତାପ ଶାନ୍ତ ପଡ଼ିଲା । ଫଟା ମନ, ଭଙ୍ଗା ମନ ଯେପରି ଘ ଗୋଟାଳିଆ ହୋଇଗଲା, ପୂର ପୂର ଆସିଲା ଅଲିଖିତ କାବ୍ୟର ଅନବଦ୍ୟ ଭାବରେ ।

ଦିଲ୍ଲୀର ହୁମାୟୁନ କବର, ସେର୍‌ସାହ ଦୁର୍ଗ, ଲାଲ୍ କିଲ୍ଲା, ପାର୍ଲାମେଣ୍ଟ ଗୃହ, ରାଷ୍ଟ୍ରପତି ଭବନ ଉପରେ ଆଖି ପଡ଼ିଥିଲା । କିନ୍ତୁ କିଛି ଦେଖି ନ ଥିଲି । ଏବେ ଦିଲ୍ଲୀ ସୁନ୍ଦର ଦିଶିଲା !

ରାତି ନ'ଟା । ହୋଟେଲ୍ ମ୍ୟାନେଜର ଗୋଟିଏ ଟାକ୍ସି ମଗାଇ ଦେଲେ । ପହଞ୍ଚିଲି ହୋଟେଲ୍ "ଇମ୍ପେରିଆଲ"ରେ । ଗୃହ'ର ଚଟାଣରେ ଚିତ୍ରିତ ଗାଲିଚା ବିଛା, କେତେ କେତେ ବ୍ୟବସାୟ ପ୍ରତିଷ୍ଠାନର ପ୍ରଦର୍ଶନୀ ଗୃହ; ଝକଚକ୍ୟ ଅଦ୍ଭୁତ । ସ୍ୱପ୍ନପୁରୀ ପରି ଲାଗୁଥାଏ । ଅତିଥି ସେବ 'ବୟ' ମୋର ସୁଟ୍‌କେସ୍ ଉଠାଇ ନେଲା । ମ୍ୟାନେଜର ଶିଖ୍ ଭଦ୍ରଲୋକ, ଯାର୍ଦ୍ଦକାୟ । ମୋତେ ଦେଖି ରସିଦ କାଟି ବସିଲେ—ଦିଅ ଟ୬୫ଙ୍କା, ରାତିକ ରହଣି ଲାଗି ଦେୟ ।

'ମୁଁ ତ ରହିବା ଲାଗି ଆସିନାହିଁ । ବିଶ୍ରାମ । ମ୍ୟାନେଜର ମନେ ମନେ କହୁଥିବେ—ଏ ବିଶ୍ରାମାଗାର ନୁହେଁ, ନୁହେଁ ଧର୍ମଶାଳା । ବିଶ୍ରାମ କରିବ ତ ଚୁଲିଯାଅ ପଦାକୁ, ପାର୍କ ପଡ଼ିଛି ।

'ଧୈର୍ଯ୍ୟ ଧର ଟିକଏ ଶୁଣ, ମୁଁ କଏ କାହିଁକି ଆସିଛି । 'ପାନାମ୍' ଅଫିସ୍ କେଉଁଠି ? ମ୍ୟାନେଜର ସବୁ ଶୁଣି ବୁଝିପାରି ଟିକଏ ହସିଲେ,

ମୋତେ 'ଷ୍ଟୁଡ଼୍ ରୁମ୍'କୁ ଚଟାଇଦେଲେ । ଗୋଟିଏ ଗଦି ଚୌକିରେ ବସି ମାଗାଜିନ୍ ଓଲଟାଇ ଓଲଟାଇ ଘୁମାଇଲି । ଘଣ୍ଟା ସାଢ଼େ ଗୋଟାଏ ବେଳେ ପାନ୍ ଆମେରିକାନ୍ କୋଚ୍ ଆସିଲା । ବର୍ଷା । ଦିଲ୍ଲୀର ବ୍ୟୋମ ବନ୍ଦର ପଥ ନିର୍ଜନ । କେତେକ ଗୋରୁ ମନ ଆନନ୍ଦରେ ଚରୁଥାନ୍ତି । ଏତେ ରାତିରେ କୁଆଡ଼େ ଶଗଡ ଘେନି କିଏ ଯାଉଛି ? ଗଛ ବୃଚ୍ଛର ପତ୍ରେ ପତ୍ରେ ଜଳ, ଗାଡ଼ିର ଆଲୋକ ପଡ଼ି ଚକ୍ ଚକ୍ କରୁଥାଏ ।

ହୋଟେଲ ଜନପଥ, ହୋଟେଲ କଣ୍ଟିନେଣ୍ଟାଲରେ କୋଚ୍ ଅଟକିଲା । କେତେକ ଯାତ୍ରୀ ଯାତ୍ରିଣୀ ଆସି ବସିଲେ । ଏୟାର ପୋର୍ଟରେ କଷ୍ଟମସ ଓଜନ ହେଲା, ପାସପୋର୍ଟ ଚେକ୍ ହେଲା । ପାନ୍ ଆମେରିକାନ୍ ଏୟାର ଲାଇନ୍‌ର ଦୀର୍ଘପକ୍ଷଯୁକ୍ତ ବିରାଟ ଜେଟ୍‌ଯୁକ୍ତି ଛୁଡ଼ା ହୋଇଥାଏ । ସିଡ଼ିର ସୋପାନ ଯେତେବେଳେ ସ୍ପର୍ଶକଲି, ମନରେ ଅପୂର୍ବ ପୁଲକ; ଶଙ୍କା ଓ ଆନନ୍ଦର ମିଶ୍ରିତ ଭାବ । 7 A ମୋର ସିଟ୍ ନମ୍ବର, ଝରକା ପାଖେ । ଭଗବାନଙ୍କ ନାମ ସ୍ମରଣ କରି ବସିଲି । ଅଣ୍ଟାରେ ବେଲ୍ଟ ବାନ୍ଧିଲି । ବ୍ୟୋମଯାନ ଉଠିବା ମୁହୂର୍ତ୍ତରେ ଧୂମପାନ ନିଷେଧ ହେଲେ ବି କେହି କେହି ଯାତ୍ରୀ ମାନୁ ନ ଥାନ୍ତି । ଏହିପରି ଜଣେ ଜଣେ ଅମାନିଆ ଜଗତର ବହୁ ଆକ୍‌ସିଡେଣ୍ଟର କାରଣ ହୋଇଥାନ୍ତି ।

ମୁଣ୍ଡ ଉପରେ ଫ୍ୟାନ୍, ହାଓ୍ୱା ବାଜୁଛି ଏ କେଉଁ ଆକାଶର ? ପଥେ ପଥେ ବହୁ ନଦୀ, ହ୍ରଦ, ପର୍ବତ, ଜନପଦ; ପ୍ରତ୍ୟେକ ସ୍ପର୍ଶରେ ଶରୀର ଯେପରିକି ରୋମାଞ୍ଚିତ ହୋଇ ଉଠୁଥାଏ । ଗୋଟିଏ ଅଞ୍ଚଳର ପରିବେଶ ମଧ୍ୟରେ ଜୀବନ ଯେପରି କି ଆବଦ୍ଧ ହୋଇ ଯାଇଥିଲା । ଆଜି ଏକ ଅଦ୍ଭୁତ କୌତୂହଳୀ ପକ୍ଷୀ ପରି ଛୁଟିଛି ଦୂରରୁ ଦୂରବର୍ତ୍ତୀ ଆକାଶକୁ । ଭିତରର ଶିଶୁ ମରିନାହିଁ, ଯଦି ବା ଶରୀରର ଚର୍ମ ଶିଥିଳତର ହୋଇଛି । ବୟସର ବୋଝରେ ଶରୀର ଶ୍ରାନ୍ତକ୍ଳାନ୍ତ ଦିଶୁଛି । ଘର ବୋହିବାକୁ ସେ ପ୍ରସ୍ତୁତ ନୁହେଁ, ଦୌଡ଼ିବାକୁ ତାର ବଳନାହିଁ । କିନ୍ତୁ ଏତ ଘର ନୁହେଁ, ବୃଥା ଦୌଡ ନୁହେଁ, ଏକ ସ୍ୱାସ୍ଥ୍ୟଦାୟୀ ପରିବର୍ତ୍ତନ ।

କାଳି ଅନ୍ଧାରରେ କେତୋଟି ଗୁଇଗୁଇଆ ପାହାଡ଼, ତା ମଧ୍ୟରେ କ୍ଷୀଣ କେତୋଟି ରେଖା, ଫଡ଼ିଆ ସୁନାରି, କିନ୍ତୁ ସକାଳକୁ ସ୍ୱଚ୍ଛ ଭାବରେ

ଦେଖିଲି ଆରବ ସାଗରରେ । ସହର, ଜନପଦ ବା ପାହାଡ଼ ମାନଙ୍କରେ ସକାଳକୁ ସଙ୍କୁଚିତ ହେବାକୁ ପଡ଼ିଥାଏ । କିନ୍ତୁ ଆଜିର ଉଷା ବହୁ ରଙ୍ଗ ବିଚ୍ଛୁରିତା, ତରଙ୍ଗର ସୋପାନେ ସୋପାନେ ଲୋଟୁଥାଏ ଚାରୁ ସ୍ୱର୍ଣ୍ଣ ପଣତ, ପ୍ରଶସ୍ତତମ କ୍ଷେତ୍ରରେ ପୂର୍ଣ୍ଣାଙ୍ଗ ମୂର୍ତ୍ତି, ଜୀବନ୍ତର ସମସ୍ତ ସ୍ଫୂର୍ତ୍ତି ଦେଇ ବିଘୋଷିତ । ସତେ ଯେପରି କଣ କହିବ କହିବ, ହେଉଛି କେଉଁ ଯାଦୁକରୀ; ବୈତାଳିକ ଗାଇବ ସାଗରିକା କୌଣସି ମାଦକ ଛନ୍ଦରେ; ମୁହୂର୍ତ୍ତକୁ ମୁହୂର୍ତ୍ତ ରୂପ ବଦଳୁଛି ତାର, ସୁନ୍ଦରୀର ପ୍ରସାଧନ ରୁଚି ବିଚିତ୍ର, ନିଜକୁ କାଳୋପ-ଯୋଗୀ ବା କାଳକୁ ନିଜୋପଯୋଗୀ କରିବାରେ ତାର ଗୁରୁତ୍ୱ ଗରିମା ଫୁଟିଉଠୁଛି; ନାଟ୍ୟ ବ୍ୟକ୍ତିତ୍ୱର ବିପୁଳ ବିକାଶ ଲାଗି ସାଜିତ ହୋଇଛି ତାର ରଙ୍ଗମଞ୍ଚ; ନୃତ୍ୟ ଗୀତ, କେତେ ବିଚିତ୍ର ଅପାଙ୍ଗ ଭଙ୍ଗୀ ଲକ୍ଷ୍ୟ କରୁ କରୁ ଶୁଷ୍କ ମେଘରେ ଲାଗିଲା ତାର ଜ୍ୱଳନ୍ତ କାମନାର ଅଗ୍ନି — ଏଇ ଅଗ୍ନିବହ୍ନି ହେଲା ଶିଖା, ପ୍ରଚଣ୍ଡ ହୁତାଶନ, ବାଡ଼ବାଗ୍ନି — ଅତି ବ୍ୟାପକ, ଅତି ବିପୁଳ । ସମୁଦ୍ରର ଗଭୀର ନୀଳରୁ ଆକାଶର ନୀଳିମା ପର୍ଯ୍ୟନ୍ତ ବିସ୍ତୃତ ବହ୍ନି ରେଖା, ବହୁ ରଙ୍ଗର ମିଶାମିଶି, ହସାହସି । କୁହୁଡ଼ିର ଈଷତ୍ ପାଂଶୁଳ ପୃଷ୍ଠପଟରେ ଏ ରଙ୍ଗ ପୂର୍ଣ୍ଣ ଯୌବନର ଗୌରବ ଦେଇ ଝଟକି ଉଠୁଥାଏ । ଏଇ ସୂର୍ଯ୍ୟ; ଆରବ ସାଗରର ଲକ୍ଷ୍ୟକୋଟି ଢେଉ ଲଙ୍ଘନ କରି ଆମ ପାଖରେ ହେଉଛନ୍ତି ସେ — ଚିର ପରିଚିତ, କିନ୍ତୁ ଏ ପରିବେଶରେ ମହାନ୍ ଗମ୍ଭୀର ।

ସମୁଦ୍ର ଉପରେ କ୍ଷଣିକ ମେଘର ଉନ୍ନପାହାଡ଼ ଦେଖୁଛୁ, ଏୟାର୍-ହୋଷ୍ଟେସ୍ ଖଣ୍ଡେ ଗରମ ପାଣିବୁଡ଼ା କନା ବଢ଼ାଇଦେଲେ, ଆଖି ନାକ କାନ ପୋଛିବା ପାଇଁ । ଏତିକରେ ନିତ୍ୟକର୍ମ ଶେଷ । ତାପରେ କାଗଜ ଗ୍ଲାସରେ କମଳାରସ, ପାଉଁରୁଟି, ଲହୁଣୀ, କେଲି, କେକ୍, କଫି । ଚିନି ? ଗୋଟିଏ ସିଲେଇ କାଗଜ ପୁଡ଼ିଆ ଉପରେ ଲେଖା ହୋଇଛି 'Panam' ଚିରି ଦେଖିଲାବେଳକୁ ଚିନି ।

ଦେଖୁ ଦେଖୁ ଯାନ ମେଘ ଭିତରେ ପଶିଲା; ଉପରେ ମେଘ, ତଳେ ମେଘ । ମେଘ ଉପରକୁ ଯାନ ଉଠିଲା । ସ୍ୱଚ୍ଛ ଆକାଶ, ନିର୍ମଳ

ସୂର୍ଯ୍ୟ । ତଳେ ଧଳା ତୂଳା ପରି ରାଶି ରାଶି ମେଘ, ଗଦା ଗଦା ବରଫ ପରି, ଗ୍ରେଟବଡ଼ ଗିରିଶୃଙ୍ଗ ପରି । ମେଘ ମଧ୍ୟରେ ଯାନର ଲୁଚକାଳି ଖେଳ ଲାଗିଥାଏ ।

## ଟେହେରାନରୁ ନିଉୟର୍କ—

ଟେହେରାନରେ ଯାନ ତଳକୁ ଖସିଲା । ଉଚ୍ଚ ଉଚ୍ଚ ଧୂସର ପାହାଡ଼, ମାଟି ବାଲିଆ, ପଥୁରିଆ; ମଲା ଘାସ; କୁହୁଡ଼ି ଘୋଟିଛି । ଶୁଷ୍କ, ରୁକ୍ଷ ମରୁଭୂମିର ଗୋଟିଏ ଗୋଟିଏ ଅଞ୍ଚଳ ସବୁଜ ଦିଶୁଚି, ଫସଲ ଓ ବଗିଚାରେ ମେଷ ପଲ୍ଲ ଚରୁଛନ୍ତି । ଓଟରେ ଜିନିଷପତ୍ର ଲଦି ଆସୁଛନ୍ତି ଟେହେରାନ୍‌କୁ ବ୍ୟବସାୟୀ ।

କୁହୁଡ଼ି ଛୁଡ଼ି ଚଲିଣି; ଓଟପଲ୍ଲ ପରି ମେଘସବୁ ଲଣ୍ଡା ନୁଖୁରା ପାହାଡ଼ରେ ବୁଲୁଛନ୍ତି । ଯାଯାବର ମେଘସବୁ । ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ସାଧନ ସେମାନଙ୍କର ନାହିଁ । କେବଳ ଗତି; ଗତି ମଧ୍ୟରେ ବିଲୟ । ବର୍ଷି ବର୍ଷି ନିଃଶେଷ ହୁଅନ୍ତି ନାହିଁ । ବୁଲି ବୁଲି ମରନ୍ତି ସେମାନେ ।

ପ୍ରକୃତିର କଠୋର ମୂର୍ତ୍ତି ତଳେ କରୁଣାର ନିର୍ଝର ପରି ଅକ୍ଷୟ ତୈଳ ସମ୍ପଦ ରହିଛି । ତାକୁ କେନ୍ଦ୍ର କରି ଗଢ଼ି ଉଠିଛି ସହର, ଅବଶ୍ୟ ଜଳହୀନ କାନ୍ତାରରେ ନୁହେଁ, ନଦୀ ତୀରେ ତୀରେ; ଖର୍ଜ୍ଜୁର, ଯବ୍ ସାମାନ୍ୟ ଫସଲର ସବୁଜ ରେଖା ଆକାଶରୁ ଦିଶୁଛି ।

କିଛି କାଳପରେ ଆମ ଜେଟ୍ ବଇରଟ୍‌ରେ ପହଞ୍ଚିଲା । ଲେବାନନ୍‌ର ରାଜଧାନୀ ବଇରଟ୍ ସହର, ଅର୍ଦ୍ଧେକ ପାହାଡ଼ ଉପରେ, ଅର୍ଦ୍ଧେକ ଭୂମଧ୍ୟସାଗରର ତୀରେ ତୀରେ । ମରୁଭୂମିରେ ଭ୍ରାନ୍ତ, ମଧ୍ୟାହ୍ନକାଳରେ ଶ୍ରାନ୍ତ ଦୃଷ୍ଟି ଯେପରିକି ବିଶ୍ରାମ ନେଲା ସବୁଜ ଉପତ୍ୟକା ବା ସୁନୀଳ ଜଳଧିରେ । ଜଳବାୟୁ ନାତିଶୀତୋଷ୍ଣ; ଲୋକ ସାଧାରଣଙ୍କ ବର୍ଣ୍ଣ ଗୌର, କେଶ କୃଷ୍ଣ । କଲେଜଛାତ୍ର ଜୋସେଫ ସ୍କାଫ୍ ସହିତ ଆଳାପ ହେଲା । ବି.ଏ. ପଢ଼େ । ବୃକଶି ଚ କରେ । ଯଥାସମୟରେ ଯାତ୍ରୀମାନଙ୍କୁ ଯାନରେ

ବସାଇବା ତାର କାର୍ଯ୍ୟ । ନିଜ ଦେଶର ଶ୍ରୀ, ସମୃଦ୍ଧି ବର୍ଣ୍ଣନାରେ ସେ ମୁକ୍ତକଣ୍ଠ । ତରୁଣ ବୟସରେ ଏ ଦେଶପ୍ରେମ ଓ ଉଚ୍ଛ୍ୱାସ ସ୍ୱାଭାବିକ ।

ଭୂମଧ୍ୟସାଗର ଉପରେ ଉପରେ ଆମର ଯାନ ଚାଲିଲା । ଊର୍ଦ୍ଧ୍ୱ ନୀଳ ନିମ୍ନ ନୀଳ । ମେଘର ସନ୍ଧାନ ନାହିଁ । ସୂର୍ଯ୍ୟରଶ୍ମି ଉଜ୍ଜ୍ୱଳ, ପ୍ରୀତିକର । ସମୁଦ୍ର ନିସ୍ତରଙ୍ଗ, ଗମ୍ଭୀର । ସହଯାତ୍ରୀ ଚୁପ୍ ଚାପ୍ । ତାହାଙ୍କ ମଧ୍ୟରେ ଯତ୍‌ସାମାନ୍ୟ ଚୁପ୍‌ଚାପ; ମୋ ପାଖରେ କେହି ନାହିଁ । ଏକାକୀତ୍ୱ, ଅସହାୟତ୍ୱ ବୋଧ ମଧ୍ୟରେ ହୃତ୍‌କମ୍ପୀ ଶଙ୍କା ଯାହା—ଆନନ୍ଦକୁ ବେଳେ ବେଳେ ବ୍ୟାହତ କରୁଥାଏ ।

ଭୂମଧ୍ୟସାଗର ଉପରେ ବାଲୁକାବର୍ଣ୍ଣର ମେଘସବୁ—ଗାଢ଼ ନୀଳ ମଧ୍ୟରେ ମରୁଦ୍ୱୀପ ପରି ଦିଶୁଥାଏ । ସମୁଦ୍ରର ପଟ ଉପରେ ସତେ ବା ଅଙ୍କିତ ହୋଇଛି ମାନଚିତ୍ର, କେଉଁ ଅନାବିଷ୍କୃତ ମହାଦେଶର । କେଉଁଠି ତୁଷାର ପାହାଡ଼ ଭାସିଲା ପରି, କେଉଁଠି ସମୁଦ୍ରକୁ ଫେନବନ୍ତ କଲା ପରି, ପର୍ବତ ଧାଡ଼ି ଲମ୍ବିଲା ପରି ମେଘସବୁ ବିଚିତ୍ର କାରୁକଳାରେ ବର୍ଣ୍ଣବିଭାରେ ରମଣୀୟ ଦିଶୁଥାଏ । ପ୍ରସ୍ତର ମରୁଭୂମି ସ୍ଥାନେ ସ୍ଥାନେ ଉତ୍କ୍ରାନ୍ତ । ପ୍ରଚଣ୍ଡ ସାହାରାକୁ ବାମ ପଟେ ଛାଡ଼ି ଆମେ ଆଗେଇଲୁ ସମୃଦ୍ଧ ଇଉରୋପ ଆଡ଼େ । ସାଉଦି ଆରେବିଆ ! ତାଙ୍କ ମରୁ; ଆରବ ଦେଶ ଉପରେ ଏସବୁ ମେଘ ଏକ ଚରମ ଅସତ୍ୟ । ସାଉଦି ଆରେବିଆର କିଛି ଅଂଶ ଅତିକ୍ରମ କଲାପରେ ପୁଣି ଭୂମଧ୍ୟସାଗର ପଡ଼ିଲା । ତା ପରେ ଟର୍କିର ଇସ୍ତାନ୍‌ବୁଲ୍‌ରେ ଜେଟ୍ ଓହ୍ଲାଇଲା । ଭୂମଧ୍ୟସାଗର ତୀରବର୍ତ୍ତୀ ଇସ୍ତାନ୍‌ବୁଲ୍ ସହର । ଏଠା ବିଶ୍ରାମାଗାରରେ ଦୃଷ୍ଟି ଆକର୍ଷଣ କଲାଭଳି ବହୁ ଦ୍ରବ୍ୟର ପ୍ରଦର୍ଶନୀ । ସୁନ୍ଦରୀମାନେ ବିକ୍ରୟ କରୁଛନ୍ତି ଜରିଲଗା ଜୋତା, ଚିତ୍ରିତ ବାସନ କୁସନ, ବହୁବିଧ ସ୍ୱର୍ଣ୍ଣ ରୌପ୍ୟ ଅଳଙ୍କାର । ପାଶ୍ଚାତ୍ତ୍ୟ ଧରଣରେ ଲଳିତା, ଅଳଙ୍କାର ବିକ୍ରେତ୍ରୀଙ୍କ ମୁଖରେ ଚିର ପ୍ରସ୍ଫୁଟିତ ଆଦରଣୀୟ ହସ । ଏ ଭଳି ରୂପସୀ ନ ଥିଲେ ଏ ସୁସଜ୍ଜିତ ପ୍ରଦର୍ଶନୀ ସୁନ୍ଦର ଦିଶନ୍ତା ନାହିଁ ପରା ! କିନ୍ତୁ ଏ ରମଣୀୟ ମୁକ୍ତଶ୍ରୀକୁ ସେମାନେ ଧୂମଳ କରୁଛନ୍ତି କାହିଁକି ? ସ୍ୱପ୍ନାଚ୍ଛନ୍ନ ଦୃଷ୍ଟିରେ ଚାହିଁବା, ନାଟକୀୟ

ଛାଞ୍ଚରେ କଥା କହିବାରେ ନିପୁଣ। ଏମାନେ; ବ୍ୟବସାୟରେ ଏଇ ସୌନ୍ଦର୍ଯ୍ୟର ଉପଯୋଗ କରାଯାଇଛି ।

ଇଷ୍ଟାନ୍ ବୁଲ୍ ରେ ଗୋଟିଏ ନିଗ୍ରୋ ଝିଅ ଆସି ମୋ ପାଖରେ ବସିଲା, ଦଶ ଏଗାର ବର୍ଷର ଝିଅଟି; ଫ୍ରକ୍ ଟିଏ ପିନ୍ଧିଛି, କେଶରେ ପ୍ଲାଷ୍ଟିକ୍ କଣ୍ଟା କେତୋଟି; ବାଳ ବୋଲି ମୁଣ୍ଡରେ ଯାହା ଅଛି, ପ୍ରକୃତରେ ଶୈବାଳ, ସରୁ ସୂକ୍ଷ୍ମ କଳା ସିଲକ ସୂତା ପରି ଦିଶୁଛି । ଆପଲଟିଏ ଖାଉଛି, ଯେପରି ଆମ ଆଡ଼େ ପିଲାମାନେ ପିଜୁଳି ଖାନ୍ତି । ମୋତେ ଦେଖି ପ୍ରଥମେ ଶଙ୍କିତା; ପରେ ହସର ବିନିମୟ ହୋଇଥିଲା, ବିନା ବାକ୍ୟରେ ଏଇ ପରିଚୟ କ୍ରମେ ଘନୀଭୂତ ହୋଇଥିଲା । ଲଣ୍ଡନର ଜଣେ ସାହେବଙ୍କ ପାଳିତା ସେ । ସାହେବାଣୀ ବଡ଼ ଯତ୍ନ ନେଉଥାନ୍ତି । ଏଇ ଦମ୍ପତି ସନ୍ତାନହୀନ ।

ଯାନ ବୋଧହୁଏ କିଛି ଦ୍ୱୀପ ଲଙ୍ଘନ କଲା । ଉଚ୍ଚ ପାହାଡ଼ ଥିବାରୁ ଯାନ ଉପରକୁ ଉଠୁଛି; ଯାନର ଉଠାପକାରେ ଝିଅଟି ହସି ହସି ଗଡ଼ିଯାଉଛି, ବେକରେ ସୁନା ସୂତାଟିଏ । ତଳେ ଭୂମଧ୍ୟସାଗର, କଣ ଗୋଟିଏ ଦ୍ୱୀପ ଲଙ୍ଘନ କଲୁ ଆମେ । ଇଉରୋପ ଆଡ଼କୁ ଅଗ୍ରସର ହେବା ମାତ୍ରେ ମେଘ ଘନତର ହେବାକୁ ଲାଗିଲା—ଭୂମି ଉପରୁ ବହୁ ଉଚ୍ଚସ୍ତର ପର୍ଯ୍ୟନ୍ତ । ଏହା ମଧ୍ୟରେ ଉଚ୍ଚ ପାହାଡ଼ ଲୁକ୍କାୟିତ ରହିପାରେ । ତେଣୁ ଜେଟ୍ ନିରାପଦ ସ୍ତରରେ ଉଡ଼ିବାକୁ ଲାଗିଲା । ତଳକୁ ଖସିଲାବେଳେ ଝରକା ପାଖେ ପାଖେ ମେଘର ପଟୁଆର ଛୁଟିଥାଏ, ତା ଉପରେ ରୌଦ୍ରର ରଙ୍ଗୀନ୍ ଚମକ । ତା'ର ମଧ୍ୟରେ ଦିଶିଗଲା କୃଷିକ୍ଷେତ୍ରମୟ ଅଷ୍ଟ୍ରିଆ—ତାର ରାଜଧାନୀ 'ଭିଏନା' ! ସାରା ଦେଶ ତ ଗୋଟିଏ ଛବି ପରି, ମନେ ବା ତୂଳୀରେ ଅଙ୍କିତ । ଗ୍ରାମ ସହର ହୋଇଛି, ଇଟାଘରର ଟାଇଲାଚ୍ଛାଦିତ । ଗୋଟିଏ ଇଞ୍ଚ ଜାଗା ଅରମା ଦିଶୁନାହିଁ । ଗହମ କ୍ଷେତ ନଇଲେ ସବୁଜ ଘାସ । ପ୍ରଥମ ଦୃଷ୍ଟି କ୍ଷେପରେ ହିଁ ଏ ଦେଶ ସହିତ ପ୍ରେମରେ ପଡ଼ିଗଲି । ଶସ୍ୟ କ୍ଷେତ୍ରରେ କେଉଁଠି ଅଯତ୍ନ ବା ଅବହେଳାର ସଙ୍କେତ ନାହିଁ । ଉଦ୍ୟାନ ନିର୍ମିତ କଳାତ୍ମକ ଛାଞ୍ଚରେ, ଅରଣ୍ୟ ସମ୍ବର୍ଦ୍ଧିତ ଉଦ୍ୟାନ ଉଦ୍ଯୋଗରେ ।

ବନ୍ୟତା ସଙ୍ଗେ ସମ୍ଭ୍ରାନ୍ତ ଲଳନାର ମଧୁର ସମନ୍ୱୟ ଘଟିଛି ଏଠି । ପାର୍କ, ପ୍ରାନ୍ତର, ପଥପାର୍ଶ୍ୱ; କେଉଁଠି ଅନାବନା ବା ଅପରିଷ୍କୃତ କିଛି ନାହିଁ ।

ଶୀତଳ ବାୟୁ ମର୍ମରିତ ପାଇନ୍ ବୃକ୍ଷେ ଆକର୍ଷଣ କଲା । ଦଶ ପନ୍ଦରଟି ଲମ୍ବା ନିଃଶ୍ୱାସ ନେଲି—ଅସ୍ଥି ଆଉ କର୍ମଶକ୍ତି, ସ୍ୱାସ୍ଥ୍ୟଶ୍ରୀ ଓ ଶୃଙ୍ଖଳା ଭରି ନେବା ଲାଗି ଉନ୍ମୁକ୍ତ ପ୍ରାଣରେ ମୋର ।

ଭ୍ରମଣରେ ମାତ୍ର ଦଶ ମିନିଟ୍ ରହି ବିମାନ ଜର୍ମାନୀ ଆଡ଼କୁ ଗତି କଲା । ଫ୍ରାଙ୍କ୍‌ଫୋର୍ଟରେ ଜର୍ମାନୀ ମାଟିର ରୋମାଞ୍ଚକର ସ୍ପର୍ଶ ପାଇଲି । ସାଧକର ଚରଣଧୂଳିରେ ପବିତ୍ର, ବିଜ୍ଞାନର ତୀର୍ଥ, ସାହିତ୍ୟ ସଙ୍ଗୀତ କଳାର ତ୍ରିବେଣୀ-ସଙ୍ଗମ । ଜର୍ମାନୀ ସାଧନା ସବୁଥିରେ ଫଳପ୍ରଦ, କେବଳ ରାଜ-ନୀତିକୁ ଛାଡ଼ି, ଦୁଇଟି ମହା ଯୁଦ୍ଧରେ ଅସଂଖ୍ୟ ଲୋକ କ୍ଷୟ ଘଟିଛି । ଜର୍ମାନୀର ଉଚ୍ଚାକାଂକ୍ଷା ପୂର୍ଣ୍ଣ ହୋଇପାରି ନାହିଁ, ଭଲ; କାରଣ ଦୁରାକାଂକ୍ଷା ସେ ।

ରାଜନୀତିକ ଚକ୍ରରେ ଭାରତ, କୋରିଆ, ଭିଏତ୍‌ନାମ ପରି ଜର୍ମାନୀ ଆଜି ଦ୍ୱିଖଣ୍ଡିତ । ତା ସତ୍ତ୍ୱେ ଗେଟେ, ସିଲର, ଆଇନଷ୍ଟାଇନ୍, କାର୍ଲମାର୍କସ୍, ବିଠୋଫେନ୍, ହାନିମାନ୍ ମାକ୍‌ସମୁଲରଙ୍କ ପ୍ରସୂତି ଜର୍ମାନୀ କ୍ଷୁଣ୍ଣ ହୋଇଯାଇ ନାହିଁ । ଜର୍ମାନୀ ମାନଚିତ୍ରରେ କ୍ଷୁଦ୍ର ଦିଶିଲେ ବି ବଡ଼, ତାର ଉଦ୍ଭାବନୀ ଶକ୍ତି ଓ ସାଧନା ଯୋଗୁଁ, ଏହା ତାର ଶତ୍ରୁ ସୁଦ୍ଧା ସ୍ୱୀକାର କରନ୍ତି ।

ଟ୍ରାନ୍‌ଜିଟ୍ ପାସେଞ୍ଜର ମୁଁ, ନାନା ପୁଷ୍ପରେ ଶୋଭିତ, ନିର୍ମଳ ଜଳ ଫୁଆରାରେ ଝଂକୃତ, ବିପଣି ବିଥିକାରେ ସୁସଜ୍ଜିତ ବିଶ୍ରାମାଗାରରେ ବସିଲି । ସଦ୍ୟ ବର୍ଷା, ଠାଲେ ଠାଲେ ପାଣି ଜମିଛି, ଧୌତ ଅରଣ୍ୟ, ଉଦ୍ୟାନ, ଶସ୍ୟକ୍ଷେତ୍ର ସ୍ୱଚ୍ଛ ରୌଦ୍ରରେ ମାଣିକ୍ୟମଣ୍ଡିତ । ଭଙ୍ଗାର ସଙ୍କେତ କେଉଁଠି ନାହିଁ; ଦୁଇଟି ଯୁଦ୍ଧର ରକ୍ତଛିଟା ପୋଛି ହୋଇଯାଇଛି । ପୂର୍ବର ସମୃଦ୍ଧି ଫେରି ଆସିଛି, ତଥାପି ମନେ ମନେ ଅସନ୍ତୋଷ—ଦେଶ-ଭଙ୍ଗର, ମନୋଭଙ୍ଗର ସେଇ ଦୁର୍ଦ୍ଦଶା କେବେ ଦୂର ହେବ ?

ତୁଷାରଚ୍ଛନ୍ନ ଉଚ୍ଚତର ଗିରିଶୃଙ୍ଗ—ତିରିଶ ହଜାର ଫୁଟ ଆକାଶକୁ ଉଠିଲା ଆମର ଜେଟ୍—ଆଲ୍‌ପସରେ ତୁଷାରର ତାଜମହଲ—ଉଜ୍ଜ୍ୱଳତର ସ୍ୱପ୍ନପୁରୀ ସବୁ । ଏହି ପର୍ବତ ଅତିକ୍ରମ କଲା ପରେ ଯାନ କିଞ୍ଚିତ୍ ତଳକୁ ଖସିଲା, ଯାଦୁକରୀ ମେଘ କୁହୁଡ଼ିକ ଉପରକୁ ଠେଲି ଦେଇ । କେଉଁଠି ଅଙ୍ଗୁର କ୍ଷେତ, କେଉଁଠି ନଦୀ, ହ୍ରଦ ବା ନଗର; କେତେବେଳେ ଇଂଲିସ୍ ଚ୍ୟାନେଲ୍ ଅତିକ୍ରମ କଲୁ ଜାଣି ପାରିଲୁ ନାହିଁ । ଦେଖ୍ ଦେଖ୍ ଲଣ୍ଡନ । ଶୁଷ୍କତା ବା ରୁକ୍ଷତାର ସଙ୍କେତ କେଉଁଠି ନାହିଁ । ଏଇ ଦେଶଟି ଭାରତ ପରି ଏକ ବିରାଟ ଦେଶକୁ କିପରି ଶାସନ କରୁଥିଲା ? ସାତ ସମୁଦ୍ରରେ ପଶାପାଲି ମେଲାଉଥିଲା କି କୌଶଳରେ ? ଲୁଣ୍ଠିତ ଧନରେ ଲଣ୍ଡନ ତିଆରି ହୋଇଛି । ଅସହିଷ୍ଣୁ-ମାନେ କହିଥାନ୍ତି, ପ୍ରକୃତରେ ଏହା ଗଢ଼ା ହୋଇଛି ବ୍ୟବସାୟରେ । କୂଟନୀତି କୌଶଳରେ, ପୌରୁଷରେ; ଲୁଣ୍ଠନ ଅନ୍ୟାୟ, କିନ୍ତୁ ସେଥିରେ ଲୁଣ୍ଠିତର ଖାଣ୍ଟିତାର ଅଳ୍ପ ପରିଚୟ ମିଳି ନ ଥାଏ ।

କହନ୍ତି ପରା ଲଣ୍ଡନ ଆକାଶ ସବୁବେଳେ କାନ୍ଦୁଥାଏ ! କାହିଁ ? କ୍ଷୁର ଧାର ପରି ଖରା—ଏ ଦେଶର ଏକ ସୁବର୍ଣ୍ଣ ମୁହୂର୍ତ୍ତରେ ଆସି ପହଞ୍ଚିଛୁ ମୁଁ । କୋଟିପତି, କାଙ୍ଗାଳି, ରଜା, ରେଜା ସମସ୍ତଙ୍କର ହାସ୍ୟମୁଖ, ଆକାଶର ହାସ୍ୟକୁ ଉଜ୍ଜ୍ୱଳତମ କରିଛି ।

ଆମ୍ଭି ନାହିଁ ଯେତେବେଳେ ଏ ଦେଶର ଦାସ ଥିଲୁ, ସାହେବ ଦେଖିଲେ ଗୁଣ୍ଡି ହାଉଁ ହାଉଁ ପଡ଼ୁଥିଲୁ, 'ନେଟିଭ୍' ବୋଲି ଶାସକ ଶାସିତକୁ ଘୃଣା ଚକ୍ଷୁରେ ଦେଖୁଥିଲେ । ତାହାର ସଙ୍କୋଚ ନାହିଁ, ନାହିଁ ପୁରାତନ ବୈର ବା ପ୍ରତିହିଂସା । ନିରପେକ୍ଷ ନିର୍ମଳ ମନରେ ଭାବୁଛି ଏ ଦେଶର ଅଦ୍ଭୁତ ଶୃଙ୍ଖଳାଜ୍ଞାନ, କର୍ମସାଧନା, ଆତ୍ମନିର୍ଭରଶୀଳତା ଓ ମାନବ ମର୍ଯ୍ୟାଦାବୋଧ । ନେପୋଲିଅନଙ୍କ ଦୁରାଶାକୁ ଚୂର୍ଣ୍ଣୀଭୂତ କରିଥିଲା, ସେହିପରି କାଇଜର ଓ ହିଟ୍‌ଲରଙ୍କର । ଟ୍ରାଫାଲ୍‌ଗାର୍ ସ୍କୋୟାର୍‌ରେ ନେଲ୍‌ସନ୍‌ଙ୍କ ପ୍ରତିମୂର୍ତ୍ତି ତଳେ ଲେଖା ହୋଇଛି—England expects that everyman will do his duty.

ପ୍ରକୃତରେ ପ୍ରତ୍ୟେକ ଇଂରେଜ ସ୍ୱକର୍ତ୍ତବ୍ୟ ସାଧନ କରନ୍ତି, ଇଂଲଣ୍ଡ ହୋଇଛି ପୃଥିବୀର ଏକ ଶ୍ରେଷ୍ଠ ଦେଶ ।

ଲଣ୍ଡନ ବନ୍ଦର, ଏକାବେଳକେ ଏକଶତ ଜାହାଜ ଏଠି ଆଶ୍ରୟ ଗ୍ରହଣ କରିପାରନ୍ତି । ଲଣ୍ଡନ ସହର, ହ୍ୱିଟ୍‌ଲରଙ୍କ କବିତାମାନ୍ତ ଆମ୍ଭମାନଙ୍କୁ ଯେ ଭୂଚ୍ଛୀକୃତ କରିଥିଲା; ଆଜିରେ, ଡିକେନସ୍, ଜନସନ୍, ଟେନିସନ୍‌ଙ୍କର ଲଣ୍ଡନ ସହର ଉପରେ ଏକ ବିହଙ୍ଗମ ଦୃଷ୍ଟି ପକାଇଲି । ଟେମ୍‌ସ୍ ନଦୀ, ପାର୍ଲିମେଣ୍ଟ, ଓ୍ୱେଷ୍ଟମିନଷ୍ଟର ଆବବେ, ପିକାଡେଲି ସର୍କସ୍, ବକିଂହାମ୍ ପାଲେସ୍ ଅତିକ୍ରମ କଲି କି ନାହିଁ, ଜାଣେ ନାହିଁ ।

ବ୍ୟୋମ ବନ୍ଦରରୁ ଲଣ୍ଡନର ବିଶାଳତା ବା ବୈଶିଷ୍ଟ୍ୟ କିଛି ଜଣାଯାଉ ନାହିଁ । ଜଣେ ଭାରତୀୟ ବନ୍ଧୁ ଡ୍ୟୁଟିଫ୍ରି ମାର୍କେଟରୁ ତିନି ବୋତଲ ହ୍ୱିସ୍କି କିଣିଲେ, ମୋତେ ଅଯାଚିତ ଉପଦେଶ ଦେଲେ; ଦର ସୁବିଧା ପଡ଼ିବ, ଆପଣ ମଧ୍ୟ ନିଅନ୍ତୁ । ଇଂରେଜ ହ୍ୱିସ୍କିର ସୁନାମ ଅଛି ।

କହିଲି—ସ୍ତ୍ରୀକୁ ଧରିଲେ ମୋର ଦୁର୍ନାମ ହିଁ ହେବ । ପକେଟ ବି ଶୂନ୍ୟ ହୋଇଯିବ ।

କେତେ ଶସ୍ୟକ୍ଷେତ୍ର, ଉଦ୍ୟାନ ସୌଧର ଆକାଶ, ମୁକ୍ତ ଏହାର ବାୟୁ, ଶୋଷି ନେଲି ମନ ଭରି । ପ୍ରାଚୀନତାର ପୂଜାହାରୀ, ଆଧୁନିକ-ତାରେ ଅଗ୍ରଯାତ୍ରୀ, ବ୍ୟବସାୟୀ, ବିଜ୍ଞାନୀ, କଳାକାର ପୁଣି ସାହିତ୍ୟିକଙ୍କ ଦେଶ ଇଂଲଣ୍ଡ ଆହା ମୁହୂର୍ତ୍ତକେ ଲୁଚିଗଲା; ତାଆଣିଆ ଟେର୍ ଓ ଘନ ମେଘ ମଧ୍ୟରେ ଆମେ ହଜିଗଲୁ ।

ଦିଲ୍ଲୀରୁ ପାହାନ୍ତିଆରେ ବାହାରିଥିଲୁ । ଆରବ ସାଗରରେ ସକାଳ—ନିଉୟର୍କରେ ସନ୍ଧ୍ୟା, ଦିଲ୍ଲୀରୁ ନିଉୟର୍କ ଲାଗିଲା ଗୋଟିଏ ଦିନ । ମାତ୍ର ସେ ଦିନଟିର ଦୀର୍ଘତା ୨୮ ଘଣ୍ଟା । କେବଳ ଲଣ୍ଡନରୁ ନିଉୟର୍କ ଆସିବାକୁ ଲାଗିଲା ସାତ ଘଣ୍ଟା । ଆଟଲାଣ୍ଟିକ୍ ମହାସାଗର

ଉପରେ ଆମର ଗତି, ଜଳ ଉପରେ ସ୍ୱଚ୍ଛମେଘର ଏକ ଚଟାଣ, ଏକା ଦୃଶ୍ୟ; ତେଣୁ ଏ ଦୀର୍ଘଯାତ୍ରା ବଡ଼ କ୍ଳାନ୍ତିକର ଲାଗେ ।

ଆଟଲାଣ୍ଟିକରୁ ଭୂସ୍ୱର୍ଗର ଆକାଶ ଉପରକୁ ଆସିଲୁ ଆମେ । ତାର ସୂଚନା ମିଳିଲା ବନ୍ଦ, ବନ୍ଦ ଖଦ୍ୟୋତରେ; କୌଣସି ନଗରର ଆଲୋକମାଳା; ନିଉୟର୍କ ! ମନରେ ଉଦ୍‌ବେଗ, ଶଙ୍କା ବି ; ଏତେ ଭିଡ଼ରେ ଏକାନ୍ତ ଏକାକୀ; ଧନଜନ ପୂର୍ଣ୍ଣ ରାଜ୍ୟରେ କିପରି ଏକ ଶୂନ୍ୟତା-ବୋଧ ହୃଦୟକୁ ପଙ୍ଗୁ କଲାପରି ଲାଗିଲା ।

ପାସ୍‌ପୋର୍ଟ, ଭିସା, କଷ୍ଟମ୍‌ସ୍ ନେଇ ଅଳ୍ପ ସମୟରେ ଶେଷ ହେଲା । ସୁଟ୍‌କେସଟି ବିମାନ ବନ୍ଦରରୁ ଯନ୍ତ୍ର ସାହାଯ୍ୟରେ ପାଖରେ ଆସି ପହଞ୍ଚି ଯାଇଥିଲା । ଜଣେ ନିଗ୍ରୋ ସୁଟ୍‌କେସ୍‌ଟି ମୋ ହାତରୁ ନେଇଯାଇ ଟାକ୍‌ସିରେ ରଖିଦେଲା; କହିଲା—କଣ ଦେବ ଦିଅ; ତାକୁ ଡଲାରଟିଏ ଦେଲି । ଗୋଟା କେତେ କ୍ରିସ୍‌ମାସ୍, ପାଇନ୍ ଗଛ ଆଖିରେ ପଡ଼ିଲା; ଅଗଣିତ ଆଲୋକମାଳା, ସୁପ୍ରଶସ୍ତ ପଥ, ଅସଂଖ୍ୟ ଯାନ ବାହନର ପ୍ରଚୁରଗତି ନିଉୟର୍କ ପ୍ରତି ମନରେ ଏକ ସମ୍ଭ୍ରମ ଆଣିଲା, ବିଶାଳତା ଓ ପ୍ରଚଣ୍ଡ ପ୍ରବାହର ଶଙ୍କା ମଧ୍ୟରେ । ବୋଧ ହେଲା—ଏଠା ସହଜ ପାଦ ପକାଇ ଚାଲିପାରିବି ନାହିଁ, ଏଠାର ଚମକ, ଚାତୁରୀ, ଛଳନାରେ ହେବ ପଥହରା ।

ଟାକ୍‌ସି ହୋଟେଲ୍ ଇଣ୍ଟରନ୍ୟାସନାଲ୍‌ରେ ପହଞ୍ଚାଇ ଦେଲା । ଚାର୍ଜ ଅଗ୍ରୀମ; ରାତିକୁ ୧୭ ଡଲାର ମାନେ ଟ୧୨୦ଙ୍କା; ମୋ ସାତ ପୁରୁଷରେ ଏୟା କେହି ଖର୍ଚ୍ଚ କରିନାହିଁ । ଜୀବନରେ କେତେ ଥର ମୁଢ଼ି କି ଚୂଡ଼ା ପୋଷେ ପାଣିରେ ପକାଇ ଗଛମୂଳେ ପଡ଼ି ଯାଇଛୁ । ଦୁଇ ପଇସା ଦକ୍ଷିଣା ଲାଗି ଦି'କୋଶ ଧାଇଁଛୁ । ସେ ଘଟଣା ଆଖି ଆଗରେ ନାଚିଗଲା, ଭାରତ ସରକାର ଯେଉଁ ୪୨ ଡଲାର୍ ଦେଇଥିଲେ ତା ଦୁଇଦିନ ଖାଆଣି ଓ ରହଣି କି ନଅଣ୍ଟ । ବିକଟ ଦାରିଦ୍ର୍ୟ ବୋଧ ଆସିଲା, ନିଉୟର୍କର ବିପୁଳ ସମୃଦ୍ଧି ମଧ୍ୟରେ ଉଜ୍ଜ୍ୱଳତମ ଆଲୋକ ମଧ୍ୟରେ ବୋଧହେଲା—ଯେପରି କି ଚାରିଆଡ଼େ ଅନ୍ଧକାର ଘୋଟି ଯାଇଛି ।

ଆଜ ଦିନଟି ବଡ଼ ବିଚିତ୍ର । ଷ୍ଟେଡେଗନ୍‌ରେ ମୁହଁଧୁଆ, ବରନ୍‌ରେ ଦାନ୍ତଘଷା, ଫ୍ରାଙ୍କ୍‌ଫୋର୍ଟ୍‌ରେ ଖିଅର, ଲଣ୍ଡନରେ ପାଇଖାନା, ନିଉୟର୍କରେ ସ୍ନାନ ! କିନ୍ତୁ ଭୋଜନ ଆକାଶରେ, ମେଘ ଉପରେ, ଆହାରେ ଜୀବନ ! ଗୋଟାଏ ଦିନରେ କେତେ କଥା ଘଟିଗଲା ।

ହୋଟେଲରେ ମୋ କୋଠରୀରେ ଦୁଇଖଣ୍ଡ ବହି ଅଛି । ଖଣ୍ଡିଏ ହୋଲି ବାଇବଲ; ଏଠା ଲୋକେ ବାଇବଲ୍ ପଢ଼ନ୍ତି ? ବିଜ୍ଞାନ ଆଜି ବାଇବଲ; ଗୋଟିଏ ମନରେ ଦୁଇଟିର ସାମଞ୍ଜସ୍ୟ ଆସେ କିପରି ? ଗୋଟିଏ ଇହଲୋକର ସମୃଦ୍ଧି, ଅନ୍ୟଟି ମୁକ୍ତି ଲାଗି । କିନ୍ତୁ ଏ ଦେଶବାସୀ ମୁକ୍ତି କାହିଁକି ଲୋଡ଼ିବେ ? ବରଂ ପୁନଃ ପୁନଃ ଜନ୍ମଲାଗି ପ୍ରାର୍ଥନା କରିବା ଉଚିତ, ଅବଶ୍ୟ ଏଇ ଦେଶର ସମୃଦ୍ଧି ମଧ୍ୟରେ । ମୁକ୍ତି ପୃଥିବୀଲୋକର ଉଚ୍ଚାକାଂକ୍ଷା ନୁହେଁ, ନୋହିପାରେ ।

ଦାତାକର୍ଣ୍ଣଙ୍କର ଦେଶ ଏ । ସେଦିନ ଅଧ୍ୟାପକ ମହେଶ୍ୱର ଦାଶ କହୁଥିଲେ, ଆମେରିକା ବଳୀର ରାଜ୍ୟ, ପାତାଳପୁର; ବାମନ ବଳୀକୁ ଏଇ ପାତାଳକୁ ଚାପି ଦେଇଥିଲେ, ଦାନର ପୁଣ୍ୟଫଳ ଭୋଗ କରିବା ଲାଗି । ବଳିପୁର ସକଳ ସମ୍ପଦରେ ଭରା, ଯେତେ ଦେଲେ ସରେନାହିଁ, ସରି ଯିବାର ଶଙ୍କାନାହିଁ ଏ ଦେଶର ଦାତାଙ୍କ ମନରେ । 'ଅନ୍ନଦାନ ମହାପୁଣ୍ୟ' ଅର୍ଜନ କରୁଛନ୍ତି ସେ ।

କେତେକ ଦେଶର ପ୍ରବଚନ ମଧ୍ୟରେ ମିଥ୍ୟା ଅଛି—ଗରିବର ବଡ଼ଲୋକ ଦେଖେଇ ହେବା ଭାବ ଅଧିକ ।

ପର ଲୁଗା ପିନ୍ଧି ଯାତକୁ ଯାଏ
ପଗୁଚିଲେ ମୁଣ୍ଡ ଟାଙ୍ଗାରୁ ଥାଏ ।

କହୋ, ତୁମେ ତ ବଡ଼ଲୋକ, ହାତ ପତଉଛ କାହିଁକି ? ଦେଇ ପକ୍ତେ ଗୁଣ୍ଡିପତ୍ର ନେଉଁଏ କି ନାସ ଟିପେ ପାଇଁ ।

ଯେ ଯେତେ ବଡ଼ ତାର ଦେଖେଇହେବା ଭାବ ସେତେ କମ; ବଡ଼ଲୋକ ନିଜ ପାଟ ଖଦି, ସୁନା ମୁଦିକ ପ୍ରିନ୍ଧିବେ କି ? କିନ୍ତୁ ଗରିବ ମନ

ସେଇଠି—ଦେଖ, ଆମେ କେମିତି ପିଛିରା ! ମୃତ ନଥାଇ ସେ ଗୋଲ୍ଡ କରୁଛି ।

ସରଳ ଜୀବନ, ଉଚ୍ଚ ଚିନ୍ତା ଭାରତର ଆଦର୍ଶ । କିନ୍ତୁ ବାସ୍ତବ ଜୀବନ ଭିନ୍ନ । ନାନା ଆଦର୍ଶର ଦୁହାଇ ଦେଇ ଚତୁରଙ୍ଗ ମାରି ଭଣ୍ଡାମି ସାଜିବାରେ କି ମହତ୍ତ୍ୱ ରହିଛି ? ପର ପଇସା ଆଣି ଆଖି ବୁଜି ଖର୍ଚ୍ଚ କଲୁ ଆମେ । ଦୁର୍ନୀତିକ ଶ୍ରେଷ୍ଠ କଥା ମନେ କଲୁ । ଶେଷକୁ ସେଇ ଆମକୁ ଗ୍ରାସ କଲା । ଦଳେ ଅତି ଧନୀ, ଅଧିକାଂଶ ଅତି ଗରିବ ହୋଇଗଲେ । ଚାକିରି କିନାର ଚିନ୍ତା ସବୁବେଳେ । ଏଇ କିଂକର୍ତ୍ତବ୍ୟବିମୂଢ଼ଦଳ କି ଦେଶଗଠନ କରିବେ ? ଏଇ ବୁଭୁକ୍ଷିତଦଳ ଦେଶଲାଗି ଆତ୍ମବଳି ଦେଇ ପାରିବେ ?

'Highways to Heaven' ଆଉ ଖଣ୍ଡିଏ ପୁସ୍ତକ; ଲୋକଙ୍କୁ ଧର୍ମପ୍ରାଣ କରିବା ଲାଗି ଉଦ୍ଦିଷ୍ଟ । ସ୍ୱର୍ଗକୁ ରାଜପଥ ନିର୍ମାଣ କରିଛି ଧର୍ମ । ସେଠା ହାଇୱେରେ ଧର୍ମପ୍ରାଣ ବ୍ୟକ୍ତି ମଟର ଚଳାଇ ସିଧା ଯାଇ ପାରିବ; ପାପୀ ପାଇଁ ନିଶୁଣିଟିଏ ମଧ୍ୟ ନାହିଁ । କିନ୍ତୁ ଏଠା ଲୋକେ ସ୍ୱର୍ଗକୁ ଯିବେ କାହିଁକି ? ଏଠି ତ ସୁଧାଭୋଗ ହୋଇ ପାରୁଛି । ଓଡ଼ିଆର ସ୍ୱପନ ଥିଲାବେଳେ ସେ ଜଗନ୍ନାଥଙ୍କ ଲାଗି ଖଞ୍ଜିଥିଲା ୬୪ ଭୋଗ । ଆଜି ଆମେରିକା କୋଟି କୋଟି ଦେବତାଙ୍କ ଲାଗି ଭୋଗ ଖଞ୍ଜୁଛି । ଏଇ ଜଗତ ତାର ଜଗନ୍ନାଥ । ଏହି ଦେଶକୁ ସେ ସ୍ୱର୍ଗ କରିଛି ।

ସାନଭାଇ ଉଦୟନାଥ ପାଖକୁ ଟ୍ରଙ୍କ୍ କରିଛି—'Please collect a call' କହି । ତା ମାନେ ଏ ବାବଦକୁ ଯାହା ଖର୍ଚ୍ଚ ପଡ଼ିବ ସିଏ ଦେବ । ଦେବାର ଅବସ୍ଥା ମୋର ନାହିଁ । ଏକ ଘଣ୍ଟା ଅପେକ୍ଷା କଲି । କୌଣସି ଉତ୍ତର ଆସିଲା ନାହିଁ । ସେତେବେଳକୁ ରାତି ସାଢ଼େ ଗୋଟାଏ । ଦୁଇଟାବେଳେ ରେସ୍ତୋରାଁ ବନ୍ଦ ହୋଇଯିବ । ସତରେ ମୁଁ ଗଲାବେଳକୁ ବନ୍ଦ ହୋଇ ଆସିଲାଣି । କଣ ଖାଇବାକୁ ମାଗିବି ? କୁକୁଡ଼ା ମାଂସ ? କିନ୍ତୁ 'cock' 'hen' ମନେ ପଡ଼ିଲା, 'ଚିକେନ୍' ଜୁଟେ । କିଛି ସ୍ଥିର କରି ନ ପାରି ଛେନାର ସ୍ୟାଣ୍ଡୱିଚ୍ ଓ ଗ୍ଲାସେ ଦୁଧ ଖାଇଲି । ଏତିକି ଲାଗି ଖର୍ଚ୍ଚ ହେଲା ଦଶ ଟଙ୍କା !

ଗତିକ ନିଦ ଲାଗି ଦେବାକୁ ପଡ଼ିଲା ୧୨୦ ଟଙ୍କା । ତିନି ଦିନର ଅନିଦ୍ରା ପରେ ଏ ମୂଲ୍ୟ ଅବଶ୍ୟ ଖୁବ୍ ଅଧିକ ନୁହେଁ । ମୋତେ ଶୋଇବାକୁ ହେବ । କିନ୍ତୁ ଧାରେ ବଧୁଳ କୋମଳ ଶଯ୍ୟା, ଏଥିରେ ନିଦ ହେବ କିପରି ? ଜଡ଼ବେଗର ସୀମା ନାହିଁ । କିନ୍ତୁ ଏତିକ ଟଙ୍କା ନଷ୍ଟ କରିବାର ଇଚ୍ଛା ମୋର ନାହିଁ । କେତେ · କଣ ଭାବୁ ଭାବୁ କେତେବେଳେ ନିଦ ଆସିଗଲା ଜାଣେନାହିଁ । ସମୟ ଜାଣିବା ଲାଗି ପଦାକୁ ଗଲି । ନ ଆ ଘଣ୍ଟା ଆଣିବା ଆଶାରେ ପୃଚୁଣାଟିକୁ ଘରେ ଛାଡ଼ିଆସିଛି ।

ସାତଟାବେଳେ ବିମାନ ବନ୍ଦରକୁ ଯିବାକୁ ହେବ; ଏବେ ପାଞ୍ଚଟା । ଘଣ୍ଟା ଦେଖି ଫେରିଲାବେଳକୁ ଦୁଆରଟି ବନ୍ଦ । ଚାବି କୋଠରୀ ଭିତରେ । କାହାକୁ ଡାକିବ ? ଲୁଙ୍ଗିଟା ପିନ୍ଧିଚି, କୁଆଡ଼େ ବା ଯିବି ? ମୋ ନମ୍ବର କଣ ୫୧୮ ନୁହେଁ ? ଆଉ କାହା ଦୁଆରେ ଡାକୁଚି ? ଯଦି ଭିତରେ ଦମ୍ପତ୍ତି ଥାନ୍ତି, କଣ ଭାବିବେ ? ଶୋଇଛନ୍ତି ଶେଷ ପ୍ରହରରେ, ସ୍ପର୍ଶାଳାପ, ମଦ୍ୟପାନ ପରେ । ଏଇ ବେଶରେ ଅବେଳରେ କାହା ଦୁଆରେ ଡାକିବା କି ଅଭଦ୍ରତା ?

'Open Sesame'ଟି ମନେ ପଡ଼ିଲା ନାହିଁ । ସେତେବେଳର କାସିମ୍ ପରି ମୋ ପାଟିରୁ ଛେପ ଶୁଖିଗଲା । ବିକଳ ହୋଇ କହିଲି— ଠିକମେ ଡକମ୍, ସିକ୍‌ମେ କକମ୍ ! ଠିକ୍ ସମୟରେ ଯଦି ବିମାନ ବନ୍ଦରରେ ନ ପହଞ୍ଚି ପାରେ ମୋର କି ଅବସ୍ଥା ହେବ ? ହଠାତ୍ ଡାକୁ ପକ୍ଷି କଣ ମୋ ଘରକୁ ବନ୍ଦ କରିଦେଲା ? କାସିମ୍ ବିକଳ ହେଉଁ ହେଉଁ ଡାକୁ ଆସି ପହଞ୍ଚି ଯାଇଥିଲେ । କିନ୍ତୁ ମୋ ପାଖେ ଈଶ୍ୱର ପ୍ରେରିତ ବନ୍ଧୁ ପହଞ୍ଚିଲେ ଜଣେ ବନ୍ଧୁ ।

"ମହାଶୟ, ବଡ଼ ଦୁରବସ୍ଥାରେ ପଡ଼ିଛି, ସାତଟାରେ ମୋତେ ବିମାନ ବନ୍ଦରକୁ ଯିବାକୁ ହେବ ।" ବନ୍ଧୁ ଲିଫ୍‌ଟରେ ଯାଇ ହୋଟେଲ ମ୍ୟାନେଜରଙ୍କୁ ଡାକି ଆଣିଲେ । ମୋ କୋଠରୀଟି ଖୋଲି ଦେଲା । ଶିଅର କାଆର ହୋଇ ଗରମ୍ ପାଣିରେ ଗାଧୋଇଲି । ଖାଇବାକୁ ସାହସ ହେଲା ନାହିଁ; ପକେଟ୍ ଶୂନ୍ୟ ହୋଇ ଆସୁଛି । ଯାନ ଛାଡ଼ିବାର ଦେଢ଼ଘଣ୍ଟା

ଆଗରୁ ଘୁଲିଗଲା ଷ୍ଟେସନ । ଟାକ୍ସି ବାଲା ନେଲା ଦୁଇ ଡଲାର । ଶଙ୍କା—ପାଣ୍ଠି ଚଳ ଶେଷ ହୋଇଗଲେ କଣ କରିବ ? 'ଭଗବାନ୍ ଚଳାଇବେ !' ଭଗବତ୍‌ବିଶ୍ୱାସୀ ପକ୍ଷରେ ଭୟ ଏକ ପାପ । ଅଶ୍ୱାସନା ମିଳିଲା । ତାପରେ ବନ୍ଦରରେ ଗୋଟିଏ ଡଲାର୍ ଭଙ୍ଗାଇ କଫେ ରୁ' ଖାଇଲି । ଟ୍ରାଭେଲର୍‌ସ୍ ଚେକ୍‌ରେ ଦସ୍ତଖତ କରୁକରୁ କାଳି ସରିଗଲା । ଦସ୍ତଖତଟି ଶେଷ କରିବା ଲାଗି ଦୋକାନୀକୁ କଲମ ମାଗିଲି । ତା ପାଖରେ ନାହିଁ, ଝିଅମାନଙ୍କ ପାଖେ ନାହିଁ । ପଇସା ଦେବ କେମିତି ? ନିଜ ଉପରେ ବହୁତ ରାଗିଲି । ଚା ନ ଖାଇଥିଲେ କଣ ଏପରି କ୍ଷତି ହୋଇଥାନ୍ତା ? ବହୁ ଖୋଜାଖୋଜିରେ ପେନ୍‌ସିଲ୍ ବନ୍ଧୁ ଜଣେ ଯୁଟିଲେ । ଚେକ୍ ଭଙ୍ଗାଇଲି ।

## ଏଣ୍ଡ୍ରିଆନା ପଲିସ୍-ବ୍ଲୁମିଂଟନ—

ନିଉୟର୍କ'ରୁ 'ଏଣ୍ଡ୍ରିଆନା ପଲିସ୍' ଗଲି, 'TWA'ର ଏକ ଜେଟରେ । ଚତୁର୍ଦ୍ଦିଗ ଇନ୍ଦ୍ରଧନୁମୟ ଦିଶୁଛି କାହିଁକି ? ଆକାଶ ନିର୍ମଳ; ଝଡ଼ବର୍ଷା ଏକାବେଳକେ ନ ହେଲେ ଇନ୍ଦ୍ରଧନୁ ପଡ଼ିବ କିପରି ? ବ୍ୟୋମ-ଯାନର କାଚର କାରସାଦି, ପ୍ରକୃତ ରଙ୍ଗ ଲୁଚିଲ ସମୁଦ୍ର, ଆକାଶ, ନଗର, ଜନପଦକୁ ସପ୍ତରଙ୍ଗରେ ରଞ୍ଜିତ କରିଛି ।

ଏୟାର ହୋଷ୍ଟେସ୍‌ଙ୍କ ହାସ୍ୟୋଜ୍ଜ୍ୱଳ ମୁଖ ଓ ସାହାଯ୍ୟକାରୀ ମନୋଭାବ ବ୍ୟୋମଯାତ୍ରାକୁ ସୁଖମୟ କରିଥାଏ । ବିରକ୍ତିରେ ବ୍ୟବସାୟ ଚଳେ ନାହିଁ । ତେଣୁ କମ୍ପାନୀକୁ ଲୋକପ୍ରିୟ କରିବା ଚେଷ୍ଟାରେ ମଧୁର ସୌଜନ୍ୟ ପ୍ରକାଶ ପାଉଥାଏ । ଝାମ୍ପୁର ମୁଣ୍ଡୀଏବୁ; ବହୁ ଯତ୍ନରେ କେଶର ଅଯତ୍ନ ସୌନ୍ଦର୍ଯ୍ୟ ସୃଷ୍ଟି କରା ହୋଇଛି । ଫୁର୍ତ୍ତିର ସୀମା ନାହିଁ; କ୍ଲାନ୍ତିର ସଙ୍କେତ ମଧ୍ୟ ନାହିଁ । ଚଢ଼ିରହିଥିଲା । ଆରକ୍ତ ଓଷ୍ଠ ହଫାଳରେ ସ୍ୱଚ୍ଛ ଦନ୍ତ—ହାସ୍ୟରେ ଦନ୍ତ ବା ଅଧର କିଏ କାହା ଦ୍ୱାରା ସୁନ୍ଦରତର ହୁଏ, କହିବା କଷ୍ଟକର ।

ଚିତ୍ତବିନୋଦନ ଲାଗି ଏଥି ଯାନରେ ଟେଲିଭିଜନର ବ୍ୟବସ୍ଥା ରହିଛି । ମୋର ପ୍ରଥମ ଦେଖା—'କଳା ହରିଡ଼ର କାହାଣୀ ।' ଗୋଟାଏ କାଳିଆ ଭୁଆ ଗୃହସ୍ଥକୁ ଖୁବ୍ ହଇରାଣ କରିଥିଲା । ଗୃହସ୍ଥ ତାକୁ ଧରି

କୌଣସି ଦୂରବର୍ତ୍ତୀ ସ୍ଥାନରେ ଲୁଚିଦେବା ଲାଗି ଚେଷ୍ଟା କଲେ, କିନ୍ତୁ ଧରି ପାରିଲେ ନାହିଁ । ଗୃହିଣୀଙ୍କ ଅଯାଚିତ ସ୍ନେହ ଓ ଗୃହସ୍ଥଙ୍କ ଅନାଦର ଓ ଘୃଣା ମଧ୍ୟରେ ସେ ଲୁଚକାଳି ଖେଳୁ ଖେଳୁ ଦିନେ ଜଣେ ଡକେଇତ ଗୃହରେ ପ୍ରବେଶ କଲା । ସେ ଚେଷ୍ଟା କରିବାବେଳେ ଗୃହସ୍ଥଙ୍କ ନିଦ୍ରା ଭଙ୍ଗ ହେଲା ଓ ତାକୁ ସହିତ ଧସ୍ତାଧସ୍ତି ଲାଗିଲା । ତାକୁ ଗୃହସ୍ଥକୁ କାବୁ କଲାବେଳେ ଏଇ ବିଲେଇଟି କେଉଁଠି ଥିଲା ଆସି ଡକେଇତକୁ ସାମ୍ନାରୁ କାମୁଡ଼ି ପକେଇଲା, ସେ ପ୍ରାଣ ବିକଳରେ ପଳାଇଗଲା । କ୍ରୋଧ ଓ ଘୃଣା ମଧ୍ୟରେ ଦୂରେଇ ରହିଥିଲା, ଆଜି ଶ୍ରଦ୍ଧା ଓ ପ୍ରୀତିରେ ସେଇ ବିରାଡ଼ି ଗୃହସ୍ଥଙ୍କୁ ଧରା ଦେଲା, ଏଇ ଗୃହରେ ତାର ଯେ ଏକ ପ୍ରୟୋଜନୀୟ ଭୂମିକା ଅଛି, ତାହା ପ୍ରମାଣ କରିଦେଲା ।

ଦିନ ଏଗାରଟାବେଳେ ଏଣ୍ଡ୍ରିଆନା ପଲ୍ଲୀରେ ପହଞ୍ଚିଲି । ଏଠୁ ମୋତେ ବ୍ଲୁମିଂଟନ ଯିବାକୁ ହେବ । ଦୂରତା ବେଶୀ ନୁହେଁ, ବସ୍‌ରେ ଯାଇ ହୋଇଥାନ୍ତା । କିନ୍ତୁ ମୁଁ ପ୍ଲେନ ଟିକେଟ୍ କିଣିଛି । ଅଗତ୍ୟା ସାତ ଘଣ୍ଟା ଅପେକ୍ଷା କରିବାକୁ ହେଲା । ଟିକେଟ୍ ଚେକର ଜଣେ ଯୁବତୀ, ସ୍ୱର୍ଣ୍ଣକେଶୀ ସନ୍ଧ୍ୟା ପରି ବର୍ଣ୍ଣୋଜ୍ଜ୍ୱଳ ଶ୍ରୀ; ସେ ଫୋନ୍ ସମ୍ପର୍କ କରାଇ ଦେଲା ମି. ରାଓଙ୍କ ସହିତ । ମି. ଶ୍ରୀକର ରାଓ ଉଦୟପୁର ଶ୍ୱଶୁର । ପୂର୍ବ ବ୍ୟବସ୍ଥା ମତେ ମୋର ଶିକାଗୋରେ ପହଞ୍ଚିବାର କଥା । ମୁଁ ଫୋନ ନ କରିଥିଲେ ଉଦୟ ଅଯଥା ଶିକାଗୋ ଯାଇ ଫେରିଥାନ୍ତା ।

ଭାରତ ପରି ଏଠି ମଧ୍ୟ ସ୍ୱପ୍ରଦେଶ ପ୍ରେମ ଗୌରବ ପ୍ରକାଶ କରିବାର ଦେଖାଯାଏ । ତେବେ ତାର ପ୍ରକୃତି ଭିନ୍ନ । ଭାଷା ସମସ୍ୟା ଏଠି ନାହିଁ । ଏ ପ୍ରଦେଶରୁ ଏକ ଅଞ୍ଚଳକୁ ନେଇ ଅନ୍ୟ ପ୍ରଦେଶରେ ମିଶାଇବାର ପ୍ରଶ୍ନ ଉଠେ ନାହିଁ । ଶିଳ୍ପ ବାଣିଜ୍ୟରେ ପ୍ରତିଯୋଗିତା ହୁଏ, ନବ ଉଦ୍‌ଭାବନରେ ଗୌରବ ଅନୁଭବ କରିବାର ଦେଖାଯାଏ । ବିମାନ ବନ୍ଦରରେ ଏଣ୍ଡ୍ରିଆନା ରାଜ୍ୟରେ ପ୍ରସ୍ତୁତ ଏକ ନୂତନ ଧରଣର ମଟର ଗାଡ଼ି ଓ ମଟରବୋଟ୍ ପ୍ରଦର୍ଶିତ ହୋଇଅଛି । ଏହାର ବିଜ୍ଞାପନ ସାହିତ୍ୟ ସ୍ତରକୁ ଉନ୍ନୀତ ହୋଇଅଛି ।

ରେଷ୍ଟୁରାଣ୍ଟରେ ଯେଉଁ ମେନୁ ମିଳିଲା ବୁଝିବା କଷ୍ଟକର । ନିରାମିଷ ମିଲ୍ ବୋଲି କିଛି ନାହିଁ । ସାଲାଡ୍, ସ୍ୟାଣ୍ଡୱିଚ ଓ ମେଣ୍ଢା ମାଂସରେ ଲଞ୍ଚ ଶେଷ ହେଲା । କଣ୍ଟା ଛୁରୀର ତ ଅଭ୍ୟାସ ନାହିଁ । ଛୁରୀରେ କାଟିଲାବେଳେ ସାମାନ୍ୟ ଭୁଲରେ ସବୁ ଜିନିଷ ଝଣଝାଣ ତଳେ ପଡ଼ିବ । କଣ ହେଲା ? ସମସ୍ତେ ଚାହିଁବେ । ଛିଃ, ମୋତେ ଏ ମତ ଗାଳି ଦେଲେ ଦୁଃଖ ନାହିଁ । କାଳେ କହିବେ—ଘରଣ୍ଟସ୍ତ ! ତା ଅପେକ୍ଷା ହାତରେ ଖାଇବା ଭଲ । ଆମେରିକା ଉଦାର । କିଏ ହାତରେ କି କଣ୍ଟାରେ ଖାଉଛନ୍ତି, ସେଥିକି ତାର ଦୃଷ୍ଟି ନାହିଁ । କେତେକ ବିଦେଶୀ ହାତରେ ଚଳେଇଥାନ୍ତି, ଦେଖିଲି ।

ଆଉ ଚାରି ପାଞ୍ଚ ଘଣ୍ଟା କଟାଇବି କିପରି ? ବନ୍ଦରରେ ନାନା ଧର୍ମ ସାହିତ୍ୟ ସୁରକ୍ଷିତ । ପଢ଼ୁ ପଢ଼ୁ ଦୁଇ ତିନୋଟି କଥା ମନକୁ ଛୁଇଁଲା ।

“ସଂଘର୍ଷ, ଜଞ୍ଜାଳ, ତିକ୍ତତା ନିତି ଆମ ସୁଖରେ ବ୍ୟାଘାତ ଆଣେ, ଶାନ୍ତିବିନଷ୍ଟ କରେ । ସେସବୁ ହସି ଉଡ଼ାଇଦେବା ଉଚିତ । ପ୍ରତିକୂଳ ପରିସ୍ଥିତିର ଉଜ୍ଜ୍ୱଳତର ଦିଗ ଦେଖିବା ଅଭ୍ୟାସ ଆବଶ୍ୟକ । ଏହା ନୈରାଶ୍ୟ, ନିଜ ପ୍ରତି ଅନାସ୍ଥା ବିରୁଦ୍ଧରେ ଏକ ଦୃଢ଼ ଦୁର୍ଗ ପରି କାର୍ଯ୍ୟ କରେ ।”

“ନିର୍ଜନତା ଈଶ୍ୱରଙ୍କ ସହିତ ଆଳାପ କରିବା ଲାଗି ଆମକୁ ସୁଯୋଗ ଦିଏ । ମନଦେଇ ଶୁଣିଲେ ଆମେ ଈଶ୍ୱରଙ୍କ କଣ୍ଠସ୍ୱର ଶୁଣିପାରୁ । ଆମର ପ୍ରତ୍ୟେକ ଚିନ୍ତା, କଥା ଓ କର୍ମରେ ଈଶ୍ୱର ଆମକୁ ପରିଚାଳିତ କରନ୍ତି । ନିର୍ଜନତାର ଏକ ସ୍ୱତନ୍ତ୍ର ସ୍ୱର ରହିଛି; ସେ ସ୍ୱର ପ୍ରକୃତରେ ଈଶ୍ୱରଙ୍କର । ଈଶ୍ୱର ଆମକୁ ଡାକୁଥିବାବେଳେ କୌଣସି ଶବ୍ଦ ନ ହେବ କିପରି ?”

“କେହି ସମାଲୋଚନା କଲେ ମୁଁ ସହିପାରେ ନାହିଁ, ଏ କଥା ସ୍ୱୀକାର କରିବାରେ ମୋର କିଛି ଦ୍ୱିଧା ନାହିଁ । କିନ୍ତୁ ବେଳେ ବେଳେ ଏଥିରେ ହିଁ ମୁଁ ମନର ନୂତନ ଏକ ଦିଗ୍‌ବଳୟ ଆବିଷ୍କାର କରେ ।”

ମୁଁ ଯାଉଥିବା ସମ୍ବାଦ ପାଇ ଏଣ୍ଡିଆନା ବିଶ୍ୱବିଦ୍ୟାଳୟର ଜଣେ ଛାତ୍ରୀ ତା ସହିତ ଟାକ୍‌ସିରେ ଯିବାଲାଗି ମୋତେ ଅନୁରୋଧ ଜଣାଇଲା । ମୋର ଦେୟ ଅଂଶ ୧୧ ଡଲାର୍ । ପକେଟ ତ ଖାଲି । ତା ଛଡ଼ା ଏଅର୍ ପୋର୍ଟ ଅଫିସ୍‌ରୁ ଟଙ୍କା ଫେରସ୍ତ ଆଣିବା, ନିଜ ସୁଟକେସ୍ ବନ୍ଦର ଅଫିସରୁ ଟାକ୍‌ସି ପର୍ଯ୍ୟନ୍ତ ବୋହିନେବା ହେଙ୍ଗାମ୍ ଥିଲା । ଏସିଆନ୍ ଫୋକ୍‌ଲୋର୍ ଇନ୍‌ଷ୍ଟିଚ୍ୟୁଟର ବିଶିଷ୍ଟ ବ୍ୟକ୍ତିମାନେ ମୋତେ ବ୍ଲୁମିଂଟନ ବନ୍ଦରରୁ ପାଛୋଟି ନେବାର ଥିଲା । ଏ ସବୁ ଏଡ଼ି ସେ ଝିଅଟି ସଙ୍ଗେ କିପରି ଯାଇଥାନ୍ତି ? କୋଉ ଠିକଣାକୁ ?

ଝିଅଟି ନିଗ୍ରୋ ହେଲେ ବି ଆଳାପ ସୌଜନ୍ୟ ରକ୍ଷା କରିଥିଲା । କିଛି ଯେପରିକି ଘଟିନାହିଁ । ଏହା ତାର ଏକ ଗତାନୁଗତିକ ଜିଜ୍ଞାସା ମାତ୍ର । ବିଦାୟବେଳେ ମୋତେ ପଚାରିଲା—ଆପଣ କଣ ପଢ଼ିବାକୁ ଏଣ୍ଡିଆନା ଯାଉଛନ୍ତି ?

‘‘ନିଶ୍ଚୟ ତୁମ ସଙ୍ଗରେ ନୁହେଁ, ମୋ ବୟସ ୫୦ ଟପିଲାଣି; ତୁମକୁ ବୋଧେ ଅଠରରୁ ବେଶୀ ହେବ ନାହିଁ ।’’

ଝିଅଟି କହିଲା—ମୋ ବୟସ କିପରି ଜାଣିଲେ ?

‘‘ସେ ତ ଲିଖିତ—ମୁଖରେ, ଚକ୍ଷୁରେ, ଅଧରରେ । ମୋ ଅନୁମାନରେ କିଛି ହେଲେ ବାହାଦୁରୀ ନାହିଁ । କିନ୍ତୁ ବଳେ ବଳେ ଆଦାୟ କରି ନେଇଛି ଚମତ୍କାର ପ୍ରଶସ୍ତି ତୁମର ସର୍ବାଙ୍ଗୀନ ଶ୍ରୀ ।’’

ଝିଅଟି ହସି ହସି ଧନ୍ୟବାଦ ଦେଇ ବିଦାୟ ନେଲା ।

ପ୍ଲେନ୍‌ଟି ଅତି ଛୋଟ; ମୁଣ୍ଡ ବାଜେ ନ ବାଜେ; ବହୁତ ହଲଦୋହଲ, ଡର ମାଡ଼େ । ଜିନିଷପତ୍ର ଆସିଲା ଅନ୍ୟ ଏକ ପ୍ଲେନ୍‌ରେ । ଉଡ଼ିଲା ପରି ତ ଜଣାଗଲା ନାହିଁ, ଉଡ଼ୁଙ୍କାକେ ହନୁମାନ ପରି ସତେ ଅବା ଡେଇଁ ପଡ଼ିଲୁ ଏଣ୍ଡିଆନା ପଲିସ୍‌ରୁ ବ୍ଲୁମିଂଟନ ! ମୋତେ ପାଛୋଟି ନେବା ଲାଗି ଆସିଥିଲେ ଏସିଆନ୍ ଫୋକ୍‌ଲୋର୍ ଇନ୍‌ଷ୍ଟିଚ୍ୟୁଟର ଡିରେକ୍ଟର

ଡ଼: ଡ଼ର୍ସନ୍, ଏସିଆନ୍ ଫୋକ୍‌ଲୋର୍ କନ୍‌ଫରେନ୍‌ସର ଏକଜକ୍ୟୁଟିଭ ଆସିଷ୍ଟାଣ୍ଟ ଜେ: ଆଡ଼ାମସ୍, ଆସାମ୍‌ର ଲୋକସଂସ୍କୃତିବିତ୍ ଡ଼: ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀ, ମୋର ଘୁର ଗବେଷକ ଭାବଗ୍ରାହୀ ମିଶ୍ର, ଉତ୍ତର ପ୍ରଦେଶର ଲୋକସଂସ୍କୃତିବିତ୍ ଡ଼: କୃଷ୍ଣଦେବ ଉପାଧ୍ୟାୟଙ୍କ ପୁଅ ଗବେଷକ ହରିଶଙ୍କର ଉପାଧ୍ୟାୟ ଓ ଅନ୍ୟ କେତେକ ଉଦ୍ୟୋକ୍ତା ।

ଡ଼' ଡର୍ସନ୍ ମୋତେ ନିଜ ଗାଡ଼ିରେ ବସାଇ ଡ୍ରାଇଭ୍ କରି ଚାଲିଲେ, ବାଟରେ ମୋତେ କହିଲେ—ବ୍ଲୁମିଂଟନ୍ ଗୋଟିଏ ଗ୍ରେଟ ଜାଗା । ମୁଁ କହିଲି—ବଡ଼ ଲୋକମାନେ ଗ୍ରେଟକୁ ତା ସୀମାରେ ଋଣି ଦେଇଛନ୍ତି କେଉଁଠି ? ବଡ଼ ଛୁଇଁବା ମାତ୍ରେ ଗ୍ରେଟ ବଡ଼ ହୋଇଯାଇଛୁ । 'ଅଣ୍ଣାପି ଯାଡ଼ ଦେବଲୋଂ ମହତ୍ତ୍ୱଃ ସୁପ୍ରତିଷ୍ଠିତଃ' । ବ୍ଲୁମିଂଟନ୍ ଗ୍ରେଟ ହେଲେ ବି ଆଜି ବିଶ୍ୱପ୍ରସିଦ୍ଧ ।

'ଇଣ୍ଡିଆନା ମେମୋରିଆଲ ହଲ୍' ରେସ୍ତୋରାଁ ସାମ୍ନାରେ ଗାଡ଼ି ରହିଲା । ଅଟୋମାଟିକ୍ ଲିଫ୍ଟ—ନିର୍ଦ୍ଦିଷ୍ଟ ମହଲାର ବୋତାମ ଚିପିବାମାତ୍ରେ ଉପରକୁ ଉଠିଗଲୁ । ଚମତ୍କାର କୋଠରୀ, ବହଳ ଗାଲିଚା, ଲମ୍ବା ଦର୍ପଣ, ବଡ଼ ଟେବୁଲ୍ ଆଲୋକ, ଫୋନ୍, ଲେଖିବା ଲାଗି ପେନ୍‌ସିଲ୍ ଓ ପୋଷ୍ଟ କାର୍ଡ, ଟେଲିଭି । ସକାଳୁ ବ୍ଲୁମିଂଟନ୍‌ରୁ ପ୍ରକାଶ ପାଉଥିବା ଖବର କାଗଜ ଖଣ୍ଡିଏ ମାଗଣା ଅସେ । ଏଇ ରେସ୍ତୋରାଁରେ ପାଠାଗାର ଓ ପୋଷ୍ଟ ଅଫିସ୍ ଅଛି । ବହି ଦୋକାନ ଓ ସାଲୁନ୍ ଅଛି । ସବୁ ରାଜକୀୟ ବ୍ୟବସ୍ଥା । ନିଜେ ପସନ୍ଦ କରି ଖାଦ୍ୟ ପ୍ଲେଟ୍ ସଂଗ୍ରହ କରିବାକୁ ହୁଏ । କାଉଣ୍ଟିଂ ମେସିନ୍ ପାଖକୁ ଯାଇ ପଇସା ଦେବାକୁ ହୁଏ ।

ହେଲେ ବାଧା; କୁଆଡେ ଯିବାକୁ ଡୋର୍ଡ ଇଚ୍ଛା ନ ଥିଲେ ବି ଓଙ୍କାରନାଥଙ୍କ ନିମନ୍ତ୍ରଣ ଏଡ଼ିବା କଷ୍ଟକର ହେଲା । ଦୁଇ ମାଇଲ ଚାଲିଚାଲି ତାଙ୍କ ବସାରେ ପହଞ୍ଚିଲୁ । ଦୁଇଟି ଗ୍ରେଟ ଗ୍ରେଟ ବଖରାରେ ସେ ରହନ୍ତି । ମାସିକ ଭଡ଼ା ଭାରତୀୟ ମୁଦ୍ରାରେ ଅଠେଶ । ଗୋଟିଏ ଘରେ ବହି ଭରା । ପୁସ୍ତକ ରସିକ । ପୁସ୍ତକ ଖର୍ଚ୍ଚ ତାଙ୍କର ଏକ ଝୋଙ୍କ୍ । ରାଜସ୍ଥାନର କୌଣସି କଲେଜରେ ସେ ସମାଜବିଜ୍ଞାନର ଅଧ୍ୟାପକ ଥିଲେ, ଏବେ ଇଣ୍ଡିଆନାରେ ପି. ଏଚ୍. ଡ଼ି. କରୁଛନ୍ତି । ହାତରେ ରୋଷାଇ କରି ଖାନ୍ତି । ଆମେ ପହଞ୍ଚିବା

ମାନେ ସେକ୍ସେଛ ଆୟୋଜନ ହେଲ । ଗ୍ରାମଦା ଅଟା ଦଳଲେ, ହଉ-ଶଙ୍କର ପୂଷ ଗ୍ଣିଲେ । ଭାତ ଓ ଅନ୍ନ, ମଟର ହରଡ଼ ଡାଲ୍ମା । ଏସବୁ କାଗଜ ଥାଳୀରେ ବଢ଼ାହେଲ । କାଗଜ ଗିଲସରେ ଘୋଳ ଦହି । ହାତରେ ଖନ୍ଧବାଡ଼ି ଖାଇବାରେ ଓଙ୍କାରନାଥଙ୍କର ଯେଉଁ ଆନନ୍ଦ, ଗ୍ୱେକ ପେଟରେ ଖାଇବାରେ ଆମର ସେତିକର ତୃପ୍ତି ।

ରାତି ଏଗାରଟାରେ ଫେରିଲୁ । ବଡ଼ ବଡ଼ ବ୍ରସ ଧରି ଦୁଇ ଜଣ ରାସ୍ତା ସଫା କରୁଛନ୍ତି । ଏମାନେ କଣ ମେହେନ୍ତର ?' 'ନା, ଛାତ୍ର' । ଛାତ୍ରମାନେ ଏଠି କଠିନ ଶାରୀରିକ ଶ୍ରମ କରିଥାନ୍ତି । ସେମାନେ ହୋଟେଲରେ ଗୋଡ଼ ନଦନ୍ତି, ରାସ୍ତାରେ ପିଚୁ ଢାଳନ୍ତି, ହୋଟେଲରେ ବାସନ ମାଜନ୍ତି । ବିଶ୍ୱବିଦ୍ୟାଳୟରେ ପିଅନ୍ ନାହିଁ, ଛାତ୍ରମାନେ ପିଅନ କାମ କରିଥାନ୍ତି, ସାବଶ୍ରମ୍ ଲାଇବ୍ରେରି କାମ କରିଥାନ୍ତି । ବାପ ମାପଙ୍କୁ ବାର ଲକ୍ଷ ଡଲାର୍ ରୋଜଗାର କରେ । କିନ୍ତୁ ବାପ ଟଙ୍କା ଉଡ଼ାଇବାର ଅଧିକାର ପୁଅର ନାହିଁ । ସେ ବାପାଙ୍କର ଅଫିସରେ କାର୍ଯ୍ୟ କରେ, ଦରମା ପାଏ । ସମସ୍ତେ ଜୀବନ ସଂଗ୍ରାମରେ ବ୍ୟସ୍ତ । ଛାତ୍ରମାନେ ଧର୍ମଘଟ କରିବା କଥା ଏଠି ଶୁଣା ନାହିଁ ।

ଉଠି କାଚ ଝରକା ବାଟେ ଟିକିଏ ପଦାକୁ ଚାହିଁଲି—ସକାଳ କିରଣରେ ସବୁ ସ୍ୱପ୍ନମୟ ହୋଇ ଉଠିଛି—ଗଛବୃଛ କଣ୍ଟା କହିବେ କହିବେ ହେଉଛନ୍ତି, ଏଇ ନୂତନ ଅତିଥିକୁ । ଅପରିଚିତ ପକ୍ଷୀ ଯୋଗସୂତ୍ର ସ୍ଥାପନ କରୁଛନ୍ତି ସୁନା କିରଣ ସହିତ ଶୀତଳ ହାଓ୍ୱାର, ସ୍ୱର୍ଣ୍ଣାଭ ଆକାଶ ସହିତ ଅରଣ୍ୟ, ଉଦ୍ୟାନର । ପ୍ରଥମ ସକାଳଟି ସୌଧ ଗହନରେ ଦେଖି ପାରି ନାହିଁ । ବିଦେଶରେ ହିଁଶାସ୍ତ ସକାଳ ଏ, ସୌନ୍ଦର୍ଯ୍ୟରେ ଅଗ୍ରଗଣ୍ୟ, ଏଇ ସୁବର୍ଣ୍ଣ ମୁକୁରରେ ଏ ଦେଶକୁ ଦେଖିବି ମୁଁ ।

କାନ୍ଥସାକ ବୃହତ୍ ଦର୍ପଣ ସବୁ, ନିଜର ଛାୟା, ନିଜର ଛବି ଦେଖାନ୍ତି । ତାମାନେ ନିଜକୁ ଭୁଲ ନାହିଁ, ନିଜର ସ୍ୱାର୍ଥକୁ । ନିଜର ଗତିକୁ ଚଞ୍ଚଳତର କର, ସାଧନାର ଶିଖାକୁ ଅଧିକ ଉଦ୍ଦୀପ୍ତ କର, ପୂର୍ବ ମୁହୂର୍ତ୍ତ ଅପେକ୍ଷା ପରମୁହୂର୍ତ୍ତରେ ଯୋଗ୍ୟତର ହୋଇଛ, ଏହା ପ୍ରମାଣ

ତର । ସର୍ବତୋଭାବେ ଆତ୍ମପ୍ରକାଶ—ଏ ଦେଶର ଜୀବନ-ଦର୍ଶନ । ଚରିତାର୍ଥ୍ୟର ସଜୀତ୍ତ ଏଠି । ଯେ ପରାଭୂତ, ବ୍ୟର୍ଥମନୋରଥ, ସେଇ କେବଳ ବୃଦ୍ଧ । ତାର ମୃତ୍ୟୁ ଶାନ୍ତି । ଅନ୍ୟ ସମସ୍ତଙ୍କର ଜୀବନ ଶାନ୍ତି, କିନ୍ତୁ ଦାର୍ଶନିକ ଭାବରେ ନୁହେ । ଶାନ୍ତି ଗତିଗତଶୀଳ କର୍ମରେ; କର୍ମରେ କଳାର ଶ୍ରୀ, ବୈଜ୍ଞାନିକ ଯାନ୍ତ୍ରିକତା ଫୁଟି ଉଠେ ।

ଆମ ଦେଶର ଗ୍ରୀଷ୍ମକାଳ ସହିତ ଏଠା ଗ୍ରୀଷ୍ମର ସାମଞ୍ଜସ୍ୟ ଅଛି । କିନ୍ତୁ ଉପରେ ଗଛଲତା ଝାଉଁଳେ ନାହିଁ, ବାଲି ତାତେ ନାହିଁ । ରାସ୍ତା ଘାଟରେ, ଗହଳି ଭିଡ଼ରେ ଖଣ୍ଡିଆ ଭୂତ ନାଚନ୍ତି ନାହିଁ । କେଉଁଠି ଧୂଳି ଟିକିଏ ନାହିଁ, କେଉଁଠି ଅଳିଆ ଟିକିଏ ପଡ଼ିନାହିଁ । ସବୁ ସୁଗଠିତ, ସୁବେଶିତ, ସୁନିୟନ୍ତ୍ରିତ । ହଜାର ହଜାର ମଟର ଗାଡ଼ି, ଟିକିଏ ଭେଁ ନାହିଁ । ଲେଖା ହୋଇଛି— ଗୋଳମାଳ କରନାହିଁ, ଠେଲ, ଟାଣ (push, pull) । ସବୁ ଅଟୋମେଟିକ ମେସିନ୍‌ର କାମ । ଠେଲିଲେ ପେଲିଲେ, ଛୁଇଁଲେ, ଧକ୍‌କା ଦେଲେ ଜୀବନ ଚାଲେ ।

ନିଃଶବ୍ଦ ସ୍ରୋତରେ ଜୀବନ ଚାଲିଛି; କିନ୍ତୁ ମୁନି ଋଷିଙ୍କର ଜୀବନ ଏ ନୁହେଁ, ଠିକ୍ ତାର ଓଲଟା । ଜୀବନ ଅର୍ଥ ସଂଗ୍ରାମ, ପ୍ରତିଯୋଗିତା, ଯୋଗ୍ୟର ସମ୍ମାନ । ନିଷ୍ପାରିଲ ଏଠି ମଲା । ଦୌଡ଼ିବାକୁ ହେବ, ହେଉ ପଛେ ଛୋଟା ଗୋଡ଼, କଣା ଆଖି ।

## ଏସିଆ ଲୋକସଂସ୍କୃତି ସମ୍ମେଳନ

ଜୁନ ଏକୋଇଶ ତାରିଖ, ବେଳା ଦଶଟା; ସମ୍ମିଳନୀର ଉଦଘାଟନ ଅବସରେ ମୋର ପ୍ରବନ୍ଧ ପାଠ । ବିଷୟ—'ଓଡ଼ିଆ ଲୋକ-ଗୀତମାନଙ୍କରେ ସାମାଜିକ ଚରିତ୍ର' । ନାଟକ, ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ ଯାତ୍ରା ସୃଷ୍ଟିର ବହୁ ପୂର୍ବରୁ ସାମାଜିକ ଚରିତ୍ର ଲୋକଗୀତମାନଙ୍କରେ ଆସନ ଜମାଇ ବସିଥିଲେ । ଅବଶ୍ୟ ସେମାନଙ୍କର ରୂପ ପୂର୍ଣ୍ଣାଙ୍ଗ ନୁହେଁ, ଚରିତ୍ରର ଗୋଟିଏ ଗୋଟିଏ ମାତ୍ର ଦିଗ ପ୍ରକଟିତ ହୋଇଥାଏ । ଅବୁଝା ରଜା, ପାଳବଣ୍ଡା ମନ୍ତ୍ରୀ, କୃପଣ ସାହୁକାର, ଈର୍ଷୀ ପଡ଼ୋଶୀ, ବକ ଧାର୍ମିକ,

କପଟୀ ଯୋଗୀ, ବୃଥା ଗର୍ବୀ, ନିର୍ଲଜ୍ଜ କୁଳବଧୂ, ସଲଜ୍ଜା ବେଶ୍ୟା—କାହାର ବ୍ୟକ୍ତିଗତ ଚରିତ୍ରର ସ୍ୱାତନ୍ତ୍ର୍ୟ ପ୍ରକାଶିତ ହୋଇନାହିଁ; ଗୋଟିଏ ଗୋଟିଏ ଗୋଷ୍ଠୀ ଚରିତ୍ରର ସୂଚକ ଏଇ ଗଳ୍ପ। ମାଇଚିଆ ପୁରୁଷ, ଅଣ୍ଡିରଚଣ୍ଡୀ ସ୍ତ୍ରୀ, ଅତ୍ୟାଚାରିଣୀ ଶାଶୁ, ନିପୀଡ଼ିତା ବଧୂ; ଦାମ୍ପତ୍ୟ କଳହ, ସ୍ତ୍ରୀର ପ୍ରତିହିଂସାର ନଗ୍ନ ଜୀବନ୍ତ, ପଦ୍ମ ବା ସଂକ୍ଷିପ୍ତ। ସମାଜର ନୈତିକ-ତନ୍ତ୍ର ତଳେ ନିଷ୍ପେଷିତା ସେ ଯୁଗର ନାରୀ, ତାର ମୂକ ଚକ୍ଷୁରେ ଅଶ୍ରୁ-ବନ୍ଦୁ। ବରୋଧ, ବହୁଳ ଅସନ୍ତୁଷ୍ଟ ସାମନ୍ତମୂଳ୍ୟ ସମାଜ, ମାମଲତକାର, ଟାଉଟରର ଇଙ୍ଗିତରେ ଚାଳିତ, ବାସ୍ତୁହରା ସାଧାରଣଙ୍କ ବାଣୀ ଫୁଟିଥିଲା ଗଳ୍ପ ଗୁଡ଼ିକରେ। ସମସାମୟିକ ସମାଜର କଠୋର ସମାଲୋଚକ ଏଇ 'ଗଣ'—ଯାହାକୁ କୁହାଯାଏ ମୂକ।

ମୋ ପ୍ରବନ୍ଧ ପାଠ ପରେ କଲମ୍ବିଆ ବିଶ୍ୱବିଦ୍ୟାଳୟର ଇଂରେଜୀ ଅଧ୍ୟାପିକା ଡକ୍ଟର ହୋସେନ୍ କହିଲେ—ଆପଣ ନାରୀ ପ୍ରତି ବଡ଼ କଠୋର ହୋଇଛନ୍ତି। ତାର ଉତ୍ତରରେ କହିଲି—ଏ ମୋର ମତ ନୁହେଁ, ସ୍ୱୟଂ ନାରୀର। ଅଧିକାଂଶ ଗଳ୍ପ ଗୁଡ଼ିକର ରଚୟିତ୍ରୀ ନାରୀ। ମି: ଓଙ୍ଗ ବର୍ମାର ରାଷ୍ଟ୍ରଦୂତ ଥିଲେ, ଏବେ ସାହିତ୍ୟିକ। ବାଗ୍ମୀ; ମୋ ପ୍ରବନ୍ଧର ସମାଲୋଚନା କରି ସେ କହିଲେ—ଆପଣ ଗୋଟିଏ ଦିଗକୁ ମାତ୍ର ଦେଖୁଛନ୍ତି। ଓଡ଼ିଆ ନାରୀ କଣ ଯୁଗ ଯୁଗ ଧରି କେବଳ ଦୁଃଖ ଭୋଗୁଥିଲା ? ଗୃହ ନାମକ କଏଦୀ ଘରେ ବାସ କରୁଥିଲା ? ଗୃହିଣୀ ଭାବରେ ଗେରସ୍ତ ଉପରେ ତାର କିଛି ଅଧିକାର ନ ଥିଲା ? ତାର ସୁସ୍ଥ, ଶାନ୍ତ, ସୁଖୀ ଜୀବନ ବୋଲି କିଛି ନ ଥିଲା ?

କହିଲି—ମୋର ଆଲୋଚନାର ସୀମା ଗଳ୍ପଗୁଡ଼ିକ ମଧ୍ୟରେ। ଦୁଃଖରେ ମଣିଷ କାନ୍ଦେ, କାନ୍ଦିଲେ ଗାଏ। ତେଣୁ ବହୁ ଗଳ୍ପଗୁଡ଼ିକ ଅଶ୍ରୁସିକ୍ତ, ସେ ଅଶ୍ରୁ ଶୁଖେ ନାହିଁ, ଶୁଖିବ ନାହିଁ। ଦୁଃଖ ପରି ସୁଖର ଅନୁଭବ ତୀବ୍ର ନୁହେଁ। ଗଳ୍ପର କବି ସଚେତନ ଶିଳ୍ପୀ ନୁହନ୍ତି। ସେ କାହିଁକି ସୁଖ ଦୁଃଖର ପୂର୍ଣ୍ଣାଙ୍ଗ ଚିତ୍ର ରଚନା କରିବେ ? ଯେଉଁଠି ଦାମ୍ପତ୍ୟ ସୁଖର ସାମାନ୍ୟ ଚିତ୍ର ଅଛି, ମୁଁ ପରିବେଷଣ କରିଛି।

ଆମେରିକାର ଜଣେ ଯୁବକ ପଚାରିଲେ—ଉତ୍ତମ ସ୍ୱାମୀ ଜଣେ ବୃଦ୍ଧା ସ୍ତ୍ରୀକୁ କାହିଁକି ଭଲ ପାଇବ ?

କହିଲି—ଆମ ଜୀବନଧାରଣା ଭିନ୍ନ; ସେ ଯାହାର ସେ ତାର, ଜୀବନସାରା । ଅଗ୍ନିକୁ ସାକ୍ଷୀ ରଖି ସେ ବିଭା ହୁଏ । ଗ୍ରାଡପତ୍ର ପ୍ରଥା ତ ପ୍ରାୟ ପ୍ରଚଳିତ ନ ଥିଲା । ଦାମ୍ପତ୍ୟ ପ୍ରୀତିବନ୍ଧନ ଆଜୀବନ । 'ଉତ୍ତର ରାମ ଚରିତ'ରେ କୁହା ଯାଇଛି—ବିଶ୍ରାମୋ ହୃଦୟସ୍ୟ ଯତ୍ର ଜରସା ଯସ୍ମିନ୍ନ ହାର୍ଯୋ ରସଃ । ସ୍ୱାମୀ ହୃଦୟର ବିଶ୍ରାମର କ୍ଷେତ୍ର ସ୍ତ୍ରୀର ହୃଦୟ । ତେଣୁ ବାର୍ଦ୍ଧକ୍ୟରେ ରସହାନି ଘଟେନାହିଁ, ଶରୀରର ଚର୍ମ ଶ୍ଳଥ ହେଲେ ବି । ଯେଉଁ ସ୍ୱାମୀ ତାର ଏକମାତ୍ର ସ୍ତ୍ରୀକୁ ବୃଦ୍ଧାବସ୍ଥାରେ ବି ସ୍ନେହ କରେ ସେ ପ୍ରକୃତରେ ଉତ୍ତମ ସ୍ୱାମୀ ।

ଆଜି କେତେକ ବିଦଗ୍ଧ ବ୍ୟକ୍ତି ପ୍ରବନ୍ଧ ଲାଗି ଅଭିନନ୍ଦନ ଜଣାଇଲେ । ତତ୍ପର ଦିନ 'ଜାତୀୟ ଜୀବନକୁ ଲୋକସଂସ୍କୃତିର ଦାନ' ସମ୍ପର୍କରେ ଆଲୋଚନା ହେଲା । ଭାରତୀୟଙ୍କ ମଧ୍ୟରେ ରାଜସ୍ଥାନର ସମାଜ-ତତ୍ତ୍ୱ ବିଭାଗର ଡକ୍ଟର୍ ଇନ୍ଦ୍ରନାଥ, ଚଣ୍ଡୀଗଡ଼ ବିଶ୍ୱବିଦ୍ୟାଳୟର ପଞ୍ଜାବୀ ଅଧ୍ୟାପକ ହରନାମ୍ ସିଂହ ସାନ୍ ଅଂଶ ଗ୍ରହଣ କରିଥିଲେ ।

ଡ: ଏମ୍. ଇଡର୍. ଅଷ୍ଟ୍ରିଆର ଜଣେ ଜର୍ମାନ୍ ! ଟୋକିଓରୁ ପ୍ରକାଶିତ 'Asian Folklore Studies' ପତ୍ରିକାର ସମ୍ପାଦକ ସେ । ସେ 'ଫାଦର'; ଧର୍ମପ୍ରଚାର ଲାଗି ବହୁ କାଳ ପେକିଂରେ ଥିଲେ । ଚିନ୍ ଦେଶର ଧର୍ମ, ସଂସ୍କୃତି ଓ ଲୋକସଂସ୍କୃତିର ବିଶେଷଜ୍ଞ । ଚିନ୍ କିପରି ତାର ଜାତୀୟ ଜୀବନକୁ ଗଢ଼ିବା ଲାଗି ଲୋକସଂସ୍କୃତିର ଉପଯୋଗ କରୁଛି, ସେ ବକ୍ତୃତା ଦେଇଥିଲେ ।

ଏଡ୍‌ୱିନ୍ ସି. କର୍କଲ୍ୟାଣ୍ଡ ଫ୍ଲୋରିଡା ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ, ଲୋକସଂସ୍କୃତି ବିଶେଷଜ୍ଞ । ଭାରତୀୟ ଲୋକସଂସ୍କୃତି ବିଷୟରେ ସ୍ୱତନ୍ତ୍ର ଗବେଷଣା କରି 'Bibliography of Indian Folklore' ବୋଲି ଖଣ୍ଡିଏ ପୁସ୍ତକ ଲେଖିଛନ୍ତି । ପରିଚୟ ପାଇ ସେ ମୋ ସହିତ ସାକ୍ଷାତ୍ କଲେ । ତାଙ୍କ ପୁସ୍ତକରେ ମୋର 'ପଲ୍ଲୀପୁଷ୍ପ'ରୁ ପଲ୍ଲୀ

ଗୀତ ସଞ୍ଚୟନ ପର୍ଯ୍ୟନ୍ତ ଦଶଖଣ୍ଡି ପୁସ୍ତକ ଓ ବହୁଳ ଇଂରାଜୀ ପ୍ରବନ୍ଧ ଅନ୍ତର୍ଭୁକ୍ତ କରିଥିବାର ଦେଖାଇଲେ ଓ ଖଣ୍ଡିଏ ପୁସ୍ତକରେ ଦସ୍ତଖତ ନେଲେ । ତତ୍ପରଦିନ ସେ 'Bibliographical resources in 'Asian Folklore' ସମ୍ପର୍କରେ ବକ୍ତୃତା ଦେଲେ; ସମ୍ମିଳନୀ ମଣ୍ଡପରେ ୧୮୩୨ରେ Asiatic Society ପତ୍ରିକାରେ ଲୋକସାହିତ୍ୟ ସମ୍ପର୍କୀୟ ପ୍ରବନ୍ଧଠାରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ଲୋକ ସାହିତ୍ୟ ସଂଗ୍ରହ ଓ ଗବେଷଣାର ସଂକ୍ଷିପ୍ତ ବିବରଣୀ ଦେଇଥିଲେ ଓ ସମ୍ମିଳନୀରେ ଉପସ୍ଥିତ ଭାରତୀୟ ଗବେଷକମାନଙ୍କୁ ଉଚ୍ଚ ପ୍ରଶଂସା କରିଥିଲେ । ଉପସଂହାରରେ ଏସିଆନ୍ ଫୋକ୍‌ଲୋର୍ କନଫରେନ୍ସ ଉପଲକ୍ଷେ ଗୋଟିଏ କବିତା ପାଠ କରିଥିଲେ —

"East is east, West is west
But long ago their folk did meet
And now at last their scholars test
The ways in which their cultures meet."

ଏଣ୍ଡିଆନା ବିଶ୍ୱବିଦ୍ୟାଳୟର ଏକ ଅଡ଼ିଟୋରିଅମ୍—ପ୍ରାୟ ତିନିହଜାର ଦର୍ଶକଙ୍କ ବସିବାର ବ୍ୟବସ୍ଥା ରହିଛି । କାଠ ଚଟାଣରେ ଗଦିଦିଆ ଚୌକି । ଅପୂର୍ବ ସଜାସଜି । ସନ୍ଧ୍ୟାରେ ରଙ୍ଗମଞ୍ଚରେ ଯାପାନ, କୋରିଆ ଓ ଇଣ୍ଡୋନେସିଆର ଲୋକସଂଗୀତ ଓ ନୃତ୍ୟ ପରିବେଷିତ ହୋଇଥିଲା । ନୃତ୍ୟର ଭାଷା ସର୍ବଜନବୋଧ । ଗୀତ ଅବୋଧ ; କିନ୍ତୁ ଉଭୟ ଉପଭୋଗ୍ୟ ହୋଇଥାଏ—ବେଶଭୂଷଣ, ଅଳଙ୍କରଣ, ତାଳ-ଲୟରେ ଆମଠାରୁ ଭିନ୍ନ ହେଲେ ବି ।

ଏଠି ଡକ୍ଟର କାମ୍‌ ଲେମ୍‌ନର ହିଲ୍‌ଡାଗେନ୍‌ଙ୍କ ସହିତ ପରିଚୟ ହେଲା । ସେ ଫୋକ୍‌ଲୋର୍ ଇନ୍‌ଷ୍ଟିଚ୍ୟୁଟର ପଲ୍ଲୀ ଔଷଧର ଅଧ୍ୟାପକ । ସେ ସ୍ୱିଡେନ୍‌ବାସୀ, ସ୍ୱିଡେନ୍‌ର ପଲ୍ଲୀ ଶିଶୁ ସଙ୍ଗୀତ ସଂକଳନ କରିଛନ୍ତି, ଜିପ୍‌ସି ଲୋକଗଳ୍ପ ସଂଗ୍ରହ କରି ପ୍ରତିଷ୍ଠା ଅର୍ଜନ

କରିଛନ୍ତି । ସେ 'A Study of orissan Folklore' ସମ୍ପର୍କରେ ଯେଉଁ ମତ ପ୍ରକାଶ କଲେ ତାହା ଲେଖିଲେ ଆତ୍ମପ୍ରଶଂସା ହୋଇଯିବ ।

ରବୀନ୍ଦ୍ରନାଥଙ୍କ ପୂର୍ବତନ ସେକ୍ରେଟାରୀ, ବଙ୍ଗଳାର ବରିଷ୍ଠ କବି, ବଷ୍ଟନ୍‌ବାସୀ, ଭ୍ରାମ୍ୟମାଣ ଇଂରାଜୀ ଅଧ୍ୟାପକ ଅମିୟ ଚକ୍ରବର୍ତ୍ତୀଙ୍କ ସଙ୍ଗେ ମଧ୍ୟ ଏଠି ସାକ୍ଷାତ୍ ହୋଇଥିଲା, ସେ ବଷ୍ଟନ୍ ଯିବାକୁ ମୋତେ ନିମନ୍ତ୍ରଣ କଲେ ।

## କକ୍‌ଟେଲ୍ ପାର୍ଟି

ଏହା ପ୍ରଥମ ଏସିଆ ଲୋକସଂସ୍କୃତି ସମ୍ମେଳନ; ପ୍ରତିନିଧିମାନଙ୍କୁ ରାତ୍ରି ଭୋଜରେ ସମ୍ବର୍ଦ୍ଧନା କରିବା କର୍ମକର୍ତ୍ତା ହିସାବରେ ଡର୍ସନଙ୍କ କର୍ତ୍ତବ୍ୟ । ଭାରତ, ପାକସ୍ଥାନ, ଯାପାନ, କୋରିଆ, ଇଣ୍ଡୋନେସିଆ, ଭିଏଟ୍‌ନାମ, ବର୍ମା, କାମ୍ବୋଡ଼ିଆର ପ୍ରତିନିଧି, ଏଣ୍ଡିଆନ ବିଶ୍ୱବିଦ୍ୟାଳୟର କେତେକ ବରିଷ୍ଠ ଅଧ୍ୟାପକ ଓ ସ୍ଥାନୀୟ ସୁଧୀବୃନ୍ଦ ଏହି ପାର୍ଟିକୁ ନିମନ୍ତ୍ରିତ ।

ଗୋଟିଏ ବଡ଼ ଖୋଲା ଜାଗା ଜଣ ଜଣ କରି କାଗଜ ଗ୍ଲାସରେ ନେଇ ପିଉଛନ୍ତି । ଜଣେ ଭାରତୀୟ ବନ୍ଧୁ ପଚାରିଲେ—ତୁମେ କାହିଁକି ଛିଡ଼ା ହୋଇଛ ? କିଛି ଉତ୍ତର ନ ଦେଇ ମୁଁ ବି ଗ୍ଲାସରେ ଯେଉଁ ଆସିଲା । ଭାବିଥିଲି—ଦୁଧ । ତୋଳେ ପାଟିକି ନେଇ ଯାଏ କୁଆଡ଼େ ? ଟିକିଏ ଦୂରକୁ ଘୁଞ୍ଚାଇ ବଗିଚାର ଗୋଟିଏ ଗଛ ମୂଳେ ଉକ୍ କରି ପାଟିରୁ କାଢ଼ିପକାଇଲି । ମୁଁ ପିଉ ନଥିବା ଦେଖି ଜଣେ କହିଲେ—This is bear, harmless; କହିଲି—All right; ତା ପରେ ସୁବିଧା ଦେଖି ଲଢ଼ିଦେଇ ଗ୍ଲାସ୍‌ଟି ଡ଼ଷ୍ଟବିନ୍‌ରେ ପକାଇ ଦେଲି । ଅନ୍ୟ ଏକ କୋଣରେ ଦେଖିଲି ହ୍ୱିସ୍କି, ବିଅରର ବଡ଼ ବୋତଲ—ପାନ ଆଶା ଛାଡ଼ି କିଛି ଫଳ, ଡ଼ିମ୍ବ ଓ ମିଠା ଖାଇଲି ।

ଜଣକ ପରେ ଜଣେ ଅପରିଚିତ, ଅପରିଚିତା, ପରିଚୟ ନେଉଥାନ୍ତି, ଦେଉଥାନ୍ତି, ଭାରତର କଥା ପଚାରୁଥାନ୍ତି—କାହିଁକି ଖାଦ୍ୟାଭାବ

ହେଉଛି ? ଏ ମଧ୍ୟରେ କି ଉନ୍ନତି ହୋଇଛି ? ତୁମ ରାଜ୍ୟରେ କେତୋଟି ବିଶ୍ୱବିଦ୍ୟାଳୟ ? ଏବେ ଭିତରେ ଜଣେ ଜଣେ ମୁକ୍ତଭାବରେ ପ୍ରିୟତମାର ଅଧରାମୃତ ପାନ କରୁଥାନ୍ତି, କେହି କେହି ନିଜ ସ୍ତ୍ରୀଙ୍କୁ ଅଧା କୁଣ୍ଡେଇ ଧରି ଆଳାପ କରୁଛନ୍ତି । ମୋର ଦୃଷ୍ଟି କଟୁ ହେଲେ ବି ଏଠି ଏଥିରେ ଲଜ୍ଜା ବା ସଂକୋଚର କିଛି ନାହିଁ । କେହି କିଛି ମନେ କରନ୍ତି ନାହିଁ । ସାରାବନ କ୍ଲାର୍କ, ଦୁଇ ଘଣ୍ଟା ଛୁଟା ହୋଇ ଆଳାପ କଲାପରେ ପାଦ ସତେ କି ଭାରି ପଡ଼ୁଥାଏ । ଡକ୍ଟର ଡର୍ସନଙ୍କୁ ବିଦାୟ ମାଗିଲି । ମୋତେ ଚାହିଁ ହସି ପଚାରିଲେ—କ୍ଲାର୍କ, ନା ? ଉତ୍ତରକୁ ଅପେକ୍ଷା ନକରି ସେ ମୋତେ ଘରକୁ ଡାକି ନେଲେ । 'Negro Folktales in Michigan' ନାମକ ତାଙ୍କ ସଂକଳିତ ଖଣ୍ଡିଏ ପୁସ୍ତକ ଉପହାର ଦେଲେ । ତା ଉପରେ ଲେଖା ଥିଲା—"With great pleasure on the occasion of his visit to Bloomington and Indiana university."

ଗୋଟିଏ ଆମେରିକାନ୍ ଦମ୍ପତି ନିଜ ଗାଡ଼ିରେ ମୋତେ ହୋଟେ-ଲରେ ଛାଡ଼ି ଦେଇଗଲେ ।

## କାର୍ଯ୍ୟକାରୀ ସମିତି

ଇଣ୍ଡିଆନ ମେମୋରିଆଲ୍ ହଲ୍‌ର ସଜାସଜ ଦେଖିଲେ ଆଖି ଖୋସି ହୋଇଯିବ । ମୂର୍ତ୍ତି ଓ ପ୍ରାକୃତିକ ଦୃଶ୍ୟର ଏକ ପ୍ରଦର୍ଶନୀ ଯେପରି କି ଖୋଲା ହୋଇଛି । ଝାଡ଼ ଆଲୋକ, ପରଦା, କାନ୍ଥର ଦର୍ପଣ, ଚିତ୍ରଗାଲିରୀ, ଟେବୁଲ ଚୌକି ସଜାସଜ ଗୃହଟିକୁ ଐଶ୍ୱର୍ଯ୍ୟପୂର୍ଣ୍ଣ । ଆଧୁନିକ ବେଶ ମଣ୍ଡିତା ରୂପବତୀ ଯୁବତୀ ପରିବେଷଣ ତତ୍ପର । ଚୌକିରେ ପ୍ରତ୍ୟେକ ସଭ୍ୟଙ୍କର ନାମ ଲିଖିତ । ଗୋଟିଏ ଅତି ଲମ୍ବ ଟେବୁଲ ଉପରେ ସ୍ୱଚ୍ଛକନା ବିଛା ହୋଇଛି, ନିଷ୍କଳଙ୍କ ଲୌହର କଣ୍ଟା ଚାମଚ ସଜା ହୋଇ ରଖା ହୋଇଛି । ଛପା ମେନୁ ଖଣ୍ଡିଏ ଖଣ୍ଡିଏ ବଣ୍ଟା ହେଲା—ସେଥିରେ ଗୋମାଂସ ଓ ଶୂକର ମାଂସର ପ୍ରାଧାନ୍ୟ । ଏସବୁ ଜଞ୍ଜାଳରେ ନ ପଶି ମୁଁ ଫଳ ପ୍ଲେଟ୍ ଓ ଦୁଧ ମଗାଇଲି । ଥାଳରେ ଲେଟୁସ୍ ପତ୍ର ବିଛା—ତା ଉପରେ ଆପଲ୍, ଅଙ୍ଗୁର, ପିଅର୍, ପିଚ୍,

ଅମୃତଭଣ୍ଡା, ଅଲଭ ପ୍ରଭୃତି କେତେ ପ୍ରକାର ଫଳ ଓ କୋଳ; ଛାପରେ ଗ୍ଲାସେ ଦୁଧ; ଆଇସ୍‌କ୍ରିମ୍ ଖାଜା ଖାଉ ଡ. ଉଇଁନ୍ ଫୋକ୍‌ଲେର୍ ଇନ୍‌ଷ୍ଟିଚ୍ୟୁଟର ତତ୍ତ୍ୱାବଧାନ ଉପସ୍ଥାପନ କଲେ, ସାମାନ୍ୟ ପରିବର୍ତ୍ତନ ପରେ ଏହା ଗୃହୀତ ହୋଇଥିଲା । କାର୍ଯ୍ୟକାରୀ ସମିତିରେ ପ୍ରତ୍ୟେକ ଦେଶରୁ ଦୁଇଜଣ କରି ସଭ୍ୟ ରଖାଯା'ଇଥିଲେ । ୪ ବର୍ଷପରେ ପୁଣି ଏସିଆ ଲୋକ ସଂସ୍କୃତି ସମ୍ମେଳନ ବସିବା କଥା ସ୍ଥିର ହେଲା ।

## ବିଅର୍ ହାଉସ୍

ରାତି ଏଗାରଟା (ପ୍ରାୟ ରାତି ନ'ଟାରେ ଏଠି ସନ୍ଧ୍ୟା) । ଆମ ଆଡ଼େ ରାତି ଆଠଟା ପରି । ବିଅର୍ ହାଉସ୍‌କୁ ନ ଗଲେ ଏଠା ଜୀବନ ସମ୍ବନ୍ଧରେ କିଛି ଜାଣିପାରିବ ନାହିଁ । ଦିବା ଯେପରି କର୍ମଗମ୍ଭୀର, ରାତି ସେତିକି ଉତ୍ସବ ମୁଖର । ବନ୍ଧୁମାନେ ଗୋଟାଏ ବିଅର୍ ହାଉସ୍‌କୁ ଟାଣି ନେଲେ—ଦେଖ, ଲେଖ । ରେଡ଼ିଓ ସଙ୍ଗୀତ ଧ୍ୱନି ଭାସି ଆସୁଥାଏ, ବଲ୍‌ନାଚ ବି ଚାଲିଥାଏ । ଦି ଦି ଜଣ ହୋଇ ଯୁବକ ଯୁବତୀ ବସିଛନ୍ତି । ଗ୍ଲ' କପ ଭରି ମଦ୍ୟପାନ କରୁଛନ୍ତି । ଗଳ୍ପର ସ୍ରୋତ ଛୁଟିଛି । କୋଳାହଳମୟ, ଆମ ହାଟ ବା ମେଳଣ ଯାହାରେ ଯେପରି । ଯେଉଁ ଲୋକମାନେ ସାରା ଦିନ ଖଟନ୍ତି, ସେମାନେ ଆସିଛନ୍ତି, ଆସିଛନ୍ତି ଯୁବଯୁବତୀ; ନିଃସଙ୍କୋଚ, ନିର୍ଭୀକ । ହାଡ଼ଭଙ୍ଗା ଖଟଣି ପରେ ପାନ, ଗାନ, ନର୍ତ୍ତନ—ମନକୁ ହାଲୁକା ରଖିବା ଲାଗି ଏହା ଆବଶ୍ୟକ, ଏଠା ଲୋକେ ମନେ କରନ୍ତି ।

କିନ୍ତୁ ଏହା ଏକ ନାଶକାରୀ ବଦଭ୍ୟାସ । ଏଥିରେ ଦିନକର ରୋଜଗାରରୁ ଚାରିଅଣା ବା ଛ'ଅଣା ଉଡ଼ିଯାଏ । ପେଟପୂରି ପାଣି । ପଇସା ଅଛି ବୋଲି ପିଉଛନ୍ତି, କୁହାଯାଇ ନପାରେ । ଆମ ଆଡ଼େ କଣ ପଇସାବାଲା କେବଳ ଅଫିମ ଖାଏ, ଗଞ୍ଜେଇ ଟାଣେ, ମଦ ପିଏ, ଅଗମ୍ୟ ଗମନ କରେ ? ସ୍ତ୍ରୀ ପିଲାଙ୍କୁ ଭୋକ ଉପାସରେ ରଖି ଅନେକ ସ୍ଥଳରେ ଏହା କରାଯାଏ । ପାନର ପୃଷ୍ଠପଟରେ

ନିର୍ମମ ଦୃଶ୍ୟ, ଭୟଙ୍କର କାହାଣୀ ଅଛି, କ୍ଷୁଧା ଆଉ ବିକଟ ଦାରିଦ୍ର୍ୟର ।

ଇଚ୍ଛା ହେଲା ପାର୍କରେ ଟିକିଏ ପଦଚାରଣା କରିବା ଲାଗି । ବନ୍ଧୁମାନେ ମନା କଲେ—ବୀଭତ୍ସ ଦୃଶ୍ୟ, ଆଖି ବୁଜି ହୋଇଯିବ; ପ୍ରକୃତରେ ହୋଟେଲକୁ ଫେରିଲାଟିବେଳେ ପଥପାର୍ଶ୍ୱରେ ଅଶ୍ଳୀଳ ଲୀଳା ଦେଖିବାକୁ ମିଳିଲା ।

ଏହାକୁ ବ୍ୟଭିଚାର କୁହାଯାଉ ନାହିଁ; ପିତାମାତା ପୁତ୍ରକନ୍ୟାଙ୍କର ଏଇ ଉଚ୍ଛୃଙ୍ଖଳ ଲୀଳାରେ ଶଙ୍କିତ ନୁହନ୍ତି; ପ୍ରଣୟ ପରେ ଏଠି ବିବାହ । କିନ୍ତୁ ବିବାହ ପୂର୍ବରୁ ବହୁ ଅବୈଧ ସନ୍ତାନ ଜନ୍ମ ହୁଅନ୍ତି । ଅବଶ୍ୟ ଆମ ଦେଶପରି ସେମାନେ ହତଭାଗ୍ୟ ନୁହନ୍ତି, ସରକାର ସେମାନଙ୍କୁ ପାଳନ କରନ୍ତି ।

ଏ ଦେଶର ସାଂସ୍କୃତିକ ପରମ୍ପରା ଦୁଇଶ ବର୍ଷରୁ ଅଧିକ ନୁହେ, ବାରଜାତି ତେରଗୋଟି ମିଶି ଜାତି ହୋଇଛି । ମନ ଖୁସିରେ ଯେ ଯେଉଁଠି ବିଭା ହେଉଛି, ମନ ତିକ୍ତ ହେଲେ ଛାଡ଼ୁଛି । ଏ କ୍ଷଣେ ସ୍ୱାମୀ ସ୍ତ୍ରୀ; ପର କ୍ଷଣରେ କେହି କାହାର ନୁହନ୍ତି । ଦୃଢ଼ ପ୍ରତ୍ୟୟ ପ୍ରଣୟର ଭିତ୍ତି ହୋଇନାହିଁ । ଲୋକେ ମୁହୂର୍ତ୍ତବାଦୀ ହୋଇଛନ୍ତି । ମୁହୂର୍ତ୍ତକୁ ଚିପୁଡ଼ି ରସ ନିଗାଡ଼ିବାରେ ବ୍ୟସ୍ତ । ଯେଉଁ ମୁହୂର୍ତ୍ତଟି ହାତରେ ଅଛି, ସେଇଟି ଏକାନ୍ତଭାବେ ନିଜର; ପରକ୍ଷଣ ଉପରେ ଆସ୍ଥା ନାହିଁ । ସେ ଶୂନ୍ୟେ ଶୂନ୍ୟେ ହାତରୁ ଖସି ଚାଲିଯାଇ ପାରେ । ସ୍ଥାୟୀ ଦାମ୍ପତ୍ୟ-ଜୀବନ, ସତୀତ୍ୱ, ପାତିବ୍ରତ୍ୟ ଏଠି ହାସ୍ୟକର ।

ହାତ ଧରାଧରି ହୋଇ ଚାଲିବା, ଚୁମ୍ବନ ଦିଆଦେଇ ହେବା ଏକ ସାଧାରଣ ଦୃଶ୍ୟ । ଏତକରେ ଅବିବାହିତ ଅବିବାହିତା ଭ୍ରଷ୍ଟ ନୁହନ୍ତି । ଲୋଡ଼ା ଦୈହିକ ମିଳନ; ସେଥିଲାଗି ଅବାଧ ସ୍ୱାଧୀନତା ମିଳେ । ଯୁବତୀର ଅର୍ଦ୍ଧଉଲଗ୍ନତା ଇନ୍ଧନ ଯୋଗାଉଛି । ଲଳିତ ଲାବଣ୍ୟ, ଲଜ୍ଜା ସରମ, ସ୍ନେହର କୋମଳ ମାଧୁରୀ ଆଉ ନାହିଁ । କୋମଳତା ଥିଲା ପ୍ରାଚୀନାର ଏକ ଶକ୍ତି,

ଆଧୁନିକା ପୁରୁଷର ପୌରୁଷ ଗ୍ରହଣ କରିଛି, ଶକ୍ତିଶାଳିନୀ ହେବା ଲାଗି । ତ୍ୟାଗ, ସେବା, ବିନୟ ପ୍ରଭୃତି ପୁରାତନ ମାହାତ୍ମ୍ୟ ଆଜି ନାହିଁ । ବୁଢ଼ୀମାନେ ଯୁବତୀ ହୋଇବା ଲାଗି ବୟୋଧିକକୁ ଯେପରି ଉନ୍ନତ ରଖିବା ଚେଷ୍ଟା କରୁଛନ୍ତି, ତାହା ଦେଖିଲେ ଦୁଃଖ ଲାଗେ, କରୁଣା ଆସେ । ଦନ୍ତ ସ୍ଖଳିତ, ଚର୍ମ ଶ୍ଳଥିତ, ବାକ୍ କମ୍ପିତ । ଏ ସବୁ କଣ ବାର୍ଦ୍ଧକ୍ୟର ଲକ୍ଷଣ ନୁହେଁ ? ବୁଢ଼ୀ ବିଧବା, ତଥାପି ସେ ବିବାହର ଆଶା ହରାଇ ନାହିଁ ।

କେତେକ ବୃଦ୍ଧ ବୃଦ୍ଧା ରୁଗ୍ଣ ଶରୀରରେ କାଳ କାଟନ୍ତି—ବଡ଼ ଏକୁଟିଆ ଜୀବନ; ନାତି ନାତୁଣୀଙ୍କ ହାସ୍ୟ କୌତୁକ ଉପଭୋଗ କରିବାର ସୁଯୋଗ ସେମାନଙ୍କର କାହିଁ ? ପରିବାରରେ ସେଭଳି ସ୍ନେହ ଶ୍ରଦ୍ଧା କାହିଁ ? ପରିବାର ମାନବତା ଶିକ୍ଷାର ମୂଳଭିତ୍ତି ଥିଲା । ଏବେ ସେ ପରିବାର ଛିନ୍ନ ବିଛିନ୍ନ; ଆତ୍ମତ୍ୟାଗର ଜ୍ୱଳନ୍ତ ଦୃଷ୍ଟାନ୍ତ ସେଠି କାହିଁ ? ଯେ ବାପକୁ ଦେଉନାହିଁ, ମାଆକୁ ଦେଉନାହିଁ, ଭାଇକୁ ଦେଉନାହିଁ, ସନ୍ତାନକୁ ଦେଉ ନାହିଁ, ସେ ଜଗତକୁ ଦେବା ଏକ ଅସ୍ୱାଭାବିକତା । ବିକଟ ଅର୍ଥପ୍ରୀତି ଓ ସ୍ୱାର୍ଥପରତା ଦେଖିଲେ ମନ ବିଷାକ୍ତ ହୋଇଯାଏ । କୁବେରପୁରୀର ବାହାର ମଣି ମଣ୍ଡିତ, କିନ୍ତୁ ଭିତର ଫମ୍ପା ଫାଙ୍କା । ଖାଲି କର୍ମ-କର୍ମ । ବଡ଼ ନିଷ୍ଠୁର ଏ କର୍ମ, ବେଳେ ବେଳେ ଚିନ୍ତାହୀନ । କିଏ ଟିକିଏ ଗମ୍ଭୀର ହୋଇ ବସିଲେ କହନ୍ତି—Make fun, Take easy । ଏଠା ଲୋକେ ଖୁବ୍ ମିଳାମିଶା କରନ୍ତି, କିନ୍ତୁ ଉପର ଠାଉରିଆ । ତିନି ଚାରି ବର୍ଷ ରହିଲା ପରେ ବିଦେଶୀ କହନ୍ତି ଏମାନଙ୍କଠାରୁ ଅସଲ ବିପଦବେଳେ ସାହାଯ୍ୟ ମିଳେ ନାହିଁ । ଏମାନେ ଖୁବ୍ ସାମାଜିକ ବୋଧ ହୁଅନ୍ତି; କିନ୍ତୁ ବିଦେଶୀର ଏକାକିତ୍ୱବୋଧ ଦୂର କରି ପାରନ୍ତି ନାହିଁ, ଅବଶ୍ୟ ସବୁ ଆମେରିକାନ୍ ଏଇଆ ନୁହନ୍ତି । ସେମାନଙ୍କ ମଧ୍ୟରେ ପ୍ରକୃତ ବନ୍ଧୁ, ହିତାକାଂକ୍ଷୀ ବ୍ୟକ୍ତି ଅଛନ୍ତି— ନାହା କାହା ଭାଗ୍ୟକୁ ମିଳିଯାନ୍ତି ।

## ସ୍ପ୍ରିଙ୍ଗ୍‌ଫିଲ୍ଡ୍ ଓ ଲେକ୍‌ଲେମନ୍

ଏ ଓଳି ସେ ଓଳି ଜ୍ଞାନ ଆଲୋଚନା କ୍ଲାନ୍ତିକର, ରୁଦ୍ଧ ଗୃହରେ ଦୀର୍ଘକାଳ ବନ୍ଦୀ ହେବା ବଡ଼ ଅଶ୍ୱସ୍ତିକର ବୋଧ ହେଉଥାଏ ।

୨୩।୬।୭୬ରେ ତେଣୁ ଗୋଟିଏ ବଣଭୋଜିର ଆୟୋଜନ କରାହେଲା—ସ୍ପ୍ରିଂଫିଲଡ୍ ଓ ଲେକ୍ ଲେମନ୍ ।

ବସ୍‌ର ସିଟ୍ ବ୍ୟବସ୍ଥା ପ୍ଲେନ ପରି । ଡ୍ରାଇଭର ପାର୍ଶ୍ଵଚାପୁ । ମୁଣ୍ଡରେ ଟୋପି । ଇଞ୍ଜିନ୍ ପାଖରେ ଲେଖା ଅଛି—your operator safe, reliable, courteous । ଏଥିରେ ଶ୍ରେଣୀ ବିଭାଗ ନାହିଁ, ମହିଳାଙ୍କ ଲାଗି ସ୍ଵତନ୍ତ୍ର ସ୍ଥାନ ମଧ୍ୟ ନାହିଁ । ଚମତ୍କାର ଗଦି, ଆଉଜିଲେ ନିଦ ଆସି ଯାଉଛି । ବସର ପେଟ ଭିତରେ ଜିନିଷ ପତ୍ର ରଖିବା ବ୍ୟବସ୍ଥା ରହିଛି ।

ଓ୍ଵାସିଂଟନ୍‌ର ଗୋଟିଏ ଝିଅ ମୋ ପାଖରେ । ପଚାରିଲି—ନାଆଁ କଣ ?

'ଜନ୍ ସନ'

'ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ !

ତୁମେ ଏଠି କଣ କରୁଛ ?'

'ଗବେଷଣା'

'ବିଷୟ ?'

'ଆଫ୍ରିକାର ଲୋକସଂସ୍କୃତି'

'ଆଫ୍ରିକା ଦେଖିଛ ?

'ନା'

'ସେ ମହାଦେଶ ଦେଖିନାହିଁ, ସେଠା ଗ୍ରାମ ଜୀବନ ବିଷୟରେ କିଛି ଜାଣି ନାହିଁ ! ତାଙ୍କ ରୀତି ବୁଝିବ କେମିତି ? ସେଠା ଗ୍ରାମ ଓ ତୁମ ଏଠା ଗ୍ରାମ ମଧ୍ୟରେ ଆକାଶ ପାତାଳ ତଫାତ୍ । ପରିବେଶ ଭିନ୍ନ, ମନୋବୃତ୍ତି ସମ୍ପୂର୍ଣ୍ଣ ଅଲଗା । ସେ ଜୀବନ ସଂଗ୍ରାମ, ଦୁଃଖ ଦାରିଦ୍ର୍ୟ, ଭୂତପ୍ରେତ ପୂଜା, ଅନ୍ଧବିଶ୍ଵାସ ତୁମ ଧାରଣାର ଅଗୋଚର ।'

ଅନୁବାଦ ଗ୍ରନ୍ଥ ପଢ଼ୁଛ । କିଛି କିଛି ବୁଝୁଛି । ମୋର ଭାରତ ଦେଖିବା ଇଚ୍ଛା ପ୍ରବଳ । ସେଠି କଣ ବାଘ, ସାପ, କୁମ୍ଭୀର ଖୁବ୍ ଅଛନ୍ତି ?

ଅଛନ୍ତି—ତାଙ୍କ ଘରେ—ପାଣିରେ ବା ବଣରେ । ବାଘ ତ ଆମର ମାମୁଁ, ସାପ ଆମର ଗୋତ୍ର । ସେମାନଙ୍କ ସଙ୍ଗେ ଆମର ସାକ୍ଷାତ୍ ହୁଏ କ୍ୱଚିତ୍ । ବାଘକୁ ଦେଖୁ ଚିଡ଼ିଆଖାନାରେ ନଇଲେ ସରକସ୍‌ରେ । କେଳା ନାଗେଶ୍ୱର ବଜାଇ ପଦ୍ମ ତୋଳା ଦୋଳି ସାପ ଖେଳାଏ । ବଣରେ ଗୋଟାଏ ଅଜଗର, ଅହିରାଜ ବା ଶଙ୍ଖଚୂଡ଼ ସଙ୍ଗେ, ପାଣିରେ କୁମ୍ଭୀର ସଙ୍ଗେ କିମ୍ବା ବଣରେ ମହାବଳ ସଙ୍ଗେ ମୁହାଁମୁହିଁ ହୋଇଯିବା ଅବଶ୍ୟ ଦୁର୍ଭାଗ୍ୟର କଥା । କିନ୍ତୁ ସେମିତି ବଣ ଆଜି କାହିଁ ? ଗୁଳ ଗୁଳ ବା କଏ ପାଉଛି ? ତୁମେ ବୋଧେ ଜାଣ ନାହିଁ, ବାଘ ସାପ ଅପେକ୍ଷା ବଣରେ ହାତୀ ଆହୁରି ଭୟଙ୍କର । ତା ହାବୁଡ଼େ ପଡ଼ିଲେ ରକ୍ଷା ନାହିଁ । ହଁ, ଭାରତରେ ବହୁ ଗୁରୁତର ସମସ୍ୟା ଥାଉଁ ଥାଉଁ ତୁମେ ବାଘ ସାପ କଥା କାହିଁକି ପଚାରିଲ ?'

ଜନ୍‌ସନ କହିଲା—ଭ୍ରମଣକାହାଣୀରୁ ପଢ଼ିଥିଲି ଯେ ଭାରତରେ ଭରି ବାଘ, ସାପ !

'ସହରବଜାରରେ ବୁଲୁଥାନ୍ତି, ନାଇଁ ?'

ଜନସନ୍ ଅବାଧ କେଶକୁ ସଜାଡ଼ୁ ସଜାଡ଼ୁ ଗୋଟାଏ ହସ ହସିଦେଲା—ଆଲୋଚନାର ଉପସଂହାର ଏ ।

ଦୁଇ ପାଖରେ ଅଗଣିତ ବୃକ୍ଷଲତା, ଅଚିହ୍ନା ! ସବୁଜ ପ୍ରାନ୍ତର ଓ ଶସ୍ୟକ୍ଷେତ୍ର । କାହାରି ଦେହରେ ଜ୍ୟେଷ୍ଠର ଅଗ୍ନି ଭୃକୁଟୀ ବାଜି ନାହିଁ । ବସନ୍ତର ସଦାସ୍ମିତ ଅନୁରାଗ ଜ୍ୱଳନ୍ତ । ବସନ୍ତ ଓ ଗ୍ରୀଷ୍ମ ମଧ୍ୟରେ ଗୋଟାଏ ବିରାଟ ତାରତମ୍ୟ ଏଠି ନାହିଁ । ବସନ୍ତ ବର୍ଷର ଏକମାତ୍ର ଦକ୍ଷିଣନାୟକ ନୁହେ, ଗ୍ରୀଷ୍ମ ଅଗ୍ନିଶର୍ମା ଦୁର୍ବାସା ନୁହେ । ଗ୍ରୀଷ୍ମ ପୁଷ୍ପବିଭବରେ ଦରିଦ୍ର; କିନ୍ତୁ ତାର ପତ୍ରସମ୍ଭାର ବିପୁଳ, ଶ୍ୟାମଳ—ଘନ ଶ୍ୟାମଳ । ଶୁଷ୍କତା କେବଳ ମୃତ୍ୟୁରେ, ରୁକ୍ଷତା ମୁମୂର୍ଷୁରେ, ଜୀବନ ସଂଗ୍ରାମର କଠୋରତା

କେଉଁଠି ନାହିଁ, ପତ୍ରକଣ୍ଟକର ପ୍ରତିଯୋଗିତା ମାତ୍ର । ବଡ଼ଲୋକର ଅଳିଅଳି ପୁଅ କନ୍ୟା ପରି ବୃକ୍ଷଲତା ବଢ଼ୁଛନ୍ତି । ଅଭାବ କଣ ଜାଣନ୍ତି ନାହିଁ, ତାଡ଼ନା କଣ ବୁଝନ୍ତି ନାହିଁ । ବୃକ୍ଷଲତା ଯେଉଁଠି ଏତେ ସବୁଜ, ପାହାଡ଼ ସେଠି ନୀଳ—ନୀଳ—ନୀଳିମାମୟ ।

ରାସ୍ତାରେ ଉଠାଣି ଗଡ଼ାଣି ବହୁତ, କିନ୍ତୁ ଧକ୍କା ଦୋହଲା ନାହିଁ । ବେଡ଼୍ଫୋର୍ଡ ସହରରେ ଆମେ ପହଞ୍ଚିଲୁ । ଏହି ସହର ପୃଥିବୀର ପାଷାଣ ରାଜଧାନୀ ନାମରେ ଆଖ୍ୟାତ । ଏଠା ପ୍ରସ୍ତର ଖଣିରୁ ପୃଥିବୀର ବିଭିନ୍ନ ଦେଶକୁ ପ୍ରସ୍ତର ରପ୍ତାନୀ ହୁଏ । ବୃହତ୍ ପ୍ରସ୍ତର ଖଣ୍ଡ କରତରେ କଟା ହୋଇ ସମାନ କରାଯାଉ ଥିବାର ଦେଖିଲି ।

ତାପରେ ମିଚେଲ୍ ସହର ପଡ଼ିଲା, ଏବେ ପ୍ରସିଦ୍ଧି ଲାଭ କରିଛି 'ଗ୍ରିସମ୍'ଙ୍କ ଯୋଗୁଁ । ଗ୍ରିସମ୍‌ଙ୍କ ଜନ୍ମଭୂମି ଏ । ସେ ଆଷ୍ଟ୍ରୋନଟ୍; ଆକାଶରେ ଭ୍ରମଣ କରି ଫେରିବା ପରେ ଏହି ସହର ବିଶେଷ ପ୍ରସିଦ୍ଧି ଲାଭ କରିଛି ! ସହରର ଗୋଟିଏ ଅଞ୍ଚଳରେ ବହୁ ଟ୍ରେଲର୍ ବା ମୋବାଇଲ ହାଉସ୍ ଦେଖିଲି; ଏହି ଚଳନ୍ତା ଘରେ ରହିହେବ । ରୋଷେଇ କରି ହେବ, ଖାଇ ହେବ । ହୋଟେଲରେ ଜାଗା ନ ମିଳିଲେ ଚିନ୍ତା ନାହିଁ । ଟ୍ରେଲର୍‌ରେ ସପରିବାର ଯାଇ ଦୂରଦୂରାନ୍ତରେ ୨।୪ ଦିନ କଟାଇ ଆସିବା ସୁବିଧାଜନକ ।

ଦିନ ଏଗାରଟାବେଳେ ସ୍ପ୍ରିଙ୍ଗମିଲ ଷ୍ଟେଟ୍ ପାର୍କରେ ପହଞ୍ଚିଲୁ । ପାହାଡ଼ ଉପରେ ଗୋଟିଏ ରେସ୍ତୋରାଁ; କାଚର କାନ୍ଥ, ନାନା ଦୃଶ୍ୟର ଛବି ଝୁଲୁଛି. ପୁସ୍ତକ ପାମ୍ଫଲେଟ୍ ମଧ୍ୟ ବିକ୍ରି ହେଉଛି । ଗୃହସଜ୍ଜା ଓ ଆୟୋଜନ ଆଡ଼ମ୍ବର ନଗରର ଯେ କୌଣସି ପ୍ରଥମ ଶ୍ରେଣୀ ରେସ୍ତୋରାଁ ପରି । ଖାଦ୍ୟର ପ୍ରାଚୁର୍ଯ୍ୟ ଓ ବୈବିଧ୍ୟରେ ପରିତୃପ୍ତି ଆସେ ।

ଲଞ୍ଚ ପରେ ପାହାଡ଼ରେ ଭ୍ରମଣ; ବୃକ୍ଷଲତାର ଘନଗୁମ୍ଫା, ରୌଦ୍ର ବିନ୍ଦୁଯୁକ୍ତ, ଶୀତଳ ପବନରେ ଅରଣ୍ୟର ମୃଦୁ ଶିହରଣ ମନରେ ପ୍ରଶାନ୍ତ ପ୍ରସନ୍ନତା ଭରି ଦେଲା । ଚଲାବାଟ ବଙ୍କାଟଙ୍କା ହୋଇ ଯାଇଛି ପାହାଡ଼ ତଳକୁ । ପାହାଡ଼ ତଳେ ଗୋଟିଏ ହ୍ରଦ, କୂଳର ସ୍ୱଚ୍ଛ ଜଳରେ

ବନ ସ୍ଥପ୍ନ ଅଙ୍କିତ; ମଧ୍ୟଭାଗରେ ରୌଦ୍ରର ରୌପ୍ୟ ଆଲୋକ ଝଲମଲ । ପକ୍ୱ ଓ ଶୁଷ୍କ ପତ୍ର ମାଡ଼ି ଚାଲିଛି ସୁଗାଲୁ । ଚଲାରେ ରୋମାଞ୍ଚ ଅଛି, ଯେହେତୁ ଏହା ବଣର, ବୌଦ୍ଧ ଏଠି ସାଧାରଣ କଥା ।

ଏଇ ହ୍ରଦରେ ସ୍ରୋତ ଝରଣାଟିଏ ମିଶିଛି, ସ୍ରୋତ ପ୍ରଖର । ତା ମଧ୍ୟରେ ଅଗଣିତ ବାଲିଗିରଡ଼ା, ଶିଉଳରେ ସବୁଜ, ଶୀନଲତା ଅସନ୍ତୁଷ୍ଟ, କୁଣ୍ଠିତ ପାଦ ପକାଇ ପାର ହେଲୁ । କୂଳରେ ଗାଢ଼ ସବୁଜ ଘାସ, ବଡ଼ ବଡ଼ ଓକ୍ ଅଭ୍ରଭେଦକ ଗାମ୍ଭୀର୍ଯ୍ୟରେ ଛିଡ଼ା ହୋଇଛନ୍ତି । ପକ୍ଷୀ କାକଳୀ ବ୍ୟତୀତ ଅନ୍ୟ ଶବ୍ଦ ନାହିଁ । ଝରଣାକୂଳରେ ଗୋଟିଏ ମ୍ରିଲମିଲ; ଚକ ବୁଲୁଛି, ବଗିଚାକୁ ପାଣି ଉଠୁଚି । ଏବେ ଜଳସେଚନ କାର୍ଯ୍ୟରେ ଏଇ ମିଲ୍‌ଟି ବ୍ୟବହୃତ । ମିଲ୍‌ର ଉପର ଘରେ ଗୋଟିଏ ଯାଦୁଘର । ଏ ଅଞ୍ଚଳର ପ୍ରାଚୀନ ଅସ୍ତ୍ରଶସ୍ତ୍ର, ବାସନକୁସନ, ବସନଭୂଷଣ, କୃଷି ଯନ୍ତ୍ରପାତି ପ୍ରଦର୍ଶିତ ହୋଇଛି । ମିଲ୍ ପାଖେ ଛୋଟ ଘର, ଦେଢ଼ଶ ବର୍ଷ ତଳର କାଠରେ ତିଆରି । ଏହା ଏ ଅଞ୍ଚଳର ବସତି ଆରମ୍ଭ ହେବା ପୂର୍ବରୁ ନିର୍ମିତ, ଏବେ ସୁରକ୍ଷିତ । ଗୋଟିଏ ବୁଢ଼ୀ ତନ୍ତରେ ଲୁଗା ବୁଣୁଛି, ଆଉ ତାଙ୍କର ବୁଣା ଶାଢ଼ିର ନମୁନା । ଭ୍ରମଣକାରୀମାନଙ୍କୁ ଦେଖାଇବା ଲାଗି ।

'ଲେକ୍‌ଲେମନ' ହ୍ରଦ ପାହାଡ଼ ଘେରା ଝଙ୍କା ଗଛ ଭରା । ମଟରବୋଟ୍‌ରେ ଯାତ୍ରୀମାନେ ହ୍ରଦରେ ବିହାର କରୁଛନ୍ତି । ତା ଲଞ୍ଚରେ କେହି କେହି ସ୍କିଙ୍ଗ ଅଭ୍ୟାସ କରୁଛନ୍ତି । ଅତି ଦ୍ରୁତ ଗତିରେ ବୋଟ ଧାଉଁଛି ଓ ସ୍କିଙ୍ଗ୍ ପାଦୁକାରେ ଛିଡ଼ା ହୋଇ ଲୋକ ତାପଛେ ପଛେ ଧାଉଁଛି; ଚମକପ୍ରଦ ଦୃଶ୍ୟ । ହ୍ରଦ ତୀରରେ ନାଗରଦୋଳା ବୁଲୁଛି । ସ୍ରୋତ ପିଲଙ୍କୁ ନାଗରଦୋଳାରେ ବୁଲିବା ପାଇଁ ଛାଡ଼ି ଦେଇ ବାପ ମାଆ ମାତିଛନ୍ତି ସନ୍ତରଣରେ । ରବର ଶେଯରେ ଶୋଇ ପହଁରୁଛନ୍ତି କେତେକ, କେହି କେହି ରବର ଚୌକିରେ ପାଣି ଉପରେ ବସୁଛନ୍ତି । ପିଲାମାନେ ରବର କୁକୁର ବା ଘୋଡ଼ା ଉପରେ ହାତ ରଖି ପହଁରୁଛନ୍ତି । ବୟସର ଖାସ ରଙ୍କ ଛାଡ଼ ନାହିଁ । ତଉଲିଆ ଖଣ୍ଡିଏ ଲେଖାଏ ଉଷୁମ ବାଲି

ଉପରେ ପାଣି ଦେଇ ଲୋକେ ଖଚ୍ଚ ପୋଡୁଁ ଚନ୍ତି ବା ଖଚ୍ଚରେ ଗାଧୋଉଛନ୍ତି । ଯୁବତୀମାନଙ୍କର ସୂର୍ଯ୍ୟସ୍ନାନ ଏକ ପ୍ରୟୋଜନ, ଛେଚା ଧଳାକୁ ତମ୍ବାଳିଆ କରିବା ଲାଗି । ରୌଦ୍ର ଦଗ୍ଧ ଦେହେଗାର ଏକ ସ୍ୱତନ୍ତ୍ର ମୂଲ୍ୟ ଅଛି ଏଠି । ଗୋଟିଏ ଗଛ ଛାଇ ତଳେ ବସି ଏ ଦୃଶ୍ୟ ଦେଖୁଛି, ଶୀତଳ ପବନରେ ଆଖିରେ ନିଦ ପୂରି ଆସିଲା । ବିଶ୍ରାମାଗାରକୁ ଚାଲି ଆସିଲି । ପୂରାପୂରି କାଠରେ ତିଆରି—କାଠ ଛାତ ଚାଳ ଘର ଗଡ଼ାଣିଆ । ବର୍ଷା ସାମାନ୍ୟ । ବରଫ ତଳକୁ ଖସିପଡ଼େ । ପିଲାଟିଏ ଧନୁରେ ଶର ଯୋଖୁଛି; ଆମେ ଗୋଟିଏ ଯୁବତୀର ଗାଡ଼ିରେ ବସିଲୁ । ଯୁବତୀଟି ଅତି ଦ୍ରୁତ ଗତିରେ ଗାଡ଼ି ଚଳାଇବା ଦେଖି ବନ୍ଧୁ କୌତୁକ କରି କହିଲେ—ଜଣେ ସୁନ୍ଦରୀ ହାତରେ ଆମେ ପଡ଼ିଥାଇଁ; ଆମକୁ ସ୍ୱର୍ଗକୁ କି ନରକକୁ ନେଉଛନ୍ତି, ସେ ଜାଣନ୍ତି । ଯୁବତୀଟି ସିଗାରେଟ୍ ଧୂଆଁ ଛାଡ଼ି ହସି ହସି କହିଲା—ସ୍ୱର୍ଗ କମ୍ବା ନରକକୁ ନୁହେ, ସିଧା ଏଣ୍ଡିଆନାକୁ ।

## ଷ୍ଟିଥ୍ ଥମ୍ପସନ୍ଙ୍କ ଘରେ

ଥମ୍ପସନ୍ ବିଶ୍ୱବିଖ୍ୟାତ ଲୋକସଂସ୍କୃତିବିତ୍ । ତାଙ୍କ Motifs of Folklore ଛ' ଖଣ୍ଡରେ ପ୍ରକାଶିତ । ଲୋକ୍ନତ ଭାରତୀୟ ଲୋକ ସାହିତ୍ୟ ସଂଗ୍ରହରେ ସେ ଅଗ୍ରଣୀ । ଏବେ ବ୍ଲୁମିଂଟନ୍ରେ ବାସ କରନ୍ତି । ଏସିଆ ଲୋକସଂସ୍କୃତି ସମ୍ମେଳନ ମୂଳରେ ତାଙ୍କର ପ୍ରେରଣା ଓ ଆଶୀର୍ବାଦ ରହିଛି । ମି. ଓ ମିସେସ ଥମ୍ପସନ୍ ଏସିଆର ପ୍ରତିନିଧିମାନଙ୍କୁ ଏକ କକ୍ଟେଲ ପାର୍ଟି ଦେଇଛନ୍ତି ।

ଚିଙ୍ଗୁଡ଼ି ମାଛ, କୁକୁଡ଼ା ଡ଼ିମ୍ବ, କାଜୁ ବାଦାମ, ବିବିଧ ମାଂସ, ମିଷ୍ଟାନ୍ନ ଓ ଫଳ, ମଦ୍ୟ, ସପୁରି ଓ କମଳା ଲେମ୍ବୁ ରସ ଟେବୁଲମାନଙ୍କରେ ସଜ୍ଜିତ । ମି: ଥମ୍ପସନ୍ ଆଗନ୍ତୁକମାନଙ୍କ ସହିତ ଆଳାପ ଜମାଇଛନ୍ତି । ମିସେସ୍ ମଦ୍ୟ ପରିବେଷଣ କରୁଛନ୍ତି । ଏହି ଦମ୍ପତିଙ୍କୁ ମୁଁ ଦୁଇଟି କଟକୀ ତାରକସୀ ଗୋଲାପ ଫୁଲ ଉପହାର ଦେଲି । ଥମ୍ପସନ ଧନ୍ୟବାଦ ଦେବା ପରେ ମୋତେ ଘର ଭିତରକୁ ଡାକନେଲେ । ଜଣେ ଭାରତୀୟ ବନ୍ଧୁ ମନା କରୁଥାନ୍ତି—It is not good taste—ମାନେ ଭଦ୍ର ମହଲ ଛାଡ଼ି

ଏତେବେଳେ ତର୍ଚ୍ଚ ।ଜାଗାଙ୍କ ସଙ୍ଗେ ମିଳା ଭଲ କଥା ନୁହେଁ । ଥମ୍ପସନ୍
ତାଙ୍କ ପଢ଼ା ଘରର ଦୁଆରେ ଛିଡ଼ା ହୋଇ ମୋତେ ଅପେକ୍ଷା କରିଥାନ୍ତି ।
ନମିବା ବରଂ ଅଭଦ୍ରତା ।

ଯାଇ ଦେଖିଲି—ତାଙ୍କ ରଚିତ ସମସ୍ତ ପୁସ୍ତକ ଗୋଟିଏ କାଚ
ଆଲମିରାରେ ରଖା ଯାଇଛି, ଗୋଟିଏ ବୃହତ୍ ପାଠାଗାର, ସେଥିରେ
ଲୋକସଂସ୍କୃତି ସମ୍ପର୍କୀୟ ପୁସ୍ତକ ଅଧିକ । ଗୃହଟି ନାନା ପ୍ଲାଷ୍ଟିକ—
ଲତା, ପୁଷ୍ପଗୁଚ୍ଛ, ଛବି ଓ ମୂର୍ତ୍ତିରେ ସୁସଜ୍ଜିତ—ଗୃହିଣୀଙ୍କ କୃତିତ୍ୱ ।

ଥମ୍ପସନ ମୋ ସଂଗ୍ରହ ଓ ଗବେଷଣା ବିଷୟରେ କେତେକ କଥା
ପଚାରି ବୁଝିଲେ; ମୋତେ Bibliography of Folklore ନାମକ
ଖଣ୍ଡିଏ ପୁସ୍ତକ ଓ Pmla ନାମକ ପାମ୍ପଲେଟ୍ ଖଣ୍ଡିଏ ଉପହାର ଦେଲେ
ଓ ଆଶୀର୍ବାଦ ପତ୍ରଟିଏ ଲେଖିଦେଲେ—"For his work in
folklore & for all this other endeavours I give for
what is worth my blessings & best wishes."

ବିଦ୍ୟାବନ୍ତର ଗାମ୍ଭୀର୍ଯ୍ୟ ଓ ବିଦଗ୍ଧ ମାଧୁର୍ଯ୍ୟ ସଙ୍ଗେ ଶିଶୁସୁଲଭ
ସରଳ କୌତୁକ ସ୍ୱଭାବ ମାନୁଥାଏ । ଏହି ବୟୋବୃଦ୍ଧ ସୁଧୀଙ୍କ ଆଶୀର୍ବାଦ ମୋ
ଜୀବନ ପଥର ଏକ ପ୍ରେରଣା । ମନେ ହୁଏ, ଯେଉଁଦିନ କିଛି ସଂକଳ୍ପ ଘେନି
ଫେରିଲି, ତାଙ୍କ ଆଶୀର୍ବାଦରେ ଦୃଢ଼ତର ।

## ଏଣ୍ଟ୍ରି ଅନ୍ ଆସୋସିଏସନ୍

ବ୍ଲୁମିଂଟନ୍‌ରେ ଭାରତୀୟ ଛାତ୍ରମାନଙ୍କର ଗୋଟିଏ ସଂଘ ଅଛି ।
ସେତେବେଳର ସଭାପତି ହରିଶଙ୍କର ଉପାଧ୍ୟାୟ । ଏହି ଅନୁଷ୍ଠାନ ତରଫରୁ
ଭାରତୀୟ ଦର୍ଶନାର୍ଥୀମାନଙ୍କୁ ସମ୍ବର୍ଦ୍ଧନା କରାଯାଇଥିଲା । ସେଦିନର ଉତ୍ସବରେ
ବମ୍ବେ, ଉତ୍ତର ପ୍ରଦେଶ, ପଞ୍ଜାବ, ମହାରାଷ୍ଟ୍ର, ବଙ୍ଗଳା, ଓଡ଼ିଶା, ଓ
ଆସାମର ବ୍ୟକ୍ତିମାନେ ଉପସ୍ଥିତ ଥିଲେ । କେବଳ ଦକ୍ଷିଣ ଭାରତରୁ କେହି
ନ ଥିଲେ । ଉପସ୍ଥିତଙ୍କ ମଧ୍ୟରୁ କେହି ଭିଜିଟିଙ୍ଗ୍ ପ୍ରଫେସର; କେହି ବା
ପି ଏଚ୍ ଡ଼ି. ଛାତ୍ର, ସପରିବାର ଆମେରିକା ଆସିଛନ୍ତି । ପରିଚୟ,

ଆଳାପ ଓ ହସଖୁସି ମଧ୍ୟରେ ପରସ୍ପରଠାରୁ ବିଦାୟ ନେଇଥିଲୁ । ଏକ ଅପୂର୍ବ ଶିହରଣ ପ୍ରାଣକୁ ପୁଲକିତ କରିଥିଲା । ସ୍ୱଦେଶରେ ଏପରି ଏକାନ୍ତ ବସି ଘରଷ୍ଟପୂଚା ଅନୁଭବ କରିବାର ସୁଯୋଗ କ୍ୱଚିତ୍ ଆସେ ।

## ମି: ଓ ମିସେସ୍ ହକ୍

ମି: ହକ୍ ରେଡ଼ିଓ ଅଫିସ୍‌ରେ କାମ କରନ୍ତି, ମାସକୁ ଦରମା ତିନିଶ ଡଲାର୍ । ସ୍ଲେଟ ଘରଟିଏ ଭଡ଼ା ନେଇଛନ୍ତି, ନାନା ଆସବାବ୍, ଟେଲିଫୋନ, ଟେଲି ଭିଜନ୍ ଖଦାଖୁନ୍ଦ । ପୁଅଟି ନାଆଁ ରାଜ, ଝିଅର ନାଆଁ ରୁମା । ହକ୍‌ଙ୍କ ଭଉଣୀ ପି·ଏଚ୍. ଡ଼ି. କରୁଛନ୍ତି । ତାଙ୍କର ପୁତ୍ର କନ୍ୟା ଛ'ଟି । ସୁନ୍ଦରୀ, ସ୍ୱାସ୍ଥ୍ୟବତୀ, ଅନୁମାନ ପଚିଶ ଟପିବ ନାହିଁ । ପୁତ୍ରକନ୍ୟାଙ୍କୁ ପାକସ୍ଥାନରେ ଶାଶୂଙ୍କ ପାଖେ ଛାଡ଼ିଦେଇ ଆସି ସେ ଏଠି ପଢ଼ୁଛନ୍ତି—ସ୍ୱାମୀ ଓ ସନ୍ତାନମାନଙ୍କ ପାର୍ଶ୍ୱ ବିଚ୍ଛେଦର କାରୁଣ୍ୟ ଶ୍ରୀକୁ ମଳିନତର କରିଛି, କଥାକୁ ଦେଇଛି ବିଷାଦଗୀତିର ମାଧୁରୀ । ମୋତେ ଦେଖି ସେ କହିଲେ—ଆପଣ ମୋ ମାମୁଁ ପରି ଦିଶୁଛନ୍ତି; ଆମ ମୁହଁରୁ ବଙ୍ଗଳା ଶୁଣି ହକ୍ ଗୃହିଣୀ ଓ ତାଙ୍କ ନଣନ୍ଦ କହିଲେ—ଓହୋ, ଏତେ ଦିନକେ ମନ ଖୋଲି ଦି ପଦ କଥା ହେବାର ସୁଯୋଗ ମିଳିଲା ।

ମିସେସ୍ ହକ୍ ଆମେରିକା ଜୀବନର ଜଣେ ସମାଲୋଚିକା । ସାଲାଡ଼୍ ସମ୍ପର୍କରେ କହିଲେ—ଏଠା ଲୋକେ ଗୋରୁ ଘୋଡ଼ା ପରି କଞ୍ଚା ପତ୍ର କାହିଁକି ଚୋବାନ୍ତି ?

ଶିଶୁପାଳନ ସମ୍ପର୍କରେ କହିଲେ—ପିଲାକୁ ଜର ହେଲେ ବାପ ମାଆ ସଙ୍ଗେ ସଙ୍ଗେ ଡାକ୍ତରଙ୍କୁ ଦେଖାନ୍ତି । ଉତ୍ତାପ ବଢ଼ିଲେ ମୁଣ୍ଡ ଧୋଇ ଦେବା ବା ପାଣି ପଟି ଦେବା କଥା ଜାଣନ୍ତି ନାହିଁ । ସକାଳୁ ଦାନ୍ତଘଷିବା ଦୂରେ ଥାଉ, ମୁହଁ ନ ଧୋଇ ପିଲାଏ ଖାଆନ୍ତି ।

ମିସେସ୍ ହକ୍ ସୁଗୃହିଣୀ, "ରନ୍ଧଣିପଣକୁ ହାସ ।" ଡାଲି ଭାତ, ଝୋଲ୍ ଝାଲ, ପାଏସ, କିଛି ଟୁଣିବାକୁ ନାହିଁ, ବରଂ ଗୁଣିବାକୁ

ଇଚ୍ଛା ହେବ, ସ୍ୱାଦୁ ତରକାରୀ ସହିତ ସ୍ନେହ ମଧୁର ବଚନ ଶୁଣିଲେ । କିଏ କହିବ, ଆମେ ଦୁଇଟି ଜାତି, ମାଆ ପେଟରୁ ଭଗାରି ପର ଚଳି ଆସୁଛୁ ବୋଲି ? ରାଜନୀତି ଦ୍ୱିଖଣ୍ଡିତ କରିଛି ଭୂମିକୁ, କିନ୍ତୁ ହୃଦୟ ଅଦ୍ୟାପି ଏକ ଓ ଅଭିନ୍ନ ହୋଇରହିଛି, କାରଣ ସେଠି ପ୍ରୀତି—ପ୍ରୀତି ଭଙ୍ଗାଦଦରଙ୍କୁ ଯୋଡ଼ି ଗୋଟିଏ କରେ ।

## ଫାନ୍‌ସି ଫେୟାର

ଏଠା ନାଗରଦୋଳା ବିଦ୍ୟୁତ୍ ଚାଳିତ, ଆକୃତିରେ ବିଶାଳ, ଆଲୋକରେ ରଙ୍ଗୀନ୍ । ବହୁ ଦୂରରୁ ଏହା ପ୍ରଥମେ ଦୃଷ୍ଟି ଆକର୍ଷଣ କରେ । ହଜ୍ ଭବନରୁ ଫେରିଲା ପରେ ଆମେ ମେଳାରେ ପଶିଲୁ । ବ୍ୟୋମଯାନ ଆକୃତିର ଚୌକିରେ ଦଳେ ବସି ନାଗର ଦୋଳାରେ ବିଦ୍ୟୁତ୍ ଗତିରେ ବୁଲୁଛନ୍ତି, ଆଖି ଖୋସି ହୋଇଯିବ । ଦୋକାନମାନଙ୍କରେ ନାନା ଶିଳ୍ପର ସଜାସଜି, ରଙ୍ଗୀନ ଆଲୋକରେ ଝଲମଲ । ରେଷ୍ଟୁରାଣ୍ଟ ସବୁଠାରୁ ଜମିଛି ବେଶୀ—ପାନ ଭୋଜନ ଧୂମ୍ ଚାଲିଛି । ଟିକିଏ ଧୂଳି ଧୂମ ନାହିଁ, କେହି ଗରବ ଦିଶୁନାହିଁ, ଚତୁର୍ଦ୍ଦିଗରେ ପ୍ରସନ୍ନତା ଓ ଉଜ୍ଜ୍ୱଳତାର ରାଜତ୍ୱ । ଏଠି ବୃଦ୍ଧ ବୃଦ୍ଧା ନାହାନ୍ତି—କିଶୋର କିଶୋରୀ କିମ୍ବା ତରୁଣ ତରୁଣୀ; ସବୁ କ୍ଷିପ୍ର, ସବୁ ଚଞ୍ଚଳ, ସଙ୍ଗୀତ ମୁଖର; ନୃତ୍ୟ ମଧୁର । ଆନନ୍ଦ ମେଳା—ଜସ୍ରବର ଉଜ୍ଜ୍ୱଳତମ ହାସ୍ୟ ଚତୁର୍ଦ୍ଦିଗରେ ବୁଣି ହୋଇ ପଡ଼ୁଛି ।

## ଲିଲ୍ଲି ଲାଇବ୍ରେରୀ

ପାଠାଗାରରେ ପଶିଲେ ସୃଷ୍ଟିର ପ୍ରେରଣା ଆସେ, ସୁନ୍ଦରର ଆରାଧନା ଯେଉଁମାନେ କରି ଯାଇଛନ୍ତି, ସେମାନଙ୍କ ଛବି ଦେଖି—ତନ୍ତୁ ବହୁ ମହଲ ପର୍ଯ୍ୟନ୍ତ—ସେକ୍‌ସପିଅର, ଭଲ୍‌ଟାୟାର, ମିଲଟନ୍, ଟେନିସନ, କାର୍‌ଲାଇଲ୍, ଜନ୍‌ସନ୍, ସାଉଦେ, ପୋପ୍, ଗୋଲ୍ଡ୍‌ସ୍ମିଥ୍, ଡାର୍‌ୱିନ୍, ୱାର୍ଡ୍‌ସ୍‌ୱାର୍ଥ, ସେଲି, ବାଇରନ୍, ଡ୍ରାଇଡେନ୍, ବାନାଡ଼୍ସ, ରବର୍ଟ ବ୍ରିଜେସ୍, ଏଚ୍. ଜି. ୱେଲ୍‌ସ୍, କୋଲ୍, ରବୀନ୍ଦ୍ରନାଥ, ସ୍ୱିନ୍‌ବର୍ଣ୍ଣ, ବର୍ଟ୍ରାଣ୍ଡ୍ ରସେଲ୍, ରବର୍ଟ ଫ୍ରଷ୍ଟ, ହ୍ୱିଟ୍‌ମ୍ୟାନ,

ହେମିଂୱେ—ସେମାନଙ୍କ ରଚନାର ପାଣ୍ଡୁଲିପି ଓ ଦୁର୍ଲଭ ସଂସ୍କରଣମାନ ଏହି ପାଠାଗାରରେ ସଂରକ୍ଷିତ । କବିତାର ଗୋଟିଏ ସ୍ୱତନ୍ତ୍ର ହଲ୍ ରହିଛି । ସେଥିରେ ୧୫୯୦ ଖ୍ରୀଷ୍ଟାବ୍ଦରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ପ୍ରକାଶିତ ସାବଶୀସ୍ତ୍ର ଉତ୍କୃଷ୍ଟ କବିତା ଗ୍ରନ୍ଥ ଶ୍ରେଣୀବଦ୍ଧ ଓ ସୁସଜ୍ଜିତ କରି ରଖାହୋଇଛି ।

ଏଲି ଲିଲ୍ଲିଙ୍କ ନାମାନୁସାରେ ଏହି ପାଠାଗାର ନାମିତ । ସେ ଓ ତାଙ୍କର ପୂର୍ବବର୍ତ୍ତୀ ବଂଶଧରମାନେ ଦେଶ ଓ ଜାତିର ବିଶେଷ କଲ୍ୟାଣ କରି ଯାଇଛନ୍ତି, ଏହି ଲାଇବ୍ରେରୀ ନିର୍ମାଣ ଲାଗି ବିଶେଷ ଦାନ ମଧ୍ୟ ଦେଇଛନ୍ତି । ମିଚିଗାନ ବିଶ୍ୱବିଦ୍ୟାଳୟର କ୍ଲେମେଣ୍ଟସ୍ ଲାଇବ୍ରେରୀ, କାଲିଫର୍ଣ୍ଣିଆର ବାନ୍‌କ୍ରଫ୍ଟ ଲାଇବ୍ରେରୀ, ହାରଭାର୍ଡର ହାଉଟନ୍‌ମ୍ୟାନ୍ ଲାଇବ୍ରେରୀ ପରି ଯୁକ୍ତରାଷ୍ଟ୍ରରେ ଲିଲ୍ଲି ଲାଇବ୍ରେରୀର ପ୍ରତିଷ୍ଠା ରହିଛି । ବହୁ ଦୁଷ୍ପ୍ରାପ୍ୟ ପାଣ୍ଡୁଲିପି, ଐତିହାସିକ ଚିଠିପତ୍ର, ଫଟୋ ଏଠି ସଂରକ୍ଷିତ ।

ଗୋଟିଏ ଫଳକରେ ଲେଖା ଅଛି—

ନିଜ ବାକ୍ ଓ କର୍ମରେ ଯେଉଁମାନେ ଇତିହାସକୁ
ଭୂଷିତ କରି ଯାଇଛନ୍ତି;
କିଏ ସ୍ୱର୍ଣ୍ଣମୁଦ୍ରା ପାଇଛନ୍ତି
କିଏ ବା ଅଙ୍ଗୁଳି ବଗଧ କରି ଯାଇଛନ୍ତି
ପାଇଛନ୍ତି ଆମରଣ ନିନ୍ଦା
ଅବା ନିନ୍ଦା ପ୍ରଶଂସା ଉଭୟ
ଯେଉଁ ଆକାଶ ତଳେ ସେମାନେ ଥିଲେ
ସେ ଆକାଶ ଏବେ ଆମର
ଯେଉଁ ପୃଥିବୀକୁ ପ୍ରାଣ ଭରି ଭଲ ପାଇଥିଲେ
ସେ ପୃଥିବୀ ଏବେ ଆମର ।

ଲାଇବ୍ରେରୀରୁ ଫେରିଲାବେଳେ ଆଖି ବୁଲିଗଲା ଏକ ଅଦ୍ଭୁତ ହିଲ୍ଲୋଳ ଉପରେ—ହାଇସ୍କୁଲର ଶତ ଶତ ଛାତ୍ରୀ—ମୁକ ହୋଇ ଦେଖୁଥିଲି ଯୌବନର ଏ ଲୀଳାଗୃହଳୀ, ଅପୂର୍ବ ସଙ୍ଗମ ମଝିରେ; ପାଟି ଫିଟୁ ନାହିଁ—ଠାରେଠାରି, ଫୁସ୍‌ଫାସ୍, ଚଳା ପାଇନ୍‌ର ମର୍ମର

ପଣ—ସେ ହ୍ୱାଲ୍ଲୋଲ ତ ହଜବାର ନୁହେ, ଏବେ ସେପରି କ ପ୍ରାଣ ଉପକୂଳରେ ବାଜୁଛି ।

## ଲୋକସଂସ୍କୃତି ପାଠାଗାର

ଅମେରିକାର ଶ୍ରେଷ୍ଠ ଲୋକସଂସ୍କୃତି ପାଠାଗାର ଏଣ୍ଡିଆନାରେ ଗଢ଼ା ହୋଇଛି; ପଚାଶ ହଜାର ଟେପ୍ ରେକର୍ଡିଂ ଗୀତ ସ୍ୱର, ଷାଠିଏ ହଜାର ଲୋକ ଗୀତ; ଲୋକ କଥା, କିମ୍ବଦନ୍ତୀ, ନାନାଧାନ୍ଧିଆ, ପ୍ରବଚନ ଫିନଲାଣ୍ଡର ବହୁ ଲୋକ ସଂସ୍କୃତି ପାଣ୍ଡୁଲେଖ୍ୟର ମାଇକ୍ରୋଫିଲ୍ମ, ନାନା ଯାଦୁ ବିଦ୍ୟା, ପାଞ୍ଚପାଞ୍ଚାଣି, ଲୋକକଳା, ଲୋକଶିଳ୍ପ, ଲୋକନାଟ୍ୟ, ଖେଳ ଓ ଖେଳଣାର ଅମୂଲ୍ୟ ସଂଗ୍ରହ ଏଠି ରହିଅଛି । ପୃଥିବୀର ପ୍ରାୟ ସବୁ ଦେଶର ସଂଗ୍ରାହକ, ଗବେଷକ, ଶିକ୍ଷକ, ଫୋର୍ଡ ଫାଉଣ୍ଡେସନ୍‌ର ଆନୁକୂଲ୍ୟରେ ଏଠି ଗବେଷଣା କରୁଛନ୍ତି । ଲୋକସଂସ୍କୃତିରେ ବି. ଏ, ଏମ୍ ଏ, ପିଏଚ, ଡ଼ି ପଢ଼ିବାର ସୁବ୍ୟବସ୍ଥା ରହିଛି । ଲୋକସଂସ୍କୃତି ଅଧ୍ୟୟନ ଲାଗି ସାଧାରଣତ ପିଏଚ, ଡ଼ି କ୍ଲାସ ହୁଏ, ପିଏଚ, ଡ଼ି ଡ଼ିଗ୍ରୀ ଲାଗି ଛାତ୍ରଙ୍କୁ ୯୦ କ୍ରେଡିଟ୍ କରିବାକୁ ହୁଏ, ନିଜ ଦେଶର ଲୋକସଂସ୍କୃତି ଛଡ଼ା ପୃଥିବୀର ଅନ୍ୟ ଦୁଇଟି ଦେଶର ଲୋକସଂସ୍କୃତି ପଢିବାକୁ ହୋଇଥାଏ ।

## ଏସିଆନ୍ ଫୋକ୍‌ଲୋର ସୋସାଇଟି

୧୯୬୩ରେ ଏହି ସମାଜ ସ୍ଥାପିତ । ଏହାର ଆନୁକୂଲ୍ୟରେ ଏସିଆର ଲୋକସଂସ୍କୃତି ସଂଗ୍ରହ ଓ ତୁଳନାତ୍ମକ ଆଲୋଚନା କରାଯାଉଛି । ଡକ୍ଟର ଡର୍ସନ ଏହାର ଡ଼ିରେକ୍ଟର; ତାଙ୍କ କର୍ତ୍ତୃତ୍ୱରେ ବିଶ୍ୱ ଲୋକସଂସ୍କୃତିର ଗବେଷଣା ପରିଚାଳିତ । ତାଙ୍କ ଉଦ୍ୟମରେ ପୃଥିବୀର ଶ୍ରେଷ୍ଠ ଲୋକ-ଗଳ୍ପମାନ ବିଭିନ୍ନ ଖଣ୍ଡରେ ପ୍ରକାଶିତ ହୋଇଛି । ଭାରତୀୟ ଲୋକ ଗଳ୍ପ ଖଣ୍ଡରେ ମୋ ଅନୁବାଦିତ ପାଞ୍ଚଗୋଟି ଓଡ଼ିଆ ଲୋକ ଗଳ୍ପ ସ୍ଥାନ ପାଇଛି ।

ସମାଜର କାର୍ଯ୍ୟକାରୀ ସମିତିରେ ଜାପାନ, କୋରିଆ, ପାକିସ୍ଥାନ ସିଂହଳ, ବର୍ମା, ଇଣ୍ଡୋନେସିଆ, ଭାରତ ପ୍ରଭୃତି ଦେଶର ୧୫ଜଣ ସଭ୍ୟ

ରହିଛନ୍ତି । ଘରଟର ୮ଜଣ କାର୍ଯ୍ୟକାରୀ ସମିତିର ସଭ୍ୟଙ୍କ ମଧ୍ୟରୁ ମୁଁ ଏକମାତ୍ର ଉପସ୍ଥିତ ।

ଭବଗ୍ରାହୀଙ୍କ ବସାରେ ପହଞ୍ଚିଲା । ବର୍ଷକୁ ଏ ଘର ଭଡ଼ା ନେଇ ସେ ଥାନ୍ତି, ହାତରେ ସେମାନେ ଜଳ ଖାଆନ୍ତି; କାନ୍ଥ ଦର୍ପଣକୁ ଚାହିଁ ନିଜ ହାତରେ ବାଳ କାଟନ୍ତି, ଅରେ କଣ୍ଟ୍ରୁଲ ହେବା ଲାଗି ବାରକକୁ ୨୦ ଟଙ୍କା ଗଣିବାର ସଙ୍ଗତ ତାଙ୍କର ନାହିଁ । ଅତେବ ତାଙ୍କୁ କଠୋର ପରିଶ୍ରମ କରିବାକୁ ହୋଇଥାଏ । ଏଠି ପି. ଏଚ୍. ଡ଼ି. ଡ଼ିଗ୍ରୀ ଲାଭ ଅତି କଷ୍ଟକର ।

## ଏଣ୍ଡିଆନାରୁ ବିଦାୟ

ଅ.ର୍. ନେ. ଆଡ଼ାମସ୍ ସମ୍ମିଳନୀର ସମ୍ପାଦକ; ସରଳ ଅମାୟିକ ଲୋକ; ମଧୁର ବ୍ୟବହାରରେ ପରକୁ ଆପଣାର କରିବାର ଶକ୍ତି ତାଙ୍କର ଅଛି । ସମ୍ମିଳନୀର ସାଫଲ୍ୟ ମୂଳରେ ତାଙ୍କପରି କେତେଜଣ କର୍ମୀଙ୍କର କଠୋର ଶ୍ରମ ଓ ସାଧନା ରହିଛି । କାଲି ରାତିରେ ତାଙ୍କ ଗୃହକୁ ଭୋଜନ ଲାଗି ସେ ନିମନ୍ତ୍ରଣ କରିଥିଲେ । ତାଙ୍କ ଯାପାନୀ ସ୍ତ୍ରୀର କଳାପାଟବ ଗୃହର ସକଳ ଦ୍ରବ୍ୟରେ ଓ ଉଦ୍ୟାନରେ । ଜିନିଷପତ୍ର ବନ୍ଧାବନ୍ଧି ହେଉଛି, ଯାପାନ ଯିବେ ବୋଲି । ସକାଳ ନ'ଟାରେ ସେ ଗାଡ଼ି ଧେଇ ହାଜର । ହରିଶଙ୍କର ଓ ଭବଗ୍ରାହୀ, ସମସ୍ତେ ମିଶି ତାଙ୍କ ଗାଡ଼ିରେ ଆମେ ବସ୍ ଷ୍ଟେସନକୁ ଗଲୁ । ସମ୍ମିଳନୀ ତରଫରୁ ଖର୍ଚ୍ଚ ବାବଦକୁ ମୋତେ ଏକଶତ ଡଲାର୍ ମିଳିଲା ।

ବସ୍ ଟି ଶୀତାତପ ନିୟନ୍ତ୍ରିତ । ଅପରେଟରଙ୍କ ପାଖରେ ଲେଖା ହୋଇଛି—ବସିରହ; ଗାଡ଼ି ଚାଲୁଥିବା ବେଳେ ଅପରେଟରଙ୍କ ସଙ୍ଗେ କଥାଭାଷା ଚୁଅନାହିଁ । ମଦ ପିଇବା ମନା । କୋଚ ବିଶ୍ରାମାଗାର, ଭ୍ରମଣ ସୁବିଧା ଲାଗି ସୁସଜ୍ଜିତ ହୋଇଅଛି ।

କୋଚ୍‌ର କାଚ ଭିତରେ ଚାହିଁଲେ ଝର ଆଖିକି ବାଧେ ନାହିଁ । ଅପରେଟରଙ୍କ ପାଖେ ହାରର କଳ, କେବଳ ସେ ଖୋଲନ୍ତି ବା

ବନ୍ଦ କରନ୍ତି । ତାଙ୍କ ବିନା ଅନୁମତିରେ କେହି ଭିତରକୁ ଆସିପାରିବ ନାହିଁ ବା ବାହାରକୁ ଯାଇପାରିବ ନାହିଁ । ତାଙ୍କ ହାତରେ ମାଇକ୍, କେଉଁଠି ଗାଡ଼ି କେତେ ସମୟ ରହିବ, କେତେବେଳେ ଛାଡ଼ିବ, କେଉଁଠି ପ୍ରାତରାଶ ବା ମଧ୍ୟାହ୍ନ ଭୋଜନର ସୁବିଧା ଅଛି, ତାହା କହି ଦିଅନ୍ତି, ପଥର ପ୍ରାକୃତିକ ଦୃଶ୍ୟ ଓ ଐତିହାସିକ କୀର୍ତ୍ତିର ଗୁରୁତ୍ୱ ବୁଝାନ୍ତି । ସେ ସୁଶିକ୍ଷିତ । ଗାଡ଼ିରେ କ୍ଲିନର ବା କଣ୍ଡକ୍ଟର କେହି ନାହିଁ । ସେ ଏକା ଟିକେଟ୍ ଚେକ୍ କରନ୍ତି, ଗାଡ଼ି ପେଟରେ ଜିନିଷ ରଖି ଯାତ୍ରୀକୁ ଗୋଟିଏ ଗୋଟିଏ ନମ୍ବର ଦିଅନ୍ତି । ନମ୍ବର ଦେଖାଇ ଓହ୍ଲାଇବା ସ୍ଥାନରେ ଯାତ୍ରୀ ଜିନିଷ ନେଇଯାଏ ।

ଠିକ୍ ମିନିଟରେ ଗାଡ଼ି ଛାଡ଼ିଲା । ଦୁଇପଟେ ପାହାଡ଼, ଘନାରଣ୍ୟ, ପୁଷ୍ପୋଦ୍ୟାନ, ଛୋଟ ଛୋଟ ନଦୀ, ଶସ୍ୟକ୍ଷେତ୍ର; କେଉଁଠି ବା ଷ୍ଟେଡ଼ିୟମ୍, କଳକଳ, ବଡ଼ କାରଖାନା; କିନ୍ତୁ ବସ୍ତି କାହିଁ ? ମାଇଲ୍ ମାଇଲ୍ ବ୍ୟାପୀ ମକ୍କାକ୍ଷେତ; ପାଚିଲା ଗହମକ୍ଷେତ, କିନ୍ତୁ କୃଷକ କାହିଁ ? କାହିଁ ଗ୍ରାମ ?

ଏଣ୍ଡିଆନାପଲିସ୍‌ରେ ବସ୍ ରହିଲା; ଗୋଟିଏ ବିରାଟ ହଲ, ଛାତର ଉଜ୍ଜ୍ୱଳ ଆଲୋକମାଳା, ଚକ୍ଷୁକୁ ଆଘାତ କରେ ନାହିଁ । ଏଇ ଷ୍ଟାଣ୍ଡରେ ରେଷ୍ଟୁରାଣ୍ଟ, ଉପହାର ଦୋକାନ ଅଛି, ଚଟାଣରେ ଗଦିପକା ଚୌକି ଗୁଡ଼ା ହୋଇ ରହିଛି । ଜିନିଷ ରଖିବା ଲାଗି ଗୋଟିଏ ଗୋଟିଏ ବାକ୍ସ ଅଛି । କଳରେ ୨୫ସେଣ୍ଟ ଗଳାଇଲେ ବାକ୍ସ ଖୋଲିଯିବ । ଜିନିଷ-ପତ୍ର ରଖି ଯାତ୍ରୀ ଖାଇବାକୁ ଯାଇପାରିବ । କିନ୍ତୁ ଦୁର୍ଭାଗ୍ୟ, ମୁଁ ୨୫ସେଣ୍ଟ ଗଳାଇଲି, ବାକ୍ସଟି ଖୋଲିଲା ନାହିଁ । ମ୍ୟାନେଜର୍ ପନ୍ଦର ମିନିଟ୍ ପରେ ବାକ୍ସ ଖୋଲିଇ ଦେବେ, କହିଲେ । ଏତେ ବେଳ କାହିଁ ? ବାକ୍ସକୁ ଭଗବାନଙ୍କର ଜିମା ଦେଇ ରେଷ୍ଟୁରାଣ୍ଟରେ ସ୍ୟାଣ୍ଡୱିଚ୍ ଓ କଫି ଖାଇଲି ।

ବିଶ୍ରାମ ଗୃହରେ ୨୦ଟି ତୋରଣ—କେଉଁ ବସ୍‌କୁ କେଉଁ ତୋରଣରେ କେତେବେଳେ ଯିବ ଲେଖା ହୋଇଛି ।

ଗଙ୍ଗାର ଆମ ଆଡ଼ପଟର ଦୃଶ୍ୟ ଦେଖିନାହିଁ; ରାସ୍ତା ପାଖରେ କଳକଣ୍ଟା ଲକ୍ଷ ଲକ୍ଷ ଗୋରୁ ଘାସ କୁଟା ହୋଇ ଯାଉଛି, ତାକୁ ଏକାଠି କରି ଜାଳ ଦିଆଯାଉଛି । ଆମ ଗୋରୁ ଭୂଇଁ ଚରୁଥିବା ବେଳେ ଗୋଖାଦ୍ୟ ଏଠି ପୋଡ଼ା ହେଉଛି । କୌଣସି ସ୍ଥାନ ଅସବୁଜ ନୁହେଁ, ପାଟଳ କ୍ଷେତ ବ୍ୟତୀତ । କାଷ୍ଠ ଜାଳେଣି ହିସାବରେ ବ୍ୟବହୃତ ହୁଏ ନାହିଁ । ମଲା ଗଛ ପତ୍ର ପୋପରା ହୋଇ ପଡ଼ି ଯାଉଥିଲେ ବି କେହି ନେଉ ନାହିଁ । ଗୋରୁମାନଙ୍କର ଚରା ନାହିଁ, ମୁହଁରଫାଟି ପଡ଼ୁଛନ୍ତି । ଗୋଟିଏ ଦେଶର ଦାରିଦ୍ର୍ୟ ବା କାର୍ପଣ୍ୟ ତ ଗୋରୁଙ୍କ ଚେହେରାକୁ ଚାହିଁଲେ ବୁଝାଯାଏ । କାଳୀ, କଜଳ, ଧଉଳୀ, ଛଇଳା ଗାଈସବୁ, ଦେହରୁ ମାଛି ଖସି ପଡ଼ୁଛି ।

ବାଟରେ ବସ୍‌କୁ ଦୁଇଟି ଟୋକା ଉଠିଲେ—ନିଗ୍ରୋ, ମୁଣ୍ଡ କାଉଖଣ୍ଡିଆ । ବୋଧେ ହାତେ ହାତେ କଳୁଷ ହୋଇଛନ୍ତି ଖଇଁକୁ ଡର ।

**ସେଣ୍ଟଲୁଇସ୍‌ରେ** ( ୨୭. ୭. ୭୭ )—ଘାଟଥିଲା ଗୋଟିଏ କେନାଲ ବୋଲି; କେତେ ଅଣଓସାରିଆ । ମିସିସିପି ! ପୃଥିବୀର ବୃହତ୍ତମ ନଦୀ, ଓସାରରେ କଳୁ ମହାନଦୀର ତିନି ଭାଗରୁ ଭାଗେ ହେବ । କୂଳେ କୂଳେ କଳ କାରଖାନା; ଗୋଟିଏ ଜାହାଜ ଦେଖିନାହିଁ, ବୋଧେ ଏତେ ଦୂର ଆସେ ନାହିଁ, ନଦୀର ଅଗଭୀରତା ଯୋଗୁଁ । ଲଞ୍ଚ୍‌, ବଡ଼ ବଡ଼ ମଟର ବୋଟ୍‌ସବୁ ଚାଲିଛି ।

ଡାଉନ୍‌ ସହର, ଏଠି ସବୁ ବଡ଼ ବଡ଼ କୋଠାବାଡ଼ି, ବ୍ୟବସାୟ କେନ୍ଦ୍ର, ଜନଗହଳ ଅଧିକ । ଅପ୍‌ସହର—କୋଠାବାଡ଼ି ସେତେ ଉଚ୍ଚ ନୁହେଁ, ଜନ ଅପେକ୍ଷା ଯାନ ଗହଳ ବେଶୀ । ସେଣ୍ଟଲୁଇସ୍‌ର ବସ୍‌ ଷ୍ଟାଣ୍ଡ ! ଉଦୟନାଥ କେତେବେଳୁ ଆସି ଠିଆ ହୋଇଛି, ସଙ୍ଗରେ ତାର ସ୍ତ୍ରୀ ଇରା—ଦୁଇଟି ଝିଅ ଗୀତା ଓ ମୀରା, ଗୋଟିଏ ପୁଅ—ନିଖିଳ—ଡାକ ନାମ ନିକ—ତିନି ବର୍ଷ ତଳେ ଇରା ଯେତେବେଳେ

ଘାରିତ ଯାଇଥିଲ, ଶିକ ପେଟରେ ଥିଲି । ପଟୋରେ ଦେଖିଥିଲି, ତା ସଙ୍ଗେ ନୂତନ ପରିଚୟ ହେଲା ।

ମୋ ଭାଇନା ନବକିଶୋର ମରିଥିଲେ ମାତ୍ର ୪୨ ବର୍ଷରେ । ମୋ ଚଳାଭାଇ ମଦନମୋହନ କିଶୋର ବୟସରେ ବିଦାୟ ନେଇଥିଲି । ତା’ ଭାଇ ଉତ୍ତରୀରେ ଜଦୟନାଥ ସବା ସାନ, ପୁଣି ସବୁଠାରୁ ପ୍ରତିଭା-ଶାଳୀ । ନିମ୍ନ ପ୍ରାଥମିକ, ଉଚ୍ଚପ୍ରାଥମିକ, ମାଇନର୍, ମେଟ୍ରିକ୍ ସବୁଥର ବୃତ୍ତି ପାଇଛି; ଏଫ୍. ଅର୍. ସି. ଏସ୍.ରେ କାନେଡ଼ାରେ ପ୍ରଥମ ସ୍ଥାନ ଅଧିକାର କରିଛି; ଉଚ୍ଚ ଶିକ୍ଷା ପାଇବାକୁ ଆସି ଏଠି ରହିଛି, ବିବାହ ହୋଇଛି ଇଂରେଜ ସହିତ । ଇଂରେଜ ଏମ୍. ଶ୍ରୀକର ରାଓଙ୍କ ଝିଅ, ଦାର୍ଜିଲିଙ୍ଗ୍ ପବ୍ଲିକ ସ୍କୁଲରେ, ପରେ ମାଡ୍ରାସ୍ ମେଡ଼ିକାଲ୍ କଲେଜରେ ପଢ଼ିଥିଲି । ଉଚ୍ଚଶିକ୍ଷା ଲାଗି ଆମେରିକା ଆସିଥିଲି । ଏଠି ଉଭୟଙ୍କ ସାକ୍ଷାତ୍ ଓ ବିବାହ ହେଲା । ଜଦୟ ସୁଟ୍‌କେସ୍ ଟି, ଇଂରେଜ ହାଣ୍ଡ୍‌ବ୍ୟାଗ୍ ଟି ନେଇ ମଟରରେ ରଖିଲି— ପିଲମାନେ ଅପରିଚିତ ଗୃହାଗୀ ଗୃହଁ ଥାନ୍ତି—ପୂର୍ବର କ୍ଷୀଣ ପରିଚୟ ମନରୁ ଲିଭିଯାଇଛି—ମୁଁ ଏକ ନୂତନ ଆମଦାନି, ଦଦେଇ ବୋଲି ଡାକିବାକୁ ମନରେ କୁଣ୍ଠା; ସେମାନଙ୍କ ମନରେ ଆତ୍ମପ୍ରତିଷ୍ଠା ଲାଗି ମୋର କୌତୁକ ଚେଷ୍ଟାରେ ଅଧିକ କିଛି ହେଉ ବା ନହେଉ, ବୟସ୍ ପୂର ଦୂରତା ଦୂର ହୋଇଥିଲି । ସେମାନେ ପାଖେଇ ଆସିଥିଲେ, ନିଜର ପରି । ଯେହେତୁ ଆକୃତିରେ ଆମ ଦୁଇ ଭାଇଙ୍କର ବିଶେଷ ତାରତମ୍ୟ ନ ଥିଲା ।

ସହରରୁ ଦଶ ମାଇଲ୍ ଦୂରରେ ଜଦୟନାଥର ଘର—ସେ ଅଞ୍ଚଳଟି ମଫସଲ ପରି, କିନ୍ତୁ ସବୁ ସୌଧ, ଡାକେ ବାଟରେ ରାଜପଥ । ଟ୍ରେକ୍ଟର, ସବୁଜ ପ୍ରାନ୍ତର ମଧ୍ୟରେ ଗୋଟିଏ ଗୋଟିଏ ଘର । ମାଣେରୁ କମ୍ ଜାଗାରେ କାହାର ଘର ଏଠି ନାହିଁ । ଆମଆଡ଼େ ବଣୁଆ ମୂଷା ପରି ଏଠି ରବଟ୍—ମଣିଷ ଦେଖିଲେ ଡରି ପଳାଉ ନାହିଁ, କଥା ଶୁଣିବା ଲାଗି କାନ ଡେରୁଛି, କୁତୁକୁତୁ ଗୃହଁ ଛି, ଆଖିରେ ଦୁଷ୍ଟାମି ଭରା । ଦୌଡ଼ ପ୍ରତିଯୋଗିତାରେ ଯୋଗ ଦେବାଲାଗି ମନ, ସେଥିଲାଗି ମୁକ୍ତ ପ୍ରାନ୍ତର ଏଠି ଅଛି । ଖେଳିବାକୁ ହଙ୍କହଙ୍କ—ସାଥୀ ତାର ଗୁଣ୍ଡୁଚି ମୂଷା, ସେ ଗଛରେ

ଚଢ଼ି ଆପଲ୍, ପିଅର୍, ଝୁଡାଏ, ଗଛଟ୍ ଖାଏ । ଖାଦ୍ୟ ସମସ୍ୟା ତାର ନାହିଁ । ମୃତ୍ୟୁ ଭୟ ନାହିଁ । ସେଭଳି ବିପଦ ଦେଖାଦେଲେ ଉପସ୍ଥିତ ହେଲେ ଲୁଚିପିବା ଲାଗି ଗଭୀର ଅରଣ୍ୟ ଓ ଗର୍ତ୍ତ ରହିଛି । ମାଳିକ ମାଳିକାଣୀ ଅଫିସ୍‌କୁ ଗ୍ଲଲଗଲେ ବଗିଚ୍ଚରେ ଉପଦ୍ରବ କରନ୍ତି ପ୍ରଧାନତଃ ତିନିଗୋଟି ପ୍ରାଣୀ—ଗ୍ରବଟ୍, ଗୁଣ୍ଡୁଚ ମୂଷା, ଏଣ୍ଡୁଅ ।

କାକର ସ୍ୱର ଏଠି କେତେକ ହୀନ, କୋମଳ । ଘରଚର ଉପରେ ଭଳି ଉତ୍ତାପ, ଘୋର ବର୍ଷା, କଠୋର ଜୀବନ ସଂଗ୍ରାମ ତାର ସ୍ୱରକୁ କରିଛି କର୍କଶତର । କୋଇଲି ନୀରବ; ସେ ତ ଚେଷ୍ଟା ତା ଗାୟକ ନୁହେ, ଓସ୍ତାଦ୍ । ସେଭଳି ପରିବେଶ ନ ଥିଲେ ସେ ଗାଏନାହିଁ । ବସନ୍ତର ସାଡମ୍ବର ଦରବାର, ସୁବାସିତ ମଳୟରେ ଝଙ୍କୃତ ଅରଣ୍ୟ ଓ ଶ୍ରୋତା ଶ୍ରୋତ୍ରୀ ଯୁବକ ଯୁବତୀ ଆବଶ୍ୟକ । ସ୍ଥାନ-କାଳ-ପାତ୍ର ଲୋଡ଼ା । ନଇଲେ ମାନସମ୍ଭ୍ରମ ଉପରେ ଆଞ୍ଚ ଆସିବ ପରା !

ବଣି—ଆମ ବଣି ସମ୍ବନ୍ଧରେ ସ୍ୱାଗ ମାମ୍ୟ ଯଥେଷ୍ଟ । ତେବେ ଏଠି ଏ ଏକ ପୋଷା ପକ୍ଷୀ ନୁହେ, ବୃଦ୍ଧପୂର ବନ୍ୟ ମଧ୍ୟ ନୁହେ, ମନୁଷ୍ୟର ଏକାନ୍ତ ପଡ଼ୋଶୀ—ଶୈଶବର ନାନା ସ୍ମୃତି ଜାଗ୍ରତ କରେ—ସେତେବେଳେ ଦାଣ୍ଡଅଗଣା ବଣାରୁ ତାର ଛୁଆ ଗ୍ଳେଷ କରିଥିଲି—ପଞ୍ଜୁରୀରେ ପୋଷିଥିଲି, ଝିଣ୍ଡିକା ମାଛ ଖାଇବାକୁ ଦେଉଥିଲି । ଧ୍ୟାନାସ୍ତ ବସ୍ତିରେ ଚାଳ ବଣି ଢାଲି, ନଡ଼ିଆ ବଣି ଚତୁର, କିନ୍ତୁ ଖଜର ବଣି ସବୁଠାରୁ ଭଲ ପୋଷା ମାନେ—ଚଞ୍ଚଳ କଥା କହି ଶିଖେ । ମୁଁ ଖଜର ବଣି ପୋଷିଥିଲି । ମୋର ଅସତର୍କ ମୁହୂର୍ତ୍ତରେ ଶଙ୍ଖେଚଲେଇ ନଖ ମାରି ଦେଇଥିଲା, ବଣିଛୁଆ ଆଖି ଡୋଳା ଓଲଟାଇ ପଡ଼ିଥିଲା । ଏଠି ବହୁ ଅଚିହ୍ନା ପକ୍ଷୀ, କାହାର କାହାର କଣ୍ଠସ୍ୱର ମଧୁର; ମୁଗଧ କରେ, ଯେପରି ଗ୍ରୀକ୍ ସଙ୍ଗୀତ; କିନ୍ତୁ ସ୍ମୃତି ଜାଗ୍ରତ କରେ ନାହିଁ, ଆଖି ଆଗରେ ନଚାଇ ଦେଇ ପାରେ ନାହିଁ ଅତୀତ ଜୀବନର ଉଜ୍ଜ୍ୱଳ ମଧୁର ମୁହୂର୍ତ୍ତଗୁଡ଼ିକ ।

୨୭ । ୭ । ୭୭—ପ୍ରସନ୍ନ ପ୍ରାତଃକାଳ, ପତ୍ରେ ପତ୍ରେ ଶିଶିର ବିନ୍ଦୁ, ଅରୁଣାଲୋକରେ ଝଲମଲ, ମୋ ପ୍ରୀତି କୌତୁକର ପ୍ରତିବିମ୍ବ ସଦୃଶ

ପ୍ରତିଫଳିତ । ଡ. ରାଓଙ୍କ ସଙ୍ଗେ ବୁଲିଗଲି । ରାଜପଥରେ ଅଗଣିତ ଯାନର ସାଗର ଗର୍ଜନ; ରାସ୍ତାର ଏ ପାଖରୁ ସେ ପାଖକୁ ଯିବାକୁ ଡର ମାଡ଼େ । ଷାଠିଏ ସତୁରି ମାଇଲ୍ ଗତିରେ ଯାନସବୁ ଚାଲିଛନ୍ତି, ଗତ ବର୍ଷ ପଚିଶ ହଜାର ଲୋକ ମଟର ଆକ୍ସିଡେଣ୍ଟରେ ମରିଛନ୍ତି—ଏକ ଯାନବହୁଳ ଘରୋଇ ରାସ୍ତାରେ ଗଲୁ—ବେଲବେରି ବାଡ଼, ମଣ୍ଡା କାଇଞ୍ଚ ପରି ଖୁନ୍ଦ ହୋଇଛି ଲନ୍ ଘାସ—ଫୁଟିଛି ଧଳା ଆଉ ହଳଦିଆ ରଙ୍ଗର ମାଗ୍ନୋଲିଆ, ନାନା ରଙ୍ଗର ରୋଡ଼ୋଡେଣ୍ଡ୍ରନ ଫୁଲ । ଆମ ଆଡ଼ର ବାରମାସୀ ପରି କ୍ୟାକ୍ଟସ୍, ଫୁଟିଛି ପେଣ୍ଡା ପେଣ୍ଡା ଧଳା ଫୁଲ ।

ତୃଣ ପ୍ରାନ୍ତରରେ ଛିଡ଼ା ହୋଇଛନ୍ତି ମାନ୍ୟବର ଓକ୍, ଅରଣ୍ୟର ଉଦ୍ୟାନର ସମ୍ମାନିତ, ସପୂଜିତ ବନସ୍ପତି, ଅଳ୍ପ କମକୃଷ୍ଟ ପତ୍ର, ଶାଳ ପରି ଋଜୁ ଦୀର୍ଘ ବପୁ । ଉଦ୍ୟାନେ ଉଦ୍ୟାନେ ଶ୍ରଦ୍ଧାର ଆସ୍ପଦ, ଧୂମଳ ସରୁ ସୂକ୍ଷ୍ମ ପତ୍ର କ୍ରିସ୍‌ମାସ୍—କ୍ରିସ୍‌ମାସ୍ ଉତ୍ସବର କେନ୍ଦ୍ରରେ ଏହାର ସ୍ଥାନ, ବିଦ୍ୟୁତ୍ ଆଲୋକରେ ଝଲମଲ; ଉତ୍ସବ ଆନନ୍ଦର ବର୍ଣ୍ଣାଢ୍ୟ ଗୌରବ ଯେମ ଛିଡ଼ାହୁଏ ଚର୍ଚ୍ଚ ଦ୍ୱାରେ, ପାର୍କର ପ୍ରାନ୍ତରେ, ଉଦ୍ୟାନେ ଉଦ୍ୟାନେ । ଓଷ୍ଠପତ୍ର ପରି ଅଳ୍ପ ହାଓ୍ୱାରେ ନାଚେ ଏଲମ୍; ସରୁ ସରୁ ପତ୍ର, ନାନା ପ୍ରକାରର କୋନ୍; ତା ଛଡ଼ା ଚେରି, ବେରି, ଆପ୍ରିକଟ୍, ପିଚ୍, ପିଅର୍, ଆପଲ୍ ଆଦି ଫଳ ବୃକ୍ଷ, ଅଙ୍ଗୁର ଲତା; ଉଡ଼ି ଯାଉଛି କାର୍ଡିନାଲ୍, ନୀଲ୍ ପକ୍ଷୀ; ଆଜି ଜଣେ ଏକ ନାଲ ପକ୍ଷୀ, ଅପରିଚିତ ପ୍ରତି ଏକ ନୂତନ ଆଗ୍ରହ ମନରେ ଜନ୍ମାଇ । ଛୋଟ ଛୋଟ ପୋଖରୀ, ଟଳ୍ ଟଳ୍ ପାଣି । କିନ୍ତୁ ଗୋଟାଏ କଣିଆ ବଗ କି ମାଛିଆ ଚଲ, ଗଙ୍ଗେଇ କି ବଣ୍ଡୁରା ଦିଶୁନାହିଁ । ବୋଧହୁଏ ଏ ଜଳବାୟୁରେ ଉଧଉ ନାହାନ୍ତି ।

## ଏମ୍. ଶ୍ରୀକର ରାଓ

ନିଜ ଜୀବନର ଶିଳ୍ପୀ ସେ—ଖରା ଜୀବନ ସଂଗ୍ରାମରେ ତାଙ୍କ ଚରିତ୍ର ଶାଣିତ । ଘର ମାଙ୍ଗାଲୋର୍, ଭାଷା କନ୍ନଡ଼ । ଅର୍ଥାଭାବରୁ ଶ୍ରୀ ରାଓ ଉଚ୍ଚ ଶିକ୍ଷାଲାଭ କରିପାରି ନ ଥିଲେ । ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ା; ସେତିକ ଶିକ୍ଷାରେ ଗୋଟିଏ ଯାପାନୀ ଫାର୍ମରେ କିରାଣି ହେବାକୁ ସେ

ସମର୍ଥ ହୋଇଥିଲେ । ତା ପରେ ସେ ଗଲେ କଲିକତାର ବ୍ରିଟିସ୍ ବର୍ମା-ସେଲ୍ କାମ୍ପାନୀକୁ । ସକାଳ ନ'ଟାରୁ ରାତି ଅଧ ପର୍ଯ୍ୟନ୍ତ କାମ— ଦପ୍ତରର କରଣୀ କାମ ସବୁ କରିବାକୁ ପଡ଼ୁଥାଏ ସି. ଶର୍ମଙ୍କୁ । ମାସକୁ ଦରମା ୩୫ ଟଙ୍କା । କରଣୀରୁ ବଢ଼ି ବଢ଼ି ସେ ସେଇ କମ୍ପାନୀର ବଡ଼ବାବୁ ହେଲେ । ଅବସର ନେଲାବେଳକୁ ତାଙ୍କ ମାସିକ ଦରମା ହୋଇଥିଲା ଛ'ହଜାର ପାଞ୍ଚଶହ ଟଙ୍କା । ନିଷ୍ଠା ଓ ସାଧୁତା ବଳରେ ମଣିଷ କଣ କରିପାରେ ତାର ଦୃଷ୍ଟାନ୍ତ ସେ । ତାଙ୍କ ପିଲାମାନେ ଉଚ୍ଚଶିକ୍ଷା ପାଇଥିଲେ ଦାର୍ଜିଲିଂ ପବ୍ଲିକ୍ ସ୍କୁଲରେ । ଏବେ ସେମାନେ ଉଚ୍ଚ ପଦରେ ଅଧିଷ୍ଠିତ ।

ଉଦୟନାଥଙ୍କ ଶ୍ୱଶୁର ସେ, ବୟସ ୭୭ । ତାଙ୍କ ସ୍ତ୍ରୀଙ୍କ ନାମ ରାଧେ । ଉଭୟେ ଆମେରିକା ବୁଲି ଆସିଛନ୍ତି । ଘର ପୁନାରେ । ଭାରତରେ ମୋ ସହିତ ସେମାନଙ୍କର ଥରେ ମାତ୍ର ସାକ୍ଷାତ୍ ହୋଇଥିଲା, କନ୍ୟା ଇରାର ବିବାହ ପ୍ରସ୍ତାବ ନେଇ ସେ ଆସିଥିଲେ । ଏବେ ସେମାନଙ୍କ ସଙ୍ଗ ବଡ଼ ପ୍ରୀତିପ୍ରଦ ହୋଇଅଛି ।

କର୍ମ ଜୀବନରେ ବିଶ୍ରାମ ଯେତିକି ଥିଲା ଏବେ ସେତିକି ରହିଛି । ରାତି ଘ୍ରଟାରେ ଉଠି ଶ୍ରୀ ସି ନିତ୍ୟକର୍ମ ଶେଷ କରନ୍ତି, ତାପରେ ଶଠି-ପତ୍ର ଟାଇପ୍ କରନ୍ତି, ଲୁଗାପଟା ଇସ୍ତ୍ରି କରନ୍ତି; ପ୍ରାତଃରାଶ ପରେ ଭ୍ରମଣ କରନ୍ତି । ସମ୍ବାଦପତ୍ର, ବାଛିଲା ପତ୍ରିକା ବା ପୁସ୍ତକ ପାଠ କରନ୍ତି । ସିନେମା ଥିଏଟର୍ ନାଚ ତାମସା ଦେଖିବାର ସଉକ୍ ନାହିଁ, ପ୍ରାକୃତିକ ଦୃଶ୍ୟ ଦେଖି ବିଭୋର ହେବାର ପ୍ରକୃତି କମ୍ବା ଅଭ୍ୟାସ ନାହିଁ । କଲିକତା, ମାନ୍ଦ୍ରାଜରେ ଯଥେଷ୍ଟ ନଗର ଜୀବନ ଅନୁଭବ କରିଛନ୍ତି । ଏଠି ଅଧିକ କଣ ଦେଖିବେ ? ଝିଅ ଜୋଇଁଙ୍କ ସଙ୍ଗେ ରହିବା, ନାତି ନାତୁଣୀଙ୍କ ସଙ୍ଗେ ଖେଳିବା ତାଙ୍କର ବଡ଼ ବିନୋଦନ । ରାଧେ ତ ଚୋରେଇ ଶୀତରେ, ଯେତେଦିନ ଏଠି ଅଛନ୍ତି, ଝିଅକୁ କାଉଁଚୁଲି ଧରାଇ ଦେବେ ନାହିଁ, ଯେପରି କ ସଙ୍କଳ୍ପ କରିଛନ୍ତି !

ଶର୍ମଙ୍କ ପରି ବଡ଼ା ସଙ୍ଗେ ଯୋଗ ହୋଇଛି ଏକ ଦାମ୍ଭିକ ପରି ମୁଁ, ଅମଣିଆଁ ମନ ନେଇ । ଦଉଡ଼ ଦୋଳାଇବାକୁ ସୁହେଁ କୁଆଡ଼େ ବୋଲି

କୁଆଡ଼େ । ଗୁରୁଙ୍କର ହୁଏତ ଇଚ୍ଛା ଅଛି, ଦୂରବର୍ତ୍ତୀ ସ୍ଥାନ ଦେଖିବା ଲାଗି । କିନ୍ତୁ 'ଶରୀର ମାଦ୍ୟଂ' ସେ ଧରି ନେଇଛନ୍ତି । ଏ ବୟସରେ ମାତ୍ରା ଲଙ୍ଘନ ଚଳେନାହିଁ ।

ତାଙ୍କ ମନ ମଧ୍ୟ ସ୍ଥିର ନାହିଁ । ପୁନାରେ ତାଙ୍କ ଘରେ ବିଧବା ଭଉଣୀଟିଏ । ସମ୍ବାଦ ଆସିଛି—ଭଉଣୀଙ୍କର ରକ୍ତଚାପ । ପୁଣି ସାନଭାଇଙ୍କୁ ଯକ୍ଷ୍ମା—ରୋଗ ବଢ଼ାଇ ନେଇଛି ତାଙ୍କର ତିନିଗୋଟି ପିଲାଙ୍କ ଶିକ୍ଷା ଭାର । ସ୍ତ୍ରୀ ମୃତା; ସଂସାରର ସାମାନ୍ୟ ସୁଖ ସହିବାର ଶକ୍ତି ନାହିଁ ତାଙ୍କର । କାଳେ କେତେବେଳେ ଭାଙ୍ଗି ପଡ଼ିବେ, ଏଇ ଚିନ୍ତା ଗୁରୁଙ୍କୁ ବିବ୍ରତ କରୁଛି ।

ଗୁରୁଙ୍କ ଇଚ୍ଛା ଥିଲା—ଶେଷ ଜୀବନଟି ପରୋପକାରରେ ଉତ୍ସର୍ଗ କରିବେ । ନିଜ ପଡ଼ାକୁ ଗୋଟିଏ ରାସ୍ତା ନିର୍ମାଣରେ ଅଗ୍ରଣୀ ହେଲେ—ଲାଗି ଲାଗି ମ୍ୟୁନିସିପାଲିଟିରୁ ଟଙ୍କା ଗ୍ରାଣ୍ଟ କରାଇଲେ । ସେଇ ଗ୍ରାଣ୍ଟ ଆଶାରେ ହାତରୁ ପାଞ୍ଚହଜାର ଟଙ୍କା ଖର୍ଚ୍ଚ କରିଦେଲେ— କିନ୍ତୁ ବିନା ଲାଞ୍ଚରେ ଗ୍ରାଣ୍ଟଟି ହାତକୁ ଆସୁନାହିଁ । ଗୁରୁ ପ୍ରତିଜ୍ଞାବଦ୍ଧ; ପଇସାଟିଏ ଲାଞ୍ଚ ଦେବେନାହିଁ ବୋଲି । ଏବେ ବ୍ୟସ୍ତତା ହିଁ ସାର ହୋଇଛି ।

୨୮ । ୭ । ୭୬—ଆଜି ବୁଲିଗଲାବେଳେ ଦେଖିଲୁ—ମଟର ଗାଡ଼ିଗୁଡ଼ାକ ପାଗଳ ପରି ଛୁଟିଛନ୍ତି । ପଚାରିଲି—ଏ ଲୋକସବୁ ଶୁଅନ୍ତି କେତେବେଳେ ? ଗୁରୁ କହିଲେ—ଏମାନେ ଦିନସାରା ଖଟନ୍ତି, ସନ୍ଧ୍ୟା ହେଲାକ୍ଷଣି ବିଅର୍ ହାଉସ୍‌ରେ ଆଡ୍‌ଡ଼ା ଜମାନ୍ତି, ନଇଲେ ନାଚ ତାମସାକୁ ଯାନ୍ତି । ପିଅନ୍ତି ବହୁତ । ଫଳରେ ଭଲ ନିଦ ହୁଏ ନାହିଁ । ନିଦ ବଟିକା ଖାନ୍ତି । ବୁଲନ୍ତି କ୍ୱଚିତ୍ ଘରେ ବା ଅଫିସ୍‌ରେ । ପଦାରେ ବୁଲିବା ଲୋକ ଦେଖିଲେ ହସନ୍ତି । ନାନା ରୋଗ ବାହାରେ । ତା ମଧ୍ୟରେ ରକ୍ତଚାପ ଅଧିକ ।

ଶନିବାର ରବିବାର ଦିନ ଛୁଟି—ଛୁଟନ୍ତି ଦଳେ ଦଳେ, କିଏ ସପରିବାର ଟ୍ରେଲର୍‌ରେ କିଏ ବା ନିଜ ଗାଡ଼ିରେ । ଅତି ପାନ, ଭୋଜନ ଓ ଉପଭୋଗରେ ଶ୍ରାନ୍ତ କ୍ଲାନ୍ତ ହୋଇ ଫେରନ୍ତି । ସୋମବାର ଦିନ

କେତେକ ନୂଆ ନାଅନ୍ତି; ଯେଉଁମାନେ ଆସନ୍ତି, ଭଲ କାମ କରିପାରନ୍ତି ନାହିଁ । ତେଣୁ ସୋମବାରକୁ 'ଗାଳ ସୋମବାର' କହନ୍ତି । ଅତି ଭୋଜନରେ ଅଜୀର୍ଣ୍ଣ ରୋଗରେ ଏଠି ବହୁତ ମରନ୍ତି; କିନ୍ତୁ ଭାରତରେ ଓଲଟା ।

ମୁଁ କହିଲି—ସେଠି ବ ଶୁଖି ଶୁଖି ଶୁଖୁଆ ହୋଇ ମରନ୍ତି ଅନ୍ଧ । ଚୋରିଯାଏ ଗିଳ ମରନ୍ତି ବେଶୀ । ଭୂରି ଭୋଜନ ତ ମିଳେନାହିଁ । ତାହାର ନମିତ୍ୟ ହେଲେ ଶୋଷଣି ଫିଟାଇ କଡକାଠ ହୋଇ ଖାଇ ଡାଇରିଆରେ ମରନ୍ତି, କେହି କେହି ଅଖାଦ୍ୟ ଖାଇ ମରନ୍ତି ।

## ଘର, ଘରଣୀ ଓ ହାଏନ୍ସ୍

ପଦାରୁ ଦେଖିଲେ ଗୋଟିଏ ଟାଇଲ୍ ଘର; ଆକର୍ଷଣୀୟ ସେପରି କିଛି ନାହିଁ । ଭିତରେ କିନ୍ତୁ ଅନେକ ଘର, ସଜାସଜ ଅପୂର୍ବ, ସମସ୍ତଙ୍କ ଲାଗି ସ୍ୱତନ୍ତ୍ର କୋଠରି; ତିନି ବର୍ଷର ନାକ ମଧ୍ୟ ଏକୁଟିଆ ଗୋଟିଏ ଘରେ ଶୁଏ । କୋଟ୍ ପ୍ୟାଣ୍ଟ ରଖିବା ଲାଗି ପିଲାମାନଙ୍କ ଖେଳିବା ଲାଗି ଅଲଗା ଘର, ଗୋଟିଏ ଘରେ ଟେବୁଲ୍ ଟେନିସ୍ ଖେଳ ହୁଏ, ସେଇ ଘରେ 'ହୋମ୍ ମୋଭି' ଦେଖାଯାଏ । ତାର ପାର୍ଶ୍ୱବର୍ତ୍ତୀ କୋଠରିରେ ଲୁଗା ସଫା ଯନ୍ତ୍ର ଓ ଇସ୍ତ୍ରି ବ୍ୟବସ୍ଥା । ଉପର ମହଲାରେ ଟେଲିଭିଜନ୍—ତା ପାଖରେ ରନ୍ଧନାଳୟ; ଗ୍ୟାସ୍‌ରେ ରୋଷେଇ ହୁଏ । ବାସନ ମଜା ଯନ୍ତ୍ର, ରେଫ୍ରିଜରେଟର, ରୋଷେଇ ସରଞ୍ଜାମ ରଖିବା ଲାଗି ଅଲ୍‌ମାରି ସବୁ ଲଗାଯାଇଛି; ତାର ଅଳ୍ପ ଦୂରରେ ବୈଠକ ଘର, ପିଲାମାନଙ୍କୁ ସେ ଘର ମନା, ବିଶିଷ୍ଟ ଅତିଥି ଆସିଲେ ଖୋଲେ । ତାର ପରବର୍ତ୍ତୀ କୋଠରିଟି ସ୍ୱତନ୍ତ୍ର ଭୋଜନାଳୟ । ମେହୋଗାନି ଟେବୁଲ୍, ଚମତ୍କାର ଚୌକି, ସୁନ୍ଦର ଛବି ଓ ମୂର୍ତ୍ତି ସଜ୍ଜିତ । ପିଲାମାନଙ୍କ ଜନ୍ମଦିନ ଭୋଜ ହେଲେ କମ୍ବା ପାର୍ଟି ହେଲେ ଏଠି ବ୍ୟବସ୍ଥା ହୁଏ । ସମସ୍ତ ଗୃହଟି ଶୀତାତପ ନିୟନ୍ତ୍ରିତ; ସ୍ନାନାଗାରରେ ଉଷ୍ମ ଓ ଶୀତଳ ଜଳ; କୁଣ୍ଡ ଭର୍ତ୍ତି କରି ସ୍ନାନ କରିବାକୁ ହୁଏ—ଗାଧୋଇବା ଓ ହାତ ପୋଛିବା ଲାଗି ସ୍ୱତନ୍ତ୍ର ତଉଲିଆ; ଶୌଚ ଲାଗି, ହାତ ପୋଛିବା ଲାଗି, ଜଙ୍ଘରେ ପକାଇ ଖାଇବା ଲାଗି କାଗଜ ।

ଘରର ଚଟାଣ ଏତେ ପାଲସ ଯେ ଗୋଡ଼ ଖସେ । ଏତେ ପରିଚ୍ଛନ୍ନ ଯେ କେଉଁଠି ଟିକିଏ କାଗଜ ପକାଇ ଦେବାକୁ ମନ ହୁଏ ନାହିଁ । ଘରକୁ ଲାଗି ଗରାଜ୍—ଦୁଇଟି ମଟର ରହେ । ଦୁଇଟିଯାକ ଗାଡ଼ି ଶୀତାତପ ନିୟନ୍ତ୍ରିତ; ସେଥିରେ ରେଡ଼ିଓ ଖଞ୍ଜା । ଗାଡ଼ି ଦୁଆରେ ପହଞ୍ଚିଲେ ରେଡ଼ିଓ ତରଙ୍ଗରେ ଗରାଜ ଖୋଲେ, ଗାଡ଼ି ପଶିଗଲେ ସେଇ ତରଙ୍ଗରେ ବନ୍ଦ ହୋଇଯାଏ । ତା ଛଡ଼ା ଗରାଜ୍ ଖୋଲିବା ଓ ବନ୍ଦ କରିବା ଲାଗି ବୋତାମ ଅଛି । ଟିପିଲେ ହେଲା । ଘରର ଆଗ ଓ ପଛରେ ଦୁଇଟି ଘାସ ପଡ଼ିଆ, ସେଥିରେ ଓକ୍, ଏଲ୍ମ୍ ଆଦି ଗଛ—କେତୋଟି ଆପଲ୍ ଗଛ, ପିଲାଙ୍କ ଦୋଳି । ବଗିଚାର ଧାରେ ଧାରେ ମାଡ଼ିଛି 'ହନିସକଲ୍' ଲତା, ଇରା ଲଗାଇଛି ପେଟୋନିଆଁ, ଉଦୟ ଲଗାଇଛି ଜେନିଆଁ, ଗୋଲାପ ଓ ଗେଣ୍ଡୁ । ବାଲିଗିରଡ଼ାର କୁଦ ଉପରେ କେତୋଟି କ୍ରିସ୍ମାସ୍ କୋଳି । ଉଦୟ ସକାଳ ସାଢ଼େ ସାତଟାରେ ଡାକ୍ତର-ଖାନାକୁ ଯାଏ, ଅପରବେଳା ପାଞ୍ଚଟାରୁ ଛ'ଟା ମଧ୍ୟରେ ଫେରେ । ତାପରେ ଘାସ କାଟେ, ଗୋଲାପ ବଗିଚାରେ ପାଣି ଦିଏ, ନଇଲେ ପୋକ ଜୋକ ବା ରାବଟଙ୍କ କବଳରୁ ଗୋଲାପକୁ ରକ୍ଷା କରିବାଲାଗି ଔଷଧ ଛିଞ୍ଚେ । ଇରା ସପ୍ତାହକେ ଚାରିଦିନ ଡାକ୍ତରଖାନାକୁ ଯାଏ, ସେ ଆନାସ୍-ଥେସିଆ ସ୍ପେସାଲିଷ୍ଟ । ରାତିରୁ ଉଠି ପ୍ରାତରାଶ ପ୍ରସ୍ତୁତ କରେ, ପିଲାଙ୍କୁ ବେବିସିଟର୍ ପାଖେ ଛାଡ଼ିଯିବାକୁ ହୁଏ । ବାସନମଜା, ଘରସଫେଇ ପିଲାଙ୍କ ଗାଧୁଆ ପାଧୁଆ, ରନ୍ଧାବଢ଼ା, ବଜାରହାଟ, ଲୁଗାସଫା, ଇତ୍ୟାଦି ସବୁକାମ ଡାକ୍ତରଣୀଙ୍କୁ କରିବାକୁ ପଡ଼େ ।

ଏଠି ଶ୍ରମିକର ଅଭାବ, ଶ୍ରମର ଦାମ୍ ଅଛି । ସେଦିନ ଇରା, ଉଦୟ, ରାଧେ ଓ ରାଓ ମିଶି ଘରେଇ ରାସ୍ତାରେ ପିଚୁ ଢାଳିଲେ । ରାଓ ଗୋଟିଏ ଟେବୁଲ୍‌ରେ ରଙ୍ଗ ଦେଲେ; ଏମାନଙ୍କ ପକ୍ଷେ ଏସବୁ ଆଶାତୀତ କର୍ମ । କଲୁ କରିବାକୁ ହୁଏ, ରାଧେ କେତୋଟି କାକୁଡ଼ି ଗଛ ଲଗାଇ-ଛନ୍ତି, ଧନିଆ ବୁଣିଛନ୍ତି, ପଡ଼ର 'ସମ୍ବର'ରେ ପକାଇଲେ ବାସିବ ବୋଲି ।

ଉଦୟକୁ ତ ବେଳ ହୁଏନାହିଁ । ପଡ଼ିଆରେ ଘାସ ବଢ଼ିଲେ ମହାଦୋଷ । ତେଣୁ ଜଣେ ହାଇସ୍କୁଲ ଛାତ୍ର ଘାସ କାଟି ଦେଇଗଲା,

ସାର ବୃଷ୍ଟି ହେଲ—ଏଥିରେ ବାଜେ ଗଛ ମଉଳିବ, ଘାସ ପଲ୍ଲବ ଉଠିବ । ତା ପରେ ଫୁଆର ଖଞ୍ଜେଦେଲ—ଯେପରି କି ଚାରିଆଡ଼କୁ ଛିଞ୍ଚି ହୋଇ ପାଣି ପଡ଼ିବ । ସବୁ କରିବାକୁ ଦୁଇଘଣ୍ଟା ଲାଗିଥିବ । ନେଲା ଛ ଡଲର୍ ।

ଟିଏରିସ୍; ଡାଡେନ୍କର ନାୟିକା ନୁହେଁ, ଜଣେ ନିଗ୍ରୋ ମହିଳା- ଇଥର ଚାକରାଣୀ । ନିଗ୍ରୋ ମହଲରେ କାବ୍ୟର, ନାଟକୀୟ ଚରିତ୍ରଙ୍କ ନାମ ଖୁବ୍ ଚଳେ; ଧନସମ୍ପଦ, ବିଦ୍ୟା ବା ରୂପଶ୍ରୀ—କାହିଁରେ ସେମାନଙ୍କର କି ଆକର୍ଷଣ ଥାଉ ଅଛି ? ଟିଏରିସ୍‌ର ସ୍ୱାମୀ, ପିଲାଛିଲା ଅଛନ୍ତି, ସମସ୍ତେ ରୋଜଗାରି । କିଛି ନ ହେଲେ ଦଶ ବାର ବର୍ଷର ପିଲା 'ବେବିସିଟର' ହେବାର ଯୋଗ୍ୟତା ଅର୍ଜନ କରେ, ପିଲାଙ୍କୁ ଖେଳାଇ ଘଣ୍ଟାକୁ ୫୦ ସେଣ୍ଟ ପାଏ । ତଥାପି ଏ ପରିବାରରେ ଟଙ୍କା ଅଭାବ ପଡ଼େ । କାରଣ ଗରିବ ହେଲେ ବି ଗରିବଭାବରେ ସେ ଚଳେନାହିଁ, ଆୟ ଅଳ୍ପ, କିନ୍ତୁ ବ୍ୟୟ କମ ନୁହେଁ । ଅନାଟନ ହେଲେ ସେ କରଜ କରେ । କରଜ ଲଗେଇବା ମହାଜନ ଏଠି ଅନେକ, ଅବଶ୍ୟ ବନ୍ଧା ରଖି ଦିଅନ୍ତି—ସୁନା ରୂପାର ଅଳଙ୍କାର, ବାସନକୁସନ, ରେଡ଼ିଓ, ଟେଲିଭିଜନ୍, ରେଫ୍ରିଜେରେଟର୍ ଇତ୍ୟାଦି ।

ଘରପାଖ ଗାଲିର ବସ୍ତି, ପାଡ଼ାପଡ଼ାକ ପାଏଡ଼ା । ଭେକ୍ୟୁମ୍ ଯନ୍ତ୍ରରେ ଟିଏରିସ୍ ଗୋଟିକ ପରେ ଗୋଟିଏ ଘରସଫା କରିଗଲା, ଶେଷ ସବୁ ସଜାଡ଼ ନୂଆ ବିଛଣା ଚାଦର ପକାଇଲା—ସବୁ ଘର ପ୍ଲାଷ୍ଟିକ୍ ଅଳିଆ ଟୋକେଇରୁ ଅଳିଆ କାଢ଼ିନେଇ ପଦାରେ ଗୋଟିଏ ଡ୍ରାମ୍‌ରେ ପକାଇଲା । ଘରର ଜିନିଷପତ୍ର ସବୁ ସଜାଡ଼ି ଦେଲା । ତାପରେ ଆମ ସଙ୍ଗେ ବସି 'ଲଞ୍ଚ୍' ଖାଇଲା । ଅଙ୍ଗୁର ଦୁଇ ଚାରିଟା ପାଟିରେ ପକାଇ କହିଲା—ପାଚିଲ ହୋଇନାହିଁ, ଖଟା ! ଶେଷକୁ ଆଇସ୍‌କ୍ରିମ୍‌ଟିଏ ଖାଇ ଉଠିଲା । ଆଠ ଘଣ୍ଟା ତାର କାର୍ଯ୍ୟ, ସପ୍ତାହକେ ଦୁଇଥର ଆସେ । ଇର ସକାଳୁ ଯାଇ ତାକୁ ମଟରରେ ଆଣେ, ଅପରବେଳା ମଟରରେ ଛାଡ଼ିଦେଇ ଆସେ; ସପ୍ତାହକୁ ସେ ନିଏ ଚାଳିଶ ଡଲର୍ । ଏ ଦେଶରେ ଚାକରାଣୀର କାମ ହୀନ ନୁହେଁ । ତେଣୁ ସାଆନ୍ତ ସାଆନ୍ତାଣୀଙ୍କ ଆଗରେ ସେ ବିନୟର

ସ୍ଥାନ କରେନାହିଁ, ଗୌଣତ୍ୱବୋଧ ନାହିଁ ତାର । ଗୁଣୀଙ୍କ ସଙ୍ଗରେ ସେ ଗୁଣୀ, ରୂପ ନ ଥିଲେ କଣ ହେଲା ?

## କାଠହଣା

ଲାଲମୁହାଁ କାଠହଣା ପର ଦୁଇଟା ଆସିଲେ, ଉଡ଼ ଉଡ଼ ଲୁହେ, ଗାଡ଼ିରେ ଚଢ଼ । ଜଣେ ଗଛରେ ଦଉଡ଼ି ବାନ୍ଧି ଧରିଲା । ଆଉ ଜଣେ ଗଛ ମୂଳେ କଳ କରତ ଲଗାଇଲା, ପେଟ୍ରୋଲ ଦଉଡ଼ା—ଧୁକ୍ ଧୁକ୍ ଧୁକ୍ ଭୁସ୍ । ଦେଖୁ ଦେଖୁ ଉଣେଇଶଟା ଏଲମ୍ ଗଛ ଅଜାଡ଼ ହୋଇ ପଡ଼ିଲା । ଘଡ଼ିକ ଆଗରୁ ଏଠି ଗୁଣ୍ଡୁଚି ମୂଷା ସହିତ ଡାମରା କୁଆର କଣ ଗୋଟାଏ ପୁରୁଣା କଥାର ଖିଅକୁ ଧରି ଝଗଡ଼ା ଲାଗିଥିଲା; ରବର୍ଟ୍ ଆଜି ଗୋଟାଏ ରବର୍ଟ୍‌କୁ ହେଜଲ ନେଉଳ ପାଖକୁ କୋଉ କଥା ମୁକାବିଲା କରିବାକୁ ଆସିଥିଲା । କାର୍ଡିନାଲ ସଙ୍ଗେ ଉଦଉଦଳିଆର ସ୍ୱର ଗୋଟାଏ ଆଳାପ ଜମିଥିଲା । ଏବେ ସବୁ ଶୂନ୍ୟ । ଘାସ ସବୁ ମୁଣ୍ଡ ଟୁଙ୍ଗାରୁଛନ୍ତି—ପାଣି ଦିଅ ପାଣି, ଚୋଟି ଶୁଖିଗଲା; ଖରା ଅଖି ଦେଖାଉଛି, ମସ୍ତଚକା ଛୁଗୁଲଉଛି । ଦୁଇଦିନ ହେଉ ପଛେ, ବଡ଼ ଶାନ୍ତି ଦେଇଥିଲା—ଏଇ ଶାଗୁଆ ଛାମୁଣ୍ଡିଆଟି ।

ଏଲମ୍ ସ୍ଥାନରେ ଲାଗିବ ଓକ୍; ଋଷିପ୍ରତିମ ଗମ୍ଭୀର ରୂପରେ ସେ ହୁଏତ ଅଧିକତର ଶାନ୍ତିବିଧାନ କରିପାରେ ।

## ହୋମ୍ ମୋଭି

ପଡ଼ୋଶୀ, ବନ୍ଧୁ କୃଟ୍ମ୍ୟ-ଦର୍କେ; ସେଦିନ ତଳ ମହଲାରେ ବସି ଦେଖିଲୁ—ଛୁଟି ଓ ଉତ୍ସବ ନେଇଥିବା ରଙ୍ଗୀନ ଛବି ସବୁ, ଆମେରିକାର; ସେମାନଙ୍କ ବିଚିତ୍ର ସୃଷ୍ଟିରେ ମଧୁର—ନାଏଗ୍ରା ପ୍ରପାତ, ବାହାମା, ମେକ୍ସିକୋ ଉପସାଗର, ଫ୍ଲୋରିଡ଼ାର ଡଲ୍‌ଫିନ, ଉଇସ୍କନସିନ୍ ନଦୀର ଗିରିଦ୍ୱୀପ । ତାପରେ ଉନ୍ମୁକ୍ତ ହେଲା କାଲିଫର୍ଣ୍ଣିଆ; ଜଣେ ସ୍ପାନିସ୍ ଲେଖକ ଲେଖିଛନ୍ତି—କାଲିଫର୍ଣ୍ଣିଆ ସ୍ୱପ୍ନର ଦେଶ—ରୂପସୀ ନାରୀ, ରୂପବନ୍ତ ପୁରୁଷ, ସେମାନଙ୍କ ହସ୍ତରେ ସୁବର୍ଣ୍ଣ ଅସ୍ତ୍ରଶସ୍ତ୍ର—କାରଣ ସେ ଦ୍ୱୀପରେ ଅନ୍ୟ କିଛି ଧାତୁ ମିଳେ ନାହିଁ । ଏଇ ସୁନ୍ଦରସୁନ୍ଦରୀଙ୍କୁ

ଉଜ୍ଜ୍ୱଳତର କରଛନ୍ତି ରାଣୀ କାଲିଫିଆ । ତାଙ୍କର ସ୍ୱପ୍ନର ଏଇ ଦ୍ୱୀପକୁ ଲେଖକ ନାମିତ କରଛନ୍ତି—କାଲିଫର୍ଣ୍ଣିଆ ।

ଆକାରରେ ଓଡ଼ିଶାର ପ୍ରାୟ ତିନିଗୁଣ । ଏହାର ବଡ଼ ବଡ଼ ନଗର—ସାନଫ୍ରାନସିସ୍କୋ, ଲସ୍‌ଆଞ୍ଜେଲସ୍, ସାନ୍ଡିଆଗୋ, ସାକ୍ରେ-ମେଣ୍ଟୋ । ଏହି ରାଜ୍ୟର ଯୋସେମାଇଟ ଜଳପ୍ରପାତ, ଦୀର୍ଘତମ କୋଣବୃକ୍ଷ, ସମୁଦ୍ର ତୀରବର୍ତ୍ତୀ ଅଗ୍ନିରୋଧିବଲ୍‌କଳ ଲାଲ ଜଙ୍ଗଲ, କଲରାଡୋ ନଦୀର ପରିତ୍ୟକ୍ତ ଶଯ୍ୟା ମନରେ ଅପୂର୍ବ ଶୋଭା ସ୍ୱପ୍ନ ଭରିଦେଲା । ଆଗରେ ନାଚିଗଲା ମୃତ୍ୟୁ ଉପତ୍ୟକା—ମାଟି ଫାଟିଲ ଦୋହଲିଯାଇଛି । ତୈଳ ଉତ୍ପାଦନ କେନ୍ଦ୍ର, ସୁନାର ଖଣି, ଫଳ ବଗିଚା, ଫସଲ କ୍ଷେତ, ଜଳ ଭଣ୍ଡାର, ପର୍ବତମାଳା, ଅରଣ୍ୟ, ଜାତୀୟ ଉଦ୍ୟାନ, ବର୍କଲେ ବିଶ୍ୱ-ବିଦ୍ୟାଳୟ; ଏହି ବିଶ୍ୱବିଦ୍ୟାଳୟରେ ନୋବେଲ ପୁରସ୍କାର ପ୍ରାପ୍ତ ବିଦ୍ୱାନଙ୍କ ସଂଖ୍ୟା ସର୍ବାଧିକ । ସର୍ବଶେଷରେ ଦେଖାଗଲା ବଟରଫ୍ଲାଇ ଟ୍ରିଜ୍; ମଣ୍ଟେରେ ଉପଦ୍ୱୀପ ଅଞ୍ଚଳକୁ ଶୀତକାଳରେ ଉଡ଼ିଆସନ୍ତି ଲକ୍ଷ ଲକ୍ଷ ସଂଖ୍ୟାରେ ପ୍ରଜାପତି, ପ୍ରଧାନତଃ କାନେଡ଼ାଆଡୁ । ନଗରବାସୀ ସେମାନଙ୍କୁ ଅଭିନନ୍ଦନ ଜଣାନ୍ତି, ଶତ୍ରୁ କବଳରୁ ସେମାନଙ୍କୁ ରକ୍ଷା କରିବା ଲାଗି ଚେଷ୍ଟା କରନ୍ତି । ବୃକ୍ଷଲତା ରଙ୍ଗୀନ ପ୍ରଜାପତିମୟ ହୋଇଯାଏ ।

ସାନ୍‌ଫ୍ରାନ୍‌ସିସ୍କୋବାସୀଙ୍କର ବିଶ୍ୱାସ—ସେମାନଙ୍କ ଉପସାଗରରେ ସ୍ୱର୍ଗ ଅବତରଣ କରିଛି । ସୂର୍ଯ୍ୟାସ୍ତ ପାହାଡ଼ ଅଞ୍ଚଳ ଏତେ ରଙ୍ଗୀନ ଓ ସୁନ୍ଦର ହୁଏ ଯେ ଲୋକେ କହନ୍ତି—ଭଗବାନ ଯେଉଁ ସବୁ ତାର ଆକାଶରେ ଖଞ୍ଜି ନ ପାରିଲେ ତାକୁ ଏହି ସ୍ଥାନରେ ଅଜାଡ଼ିଦେଲେ—ତେଣୁ ଏହା ଏତେ ଉଜ୍ଜ୍ୱଳ ।

୧୭ । ୯ । ୭୭ରେ ଆଉ ଥରେ 'ହୋମ୍‌ମୋଭି' ଦେଖାହେଲା—ଏଥର ଆମ ଗ୍ରାମ; ଇରା, ଉଦୟ ଯେତେବେଳେ ଆମ ଗ୍ରାମକୁ ଯାଇଥିଲେ, ଏସବୁ ରଙ୍ଗୀନ୍ ଫଟୋ ଉଠାଇ ଆଣିଥିଲେ । ଆମେରିକାର ପରିବେଶରେ ଅଦ୍ଭୁତ ଲାଗିଲା—ସେଇ ସବୁ ନଡ଼ିଆମାଳ, ଲକ୍ଷେ ସୂତ୍ରଭିତର ଧୂଳିଆ ଗାଆଁ ଦାଣ୍ଡ, ଶଗଡ଼ ଲଙ୍ଗଳ ସବୁ, ଦୁଆର ଖୁଣ୍ଟରେ ବଳଦ, କଙ୍କାଳର

ଟାଙ୍ଗସବୁ—କୁଆମାନେ ପିଠରେ ବସି ଚୋକ ଖୁଣ୍ଟୁ ଛନ୍ତି—ଟାଙ୍ଗଗୋଠ ଗୁଳିଛନ୍ତି ଧୂଳି ଉଡ଼ାଇ, ମାଟିରେ ଝୁଁକି ଝୁଁକି ଗୁଳାଛି ବୃଷଭ; ସୁନ୍ଦର-ବୋଦ୍ଧ ସବୁ, ସମସ୍ତଙ୍କ କାଖରେ ପିଲା—ହାତରେ ଶରଦମାଳ, ବଟଫଳ। ମୋର ସ୍ନେହମୟୀ ଭଉଜ, ତାର ସରଳ ଦମ; ଭଣଜା ଗୁଷୀ, ବୋକା ବୋକା ମୁହଁର ସ୍ତରେ ସ୍ତରେ ସରଳ ଗ୍ରାମୀଣତା; ସେଇ ବଉଡ଼ଇ ଘର ବୁଡ଼ୀ—ନାଲିଟିକି କାକୁଡ଼ିଇତ, ପଖାଳ ଶାଗ ମୁଖ୍ୟ ଖାଦ୍ୟ ତାର; ଦାସ ଘର ଉଞ୍ଚ ଗୁଳ, ଉଞ୍ଚ ଉଞ୍ଚ ଚାଳଗଦାର ଖଳାବାଡ଼, ସେଇସବୁ ଅଧା ଲଙ୍ଗଳା, ମୁଣ୍ଡର ମାଝର ଟିକି ଟିକି ପିଲା—ପରିବାର ନିୟନ୍ତ୍ରଣ ନ ମାନି ବାବା ସତ୍ୟପୀରଙ୍କ କୃପାରୁ ମହଅର୍ଥନନ୍ତି ଏ ସଂସାରରେ; ପ୍ରଗତନ ଅଶ୍ଳୀଳର ଶୈଳୀରେ ଚଢ଼ା ସେଇସବୁ ଗୁଳ, ଲାଜ କଥାରୁ ମାଡ଼େ, ଛକୁ ଫୁଟେ; ଏଇସବୁ ସାଧାରଣ ଲୋକଙ୍କର—ସଂଗ୍ରାମ ତାଳୁରୁ ତଳପା ଯେଉଁମାନଙ୍କୁ ଶକ୍ତ କରିଛି। ଡିଙ୍ଗି, ଘଣା, ବଳଦ, ଲଙ୍ଗଳର ଗ୍ରାମ ଆମେରିକାର ସଭ୍ୟ ପରିବେଶରେ ଅଦଭୁତ ଲୋକ ଶିଳ୍ପ ପରି ଦିଶେ।

## ଅପେରା ବା ଯାତ୍ରା

ଆଠଟା ପହର; ସନ୍ଧ୍ୟା ହୋଇନାହିଁ। ଗୁଳୁଗୁଳି; ପ୍ରାୟ ବାର ହଜାର ଲୋକଙ୍କ ସମାବେଶ ହୋଇଛି ସେଣ୍ଟଲୁଇସ୍‌ର ମ୍ୟୁନିସିପାଲ ଅପେରାରେ। ଏକ ବିରାଟ ଖୋଲା ପ୍ରାଙ୍ଗଣ, ରଙ୍ଗମଞ୍ଚ ମୂଳରୁ ପାହାଚ ସବୁ ଉଠିଛି—ପାହାଚ ଉପରେ ସିଟ୍—ସେଇ ପ୍ରାଙ୍ଗଣର ଚାରିକଣରେ ଗୁରିଟା ଡାଳଗଛ ପରି ଉଚ୍ଚ ଖମ୍ବ—ତାର ବାହୁଙ୍ଗା ପରି ଲମ୍ବିଛି ଫ୍ୟାନ୍, କୁଲ ପରି ଗୋଟାଏ ଗୋଟାଏ ପାଖୁଡ଼ା। ଝଡ଼ରେ ବାହୁଙ୍ଗା ଉଡ଼ିଦେଲା ପରି ସେଇସବୁ ଫ୍ୟାନ ବୁଲିଲା—'ହାଇଜଙ୍ଗ ଜମ୍ବା ଜମ୍ବା ଜମ୍ବା ହାଇଜଙ୍ଗ ଜମ୍ବା ଜମ୍ବା ପେ।'

ତାପରେ ଦୂରନ୍ତ ରଙ୍ଗମଞ୍ଚ ଉପରକୁ ଆସିଲେ ଆଡ଼ୁଆ ପିଲାଙ୍କ ପରି ଗୁଡ଼ାଏ—କେତୁଟା ଶୂନ୍ୟ ମାରିମାରି ଗୁଳାଲେ, ଅନ୍ୟମାନେ ନାଚିଲେ ପୃଷ୍ଠପଟର ବାଦ୍ୟର ତାଳେ ତାଳେ। ଡୋଲକ, ତୂବଡ଼ାବଲ୍, କ୍ଲାରେନେଟ ନାହିଁ; ଏ ବାଜା ଭିନ୍ନ—ଅବଶ୍ୟ କର୍ଣ୍ଣରୋଚକ।

ଆଜ ଯାହାର ବିଷୟ 'Kiss me kate'; ମୌଳିକ ରଚନା ନୁହେ । ସେକ୍ସପିୟରଙ୍କ 'Taming of the Shrew' ଗଳ୍ପାବଲମ୍ବନରେ ଲିଖିତ । ଏଲିଜାବେଥ୍ଙ୍କ ସମୟର ସାମାଜିକ ପରିବେଶ, ପ୍ରଚଳନ ବସନ, ଜୋତା, ପୋଷାକ, ଅଳଙ୍କାରପତ୍ର ବ୍ୟବହୃତ ହୋଇଅଛି । ସେ ଯୁଗର ପ୍ରେମ ପ୍ରୀତି, ଗଣ୍ଡଗୋଳ ଏ ଯୁଗରେ ହାସ୍ୟୋଦ୍ରେକ କରୁଅଛି । ଶୃଙ୍ଗାର ଓ ହାସ୍ୟରସ ବିଷୟକୁ ବିଶେଷ ଉପଭୋଗ୍ୟ କରିଛି । ନାୟକ ନିଉୟର୍କର, ନାୟିକା ହୁଏ ତ ଆସିଛି ଓ୍ୱାସିଂଟନରୁ; ଅନ୍ୟାନ୍ୟ ଅଭିନେତା ଅଭିନେତ୍ରୀଙ୍କ ମଧ୍ୟରୁ କେଏ ଆସିଛି ଓକ୍ଲାହୋମା, ଫିଲ-ଡେଲଫିଆ, ଓ୍ୱିସକନସିନ ବା ସଲ୍ଟଲେକ ସିଟିରୁ । ମୋଭିର ନକ୍ଷତ୍ର ପରି ଅନେକଗୁଡ଼ିଏ ଅଭିନେତା ଅଭିନେତ୍ରୀମାନେ ସମଗ୍ର ଦେଶରେ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

ସିନେମା, ଥିଏଟର, ଟେଲିଫୋନ ଛାଡ଼ି ଲୋକେ ଅପେରା ଦେଖି ଆସିଛନ୍ତି--ତା ଅର୍ଥ ଏଥିରେ ଏକ ନୂତନ ଆସ୍ୱାଦ ଅଛି, ଯାହା ଅନ୍ୟତ୍ର ଦୁର୍ଲଭ, ଯେପରି ଆମ ଯାତ୍ରାରେ—

'ଅଇଲେ ନାରଦ ମୁନି ହୋ'

କମ୍ବା

'ରଙ୍ଗିଆ ଦୁଆରେ ବାହାରିଲା ରେ'

ଏହି ଅପେରାର ମାଧୁର୍ଯ୍ୟ ବିଦେଶୀ କାନ ଗ୍ରହଣ କରି ନ ପାରିଲେ ବି ମନ ଘେନେ । ଦଶ କୋଡ଼ିଏ କୋଶରୁ ଲୋକେ ଧାଇଁଛନ୍ତି—ଯେପରି ଅନ୍ଧାରରେ ଟେକା ଗମ୍ଭୀରରେ ଆମେ ଧାଇଁଥିଲୁ ଅବଶ୍ୟ ସେପରି ନୁହେ; ସେମାନେ ଅସିଛନ୍ତି ମଟର ବାହି—୨୫, ଖାଲି ମଟର ବଣ, କୋଣ କୋଣ ଲମ୍ବିଛି—ଖାଲି ମୁଣ୍ଡମାଳ; ଯୁବତୀମାନଙ୍କର ଚମକ ଚଟୁଳ ବେଶ, ପାତଳା ଗହମ ପରି କେଶ, ଲାଲ ଶିକ୍କଣ ଓଠ, ଚୋପା ଆଳାପୀ ହସ । ଯୁବକମାନଙ୍କର ଛଇଛଟକ ମଧ୍ୟ କମ ନୁହେ ।

ଆମେ ଯାହା ଦେଖିବୁ ବିନା ଟିକେଟରେ—ଏମାନେ ଆସିଛନ୍ତି ଏକ ଡଲାରରୁ ସାଢ଼େ ଚାରିଡଲାର ଦେଇ । ସବା ପଛ ସିଟ୍ଗୁଡ଼ିକ ମାଗଣା

– ସେଠୁଁ ରଙ୍ଗମଞ୍ଚ ଖାଲି ଆଖିରେ ଗୁରୁଗୁରିଆ ଦିଶେ, ସଙ୍ଗୀତ ଓ ପଦ୍ୟ ସାମାନ୍ୟ ସଂଳାପ ଶୁଣିବାରେ ପଦେ ବା କିଛି ଅସୁବିଧା ହୁଏନାହିଁ ।

ଅପେରା ବିଶୁଦ୍ଧ ଗ୍ରାମଯାତ୍ରା ନୁହେ । ଏ ଦେଶରେ ତ ଏବେ ଗ୍ରାମ ନାହିଁ, ଗ୍ରାମଯାତ୍ରା ଆସିବ କୁଆଡୁ ? ଏଇ ଅପେରାରେ ଜଣେ ବ୍ୟବସାୟୀ ଟଙ୍କା ଖଟାଇଛନ୍ତି, ଦେଶର କେତେକ ପ୍ରତିଭାକୁ ଏକାଠି କରିପାରିଛନ୍ତି ।

ଏହା ଗୋଟିଏ ନୃତ୍ୟନାଟକ; ଏଥିରେ ସଙ୍ଗୀତ, ନୃତ୍ୟ ଅଧିକ; ସଂଳାପ କ୍ୱଚିତ୍, ଅଭିନୟ ଅଳ୍ପ । ଆମ ଯାତ୍ରାର ଦୁଆର ବା ଡଗର ପରି ଏଥିରେ ହାସ୍ୟରସିକ ବା ବ୍ୟଙ୍ଗକାରର ସ୍ଥାନ ମୁଖ୍ୟ—ଏମାନଙ୍କ ହାସ୍ୟ-ରସର ସାମାଜିକ ପୃଷ୍ଠଭୂମି ବୁଝିବା କଷ୍ଟକର । ପୁଣି କଥା ଅପେକ୍ଷା ଇଙ୍ଗିତ ବେଶୀ; ଟୃପ୍‌ଟାପ୍, ଠାରେଠୁରରୁ ଦର୍ଶକ ଦର୍ଶିକା ଭାବ ଠଉରେଇ ନେଇ ହାସ୍ୟର ହିଲ୍ଲୋଳ ଛୁଟେଉଥାନ୍ତି । ଇଂରେଜୀ ଗୀତ ଏମିତି ସୁନ୍ଦର ଗ୍ରାମ୍ୟ ସ୍ୱରରେ ବୋଲାଯାଇପାରେ, ମୋର୍ ଧାରଣା ନ ଥିଲା—ଅର୍ଥ ନ ବୁଝିଲେ ବି ମୁଁ କଣ୍ଠର ଉପଭୋଗ କରୁଥିଲି ।

ଅପେରାର କୁଶୀଲବ ସଂଖ୍ୟା ଶହେ । ରଙ୍ଗମଞ୍ଚ ଯବନିକାହୀନ । ଗୋଟାଏ ଗୋଟାଏ ଗାଆଁ, ବଜାର, ବଗିଚା ରଙ୍ଗମଞ୍ଚରେ ଛିଡ଼ାହୋଇ ଯାଉଥାଏ । ବହୁ ରଙ୍ଗୀନ ବେଶଭୂଷା, ରଙ୍ଗୀନ ଆଲୋକ ଧାରାର, ମଧୁର ହସଖୁସିର ତାମସା ଏ ।

## ଗୋଟିଏ ଦୋକାନ

ପଦ୍ମହସ୍ତଲକ୍ଷଣି ଦରଜାଟି ଆପେ ଆପେ ଖୋଲିଗଲା, ଦୋକାନ ଭିତରେ ପଶିବା ମାତ୍ରେ ମନକୁ ମନ ବନ୍ଦ ହୋଇଗଲା । ଶୀତାତପ ନିୟନ୍ତ୍ରିତ ଗୃହ ଆଲୋକରେ ଝଲମଲ । ଅପରୂପ ସଜ୍ଜା ସଜ—ଡାକୁଛି ଯେପରିକ ଗ୍ରାହକଙ୍କୁ । ଏଲିଭେଟର୍, ଉଠୁଚି ଖସୁଚି, ଏସ୍‌କାଲେଟର୍ ଚାଲୁଛି; ଗଣ୍ଡା ଗଣ୍ଡା ଫୋନ୍‌ରେ ହେତା କଥା ଭାଷା ହେଉଛନ୍ତି । ଚାଲିଛି ହିସାବ—କଳ—ଖଟ୍ ଖଟ୍—ଠନ୍ ଠନ୍

ଠନ୍ । ରେଳ ଗଜ ଆସୁଛି । କାନ୍ଥକୁ ଲାଗି ଛିଡ଼ା ହୋଇଛି କଳଘୋଡ଼ା, ଜିନ୍ ପଡ଼ିଛି ତାର ପିଠିରେ; ଦଶ ସେଣ୍ଟ ପକାଇଲେ ସେ ଦଉଡ଼ିଲା ପରି ନାଚେ । ଶିଶୁ ତା ପିଠିରେ ବସି ଘୋଡ଼ା ଦୌଡ଼େଇବାରେ ଆସ୍ୱାଦ ଉପଭୋଗ କରେ । ସେହିପରି ଗୋଟିଏ ଉଡ଼ାଜାହାଜ ମଧ୍ୟ ଅଛି । ସେଥିରେ ଦଶ ସେଣ୍ଟ ପକାଇଲେ ଆଗ ପଙ୍ଖାଟା ବୁଲେ । ଉଡ଼ାଜାହାଜଟି ଥରେ; ସତେ ଅବା ଉଡ଼ିଯିବ ? ସେଥିରେ ବସି ସେ ଉଡ଼ାଜାହାଜ ଚଢ଼ାର ମଜା ପାଏ । ଦଶ ସେଣ୍ଟକୁ ଦଶ ମିନଟ୍ । ଉଡ଼ାଜାହାଜ ବା ଘୋଡ଼ା ନାଚ ତାପରେ ବନ୍ଦ ହୋଇଯାଏ ।

ଏ ଦୋକାନ, "ନା, ଗୋଦାମ; ନା, ବସ୍ତ୍ର ଗୋଦାମ, ନା, ହାଟ; କିନ୍ତୁ କିଛି ଗୋଳମାଳ ନାହିଁ; ଏ ଗୋଟିଏ ବଜାର—ମହଲକୁ ମହଲ ବିସ୍ତୃତ; ଏହାକୁ ଡ଼ିପାର୍ଟମେଣ୍ଟାଲ୍ ଷ୍ଟୋର କହନ୍ତି । ଏଠି ସବୁ ମିଳେ—ଛୁଞ୍ଚିରୁ ଟେଲିଭିଜନ । ପୁରାତନ ପୁଣି ହାଲି ଫେସନର ସବୁ ଜିନିଷ । ଭିକ୍ଟୋରିଆ ଯୁଗର ବେଶଭୂଷଣ, ଅଳଙ୍କାରପତ୍ରରୁ ଆଧୁନିକ ଚୌକି, ଟେବୁଲ୍, ଆଲ୍‌ମାରି, ଶାଢ଼ୀବ୍ଲାଉଜ୍‌ରୁ ପ୍ଲାଷ୍ଟିକ୍ ଗଛଲତା, କେକ୍ ବିସ୍‌କୁଟରୁ ଚୂଡ଼ା ମୁଢ଼ି, ତେଲ ଅତରରୁ ପିଡ଼ିଆ, ମଞ୍ଜି, ଘାସକଟା କଳରୁ ଶୀତାତପନିୟନ୍ତ୍ରଣକାରୀ ଯନ୍ତ୍ର, ପୋକମରା ଔଷଧରୁ ମଟର ଗାଡ଼ି, ଘଡ଼ିରୁ କାଠଘୋଡ଼ା; ପିଲାଙ୍କୁ ମିଳେ ଚକୋଲେଟ୍, ବଡ଼ ମଣିଷଙ୍କୁ ସିଗାରେଟ୍ । କାଚ ଦରଜା ପାଖେ ପାଖେ ଆଧୁନିକ ଫେସନର ମହମ ନାରୀସବୁ—ନମ୍ର ଚାହାଣୀ, କମ୍ର ପଦକ୍ଷେପ—ଆଧୁନିକତମ ବେଶଭୂଷା ।

ଦୋକାନର ଯେପରି ସଜାସଜ ତା ମଧ୍ୟରେ ରୂପସୀ ବସିବା ଆବଶ୍ୟକ— ବସିଛନ୍ତି; ସଜାସଜର ଶ୍ରୀ ବହୁତ ବଢ଼ିଯାଇଛି, ସେମାନଙ୍କ ଠାଣି ମାଣି, ଭାବଭଙ୍ଗୀ, ଗୀତର ସୀମା ଛୁଇଁଥିବା ଲଳିତ ମଧୁର ସଳାପରେ ।

ବଙ୍ଗାଳୀମାନେ 'ଠାକୁରେର ଦେଶ' ବୋଲି ଓଡ଼ିଶାକୁ କାହିଁକି ଡାକନ୍ତି ? ଓଡ଼ିଆମାନେ କାହିଁକି ଡାକନ୍ତି ? ପ୍ରକୃତରେ 'ଠାକୁର'

ପ୍ରଜାତନ୍ତ୍ରର ଦେଶ ହୋଇଥିଲେ ଅନେକ ଦିନରୁ ଓଡ଼ିଶାର ଭାଗ୍ୟ ବଦଳି ଯାଇଥାନ୍ତା । ଏ ଦୋକାନରେ ଓ ଏହିପରି ଶତ ସହସ୍ର ଦୋକାନରେ ଯେଉଁ ଦ୍ରବ୍ୟ ପଦାର୍ଥମାନ ଥୁଆ ହୋଇଛି ସେସବୁ ବାନ୍ଧିଛି କିଏ ? କେଉଁ ଦେଶର ଗଇ, କେଉଁ ଦେଶର ଆମ୍ବିଳ, କେଉଁ ଦେଶର ଭଜା, ଚଣ୍ଡଚଡ଼, କେଉଁ ଦେଶର କଣିକାକୁଡ଼ ଗଣ୍ଠା, ପିଠା, ମିଠା, ମାଛମାଂସ ? ଯାକୁ ବାନ୍ଧିଛି କିଏ ? ବୋତଲ୍ ଭରାମୟ ଦୋକାନ । ବୋତଲ ଭିତରେ ମଣିଷର ଜୀବନ ଭରିଛି—ଜୀବନନାଟି—ରଣାଙ୍ଗନର ସୈନିକ, କାରଖାନାର ଶ୍ରମିକ, ଅଫିସର କର୍ମୀ । ସମସ୍ତେ ଏଇଥିକୁ ଗୁନ୍ଥି ବସିଛନ୍ତି । ଧନ୍ୟରେ ପ୍ରଜାତନ୍ତ୍ର; ନିଆଁ ପାଣି କଥା ବୋଲି ଗୋଟାଏ କିଛି ଓ ଅଲଣା ଲୁଣିଆ, ଲେଟକାଗୁଡ଼ିଆ ହୋଇନାହିଁ; କି କାରିଗରୀ ନ ଫୁଟିଛି, ଏ ଦୋକାନରେ ପଶିଲେ ତ ପାଟି ପାଣେଇବ—ଟେଷ୍ଟ ଆଉ କଟ୍‌ପିଟ୍‌ରୁ ପାଚିଲା ଆମ୍ବ, ସପୁରି ମୋଜାମ୍ବିକ୍‌ରୁ ଅଙ୍ଗୁର ରସ, କେତେ ପ୍ରକାର ହିମ୍ ଚକୋଲେଟ୍, କେତେ ରକମ୍ ଛେନା ବସା ଦହି । ଠେଲା ଗାଡ଼ିରେ ପିଲାଙ୍କୁ ବସାଇ ଠେଲି ଠେଲି ଏ ପାଖରୁ ସେ ପାଖ ନେବାକୁ ହୁଏ—ଫଳରୁ ପରିବା, ମାଂସରୁ ମାଛ, ଶିଶୁ ଖାଦ୍ୟରୁ କୁକୁର ବିରାଡ଼ି ଶୁଆପାରି କାକତୁଆର ଖାଦ୍ୟ—ସବୁ ଠେଲା ଗାଡ଼ିରେ ରଖି ହିସାବଯନ୍ତ୍ର ପାଖକୁ ଅଣାଯାଏ—ସେଠି ଓଜନ, ଦାମ୍ କଷାକଷି, ପୁଡ଼ା ବନ୍ଧାବନ୍ଧି । ତାପରେ ଜଣେ ସେବକ ଠେଲାଗାଡ଼ିରେ ନେଇ ମଟରରେ ଲଦି ଦିଏ ।

ନିଖିଲ ଇରାର ପୁଅ—ପାଚିଲା ଚେରିଟିଏ ଦେଖି ତା ପାଟିରୁ ଲାଳ ବୋହିଲା । କେଉଁ ଖାଉ ନାହାନ୍ତି, କଥାରେ ଅଛି—ଖାଇଲା ଘର ପିଲାଟିର ରଙ୍କ । ନିକ ପାଟିକି ପକାଇ ଦେବ ବୋଲି ଆଁ କରିଛି । ଇରା ଖପ୍‌କିନେ ତା ହାତରୁ ଝାମ୍ପିନେଲା । ଝାଙ୍କ ହେଁ କିନେ କାନ୍ଦ ଉଠିଲା । କାନ୍ଦୁ, ତା ବୋଲି ଏଠି କେହି ନାହାନ୍ତି, ଖାଇଦେବ ! ସ୍ବାର ଦାମ୍ ଦିଆ ହେବ କିପରି ? ଖାଇ ଦେଇଛି ବୋଲି କହିଲେ ଦୋକାନୀ ବିଚାରିବ କଣ ? ଅସଭ୍ୟ, ବନ୍ୟ । କିଛି ନ କହିଲେ, ନିଜ ବିବେକ ତ ନିଜକୁ ଦଂଶନ କରିବ । ଇରା କଠୋର ହେଲା, ସ୍ନେହ କରୁଣାର କୋମଳ ଧାରା ଅନ୍ତରରେ ପ୍ରବାହିତ ହେଲେ ବି ।

## ଫିଲସ୍ ପାର୍କ

ପାହାଡ଼ ଓ ଉପତ୍ୟକା—ଉପତ୍ୟକା ଓ ପାହାଡ଼; ଉଚ୍ଚ ନିମ୍ନଭୂମି ଉପରେ ଓକ୍, ସେକାମୋର୍, ଏଲମ୍, ଉଇଲୋ—ବନସ୍ପତିସବୁ ସ୍ଥାନକୁ ଗମ୍ଭୀର କରିଛନ୍ତି, ସହରର ବଡ଼ ବଡ଼ ଲୋକ ଜନସ୍ରୋତ ରହିଲେ ଯେପରି; ଘନ ସବୁଜ ତୃଣ ପ୍ରାନ୍ତର ମଧ୍ୟରେ ଶିଶୁଙ୍କ ଲାଗି ଦୋଳି ଓ ଅନ୍ୟାନ୍ୟ ଖେଳ, ଜଳାଶୟରେ ନୌକାବିହାର ଓ ତାର ତୀରବର୍ତ୍ତୀ ଓକ୍ ଗୁମ୍ଫାରେ ବନଭୋଜି—ପାର୍କର ଜୀବନ ବିଶ୍ରାମର, ସୌନ୍ଦର୍ଯ୍ୟର, ଶାନ୍ତିର ।

କେଉଁଠି ? ନା, ଗୁଣ୍ଡୁଚିମୂଷା ! କେତେ ବଡ଼ ବଡ଼ ! କିନ୍ତୁ ତା ପିଠିରେ ରାମଚନ୍ଦ୍ରଙ୍କ ଅଙ୍ଗୁଳି ସଙ୍କେତ କାହିଁକି ନାହିଁ ? ଏ କଣ ସେତୁବନ୍ଧରେ ଧୂଳି ଝାଡ଼ି ପାରି ନ ଥିଲା ? ମହାପୁରୁଷଙ୍କ କରୁଣାର, କୋମଳ ସ୍ପର୍ଶ ନ ପାଇ ଏଠି ଅଧିକ ବନ୍ୟ ଦିଶୁଛି ସେ ।

ବର୍ଷା ! ଦୁଇ ଘଣ୍ଟା ଧରି ମାନ ପଡ଼ିଲା ଆଶୀର୍ବାଦ ଜଳ ପରି । ମୌସୁମୀ ଦେଶର ସେ କଳାଆଉଁଆ କଳାହାଣ୍ଡିଆ ମେଘ ନାହିଁ; ସେ ବକାଳିକାମାଳିକା ନାହାନ୍ତି, ଲକ୍ଷ୍ମୀ ବିଜୁଳିର ସେ ଘନ ଘନ ଚମକ ନାହିଁ, ଅଧା ଖରା ଅଧା ବର୍ଷାର ସେ ଦିଗଦିଗନ୍ତଲମ୍ବୀ ଇନ୍ଦ୍ରଧନୁ ନାହିଁ । ମଣ୍ଡୁକର ସେ ସପ୍ତସ୍ୱର ନିନାଦ ନାହିଁ, ଗ୍ରାମ୍ୟ ବା ଗ୍ରାମୀଣ କଲୋଚ୍ଛ୍ୱାସ ନାହିଁ । ସେ ରଜଶୁଆଁପିଆ କୃଷକ କନ୍ୟାର ଅଭିନନ୍ଦିତ ଅତିଥି ନୁହେଁ, ବିରହୀ ବିରହିଣୀର ବିଶ୍ୱସ୍ତ ଆକାଶ ଦୂତ ନୁହେଁ । ଆଘାତ ଦେବା ଶକ୍ତି ବା ଆନନ୍ଦ ଦେବାର ନାଟକୀୟତା ତାର ନାହିଁ । ତାର ପ୍ରତିଶ୍ରୁତି କଣ୍ଠରେ ମହ୍ଲାର ରାଗିଣୀ ନାହିଁ, ବନ୍ଧୁ 'ଅଶ୍ରୁ'ର ଉଚ୍ଛ୍ୱାସ ନାହିଁ । ଜୀବନ ଏଠି ଦୈବ ନିର୍ଭର ନୁହେଁ, ଆତ୍ମ ନିର୍ଭର ।

## ମିସିସିପିରେ ନୌକାଯାତ୍ରା—(୧।୭।୬୭)

ମେଘ ସବୁ ଛେଡ଼ା ଧଳା ସାହେବଙ୍କ ପରି, କିଛି ଅଂଶ କଳା ପୁଣି ନିଗ୍ରୋ ପରି, କିଛି ଅଂଶ ସାହେବ ଓ ନିଗ୍ରୋ ବର୍ଣ୍ଣସଙ୍କର ପରି । ଇଷ୍ଟଲିକ ବନ୍ଦରର ଉପକୂଳ ପ୍ରାଙ୍ଗଣରେ ଗାଡ଼ି ରଖି ଆମେ 'ଡଲ୍ଫିନ୍' ନାମକ

ମଟର ବୋଟରେ ଚଡ଼ିଲୁ—ଇବ, ଗୀତା, ମୀରା ଓ ମୁଁ । ହକ୍‌ଫିନର ତଳ ମହଲ, ଉପର ମହଲରେ ସୁସଜ୍ଜିତ ଚୌକିମାଳା—କାଉଣ୍ଟେଟ୍; ମୁଣ୍ଡ ପିଛା ଟିକେଟ ଖର୍ଚ୍ଚ ଦେଢ଼ ଡଲାର ପଡ଼ିଲା । ଗୋଟିଏ ଗୋଟିଏ କୋକାକୋଲା ହାତରେ ଧରି ଆମେ ଯାଇ ଡେକ୍ ଉପରେ ବସିଲୁ ।

ହକଫିନ ପିଠି ଦେଇ ଘୁଞ୍ଚିଲା 'ଜେଫରସନ୍ ମେମୋରିଆଲ୍'ରୁ; ଏହି ସ୍ମୃତି ମନ୍ଦିରଟି ନିଷ୍କଳଙ୍କ ଲୌହରେ ନିର୍ମିତ । ଏହାର ଉଚ୍ଚତା ୬୩୦ ଫୁଟ । ଅଗ୍ରଭାଗରେ କେତୋଟି ଗବାକ୍ଷ । ଏଲିଭେଟରରେ ଉଠି ଏଇ ଝରକାବାଟେ ଚାହିଁଲେ ସହରର ପ୍ରାକୃତିକ ଦୃଶ୍ୟ ଉପଭୋଗ କରି ହେବ । ଏହି ତୋରଣର ଚତୁର୍ଦ୍ଦିଗରେ ଉଦ୍ୟାନ, ତୃଣପ୍ରାନ୍ତର ନିର୍ମିତ ହୋଇଛି । ମିସିସିପି ଦେଇଛି ଏହି ତୋରଣକୁ ସ୍ୱତନ୍ତ୍ରଶ୍ରୀ । ସେଣ୍ଟଲୁଇସ୍ ସହରର ଏହା ପ୍ରଧାନ ଆକର୍ଷଣ ।

ଜେଫରସନ୍ ଯୁକ୍ତରାଷ୍ଟ୍ରର ପ୍ରଥମ ରିପବ୍ଲିକାନ୍ ପ୍ରେସିଡେଣ୍ଟ । ଦାର୍ଶନିକ, ଲେଖକ, ସଙ୍ଗୀତଜ୍ଞ, ବୈଜ୍ଞାନିକ; ଲୋକସାଧାରଣଙ୍କ ମୁକ୍ତି ଓ ସୁଖ ଲାଗି ସେ ଜୀବନପାତ କରିଥିଲେ । ଅଳ୍ପବ୍ୟୟରେ ସରଳ ମାର୍ଗରେ ଯେପରି ଶାସନ ଚାଲିବ; ସାଧାରଣ ଯେପରି ଅଳ୍ପବ୍ୟୟରେ ସୁବିଚାର ପାଇବେ; କହିବା ଓ ଲେଖିବାରେ ଯେପରି ଅବାଧ ସ୍ୱାଧୀନତା ମିଳିବ, ଜେଫରସନ୍ ବ୍ୟବସ୍ଥା କରିଥିଲେ । ସମଗ୍ର ଆମେରିକାରେ ଜେଫରସନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ—ବହୁ ସ୍ମୃତି ମନ୍ଦିର ନିର୍ମିତ ହୋଇଛି, କିନ୍ତୁ ଏତେ ବିରାଟ କେଉଁଠି ଆଉ ନାହିଁ ।

ପୃଥିବୀର ଦ୍ୱିତୀୟ ନଦୀ ମିସିସିପି—ଏଠି ଶହେ ଗଜରୁ ଅଧିକ ପ୍ରଶସ୍ତ ନୁହେଁ । ମିସୌରି ଓ ଇଲିନଏସ୍‌ର ବିଭାଜକ ରେଖାରୂପେ ଏହା ରହିଅଛି । ବହୁ ସେତୁ, ବହୁ ପଥ – ସେଣ୍ଟଲୁଇସ୍ ପଟେ ବହୁତ କଳ-କାରଖାନା—ବିପୁଳ ସୌଧ ଓ ଜେଟି—ଅବିଶ୍ରାନ୍ତ ଗତିରେ ଚାଲିଛି ମଟର ଗାଡ଼ି । ଆମେ ଚାଲିଲୁ ସ୍ରୋତର ବିପରୀତ ଦିଗରେ । ଉଭ୍ ଉପରେ ଚୋରା ଆଉ କଳା ପଲାସବୁ, ଜଳ ତରଙ୍ଗିତ ଢେଉରେ—ସତେ ଯେପରି ଏକ ଦୃଶ୍ୟ ; ଯାହି ପାହିନାହିଁ ।

ଇଲିନଏସ୍ ଷ୍ଟେଟରେ ପୁଞ୍ଜ ପୁଞ୍ଜ ବୃକ୍ଷଲତା, ସବୁଜ ପ୍ରାନ୍ତର, ଅଧିକରୁ ଅଧିକ ଦିଶୁଛି । ନଦୀର ଜଳ ଅ:ବିଳ; ଚେଳାକ୍ତ । ମତ୍ସ୍ୟ କମ୍ବା କୌଣସି ଜଳଜନ୍ତୁର ଦେଖାଦର୍ଶନ ନାହିଁ । କାରଖାନାର ସବୁ। ପଙ୍କ ପାଣିରେ ମିଶି ଯାଉଛନ୍ତି । ଏହା ଗୋଟିଏ ସମସ୍ୟା ସୃଷ୍ଟି କରିଛି, ଭାରତରେ ଯେପରି ।

ପଞ୍ଚାଶତ୍ ତାରକା ଚିହ୍ନିତ ଅଦ୍ଭୁତ କ୍ଷମତାଶାଳୀ ଗଣତନ୍ତ୍ର ରକ୍ଷାକାରୀ ଯୁକ୍ତରାଷ୍ଟ୍ରର ପତାକା ତଳେ ଛୁଟି ହୋଇ ଚାଲିଛି କ୍ଷୀଣସ୍ରୋତା ମିସିସିପିକୁ । ଜୀବନର ଏଇ ଗୋଟିଏ ମୁହୂର୍ତ୍ତକୁ ସ୍ୱର୍ଣ୍ଣାଭ କରୁଛି କଳ୍ପନାରେ ଅନୁରଞ୍ଜିତ କରି । ଏଇ ଗୋଟିଏ ମୁହୂର୍ତ୍ତ—ଜୀବନର ଘଟଣାହୀନ, ଗତାନୁଗତିକ ବହୁ ବର୍ଷଠାରୁ ଅଧିକ ମୂଲ୍ୟବାନ୍ ।

ଚନ୍ଦ୍ରାଲୋକ ଚନ୍ଦ୍ରିକାର ରାତି ନୁହେଁ, ବର୍ଣ୍ଣୋଜ୍ଜ୍ୱଳ ପ୍ରତ୍ୟୁଷ ନୁହେଁ, ସ୍ୱପ୍ନର ସନ୍ଧ୍ୟା ନୁହେଁ—ମଧ୍ୟାହ୍ନ, ନିଦାଘ ରୌଦ୍ରର; ମସ୍ତକ ଉପରେ ସୂର୍ଯ୍ୟ । ଭୁଲିଯାଏ ବୟସର ବର୍ଷ ମୋର—ଭସା ମେଘ ପରି ଭାସିଛି କେଉଁ ଏକ ଭାବସ୍ରୋତରେ—ମୁହୂର୍ତ୍ତର ଫୁଲଦାନିରେ ଫୁଲ କେଣ୍ଡା ପରି ଲାଗିଯିବା ଲାଗି । ଚିରସୁନ୍ଦରରେ ଟିକିଏ ରଙ୍ଗହୋଇ ଲାଗି-ଯିବାର ସୌଭାଗ୍ୟ ଜୀବନରେ ମିଳେ ଏଭଳି କ୍ୱଚିତ୍ ।

## ମିସିସିପି ମିସୌରୀ ସଙ୍ଗମେ

ପୃଷ୍ଠପଟେ ବନାରଣ୍ୟ—ଅରଣ୍ୟର ଆରପାଖେ ଚାଲିଛି ଜଙ୍ଗଲ ଜୀବନର ଧାରା, ଦ୍ରୁମଲତାର ମର୍ମର ମଧ୍ୟରେ ବେଳେ ବେଳେ କାନରେ ବାଜୁଛି ସେଇ ସ୍ୱର । ଅରଣ୍ୟରେ ପଶିବାକୁ ମନ ବଳୁନାହିଁ, ବୃକ୍ଷମୂଳେ ମୂଳେ ବନ-ଗୁଳ୍ମ, ତୃଣର ତରଙ୍ଗ ଉଠେ । ବ୍ୟାଘ୍ର ଭଲ୍ଲୁକ ନାହାନ୍ତି, ସର୍ପ ଥାଇପାରେ, ରାଟଲ୍ ସ୍ନେକ୍—ତେଣୁ ଭୟ ।

ପ୍ରଖର ରୌଦ୍ର, ହର୍‌ବଲସ୍ୱେ ବିସ୍ତୃତ ଜଳ ଝଲମଲ କରେ, ବିଚିତ୍ର ରଙ୍ଗରେ ମିସିସିପି ମିସୌରୀ ବହୁଛନ୍ତି, ଆଧୁନିକତମ ବସ, ନବଦମ୍ପତି

ପର—ନିଷ୍କଳଙ୍କ ଇସ୍ପାତର ହସ, ବଦର୍ଧତା ମଧ୍ୟରେ ଫଣପୂର ପ୍ରଶ୍ନବାଚୀ, ସୀମାନ୍ତ ଅବୋଧ । ତୋଫାଗା ହସର ବରଷ ମଧ୍ୟରେ କାହିଁ ଜଡ଼ଠେ କରୁଣ କାହଣୀ ?

ଲାଲ୍ ଭାରତୀୟ ? ନିଗ୍ରୋ ? କାହାର ଏ ଅଶ୍ରୁଧାର ? କେବେ ସେଇ ସ୍ପାନିସ୍ଡ, ପର୍ତ୍ତୁଗୀଜ, ଫରାସୀ ବା ଇଂରେଜୀ ଆସିଲ, ସବୁ ଇତିହାସ ଏଠି ହୋଇଅଛି ଲେଖା—ଗ୍ରାମସବୁ ହୋଇଲା ନଗର, କଲ୍ପନାର ଯେତେ ପୃଷ୍ଠ ଫୁଟିଲା ଶବ୍ଦ୍ୟରେ, ସଚଳ ଚଞ୍ଚଳ ହେଲେ ସଭ୍ୟତାର ଯେତେ ଅଗ୍ରଦୂତ, ବ୍ୟବସାୟୀ ବ୍ୟସ୍ତତାର ।

ଅସିଲାଣି ନଇଁ ସନ୍ଧ୍ୟା
ସିପିସିପି ସିସୌଷରେ ଡାକେ ?
ସବୁ ତ ସୁବର୍ଣ୍ଣ ହେଲା—
ଅଶ୍ରୁର ପୃଥିବୀ ଏବେ ଆସିଛି କ ପାଖେ ?

୨. ୮. ୭୬—ସେଣ୍ଟଲୁଇସ୍—ଜୁହୁଡ଼ଆ ପାଗ, ବର୍ଷାପର କାକର ପଡ଼ୁଛି; ସତ୍ୟ ଓ ମୁଁ ବୁଲି ବାହାରିଲୁ—

ପ୍ରତ୍ୟେକ ଗଳି ମୁଣ୍ଡରେ ବାସିନ୍ଦାମାନଙ୍କର ନାମ କ୍ରମାନ୍ୱୟେ ଲେଖା ହୋଇଛି । ବାସିନ୍ଦାମାନଙ୍କର ଗୋଟିଏ ସଙ୍ଘ ଅଛି । ରାସ୍ତା ଅପରିଚ୍ଛନ୍ନ ହେଲେ ବା ସେହିପରି ସାଧାରଣଙ୍କର କୌଣସି ଅସୁବିଧା ହେଲେ ସଙ୍ଘ ମ୍ୟୁନିସ୍ପାଲିଟିକୁ ଜଣାଏ । କେତେକ ପଡ଼ାକୁ ନେଇ ଗୋଟିଏ ସହର । ଗୋଟିଏ ନଗର ମଧ୍ୟରେ ଷଣ ଗ୍ଲଳଟି ସହର ଓ ପ୍ରତ୍ୟେକର ସ୍ୱତନ୍ତ୍ର ମ୍ୟୁନିସ୍ପାଲିଟି ଥାଏ । କେହି ବ୍ୟକ୍ତି ନିଜ ପଡ଼ିଆରୁ ଘାସ ନ କାଟିଲେ ତାହା ନାଗରିକ ଦାୟିତ୍ୱର ଚ୍ୟୁତି ବୋଲି ଧରାଯାଏ । ସେଇ ପଡ଼ାର ଅନ୍ୟ ଜଣେ ସେ ଘାସ କାଟି ଗୃହସ୍ଥ ନିକଟକୁ ବିଲ୍ ପଠାଇଦିଏ ।

ଆମେରିକାର ଘରଗୁଡ଼ିକ ବଡ଼ ନିର୍ଜନ ଲାଗେ—ପାଟିତୁଣ୍ଡ ଶୁଣାଯାଏ କ୍ୱଚିତ୍ । ଘର ଭିତରେ ବନ୍ଧା କୁକୁର—ବାହାରେ ଗାଡ଼ି—

ଆଠଟା ନ'ଟା ବେଳକୁ ଗୃହସ୍ଥ ଓ ଗୃହିଣୀ ଯାଆନ୍ତି ଅଫିସ୍‌କୁ, ପିଲାମାନେ ସ୍କୁଲକୁ । ଲାଗେ ପଶୁପକ୍ଷୀଙ୍କ ଲୀଳା । ବଗିଚାର ମାଳୀଏଣ ଗାବଟ୍ ଗଛକୁ ଗଛ ନିରେଖି ଦେଖେ । ଗଛମୂଳେ ଝୁଣ୍ଡଥିବା ଆଟ ଖାଏ । କଜ୍ଜଳପାତିଆ, ବଣି, ଭରତିଆ, ଉଦଉଦଳିଆ, ବୁଲ୍‌ବୁଲ୍, ଅଚହ୍ନା ଲାଲ ନାଲ ରଙ୍ଗିତ ପକ୍ଷୀଏବୁ—ପିର୍ ପିଅର ଆପଲ୍ ଗଛଉପରେ ସେମାନଙ୍କର କ୍ରୀଡ଼ା ।

ଆମେରିକାନ୍ ଘରେ ଉଠାବସାର ଧୂମ୍ ନାହିଁ । କାହା ଘରକୁ କେହି ଯିବାଆସିବା କରୁଥିବାର ଦେଖିବ କ୍ୱଚିତ୍ । ଯେ ଯାହାର ବ୍ୟବସାୟରେ ଲାଗିଛନ୍ତି, କଥାକହିବାକୁ ବେଳନାହିଁ । ଆଗରୁ ଫୋନ୍‌ରେ ସାକ୍ଷାତ୍ ସମୟ ନିର୍ଦ୍ଧାରଣ କରି ନଥିଲେ କେହି କାହା ଘରକୁ ଯିବାକୁ ସାହସ କରେ ନାହିଁ । ଜଣକ ଉପସ୍ଥିତି ଆଉ ଜଣକର କାର୍ଯ୍ୟର ଯେପରି ବାଧକ ନ ହୁଏ, କୌଣସି ଅସୁବିଧା ସୃଷ୍ଟି ନ କରେ; ସେଥିପ୍ରତି ଦୃଷ୍ଟି ଦିଆଯାଏ ।

ଜୀବନଟା ଏଠି ଘରେ କଟେ କମ୍—ଏହା ବିଭିନ୍ନ ସ୍ଥାନରେ ବିକ୍ଷିପ୍ତ—ଅଫିସ୍, ଖେଳପଡ଼ିଆ, ସିନେମାଘର, ବିଅର୍ ହାଉସ୍, ହୋଟେଲ ବା ମୋଟେଲରେ । ଜୀବନ ଯେ ଘରଦ୍ୱାର ଓଳାପୋଛା, ରୋଷେଇବାସ, ଅତିଥିଚର୍ଚ୍ଚା, କଳକଳିଆ ବା ହୁରି ଗୋଟାଏ ଧୁମ୍‌ଧାମ୍‌ର କଥା ତାହା ଘର ଦେଖିଲେ ବୁଝାଯାଏ ନାହିଁ । କେଉଁଠି କେହି ଚିତ୍କାର କରିବାର ଶୁଣିବ ନାହିଁ । ଗୋଳମାଳ କରିବାର ଅଧିକାର ତାର ନାହିଁ । ଯେଉଁଠି ଇଚ୍ଛା ସେଠି ଛେପ, କାଗଜ ଛିଣ୍ଡେଇ ପକେଇବାର ଦୁରଭ୍ୟାସ ଏଠା ଲୋକଙ୍କର ନାହିଁ ।

## ମୃତ୍ୟୁର ଫାଶ

ପ୍ରତ୍ୟେକ ଘର ସାମ୍ନାରେ ମୃତ୍ୟୁର ଫାଶ ବସିଛି—ଏହା ଗୋଟିଏ ହଳଦିଆ ବର୍ତ୍ତିର ଯନ୍ତ୍ର । ତା ମଧ୍ୟରେ ଆଲୁଅ ଜଳେ । ପୋକ ମାଛି ଆକୃଷ୍ଟ ହୁଅନ୍ତି, ଲାଗି ରହନ୍ତି । ଏ ଦୃଶ୍ୟ ଦେଖି ଗାଆଁର ପୋକ ମାଛି ଅତ୍ୟାଚାରର କଥା ମନେ ପଡ଼ିଲା । ଜ୍ୟେଷ୍ଠ ମାସର

ସେଇ ଗଜୁଣୀ ଗଜୁଣୀ ଆମ୍ବ ଡାହାଣୀ—କାନ୍ଥେ କାନ୍ଥେ ଲଖିଯାନ୍ତ, ଇଟରଟ୍ କାମୁଡନ୍ତ, ଆଷାଢ଼ର ସେଇ ଝଡ଼ତୋଫାନ ଖୁଆଇପିଆଇ ବଞ୍ଚନ୍ତି ନାହିଁ । ବେଙ୍ଗ, ସାପ, କୁଆ, ନେଉଳ ଗୁଣ୍ଡୁଚିମୂଷା, କଇଞ୍ଛଙ୍କର ଭୋଜ ମଉଚ୍ଛା ଲାଗିଯାଏ ।

ସହର ଭିତରେ ବହୁ ପାର୍କ, ସହର ପାର ହେଲେ ରାସ୍ତା ଧାରେ ଧାରେ ଜଙ୍ଗଲ, ଗଛ ମରି ପଡ଼ିପଡ଼ି ପୋପର ହୁଏ, ସତେ । ବିଜୁଳି ବା ଗ୍ୟାସ୍‌ରେ ତ ରୋଷେଇ,, ଏସବୁ ପଚାରୁଛି କିଏ? ଟୋକେଇଟିଏ କାଖେଇ ନଗିଟିଏ ଧରି ଡାଙ୍ଗି ଡ଼ାଙ୍ଗା ଭାଙ୍ଗିବା କମ୍ପା କେଞ୍ଚ କଣ୍ଟା-ମୂଠାରେ ପତର ଓଳେଇ ବଡ଼ାବାନ୍ଧିବା, ଗୋବର ଗୋଟେଇ ଘଷି ପାରିବା, ଜାଳ ନ ପାଇ ଜାଅଳା ଗଛ ଛେଲିଦେଇ ମାରିଦେବାର. ଜାଳ ଗୋଟିଆରୁ ଝଟାପଟା କଳି ଲାଗିବାର ବକ୍ତ ଦାରିଦ୍ର୍ୟ ବା ଦୁଃଖ ଏଠି ନାହିଁ । ଖଣ୍ଡିଏ ଡାଳ କଟା ବା ଭଙ୍ଗା ହୋଇନାହିଁ; ଯାହା ଝଡ଼ରେ ଛିଡ଼ିଛି ବା ମରି ପୋପର ହୋଇ ଭାଙ୍ଗି ପଡ଼ିଛି ।

## ଡକ୍‌ଟର ଜିଭାଗୋ

ଇଉରୋପର ଭୌଗୋଳିକ ଚେହେରା ଉପରେ ବିହଙ୍ଗମ ଦୃଷ୍ଟି-କ୍ଷେପ କରିଥିଲି । ବାଙ୍କା ରହିଥିଲା ରୁଷିଆ । ମାତ୍ର ଅଢ଼େଇ ଘଣ୍ଟାରେ ଆଜି ବୃକ୍ଷୁତ୍ର ପରିକ୍ରମା ହୋଇଗଲା, ହେଉ ପଛେ ତାହ ଆଉ ଫଳାପରେ ।

ଆମ୍ବାସଡର୍ ନାମକ ସିନେମାଗୃହ—ଏହାର ଅପୂର୍ବ ଗୃହଚକ୍ୟ ଓ ଆଡ଼ମ୍ବର । ଜଣ ପିଚ୍ଛୁ ଟିକେଟ୍ ପଡ଼ିଲା ଅଢ଼େଇ ଡଲାର୍; କାର୍‌ଟି ବଜାରରେ ପାର୍କିଂ କରିବାକୁ ଅଢ଼େଇ ଘଣ୍ଟା ଲାଗି ପଡ଼ିଲା ଦୁଇ ଡଲାର୍ ।

ଜାର୍ ରୁଷିଆ—ଅତ୍ୟାଚାରପିଷ୍ଟ କୃଷକ ମଜଦୂର୍—ତାର ସଂଗ୍ରାମ ପ୍ରକୃତି ସହିତ, ଏକଛତ୍ରବାଦୀ ରାଜା ଓ ସାମନ୍ତମାନଙ୍କ ସହିତ । ଜରି କାଗଜ ପରି ସେଇ ତୁଷାରପାତ; ତୁଷାର ଆବରଣ ମଧ୍ୟରେ ମଣିଷର

ଜୀନ୍ତୁ ଜୀନ୍ତୁ ଆଖି ଦୁଇଟି; ତର୍ଜନୀରେ କ ଖୁସ୍ତ ଦ୍ରୁତଙ୍କା ପୃଷ୍ଠ ରକ୍ତ-ଅଳ—ଯାହା ଜାତିକୁ ନିପାତ କଲା, ସାମନ୍ତମାନଙ୍କୁ ଚଳଚଳାନ୍ତ କରି-ଦେଲା ।

ଓଃ ସେଇ ତୁଷାର ଝଡ଼—ତୁହାକୁ ତୁହା ଶୀତଦାନେ ଆସେ—ହିଂସ୍ର ହଇଆଣ ପରି ଝାମ୍ପିପଡ଼େ, ଓଟପକ୍ଷୀ ପରି ଦୌଡ଼େ—ଶକୁନି ପରି ଅମଙ୍ଗଳ ସେଇ ଝଡ଼—ହିମଶୀତଳ ହସ୍ତରେ ମୃତ୍ୟୁର ତାଳିକା ବୁଲାଇ ଦିଏ; ଗଛଲତାକୁ କରେ ଝାଡ଼ି; ପତ୍ରପାତ ପରେ ରୁଷିଆ ଦିଶେ ଏକ ଅଗ୍ନିଧବଳ ଶ୍ମଶାନ ପରି । ପାହାଡ଼ ଉପରେ ନୂଆ ପାହାଡ଼ ଉଠେ; ଜମି ଉପରେ ବରଫର ଢୁଙ୍କା, ଦରଜା ଉପରେ ଲଗା ହୁଏ ନୂଆ ଦରଜା । ଏଇ ଝଡ଼ ପୁଣି ମଣିଷର ମେରୁଦଣ୍ଡକୁ ଶକ୍ତ କରେ; ସଙ୍କଳ୍ପକୁ ଶାଣିତ କରେ; ବିକଟ ମୃତ୍ୟୁ ମଧ୍ୟରେ ଶୁଣାଏ ଜୀବନର ଜୟ ସଙ୍ଗୀତ; ମହାନିଦ୍ରାରେ ଜାଗରଣ; ଦାରିଦ୍ର୍ୟ ମଧ୍ୟରେ ପ୍ରାଚୁର୍ଯ୍ୟ, ପ୍ରକୃତିରେ ଅଦ୍ଭୁତ ।

ଏ ଜାତି ଏବେ ମଣିଷଜାତିର ଅଗ୍ରଯାତ୍ରୀ; ଆକାଶକୁ ମାପୁଛି ସେ, ଗ୍ରହ ଗ୍ରହାନ୍ତରର ପରିଧି କଳନା କରୁଛି । ବିଶ୍ୱର ଯେ କୌଣସି ଐଶ୍ୱର୍ଯ୍ୟ-ଶାଳୀ ଜାତି ସଙ୍ଗେ ଟକ୍କର ପକାଉଛି । ଦରିଦ୍ର, ପତିତ, ଚଣ୍ଡାଳ—ସମସ୍ତଙ୍କୁ ଦେଉଛି ମଣିଷପଣର ସ୍ୱୀକୃତି ।

ଉତ୍କଳର ଜଣେ ଉତ୍କୃଷ୍ଟ ମଣିଷର ମାପ କାଠି—ଜାରଯୁଗରୁ ଏ ପର୍ଯ୍ୟନ୍ତ ରୁଷିଆକୁ ସେ ନିରେଖି ଦେଖିଛନ୍ତି; ଏ ସଂଗ୍ରାମଶୀଳ ଜାତିର ସୃଷ୍ଟି ରହିଲା କେଉଁଠି ? ସେ ସୃଷ୍ଟି ଦେଖି ପାରିଛନ୍ତି । ଧର୍ମ ନାମରେ ଯେପରି ଦଙ୍ଗା, ପୁରୋହିତ, ଦେଶ ନାମରେ ସେହିପରି ଦଳ, ନେତା । କେତେବେଳେ କାହା ଉପରେ ଚଢ଼କ ପଡ଼ିବ, କିଏ ଜାଣେ ? ଜୀବନ ତ ସଦା ଆଖିଆଗରେ ଝୁଲୁଛି । ରୁଷବାସୀ ଭଲ ଖାଉଛି, ଭଲ ପିନ୍ଧୁଛି, ଭଲରେ ଅଛି—କିନ୍ତୁ ତାର ସୃଷ୍ଟିଶୀଳ ମନ ଉପବାସୀ । ଊନବିଂଶ ଶତାବ୍ଦୀର ସଂଗ୍ରାମ ଯୁଗରେ ଯେଉଁ 'ସୃଷ୍ଟି' ଥିଲା ଆଜି ତାହା ନାହିଁ ।

ବୋରିସ୍ ପାଷ୍ଟର୍ନାକ୍—ନିଜ ଜୀବନର ଅନୁଭୂତିସବୁ ବାଢ଼ିଛନ୍ତି କବିତାରେ, ଉପନ୍ୟାସରେ । ସେ ନିଜେହିଁ ଡକ୍ଟର ଜିଭାଗୋ । ଲୌହଯବନିକା ଭିତରେ ସେ ଘୋର ମାନସିକ ଯନ୍ତ୍ରଣା ଭୋଗ କରିଛନ୍ତି । ଦଳରେ ରହି ହାତ ଟେକିବେ ନାହିଁ—ଚିରନ୍ତନ ମନୁଷ୍ୟର ଉନ୍ମୁକ୍ତ ପ୍ରାଣର ବାଣୀ ଗାଇବେ । ପ୍ରାଣକୁ ମୁକ୍ତ ରଖିବା ଲାଗି ଜୀବନସାରା କଠୋର ସଂଗ୍ରାମ ସେ କରିଛନ୍ତି; କିଏ ଶୁଣୁ ବା ନ ଶୁଣୁ ସେ କୁହାଟ ଛାଡ଼ିଛନ୍ତି; ଉଡ଼ିବାକୁ ଚେଷ୍ଟା କରିଛନ୍ତି ଡେଣା ମେଲି ରୁଷିଆର ତୁଷାରବର୍ଷୀ ଆକାଶରେ । ଡେଣାରେ ତାଙ୍କର ଗୁଳି ବାଜିନାହିଁ, ସାର୍ବଭୌମ ରାଷ୍ଟ୍ରର ବନ୍ଧୁକ ଖସି ପଡ଼ିଛି ନୋବେଲ ଲଜ୍ଜାରେ । କିନ୍ତୁ ପାଦ ଚୁନ୍ଧ ବନ୍ଧା ହୋଇଛି । ଚଞ୍ଚୁ ବାନ୍ଧି ଦିଆହୋଇଛି । ଜିଭାଗୋ ଦଳିତ ମାନବତାର ମୂର୍ତ୍ତ ପ୍ରତୀକ; ଦେଖି ତୃପ୍ତି ଲଭ କଲି ।

## ମେରମେକ୍ ଗୁମ୍ଫା

ଗଡ଼ାଣି ଉଠାଣି ରାସ୍ତା; ପାହାଡ଼ରେ ନିବିଡ଼ ଜଙ୍ଗଲ, ଉପତ୍ୟକାକୁ ଲମ୍ବି ଆସିଛି । ଛୋଟ ଛୋଟ ସହର, କାରଖାନା, କେଉଁଠି ବା ଚାଷଜମି; ପଡ଼ିଆରେ ଗାଈ, ଘୋଡ଼ାପଲ୍ଲ ଚରୁଛନ୍ତି । ପଥିକମାନଙ୍କ ଲାଗି କେଉଁଠି ବା ରେଷ୍ଟୁରେଣ୍ଟ, ହୋଟେଲ୍; ଭଙ୍ଗା ପାହାଡ଼ର ସ୍ତର ପରେ ସ୍ତର, ବିଭିନ୍ନ ପ୍ରସ୍ତରର; ଶକ୍ତ କୋମଳ, ଶ୍ୱେତ ସ୍ୱଚ୍ଛ, ରଙ୍ଗୀନ୍ ଚିତ୍ରିତ । ବହୁ ଅରଣ୍ୟ ଅତିକ୍ରମ କରି ଆମେ ମେରାମେକ୍ ନଦୀ ତୀରରେ ପହଞ୍ଚିଲୁ । କ୍ଷୀଣ ସ୍ରୋତ, ବାଲି ଆଉ ବାଲିଗିରଡ଼ା ଉପରେ ପ୍ରବାହିତ; ଦୁଇ କୂଳର ଗଛ ନଦୀ ଉପରକୁ ନଇଁ ପଡ଼ିଛି । ଏଥିରେ ବନ୍ୟା ହୁଏ, ଶୁଣିଲି, ଭୟଙ୍କର ।

ଓଜାର୍କ ପର୍ବତମାଳା, ଘନ ଅରଣ୍ୟରେ ପରିପୂର୍ଣ୍ଣ । ସ୍ଥାନେ ସ୍ଥାନେ ବୃହତ୍ ଚୂନପଥର ଖଣ୍ଡ ଦିଶୁଛି—ତା ଭିତରର କୌଣସି ଏକ ଉତ୍ସରୁ ବାହାରିଛି ମେରାମେକ୍ ନଦୀ । ଗୁମ୍ଫାଟି ତାର କୀର୍ତ୍ତି ।

ଏଇ ଗୁମ୍ଫା ନିକଟରେ ଗୋଟିଏ ଦୋକାନ; ଯାତ୍ରୀମାନେ ଏହାର ଗରାହକ । ବନ୍ଧୁବାନ୍ଧବଙ୍କୁ ଉପହାର ଦେବାଲାଗି ନାନା ଦ୍ରବ୍ୟ ଏଠି

କରିଥାନ୍ତି । ହଜାରେ ପ୍ରକାର ଜିନିଷ ପ୍ରଦର୍ଶିତ, ଉଦ୍ୟାନ, ଦୋକାନ ପାଖରେ ଗୋଟିଏ ରେଷ୍ଟୁରାଣ୍ଟ, ଗୁମ୍ଫାଟି ଦେଖିବା ଲାଗି 'ମୁଣ୍ଡପିଛା ଦ'ଡଲାର୍ ପଡ଼େ । ଗୁହାର ପରିଚାଳନା ରକ୍ଷଣାବେକ୍ଷଣ, ଉନ୍ନତି ଲାଗି ଏହି ଅର୍ଥ ବ୍ୟୟିତ ହେଉଅଛି । ବର୍ଷକୁ ପ୍ରାୟ ଦୁଇଲକ୍ଷ ଯାତ୍ରୀ ଏଇ ଗୁମ୍ଫା ଦେଖି ଆସନ୍ତି ।

ଆମେରିକାରେ ସବୁ ବଡ଼, ଆମେରିକାନ୍ ମାନେ ଗର୍ବ କରିଥାନ୍ତି । ଇଂରେଜମାନେ କହନ୍ତି—ଆମ ଦେଶ ତ ଗ୍ରେଟ୍, ଏଠି ଅତି ବଡ଼ ଜିନିଷ ଆସିବ କାହୁଁ ? କିନ୍ତୁ ଏହା ଭଲ, ପୃଥିବୀରେ ସବୁଠାରୁ; ଆମେରିକାର ବୃହତ୍ ଗିରିକନ୍ଦର ମଧ୍ୟରେ 'ମେଗ୍‌ମେକ୍' ଗୋଟିଏ—ଏହା ପ୍ରାୟ ଏକ ମାଇଲ ବିସ୍ତୃତ । ଭାରତର ଅଜନ୍ତା, ଏଲୋରା କୃତ୍ରିମ, କିନ୍ତୁ ଏହା ପ୍ରାକୃତିକ । ଏହି କନ୍ଦରର ପ୍ରଥମ ସ୍ତରରେ ପାଞ୍ଚ ହଜାର ଲୋକ ଏକା ବେଳକେ ବସି ପ୍ରାର୍ଥନା କରି ପାରିବେ ।

ପ୍ରକୃତି ଏଠି ବିଶ୍ୱକର୍ମା—ସେ ଗଢ଼ୁଛି, ଗଢ଼ି ଚୂଳୁଛି, ମନକୁ ନ ଆସିଲେ ଭାଙ୍ଗିଦେଉଛି । ଯୁଗ ଯୁଗ ଧରି ଲାଗିଛି ଏଇ ଭଙ୍ଗାଗଢ଼ା । ଏବେ ଯାହା ଅଛି, ତାହା ପ୍ରକୃତିର ଏକ ଯାଦୁବିଦ୍ୟା—ବିଶ୍ୱର ବିସ୍ମୟ । ଲକ୍ଷାଧିକ ବର୍ଷର ପ୍ରାଚୀନ ଏଇ ନଦୀଶଯ୍ୟା, ଗିରିକନ୍ଦର, ଭୂତତ୍ତ୍ୱବିତ୍‌ମାନେ କହିଥାନ୍ତି । ଏହାର ସୁଦୀର୍ଘ ଇତିହାସ ମଧ୍ୟରେ କେତେବେଳେ ଏହା ହୋଇଛି ଲୋହିତ ଭାରତୀୟଙ୍କ ଠାକୁର ମନ୍ଦିର, ନୃତ୍ୟଶାଳା; କେତେ-ବେଳେ ସେମାନଙ୍କୁ ତଡ଼ିଦେଇ କନ୍ଦରର ରାଜା ହୋଇଛନ୍ତି ଡକାଇତ । ଲୁଣ୍ଠିତ ଦ୍ରବ୍ୟରେ ଭର୍ତ୍ତି ହୋଇ ରହିଛି ଏଇ କନ୍ଦର, ଅବଳାମାନଙ୍କ ବେଦନ ଧ୍ୱନିରେ ମୁଖରିତ । ଡକାଇତଙ୍କ ମଧ୍ୟରେ ଜେସେ ଜେମ୍‌ସ୍ ସୁପ୍ରସିଦ୍ଧ—ଯେପରି ବଳଶାଳୀ ସେହିପରି ବୁଦ୍ଧିମାନ । ଗୁହାର ଆରମ୍ଭରେ ତାର ମୂର୍ତ୍ତି ରଖାଯାଇଛି, ଶ୍ମଶ୍ରୁମଣ୍ଡିତ ମୁଖ, ଜଣେ ମହର୍ଷି ପରି ଚେହେରା । କେତେ ହତ୍ୟା, ନାରୀଧର୍ଷଣ ଯେ ସେ କରିଛି ତାର ସୀମା ନାହିଁ । ଏବେ ସେସବୁ ଘଟଣା ଡିଟେକ୍‌ଟିଭ୍ ଉପନ୍ୟାସରେ ପରିଣତ ହୋଇଅଛି । ଇଂଲଣ୍ଡର ରବିନ୍‌ହୁଡ଼୍ ପରି ଜେମ୍‌ସ୍ ହୋଇଛି ଏକ କାହାଣୀ ବୀର, ଦେଶର ଶକ୍ତିମତ୍ତା ଓ ସୁକୌଶଳର ପ୍ରତୀକ । ଗୋଟିଏ ମାଲଗାଡ଼ି ଲୁଣ୍ଠନ

ଅଭିଯୋଗରେ ତାଙ୍କୁ ଧରିବା ଚେଷ୍ଟା ହୋଇଥିଲା, ଏହି କନ୍ଦରଟି ସୈନ୍ୟମାନଙ୍କ ଦ୍ୱାରା ଅବରୁଦ୍ଧ ହେଲା । ଜେମ୍ସ୍‌କୁ କନ୍ଦରର ଗୁପ୍ତପଥ ସବୁ ଜଣାଥିଲା । ସେ ସଙ୍ଗୀମାନଙ୍କୁ ନେଇ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା । ତେଣୁ ଶେଷ ଦୃଶ୍ୟ ନାଟକୀୟ ରୋମାଞ୍ଚରେ ପରିପୂର୍ଣ୍ଣ । କାହାରି ମନରୁ ଲିଭୁନାହିଁ; ତାଇ ବଂଶଧରମାନେ ଏବେ ବ୍ୟାଙ୍କ୍ ଡକାୟତି, ଟ୍ରେନ୍ ଡକାୟତି କରି ଟେଲିଭିଜନର ପ୍ରଧାନ ଆକର୍ଷଣ ହୋଇଛନ୍ତି ।

ଡକେଇତମାନଙ୍କ ବିତାଡ଼ନ ପରେ ଏହା ବାରୁଦ ଗୃହ, ଅସ୍ତ୍ରାଗାର ଓ ସୈନ୍ୟଗୃହଭିତ୍ତି ହୋଇଥିଲା । ଏବେ କେବଳ ଯାତ୍ରୀମାନଙ୍କର ଦର୍ଶନୀୟ ସ୍ଥଳ ହୋଇଅଛି ।

ଗୁହାଟି ଜଳପୂର୍ଣ୍ଣ ଥିଲା; ସେଇ ଜଳରୁ କିଛି ଖାଲି କରି ନୌକାରେ ଏହାର ଆବିଷ୍କାର ପ୍ରଚେଷ୍ଟା ହୋଇଥିଲା । ଏବେ ଗୁହା ମଧ୍ୟରେ ଗତି କଲାବେଳେ ପ୍ରପାତ ପାତର ଶବ୍ଦ ଶୁଣାଯାଏ, କିନ୍ତୁ ଜଳ-ସ୍ରୋତ ଦିଶେନାହିଁ । ଗୁହା ପଥର ଦୁଇ ପାର୍ଶ୍ୱ ସ୍ୱଚ୍ଛ ଜଳରେ ପୂର୍ଣ୍ଣ । ବହୁ ଗର୍ତ୍ତମୟ, ବନ୍ଧୁର ଗୁହା ଛାତର ଛାୟା ଜଳରେ ପ୍ରତିବିମ୍ବିତ । ଗୁହାର ଉଚ୍ଚତାକୁ ପ୍ରତିବିମ୍ବିତ କରି ଜଳ ଗଭୀର ଥିବାପରି ଜଣାପଡ଼େ । ପ୍ରକୃତରେ ଏଇ କ୍ଷୁଦ୍ର ଖାଲଗୁଡ଼ିକ ଅଗଭୀର ।

ଏଠି ଶ୍ୱାସ ରୁଦ୍ଧ ହୁଏନାହିଁ । କେଉଁଆଡ଼ୁ ପବନ ବହିଆସେ—ଶୀତଳ, ମଧୁର; ଦେବତାଙ୍କ ନିଃଶ୍ୱାସ ପରି ।

ଭଲ୍ଲୁକ ଗୁମ୍ଫା, ମଧୁଚନ୍ଦ୍ର; ଲାଭନଦୀ, ଭୂତର ସ୍ନାନକୁଣ୍ଡ, ସ୍ୱର୍ଗର ପ୍ରବେଶ ଦ୍ୱାର, ଅରଣ୍ୟ ଗୃହ, ଅଙ୍ଗୁର ଲତା, ନାଚ ମନ୍ଦିର, ପାତାଳର ବୃକ୍ଷଲତା କୁଞ୍ଜ, ନଦୀର ମୁକୁର, ତୁଷାର ସ୍ରୋତ, ପାତାଳ ନଦୀ ପ୍ରଭୃତି କନ୍ଦରର ବହୁ ସ୍ତର ଓ କ୍ଷୁଦ୍ର ଗୁମ୍ଫା ଗର୍ତ୍ତକୁ ବିଭିନ୍ନ ନାମରେ ନାମିତ କରାଯାଇଅଛି ।

ଏହି କନ୍ଦର ଶୀତାତାପ ନିୟନ୍ତ୍ରିତ ଗୃହ ପରି । ବର୍ଷସାରା ଏହାର ଉତ୍ତାପ ଷାଠିଏ ଡିଗ୍ରୀ—ଗ୍ରୀଷ୍ମକାଳରେ ଏହା ବଢ଼େନାହିଁ କିମ୍ବା ଶୀତ-କାଳରେ କମିଯାଏ ନାହିଁ ।

ଏହି ଗହ୍ୱର ଅତି ପ୍ରଶସ୍ତ ଓ ଉଚ୍ଚ; ପ୍ରସ୍ତର କାନ୍ଥ ଓ ଛାତ ଘନ । ଶକ୍ତ ପ୍ରସ୍ତରରେ ନିର୍ମିତ ହୋଇଥିବାରୁ ଏହା ଧସିଯିବାର ସମ୍ଭାବନା ନାହିଁ ବୋଲି ଭୂତତ୍ତ୍ୱବିତ୍‌ମାନେ କହନ୍ତି । ଆଟମ୍‌ବୋମାର କବଳରୁ ତ୍ରାହି ପାଇବା ପାଇଁ ଏହା ଏକ ରକ୍ଷାମନ୍ଦିର ରୂପେ ବ୍ୟବହାର କରାଯାଇପାରେ; ବୈଜ୍ଞାନିକମାନଙ୍କର ମତ ।

ଝରଣାର ଜଳ ଛାତରୁ ବିନ୍ଦୁ ବିନ୍ଦୁ ଝରୁଛି—ଧୀର ପାଣି ପଥର କାଟେ । ଛାତର ଷ୍ଟେଲ୍‌ମାଇଟ୍‌, ଚୂନପଥର ଓ ନାନା ଧାତୁ ତରଳାଇ ଏହା ଗୁହାମଧ୍ୟରେ ବିଚିତ୍ର ସୃଷ୍ଟି କରୁଛି । କେଉଁଠି କାଉଁରିଆ କାଠି ବା ଗୋଛା ଗୋଛା ବରଷିଅ ପରି ଲମ୍ବିଛି ଛାତ ତଳକୁ—କେଉଁଠି ବା ଉଇହୁଙ୍କା ପରି ତଳୁ ଉଠିଆସି ହୋଇଯାଉଛି । ଖନିଜ ଯୋଗୁଁ ସେ ସବୁ ରକ୍ତ, ପୀତ, ନୀଳ, ବାଇଗଣି ପ୍ରଭୃତି ନାନା ବର୍ଣ୍ଣ ଧାରଣ କରିଛି । ନାନା ବର୍ଣ୍ଣର ଆଲୋକମାଳା ଏହାକୁ ଦେଇଛି ଏକ ସ୍ୱପ୍ନପୁରୀର ଆଭା । ନିର୍ଝରର ବିଚିତ୍ର ଭାସ୍କର୍ଯ୍ୟ, କଳାସୃଷ୍ଟି । କେଉଁଠି ଅଙ୍ଗୁର ଗୁଚ୍ଛ, କେଉଁଠି ମୁକ୍ତାମାଳା, କେଉଁଠି ବା ମଣିଶିଳାର ଉପଳ; କନ୍ଦରଟି ପୁଷ୍ପିତ, ଫଳିତ ହୋଇଛି ବହୁ ବର୍ଣ୍ଣରେ । କେଉଁଠି ଶାଖାପତ୍ରହୀନ ବୃକ୍ଷ ଗଣ୍ଡି ପରି, କେଉଁଠି ଲାଭା ସ୍ରୋତରେ ମୃତ ଏକ ଅରଣ୍ୟ ପରି, କେଉଁଠି ମଣିମାଣିକ୍ୟର ଏକ ବିପଣି ପରି ଆଲୋକରେ ଝଲମଲ । ବହୁ ଆଶା, ଆକାଙ୍‌କ୍ଷା, କବିର ବିଚିତ୍ର ସ୍ୱପ୍ନ, ଶିଳ୍ପୀର ଅବଚେତନ ମନର କଳ୍ପନା ସତେ ବା ରୂପାୟିତ ହୋଇଛି ।

ଅନନ୍ତଯୁଗର କାବ୍ୟ ଛନ୍ଦ, ଅନନ୍ତ କାଳର ନୃତ୍ୟ ସତେ ବା ଫସିଲ୍ ହୋଇଯାଇଛି । ସତେ ବା କାଳ ଅଟକି ଯାଇଛି ! ଅସ୍ଥିରର ଏକ ସ୍ଥିର ଝଲକ, ଅସ୍ଥାୟୀର ଏକ ସ୍ଥାୟୀ ଶାନ୍ତ ରୂପ ଏଠି ଗଢ଼ା ହୋଇଛି ପରା, ମନ୍ଦର କଳ୍ପ ନିର୍ମିତ ଭାବରେ । ବିଶ୍ୱକର୍ମାଙ୍କର ବିଚିତ୍ର କର୍ମର ସ୍ୱରୂପ ହୃଦୟଙ୍ଗମ କରେଇବା ଲାଗି । ପ୍ରକୃତ ଶିଳ୍ପୀ, ପ୍ରକୃତ ଭାସ୍କର, ପ୍ରକୃତ କବି । କୋଣାର୍କ ତାଜମହଲର ନିର୍ମାତା, ରଘୁବଂଶର ରଚୟିତା ଉତ୍ତରାଧିକାର ରୂପେ ସତେ ବା ପ୍ରକୃତିଠାରୁ ଏହି ପ୍ରତିଭା ଲାଭ କରିଛନ୍ତି ।

ଭାରତ ବର୍ଷ ହୋଇଥିଲେ ଏଠି ପାହାଡ ଘୂଡା ମହାଦେବ ବା କୌଣସି ଠାକୁରାଣୀ ବିରାଜିତା ହୋଇଥାନ୍ତେ । ଭକ୍ତମାନେ ପ୍ରକୃତିର ଏଇ ବୈଚିତ୍ର୍ୟକୁ ଭଗବାନଙ୍କ ମହିମା ବୋଲି କୀର୍ତ୍ତନ କରୁଥାନ୍ତେ । ଏହା ମଧ୍ୟରେ କୌଣସି ଜଟାଧାରୀ ସନ୍ନ୍ୟାସୀ ତପସ୍ୟା କରୁଥାନ୍ତେ । ଏଠି ଗଢ଼ା ହୋଇଥାନ୍ତା ଏକ ମଠ ବା ମନ୍ଦିର । ଏ ଦେଶରେ ଏହା ପ୍ରକୃତିର ବିଚିତ୍ର ଲୀଳା ରୂପେ ପ୍ରକଟିତ ।

## ଚିଡ଼ିଆଖାନା

କୃତ୍ରିମ ପାହାଡ଼, ଜଳାଶୟ, ତୃଣ ପ୍ରାନ୍ତର, ଫୁଲବାଗ, ନାନା ପୁଷ୍ପର ଉଦ୍ୟାନ, ବନସ୍ପତି—ଚତୁର୍ଦ୍ଦିଗକୁ ଦୃଷ୍ଟିକ୍ଷେପ କଲେ ଏହା ହିଁ ଦିଶେ ।

ହସ୍ତୀ ଦୁର୍ଲଭ, ତେଣୁ ବଡ଼ ଆକର୍ଷଣ । ଏଇ 'ଜୁ' ଜୀବଜନ୍ତୁଙ୍କର ସଂଗ୍ରହ ମାତ୍ର ନୁହେଁ; ସେମାନେ ଅଳସ ଜୀବନ ଯାପନ କରନ୍ତି ନାହିଁ, କେବଳ ନର ଚକ୍ଷୁର ଉପଭୋଗ ଲାଗି । ସେମାନଙ୍କୁ କର୍ମଠ ଓ କ୍ରୀଡ଼ାନ୍ୱିତ କରାଯାଇଛି । କେଉଁ ଦିନ ବ୍ୟାଘ୍ର, ଭଲ୍ଲୁକ, କେଉଁଦିନ କୁକୁର, କେଉଁଦିନ ଅଶ୍ୱ ବା ହସ୍ତୀର କ୍ରୀଡ଼ା ପ୍ରଦର୍ଶିତ ହୁଏ । ସର୍କସର ସଂଯୋଗ 'ଜୁ'କୁ ଅଧିକ ଆକର୍ଷଣୀୟ କରିଅଛି । ଟିକଟ କରି ଦର୍ଶକ ମଣ୍ଡପରେ ବସିଲି । ରଙ୍ଗମଞ୍ଚରେ ପାଞ୍ଚୋଟି ହସ୍ତୀ ପରସ୍ପରର ଲାଙ୍ଗୁଳକୁ ଥୋଡପାଡରେ ଧରି ଚକ୍ରାକାରରେ ଦୌଡ଼ିଲେ, ଭଦ୍ରବ୍ୟକ୍ତିଙ୍କ ପରି ଗୋଟିଏ ଗୋଟିଏ ଟୁଲରେ ବସିଲେ, ବିବିଧ ନୃତ୍ୟ ଦେଖାଇଲେ । ହସ୍ତୀ ଖେଳ ସବୁ ଜଣେ ଭାରତୀୟ ଶିକ୍ଷା ଦେଇଛନ୍ତି; ଦୁଇଜଣ ଆମେରିକାନ୍ ହସ୍ତୀକୁ ଟ୍ରେନିଂ ଦେବା, ଖୁଆଇବା ଆଦି କାର୍ଯ୍ୟ ତାଠାରୁ ଶିକ୍ଷା କରୁଛନ୍ତି ।

ହସ୍ତୀ ଖେଳ ପରେ 'ଜୁ' ଦେଖିବା ଲାଗି ପିଲଙ୍କ ଖେଳଣା ଗାଡ଼ିରେ ବସିଲୁ । ଆଗକୁ ଲେ ସରୁ ଲୁହା ରାସ୍ତା ଉପରେ ଚାଲୁଛି ଏଇ ରେଲଗାଡ଼ି—ଶବ୍ଦକୁ ଅନୁକରଣ କରି ଗୀତା, ମୀରା, ନିକ ସମସ୍ତଙ୍କୁ 'ଚୁ-ଚୁ ଟ୍ରେନ' କହନ୍ତି । ଏଥିରେ ପଚିଶ ଷାଠିଏ ଜଣ ଯାତ୍ରୀ—ବାଳକ, ବାଳିକା

ଓ ସେମାନଙ୍କ ଅଭଗ୍ରବକ ଅଭଗ୍ରବକା । ଡ୍ରାଇଭର ଷାଠିଏ ବର୍ଷର ବୁଢ଼ା, ଗାର୍ଡ୍ ସାହେବ ପନ୍ଦର ବର୍ଷର ଟୋକା; ଦୁଇଟି ଡବା ମାତ୍ର, ଉଡ଼େଲ ଚେଲରେ ଗ୍ଲେ । 'ଜୁ'ରେ ତିନିଗୋଟି ଷ୍ଟେସନ ଅଛି । ଷ୍ଟେସନରେ ଓହ୍ଲାଇ ସେ ଅଞ୍ଚଳର ପଶୁପକ୍ଷୀ ଦେଖି ପୁଣି ଗାଡ଼ିରେ ଚଢ଼ିବାକୁ ହୁଏ । ପ୍ରତି ପନ୍ଦର ମିନିଟରେ ଗାଡ଼ି ଆସେ, ବାଟରେ ଦୁଇଟି ଟନେଲ ଅତିକ୍ରମ କରେ ।

ଗାଡ଼ିର ଉପରଟି ଖୋଲା; ଖରା ବା ବର୍ଷା ହେଲେ କନା ଘୁଞ୍ଚ ଦିଆଯାଏ । ଆଜି ଖରା, ଗୁଜୁଗୁଜିଆ ପାଗ । ପିଲାମାନଙ୍କୁ କଷ୍ଟ ହେଉଛି । ବେଶୀ ନ ବୁଲି ଫେରି ଆସିଲୁ । ଦେଖିଲୁ ତିନିଗୋଟି ଭାଲୁ—ଗୋଟିଏ ଶୋଇଛି ଝରଣା କୂଳରେ, ଆଉ ଗୋଟିଏ ଅନ୍ୟମନସ୍କଭାବେ ବସିଛି, ତୃତୀୟଟି ଆମ ଆଡ଼େ ଚାହିଁ ରହିଛି । ପାଞ୍ଚୋଟି ବାଇସନ୍ ଚରୁଛନ୍ତି । ପେଙ୍ଗୁଇନ ଓ ଫ୍ଲେମିଙ୍ଗୋମାନେ ବୁଲୁଛନ୍ତି ।

ଚୂ ଚୂ ଗାଡ଼ିରୁ ଓହ୍ଲାଇବା ମାତ୍ରେ ବେଲୁନବାଲା 'ଗୁଡ୍‌ମର୍ଣ୍ଣିଂ' କଲା । ଗୀତା, ମୀରା, ନିଜ ବେଲୁନ୍ କିଣିଲେ । ତାପରେ ଆମ କାରରେ ବସୁ ବସୁ ଗୋଟିଏ ନିଗ୍ରୋ ପିଲା ଦଉଡ଼ି ଦଉଡ଼ି ଆମ ପାଖେ ପହଞ୍ଚିଲା—କଣ ?

'ଆପଣମାନେ ହସ୍ତୀ ଖେଳ ଦେଖି ସାରି ଏ ଖେଳଣା ମଟର ଗାଡ଼ିଟି ବାଉଳାରେ ଛାଡ଼ି ଆସିଥିଲେ । ମୁଁ ପାଇଲି, ନେଇ ଆସିଲି ।'

"ପିଲାଟିକି ଧନ୍ୟବାଦ ଦେଲୁ, ମନେ ମନେ ଆଶୀର୍ବାଦ କଲୁ, ତାର ସଚ୍ଚୋଟପଣ ଦେଖି । ସେ ଚଢ଼ିଆଖାନା ଦେଖି ଯାଇନାହିଁ; ଆମକୁ ଗାଡ଼ିଟି ଦେବା ଲାଗି ଚୋରଣରେ ଛିଡ଼ା ହୋଇଛି । ତାକୁ ଏତେ ଦୁଃଖ ଦେଇଥିବାରୁ ଆମେ ଦୁଃଖିତ ହେଲୁ; କିନ୍ତୁ ତାର କର୍ତ୍ତବ୍ୟ ନିଷ୍ଠା, କଷ୍ଟ ସହିଷ୍ଣୁତା ଦେଖି ଆଶ୍ଚର୍ଯ୍ୟ ହେଲୁ । ଆମ ଓଡ଼ିଶାରେ ଗୋଟିଏ ଉକ୍ତି ପ୍ରଚଳିତ, ଜଣକର ହଜିଲା ଜିନିଷକୁ ଆଉମାନେ ଯେତେବେଳେ ଖୋଜନ୍ତି, ଖୋଜନ୍ତି କେବଳ ନିଜ ପାଇଁ, ମାଲିକକୁ ତା ଜିନିଷ ଫେରାଇ ଦେବା ଉଦ୍ଦେଶ୍ୟରେ ନୁହେଁ; ଉକ୍ତିଟି ହେଉଛି—

ଜଗ ଜଗ ନାଶ
ଯେ ପାଇବ ତାଶ ।

ଘରେ ହଜାର ହଜାର ଟଙ୍କାର ଖେଳଣା ଅଛି । ଏଇଟି ହଜି ଥିଲେ ଇଗ ବା ଉଦାସ ମନରେ ଟିକିଏ ହେଲେ କଷ୍ଟ ହୋଇ ନଥାନ୍ତା । ପିଲା ତ ଏମିତି ହଜାନ୍ତି, ଭାଙ୍ଗନ୍ତି । ପୁଣି ନୂଆ ଖେଳଣା କିଣା ହୋଇ ଆସେ, ବଜାର ସଉଦାବେଳେ ପିଲାଙ୍କ ପସନ୍ଦ ଅନୁସାରେ । କିନ୍ତୁ ହଜିଲା ଜିନିଷ ପାଇବାରେ ଗୋଟାଏ ସ୍ୱତନ୍ତ୍ର ଆନନ୍ଦ ଅଛି । ନିକ ମହାଖୁସି, ସେଥିରେ ଅଂଶୀଦାର ଅବଶ୍ୟ ଆମ୍ଭେମାନେ ।

## ପ୍ଲାନେଟୋରିଅମ୍ (୬ । ୭ । ୭୭)

ଆଲୋକର ଝଲକରେ ରାତିର ତାରକିତ ଆକାଶ ଦିଶି ହେଉ-ନାହିଁ, ଗୁରୁତ୍ୱ ବୁଝିବା ଦୂରର କଥା, ଆକାଶର ଅସ୍ତିତ୍ୱ ବି ସ୍ୱୀକାର କରି ହୁଏନାହିଁ । ଆଜି ସେଣ୍ଟଲୁଇସ୍‌ର ପ୍ଲାନେଟୋରିଅମ୍‌ରେ ବସି ମନେ ପଡିଗଲା ଅତୀତର ସେଇ ଅନ୍ଧକାର ଆକାଶ, ସେଥିରେ ସ୍ୱଚ୍ଛ କହ୍ଲାର ପରି ତାରକାବଳୀ । ଏଇ ତାରା ଆଲୁଅରେ ହିଡ଼ବାଡ଼, କଣ୍ଟାଝଣ୍ଟା ନ ମାନି ଟେକା ଗହ୍ୱରରେ ପାଞ୍ଚକୋଶ ମାଡ଼ି ଯାଉଥିଲି—କେତେ ତୋଫା ତେଜ, ଦପ୍ ଦପ୍ କରୁଥିଲେ—ମନେ ହେଉଥିଲା—ଆକାଶ କଥା କହିବ— କି କଥା ?

କୁଆଁ ତାରା ଏକାନ୍ତ ଆତ୍ମୀୟ ପରି ଦିଶୁଥିଲା । ସପ୍ତର୍ଷିଙ୍କ ପ୍ରତି ଜାତ ହେଉଥିଲା ଭକ୍ତି; ସତ୍କର୍ମ କଲେ ନକ୍ଷତ୍ର ହୁଅନ୍ତି, ଧ୍ରୁବଙ୍କୁ ଦେଖି ବିଶ୍ୱାସ ହେଉଥିଲା—ଏ ଯେତେ ତାରା, ସବୁ ଦିନେ ପୃଥିବୀର ମଣିଷ ଥିଲେ, ମହତ୍ କର୍ମ କରି ତାରକା ହୋଇଛନ୍ତି । ଏଥି ମଧ୍ୟରେ ମଙ୍ଗଳ, ବୁଧ, କେତୁ, ରାହୁ ପ୍ରଭୃତି ଗ୍ରହ ଅଛନ୍ତି—ସେମାନଙ୍କ ସ୍ଥିତି ଓ ଗତି ଉପରେ ମଣିଷର ଭାଗ୍ୟ ନିର୍ଭର କରେ—ମଣିଷ ଧନୀ, ଭାଗ୍ୟବନ୍ତ ହୁଏ, ଦରିଦ୍ର ବା ରୁଗ୍‌ଣ ହୁଏ । ଗ୍ରହଗତ ରିଷ୍ଟ ଖଣ୍ଡନ ଲାଗି ଆମ ଗୃହରେ ଶାନ୍ତିହୋମ ହେଉଥିଲା ।

ଆଜି ନକ୍ଷତ୍ର ଓ ମୋ ମଧ୍ୟରେ ରହିଛନ୍ତି ବଦ୍ୟୁତ୍‌ଚାଳିତ ସବୁ—ଗାଥା ଅବଧାନଙ୍କ ଜଳ ଅଗରେ ଯେସବୁ ଥିଲେ ତାଙ୍କୁ ଡାକୁଛନ୍ତି ବୈଜ୍ଞାନିକମାନେ । ପ୍ଲାନେଟୋରିଅମ୍‌ର ବନ୍ଦ ଘରେ ରାତି ହୋଇଛି, ଛାତରେ ଅନ୍ଧକାର—ରାତିର ଆକାଶ, 'ମୋଭ୍' ଯନ୍ତ୍ରରେ ଫୁଟା ଯାଉଛି ତାରା—ବଭିନ୍ନ ତିଥିର ଚନ୍ଦ୍ର । ଜଣେ ବୈଜ୍ଞାନିକ ବୁଝାଉଛନ୍ତି ଗ୍ରହ ନକ୍ଷତ୍ରଙ୍କ ସମ୍ପର୍କରେ ପ୍ରଚଳିତ କମ୍ବଦନ୍ତୀ, ବଭିନ୍ନ ତଥ୍ୟ—ଚନ୍ଦ୍ରାଲୋକକୁ ରକେଟ୍ ପଠାଇ ଯେଉଁ ଜ୍ଞାନ ଅର୍ଜନ କରାଯାଇଛି—ଚନ୍ଦ୍ରର ଆଗ୍ନେୟଗିରି, ତାର ଉଚ୍ଚତା, ମୁଖ ଗହ୍ୱରରୁ କପରି ଆଲୋକ ନିର୍ଗତ ହୁଏ—ଗିରି କନ୍ଦରର ପ୍ରସାର, ଗଭୀରତା, ରୂପ ଓ ରଙ୍ଗ—ଚନ୍ଦ୍ରର ମୃତ୍ତିକା ମନୁଷ୍ୟର ଘର ସନ୍ଧିବାକୁ ସମର୍ଥ କି ନୁହେଁ, ଚନ୍ଦ୍ରର ଆଉପାଖେ କଣ ଅଛି; ଗ୍ରହ ବିଜୟ ପରେ ମଣିଷ ଜୀବନରେ କି ବୈପ୍ଳବିକ ପରିବର୍ତ୍ତନ ଘଟିବ ଇତ୍ୟାଦି ।

ମେଷ, ବୃଷ, ମିଥୁନ, କର୍କଟ ପ୍ରଭୃତିର ପୌରାଣିକ ରେଖା ଓ ରଙ୍ଗ ମଧ୍ୟରେ ବୈଜ୍ଞାନିକ ତଥ୍ୟ ଉପସ୍ଥାପନ, ସଙ୍ଗୀତ ଓ ଆଳାପ, ବ୍ୟଙ୍ଗ ଓ ହାସ୍ୟରସର ଅବତାରଣା କରାଯାଇଛି, ନାଟ୍ୟ ରୀତିରେ । ନଗରର ମୋଭ୍, ସର୍କସ୍, ଥିଏଟର ପରି ପ୍ଲାନେଟୋରିଅମ୍ ଏକ ଶିକ୍ଷାପ୍ରଦ ବିନୋଦନ ହୋଇଛି । ଗ୍ରହ ନକ୍ଷତ୍ରର ଘୂର୍ଣ୍ଣନ—ସତେ ବା ବୁଲୁଛି ଏକ ନାଗର ଦୋଳା—ଏଇ ବିଶ୍ୱ—ତା ସଙ୍ଗେ ବୁଲୁଛି ମୁଁ, ସବୁବେଳେ ବୁଲୁଥିଲେ ବି ଯାହା ଜାଣିପାରେ ନାହିଁ ।

## ବାଣ ଓ ସ୍ୱାଧୀନତା

୧୭୭୬ ଖ୍ରୀଷ୍ଟାବ୍ଦରେ ଯୁକ୍ତରାଷ୍ଟ୍ର ସ୍ୱାଧୀନ ହୋଇଥିଲା । ୧୯୬୭, ୪ ତାରିଖ ଜୁଲାଇ, ଆଜି ସ୍ୱାଧୀନତା ଦିବସ—ଛୁଟି । ସାଧାରଣ ରାସ୍ତାରେ ଦୌଡ଼ଧାପଡ଼ ଟିକିଏ ଉଣା ପଡ଼ିଛି । ସ୍ୱାଧୀନତା ଦିବସରେ ସୈନ୍ୟମାନଙ୍କ ପରେଡ୍ ନାହିଁ, ପତାକା ଉତ୍ତୋଳନ ନାହିଁ, ବକ୍ତୃତାର ଝଡ଼ ନାହିଁ—ଖାଲି ଦଉଡ଼ଧାପଡ଼, ପାନ ଭୋଜନ, ହସଖୁସି । ଅତି ପାନ, ଭୋଜନରେ, ଅସତର୍କତାରେ ମୃତ୍ୟୁ, ବିକଟ, ଭୟଙ୍କର, କଠୋର ପୁଲିସ୍ ଶାସନ,

ଅତ୍ୟୁତ୍ତମ ସରଣୀ ସତ୍ତ୍ୱେ । ଏକ୍ସ ମୃତ୍ୟୁ କ୍ଷି ଆଜିର ବଡ଼ ଉଲ୍ଲେଖଯୋଗ୍ୟ ଘଟଣା ।

ଆଜ ମିସିସିପି ନଦୀରେ ବାଣ ମହୋତ୍ସବ—ଜେଫର୍‌ସନ୍ ମୃତ୍ୟୁ-ତୋରଣ ସାମ୍ନାରେ । ଘରୁ ଖଣ୍ଡିଏ ସତରଞ୍ଜି ବୋହି ନେଇଥିଲି; ନଦୀ କୂଳକୁ ଟିକିଏ ଗୁଡ଼ ବସିଲି । କେତେ ସାହେବ ସାହେବାଣୀ, ନିଗ୍ରୋ ନିଗ୍ରୋଣୀ ହାଲୁକା ଚୌକି, ସତରଞ୍ଜି ବା ଖବର କାଗଜ ଧରି ଆସିଛନ୍ତି । କିଏ ବୁଲଇ ବୁଲଇ ଆଇସ୍‌କ୍ରିମ୍ ଖାଉଛନ୍ତି ବା ବିଭିନ୍ନ ପାନୀୟ ପିଉଛନ୍ତି । ହସଖୁସି ଓ ଗହଳ ଚହଳ ମଧ୍ୟରେ ଯୌବନର ଉଦଗ୍ର ରୂପ ଫୁଟି ଉଠୁଥାଏ । ସତେ ଯେପରି ଅଭାବ, ଶଙ୍କା, ରୋଗବ୍ୟାଧି ନାହିଁ ସେମାନଙ୍କର, ନାହିଁ କିଛି ଜୀବନର ଜଟିଳ ସମସ୍ୟା; ସେମାନଙ୍କ ହସଖୁସି ମେଳାପୀ ଭାବ ବେଶ୍ ଭଲଲାଗେ । କିନ୍ତୁ ଏଇ ନିଗ୍ରୋ ? ଗୋରାମାନଙ୍କ ସଙ୍ଗେ ମିଶି ମିଶିପାର ନାହାନ୍ତି । କୃଷ୍ଣପକ୍ଷର ରାତି ପରି ସେଇ ଚେହେରାକୁ ଗମ୍ଭୀରତର କରୁଛି ଦୁଶ୍ଚିନ୍ତା ।

ସାହେବାଣୀ ବୁଢ଼ୀଟିଏ ଧରି ବୁଲୁଛି—ଯଷ୍ଟି—"ପ୍ରସ୍ଥାନ ବନ୍ଦର ଗତେରବ ଲମ୍ବନାର୍ଥୀ ।" ବୁଢ଼ାଟିଏ ବଙ୍କୁଚି ବେଲୁନ୍ । ତଳଲଗା ଗବ ଚଉକୀରେ ପିଲଟିକୁ ବସାଇ ଯୁବତୀଟିଏ ଠେଲି ଠେଲି ନେଉଛି—ଉଦ୍ଭାସ ଶ୍ୱେତ-ପଦ୍ମମୁଖ, ପିଲଟିର ଆଖି ସତେ ସିଙ୍ଗିହୋଇ ଯାଉଛି—ସ୍ୱପ୍ନ, ଶାନ୍ତ ନିଦ୍ରା ଏକ ହସହସ ମୁଖର, ବାରମ୍ବାର ବେଦନରେ ଅକଳୁଷିତ ସେଇ ହାସ୍ୟ ନିଦ୍ରାରେ ବି ନିଭିଯାଇ ନାହିଁ ।

ବୃଣଟା ହେଲିକୋପ୍‌ଟର ଓ ଦୁଇଟା ଜେଟ୍ ମିସିସିପି ଉପରେ ଉଡ଼ିବାର କୌଶଳ ଦେଖାଉଛନ୍ତି । ସାଢ଼େ ଆଠଟାରୁ କିଛି ବେଶୀ; ସୂର୍ଯ୍ୟ ବହୁତଳ ବଶିଷ୍ଟ ସୌଧ ଆଡ଼ୁଆଳରେ ଅସ୍ତ ହେଲେ, ଏ ବୃକ୍ଷ, ସେ ସୌଧ ରଙ୍ଗୀନ୍ କରି । ବ୍ୟୋମଯାନରୁ କିଛି ନାଲ୍ ଗୁଣ୍ଡ ଉଡ଼ାଇ ଦିଆଗଲା, ଆକାଶକୁ ଫଗୁଳ କରି । ଜଣେ ଆକାଶଛତା ସୈନ୍ୟ ଡେଇଁଲା—ଚଢ଼ିଲା ଫୁଟ୍‌ପାଥ୍ ଉପରେ, ଆଉ ଜଣେ ମଟର ଗୁଡ଼ିକରେ, ତୃତୀୟ ଜଣକ ପଡ଼ିଲା ଗୋଟିଏ ଗଛ ଉପରେ, ସିଲ୍‌କ ଛତାଟି ଚିରିଗଲା, ସେ ଆସ୍ତେ

ହେଲ୍ଲାଇଲା । ଆଉ ଜଣେ ? ଆହା, ହତଭାଗ୍ୟ ! ତା ନଚାନି ଫୁଟିଲା ନାହିଁ, ଯେଉଁ ଛଳେ ପଡ଼ ଗୁଣ୍ଡା ହୋଇଗଲା । ଲୋକ ସମୁଦ୍ର; ଯେ ଲୋକଙ୍କୁ କେଉଁଆଡ଼େ ସଙ୍ଗଧ ଲୋକେ ଉଠାଇନେଲେ । ତା ଘର ମେଣ୍ଟ-ଲୁଇସରେ, ସ୍ୱାଧୀନତା ଦିବସରେ ଏଇ ଟିକେ କୃତିତ୍ୱ ଦେଖାଇଲେ ସାଇପଡ଼ଶାଙ୍କ ଆଗେ ଟେକ ଦେଖାଇ ହେବ—ସହରବାସୀଙ୍କ ଆଗରେ ମର୍ଯ୍ୟାଦା ବଢ଼ିବ । ଆହା, ବିଚରା !

ରାତି ନ'ଟା ବେଳକୁ ବାଣସବୁ; ଆରମ୍ଭରେ ଏକାବେଳକେ ଗୁଡ଼ାଏ ରକେଟ୍ ଉଠିଲା; ତାପରେ ଗୋଟିଗୋଟିକିଆ ଆକାଶମଣ୍ଡଳୀ ହୀରା-ମାଳା-ମୋତି-ମାଣିକ ବୃଷ୍ଟି କରୁଥାଏ—କେତେବେଳେ ମୟୂର ପୁଚ୍ଛ ପରି ରଙ୍ଗୀନ୍ ଅନେକ ମେଳହୋଇ ଯାଉଥାଏ । ଏକା ପ୍ରକାରର ବାଣ । ଗୋଟାଏ ଗଛବାଣ ନାହିଁ କି ବମ୍ବାଜି ନାହିଁ, ଯାହା ମେଳଣ ଯାହାକୁ କମ୍ପାଇଦିଏ, ପାଞ୍ଚକୋଶ ଦୁଲୁକାଇ ଦିଏ । କାଠଚକ୍ର ନାହିଁ, ଗୋଟାଏ ଭୁମ୍ବ ନାହିଁ; ଖଣ୍ଡେ ହାବେଲି ମଧ୍ୟ ନାହିଁ—ଯହିଁରେ ଅଗ୍ନିସଂଯୋଗ କରୁ କରୁ ବାଣସବୁଳ ପଣ କରେ ନିଜର ଅତି ପ୍ରିୟକୁ—"ମୋ ବଡ଼ପୁତ୍ର ପଛକେ ପଡ଼ ମରୁ, ଏ ବାଣଖଣ୍ଡିକ ଉଠୁ ।" ଚନ୍ଦ୍ରଖଣ୍ଡି ଭଲ ଭାଙ୍ଗିଲେ ଆନନ୍ଦରେ ଭୁମ୍ବକୁ କୁଣ୍ଢେଇ ପକେଇବା, ଗାମୁଛା ଉଡ଼େଇବା ଭାବ କାହିଁ ? ସେ ଖିଆଲ, ସେ ଜିଦ୍, ସେ ଆନନ୍ଦ କାହିଁ ? ଏସବୁ ଛୁଆଙ୍କ ଖେଳବାଣ, ଢୋଲ ବେପାରେ, ଦିଆଲରେ ଢେର୍ ଫୁଟେ । ଗୋଟାଏ ଗୋଟାଏ ବାଭ-ଘରେ ସ୍ୱାଠାରୁ ଢେର୍ ବାଣ ହୁଏ । କେଉଁଠି ବାଣରେ କାରୁକଳା କାହିଁ ଏଥିରେ ?

ନାଃ, କିଛି ଦେଖିବାର ନାହିଁ । ଯହିଁ ଦଶଟା ବାଜିଯିବ, ଚୋଫାନ ଛୁଟିବ ମଟର ଗାଡ଼ିର—ଏ ଜଙ୍ଗଲରୁ ବାହାରିବା ବଡ଼ କଷ୍ଟ । ଯେଉଁଠି ସବୁବେଳେ ଉପରର ନାନା ରଙ୍ଗୀନ୍ ଫୁଆରା ଉଠୁଛି, ସେଠି ଏ ସାମାନ୍ୟ ବାଣସବୁ ଗୋଟାଏ ଉତ୍ସବ ପରି ଜଣାଯିବ କାହିଁକି ? ଅଜସ୍ର ବର୍ଣ୍ଣର ଅସଂଖ୍ୟ ଆଲୋକମାଳା, ସ୍ରୋତର ଗୋଟାଏ ପ୍ରଖର ଗତି ମଧ୍ୟରେ ବହୁ ଆବର୍ତ୍ତ ଅତିକ୍ରମ କରି ଆମେ ଧାଇଁଲୁ, 'ସିଟ୍ ବେଲ୍ଟ' ଅଣ୍ଟାରେ ବାନ୍ଧି ।

## ଉଦ୍ଭିଦ ଉଦ୍ୟାନ (୯ । ୭ । ୬୭)

କଇଁଫୁଲ—ଲଲେ ଲଲ୍, ଫିକା ନୀଳ, ଗାଢ଼ ନୀଳ, ହଳଦିଆ—ଏ ଫୁଲ ନା ଦର୍ପଣ ? ଯା' ଭିତରେ ତ ସବୁ ଦିଶୁଚି—ଗୋଟା ପିଲାଦିନ, ଖେଳମେଳ ଖଡ଼ଧୂଳିର । ହରିତାଳିକା ବା ଖୁଦୁରୁକୁଣୀରେ କଦଳୀ ଭେଳା ବା ହାଣ୍ଡିଭେଳାରେ ଚଢ଼ି ପୋଖରୀରୁ କଇଁଫୁଲ ତୋଳା—କାଦୁଅ ଆବର୍ଜନା, ରୋଗ ଶୋକ ମଧ୍ୟରେ ଏଇ ପୁଷ୍କରିଣୀ ମଧ୍ୟରେ ଫୁଟେ ଟିକିଏ ମନମୁକୁଳା ହସ—ସଜୀବ ପ୍ରଫୁଲ୍ଲତାର ପ୍ରତୀକ ।

ଉଦ୍ଭିଦ ଉଦ୍ୟାନ ମଧ୍ୟରେ ଆଜି ହଜିଲା ଧନ ଖୋଜି ପାଇବାର ଆନନ୍ଦ ଉପଭୋଗ କଲି । ପିଲାଦିନର କେତେ ଚକା ଚନ୍ଦ୍ର ଉଦିଆ ମୁଖ ଫୁଟି ଉଠିଲା; ଝରିକୁ ଚନ୍ଦ୍ରକା କରି ସତେ । ସେଇ ପରିବେଶର କେତେ ହଜିଲା ସୌରଭ ଆଜି ମନକୁ ମହକାଇ ଦେଲା । ସେ ସ୍ରୋତରୁ ନିଜକୁ ଟାଣି ଓଟାରି ପହଞ୍ଚିଲି ଗୋଟିଏ କାଚଗୃହରେ ।

କାଚ ଗୃହଟି ବିରାଟ । ରୌଦ୍ର, ତୋଫାନ ବା ତୁଷାରର ଉପଦ୍ରବ ନାହିଁ । ଗ୍ରୀଷ୍ମମଣ୍ଡଳର ବୃକ୍ଷଲତାମାନେ ଏଠି ସୁଖରେ ଲାଳିତ ହେଉଛନ୍ତି—ବଡ଼ ବଡ଼ ଫ୍ୟାନ୍ ବୁଲୁଛି, ଉଦ୍ୟାନରେ ଶୀତଳ ପବନର ପ୍ରବାହ । ଏଇ ଯେ ମଧୁମାଳତୀ; କଣିଅର; କାଠରଙ୍ଗଣି; ଝୁଲଣି ମନ୍ଦାର; ଗୋଡ଼-ବାଣ; ମାଣିକ୍ ଗୁଚ୍ଛ ଗେଣ୍ଡୁ ! ମେହେଗାନି, ବାଉଁଶ, ନଡ଼ିଆ, ତାଳ, ଆମ୍ବ, ତେନ୍ତୁଳି, ବରଗଛ, ଖଜୁରି, ଡିମିରି, ଆଖୁ, ସପୁରି, ଅମୃତଭଣ୍ଡା, କଦଳୀ, କମଳାଲେମ୍ବୁ, ଗଞ୍ଜେଇ, ସପ୍ତପର୍ଣ୍ଣୀ, କଫି, କୁଇନାଇନ କେତେ ପ୍ରକାର ଅର୍କିଡ୍—କେତେ ପ୍ରକାର ମାଳନଘା, ଗଙ୍ଗା ଓ ଆମେଜନ୍ ଉପତ୍ୟକାର ଗଛ—କେତେ ପ୍ରକାର ଫୁଲ । ଗଛଲତା, ଫୁଲ, ଜଳସ୍ରୋତ, ପ୍ରପାତ, ଫୁଆରା, ବିଚିତ୍ର ରଙ୍ଗର କେତେ ବୃକ୍ଷ, ଦେଶୀ ବିଦେଶୀ—ଚିହ୍ନା ଅଚିହ୍ନା—ଅଚିହ୍ନା ବୋଲି ତାର ଆକର୍ଷଣ ଅଳ୍ପ ନୁହେଁ । ଦୂରତମ ଅଜ୍ଞାତର ଅରଣ୍ୟମୟ ଅଦମତାର ନିଶା ମନରେ ଲଗାଇଦିଏ, ଯୋଗାଇଦିଏ ଏକ ସବୁଜ ଗନ୍ଧ, ମୋହମୟ ବିଶ୍ରାମର ।

ଉଦ୍‌ଭିଦର ଅମ୍ଳା ଚିକିତ୍ସନ୍ତି ଏମାନେ । ବହୁବିଧ ପ୍ରକାର ଲାଳନା, ଗବେଷଣା ଚାଲିଛି । ବଗିଚାକୁ ଲାଗି ଗୋଟିଏ ଦୋକାନ—ଉଦ୍ୟାନ ସାମଗ୍ରୀର ଏକ ପ୍ରଦର୍ଶନୀ ହୋଇଛି । ଉଦ୍ଭିଦର ରୋପଣ, ଲାଳନ ଫୁଲ ଫଳ, ଚାଷ, ପକ୍ଷୀ, ଭ୍ରମର, ପ୍ରଜାପତି, ବୃକ୍ଷଲତାର ଶତ୍ରୁ କୀଟ-ପତଙ୍ଗଙ୍କ ସମ୍ପର୍କରେ ନାନା ତଥ୍ୟ ବଣ୍ଟା ହେଉଅଛି ।

ଢଗଢଗନ୍ତ ଲମ୍ବୀ ଗାଢ଼ ସବୁଜ ତୃଣ ପ୍ରାନ୍ତର—ଓକ୍, ପପଲର୍, ସେକାମୋର୍ ଆଦି ନାନା ବୃକ୍ଷ, କାଣ୍ଟି ବା ଗୋଲାପ, ଜେନିଆ, ପେଟୁନିଆଁର ଉଦ୍ୟାନ—ସୁଆଗ ବସନ୍ତରେ ଝଲମଲ ରୌଦ୍ର—ପ୍ରଶସ୍ତ ପ୍ରଶାନ୍ତ ଶ୍ରୀ ଉପରେ ଗୋଟିଏ ଦୂର ପ୍ରସାରି ଦୃଷ୍ଟି ପକାଇ ଆମେ ବସାକୁ ଫେରିଗଲୁ ।

## ମିସୌରୀରେ ଗ୍ରୀଷ୍ମକାଳ

ମଶାଚକା ନାହିଁ, ଘର୍ମ୍ମୀବାପୁ ନାହିଁ; ଧୂଳିର ଝଡ଼ ନାହିଁ । ନଦୀ ଶୁଖି ନାହିଁ, ଜମି ଫାଟି ନାହିଁ । ଗ୍ରୀଷ୍ମଦାହର ଆଗ୍ନେୟ ରୂପ ଧରି ପଳାଶ ବା କୃଷ୍ଣଚୂଡ଼ା ଫୁଟି ନାହିଁ । ଭାରତୀୟ ଗ୍ରୀଷ୍ମ ସହିତ ଏହାର କିଛି ହେଲେ ସାମଞ୍ଜସ୍ୟ ନାହିଁ । ଉତ୍ତାପର ମାତ୍ରା ୧୦୫ ଡିଗ୍ରୀ ପାର ଉଠିଛି—ଏଥିରେ ଦିନକ ମଧ୍ୟରେ ସେଣ୍ଟଲୁଇସ୍ ସହର ମଧ୍ୟରେ ପନ୍ଦର ଜଣ ମୃତ୍ୟୁ ମୁଖରେ ପଡ଼ିଛନ୍ତି ।

ଶୀତାତପ ନିୟନ୍ତ୍ରିତ ଗୃହରେ ରହନ୍ତି ଏମାନେ, ଶୀତାତପନିୟନ୍ତ୍ରିତ ଗାଡ଼ିରେ ଅଫିସ ଯାନ୍ତି । ଏଇ ଆରାମ, ଉପଭୋଗ ସେମାନଙ୍କୁ ଦୁର୍ବଳ ଓ ଗ୍ରୀଷ୍ମ ଅସହିଷ୍ଣୁ କରିଛି ।

ଭାରତୀୟ ଓ ଆମେରିକାର ଗ୍ରୀଷ୍ମ ମଧ୍ୟରେ ବହୁ ତାରତମ୍ୟ ଥିଲେ ବି ସଙ୍ଗୀତ ରକ୍ଷା କରିଛି ଗୋଟିଏ ସ୍ୱର; ସେ ସ୍ୱର ଚିତ୍କାରର । ସେଠି ସେ କହେ 'ଚଷା ଭାଇ; ଧାନ ବୁଣ୍'; ଏଠି କହେ—'ଗହମ ବୁଣ ।' ସେଠି ହଡ଼ା ଲଙ୍ଗୁଡ଼ ମୋଡ଼ ମୋଡ଼ ହିଡ଼ମୟ ବିଲରେ ଚଷା ଝାଳ ନାଳ ହେଉଥିଲାବେଳେ ଏଠି ଟ୍ରାକଟରରେ ବୁଲୁଛି, ଉଡ଼ାଜାହାଜ ଗହମ ବୁଣୁଛି ।

# ବେସ୍‌ବଲ୍ ଖେଳ

'ବାଲସ୍ତାବତ୍ କ୍ରୀଡ଼ାସକ୍ତଃ' କଥାଟା ମିଥ୍ୟାରେ ପରିଣତ ହେଲଣି । ତରୁଣ ତରୁଣୀ, ବୃଦ୍ଧ ବୃଦ୍ଧା ନିଜର ବ୍ୟବସାୟ ଛାଡ଼ି ଟିକେଟ କରି ଖେଳ ଦେଖିବାକୁ ଧାଇଁଛନ୍ତି । ବଜାର ଜାମ୍ । ରଥଯାତ୍ରାର ଭିଡ଼ ଲାଗିଯାଇଛି । ମୁଁ କିନ୍ତୁ ଏକୁଟିଆ ବାଁଆରି ହୋଇ ରହିଗଲି । ଖେଳ ଦେଖିବାକୁ ଦୌଡ଼େ ନାହିଁ, ଖେଳ ସମ୍ବାଦ ପଢ଼େ ନାହିଁ । ସିନେମା ନକ୍ଷତ୍ରଙ୍କ ନାମ ପରି ଲୋକେ ଖେଳାଳୀଙ୍କ ନାମ କୁହାକୋହି ହେଉଛନ୍ତି, କିନ୍ତୁ ସେଥିରୁ ଗୋଟିଏ ହେଲେ ମୁଁ ମନେ ରଖିନାହିଁ । ଫୁଟବଲ, ବ୍ୟାଡ୍‌ମିଣ୍ଟନ ଜୀବନରେ ଥରେ ଅଧେ ଖେଳିଛି । କିନ୍ତୁ କ୍ରିକେଟ୍, ହକି ଦେଖିବାର ଧୈର୍ଯ୍ୟ ମୋର ନାହିଁ । ଡୁ ଡୁ, ବୋହୂଚୋରି, ଲୁଚକାଳି, ଡାଳିମାକୁଡ଼ି, ଡାବଲପୁଅରେ ପିଲା ଦିନଟା ଗଲା । ଇସ୍କୁଲରେ ପଢ଼ିଲାବେଳେ ଅବଧାନ ଗୋଟିଏ କସରତ୍‌ରେ ବିଶେଷଜ୍ଞ କରାଇଥିଲେ—ବସ ଉଠ୍, ଅବଶ୍ୟ କାନ ଧରେଇ; କେବଳ ଗୋଟିଏ କସରତ୍‌ର ଅଭ୍ୟାସ ରହିଛି—ବୁଲିବା; ବୁଲିବା କୁଆଡ଼େ ସବୁଠାରୁ ବଡ଼ କସରତ୍, ମୋ ପରି ଅଧମ ଜଣେ କହିଥିବ, ଖେଳାଳୀର ଉକ୍ତି ଏ ନୁହେ ।

ବେସ୍‌ବଲ ଆମେରିକାର ମୁଖ୍ୟ, ଲୋକପ୍ରିୟ । ମୁଁ ସେ ବିଷୟରେ କିଛି ଜାଣେ ନାହିଁ, ଜାଣିବା ଆଗ୍ରହ ମଧ୍ୟ ନାହିଁ । ସ୍ୱାଧୀନ ଭାବେ ଆମେରିକା ଆସିଥିଲେ ଦୁଇ ଡଲର୍ ଟିକେଟ କରି କେବେ ହେଲେ ବେସବଲ ଦେଖି ଯାଇ ନଥାନ୍ତି । କଥା କଣ କି ଦୁଇ ତିନି ବର୍ଷ ହେଲା ଏଇ ଖେଳରେ ଉଦୟର ସକ୍ ହୋଇଛି । ସେ ଗାଡ଼ି ଡ୍ରାଇଭ କରୁ କରୁ ବାଟସାରା ଏଇ ଖେଳ ବିଷୟରେ ମୋତେ ବୁଝାଇ ଲାଗିଛି । କିନ୍ତୁ ହିରଣାକ୍ଷ କର୍ଣ୍ଣରେ ହରିନାମ ପରି କୁଆଡ଼େ ଉଭେଇ ଯାଉଛି । ସୁବୋଧ ବାଳକ ପରି କେବଳ ହିଁଟିଏ ମାରୁଛି । ତା ବୁଝେଇବା ଆଗ୍ରହଟା ଭାଙ୍ଗିବ କାହିଁକି ?

ଆମ କାର୍ ତିନି ତାଲା ଉପରକୁ ଚକ୍ରାକାରେ ବୁଲି ବୁଲି ଉଠିଲା । ପାର୍କିଂ କରିବାକୁ ଲାଗିଲା ଏକ ଡଲର । ଏହିପରି ତିନିଗୋଟି

ସୌଧ ଏଠି ନିର୍ମିତ ହୋଇଛି । ଗୋଟିକରେ ପାଞ୍ଚ ହଜାର ମାତ୍ର ଗାଡ଼ି ରହି ପାରିବ ।

ଷ୍ଟେଡ଼ିଅମ୍‌ରେ ଗୋଲେଇରେ ପଚିଶ ହଜାର ସିଟ୍, ଗୋଟିଏ ହେଲେ ଖାଲି ନାହିଁ । ମଝିରେ ଘାସ ପଡ଼ିଆ—ସ୍ଥାନେ ସ୍ଥାନେ ଝୁରା ମାଟି ପଡ଼ିଛି । ତା'ର ଉପରେ ଛିଡ଼ା ହୋଇ ଖେଳାଳି ବ୍ୟାଟରେ ବଲ ମାରୁଛି । ସେଣ୍ଟଲୁଇସ୍ ଓ ଡେଟ୍‌ରାଏଟ୍ ଦୁଇଟି ଦଳ ମଧ୍ୟରେ ଖେଳ ହେଉଛି । ଦର୍ଶକ ଦର୍ଶିକାଙ୍କ ମଧ୍ୟରୁ ଅଧିକାଂଶ ସେଣ୍ଟଲୁଇସ୍‌ର କାର୍ଡିନାଲ ଦଳ ସପକ୍ଷରେ, ସ୍ୱାଭାବିକ । କାରଣ ସେମାନେ ସ୍ଥାନୀୟ ଅଧିବାସୀ । ପ୍ରକୃତରେ କାର୍ଡିନେଲ ଭଲ, ଅନ୍ୟ ପକ୍ଷକୁ ସାତୋଟି ଗୋଲ ଦେଇ ପରାସ୍ତ କଲା । ଭିଡ଼ ତାଳି ଦେଉଥାଏ—ଓଃ ପଚିଶ ହଜାର ଲୋକଙ୍କ ତାଳି, ଆନନ୍ଦରବ; ତଥାପି କି ସଂଯତ, ଶୃଙ୍ଖଳିତ ଏମାନେ !

ଟୋକାଟୋକୀ, ଯୁବକଯୁବତୀ, ବୁଢ଼ାବୁଢ଼ୀ—ଯାଆସ, ପାନ ଭୋଜନ, ଆଳାପଚାରୀ, ଚିନାବାଦାମ, ସୋଡ଼ା, ମଦ—ବିଚିତ୍ର ବକ୍ଷୁତ ଡାକ; ଅପରାହ୍ନର ଖରା, ଗ୍ରୀଷ୍ମ, ଗୁଳ୍ମଗୁଳ, ବିଦ୍ୟୁତସ୍ଫୁରଣ—ତା ମଧ୍ୟରେ ଚାଲିଥାଏ ଖେଳ—ବିଦ୍ୟୁତ୍ ଅକ୍ଷରରେ ଲେଖି ହୋଇ ଯାଉଥାଏ ଖେଳର ଫଳାଫଳ ।

ଜନତାର ଆନନ୍ଦ ଲୋକରେ ଘଣ୍ଟା ଘଣ୍ଟା ଦୁଇ 'ଘଣ୍ଟା କଟିଗଲା, ଏତେ ଲୋକଙ୍କ ଆନନ୍ଦର ଯେ ଆଧାର, ମୁଁ ନ ବୁଝିଲେ ବି ସେ ଖେଳକୁ ଧନ୍ୟ । ଜଞ୍ଜାଳଗ୍ରସ୍ତ ଜନତାକୁ ଅଦ୍ଭୁତ ମୋହମୟ ଜୁଆରରେ ନିମଜ୍ଜିତ କରିପାରିଛି, ରୋମାଞ୍ଚକର ନାଟକର ଉତ୍କୃଷ୍ଟ ଦୃଶ୍ୟ ପରି ପଚିଶ ହଜାର ଲୋକଙ୍କୁ ଏକମନ ଏକପ୍ରାଣ କରିପାରିଛି—ସେ ଧନ୍ୟ । ଏଇ ଜୁଆରିଆ ସମୁଦ୍ରକୁ ମୁଁ ଦେଖୁଥାଏ; ଖିଆଲର, ଖେଳର । କାରଣ ଯାହା କିଛି ଧାଉଁ ଝରୁଛି ତା'ର ମୂଳରେ ତ ଏଇ ! ମନରେ ତା'ର ଖେଳ ତ ଲାଗିଛି ନିତି ନିତି, ବେସ୍‌ବଲ୍ ବା ଫୁଟବଲ୍ ହେଉ ।

# ଟ୍ରକ୍ ଡ୍ରାଇଭରଙ୍କ କୁଟୀରରେ

ଆଲ୍ ଲ ପ୍ଲାଣ୍ଟ—ଦେଖିବାକୁ ଶ୍ୟାମ ମୂର୍ତ୍ତି; ବାହାଟାମାନ ମୁଦ୍‌ଗର ପରି, ପେଟଟା ଛ' ଗଜଣିଆ ଓଳଅ । ବାଘ ମୁହଁ ପରି ମୁହଁ—କିନ୍ତୁ ସେଥିରେ ଟିକିଏ ହେଲେ ହିଂସ୍ରତା ନାହିଁ । ସିଧା, ସରଳ, ଗୋଲ ଗୋଲ ଆଖିଡୋଳା । କାହା ବିରୁଦ୍ଧରେ ତାଙ୍କର ଅଭିଯୋଗ ନାହିଁ, ମନରେ କିଛି ଅସନ୍ତୋଷ ନାହିଁ; ଖଟନ୍ତି, ଖାନ୍ତି ।

'ଡେଟପୋର୍ଟ' ଗୋଟିଏ ଗ୍ରେଟ ସହର—ତାର କିଛି ଦୂରରେ ପଲ୍ଲୀର ବାତାବରଣ, କିନ୍ତୁ ଆମ କଳନାର ଗ୍ରାମ୍ୟ ଗୃହ ନାହିଁ, ପଛରେ ଅରଣ୍ୟ, ଆଗରେ ପାର୍କ, ଉଦ୍ୟାନ; ମଝିରେ ଟାଇଲ୍ ଘର । ମି. ପ୍ଲାଣ୍ଟ ପରମ ଆଦରରେ ଆମକୁ ପାର୍କକୁ ଡାକି ନେଲେ, ଚଉକୀରେ ବସାଇ ବରଫ ବାକ୍ସରୁ କାଢ଼ି ଗୋଟିଏ ଗୋଟିଏ କୋକାକୋଲା ଧରାଇ ଦେଲେ । ପାର୍କରେ ବନ୍ଧା ହୋଇଛି ଗୋଟିଏ ଦୋଳି, ବସିପଡ଼ିଲେ ଗୀତା, ମିତ୍ର ଓ ନନ୍ଦ । ଆସିଲେ ପ୍ଲାଣ୍ଟଙ୍କର ସ୍ତ୍ରୀ, ପୁଅ, ବୋହୂ, ଝିଅ ଓ ନାତିସବୁ । ପରିଚୟ ପରେ ପରେ ପ୍ଲାଣ୍ଟ ତାଙ୍କ ଘର ବୁଲାଇ ଦେଖାଇଲେ ।

ଭାବିଥିଲି—ଡ୍ରାଇଭର୍ ତ, ଗରିବ ଘର ହୋଇଥିବ । ଗ୍ରେଟ ଘରଟିରେ କୌଣସି ମତେ ମୁଣ୍ଡ ଗୁଞ୍ଜି ରହୁଥିବେ । କିନ୍ତୁ ଭିତରେ ପଶି ଦେଖିଲାବେଳକୁ ପାଞ୍ଚ ଛ' ବଖରା ଘର, ଚଟାଣରେ କାର୍ପେଟ୍, କାନ୍ଥରେ ଦର୍ପଣ. ପ୍ଲାଷ୍ଟିକ୍ ଲତା ଓ ଫୁଲର ଝୁଲି ପଡ଼ୁଛି । ବହୁ ଫଟୋ ଓ ଛବି, କାଚ ଆଲମାରୀରେ କେତେକ ଉପନ୍ୟାସ । ଘରର ଏ କଣରେ ରେଡ଼ିଓ; ସେ କଣରେ ଟେଲିଭିଜନ୍; ସୁସଜ୍ଜିତ ରନ୍ଧାଘର, ଟେବୁଲ୍ ଉପରେ ଫୁଲଦାନି, ସୁଶୋଭିତ ଖାଇବା ଘର । ବହଳ ଗଦିପକା ଚୌକି ଓ ଶେଯ । ଗାଧୁଆ କୁଣ୍ଡ, ଟାଓ୍ୱେଲ, ପରଦା, ରେଫ୍ରିଜରେଟର୍, ଗ୍ୟାସ ଚୂଲି, କୁକୁରଘର, କୁକୁଡ଼ାଘର, ଗରାଜ୍, ବଗିଚା ଦେଖି ଚମକି ପଡ଼ିଲି । କାନ୍ଥରେ, ଛାତରେ, ବାଡ଼ରେ ମଇଳା ବୁନ୍ଦାଟିଏ ନାହିଁ । ମିସେସ୍ ପ୍ଲାଣ୍ଟଙ୍କର ସୁପଟୁ ହସ୍ତର କଳାତ୍ମକ ମାଧୁରୀ ସର୍ବତ୍ର ପ୍ରକଟିତ । ଘରଣୀ ନୁହନ୍ତି, ଉଆସର ରାଣୀ ସେ ।

ମି: ପ୍ଲାଣ୍ଟ ପ୍ରତିଦିନ ଉପରବେଳା ପାଞ୍ଚଟାରେ କାମକୁ ଯାଆନ୍ତି, ସକାଳ ଛଅଟାରେ ଫେରନ୍ତି । ରାତିସାରା ଟ୍ରକ୍ ଚଳାନ୍ତି—ଦୋକାନକୁ ଜିନିଷପତ୍ର ବୋହିବା ତାଙ୍କର କାମ । ମଜୁରି ଘଣ୍ଟାକୁ ସାଢ଼େତିନି ଡଲାର୍, କେଉଁଦିନ କିଛି କିଛି ଓଭର୍‌ଟାଇମ୍ ମିଳେ । କାର୍ଯ୍ୟରୁ ଫେରିଲା ପରେ କିଛି କଫି ଓ ଦୁଧ ପିଇ ଦିନ ଦୁଇଟା ପର୍ଯ୍ୟନ୍ତ ଶୋଇପଡ଼ନ୍ତି, ତାପରେ ଲଞ୍ଚ୍—ପେଟପୂରା ଭୋଜନ । କାର୍ଯ୍ୟକୁ ଯିବା ଆଗରୁ ଯତ୍ ସାମାନ୍ୟ ଆହାର ! ନିଦ ଲାଗିବ ବୋଲି ସନ୍ଧ୍ୟାରେ ବିଶେଷ କିଛି ଖାଆନ୍ତି ନାହିଁ ।

ଏଇ ପ୍ଲାଣ୍ଟ ଦୁଇବର୍ଷ ତଳେ ଉଦୟପୁର ଜଣେ ରୋଗୀ ଥିଲେ । ଚିକିତ୍ସା କାଳର ସଖ୍ୟ ଆରୋଗ୍ୟ ଲାଭପରେ ଗାଢ଼ତର ହୋଇଛି । ତାଙ୍କ ଘରକୁ ଯିବାଲାଗି ସେ ବହୁବାର ନିମନ୍ତ୍ରଣ କରିଛନ୍ତି । କିନ୍ତୁ ଡାକ୍ତରଙ୍କୁ ଅବସର କାହିଁ ? ଆଜି ସେ ଅଞ୍ଚଳ ମୋଟର ଦେଖାଇବା ଲାଗି ଉଦୟପୁ ଇଗ ଆସିଛନ୍ତି । ବହୁଦିନ ପରେ ନିମନ୍ତ୍ରଣ ରକ୍ଷିତ ହୋଇଛି ।

ନିଟୋଳ ସ୍ୱାସ୍ଥ୍ୟ—ରୋଗ ପଶିବାକୁ ବାଟ ପାଇଲା କିପରି ? ମୋ ପ୍ରଶ୍ନର ଉତ୍ତରରେ ମି: ପ୍ଲାଣ୍ଟ କହିଲେ—ଟ୍ରକ୍ ଚଲେଇ ଚଲେଇ ସାମ୍ନାରେ ଯାଉଥିବା ଗୋଟିଏ କାର୍ ହଠାତ୍ ଛିଡ଼ା ହୋଇଗଲା । ତାକୁ ବଞ୍ଚାଇବାକୁ ଚେଷ୍ଟାକଲି, କିନ୍ତୁ ସମ୍ଭାଳି ପାରିଲି ନାହିଁ । ବାଁ ପାଖରେ ପାହାଡ଼, ଟ୍ରକ୍ ବାଜିଲା ଗୋଟାଏ ପଥର ମୁଣ୍ଡାରେ, ଇଞ୍ଜିନଟା ଚୂର୍ଣ୍ଣ ହୋଇଗଲା । ମୋ ଦୁର୍ଦ୍ଦଶା ଦେଖି ସେ କାର୍ କୁଆଡ଼େ ଅନ୍ତର୍ହିତ ହୋଇଗଲା । ଲେତଗଲେସମା ସେମିତି କିଏ ହୋଇଥିଲେ ସେଇଠି ନାରପୂଣ ଭଜି ଥାନ୍ତା । କିନ୍ତୁ 'କିନ୍ତୁ ଜାନୁଭଗ୍ନ ହୋଇଣ ହେଡ଼ିଲା ଦୁର୍ଯ୍ୟୋଧନ' ! ପଛରୁ ଆସୁଥିବା ଗୋଟିଏ ଗାଡ଼ି ତାକୁ ସାହାଯ୍ୟ କଲା । ପ୍ଲାଣ୍ଟ୍ ସେଣ୍ଟଲୁଇସ୍‌ର ଗୋଟିଏ ଡାକ୍ତରଖାନାରେ ଭର୍ତ୍ତିହେଲେ, ଉଦୟପୁର ଚିକିତ୍ସାରେ ରହିଲେ; ଭଲ ହେଲେ, କିନ୍ତୁ ସାମାନ୍ୟ ଖୋଣ୍ଟା ରହିଗଲେ ।

ମି. ପ୍ଲାଣ୍ଟ ଘର ଭିତରେ ବୁଲାଇ ଆମକୁ ବାଗିଚାକୁ ନେଲେ । ବାଡ଼ ପଛରୁ ଜଙ୍ଗଲ ପାହାଡ଼ ଉପରକୁ ଉଠି ଯାଇଛି । ଛୋଟ ଘରେ କୁକୁରଟିଏ—ଡାକିଲା ମାତ୍ରେ ଉଠି ଆସିଲା; ଆମକୁ ଶୁଙ୍ଘିଲା—କଟାକ୍ଷରେ ପ୍ରଶ୍ନ ଚିହ୍ନ—ତମେ ସବୁ କିଏ ? କୁଆଡ଼େ ଆସିଛ ?

ପ୍ଲାଣ୍ଟ କହିଲେ—ୟାକୁ ଏମିତି ଦେଖୁଛ କ'ଣ ? ଗୁଣ ବହୁତ । ଏ ରାବଟ୍‌ଙ୍କ ଠିକଣା ଜାଣେ; ବଣର କୋଉ ରାବଟ୍ କେତେବେଳେ କୋଉଠି ରହେ, ତାକୁ ମାଲୁମ୍ । ସେ ରାବଟ୍‌କୁ ଡରଏ ନାହିଁ; ରାବଟ୍ ବି ତାକୁ ଦେଖି ଡର ପଳାନ୍ତି ନାହିଁ । ଛୋଟିଆଟିଏ ତ । କିନ୍ତୁ ସେ ଆସି ମୋତେ ଖବର ଦେଇଦିଏ । ମୁଁ ଯାଇ ମାରେ । ସେ ଥିଲେ ଘରେ ମାଂସର ଅଭାବ ନାହିଁ ।

କଥା ଭାଷା ହେଉଁ ହେଉଁ ପ୍ଲାଣ୍ଟ ଗୋଟିଏ ବନ୍ଧୁକ ବାହାର କଲେ—ଟେବୁଲ୍ ଉପରେ ଗୋଟିଏ ବୋତଲ ରଖି ମୋତେ ପଚାରିଲେ ଲଖ ବାନ୍ଧି ପାରିବେ ? ମୁଣ୍ଡ ହଲାଇଲି । ତାପରେ ସେ କହିଲେ—ମାରନ୍ତୁ ଦେଖି । ମୋ ଜୀବନରେ ଏଇ ପ୍ରଥମ ଗୁଳିମାରି, ଲକ୍ଷ୍ୟ ଭେଦ କରି ପାରିଲି ନାହିଁ । ଉଦୟ ବି ବିଫଳ ହେଲା । କିନ୍ତୁ ପ୍ଲାଣ୍ଟଙ୍କ ଗୁଳିରେ ବୋତଲଟା ଚୂନା ହୋଇଗଲା ।

ତାପରେ ପ୍ଲାଣ୍ଟ ଉଦୟଙ୍କର ଗାଡ଼ି ଡ୍ରାଇଭ କରି ଆମକୁ ଓ୍ବାସିଂଟନ୍ ପାର୍କ ଦେଖାଇ ନେଲେ । ପାହାଡ଼ ପର୍ବତର ଅଗଣିତ ତରଙ୍ଗ ତଳକୁ ତଳକୁ ଲମ୍ବିଛି । ଘନାରଣ୍ୟ, ପକ୍ଷୀ କାକଳୀରେ ମୁଖରିତ । ମଝିରେ ମଝିରେ ଗୋଟିଏ ଘର—ତା ପଛରେ ଘାସ-ଫସଲ, ୟାକୁ ଖାଇଲେ ଗୋରୁଙ୍କ ଦେହର ଚର୍ବି ବୃଦ୍ଧି ହୁଏ । ଗାଡ଼ି ପାହାଡ଼ ଉପରେ ଗଡ଼ିଲା; ତଳେ ନଈ, ନାମ—Big River, ଗଙ୍ଗୁଆ ଠାରୁ ଛୋଟ ନଈଟିଏ । ଆମ ଅଡ଼େ ଯେପରି ଭାଗବୀକୁ ବଡ଼ ନଈ କହନ୍ତି, ଗଞ୍ଜାମରେ ଯେପରି ଛୋଟ ନଈଟିର ନାମ 'ବଡ଼ନଈ' ଏଠି ସେହିପରି । ଏ ଅଞ୍ଚଳକୁ ଏ ବଡ଼; 'ପିମ୍ପୁଡ଼ିକ ମୁତ ପହଁରିଏ ।' 'ବଡ଼ ନଈ' ଦେଖିଥିବା ଆଖିକି ଛୋଟ ଦିଶେ । ବଙ୍କା ଟଙ୍କା ତାର ଗତି, ଗମ୍ଭୀର, ମାଛ ଭର୍ତ୍ତି ।

କୂଳ ଜମିକ ସବୁଜ ରଖିଛି, ଜଙ୍ଗଲକୁ ଦୋଉଛି ଆଶୀର୍ବାଦ ପରି, କେଉଁ ସମବେଦନାଭରା ଦେବତାର ।

କୂଳେ କୂଳେ କେତେ ତମ୍ବୁ ଟଣା ହୋଇଛି, ଛୁଡା ହୋଇଛି ଅସ୍ଥାୟୀ ଘରସବୁ, ମାଡ଼ ଧାଡ଼ ଟ୍ରେଲରରେ ରହୁଛନ୍ତି ଲୋକେ । ପିକନିକ୍ କରିବା ଗୋଟିଏ ବଡ଼ ସଉକ । ପାହାଡ଼ ଉପରକୁ ପୁଣି କାର୍ ଚାଲିଲା—ନଈର ଧାର ଦିଶୁ ନାହିଁ—ପାହାଡ଼ର ବଣ ଦୃଷ୍ଟିରୋଧ କରିଛି । ଏଇଠି ଗୋଟିଏ ଶୋ ଶୋକିଆ ଗଛ, ଏଠି ଚଢ଼ଇଟିଏ ବସା କରିଥିଲା । କି ଚଢ଼େଇ ? ବାଃ କି ସୁନ୍ଦର ବସା ! ଏଇଆ କହୁଁ କହୁଁ ସ୍ତ୍ରୀଲୋକଟିର ଗୋଡ଼ ଖସିଗଲା—ଯାଇ ପଡ଼ିଲା ପାତାଳରେ, ହାଡ଼ ସବୁ ଗୁଣ୍ଡା । ସ୍ୱାମୀ କାନ୍ଦ କାନ୍ଦ ଫେରିଲା । ମି. ପ୍ଲାଣ୍ଟ ସେଇ ଗଛ ଓ ପାହାଡ଼ ଅଡ଼ଡ଼ ଆମକୁ ଦେଖାଇଲେ ଅବଶ୍ୟ, ପକ୍ଷୀର ବସା ଆଉ ନାହିଁ ; କିନ୍ତୁ ସେଇ କରୁଣ କାହାଣୀଟି ଆମ ମନରେ ବସା ବାନ୍ଧି ରହିଗଲା—ଭୁଲି ପାରୁ ନାହିଁ ସେଇ ଦୁର୍ଘଟଣା—ପ୍ରକୃତିର ଆନନ୍ଦ ପଛେ ପଛେ ଘୋରତମ ବିପଦ ବେଦନା ।

ତାପରେ ଗାଡ଼ିରେ ଫେରୁ ଫେରୁ ପ୍ଲାଣ୍ଟ୍ ଜଙ୍ଗଲର ଗୋଟିଏ ଘର ଦେଖାଇ ଦେଲେ; ଗୋଟିଏ ମାତ୍ର ଘର—ବନର ନିର୍ଜନତା ତାକୁ ଏକାନ୍ତ ଏକୁଟିଆ କରି ଦେଇଛି । ବୁଢ଼ୀର ନାଆଁ ଭିକ୍ଟୋରିଆ । ଅବିବାହିତା । ଗୃହବାସ କରି ଚଳେ, ପୁରୁଣାକାଳର ଲଗନ ଆଉ ବଳଦରେ । ଆଧୁନିକତାର ଧାର୍ ଧାରେ ନାହିଁ । ତାଘରେ ରେଡ଼ିଓ, ଟେଲିଭିଜନ ନାହିଁ, ଫୋନ୍, ରେଫ୍ରିଜରେଟର ନାହିଁ । କାଠ ଜାଳି ରୋଷେଇ କରେ, ଆଙ୍ଗୁଠିରେ ଗାଈ ଦୁହେଁ । ଦିନ ରାତି ସବୁବେଳେ କାର୍ଯ୍ୟବ୍ୟସ୍ତ । କିନ୍ତୁ କାହିଁକି ? ତା ଅନ୍ତେ ଏ ସବୁର କି ଅବସ୍ଥା ହେବ ? ବୁଢ଼ୀ କିଛି ଚିନ୍ତା କରେ ନାହିଁ— ଗାଡ଼ି ଚାଲିଛି ତ ଚାଲିଛି । ଯୋଉ ଦିନ ଅଟକି ଯିବ, ଯିବ । ଆମେରିକାର ସେ ଏକ ନିପାତନ, ଅଜ୍ଞାତ ଯୁଗର ପ୍ରତିନିଧି—ତଥାପି ତାକୁ ସମସ୍ତେ ଶ୍ରଦ୍ଧା କରନ୍ତି, କହନ୍ତି ବନର ଦେବୀ ସେ— ସ୍ୱୟଂ ପ୍ରକୃତି ।

ଫେରିବା ପରେ ମି. ପ୍ଲାଣ୍ଟଙ୍କ ଘର ପ୍ରାଙ୍ଗଣର ଓକ୍ କୁଞ୍ଜ ତଳେ ଯେଉଁ ସିମେଣ୍ଟ ଚଉତରାଟି ଅଛି, ସେଠି ଆମର ଲଞ୍ଚ୍ ହେଲା—

କୁକୁଡ଼ା ମାଂସ ଭଜା, ମଟର ଚୁଇଁ ଶିଖା, ଓମ୍ଲେଟ୍ ପରିବା ଶିଖା, ଆଇସକ୍ରିମ୍ । ତାପରେ ବିଦାୟ ନେଲୁ । କହିଲି—ଆପଣ ଦୁଇଜଣ ହିଁ ଡ୍ରାଇଭର; ଜଣେ ଘରେ; ଘରଟି ଗ୍ଟଲେ ନାହିଁ; ତଦ୍ଦ୍ୱଳ, ତାଙ୍କର ନିପୁଣ ବୁଦ୍ଧି ଓ କଠୋର କର୍ମଠତା । ବାହାରେ ଯେତିକି, ଘରେ ସେତିକି ଖଟଣି । ତେଣୁ ସଂସାରର ନୌକା ସୁରୁଖୁରୁରେ ଚାଲିଛି । ଘର ଠିକ୍ ନ ଚାଲିଲେ ଘରର ମଣିଷ ବାହାରମୁହାଁ, ବାଉଳା ହୋଇଯିବ ।

## ମନ୍‌ସାଣ୍ଟୋ

'ବାଣିଜ୍ୟେ ଲକ୍ଷ୍ମୀଙ୍କ ବାସ' ଏକ ଚିରକାଳର କଥା, ଅନୁଭବସିଦ୍ଧ । ଦେଶ ବା ଜାତି ବଡ଼ ହେବା ମୂଳରେ ଅଛି ବ୍ୟବସାୟ । ବ୍ୟବସାୟର ଅଭିବୃଦ୍ଧିରେ ସହର ବଜାର, ବନ୍ଦର ଷ୍ଟେସନ, ରାସ୍ତାଘାଟ, ଯାନବାହନର ଚେହେରା ବଦଳେ । ଆମେରିକା ଏକ ବିଶାଳ ବ୍ୟବସାୟୀ ଦେଶ । ତାର ସମୃଦ୍ଧିର ପୃଷ୍ଠଭୂମିରେ ଅଛି ବିପୁଳ ଶିଳ୍ପବାଣିଜ୍ୟ । ଶିଳ୍ପ ବିପ୍ଳବର ପ୍ରେରଣା ନେଇ ଇଉରୋପୀୟମାନେ ଆମେରିକା ଆସିଥିଲେ । ଏହି ଜନବିରଳ ଦେଶରେ ସେମାନେ ମେଲି ବସିଲେ ନାନା ବ୍ୟବସାୟର ପସରା; ଯାହା କ୍ରମେ ଆନ୍ତର୍ଜାତିକ ସ୍ତରକୁ ଉନ୍ନୀତ ହେଲା । ପୃଥିବୀର ବହୁ ବ୍ୟବସାୟର କଣ୍ଟିକାଠି ଏବେ ଆମେରିକାନ୍‌ମାନେ ଧରି ବସିଛନ୍ତି ।

୧୧ । ୭ । ୭୬ରେ ମନ୍‌ସାଣ୍ଟୋ ଦେଖି ଯାଇଥିଲି । ୧୯୦୧ ରେ ପ୍ରଥମେ ଏହି କାରଖାନା ସେଣ୍ଟ୍‌ଲୁଇସରେ ପ୍ରତିଷ୍ଠିତ ହେଲା । କ୍ୱିନି ନାମକ ଜଣେ ବ୍ୟବସାୟୀ ଏହାର ପ୍ରତିଷ୍ଠାତା । ନିଜ ସ୍ତ୍ରୀଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ସେ ଏହି କାରଖାନାର ନାମ ମନ୍‌ସାଣ୍ଟୋ ରଖିଥିଲେ । ପ୍ରଥମେ ଏହି କାରଖାନା ସାକାରିନ୍ ଉତ୍ପାଦନ କରିଥିଲା । ଚାରି ବର୍ଷ ପରେ ସମସ୍ତ ଋଣ ତୁଳାଇ ଦଶହଜାର ଡଲାର୍ ଲାଭ କରିବାକୁ ସମର୍ଥ ହେଲା ।

ପ୍ରଥମ ମହାଯୁଦ୍ଧବେଳେ ଇଉରୋପରୁ ଆମେରିକାକୁ ଔଷଧ ଆସି ପାରିଲା ନାହିଁ । ସେତେବେଳେ କମ୍ପାନୀକୁ ସୁବର୍ଣ୍ଣ ସୁଯୋଗ ମିଳିଗଲା ।

ଏହା ନାନାବିଧ ଔଷଧ ଉତ୍ପାଦନ କରି ଆମେରିକାରେ ବିକ୍ରି କରିବାକୁ ଲାଗିଲା । କୌଣସି ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ହେଲା ନାହିଁ । ଫଳରେ କମ୍ପାନୀର ବିପୁଳ ଅର୍ଥଲାଭ ହେଲା । ସେହି ପୁଞ୍ଜିକୁ ସେ ନାନାବିଧ ପଦାର୍ଥ ଉତ୍ପାଦନରେ ଖଟାଇଲା । ପ୍ଲାଷ୍ଟିକ୍, ନାଇଲନ୍, ପେଟ୍ରୋଲଜାତ ନାନା ଦ୍ରବ୍ୟ, ପ୍ୟାକ୍ କରିବାର ଡବା ଓ କାଗଜ ପ୍ରଭୃତି ଏକ ହଜାର ପ୍ରକାର ଦ୍ରବ୍ୟ ଏବେ ଏହା ଉତ୍ପାଦନ କରୁଛି । ଛପନ ଜଣ ଲୋକରେ କାରଖାନା ଆରମ୍ଭ ହୋଇଥିଲା । ଏବେ ଏଥିରେ ଛପନ ହଜାର ଲୋକ କାର୍ଯ୍ୟ କରନ୍ତି । ଏହାର ଅଂଶୀଧିକାରୀଙ୍କ ସଂଖ୍ୟା ୯୩ ହଜାର । ପୃଥିବୀର ଅଧିକାଂଶ ସଭ୍ୟ ଦେଶରେ ଏହି କମ୍ପାନୀର ଶାଖା ପ୍ରତିଷ୍ଠିତ । ସର୍ବମୋଟ ଏହାର ଆଠଗୋଟି ଉତ୍ପାଦନ ବିଭାଗ ରହିଅଛି, ନାନା ଦିଗରେ ଗବେଷଣା ପ୍ରସାରଲାଭ କରିଅଛି । ଗବେଷଣା ବ୍ୟବସାୟର ଅଭିବୃଦ୍ଧିରେ ବିଶେଷ ସହାୟକ ହୁଏ ।

ଏହି ଆଠୋଟି ବିଭାଗର କାର୍ଯ୍ୟାବଳୀ ଗାଇଡ୍ ଆମକୁ ମୋଭି ସ୍କ୍ରିନ୍‌ରେ ଦେଖାଇ ଦେଲା । ମିସିସିପି ନଦୀ କୂଳରେ ଏହି ପ୍ରତିଷ୍ଠାନର ବହୁମଣ୍ଡଳବ୍ୟାପୀ କାର୍ଯ୍ୟାଳୟ, ସ୍ୱତନ୍ତ୍ର ପୋଷ୍ଟ ଅଫିସ୍, ଡାକ୍ତରଖାନା, ରେଷ୍ଟୁରାଣ୍ଟ, ସଭାଗୃହ, ଟେଲିଫୋନ୍ ଗୃହ ଦେଖି ବିସ୍ମିତ ହେଲି । ଆତ୍ମପ୍ରତ୍ୟୟ, କର୍ମନିଷ୍ଠା, ସହଯୋଗ, ବ୍ୟବସାୟବୁଦ୍ଧି କି ଅସାଧ୍ୟ ସାଧନ କରି ନ ପାରେ ! ପୃଥିବୀ ଧେନୁର ଦୋଗ୍ଧା ଗୋପାଳ ନନ୍ଦନ—ସେ ଏଇ ଯୁକ୍ତରାଷ୍ଟ୍ର; ପୃଥିବୀରେ ସମୃଦ୍ଧତମ ନ ହେବ କାହିଁକି ?

## ସେଣ୍ଟ ଜନ୍‌ସ୍ ମର୍ସି ହସ୍ପିଟାଲ୍

'Keep lean and fit' — ବିଜ୍ଞାପନ ସର୍ବତ୍ର । କିନ୍ତୁ ସ୍ଥୂଳ ବ୍ୟକ୍ତି ବହୁ । ଚାହିଁବାକୁ ଡର ମାଡ଼େ; କାଳେ ଭାବିବ—ମୋତେ କରୁଣା କରୁଛି ବୋଲି । ଅବଶ୍ୟ କେହି ଜାଣିଶୁଣି ସ୍ଥୂଳ ହୋଇନାହିଁ, ଅଳ୍ପ ଅଳ୍ପ ହେଉଁ ହେଉଁ ହୋଇଯାଇଛି । ପୃଥିବୀର ଭୋଜନଶାଳା ଏଠିକି ଉଠି ଆସିଛି । ନାନା ଦ୍ରବ୍ୟ ରନ୍ଧାବଢ଼ା ହୋଇ ଦୋକାନେ ଦୋକାନେ ଭର୍ତ୍ତି ହୋଇଛି । ପଇସା ତ ଅପର୍ଯ୍ୟାପ୍ତ । ଲୋକେ ଅଳ୍ପ ଅଳ୍ପ ଖାଉଁ ଖାଉଁ

କେତେ ଖାଉଥାନ୍ତି । ପାଣି ତ କେତେବେଳେ ଖାଇ ନାହାନ୍ତି । କିଛି ନ ହେଲେ ଚିନ୍ତା କରନ୍ତି । ଅତି ଭୋଜନ ଏଠି ଗୋଟିଏ ସମସ୍ୟା । ଫଳରେ କେହି ହୃଦ୍‌ରୋଗରେ କେହି ବା ମୂର୍ଚ୍ଛନା ପାଇଁ ମରନ୍ତି । କୁସ୍ତି କସରତ୍ କରନ୍ତି ଅଳ୍ପ, ଖେଳନ୍ତି ଅତି କମ୍ । ବୁଲିବା ଅଭ୍ୟାସ ମଧ୍ୟ ଏଠି ନାହିଁ । ଅତି ଭୋଜନ, କସରତର ଅଭାବ ହିଁ ଏଠି ଯାବତୀୟ ହୃଦ୍‌ରୋଗ, ଉଦର ରୋଗ ଓ ମସ୍ତିଷ୍କରୋଗର କାରଣ ହୋଇଥାଏ ।

ହଠାତ୍ ଦୂରଦେଶୀ କେହି ରୁଗ୍ଣ ହେଲେ ବା ଆକ୍‌ସିଡେଣ୍ଟର ସମ୍ମୁଖୀନ ହେଲେ ତାଙ୍କୁ ଚିକିତ୍ସାଳୟରେ ଭର୍ତ୍ତି କରାଯାଏ । ଆରୋଗ୍ୟଲାଭ ପରେ ତାଠାରୁ ବ୍ୟୟିତ ଅର୍ଥ ଅଦାୟ କରାଯାଏ । ଗୃହର ଅବସ୍ଥା ଭଲ ନ ଥିଲେ ତା ଲାଗି ଚାକିରି ଯୋଗାଡ଼ କରାଯାଏ । ତା ଅର୍ଜନରେ ସେ ଡାକ୍ତରଖାନାର ଋଣ ଶୋଧ କରିବାକୁ ସମର୍ଥ ହୁଏ ।

ଆମେରିକାର ବଡ଼ବଡ଼ ସହରରେ ଗୋଟିଏ ଲେଖାଏଁ ସରକାରୀ ଡାକ୍ତରଖାନା ଅଛି । ଏଠି ବିନା ବ୍ୟୟରେ ଦରିଦ୍ର ରୋଗୀର ଚିକିତ୍ସା କରାଯାଇଥାଏ । ଏହା ବ୍ୟତୀତ ଅନ୍ୟସବୁ ଦାତବ୍ୟ ଚିକିତ୍ସାଳୟ ବୋଲି କିଛି ନାହିଁ, ପ୍ରାୟ ବା ଅଧିକାଂଶ ଡାକ୍ତରଖାନା ଉଦାର ବ୍ୟକ୍ତିମାନଙ୍କ ଦାନରେ ପ୍ରତିଷ୍ଠିତ । ଅଧିକାଂଶ ରୋଗୀ ହେଲ୍‌ଥ ଇନ୍‌ସୁରେନ୍‌ସ କରିଥାନ୍ତି । ରୋଗ ହେବାମାତ୍ରେ ରୋଗୀ ଡାକ୍ତରଖାନାରେ ପ୍ରବେଶ କରେ; କମ୍ପାନୀ ପେମେଣ୍ଟ ଲାଗି ଡାକ୍ତରଖାନାକୁ ଅନୁରୋଧ କରେ; ରୋଗୀ ଆରୋଗ୍ୟଲାଭ କରି ଫେରିବା ପର୍ଯ୍ୟନ୍ତ କମ୍ପାନୀ ଖାଦ୍ୟପେୟ, ଔଷଧ ଓ ଚିକିତ୍ସାର ସମସ୍ତ ବ୍ୟୟ ବହନ କରେ । ସେଭଳି ବନ୍ଦୋବସ୍ତ ନ ହେଲେ କେହି ଡାକ୍ତରଙ୍କୁ ଘରକୁ ଡାକନ୍ତି ନାହିଁ ।

କୌଣସି କୌଣସି ଡାକ୍ତରଖାନା ବ୍ୟବସାୟୀ ଅନୁଷ୍ଠାନ । କେତେକ ଡାକ୍ତରଙ୍କ ପୁଞ୍ଜିରେ ଏହା ଗଠିତ । ଏକ୍‌ସରେରୁ ଆଲର୍ଜିଟେଷ୍ଟ ପର୍ଯ୍ୟନ୍ତ ରୋଗୀର ପରୀକ୍ଷାନିରୀକ୍ଷା ଏଠି ହୋଇଥାଏ । ରକ୍ତଦାନ ଓ ଔଷଧପତ୍ର ଦେବାର ବ୍ୟବସ୍ଥା ଏଠି ନାହିଁ । ରୋଗର ରିପୋର୍ଟ ଓ ପ୍ରେସ୍‌କ୍ରିପସନ୍ ଏଠି ମିଳେ; କେତେକ ଚିକିତ୍ସାଳୟ ଧର୍ମାର୍ଥୀ; ପ୍ରୋଟେଷ୍ଟାଣ୍ଟ,

କାଥୋଲିକ୍ ବା ଜନଙ୍କ ସଂଗଠନ; ସେଣ୍ଟ ଜନ୍‌ସ୍ ସର୍ଜି ହସ୍‌ପିଟାଲ୍ ଗୋଟିଏ କାଥୋଲିକ୍ କୀର୍ତ୍ତି । ଧର୍ମର ମହତ୍ତ୍ୱ ଆଦର୍ଶ ଏଥିରେ ରୂପାୟିତ । ତାର ଅନ୍ଧବିଶ୍ୱାସ ଏବଂ ଅନୁଷ୍ଠାନର ବାଧକ ହୋଇନାହିଁ । ଧର୍ମ ଓ ବିଜ୍ଞାନ ଏଠି କୋଳାକୋଳି ହୋଇଛନ୍ତି । ବିଜ୍ଞାନ ଧର୍ମକୁ ବିଫଳ ବିଶ୍ୱାସର ଆଧାର ବୋଲି ଫିଙ୍ଗି ଦେଇନାହିଁ, ଧର୍ମ ମଧ୍ୟ ଅନ୍ଧ ନୁହେଁ, ତାକୁ କେତେ-କାଂଶରେ ସୁଯୋଗପଯୋଗୀ କରିଯାଇଛି । ଚିକିତ୍ସାଳୟର ଦ୍ୱାରଦେଶରେ ଭର୍ଜିନ୍ ମେରୀଙ୍କର ମୂର୍ତ୍ତି; ସନ୍ତାନବତ୍ସଳା ଜନନୀ, ମୂର୍ତ୍ତିମନ୍ତ କରୁଣା ସେ । ସନ୍ତାନ ମନ୍ଦ ହୋଇପାରନ୍ତି, କିନ୍ତୁ ଜନନୀ କେବେ ମନ୍ଦ ହୋଇପାରେ ନାହିଁ । ପ୍ରକୃତରେ ସମସ୍ତ ଚିକିତ୍ସାଳୟରେ ସ୍ନେହମୟୀ ଜନନୀର ଭାବ ପ୍ରତିଫଳିତ, ଯଦି ବା ନାର୍ସ ଏଠି ଭଗିନୀ (sister) । ଜନନୀ ହେବାର ସୌଭାଗ୍ୟ କାହାର ଘଟିନାହିଁ ବା ଘଟିବ ନାହିଁ । ଯେତେକ ରୋଗୀ—ବୃଦ୍ଧ ବାଳକ, ଯୁବକ ଯୁବତୀ ଏବଂ ଭଗିନୀମାନଙ୍କର ସନ୍ତାନ ରୂପେ ପରିକଳ୍ପିତ । ସେମାନଙ୍କ ସେବା ଶୁଶ୍ରୂଷା, କମ୍ର କୋମଳତା ଓ ବାତ୍ସଲ୍ୟମମତା ସମସ୍ତ ହସ୍‌ପିଟାଲ୍‌କୁ ଏକ ସ୍ୱର୍ଗୀୟ ରଙ୍ଗରେ ଉଜ୍ଜ୍ୱଳ କରିଛି ।

ଏହି ଭଗିନୀମାନଙ୍କର ଏକମାତ୍ର ଉଚ୍ଚାକାଂକ୍ଷା ଲୋକସେବା । ସେମାନଙ୍କ ମନରେ ଅର୍ଥଲିପ୍ସା ନାହିଁ, ଅନ୍ୟ କିଛି କାମନା ଚିତ୍ତକୁ କଳୁଷିତ କରେନାହିଁ । ନାନା ପରୀକ୍ଷା ନିରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେମାନେ ହସ୍‌ପିଟାଲରେ ଯୋଗ ଦିଅନ୍ତି । ମାଳା ତିଳକ, ଗେରୁଆ ବସ୍ତ୍ର ଧାରଣ ନ କଲେ ବି ଏମାନେ ସନ୍ନ୍ୟାସିନୀ । ଶୁଭ୍ରବସ୍ତ୍ରାବଗୁଣ୍ଠିତା, ଚନ୍ଦ୍ରମୁଖୀ ଶରତ୍ ରଜନୀ ପରି ଶାନ୍ତଚିତ୍ତ, ପବିତ୍ରପ୍ରାଣା । କଠୋର ଜୀବନସଂଗ୍ରାମ ବା କୌଣସି ଭାବାବେଗର ଆତିଶଯ୍ୟ ମୁଖକୁ ପଙ୍କିଳ ବା ଆପ୍ଲୁତ କରିନାହିଁ ।

ସେଣ୍ଟଜନ୍ ହସ୍‌ପିଟାଲ ସିଷ୍ଟରମାନଙ୍କ ଦ୍ୱାରା ପରିଚାଳିତ । ସେମାନେ ଏଠି ସର୍ବେସର୍ବା । ଯେତେ ଡିଗ୍ରୀ ହାସଲ୍ କରିଥିଲେ ବି ଡାକ୍ତରମାନେ ସିଷ୍ଟରମାନଙ୍କ ଅଧୀନରେ କାର୍ଯ୍ୟ କରନ୍ତି । କର୍ତ୍ତବ୍ୟ ନିଷ୍ଠାରେ କଠୋର ସେମାନେ, ଚିକିତ୍ସାରେ ଡାକ୍ତରଙ୍କ ସାମାନ୍ୟ ତ୍ରୁଟି ବିଚ୍ୟୁତି କ୍ଷମା କରି ପାରନ୍ତି ନାହିଁ । ଡାକ୍ତରଙ୍କୁ ବାହାର କରିଦେବାର ଅଧିକାର ସେମାନଙ୍କର ଅଛି ।

ଆମେରିକାର ହସ୍ପିଟାଲ୍ ଯାବତୀୟ ଭୋଗଦ୍ରବ୍ୟ ନିଜର ହାତ ପାଆନ୍ତାରେ ସଜାଡ଼ି ରଖିବାରେ ବ୍ୟସ୍ତ; ସିଷ୍ଟରମାନେ ଠିକ୍ ଏହାର ବିପରୀତ । ନିବୃତ୍ତିର ସନ୍ତୋଷ ଯେପରି ସେମାନେ ଉତ୍ଫୁଲ୍ଲ । ସେମାନଙ୍କ ଖାଇବାପିଇବା ଓ ଚଳିବାର ସାମାନ୍ୟ ଖର୍ଚ୍ଚ ମିସନ୍ ବହନ କରିଥାଏ ।

ଡାକ୍ତରଖାନାକୁ ଆଧୁନିକ ଭାବରେ ପୂର୍ଣ୍ଣାଙ୍ଗ କରିବା ଲାଗି ମିସନର କୌଣସି କାର୍ପଣ୍ୟ ନାହିଁ । ଏହାର ପ୍ରଶସ୍ତ ପ୍ରାଙ୍ଗଣରେ ହେଲି-କୋପ୍ଟର ଓହ୍ଲାଇବାର ବ୍ୟବସ୍ଥା ଅଛି । ଦୂରବର୍ତ୍ତୀ ଅସାଧ୍ୟ ରୋଗୀମାନେ ଏଠାକୁ ବ୍ୟୋମଯାନରେ ଆସିଥାନ୍ତି । ଅଟୋମେଟିକ୍ ଏଲିଭେଟରରେ ରୋଗୀକୁ ଉପରତମ ମହଲାକୁ ବୋହି ନେବାର ବ୍ୟବସ୍ଥା ଅଛି । ରୋଗୀର ଖାଦ୍ୟପେୟ, ଆସବାବ୍, ଚଳଣି ଦେଖିଲେ ମନେହୁଏ—ସେ ଜଣେ ଭୋଗୀ । ରେଡ଼ିଓ ଶୁଣିବା, ଟେଲିଭିଜନ୍ ଦେଖିବା ଲାଗି ପ୍ରତ୍ୟେକ ରୋଗୀ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଅଛି । ଯେତେ ଯନ୍ତ୍ରଣା ହେଲେ ବି ରୋଗୀ ଚିତ୍କାର କରୁନାହିଁ, ଦେହରେ କଷ୍ଟକୁ ଚାପିଇ ନେଉଛି । ଅନ୍ୟକୁ ବିଚଳିତ ବା ବିବ୍ରତ କରିବାର ତାର କି ଅଧିକାର ଅଛି ?

ହଜାର ହଜାର ରୋଗୀ, ତଥାପି ନିର୍ଜନତାର ଏକ ବାତାବରଣ ରହିଛି । ଶୀତାତପନିୟନ୍ତ୍ରିତ ଅତି ପରିଚ୍ଛନ୍ନ ଗୃହ । ଲିଖିତ ବାର୍ତ୍ତା ବୋହି ନେବାଲାଗି ଭେକମ୍ ଯନ୍ତ୍ର, ଡାକ୍ତର ବା ନର୍ସଙ୍କୁ ଡାକଦେବା ଲାଗି ବେତାରଯନ୍ତ୍ର ଖଞ୍ଜାଯାଇଛି । ନର୍ସମାନେ ପିତାମାତାଙ୍କଠାରୁ ଅଧିକ । ଆତ୍ମୀୟର ଉପସ୍ଥିତି ଲୋଡ଼ା ନାହିଁ । ତଥାପି ଅଧିକ ବ୍ୟୟ କଲେ ସ୍ୱତନ୍ତ୍ର ଗୃହ, ଡାକ୍ତର ଓ ନର୍ସର ବ୍ୟବସ୍ଥା କରାଯାଇପାରେ; ରୋଗୀର ଆତ୍ମୀୟ ସେହି ଗୃହରେ ଦୀର୍ଘ ସମୟ କଟାଇ ପାରନ୍ତି ।

ଗୋଟିଏ ଗୃହରେ ଦୁଇଜଣରୁ ଅଧିକ ରୋଗୀ ନାହାନ୍ତି । ଗୃହ ଏପରିଭାବେ ନିର୍ମିତ ଯେ ଉଭୟ ରୋଗୀ ପରସ୍ପରଠାରୁ ବିଚ୍ଛିନ୍ନଭାବେ ରହିଛନ୍ତି । ଆତ୍ମୀୟ ନିଜ ରୋଗୀକୁ ଦେଖିବାକୁ ଚାହିଁଲେ ଇନ୍କ୍ୱାରୀରେ ପଚାରି ଏଲିଭେଟରରେ ତିନି ମିନିଟ୍ ମଧ୍ୟରେ ରୋଗୀ ପାଖରେ ପହଞ୍ଚି

ଯାଇପାରନ୍ତି । ରୋଗୀଙ୍କୁ ଦେଖିବାକୁ ଆସୁଥିବା ବ୍ୟକ୍ତିଙ୍କ ଲାଗି ସ୍ୱତନ୍ତ୍ର କାଫେଟେରିଆ, ରୋଗୀଙ୍କୁ ଉପହାର ଦେବା ଲାଗି ଏହି ହସ୍ପିଟାଲରେ ଗିଫ୍‌ଟସପ୍ ରହିଅଛି ।

ହସ୍ପିଟାଲ୍ ସହିତ ଗୋଟିଏ ଚର୍ଚ୍ଚ ସଂଲଗ୍ନ—ନିର୍ଜନ ଗମ୍ଭୀର ବାତାବରଣ, ଧୂପ ପୁଷ୍ପ ସୁବାସିତ । ବହୁ ମହମବତୀ ଜଳୁଛି, ରୋଗୀ ମନର କ୍ଷୀଣ ଆରୋଗ୍ୟ କାମନାକୁ ଉଦ୍ଦୀପ୍ତ କରି । ଆତ୍ମୀୟ ବନ୍ଧୁମାନେ ରୋଗୀର ଶୀଘ୍ର ଆରୋଗ୍ୟଲାଭ ଲାଗି ପ୍ରାର୍ଥନା କରୁଛନ୍ତି । ପିଷ୍ଟରମାନେ ବାଇବଲ୍ ପଢ଼ୁଛନ୍ତି । ଭଗବାନଙ୍କ ଚରଣରେ ରୋଗୀ ଅନ୍ତରର ନମ୍ର ନତ ଭାବାଞ୍ଜଳି ଅର୍ପିତ ହେଉଛି । ଭାବଗ୍ରାହୀ ଯେ, ଗ୍ରହଣ କରୁଥିବେ ବିଗଳିତ ପ୍ରାର୍ଥନାସବୁ, ଅତି ଆଦରରେ । ଉତ୍ତରର ପ୍ରାର୍ଥନା ଗୃହର ଗର୍ଜନ; ଏଥିରେ ଭଗବାନ ଅଧିକ ଦୂରନ୍ତ ମାତ୍ର । ପ୍ରକୃତ ପ୍ରାର୍ଥନାର ମହତ୍ତ୍ୱ ଚର୍ଚ୍ଚ ଦ୍ୱାରରେ ଉଲ୍ଲିଖିତ ହୋଇଅଛି ।

ପୁଷ୍ପପଲ୍ଲିତ, ସଙ୍ଗୀତ ମୂର୍ଚ୍ଛିତ, ପ୍ରାର୍ଥନା ପବିତ୍ରିତ ଚିକିତ୍ସାଳୟର ବ୍ୟବସ୍ଥା ଦେଖିଲେ ମନେହୁଏ ଯେ ଏଠି ଅକାଳ ମୃତ୍ୟୁ ନାହିଁ, ଅବହେଳାର ମୃତ୍ୟୁ ନାହିଁ । ଜୀବନ ସଂଗ୍ରାମରେ ଡାକ୍ତର, ନର୍ସ, ଔଷଧ, ଯନ୍ତ୍ର ସମସ୍ତେ ଏକଜୁଟ୍ ହୋଇ ରୋଗୀ ପକ୍ଷରେ କାର୍ଯ୍ୟକାରୀ ହୋଇଥାନ୍ତି ।

## ଡ୍ରାଇଭ୍-ଇନ୍-ମୋଭି ଓ
## ମେରୀ ପପନ୍ସ (୧୪ । ୭ । ୬୬)

ଦର୍ଶକମାନଙ୍କ ଲାଗି ହଲ୍ ବା ସିଟ୍ ନାହିଁ । ସେମାନେ ଯେ ଯାହାର ମଟରଗାଡ଼ିରେ ବସି ମୋଭି ଦେଖନ୍ତି । ପ୍ରଶସ୍ତ ପ୍ରାଙ୍ଗଣରେ ମାଇଲଏ ଆୟତନରେ ମଟର ଜମିଥାଏ । କେହି ଗାଡ଼ିରେ, କେହି ବା ଗାଡ଼ି ସାମ୍ନାରେ ସତରଞ୍ଜି ବିଛାଇ କମ୍ବା ହାଲୁକା ଚୌକି ପକାଇ ବସନ୍ତି; ପିଲାମାନେ ମଟର ଛାତ ଉପରେ ବସିବାର ଦେଖାଯାଏ । ପରଦାଟି ଅନେକ ଉଚ୍ଚରେ ଟଙ୍ଗା ହୋଇଥାଏ, ତେଣୁ ଛବି ଦେଖିବାରେ କାହାରି କିଛି ଅସୁବିଧା ହୁଏନାହିଁ । ଶବ୍ଦ ଶୁଣିବା ଲାଗି ପ୍ରତି ଗାଡ଼ି ଧାରରେ ଗୋଟିଏ ଗୋଟିଏ ସ୍ପିକରଯନ୍ତ୍ର ଲଗାଇ ଦିଆହୁଏ ।

ଏ ଗୋଟିଏ ନୂତନ ବାତାବରଣ, ଉନ୍ମୁକ୍ତ। ଦର୍ଶକ ସ୍ୱାଧୀନ। ସିନେମା ଭଲ ନ ଲାଗିଲେ ଅଧାରୁ ପ୍ରାଙ୍ଗଣ ଛାଡ଼ି ଚାଲିଯାଇପାରେ। ଏଥିରେ ଅନ୍ୟମାନଙ୍କର ଖୁବ ଅସୁବିଧା ହୁଏନାହିଁ। ପିଲାମାନଙ୍କୁ ବେଶି ସିଟର ପାଖେ ଛାଡ଼ିପିବାକୁ ପଡ଼େନାହିଁ, ନିଦ ଲାଗିଲେ ପିଲାଏ ଗାଡ଼ିରେ ଶୋଇପାରନ୍ତି। ଟିକେଟରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀର ବିଭାଗ ନାହିଁ। ନ' ବର୍ଷରୁ କମ୍ ପିଲାଙ୍କୁ ଛାଡ଼।

ମେରି ପପିନ୍ସ ନାଟକକୁ ନୃତ୍ୟ ସଙ୍ଗୀତ ରୂପ ଦାନ କରିଛନ୍ତି ଅଘଟନ ଘଟଣକାରୀ 'ଡିସ୍ନେ।' ତାଙ୍କ ଦୃଷ୍ଟିରୁ ଜୀବନ ଗୋଟାଏ ଘର କି ଗୁମ୍ଫ ନୁହେ। ସମସ୍ତେ ଗୋଟିଏ ବାଟରେ ଚାଲିବେ ନାହିଁ, କି ଗୋଟିଏ ଛାଞ୍ଚରେ ତିଆରି ହେବେ ନାହିଁ। ପୂର୍ବ ପୁରୁଷଙ୍କ ବନ୍ଧା ନିୟମରେ ତିଆରି ଛନ୍ଦରେ ଚାଲିବା ପ୍ରକୃତିବିରୋଧୀ କାର୍ଯ୍ୟ। ଅଭିଭାବକମାନେ ନିଜ ପିଲାଙ୍କୁ ବଡ଼ କରିବାକୁ ଯାଇ ମାଙ୍କଡ଼ କରି ଦିଅନ୍ତି। ଶେଷକୁ ସେମାନେ ଖଡ଼କ ହୁଅନ୍ତି ନାହିଁ କି ପେଡ଼ିକ ହୁଅନ୍ତି ନାହିଁ। ପିଲାଙ୍କ ମନ ବୁଝିବା ଲାଗି ସ୍ୱତନ୍ତ୍ର କଳାଜ୍ଞାନ ଓ ବୈଜ୍ଞାନିକ ମନୋବୃତ୍ତି ଆବଶ୍ୟକ। ନିଜ ଖିଆଲରେ ଚାଲିଲେ ବୋଲି ତାଙ୍କୁ ପାଗଳ ବା ବଗୁଲିଆ କହିବାର କୌଣସି ଅର୍ଥ ନାହିଁ। ହୁଏତ ଗୋଟିଏ ଉଚ୍ଚ ମନୋବୃତ୍ତି ଦୁଷ୍ଟାମି ରୂପରେ ପ୍ରକାଶ ପାଏ—ପାଗଳାମିକି ଗୋଟିଏ ମହତ୍ ଦିଗରେ ଧାବିତ କରାଯାଇପାରେ। ପିଲା ପକ୍ଷୀବସା ଖୋଜି ବୁଲେ, କଙ୍କି ଧରେ; ପ୍ରଜାପତି ପଛରେ ଦୌଡ଼େ; ଏ ସବୁ ଯେ କରେ ସେ ଦୁଷ୍ଟ, ବହି ଧରି ଯେ ବସେ, ସେ ଶିଷ୍ଟ—ଏପରି ବିଚାର ଏକ ବିଭ୍ରାଟ। ପିଲାକୁ ତା'ର ଗଳି ବାଟରେ ଉଚ୍ଚ ଦରର ମନୁଷ୍ୟ କରି ଗଢ଼ା ଯାଇପାରେ। ପିଲାଙ୍କ ମନରେ ଯେଉଁ ଅସରନ୍ତି କୌତୁକ ଧାରା ପ୍ରବାହିତ, ତାର ମୂଳ ଉତ୍ସ ଶିକ୍ଷପ୍ରେମୀ ଆବିଷ୍କାର କରି ପାରିଛନ୍ତି। ଫଳରେ ଶିଶୁ ମନର ସନାତନ କଳ୍ପନାର ଧାରା ଫେରି ଆସିଛି। ପଶୁ କଥା କହୁଛନ୍ତି, ପକ୍ଷୀ ନୃତ୍ୟ କରି ଉଠିଛନ୍ତି, ନାଗରଦୋଳା ସଜୀବ ଓ ଉଦ୍ୟାନ ସ୍ୱପ୍ନମୟ ହୋଇ ଉଠେ। ଚତୁର୍ଦ୍ଦିଗର ଲୁକ୍କାୟିତ କଳ୍ପନାର ଆବିଷ୍କାର ଡିସ୍ନେଙ୍କ ମହତ୍ କୀର୍ତ୍ତି। ଯେଉଁଠି ସେ ବୋତାମ ଟିପିଛନ୍ତି, ସେ ସ୍ଥାନ ହସି ଉଠିଛି ବା

ନାଚ ଉଠିଚ । କାଳିଫର୍ଣ୍ଣିଆରେ ଆଧୁନିକ ଯୁଗର ଏହି ବିଶ୍ୱାମିତ୍ର ଏକ ଅଭିନବ ଜୀବରାଜ୍ୟ ସୃଷ୍ଟି କରିଛନ୍ତି; ଜଡ଼ ଜୀବନ୍ତ ହୋଇ ଉଠିଛି ।

## ଡ୍ରାଇଭ୍-ଇନ୍-ରେଷ୍ଟୁରାଣ୍ଟ (୧୭।୯।୭୭)

ଘରର ରନ୍ଧାବଢ଼ା ସବୁବେଳେ ଭଲ ନ ଲାଗିପାରେ, ଗତାନୁଗତିକ ଜୀବନ ସ୍ୱାଦହୀନ । ଯେତେ ଆଧୁନିକା ହେଲେ ବି ଏ ଦେଶର ଗୃହିଣୀ ହାଣ୍ଡିଶାଳ ଛାଡ଼ି ପାରି ନାହିଁ । ତଥାପି ମଝିରେ ମଝିରେ ତାର ବିଶ୍ରାମ ଆବଶ୍ୟକ । ନୂତନ ପରିବେଶରେ ନୂତନ ଆସ୍ୱାଦ ଦେବା ଲାଗି ଡ୍ରାଇଭ୍-ଇନ୍ ରେଷ୍ଟୁରାଣ୍ଟର ଉଦ୍ଭାବନ । ପ୍ରଶସ୍ତ ପ୍ରାଙ୍ଗଣ; ବିଦ୍ୟୁତ୍ ଆଲୋକରେ ଉଦ୍ଭାସିତ । ଗୋଟିଏ କ୍ଷୁଦ୍ର ସ୍ତମ୍ଭ ପାଖରେ ମଟର ଅଟକିଲା । ସ୍ତମ୍ଭରୁ ଗୋଟିଏ ଟେବୁଲ ମଟରକୁ ଲାଗି ପ୍ରସାରିତ ହେଲା । ସ୍ତମ୍ଭେ ସ୍ତମ୍ଭେ ମାଇକ୍ ଲାଗିଛି; କି କି ଖାଦ୍ୟ, ପାନୀୟ ଆବଶ୍ୟକ ମାଇକ୍‌ରେ କହିବାକୁ ହେଲା । ପ୍ରାୟ ଦଶ ମିନିଟ୍ ମଧ୍ୟରେ ଟେବୁଲ ଉପରେ ଖାଦ୍ୟ ରଖାଗଲା । ମୁଁ ମଗାଇଥିଲି ପାଉଁରୁଟି, ପୋଲ୍ ମାଛ ଭଜା ଓ ପେପ୍‌ସି । ଇନ୍ଦୁ ଉଦୟ, ଓ ପିଲାମାନେ ଯେ ଯାହା ରୁଚିର ଖାଦ୍ୟ ମଗାଇ ଖାଇଲେ । ଏହି ରେଷ୍ଟୁରାଣ୍ଟର ପ୍ରାଙ୍ଗଣରେ ପଞ୍ଚସ୍ତରିଟି ମଟର ରହିବାର ବ୍ୟବସ୍ଥା ଅଛି ।

ପରିବେଶ ମନୋହର । ଜଙ୍ଗଲପରି ବାଡ଼ିର ମଝିରେ ମଝିରେ ଦେଖାଯାଏ ଏଭରଗ୍ରିନ୍ — ଏମିତି ହନିସକଲ୍, ସେମିତି ଆଇଭିଲତା, ସାମ୍ନାରେ "ଫରଗେଟ୍ ମି ନଟ୍" ଫୁଲ । ମେଘ ଟପ୍ ଟପ୍ ପକାଉଥାଏ । ପ୍ରାଙ୍ଗଣରେ ମଟର ଭରପୂର—ଏକାବେଳେକେ ଏତେ ଲୋକଙ୍କୁ ପରିବେଷଣ କରିବା କଷ୍ଟକର । ତେଣୁ ରେଷ୍ଟୁରାଣ୍ଟକୁ ବହୁ ପରିବେଷଣକାରୀ ଆସିଥାନ୍ତି ଲଞ୍ଚ୍ ବା ଡିନର୍‌ବେଳେ—ବିଶେଷତଃ ଛାତ୍ରଛାତ୍ରୀ । ଏହି ଆୟରେ ଅନେକଙ୍କର ଶିକ୍ଷା ଖର୍ଚ୍ଚ ଚଳିଯାଏ ।

ଡ୍ରାଇଭ୍-ଇନ୍-ରେଷ୍ଟୁରାଣ୍ଟ ପରି ଏ ଦେଶରେ ଡ୍ରାଇଭ୍-ଇନ୍ ବ୍ୟାଙ୍କ ଓ ଡ୍ରାଇଭ୍-ଇନ୍ ଡିପାର୍ଟମେଣ୍ଟାଲ ସପ୍ ମଧ୍ୟ ଅଛି । ମଟରରୁ ଓହ୍ଲାଇ ବ୍ୟାଙ୍କକୁ ଯିବାକୁ ପଡ଼େ ନାହିଁ । ସ୍ତମ୍ଭ ପାଖେ ମଟର ଅଟକାଇ ମାଇକ୍‌ରେ କହିଦେଲେ ବ୍ୟାଙ୍କର କର୍ମଚାରୀ ଆସି ଟଙ୍କା ଜମା ନିଅନ୍ତି

ବା ଡ଼୍ କର ଟଙ୍କା ଆଣି ଦିଅନ୍ତି । ସେହିପରି ସ୍ତମ୍ଭ ପାଖେ ମଟର ଅଟକାଇ କ କ ସଉଦା ଦରକାର କହିଦେଲେ ସଉଦା ଆସି ପାଖରେ ପହଞ୍ଚିଯାଏ । କିନ୍ତୁ ଏଥିରୁ ନିଜେ ପସନ୍ଦ କରି ଜିନିଷ କିଣିବାର ଆନନ୍ଦ ମିଳେ ନାହିଁ । ଅମନୋନୀତ ଦ୍ରବ୍ୟ ମୋହମୂଲ୍ୟରେ ଫେରାଇବା ମଧ୍ୟ କଷ୍ଟକର ।

## ବେଦାନ୍ତ ସମାଜ (ସେଣ୍ଟ୍ ଲୁଇସ)

କାଥଲିକ୍ ଚର୍ଚ୍ଚ, ବେଦାନ୍ତ ସମାଜ ଲଗାଲଗି ହୋଇ ରହିଛି । ଦେହଲୀରେ ପଦ ଦେଉଁ ଦେଉଁ ଆଖିରେ ପଡ଼ିଲା ଏକ ପ୍ରଦର୍ଶନୀ, ହିନ୍ଦୁଧର୍ମ-ପୁସ୍ତକର । ରାମକୃଷ୍ଣଙ୍କ ବାଣୀ, ବିବେକାନନ୍ଦଙ୍କ ବକ୍ତୃତା, ହିନ୍ଦୁଧର୍ମ ଓ ଦର୍ଶନ ସମ୍ପର୍କୀୟ ନାନା ପୁସ୍ତକ ଓ ପାମ୍ଫଲେଟ୍ ଏଠି ବିକ୍ରିପାଇଁ ଲାଗି ରହିଛି । ବୁଢ଼ା ହୋଇଥିଲେ ଜଣେ ସାହେବ ଦ୍ୱାରପାଳ, ଗୁଡ୍ ମର୍ଣ୍ଣିଂ କହି ସେ ଆମକୁ ଭିତରକୁ ଟାଣ୍ଡି ନେଲେ । ତାଙ୍କ ସଙ୍ଗେ ଆଶ୍ରମ ସମ୍ବନ୍ଧରେ କଥାଭାଷା ହେଉଛି, ଏହି ସମୟରେ ଉପର ମହଲାରୁ ଓହ୍ଲାଇଲେ ପିଙ୍ଗଳ ବସ୍ତ୍ରଧାରୀ ସ୍ୱାମୀଜି—ବୃଦ୍ଧ, ତାଙ୍କ ନାମ ସତ୍ପ୍ରକାଶାନନ୍ଦ । ନମସ୍କାର କଲି । ଆଳାପ ଲାଗି ଅବକାଶ ନାହିଁ, ସ୍ୱାମୀଜି ସଭା ଗୃହରେ ପ୍ରବେଶ କଲେ ।

ସଭା ଗୃହରେ ବେଞ୍ଚ୍, ଡେସ୍କ ପଡ଼ିଛି । ଶ୍ରୋତା ଶ୍ରୋତ୍ରୀଙ୍କ ସଂଖ୍ୟା ତିରିଶ ଜଣ ମଧ୍ୟରେ—ବୃଦ୍ଧ ବୃଦ୍ଧା, ଯୁବକ ଯୁବତୀ; ସେମାନଙ୍କ ମଧ୍ୟରେ ଜଣେ ନିଗ୍ରୋ, ଆଉ ଜଣେ ଆମେରିକାର ଶାନ୍ତି ସଂସଦ ତରଫରୁ ହାଓ୍ୱାଇ ଦ୍ୱୀପରେ କାର୍ଯ୍ୟ କରୁଥିବା ଭାରତୀୟ ତରୁଣୀ, ବାକି କେତେ ଜଣ ଗୃହସ୍ଥୀ । ମଞ୍ଚ କାନ୍ଥରେ ଦେବନାଗରୀ ଅକ୍ଷରରେ ଲେଖା ହୋଇଛି 'ଓ', ଓଁ ତଳେ ରାମକୃଷ୍ଣଙ୍କ ଫଟୋ—ତାର ଦୁଇପଟେ ଦୁଇଟି ମହମବତୀ ଜଳୁଛି; ଦୁଇଟି ପୁଷ୍ପଗୁଚ୍ଛ ସଜ୍ଜିତ ହୋଇ ରହିଛି । ସ୍ୱାମୀ ସତ୍ପ୍ରକାଶାନନ୍ଦ 'ଚେତନାଲୋକ' ସମ୍ପର୍କରେ ଭାଷଣ ଦେଲେ ।

ସୂର୍ଯ୍ୟଙ୍କ ଲାଗି ପୃଥିବୀରେ ଜୀବନ ସମ୍ଭବ ହୋଇଛି । ସୂର୍ଯ୍ୟ ଜୀବ-ଜଗତକୁ ଆଲୋକ ପ୍ରଦାନ କରୁଛନ୍ତି । ସେହିପରି ଚନ୍ଦ୍ର, ତାରା, ବିଦ୍ୟୁତ୍ ଖଦ୍ୟୋତ ମଧ୍ୟ । କିନ୍ତୁ ଯେତେବେଳେ ସେମାନେ ଆଲୋକ ନ ଦିଅନ୍ତି,

ଆମ ବୁଦ୍ଧିକୁ ପ୍ରାପ୍ତ କରି ରଖେ କିଏ ? ଯେଉଁଠି ସୂର୍ଯ୍ୟ ନାହାନ୍ତି, ଚନ୍ଦ୍ର ନାହାନ୍ତି, ତାରକା ନାହାନ୍ତି ସେଠି ମନକୁ, ପ୍ରାଣକୁ ଆଲୋକିତ କରନ୍ତି ଭଗବାନ । ସେ ଚକ୍ଷୁର ଚକ୍ଷୁ, କର୍ଣ୍ଣର କର୍ଣ୍ଣ, ମନର ମନ, ଆଲୋକର ଆଲୋକ । ଇନ୍ଦ୍ରିୟ ନିଷ୍କ୍ରିୟ, ଇନ୍ଦ୍ରିୟ ସଙ୍ଗେ ଚେତନାର ଯୋଗ ହେଲେ ସେ କ୍ରିୟାଶୀଳ ହୁଏ । ସେହିପରି ବୁଦ୍ଧି ସଙ୍ଗେ ଭଗବତ୍ ଆଲୋକର ଯୋଗ ହେଲେ ବୁଦ୍ଧି କାର୍ଯ୍ୟକାରୀ ହୁଏ । ଏହି ଯୋଗ ବିଚ୍ଛିନ୍ନ ହେଲେ ମନୁଷ୍ୟ ଚକ୍ଷୁ ଥାଇ ଅନ୍ଧ, କର୍ଣ୍ଣ ଥାଇ ବଧିର, ବୁଦ୍ଧି ଥାଇ ନିର୍ବୁଦ୍ଧିର କାର୍ଯ୍ୟ କରେ । ଅହଂ ଭାବରେ ସେ ତୃପ୍ତ ହୁଏ, ସାଂସାରିକ ଦ୍ରବ୍ୟ ସମ୍ଭାର ତା ଚକ୍ଷୁକୁ ବଡ଼ ହୋଇ ଦିଶେ । ଯେତେବେଳେ ସେ ଭଗବତ୍ ଆଲୋକ ସଙ୍ଗେ ନିଜ ପ୍ରାଣର ଯୋଗ ସଂସ୍ଥାପିତ କରେ, ସେତେବେଳେ ସେ ଐହିକ ଭୋଗ ଓ ଯାବତୀୟ ପଦାର୍ଥର ମୂଲ୍ୟାଙ୍କନ କରିବାକୁ ସମର୍ଥ ହୁଏ । ନଶ୍ୱର ସଙ୍ଗେ ଶାଶ୍ୱତର, ଇନ୍ଦ୍ରିୟ ସଙ୍ଗେ ଅତୀନ୍ଦ୍ରିୟର ଯୋଗ ବିଧାନ ଧର୍ମର କାର୍ଯ୍ୟ ।

ବକ୍ତୃତାର ମଧ୍ୟ ବିରତିରେ ଗୋଟିଏ ଗୁଣ୍ଡ୍ ବୁଲିଲା—ଏ ହାତରୁ ସେ ହାତ । କିଏ ଏକ ଡଲାର୍, କିଏ ଅଧ ଡଲାର ସେହି ଗୁଣ୍ଡ୍‌ରେ ପକାଇଲେ । ଚନ୍ଦା ଆଦାୟ ପରେ ପୁଣି ବକ୍ତୃତା ଚାଲିଲା । ବକ୍ତୃତା ପରେ ସତ୍ପ୍ରକାଶାନନ୍ଦଙ୍କ ସଙ୍ଗେ ଆଳାପ ହେଲା । ସେ କହିଲେ ଯେ ୧୮୯୩ରେ 'Parliament of world religions'ରେ ବିବେକାନନ୍ଦଙ୍କ ବକ୍ତୃତା ପରେ ହିନ୍ଦୁ ଧର୍ମ ଓ ଦର୍ଶନ ପ୍ରତି ଆମେରିକାବାସୀଙ୍କ ଦୃଷ୍ଟି ଆକୃଷ୍ଟ ହେଲା । ଶିକାଗୋ, ବଷ୍ଟନ୍, କନସସ୍, ସାନ୍ ଫ୍ରାନ୍ସିସ୍କୋ ଓ ନିଉୟର୍କରେ ହିନ୍ଦୁଧର୍ମ ପ୍ରଚାର କେନ୍ଦ୍ରମାନ ସ୍ଥାପିତ ହେଲା । ୧୯୩୮ ରେ ସେଣ୍ଟଲୁଇସ୍‌ରେ ବେଦାନ୍ତ ସମାଜ ସ୍ଥାପିତ ହୋଇଥିଲା । ସ୍ଥାପୟିତା ନିଜେ ସ୍ୱାମୀଜି । ଅନ୍ୟ କେନ୍ଦ୍ରମାନ ହିନ୍ଦୁଧର୍ମୀ ଆମେରିକାନ ମାନଙ୍କ ଦ୍ୱାରା ପରିଚାଳିତ । ପଚାରିଲି—କେତେ ଜଣ ଆମେରିକାନ୍ ହିନ୍ଦୁ ହେଲେଣି ?

ସ୍ୱାମୀଜି କହିଲେ—ଆମେ ହିନ୍ଦୁ ହେବା ଲାଗି କାହାକୁ ପ୍ରବର୍ତ୍ତାଉ ନାହିଁ ।

'ସ୍ୱାମୀ, ଦେଲେ ଏଠା ଲୋକେ ନାମ ପରିବର୍ତ୍ତନ କରନ୍ତି କି ?'

'ନାମ ପରିବର୍ତ୍ତନ କରିବା ଲାଗି ଆମେ କାହାକୁ କହୁନାହିଁ, ସେ ଆମର ମାନ୍ଧ ନୁହେ । ଯାହାର ଇଚ୍ଛା ହୁଏ, ସେ କରେ ।'

'କେହି ସାହେବ ଯୋଗ ସାଧନ କରୁଛନ୍ତି କି ?'

'ଯୋଗରେ ଶରୀରକୁ ପୀଡ଼ା ଦେବାକୁ ହୁଏ ଭକ୍ତିଯୋଗ । ଭଗବତ୍ ଲାଭର ସହଜତର ପନ୍ଥା । ଆମେ ଏଠି ତାହା ପ୍ରଚାର କରୁ ।' ଜିଜ୍ଞାସୁମାନଙ୍କୁ ଗ୍ଲାସେ ଲେଖାଁଏ କମଳା ରସ ମିଳିଲା । ସ୍ୱାମୀଜୀଙ୍କ ସଙ୍ଗେ ଆଳାପ ଲାଗି କେତେକ ଲୋକ ବସିଛନ୍ତି । ଆଲୋଚନା ଅସମାପ୍ତ ରଖି ବିଦାୟ ନେଲି ।

ଆମେରିକାରେ ବସ୍ତୁଧର୍ମର ପ୍ରାବଲ୍ୟ; ଅନୁଷ୍ଠାନିକ ଭାବେ କାଥୋଲିକ୍, ପ୍ରୋଟେଷ୍ଟାଣ୍ଟ ପ୍ରେସବିଟେରିଆନ୍, ଲୁଥେରିଆନ ଓ ଜିଉଙ୍କର ଧର୍ମ ଚର୍ଚ୍ଚା ଚାଲିଛି । କିନ୍ତୁ ଭୌତିକ ଐଶ୍ୱର୍ଯ୍ୟର କୁଜ୍ଝଟିକା ଭେଦ କରି ଆଧ୍ୟାତ୍ମିକ ରଶ୍ମି କେଉଁଠି ପ୍ରତିଭାତ ହେଉନାହିଁ । କେବଳ ଲୋକମଙ୍ଗଳ ଅନୁଷ୍ଠାନକୁ ଅକାତର ଦାନ, କ୍ଷୁଧିତକୁ ଅନ୍ନଦାନ, ଭୀତକୁ ଅଭୟଦାନ ପ୍ରଭୃତି କର୍ମରେ ଆଧ୍ୟାତ୍ମିକତାର ବହୁ ଉଜ୍ଜ୍ୱଳ ଦୃଷ୍ଟାନ୍ତ ମିଳିପାରେ । ଉତ୍କୃଷ୍ଟ ଦର୍ଶନ ହିସାବରେ ବେଦାନ୍ତର ସାରତତ୍ତ୍ୱ ବିଦ୍‌ଗଧ ଗ୍ରହଣ କରିପାରେ, କିନ୍ତୁ ବାସ୍ତବ କ୍ଷେତ୍ରରେ ଏହା ଏ ଦେଶରେ କେତେଦୂର ପ୍ରଯୁକ୍ତ ହୋଇପାରିବ ତାହା ହିଁ ଚିନ୍ତାର ବିଷୟ ।

## ମା ମା ପାରେଣ୍ଟସ୍

ମିସେସ୍ ରାଓ ରନ୍ଧାବଢ଼ାର ଭାର ନେଇଛନ୍ତି । ରାତି ଚାରିଟାରୁ ଉଠି ପ୍ରାତଃରାଶ ପ୍ରସ୍ତୁତ କରନ୍ତି । ଝିଅକୁ ସେଷେଲ ଶାଳରେ ପକାଇ ଦଅନ୍ତି ନାହିଁ । ସେ ଥାଉଁ ଥାଉଁ ଝିଅ ରାନ୍ଧିବ ? ଶାଶୁ ଓ ବୋହୂ ଯେପରି ଭାରତୀୟ ଉତ୍ତମତାର ମୂର୍ତ୍ତି ପ୍ରତୀକ । ଯେପରି ସୁଶିକ୍ଷିତା, ଗୃହକର୍ମରେ ସେହିପରି ସୁଦକ୍ଷା, କୋମଳ ଶାନ୍ତ ମାତୃମୂର୍ତ୍ତି । ସେ ଆସିଲାଦିନୁଁ ବୋତଲ ଖାଦ୍ୟ

ବାଦ୍ ପଡ଼ନ୍ତି ; ଦକ୍ଷିଣ ଓ ପଶ୍ଚିମ ଭାରତର ଯାହା କିଛି ଶ୍ରେଷ୍ଠ, ଯେତେ କଷ୍ଟ ପଡ଼ିଲେ ବି ସେ ଗନ୍ଧ୍ ନ୍ତନ୍ତ—ପ୍ରତିଦିନ ନବ ନବ ମିଷ୍ଟାନ୍ନ, ନୂତନ ତରକାରୀ ପ୍ରସ୍ତୁତ ହେଉଛି । ଶାରୀରିକ ଅସୁସ୍ଥତା ପ୍ରତି ଦୃଷ୍ଟି ନାହିଁ, ଖୋଇ-ବାରେ ତାଙ୍କର ଆନନ୍ଦ ।

ତାଙ୍କୁ କିଛିଦିନ ବିଶ୍ରାମ ଦେବାଲାଗି ଆମେ ଇଟାଲୀୟ ରେଷ୍ଟୁରାଣ୍ଟ 'ମା ମା—ମାରେଣ୍ଟିଏ'କୁ ଗଲୁ । ଉଦୟନାଥର ଜଣେ ଯୋଗୀ ଏଠି ପରିବେଷକ କାର୍ଯ୍ୟ କରନ୍ତି । ସେ ନିମନ୍ତ୍ରଣ କରିଛନ୍ତି । ଅବଶ୍ୟ ବ୍ୟୟଭାର ନିଜେ ଅତିଥି ବହନ କରିବେ, ବକ୍‌ସିସ୍ ମଧ୍ୟ ବାଦ୍ ପଡ଼ିବ ନାହିଁ । ଏ କିପରି ନିମନ୍ତ୍ରଣ ?

ପେଣ୍ଟଲୁଇସ୍‌ରେ ଅନେକଗୋଟି ଇଟାଲୀୟ ହୋଟେଲ୍ ଅଛି—ମା ମା ମାରେଣ୍ଟିଏ ସବୁଠାରୁ ଶ୍ରେଷ୍ଠ । ତା କେବଳ ଆକାରରେ; ପଚାଶ ଜଣରୁ ଅଧିକ ଏକ ସମୟରେ ଆହାର କରି ପାରିବେ ନାହିଁ । କିନ୍ତୁ ଖାଦ୍ୟପେୟ ଯେ କୌଣସି ବଡ଼ ରେଷ୍ଟୁରାଣ୍ଟର ସମକକ୍ଷ, ଆଧୁନିକତା ଜର୍ଜରିତ ପ୍ରାଣକୁ କିଛିଟା ବିଶ୍ରାମ ଓ ବୈଚିତ୍ର୍ୟର ଅନୁଭୂତି ଦେବା ଲାଗି ପ୍ରାଚୀନ ଯୁଗର ଅବତାରଣା କରାଯାଇଛି । କାନ୍ଥଯାକ ମଣ୍ଡା ହୋଇଛି ଛୁଟକନା; ଟଙ୍ଗା ହୋଇଛି ରୋମାନ୍ ଯୁଗର ଛବିସବୁ । ଉଜ୍ଜ୍ୱଳ ନିୟନ ଆଲୋକ ନାହିଁ, ଗୋଟିଏ ଗୋଟିଏ ପୁରୁଣା ଲଣ୍ଠନ ପ୍ରତି ଟେବୁଲରେ ଜଳୁଛି—ଟୋଲ ଟୋଲ କାଚସବୁ, ଉଜ୍ଜ୍ୱଳତା ପ୍ରତି ବିରକ୍ତ ଚକ୍ଷୁକୁ ଶୀତଳ ସୁନ୍ଦର ଲାଗୁଛି ।

ଯେଉଁ ଇଟାଲୀୟ ଖାଦ୍ୟ ଆମେରିକାନ୍‌ଙ୍କୁ ଭଲ ଲାଗେ, ସେ ସବୁ ଏଠି ପ୍ରସ୍ତୁତ ହେଉଛି । ମି. ମିସେସ୍ ବ୍ରାଓ ଓ ମୁଁ ନିରମିଷ ଖୋଜିଲୁ—ଦୁଧ ଛେନାରେ ବହୁ ସଜ ଶିଝା ପରିବା ଦିଆ ଗୋଟିଏ ଲହୁଣୀ ଭଜା ପୋଡ଼ପିଠା—ସୁସ୍ୱାଦୁ, ଗୋଟିକରେ ମନବୋଧ ।

ଯେଉଁସବୁ ଖାଦ୍ୟ ପରିବେଷିତ ହେଲା ସେଥିମଧ୍ୟରୁ ଅର୍ଦ୍ଧେକରୁ ଊର୍ଦ୍ଧ୍ୱ ବଳି ପଡ଼ିଲା । କୋଟି କୋଟି ଡଲାରର ସୁଖାଦ୍ୟ ଏହିପରି

ରେଷ୍ଟୁରାଣ୍ଟରେ ନଷ୍ଟ ହୁଏ । ଖାଦ୍ୟ ନଷ୍ଟକଲେ ଲକ୍ଷ୍ମୀଛଡ଼ା ବୋଲି-ବାକୁ ସାଧ କାହାର ? ବ୍ୟବସାୟୀ ଦାମ୍ ପାଏ, ତାର ଗ୍ରନ୍ଥବାଉ ନାହିଁ, ଆଗନ୍ତୁକର ଅଭାବବୋଧ ନାହିଁ । ପ୍ରାଚୁର୍ଯ୍ୟର ଶାନ୍ତ ମନରେ ଭୋଜନ ସେ ଯାଏ । ଏଠି ମାଂସ, ଛେନା, ଲହୁଣୀ, ଫଳ ଫୋପଡ଼ା ହେଉଥିବା ବେଳେ ଆମ ଦେଶରେ ପଖାଳକୁ ଟିପେ ଲୁଣ ମିଳୁନାହିଁ । ଉଚ୍ଛିଷ୍ଟ ଖାଦ୍ୟସବୁ ପଦାରେ ଫିଙ୍ଗାଯାଏ ନାହିଁ, ଅଳିଆ ଟୋକେଇରେ ଫୋପଡ଼ା ଯାଏ । ଏ ଖାଦ୍ୟକୁ ଲୋଭ କରିବା ଲାଗି ଏଠି ବୁଲା କୁକୁର ନାହାନ୍ତି । ଖୁଣ୍ଟି ଖାଇବା ଲାଗି ସହର ବଜାରରେ କେଉଁଠି କାଉ ଚଢ଼େ ନ ଥାଏ । ତେଣୁ କାକ ବନଆହାରରେ ତୁଷ୍ଟ । ଖାଇସାରି ଆମେ ଫେରିଲୁ ଦଶ ମାଇଲ୍ ଦୂରବର୍ତ୍ତୀ ଆମ ବସାକୁ । ସେତେବେଳକୁ ସୂର୍ଯ୍ୟ ଅରଣ୍ୟ ଉପର ଲାଲ୍ ମାଳ କୁହୁଡ଼ି ଉପରେ ଭାସୁଥାଏ—ଯେମିତି ଏକ ଲାଲ୍ ବେଲୁନ୍ ।

## ବାରିକ ସାଆନ୍ତେ

ଆମର ସେ ସାଆନ୍ତପଣ ଆଜି ନାହିଁରେ ବାପା ! ପିଢ଼ା, ଡାଳ, ମୁଠି ଧୋଇ ଭାଲୁ ବାରିକ, ତା ପୁଅ ନାଲୁ ବାରିକ, ତା ପୁଅ ଧୂନ୍ଦ ବାରିକ ହାତ ଯୋଡ଼ିଥିବ, ଭୁଣ୍ଡ ଫିଟୁ ନ ଥିବ, 'ଆସ ଖିଅର ହେବ' ବୋଲି କହିବାକୁ । ଆଜି କାହିଁ ସେ ମର୍ଦ୍ଦନ, କାନଫୁଟା, ଆଖି-ପତା ଟଣା ? ଘଡ଼ିକେ ଦେହକୁ କଡ଼କା କରି ଦେଉଥିଲା । ବାରିକ ତ ଏଠି ସାଆନ୍ତେ; ଖୋଲିଛନ୍ତି ସାଲୁନ୍ ନୁହେଁ, ଗୋଟିଏ ଦୋକାନ ( Barber's shop ) ।

ଭାବୁଥିଲି—ଏମିତି ଗୁଡ଼ିଦେବି । ଆମ ଦେଶର ନାଗାମାନେ ତ ଗୁଡ଼ନ୍ତି, ବାବାଜିମାନେ ବାରହାତ ଲମ୍ବ ଜଟା ରଖିଛନ୍ତି । କୋଡ଼ିଏ ଟଙ୍କା ଦେଇ କଭୁଷ ହେବ କିଏ ? ତା ଉପରେ ପୁଣି ବକ୍‌ସିସ୍ ! ଆମ ଧୂନ୍ଦକୁ ବୁରିଅଣା ଦେଲାବେଳକୁ କେତେ କଷ୍ଟ !

ବାରିକ ଦୋକାନରେ ପାଞ୍ଚସାତ ଗଦା ଚୌକି ପଡ଼ିଛି—ନାନା ଧରଣର ମାଗାଜିନ୍ ପ୍ରଦର୍ଶିତ, ଅପେକ୍ଷାକାରୀମାନେ ପଢ଼ିବେ ବୋଲି ।

ଯେ ପଢ଼ିବାକୁ ଇଚ୍ଛା ନ କରେ, ସେ ଟେଲିଭିଜନ୍ ଦେଖି ପାରେ । ଶ୍ରୋକ ହେଲେ ଖାଇବ ବିସ୍କୁଟ୍, ଶୋଷ ହେଲେ ପିଇବ କୋକା-କୋଲା, ପେପ୍‌ସି । ସାଆନ୍ତେ ସବୁ ସଜାଇ ରଖିଛନ୍ତି ।

ବାରକର ନାମ ମି' ଜନ୍ । ଘର ପେନ୍‌ସିଲ୍‌ଭିନିଆର ଡାଉନ୍ ଟାଉନ୍ । ସେ ବାରକ କଲେଜରେ ଟ୍ରେନିଂ ପାଇଛନ୍ତି । ପନ୍ଦର ବର୍ଷ ତଳେ ଏଥିଲାଗି ତାଙ୍କୁ ଖର୍ଚ୍ଚ କରିବାକୁ ପଡ଼ିଥିଲା ଦୁଇଶ ଡଲାର୍ । ଏଇ ପ୍ୟାଣ୍ଟ୍ ପିନ୍ଧା, ଟାଇଭିଡ଼ା, ସୁସ୍ଥ, ସବଳ ପ୍ରୌଢ଼ ସାହେବ ଘଡ଼ିକ ଭିତରେ ମୁଣ୍ଡ ଚାରିପଟେ କଳ କଟୁରୀ ବୁଲାଇ ଆଣିଲେ । ତା ପରେ ପୁରୁଣା କାଳର ପାନିଆ ଓ ହାତ କଟୁରୀରେ ଟିକିଏ ଟିକିଏ ସଂଶୋଧନ କରିଦେଲେ । ତା ପରେ ଭେକ୍‌ୟୁମ୍ ଯନ୍ତ୍ରରେ ବାଳଝଡ଼ା ହେଲା । କାଉଣ୍ଟିଂ ମେସିନ୍ ଦଶ ଡଲାର ଭଙ୍ଗାଇ ବାକି ଛ'ଡଲାର୍ ପଚାଶ ସେଣ୍ଟ୍ ମୋତେ ଫେରାଇ ଦେଲା । ସେଥିରୁ ଅଧ ଡଲାର ଟିପ୍‌ସ ଦେଲି ।

ବାରକର ଦୈନିକ ରୋଜଗାର ପଚାଶ ଡଲାରରୁ ଶହେ ଡଲାର୍ । ଭଲ କଟୁରୀ କରି ନ ପାରିଲେ ବାରକ ନାମରେ ମକଦ୍ଦମା କରାଯାଇ କ୍ଷତିପୂରଣ ଆଦାୟ ହୁଏ ।

## ଡାକ୍ତର ବରିଷ୍ଠ

ଆଜି ତାଙ୍କ ବଡ଼ ଝିଅ 'ଜେନି'ର ବିବାହର ବର୍ଷିକିଆ । ସେଥି ଲାଗି ଭୋଜିର ଆୟୋଜନ; ଆମେସବୁ ନିମନ୍ତ୍ରିତ । ଜେନି ବଡ଼ ପ୍ରଫୁଲ୍ଲ ଦେଖା ଯାଉଛି । ଇରା ସଙ୍ଗେ ତାର ଆଳାପ ଜମିଛି । ବନା ପ୍ରୟାସରେ ମିଠା ମିଠା କଥା କହି ଯାଉଛି । କଥାରେ କଳା ଫୁଟେଇ ଜାଣେ ସେ । ସାଧାରଣ ଘଟଣାକୁ ନାଟକୀୟ କରିବାର ଶକ୍ତି ତାର ଅଛି । କଥାକୁ ଉଜ୍ଜ୍ୱଳତର କରୁଛି ତାର ଭୁହାକୁ ଭୁହା ହସ, ଚନ୍ଦ୍ରଜନ୍ଦିଆ ପରି ।

ବିଶ୍ୱ ସୁନ୍ଦରୀ ପ୍ରତିଯୋଗିତା କଥା ସେ ପକାଇଛି । ଏ ବୟସରେ ଏକ୍ସଭଳି କଥା ଶୁଣିବାକୁ ଶୋଭା ପାଏ । ଏଇ ସୁନ୍ଦରୀର ସୌନ୍ଦର୍ଯ୍ୟ ରୁଚି

ଜାଣିବା ଲାଗି ମୋର ଆଗ୍ରହ ଅଳ୍ପ ନୁହେଁ; ତା କଥା ପିଲଗଲା ପର ଲାଗୁଥାଏ ।

ଜେଷ୍ଟ କହିଲା—ମୁଁ ଜାଣିଥିଲି, ସୁଇଡେନ୍‌ର ସେଇ ସୁନ୍ଦରୀ ଝିଅଟି ବଶ୍ୟ, ସୁନ୍ଦରୀ ହେବ ବୋଲି ।

ମଜା ଦେଖିବା ଲାଗି ମୁଁ କହିଲି— ସ୍ପେନର ରୂପସୀ ସୌନ୍ଦର୍ଯ୍ୟର ରାଣୀ ହେବ ବୋଲି ମୋର ବିଶ୍ୱାସ ଜନ୍ମିଥିଲା । ତାର ଆଖିର ଭଙ୍ଗୀ, ଅଧରର ପଥହରା ହସ ବେଶ୍ ଗୋଟାଏ ନିଶା ଲଗାଇ ଦିଏ ମନରେ । ଯାହା କହ, ବୁକରେ ଗୋଟାଏ ଛନ୍ଦ ତାର ଥିଲା—ଝରଣାର ବନ୍ୟାର । ତାର କେଶ ଭୂଷଣ, ବାଜଲା ଗୁଞ୍ଜଲା କଥାର କୋମଳ ମାଧୁରୀରେ ମୁଗ୍‌ଧ ହୋଇ ଭାବୁଥିଲି—ସେ କନ୍ୟା ନୁହେ, ଏକ ପାହାଡ଼ୀ ନଦୀର ବନ୍ୟା ।

ମୋ ଅଭିମତରେ ଜେଷ୍ଟର କଥାର ସ୍ରୋତ ହଠାତ୍ ଅଟକି ଗଲା, ଅବଶ୍ୟ ପ୍ରଖରତର ସ୍ରୋତରେ ମୋ ଯୁକ୍ତିକୁ ଭସାଇ ନେବା ଲାଗି ।

ଜେଷ୍ଟ କହିଲା—ସବୁବେଳେ ଦୃଷ୍ଟିରେ ଆପଣ ଦେଖିଛନ୍ତି । ବିଚାରକଙ୍କର ଆଖି ଯେ ଗାଗରୁ ଣିଖ କାଢ଼େ । ମିସ୍ ସ୍ପେନ୍ ଇଂରାଜୀର 'ଏସ୍', 'ନୋ' ମାତ୍ର ଜାଣେ । ସେ କଣ କହିଲା ବିଚାରକ ବୁଝିବ କପରି ? ସ୍ପାନିସ୍ ଭାଷା କିଏ ଜାଣିଛି ?

"ତାର ଆଖି; ଅଧର ସବୁ ତ ସପ୍ତସ୍ୱର ପରି ବାଜୁଛି; ବୁଲ୍‌ବୁଲ୍, ସେ ଯନ୍ତ୍ର ହୋଇ ଉଠୁଚ ବଶୀଭୂତ ଭାବେ । ରୂପଟି ପୁତଳ କନା ଦେଖିବାକୁ ହେବ । ଭାଷା, କଣ୍ଠସ୍ୱରର ପରୀକ୍ଷା ହେଉଥିଲା କାହିଁକି ?"

"ବୁଦ୍ଧି ମୁଖକୁ ଆଲୋକିତ କରେ, ବିଦ୍ୟା ମିଶିଲେ ସେଇ ଆଲୋକ ଉଜ୍ଜ୍ୱଳତର ହୁଏ; ଯୌବନ ଶ୍ରୀ, ଉଚ୍ଚତା, ଶାରୀରିକ ସୌଷ୍ଠବ, ମନର ଐଶ୍ୱର୍ଯ୍ୟ ସବୁ ପରଖିବାକୁ ହେବ—ସବୁ ଦିଗରୁ ସମ୍ପୂର୍ଣ୍ଣ ଗୋଟିଏ ପ୍ରକୃତ ବାଛିବାକୁ ହେବ ।

ସୁଜାତ ଜନ୍ମିଥିଲାବେଳେ ଜେଫର ସାନ ଭଉଣୀ ରେଣୁ ଆସି ପହଞ୍ଚିଲା । ଯୌବନର ଲାବଣ୍ୟ ସଙ୍ଗେ ଚଞ୍ଚଳତା ମିଶି ସେ ରୂପକୁ ଅନନ୍ୟ ପ୍ରଭା ପ୍ରଦାନ କରିଛି । ମନେ ମନେ ଭାବିଲି—ଏ କାହିଁକି ପ୍ରତିଯୋଗିତାରେ ଛିଡ଼ା ହେଲା ନାହିଁ ?

ଘରେ ଭୋଜି, ମିସେସ ବର୍ଣ୍ଣ ରାନ୍ଧୁଛନ୍ତି । ରେଣୁ ତା ମର୍ଜିରେ ବୁଲୁଛି; ତାକୁ କେହି ରୋକୁନାହିଁ; ଅତିଥିମଣ୍ଡଳୀରେ ସେ ପାଞ୍ଚ ମିନିଟ୍ ମାତ୍ର ରହୁଥିଲା । ତା ମଧ୍ୟରେ କାହାକୁ ପଦେ କଥା, କାହାକୁ ଗୋଟିଏ ଚୁମା, ଚୋପାଟିଏ ହସ, ଆଖିର ଟିକିଏ ପ୍ରଭା ଦେଇ ରେଣୁ ଦୌଡ଼ି ପଳାଇଲା ତାର ସ୍ନେହର ପୁରୁଷ ସଙ୍ଗାତ ପାଖ ଦେଖି ।

ଡକ୍ଟର ବର୍ଣ୍ଣ ହାଡ଼ ସର୍ଜନ—ତିନିଜଣ ହାଡ଼ ଡାକ୍ତର ଗୋଟିଏ ଗୋଷ୍ଠୀ ଗଢ଼ିଛନ୍ତି, ଗୋଟିଏ ଅଫିସ୍ କରିଛନ୍ତି । ସେଥିମଧ୍ୟରେ ବର୍ଣ୍ଣ ଆମେରିକାନ୍, ସବୁଠାରୁ ବୟସ୍କ; ତାଙ୍କ ଧନୀ ଆମେରିକାନ୍ ସମାଜ ସହିତ ସମ୍ପର୍କ ସ୍ଥାପନ କଷ୍ଟକର । ତାପରେ ଉଦୟନାଥ ଭାରତୀୟ; ଉଦୟ' ଉଚ୍ଚାରଣ କରି ନ ପାରି ବର୍ଣ୍ଣ ଓ ଅଫିସର ଅନ୍ୟମାନେ ତାଙ୍କୁ ମାଇକେଲ୍ ବା ମାଇକ୍ ବୋଲି ଡାକନ୍ତି । ହସ୍ପିଟାଲମାନଙ୍କରେ ମଧ୍ୟ ସେ ସେହି ନାମରେ ପରିଚିତ ହୋଇଗଲେଣି । ତାପରେ ଡକ୍ଟର ହର୍ନାଣ୍ଡେସ୍, ସେ ମେକ୍ସିକୋ ଅଧିବାସୀ, କୃଷ୍ଣ କେଶ, ଭାରତୀୟଙ୍କ ପରି ଚେହେରା ।

ଏହି ତିନି ଡାକ୍ତରଙ୍କର ତିନିଜଣ ନାର୍ସ ସେକ୍ରେଟେରୀ; ଏମାନେ ଷ୍ଟେନୋର କାର୍ଯ୍ୟ କରନ୍ତି । ଚିଠିପତ୍ର ଟାଇପ୍ କରନ୍ତି; ବାହାର ଜଗତ ସହିତ ଯାବତୀୟ ଫୋନ୍ ସମ୍ପର୍କ ରଖନ୍ତି । ଏହି ଡାକ୍ତରମାନେ ଘରେଇ କଲ୍‌ରେ ଯାଆନ୍ତି ନାହିଁ ସେଣ୍ଟଲୁଇସ୍ ସହରର ବିଭିନ୍ନ ଡାକ୍ତରଖାନାର କଲ୍‌ରେ ଯାଆନ୍ତି । ହାଡ଼ଭଙ୍ଗା ରୋଗୀ ଆସିଲେ ଏମାନଙ୍କୁ ଡକରା । ବିଲ୍ କରିବା ଲାଗି ଅଫିସରେ ଜଣେ କିରାଣି ଅଛନ୍ତି । ଯାହା ଆୟ ହୁଏ ସେଥିରୁ ଅଧେ ସରକାରୀ ଟିକସରେ ଯାଏ, ବାକି ଅଧକ ଏମାନେ ବାଣ୍ଟି ନିଅନ୍ତି । ଉଦୟ ମାସକୁ ପ୍ରାୟ ପାଞ୍ଚ ହଜାର ଡଲାର ରୋଜଗାର କରେ ।

ବର୍ଷ୍ଟ ତାଙ୍କ ଅଫିସ୍ ଷ୍ଟାଫ୍‌କୁ ଦ୍ୱିପ୍ରହର ବର୍ଷିକଆ ଉତ୍ସବକୁ ଡାକଛନ୍ତି, ସେ ଜମିଦାଉରର ମାଲିକ୍, ଆମେରିକାର ଜଣେ ସାଧାରଣ ଧନୀ ଲୋକ । ତାଙ୍କ ଘରକୁ ଗଲେ ସାମାଜିକ ରୀତି ରକ୍ଷା କରିବାକୁ ହେବ । ତେଣୁ ସଜ ଇସ୍ତିକରା ପ୍ୟାଣ୍ଟ, ମୋଜା, ନୂଆ ଜୋତା ପିନ୍ଧି ଯାଇଛୁ । ଟାଇ ନ ଦେଲେ ନ ଚଳେ । କିନ୍ତୁ ଚପା କୋର୍ଟରେ ମୁଁ ପାରି ପାଇ ନାଇଥିଲି । ପହଞ୍ଚୁ ପହଞ୍ଚୁ ଡକ୍ଟର ବର୍ଷ୍ଟ—ହଲୋ, ହାଉ ଡୁ ଇଉ ଡୁ ? କହି ସେକ୍ ହ୍ୟାଣ୍ଡ କଲେ । ମିସେସ୍ ତ ଉଦୟକୁ ନୂଆ ଆଲିଙ୍ଗନ ଓ ଚୁମ୍ବନ ଦେଇ ବସାଇଲେ । କନ୍ୟା ଜେଶି ମଧ୍ୟ ଚୁମ୍ବନ ଦେଲା । ଅନ୍ତରଙ୍ଗତା ଥିଲେ ଏଠି ଆଦରର ଏଇ ରୀତି ।

ତାପରେ ମି: ଓ ମିସେସ୍ ବରଷ୍ଟ ଆମକୁ ଘର ବୁଲେଇ ଦେଖାଇଲେ । ଆରେ ଅମ୍ବୁବାଙ୍କ ଏଇଟା କଣ ? ଲୁହା ନା ପଥର ?

ମିସେସ୍ କହିଲେ—ଏ ଖଣ୍ଡିଏ କାଠ, କୋଉ ଜଙ୍ଗଲର କିଏ ଜାଣେ ? ଏ ଶାଖା କି ଗଣ୍ଡି କିଏ କହିବ ? କି କାଠ ବୋଲି ଜାଣିବାର ଉପାୟ ମଧ୍ୟ ନାହିଁ । ଆଟଲାଣ୍ଟିକ୍ ସମୁଦ୍ରର ଢେଉରେ ଭାସି ଭାସି ଆସି ସେ ମେକ୍ସିକୋ ଉପସାଗର କୂଳରେ ଲାଗିଲା; ଗଢ଼ କଳା ମୂର୍ତ୍ତି ପରି ଢଙ୍ଗ, ବଙ୍କାଡ଼ଙ୍କା । ଫ୍ଲୋରିଡ଼ା ବୁଲିଯାଇ ଜଣେ କେଉଁଠାରୁ ଆମେ କିଣି ଆଣିଛୁ ।

କେତେ ଢେଉର ସ୍ପର୍ଶ ଏଥିରେ ଲାଗିଛି ! କେତେ ସଂଗ୍ରାମର ଦାଉ ଏ ସହିଚି ! କେତେ ଝଡ଼ ବର୍ଷା, ବରଫ ଝଡ଼ ! ଦେହରେ କାହିଁ ଟିକିଏ ହେଲେ ଚଳଖ ନାହିଁ । ଏଥିରେ କ୍ଳାନ୍ତି, ଅବସନ୍ନତାର କିଛି ନାହିଁ, ରହିଛି, ଯାହା ଚିରସ୍ଥାୟୀ ରହେ । ତେଣୁ ପଦାର୍ଥ ମାତ୍ର ନୁହେଁ, ଏହା ଅନୁଷ୍ଠାନର ଗୌରବ ଲାଭ କରିଛି—ଚିର ପ୍ରେରଣାପ୍ରଦ ଜୀବନ ସଂଗ୍ରାମର ।

ବେସ୍‌ମେଣ୍ଟରେ ଶୋଇବା ଘର; କେତେ ଆଲୋକ, କେତେ ଛବି, କେତେ ଫଟୋ ! କାନ୍ଥରେ ଧାଡ଼ିଏ ପକ୍ଷୀ—ବର୍ଷ୍ଟଙ୍କ ଶିକାର—

ବନ୍ୟ ବଟକ, ଫେଜାଣ୍ଟ, ହଂସ; କେତୁଟା ବୃହତ୍ ମତ୍ସ୍ୟ—ଯାହା ସିଂଗାନ୍ ହ୍ରଦରେ ସେ ବନିଶି ପକାଇ ଧରିଥିଲେ । ଗୋଟାଏ ଗୁଣ୍ଡୁଚି ମୂଷା, ଗଛରେ ଚଢ଼ିଛି, ଲାଙ୍ଗୁଡ଼ ମାତ୍ର ଦିଶୁଛି, ଆଉ ଗୋଟିଏ ଗଛରୁ ମୁଣ୍ଡ କାଢ଼ିଛି; ଗୋଟାଏ ବୃହତ୍ ପେଚକ, ଅତୀତ ଯୁଗର ଏକ ମହାନ୍ ଦାର୍ଶନିକ ପରି ବସି ସତେ ବା ଚିନ୍ତା କରୁଛି—ଭଗବାନ୍ ଅଛନ୍ତି ନା ନାହାନ୍ତି—ପୃଥିବୀରେ ଯେଉଁଠି ଅଛନ୍ତି ଏତେ ଧନୀ, ଯେଉଁଠି ଅଛନ୍ତି ଏତେ ଦରିଦ୍ର ?

ଖେଳଘରେ କେତେ ଖେଳଣା ! ଟେବୁଲ୍ ଟେନିସ୍ ଖେଳିବାର ବ୍ୟବସ୍ଥା ରହିଛି । ଗୋଟିଏ ବିରାଟ ପିଆନୋ, ଆଗେ ବର୍ଷ୍ଟ ବଜାଉଥିଲେ, କୌମାରରେ ଜେସି ବଜାଇଲା, ଏବେ ଟେସି ବଜାଉଛି ।

ଜିନିଷପତ୍ର ସବୁ କାଚ ଆଲମାରୀରେ ସଜାହୋଇ ଚକ୍ ଚକ୍ କରୁଛି; କାହିଁ କେଉଁଠି ଟିକିଏ ବିଶୃଙ୍ଖଳାର ସଙ୍କେତ ନାହିଁ—ମିସେସ୍ ବର୍ଷ୍ଟଙ୍କ ବୈଜ୍ଞାନିକ ଦୃଷ୍ଟି ଓ କଳାତ୍ମକ ମନନ ସ୍ପଷ୍ଟ । ରୋଷେଇଶାଳାରୁ ପାଇଖାନା, ବୁଲୁଛନ୍ତି ସେ, ଗୋଇଠି ଟେକା ଜୋତା ପିନ୍ଧି ବରଫ ପରି ସଫେଦ ପାଦ ଦୁଇଟିରେ । କଠୋର ଶ୍ରମ ଦେହରେ କେଉଁଠି ଟିକିଏ ମେଦ ରଖିଦେଇ ନାହିଁ; କଥା କ୍ଷିପ୍ର, ବ୍ରେକ୍ଟୋକ୍, ବିଦଗ୍ଧତାରେ କଣ୍ଠର୍ ଗମ୍ଭୀର, କୋମଳତାରେ ଅବଶ୍ୟ ମୁଗ୍ଧ ।

ଘର ଭିତରେ ଚଳବଚଳ ହୁଅନ୍ତି ଆଉ ଦୁଇଟି ପୋଷ୍ୟ । ଗୋଟିଏ ମାର୍ଜାର; ଗୋଟିଏ ମୂଷା, ଅପରଟା କମ୍ପା ଝିଟିପିଟି ନାହାନ୍ତି; ଶିକାର ଶିଖିବାର ସୁଯୋଗ ତାକୁ ମିଳିନାହିଁ, ଜୀବନରେ କିଛିହେଲେ ସମସ୍ୟା ନାହିଁ । ମୁଖରେ ବନ୍ୟତା ବା ହିଂସ୍ରତା ନାହିଁ, ଶାନ୍ତ ଶୀତଳ ଗମ୍ଭୀର ଶ୍ରୀ । କେବଳ ବର୍ଷ୍ଟଙ୍କ ଲ୍ୟାପ୍ ଡଗ୍‌ଟି ଦୌଡ଼ ଯାଉଥିଲାବେଳେ ତାର ଚକ୍ଷୁ ପ୍ରସାରିତ ଓ ଉଜ୍ଜ୍ୱଳତର ହୁଏ । ପ୍ଲାଷ୍ଟିକ୍ କଣ୍ଢେଇଟିଏ ଜୀବନ୍ୟାସ ପାଇ ସତେ ଅବା ଧାଇଁଯାଉଛି । ଗୃହଟି କ୍ରୀଡ଼ାମୁଖର ହୋଇ ଉଠେ, ଯେତେବେଳେ ମି: ଓ ମିସେସ୍ ଏମାନଙ୍କ ପିଛା ଧରନ୍ତି, ବହୁ ଯୁଗରୁ ହରାଇଥିବା ଚପଳ କୈଶୋରକୁ ଉଦଜୀବିତ କରି ।

କୁକୁଡ଼ ଶିକାର ଉତ୍ସାହରେ ଦୌଡ଼ାଇଯାଏ ସିନା, ଧରେନାହିଁ; ହାଙ୍କୁଟାଏ ତ; କାମୁଡ଼ି ଦେବ କେମିତି ? ମାଲିକଙ୍କ ମନଲାଖି ଖଣ୍ଡେ ଖେଳ ଦେଖାଇବା କଥା । ବିଲେଇମାନେ ବି ନଖ କାଢ଼ନ୍ତିନାହିଁ, ଖାଲି ଗାଉଁ ଗାଉଁ ହୁଏ; ଅଭିନୟକୁ ଟିକିଏ ଚିତ୍ତାକର୍ଷକ କରିବାକୁ ତ ହେବ ! ନଇଲେ ମାଲିକ୍ ବନ୍ଧୁବର୍ଗଙ୍କ ଆଗେ ଲାଣ୍ଡିଆ ହେବେ ଯେ !

ବାହାରେ ଆଉ ଗୋଟିଏ ପୋଷ୍ୟ କୁକୁର—ଗଧିଆ ପରି ଚେହେରା, ବରିଷ୍ଟଙ୍କ ବଗିଚ ଘରର ଚୌକିଦାର—ସଙ୍ଗରେ ଥିଲାବେଳେ ବଡ଼ଗାଉଁ, ଶତ୍ରୁ ଅଗରେ ମହାବଳ, ମିତ୍ର ଆଗରେ ଗୁରଳ ।

ଘରେ ଦୁଇଟି ଘୋଡ଼ା ଚରୁଛନ୍ତି—କଳା, ଧଳା; ବଳରାମ ଜଗନ୍ନାଥ ଏମିତି ଘୋଡ଼ାରେ ବସି କାଞ୍ଚି ଯୁଦ୍ଧକୁ ଯାଇଥିବେ । ଜେସ୍ସ ବୁଲିଗଲା ପରେ ଏବେ ତେସ୍ସ କେତେବେଳେ କଳା, କେତେବେଳେ ବା ଧଳା ଘୋଡ଼ାରେ ବସେ । ସେ ତ ଏମିତି ଏତେ ସୁନ୍ଦର । ମନର ଖିଆଲରେ ଝପଟ ମାରିଲାବେଳେ ଆକାଶ ମଲ୍ଲୀପରି ଝଟକୁଥିବ ତାର ଚେହେରା; ବ୍ଲଣ୍ଡ୍ ଯୁବତୀ, ସୁନାର ଛଟା ଖୋଲାହୋଇ ବୁଜିହେଲା ପରି ହେଉଥିବ ତାର କେଶ ।

ଅପୂର୍ବ ଷୋହାକୃତି ଟେବୁଲ୍—ତା ଉପରେ ଧଳା ଚଦରଟିଏ ବିଛା ହୋଇଛି—ସିଲେଇ କଳାର ମାଧୁରୀ ସ୍ତରେ ସ୍ତରେ । ଟେବୁଲ୍ ଉପରେ ରୂପାର, ନିଷ୍କଳଙ୍କ ଲୁହାର ବାସନସବୁ । ଦୁଇଟି ସବୁଜ ରଙ୍ଗର ମହମବତୀ ଜଳୁଛି, ଡୋଲି ଲଣ୍ଠନ କାଚ ଭିତରେ । ମଝିରେ ଥୁଆ କମକୁଟକର ପୁଡ଼ିଂ କେକ୍; ତା ଉପରେ ପୋତା ହୋଇଛି ଦରଫୁଟ ପୁଷ୍ପଭରା ଗୋଲାପ ଶାଖା, ବିବାହ ସମୟର—ଏବେ ଶୁଷ୍କ, ମଳିନ, ତାର ସଜୀବ ପ୍ରଫୁଲ୍ଲତା ଏଇ ନବଦମ୍ପତିଙ୍କୁ ଦେଇ ।

ପକ୍ଷୀ ଛଡ଼ାହୋଇ ଶିଝା ହୋଇଛି ଗୋଟା କୁକୁଡ଼ା; କାଟି ଖାଇବାର ଅଭ୍ୟାସ ନାହିଁ; ଏଣେ ମାଂସ ଲୋଭ, ତେଣେ ବଦ୍‌ନାମ୍ ଭୟ, ଏବେ ମାଂସ ନ ଖାଇଲେ କଣ କ୍ଷତି ହେଉଛି ? କାଠୁ କାନ୍ଟୁ କାହା

ଉପରକୁ ଛୁଟିକଲେ କମ୍ୱା ପ୍ଲେନ୍ ଖସିଲେ ସର୍ବନାଶ । ସ୍ତ୍ରୀଇର ମାନଦାନ; 'ଏତେ ବନ୍ୟ ? ଏ ସୃଣି ନେମ୍ୟସ୍ତୁ !'

ଉଦସ୍ତ୍ୱକୁ ଆଗରୁ ମତର୍କ କଣ ଦେଇଥିଲି; ପଶ୍ଚିମପୃରେ ଚୋର ଯାଇ ବୋଲି କହି ଅନେକ ପିବୁ ନାହିଁ । ମୋ ବ୍ରତିରେ ପଶ୍ଚିମପୃରେ ଚୋର ମର୍ଯ୍ୟାଦା ବଢ଼ିବ । କହିବୁ—ଇଏ ଜଣେ ଗ୍ରେଟେସ୍ଟ୍ କବି; ଏସିଆ ଲୋକସଂସ୍କୃତି ସମ୍ମେଳନକୁ ଭାରତ ସରକାରର ପ୍ରତିନିଧି ସ୍ୱରୂପେ ପଠାଇଛନ୍ତି । ମୋ ବ୍ୟକ୍ତିତ୍ୱର ସ୍ତର ଉନ୍ନୀତ ହେଲେ ସାଧାରଣ ଦୋଷ ଆଖିରେ ପଡ଼ିବ ନାହିଁ । ଧରଖିଆ ହୋଇ ଗଲେ ଉତ୍ତମ, କଟୁହେଲେ ଦୋଷ କଣବ ନାହିଁ ।

କିନ୍ତୁ ମିସେସ ବର୍ଷ୍ଣଙ୍କ ତୀକ୍ଷ୍ଣ ଆଖିରୁ ଉଦ୍ଧାର ପାଇଲି କେଉଁଠି ? ସେ କହିଲେ—ଏ ଗୋରୁ ବା ଘୁଷୁରି ନୁହେ—ଚିକେନ୍ । ଟିକେ ଟିକେ କାଟି ଖାଇଲି, ଗୌଣ ମନୋଭାବ ଯେଉଁ କୌଣସି ଦୃଶ୍ୟ ସୃଷ୍ଟି କରି ନାହିଁ ।

ପରୀକ୍ଷାରେ ହିଁ ବ୍ୟସ୍ତ । ତେଣୁ ବଡ଼ ପିଠା କାଟିବାର ଆନନ୍ଦ ଉପଭୋଗ କରି ପାରିଲି ନାହିଁ । ସାଧାରଣତଃ ଜୀବନ ଏଠି ଗୋଟିଏ ଫର୍ମୁଲା ମଧ୍ୟରେ ବନ୍ଦୀ । ଏଠି ଚଳିବାକୁ ହେଲେ ସେ ଫର୍ମୁଲାଟି ଶିଖିବାକୁ ହେବ—How do you do ? This is very fine, Splendid, Byby.

ବର୍ଷ୍ଣଙ୍କ ଜମିରୁ ତେଲଖଣି ବାହାରିଛି । ସେ ବହୁତ ଟଙ୍କା ପାଇଛନ୍ତି । ଡାକ୍ତରୀ ବ୍ୟବସାୟ ଜମିରେ ଆଉ ସେପରି ଦୃଷ୍ଟି ନାହିଁ—ସୁଖ ସୌଖୀନ ଜୀବନ । ପୁଅ ତ ନାହିଁ; ଝିଅର ବାହାଘର ପରେ ଜଞ୍ଜାଳ ଶେଷ ।

କଣ ବା ଜଞ୍ଜାଳ ? ଝିଅ ତ ବର ଯୋଗାଡ଼ କରିଛି—କେବଳ ଭୋଜିର ଆୟୋଜନ, ଡକ୍ଟର ବର୍ଷ୍ଣଙ୍କ ପକ୍ଷେ କଣ ବା ବଡ଼ କଥା ?

ଘରଯାକ ବଡ଼ଲୋକଙ୍କର ରୂପ ମଗ୍ନ, ଅଳସ ଡାମ୍ଭିକର ନୁହେଁ; ଶୃଙ୍ଖଳିତ ପ୍ରାଚୁର୍ଯ୍ୟର । ଏଣ୍ଡ ଦମ୍ପତିର ଚଳଣି ବା ଚେହେରାରେ ତାର ହୈନ୍ୟବର୍ଣ୍ଣ ନାହିଁ । ସବୁ ଯେପରିକି ତଳେ ପଙ୍କ ହୋଇ ବସିଯାଇଛି— ପ୍ରଫୁଲ୍ଲ କହ୍ଲାର ଦୁଇଟି ପରି ଫୁଟିଛନ୍ତି କେଶ୍ୱ ଆଉ ଚେଶ୍ୱ ।

## କଣ୍ଡର ଗାର୍ଡ଼ନ୍ ଗ୍ରୀଷ୍ମ ସ୍କୁଲ

ନିଗ୍ରୋ ବସ୍ତି । ଛିଣ୍ଡା କାଗଜ, ଭଙ୍ଗା କାଚ, କଟୁ କଟୁ ମଇଳା ଜମିଛି । ଭଙ୍ଗା ଝରକା, ପଲସ୍ତରା ଛଡ଼ା କାନ୍ଥ, ଦୋକାନ ବଜାରର ଅବସ୍ଥା ଦେଖିଲେ ମନେ ହୁଏ ଏ ଆମେରିକା ନୁହେଁ, ଭାରତର କୌଣସି ଏକ ସହରରେ ବୁଲୁଛି । କେତେକାଂଶରେ ଆମ କଟକ ପରି ଦିଶେ; ପଙ୍କ ବା ଅଲକାତରା ରଙ୍ଗର କର୍ଦ୍ଦମ ନାହିଁ, ଖାଲଖମା ଭରା ରାସ୍ତାରେ ଜାମ୍ ନାହିଁ କି ଝଣ୍ଟ ଲଢ଼େଇ ନାହିଁ ।

ଆମେରିକାରେ ଦରିଦ୍ର କେଉଁଠି ଅଛନ୍ତି ଖୋଜି ଖୋଜି ଏଇ ବସ୍ତିର ଗୋଟିଏ ହାଇସ୍କୁଲରେ ପହଞ୍ଚିଲି । ଯେତେ ଦରିଦ୍ର ହେଲେ ବି ଓଡ଼ିଶାର ଯେ କୌଣସି ସରକାରୀ ହାଇସ୍କୁଲରୁ ଯଥେଷ୍ଟ ଉଚ୍ଚ ସ୍ତରର, ଘରଦ୍ୱାର, ଆସବାବ, ବୈଜ୍ଞାନିକ ଯନ୍ତ୍ରପାତି, ପାଠାଗାର, କ୍ରୀଡ଼ା ବ୍ୟବସ୍ଥା ଦେଖିଲେ ଉଚ୍ଚ ଧାରଣା ଜନ୍ମେ । ଗ୍ରୀଷ୍ମ ଛୁଟି, ପ୍ରାଙ୍ଗଣ, କୋଠରୀ ହାର ଅବହେଳାରେ ମଳିନ ଦିଶୁଚି । ଅଳ୍ପ କେତୋଟି କୋଠରୀ କିନ୍ତୁ ବେଶ ଜମିଛି । କଳା, ସାବଳା ପିଲାସବୁ ନାଚୁଛନ୍ତି; ନଚାଉଛନ୍ତି ନିଗ୍ରୋ ମାଷ୍ଟରାଣୀ । କୃଷ୍ଣପକ୍ଷ ରାତିରେ ଅଗ୍ନିଶିଖା ପରି ଜଳୁଚି ବହଳ ଲିପଷ୍ଟିକ୍ ଦିଆ ଓଠ । କୃଷ୍ଣପକ୍ଷର ରାତି ନାଚୁଛି, ଝିଙ୍କାରୀର ନିଦ୍ରାଳୁ ଛନ୍ଦରେ, ତା ସଙ୍ଗେ ନାଚୁଛନ୍ତି ଏଇ ଖଦ୍ୟୋତଗୁଡ଼ିକ ।

ଅଝାଡ଼ୁଆ, ଅସକଡ଼ା, ନୋଂରା, କାଦୁଆ—ଦାରିଦ୍ର୍ୟର ଶିଖରରେ, ସଙ୍କୀର୍ଣ୍ଣ ବସ୍ତିରେ, ଅଲୋଡ଼ା ଆସିଥିବା, ଅନାବନା ବଢ଼ିଥିବା ଏଇ ସବୁ ଛୁଆ । ସେଣ୍ଟଲୁଇସ ନଗର ମଧ୍ୟରେ ଏଇ ବନ୍ୟତା ମୋ ଧାରଣାର ଅତୀତ । ନିଗ୍ରୋ ଜୀବନର ଜଟିଳତା, ବିଷାଦ ବେଦନା ଦେହେ ଦେହେ ଲିପି ହୋଇ ରହିଛି ଯେପରି ।

ଷଠାଦୁଛୀ ଏମାନଙ୍କ କପାଳରେ ପାଠ ଲେଖି ନ ଥିଲା—ଲକ୍ଷ୍ମୀଛଡ଼ା ଚୂଆଗୁଡ଼ାକ । ଏ ଦେଶରେ ଲକ୍ଷ୍ମୀ ସରସ୍ୱତୀ ସଙ୍ଗାଭୁଣୀ ବସିଛନ୍ତି । ଲକ୍ଷ୍ମୀ ନ ଥିବାରୁ ସରସ୍ୱତୀ ଏଠିକି ବଜେ କଣ ନ ଥିଲେ । ସରକାର ନୂଆ ନୂଆ ଗାଉ ପକାଇଛନ୍ତି, ପାଠ ଲେଖିବେ ବୋଲି ଲଲାଟରେ । ତେଣୁ ସମସ୍ତ ଗ୍ରହଗୁଣୀ ଛୁଟି ଉପଭୋଗ କରୁଥିଲାବେଳେ ଆଜନ୍ମ ଅବସରଭୋଗୀ ଏଇ ଦଳଭାଗାମାନଙ୍କର ସିଦ୍ଧି ଆରମ୍ଭ ହୋଇଛି । କିନ୍ତୁ ଦୁଧ ଖଡ଼ିରେ ‘୦’ ଘୋଷି କପାଳରେ ମାରିବା ଏ ନୂଆ ନୁହେଁ । ପାଠମାଆମାନେ ଏକାବେଳେ ସବୁ ପାଠ ଦେଇଦେବେ ବୋଲି ବସିଛନ୍ତି । ବୋଲି ହେଉଛି ଗୀତ, ଆବୃତ୍ତି କରୁଛନ୍ତି କବିତା, ଶିଖା ହେଉଛି ନାଚ, ନାନା ବାଦ୍ୟଯନ୍ତ୍ର; ଅଙ୍କା ହେଉଛି ଝୁଞ୍ଜା ଡ଼ାଳି । ଗଛପତ୍ର, ପୋକଜୋକ ବିଷୟରେ ମଧ୍ୟ ଶିକ୍ଷା ଦିଆହେଉଛି । କାନ୍ଥଯାକ ମଡ଼ାହୋଇଛି ହରେକ ରକମ୍ ପକ୍ଷୀର ଛବି । ଟେବୁଲ୍ ଉପରେ ଥୁଆହୋଇଛି ବହୁପ୍ରକାର ଛବିବହି, ଖେଳଣା; ଖେଳୁ ଖେଳୁ ଛବି ଦେଖୁ ଦେଖୁ ପିଲ ପଢ଼ିପିବେ ।

କାଚ ଘରେ ରଙ୍ଗୀନ୍ ମାଛସବୁ ଖେଳୁଛନ୍ତି; ପ୍ଲାଷ୍ଟିକ୍ ଜୀବ ଜନ୍ତୁର ସ୍ଲେଟ ଛଡ଼ଆଖାନାହିଁ । ଏ ସବୁ ବ୍ୟତୀତ ଖେଳିବା ଲଗି ପଡ଼ିଆରେ ବୟସକୁ ଗ୍ରହି ବିଭିନ୍ନ ଖେଳର ବ୍ୟବସ୍ଥା ହୋଇଛି । ଆଖି, ଦାନ୍ତ ଓ ସାଧାରଣ ସ୍ୱାସ୍ଥ୍ୟ ପରୀକ୍ଷା ଲଗି ଡାକ୍ତର ଆସୁଛନ୍ତି । ମନୋବୈଜ୍ଞାନିକ ଡାକ୍ତର ମଧ୍ୟ ବାଳକବାଳିକାମାନଙ୍କ ମନ ପରୀକ୍ଷା କରି ଯାଉଛନ୍ତି । ଘରେ କପରି ଜିନିଷପତ୍ର ସଜାଡ଼ି ରଖିବାକୁ ହେବ, ଖାଇବା ପିଇବା ଲଗି ଟେବୁଲ୍ କପରି ସଜାଇବ, ଭଦ୍ରଲୋକ ଆସିଲେ କପରି ବ୍ୟବହାର କରିବ, ଇତ୍ୟାଦି ଶିକ୍ଷା ଦିଆହେଉଛି । ବ୍ରେକ୍‌ଫାଷ୍ଟ ଶେଷ ହୋଇଛି, ଲଞ୍ଚ୍ ଲଗି ମାଂସ, ଦୁଧ, ଫଳ, ରୁଟି ପ୍ରଭୃତି ରଖାଯାଇଛି । ମଝେ ମଝେ ଚକୋଲେଟ୍ ବିତରଣ କରାହେଉଛି । ଏ ସବୁ ଦେଖି ମନ ହେଲ—ପିଲ ହୋଇଯାନ୍ତି ହେଲେ ! କି ଗୋଟାଏ ବିକଟ ସ୍ମୃତି ମନେ ପଡ଼ିଗଲ—ଉଠ୍ ବସ୍, ଚୌକିବସା, ମଡ଼ିଆଣିକୁଳର, ଧୂଳିଆ ଭଙ୍ଗା ଗୁହାଳୀ ଘରର, ଶାସ୍ତିଦାତା ଭୟଙ୍କର ମାଷ୍ଟରଙ୍କର ।

## ହେଡ଼୍‌ଷ୍ଟାର୍ଟ

ହେଡ଼୍‌ଷ୍ଟାର୍ଟ ଯୁକ୍ତରାଷ୍ଟ୍ରର ଗୋଟିଏ ଶିଶୁକଲ୍ୟାଣ ଅନୁଷ୍ଠାନ । ନିଉୟର୍କ, ଓ୍ୱାଶିଂଟନ୍, ଚିକାଗୋ, ଆଟଲାଣ୍ଟା, ସେଣ୍ଟଲୁଇସ, ଅଷ୍ଟିନ୍, କାଂସସ୍‌ସିଟି, ସାନ୍‌ଫ୍ରାନ୍‌ସିସକୋ ପ୍ରଭୃତି ନଗରମାନଙ୍କରେ ଏହାର କେନ୍ଦ୍ରମାନ ରହିଅଛି । କୁବେର ଦେଶରେ ଦୁଃଖୀ, ଦରିଦ୍ର କେଉଁଠି ଅଛନ୍ତି ଖୋଜି ଖୋଜି ମୁଁ ସେଣ୍ଟଲୁଇସର ହେଡ଼୍‌ଷ୍ଟାର୍ଟ ଅଫିସରେ ପହଞ୍ଚିଲି । ଏହାର ସେକ୍ରେଟରି ମୋତେ ଅଫିସରେ ବୁଲାଇ କେତେକ କର୍ମୀଙ୍କ ସହିତ ପରିଚିତ କରାଇଦେଲେ, ଏହି ଅନୁଷ୍ଠାନ ତରଫରୁ ପ୍ରକାଶିତ କେତେକ ପାମ୍ଫଲେଟ୍ ମଧ୍ୟ ଉପହାର ଦେଲେ ।

ନିଶ୍ୱ, ନିଃସହାୟ ଶିଶୁକୁ ବିକଶିତ ହେବାର ସମସ୍ତ ସୁଯୋଗ ଦେବା ଏହି ଅନୁଷ୍ଠାନର ଲକ୍ଷ୍ୟ । ସେ ଯେପରି ଭଙ୍ଗା ଦଦରା ଘରେ ସନ୍ତସନ୍ତିଆ ଜାଗାରେ ନ ରହେ, ଚିରା କୋତରା ନ ପିନ୍ଧେ, ବେଶୀ ଭିଟାମିନ୍ ଥିବା ଖାଦ୍ୟ ଓ ମାଗଣା ଚିକିତ୍ସା ପାଏ, ଦେଖିବା ଏହି ଅନୁଷ୍ଠାନର କର୍ତ୍ତବ୍ୟ । ଶିକ୍ଷକଙ୍କ ଦରମା, ଘରଭଡ଼ା, ଯାନବାହନର ସମସ୍ତ ଖର୍ଚ୍ଚ ଏହା ବହନ କରେ, ପ୍ରତି ଛାତ୍ର ବା ଛାତ୍ରୀଙ୍କ ଲାଗି ଇନ୍‌ସ୍ୟୁରେନ୍‌ସ କରେ, ଖାଦ୍ୟପେୟ, ଶିକ୍ଷା, ସ୍ୱାସ୍ଥ୍ୟ, ପୁସ୍ତକଯୋଗାଣ ପ୍ରଭୃତି ଯାବତୀୟ ଦାୟିତ୍ୱ ଏହି ଅନୁଷ୍ଠାନ ଉପରେ । ଏହା ଛାତ୍ରଛାତ୍ରୀଙ୍କ ମନରେ ଆତ୍ମବିଶ୍ୱାସ ଜାଗ୍ରତ କରେ, ଆତ୍ମପ୍ରକାଶର ସମସ୍ତ ସୁଯୋଗ ଦିଏ ।

କିପରି ଚିନ୍ତା କରିବାକୁ ହେବ, ଯୁକ୍ତି କରିବାକୁ ହେବ, ସ୍ପଷ୍ଟ ଭାବେ କଥା କହିବାକୁ ହେବ, ପରିସ୍ଥିତିକୁ ବୁଝିବା ବାଳକ ବାଳିକାଙ୍କ ପକ୍ଷେ ସମ୍ଭବ ହେବ, ମନରୁ ନୈରାଶ୍ୟ, ଭୟ, ଅସହାୟ ଭାବ, ଗୌଣେଇ ଦୂର ହେବ, ସେମାନେ ସାଙ୍ଗସାଥୀମାନଙ୍କ ସହିତ ଭଲ ଭାବେ ମିଶି ପାରିବେ, ଧର୍ମବଳୟ ପ୍ରସାରିତ ହେବ, ନୂଆ ନୂଆ କଥା ଶିଖିବା ଲାଗି ମନରେ ଆଗ୍ରହ ଜାତ ହେବ, ଦୁର୍ଦ୍ଦଶାର ପ୍ରତିକାର ଲାଗି ସେମାନେ ନିର୍ଭୀକ ଭାବରେ ପୁଲିସ୍, ଡାକ୍ତର, ଶିକ୍ଷକ ଓ ଲୋକମଙ୍ଗଳ ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କର ସମ୍ମୁଖୀନ ହୋଇ ପାରିବେ, ଯେଉଁମାନେ ସେମାନଙ୍କ

ଆଦର୍ଶ ସ୍ୱରୂପ ସେମାନଙ୍କଠାରୁ କପରି ଚଳଚଳଣ ଓ କଥାଭାଷା ଶିକ୍ଷା କରିପାରିବେ, ସାନଭାଇ ଓ ଭଉଣୀମାନଙ୍କୁ ଭଲ କଥା ଶିଖାଇବାକୁ ସମର୍ଥ ହେବେ, ସେମାନଙ୍କ ମନରେ ଯେପରି ଆତ୍ମସମ୍ମାନ ଜାଗ୍ରତ ହୋଇ ପାରିବ, ହେଡ୍‌ଷ୍ଟାର୍ଟ ବ୍ୟବସ୍ଥା କରେ ।

ଏହି କଲ୍ୟାଣକର କାର୍ଯ୍ୟରେ ଦେଶର ବିଶେଷଜ୍ଞମାନଙ୍କ ସହଯୋଗ ମିଳେ । ଦାନ୍ତ ଡାକ୍ତର, ଆଖି ଡାକ୍ତର, ନର୍ସ ପ୍ରଭୃତି ବିନା ଫିରେ ଗ୍ରୁପ୍‌ରେ ଶିଶୁମାନଙ୍କୁ ଦେଖିଥାନ୍ତି । ସରକାର ଏ ବାବଦରେ ଯାବତୀୟ ବ୍ୟୟର ୯୦ ଭାଗ, ଜନସାଧାରଣ ୧୦ ଭାଗ ବହନ କରିଥାନ୍ତି ।

ଏହି ଛାତ୍ରଙ୍କୁ ପଢ଼ାଇବା ଲାଗି ସ୍ୱତନ୍ତ୍ର ଧରଣର ଶିକ୍ଷକ ଆବଶ୍ୟକ । ଶିକ୍ଷକତା ଏକ ଅଧମ ଉଦ୍ଧାରଣ ପନ୍ଥା ନୁହେଁ । ରାମ, ଦାମ, ଶାମ, ଯେ କେହି ଡିଗ୍ରୀ ହାସଲ କଲେ ଶିକ୍ଷକ ହୋଇପାରିବେ, ଏହା ନୁହେଁ । ଦେଶର ଯେ କୌଣସି ପଦସ୍ଥ ବ୍ୟକ୍ତିପରି ଶିକ୍ଷକ ସମ୍ମାନାସ୍ପଦ । ଯୋଗ୍ୟ ବ୍ୟକ୍ତି ଶ୍ରଦ୍ଧା ଓ ସମ୍ଭ୍ରମରେ ଏହି କାର୍ଯ୍ୟରେ ଯୋଗ ଦିଅନ୍ତି । ଛାତ୍ରଙ୍କ ପ୍ରତି ସହାନୁଭୂତିଶୀଳତା, ଆତ୍ମପ୍ରକାଶଶକ୍ତି ଶିକ୍ଷକଙ୍କ ଗୁଣଭାବେ ଗଣା । ଉତ୍ତମ ଶିକ୍ଷକ ଛାତ୍ରମାନଙ୍କ ସହିତ ଭଲଭାବେ ମିଶିପାରନ୍ତି, ଖେଳ ମେଳ ଓ ପିକ୍‌ନିକ୍‌ରେ ମନଖୋଲା ଆନନ୍ଦରେ ଯୋଗ ଦେଇପାରନ୍ତି; ଛାତ୍ରମାନଙ୍କ ମନକୁ ସ୍ଫୂର୍ତ୍ତିଶୀଳ ଓ କ୍ରିୟାଶୀଳ କରିବାର ଶକ୍ତି ନ ଥିଲେ ଶିକ୍ଷକ ହେବା ବିଡ଼ମ୍ବନା, ସେ ଉଚ୍ଚକୋଟୀର ମନୁଷ୍ୟ ନ ହୋଇଥିଲେ ଛାତ୍ରମାନଙ୍କୁ ମଣିଷ କରି ଗଢ଼ିବେ କପରି ? ସମାଜ ବିଜ୍ଞାନ, ମନୋବିଜ୍ଞାନ, ଗୃହ ଅର୍ଥନୀତି ବିଷୟକ ଜ୍ଞାନ ଶିକ୍ଷକର ସ୍ୱତନ୍ତ୍ର ଯୋଗ୍ୟତା ଭାବରେ ଧର୍ଯ୍ୟ ଯାଇଥାଏ ।

ଛାତ୍ର ଜୀବନ ଗଠନରେ ନର୍ସରୀ ସ୍କୁଲ ବା କିଣ୍ଡର ଗାର୍ଟନର ଶିକ୍ଷକ ସାଧାରଣଙ୍କ ସହଯୋଗ ପାଇଥାଏ । ବ୍ୟବସାୟୀ ଶସ୍ତାରେ ଉତ୍ତମ ଖାଦ୍ୟ ଓ ବସ୍ତ୍ର ଯୋଗାନ୍ତି, ଡାକ୍ତରମାନେ ସ୍ୱାସ୍ଥ୍ୟର ଦାୟିତ୍ୱ ନିଅନ୍ତି । ତା ଛଡ଼ା ଛାତ୍ରଙ୍କୁ ଏ କେନ୍ଦ୍ରରୁ ସେ କେନ୍ଦ୍ରକୁ ନେବା, ଦୂରବର୍ତ୍ତୀ ଅଞ୍ଚଳକୁ ବୁଲେଇ ନେବା, ପିଲାଙ୍କୁ ଉତ୍ତମ ଖାଦ୍ୟ ଦେବା ଲାଗି ପିତାମାତାଙ୍କୁ ଶିଖେଇବା

ତା'ପରିଭ୍ରୁ ଦେଶର କଲ୍ୟାଣକାମୀ ବ୍ୟକ୍ତିମାନେ ବହନ କରିଥାନ୍ତି । ପିଲାଙ୍କ ଲାଗ ଖେଳଣା ସଂଗ୍ରହ, ବଡ଼ଲୋକ ବ୍ୟସ୍ତର ହିସାବ ରଖିବା, ସଜଡ଼ା କରିବା, ଗରିବଙ୍କ ବାର୍ଷିକ ବଜେଟ୍ ପ୍ରସ୍ତୁତ କରିବା ତାପ୍ରଭୃତି ମଧ୍ୟ ବରିଷ୍ଠ ବ୍ୟକ୍ତିମାନେ ବହନ କରିଥାନ୍ତି ।

ଏଠା ବ୍ୟବସ୍ଥା ଦେଖି ମନେ ପଡ଼ିଲା ଭାରତୀୟ ଓ ଓଡ଼ିଆ ପିଲାଙ୍କ କଥା—

'ଗ୍ଳେଟ ଗ୍ଳେଟ ନେବଲେ ବାଛୁରି ଚରାଉଁ
ବଡ଼ ବଡ଼ ହେଲେ ହଳ ଧରି ଯାଉଁ ।'

ଲଙ୍ଗଳା, ଘୁଙ୍ଗୁଳା, କଉପୁକମର, କୋଚର, ଅସଣା ପିଲାସବୁ—ଅନିଶ୍ଚିତ ଭବିଷ୍ୟତ ସେମାନଙ୍କର—ସବୁ ବାଟ ବନ୍ଦ; କେଉଁ ଭିକ ମାଗନ୍ତି, କେଉଁ ଘରେ ପକେଟମାର ହୁଅନ୍ତି; ଭୋକ ଆଉ ରୋଗରେ କଲବଲ ଅଭାଗାମାନେ ଆଖିରେ ନାଚିଗଲେ ମୋର ମୁହୂର୍ତ୍ତକ ଲାଗି—କୋରଡ଼ ଆଖି, ଉଚା ଦାନ୍ତ ଅଉ ଖାଲପେଟ ଦେଖାଇ ।

## ଗରିବଙ୍କ କୋଠାଘରେ

ଏଠି ଗାଛମୂଳ କାନ୍ଥ ବା କୁଆଁ ଶିଆଁ ଘର ନାହିଁ । ଯେତେ ଗରିବଗୁରୁବା ହେଲେ ବି ଭଲ ଖାଏ, କୋଠାଘରେ ରହେ । ତଥାପି କୁବେର ରାଜାଙ୍କର ଏସବୁ ନିକୃଷ୍ଟ ପ୍ରଜା । ଏଠି ଆମ ଭାରତୀୟ ସହରର ଗନ୍ଧିଗଳି ନାହିଁ, କାରଖାନା ଅଞ୍ଚଳର ନର୍ଦ୍ଦମା କୂଳର ବସ୍ତି ନାହିଁ । ତଥାପି ଘରଗୁଡ଼ିକ ଗ୍ଳେଟ ଗ୍ଳେଟ, ଲାଗାଲାଗି; ଉଦ୍ୟାନ ବା ତୃଣପ୍ରାନ୍ତର ନାହିଁ; ନାସ୍ତିବାଚକ ଅନେକ କିଛି ହୁଏତ ଅଛି; ଏମାନେ ଦରିଦ୍ର, ବଞ୍ଚିତ, ଅନ୍ୟ ଅଞ୍ଚଳ ତୁଳନାରେ ହତଭାଗ୍ୟ । ଏହିପରି ଲମ୍ବ ଘର ଧାଡ଼ି ମଧ୍ୟରେ ନିଗ୍ରୋ ରହନ୍ତି । ଆମ ମଜଦୁର୍ ଛ'ପଇସାରୁ ଏବେ ଛଅଣାକୁ ଉଠିଛନ୍ତି । ମୂଲିଆ ମଜଦୁର୍‌ଙ୍କ ଅପେକ୍ଷା ଅଳ୍ପ ରୋଜଗାର କରନ୍ତି । ସେ ତୁଳନାରେ ଏଠା ଶ୍ରମିକ ବହୁତ ଉଚ୍ଚରେ । ଘଣ୍ଟାରେ ସେମାନଙ୍କ ମୂଲ ହିସାବ ହୁଏ । ଘଣ୍ଟାକୁ ଜଣେ ମଜୁରିଆ ପାଏ ଏକ ଡଲାର୍ ଷାଠିଏ

ସେଣ୍ । ଓଭର୍ ଟାଇମ୍ କାମ କଲେ ଏହାର ଦେଡ଼ା ମିଳେ । ଶନିବାର ରବିବାର ଦୁଇଦିନ ଛୁଟି । ଶନିବାରେ ସେ କାମ କଲେ ଅନ୍ୟ ଦିନର ଦେଡ଼ା ମଜୁରୀ ନିଏ, ରବିବାର ଦିନର ମଜୁରୀ ସାଧାରଣ ଦିନ ମଜୁରିର ଦୁଇଗୁଣ । ବାର୍ଷିକ ଚୁଶହଜାର ଡଲାରରୁ ଅଳ୍ପ ଆୟ କରୁଥିବା ବ୍ୟକ୍ତି ଅୟକରରୁ ଅବ୍ୟାହତି ପାଏ । ସରକାରୀ କ୍ଲିନିକ୍‌ରେ ବିନା ବ୍ୟୟରେ ତାର ଚିକତ୍ସା ହୁଏ; ପବ୍ଲିକ୍ ସ୍କୁଲରେ ତାର ପିଲାଙ୍କୁ ଦରମା ଦେବାକୁ ପଡ଼େନାହିଁ ।

ଷୋଳ ବର୍ଷରୁ କମ୍ ବୟସ୍କ ଶ୍ରମିକ ହେବା ବେଆଇନ୍ । ସ୍ତ୍ରୀ ପୁରୁଷଙ୍କ ମଜୁରୀ ମଧ୍ୟରେ ତାରତମ୍ୟ ନାହିଁ । ସ୍ତ୍ରୀମାନେ ସନ୍ତାନ ଜନ୍ମ କଲେ ପୁରା ଦରମାରେ ସ୍ୱତନ୍ତ୍ର ଛୁଟି ପାଇଥାନ୍ତି । ତଥାପି ଏଇ ମଜୁରିଆମାନଙ୍କର ଜୀବନର ମାନବୃଦ୍ଧି ଲାଗି ଚେଷ୍ଟାର ଅନ୍ତ ନାହିଁ ।

ଅଳ୍ପ ବେତନଶ୍ରେଣୀଙ୍କ ଲାଗି "Human Development Corporation" ଭଳି ଲୋକକଲ୍ୟାଣ ଅନୁଷ୍ଠାନମାନ ଗଢ଼ା ଯାଇଛି । ଏ ଦିଗ ପ୍ରତି ଲୋକ ଦୃଷ୍ଟି ଆକର୍ଷଣ କରିବା ଲାଗି 'Gain' ନାମକ ପତ୍ରିକା ପ୍ରକାଶିତ ହେଉଛି । ଦାରିଦ୍ର୍ୟ ବିରୁଦ୍ଧରେ ସଂଗ୍ରାମ ଉକ୍ତ ଦୁଇ ଅନୁଷ୍ଠାନର କାର୍ଯ୍ୟ ।

ଉକ୍ତ ପତ୍ରିକା ଦାରିଦ୍ର୍ୟ କି ରୂପରେ କେଉଁଠି ରହିଅଛି, ତାକୁ ଦୂର କରିବା ଲାଗି କି ଉପାୟ ଅବଲମ୍ବନ କରାଯାଇପାରେ, ଏ ସମ୍ପର୍କରେ ନାନା ଆଲୋଚନାମୂଳକ ପ୍ରବନ୍ଧ ପ୍ରକାଶ କରେ । ଏହାର ମତରେ ଦରିଦ୍ରକୁ ଆୟକରରୁ ଅବ୍ୟାହତି ଦେଇ ଦେଲେ ତା ଜୀବନର ମାନବୃଦ୍ଧି ହୋଇପାରିବ ନାହିଁ । ଦାରିଦ୍ର୍ୟର ସାମାଜିକ ଓ ମନୋବୈଜ୍ଞାନିକ କାରଣମାନ ଦୂର କରିବାକୁ ହେବ । ମାନବତାର ଉଚିତ ମର୍ଯ୍ୟାଦା ରକ୍ଷା କରିବାକୁ ହେବ । ଯୋଗ୍ୟତା ବିବେଚନାରେ ନିମ୍ନ ଆୟକାରୀଙ୍କୁ ଉଚିତର ବୃତ୍ତି ଦେବାକୁ ହେବ; ଦେଇ ନ ପାରିବା ପର୍ଯ୍ୟନ୍ତ ତାକୁ ଅର୍ଥିକ ସାହାଯ୍ୟ ଦେବାକୁ ହେବ । କେବଳ ଅନ୍ନ ବା ବସ୍ତ୍ରାଭାବ ଦୂର କଲେ ଦାରିଦ୍ର୍ୟ ସମସ୍ୟାର ସମାଧାନ ହେବନାହିଁ । ଦାରିଦ୍ର୍ୟବୋଧ ଦୂର କରିବାକୁ

ହେବ । ଦାରିଦ୍ର୍ୟର କାରଣ, ଧନୀର ଇଚ୍ଛା ପର ଉପରେକର । ଗୋଟିଏ ନୂତନ ବ୍ୟବସାୟ ଖୋଲିବା କିମ୍ବା ଜମି କିଣି ଚାଷ କରିବା ଲାଗି ତାକୁ ଆର୍ଥିକ ସାହାଯ୍ୟ ଦିଅ । ସମସ୍ତ ଦ୍ୱାର ତା ଲାଗି ଖୋଲିଦିଅ । କେବଳ ନିମ୍ନତମ ଆହାର ଓ ବସ୍ତ୍ର ଦେଇ ତୁଷ୍ଟ ହେଲେ ଚଳିବ ନାହିଁ । ଉପଯୁକ୍ତ ମାନବିକ ମର୍ଯ୍ୟାଦା ଦେଇ ସେମାନଙ୍କୁ ପ୍ରତିପୋଷଣ କରିବାର ଷମତା ଯୁକ୍ତରାଷ୍ଟ୍ରର ରହିଅଛି ।

ଡେଭଲପ୍‌ମେଣ୍ଟ କର୍ପୋରେସନ୍ ଗରିବ ଲୋକ ଝିଅଙ୍କୁ ସର୍ଟହାଣ୍ଡ, ଟାଇପ, ନର୍ସିଂ ପ୍ରଭୃତି ଶିକ୍ଷା ଦିଏ, ପୁଅମାନଙ୍କ ଲାଗି ନାନା ଢଙ୍ଗରେ ବୈଷୟିକ ଶିକ୍ଷାର ବ୍ୟବସ୍ଥା କରେ । ଅଳ୍ପ ବ୍ୟୟରେ କିପରି ଭଲ ଭାଇଟାମିନ୍ ଯୁକ୍ତ ଖାଦ୍ୟ, ମଜଭୁତ ଓ ରୁଚିକର ବସ୍ତ୍ର କିଣା ଯାଇପାରେ, ଅଳ୍ପ ଘରେ କିପରି ଭଦ୍ରଲୋକ ଭଳି ସେ ଚଳିପାରେ; ବର୍ତ୍ତମାନ ଗୃହକର୍ମରୁ ଉନ୍ନତର ଗୃହକର୍ମକୁ ଯିବା ଲାଗି କି ଉପାୟ ଅବଲମ୍ବନ କରାଯାଇପାରେ, ପରିବାରର ଅଧିକାଂଶଙ୍କ ଲାଗି ଯେପରି କିଛି କିଛି ରୋଜଗାରର ପନ୍ଥା ମିଳିଯାଏ — ଯାବତୀୟ ବ୍ୟବସ୍ଥା ଏହି ଅନୁଷ୍ଠାନକୁ କରିବାକୁ ହୁଏ ।

## ସେଣ୍ଟଲୁଇସ୍ ପୋଷ୍ଟ ଡେସ୍‌ପାଚ୍

ଦଶ ଜଣରୁ କମ୍ ହେଲେ ଏହି ସମ୍ବାଦପତ୍ରର ଅଫିସ୍ ଦେଖିବା ଲାଗି ଅନୁମତି ମିଳେ ନାହିଁ—ଅର୍ଥାତ୍ ଦଳ ସୁବିଧା ପାଏ, ବ୍ୟକ୍ତି ନୁହେ । ମୁଁ ଆଉ ମି. ଗୁପ୍ତ—ଆମେ ମାତ୍ର ଦୁଇଜଣ ! "ଭାରତର ଜଣେ ପ୍ରତିନିଧି ଭାବରେ ଏସିଆ ଲେଖକ ସମ୍ମୁଖ ସମ୍ମେଳନରେ ଯୋଗ ଦେବାକୁ ଆସିଛି —ମୁଁ ଜଣେ ଲେଖକ । ଦଳଟିଏ ଯୋଗାଡ଼ କରିବି କିପରି ?" ସଙ୍ଗେ ସଙ୍ଗେ ଅନୁମତି ମିଳିଗଲା । ଗୃହକ ଗୋଟିଏ ଦଳ ସଙ୍ଗେ ଆମକୁ ମିଶାଇ ଦେଲେ । ତାପରେ ଦୌଡ଼—ସମ୍ପାଦକରୁ ସହ ସମ୍ପାଦକ ଅଫିସ୍, ସମ୍ବାଦ ସରବରାହରୁ କମ୍ପୋଜିଂ, ଟାଇପିଂ, ଛପାଖାନାରୁ ବନ୍ଧାଇ କଳ ପର୍ଯ୍ୟନ୍ତ । ଗୋଟିଏ ସ୍ଥାନରେ ଅଲେଖା କାଗଜ ପଶୁଛି—ଅନ୍ୟ ସ୍ଥାନରେ ଅଶୀ ପୃଷ୍ଠାର ସମ୍ବାଦପତ୍ର ସୂତାରେ ବନ୍ଧା ହୋଇ ବାହାରୁଛି । ଗୃହକ

ଆମ ନାମ ଛପାଇ ବିତରଣ କଲେ, ବୈଠକଖାନାରେ ବସାଇ କଫି, କୋକୋ ପ୍ରଭୃତି ନାନାବିଧ ପାନୀୟ ପରିବେଷଣ କଲେ ।

ଆମେରିକାରୁ ପ୍ରକାଶିତ ସମ୍ବାଦପତ୍ରମାନଙ୍କ ମଧ୍ୟରେ 'ଡେସପାଚ'ର ସ୍ଥାନ ଚତୁର୍ଥ । ଅଫିସର ପ୍ରବେଶ ଦ୍ୱାରରେ ଏ ପତ୍ରିକାର ଆଦର୍ଶ ଖୋଦିତ ହୋଇଛି—ଡେସ୍‌ପାଚ କୌଣସି ଦଳର ଅନ୍ତର୍ଭୁକ୍ତ ନୁହେଁ, ନ୍ୟସ୍ତସ୍ୱାର୍ଥର ପ୍ରତିକୂଳ, ଦୀନ ଦୁଃଖୀ ପ୍ରତି ତାର ଅନ୍ତରର ସମବେଦନା ରହିଅଛି । ସମାଜସଂସ୍କାର ତାର କାର୍ଯ୍ୟ; ସର୍ବସାଧାରଣଙ୍କ ସର୍ବାଙ୍ଗୀନ ଉନ୍ନତି ତାର ଲକ୍ଷ୍ୟ । ସେ ଅନ୍ୟାୟ, ଅନାଚାର ପ୍ରତି ଚିର ଖଡ୍‌ଗହସ୍ତ, ଯୁକ୍ତରାଷ୍ଟ୍ରର ଗଣତନ୍ତ୍ର ସହିତ ଏହି ପତ୍ରିକାର ଭାଗ୍ୟ ଜଡ଼ିତ ।

ଏହି ପତ୍ରିକା ପୃଥିବୀର ପାଠକମାନଙ୍କୁ ସର୍ବାଧିକ ସମ୍ବାଦ ଯୋଗାଇବାକୁ ଯତ୍ନ କରେ । ପରିଚାଳକ ସମ୍ପାଦକ, କେଉଁ ସମ୍ବାଦ କେତେ ସ୍ଥାନ ପାଇବ, ପତ୍ରିକାର କେଉଁ ସ୍ଥାନରେ ପ୍ରକାଶିତ ହେବ, ସ୍ଥିର କରନ୍ତି । ସମ୍ବାଦଗୁଡ଼ିକ ତିନି ଭାଗରେ ବିଭକ୍ତ—ବିଶ୍ୱ ସମ୍ବାଦ, ଜାତୀୟ ସମ୍ବାଦ ଓ ଲୌକିକ ସମ୍ବାଦ; ଜାତୀୟ ଓ ଆନ୍ତର୍ଜାତିକ ସମ୍ବାଦର ପ୍ରାଥମିକ ସମ୍ପାଦନା ଟେଲିଗ୍ରାଫ ଓ କେବଲ୍ ଡେସ୍କରେ, ଲୌକିକ ସମ୍ବାଦ ସମ୍ପାଦନା ସିଟି ଡେସ୍କରେ ହେଉଛି ।

ତିନୋଟି ସିଫଟରେ କାର୍ଯ୍ୟ ହେଉଛି, ପ୍ରତି ସିଫ୍‌ଟରେ ପାଞ୍ଚଶ ଜଣ କର୍ମୀ ଆସନ୍ତି । ଅହୋରାତ୍ର ଅଫିସ ଖୋଲା ।

କମ୍ପୋଜ ରୁମ୍ ଦୁଇ ଭାଗରେ ବିଭକ୍ତ—ସମ୍ବାଦ ଓ ବିଜ୍ଞାପନ । ୬୮ଟି ଟାଇପ ସେଟିଂ କଳ ଚାଲିଛି । ଏକାବେଳକେ ବାର ପୃଷ୍ଠାର ତିରିଶ ହଜାର ଧାଡ଼ି କମ୍ପୋଜ ହୋଇ ଯାଉଛି । ପାଞ୍ଚୋଟି ରୋଟାରି ମେସିନ୍‌ରେ ଛପା କାର୍ଯ୍ୟ ଚାଲିଛି ।

ସମ୍ପାଦକୀୟ ସମ୍ବାଦପତ୍ରର ବିବେକ । ଡେସ୍‌ପାଚ, ନିରପେକ୍ଷ, ସାହସିକ, ସ୍ୱାଧୀନଚେତ୍ତା । ବହୁ ପତ୍ରିକାରେ ଉଦ୍ଧୃତ ବା ପୁନଃମୁଦ୍ରିତ ଡେସ୍‌ପାଚର ସମ୍ପାଦକୀୟ ସର୍ବତ୍ର ସମ୍ମାନିତ ।

ରାଜନୀତି, ଅର୍ଥନୀତି, ସମାଜନୀତି, ବିଜ୍ଞାନ, ସାହିତ୍ୟ ପ୍ରଭୃତିର ବିଶିଷ୍ଟ ପଣ୍ଡିତ ଡେସ୍‌ପାଚ୍‌ରେ ପୃଞ୍ଜୀଭୂତ । ସଂକ୍ଷେପରେ ଜ୍ଞାନର ସାର ମର୍ମ ପରିବେଷଣ କରିବାକୁ ସେମାନେ ସମର୍ଥ । ଗ୍ରହସାହା କମ୍ବା କନ୍ତୁ ନବୀନ ଉଦ୍ଭାବନର ଆଲୋଚନାରେ ଡେସ୍‌ପାଚ ଅଗ୍ରଣୀ ହୁଏ ।

ଯେପରି ଗୁରୁଗମ୍ଭୀର ସମ୍ପାଦକ ଲଘୁ ଆନନ୍ଦ ପରିବେଷଣରେ ଏହି ପତ୍ରିକା ତତ୍ପର । ହାସ୍ୟରସାତ୍ମକ ସମ୍ବାଦ ଗଳ୍ପାକାରରେ ପ୍ରକାଶିତ ହୁଏ । ସାଧାରଣ ଘଟଣାକୁ ନାଟକୀୟ ଭଙ୍ଗୀରେ ପ୍ରକାଶ କରିବା ଏହାର ଏକ ବିଶେଷତ୍ୱ ! କାର୍ଟୁନ, ମାନଚିତ୍ର ଓ ବହୁ ରଙ୍ଗୀନ ଛବି, ଖେଳ ସମ୍ବାଦ, ସଙ୍ଗୀତ, କଳା, ସାହିତ୍ୟ, ଖାଦ୍ୟ, ବାସଗୃହ, ଉଦ୍ୟାନ; ଭ୍ରମଣ, ଫ୍ୟାସନ; ଗୃହ, ବିବାହ ଓ ଯାନବାହନାଦି ସମ୍ପର୍କରେ ବହୁ ଲେଖା ରବିବାର ଦିନ ପ୍ରକାଶ ପାଏ । ଏହାର ନାରୀ ସଂଖ୍ୟା ଏକ ସ୍ୱତନ୍ତ୍ର ଆକର୍ଷଣ ।

ଏହି ପତ୍ରିକାର ପୃଷ୍ଠା ସଂଖ୍ୟା ୮୦; ରବିବାର ଦିନ ଏହା ଏକ ଶତପୃଷ୍ଠା ସମ୍ବଳିତ ହୋଇଥାଏ । ଏହାର ଦୈନିକ ଗ୍ରାହକ ତିନି ଲକ୍ଷ ଷାଠିଏ ହଜାର । ରବିବାର ସଂଖ୍ୟାର ଗ୍ରାହକ ଛ' ଲକ୍ଷ ।

ଏହି ପତ୍ରିକାର ଦୁଇଗୋଟି ବ୍ୟୋମଯାନ ରହିଛି । ସେମାନେ ଅମେରିକାର ପଚିଶ ଗୋଟି ପ୍ରଦେଶକୁ ସମ୍ବାଦ ପତ୍ର ବୋହି ନେଇଥାନ୍ତି । ବିଶିଷ୍ଟ ପଣ୍ଡିତ, ବ୍ୟବସାୟୀ, କୃଷକ, ଚାକିରିଆ ଓ ଛାତ୍ରମାନେ ଏହାର ଗ୍ରାହକ । ଯେଉଁମାନେ ସାମ୍ବାଦିକତା ପଢ଼ନ୍ତି, ସେମାନେ ଏହି ପତ୍ରିକାରୁ ବହୁ ସାହାଯ୍ୟ ପାଇଥାନ୍ତି ।

ପୁଲିତ୍‌ଜର ହଙ୍ଗେରୀର ଅଧିବାସୀ । ସେ ସୈନ୍ୟ ବିଭାଗରେ କାର୍ଯ୍ୟ କରୁଥିଲେ । ତାଙ୍କର କଣ୍ଟିତ ସମ୍ପାଦନା ଅଭିଜ୍ଞତା ଥିଲା । ସେତେବେଳେ ସେଣ୍ଟଲୁଇସ୍‌ରୁ ପୋଷ୍ଟ ଓ ଡେସ୍‌ପାଚ ନାମରେ ଦୁଇଟି ପତ୍ରିକା ପ୍ରକାଶିତ ହେଉଥିଲା । ପୁଲିତ୍‌ଜର୍ ୧୮୭୮ ଡିସେମ୍ବର ବାର ତାରିଖରେ ଦୁଇ ହଜାର ପାଞ୍ଚଶ ଡଲାର୍‌ରେ ଡେସ୍‌ପାଚ କ୍ରୟ କଲେ । ତାଙ୍କ ପାଖେ ଦୁଇ ହଜାର ସାତଶ ଡଲାର୍ ମାତ୍ର ଅବଶିଷ୍ଟ ଥିଲା । ତେଣୁ ସେଥିରେ ସତର ସପ୍ତାହ

ମାତ୍ର କାଗଜ ଚଳପାରେ । ଛାପରେ କଣ ହେବ ? ଏଇ ଭାବନା କରୁଥିଲା ବେଳେ 'ପୋଷ୍ଟ' କାଗଜ 'ଡେସ୍ପାଚ' ସହିତ ମିଶିଲା । ଏହାର ନାମ ହେଲା ମେଣ୍ଟଲ୍ଇନ୍ ପୋଷ୍ଟ ଡେସପାଚ୍ । ଅଳ୍ପକାଳ ମଧ୍ୟରେ ଏହି ପତ୍ରିକା ସୁପ୍ରତିଷ୍ଠିତ ହେଲା—ପୁଲିତ୍ଜରଙ୍କର ବିଶେଷ ଲାଭ ହେଲା ।

ପୃଥିବୀର ଶ୍ରେଷ୍ଠ ଦଶୋଟି ସମ୍ବାଦପତ୍ର ମଧ୍ୟରୁ ପୋଷ୍ଟ ଡେସପାଚ୍ ଗୋଟିଏ । ଏଥିରେ ସର୍ବାଧିକ ବିଶ୍ୱସମ୍ବାଦ ବା ଆମେରିକାର ସମ୍ବାଦ ପ୍ରକାଶିତ । କିନ୍ତୁ ଭାରତ ସମ୍ପର୍କୀୟ ସମ୍ବାଦ ବିରଳ । ଏଠି ଥାଇ ଏହି ପତ୍ରିକା ପଢ଼ି ଭାରତ ସମ୍ପର୍କରେ ପ୍ରାପ୍ୟ କିଛି ଜାଣି ପାରିବ ନାହିଁ ।

ଡେସ୍ପାଚ୍ ସମ୍ବାଦ ସଂଗ୍ରହରେ ବଡ଼ ଅଗ୍ରଣୀ । ୧୯୧୨ରେ ଯେଉଁ-ବେଳେ ଟାଇଟାନିକ୍ ଜାହାଜ ଭୂଷାର ପର୍ବତ ସଂଘର୍ଷରେ ଚୂର୍ଣ୍ଣ ହେଲା, ୧୫୧୭ ଜଣ ବ୍ୟକ୍ତି ପ୍ରାଣ ହରାଇଲେ; କାରପାଥିଆ ନାମକ ଜାହାଜ ୭୦୭ ଜଣଙ୍କୁ ଉଦ୍ଧାର କରିଥିଲା—ସେତେବେଳେ ଏହି ଦୁର୍ଘଟଣାର ସମ୍ବାଦ ପ୍ରଥମେ ଡେ଼ସ୍ପାଚ୍ରେ ପ୍ରକାଶିତ ହୋଇଥିଲା ।

ମିଳିତ ସୈନ୍ୟବାହିନୀ ସଙ୍ଗେ ଡେସ୍ପାଚ୍ର ରିପୋର୍ଟର ବର୍ଲିନରେ ପ୍ରବେଶ କରିଥିଲେ, ନାନା କ୍ଷେତ୍ରରେ ଜୀବନକୁ ବିପନ୍ନ କରି ସେମାନେ ସାଙ୍ଘାତିକ ଘଟଣାର ରିପୋର୍ଟ ସବୁ ପଠାଇଥିଲେ ।

ଡେସ୍ପାଚ୍ ଯୁକ୍ତରାଷ୍ଟ୍ରର ମହାନ୍ ନୈତିକ ବଳ । ଦୁର୍ନୀତି, ଅସାଧୁତା ସହିତ ତାର ସଂଗ୍ରାମ ବଡ଼ ଉଦ୍ଘୋଷିତ । ଡକାୟତି, ନାରୀହରଣ, ଅର୍ଥ ଅପଚୟ, ନାଗରିକ ଜୀବନରେ ଅବହେଳା ପ୍ରଭୃତି ଘଟଣା ପ୍ରତି ଡେସ୍ପାଚ୍ ଲୋକଦୃଷ୍ଟି ଆକର୍ଷଣ କରିଥାଏ । ସେ କାଳର ସମ୍ପାଦକୀୟରେ ଏହି ପତ୍ରିକାର ମହତ୍ ଉଚ୍ଚାକାଂକ୍ଷା ପ୍ରକାଶିତ, ଏହି ବାଣୀ ସବୁକାଳର ସବୁ ଦେଶର ମନକୁ ପ୍ରତିବିମ୍ବିତ କରେ—

ପତ୍ରିକା ପୁସ୍ତକ । ଏଥି ମଧ୍ୟରେ ପୁସ୍ତକ ଜ୍ଞାନକୋଷ ହେବାର ଉଚ୍ଚାକାଂକ୍ଷା ପୋଷଣ କରୁ, କିନ୍ତୁ ସମ୍ବାଦପତ୍ର କାଲି ଯାହାଥିଲା ଆଜ

ତା ଠାରୁ ଭଲ ହେଉ, ତୁମେ ଆତ୍ମର ଭଲ ହେଉ, ଏହା ତାର ଉଚ୍ଚାକାଂକ୍ଷା ।

## ଭାର୍ଯାଙ୍କ ଲାଗି ବିଦ୍ୟାଳୟ (୧୧. ୯. ୭୭)

ସେଣ୍ଟଲୁଇସ୍ ର ‘ଶପରଟୋଣ୍ଡ’ ରଙ୍ଗମଞ୍ଚ; ମଞ୍ଚମୂଳରୁ ଆସନ ଲମ୍ବି ଯାଇଛି; ସବା ପଛ ଆସନ ଉଚ୍ଚତମ । ଆସନ ତଳେ ତଳେ ସୁଡ଼ଙ୍ଗ । ରଙ୍ଗମଞ୍ଚରେ ଦୁଇଟି ଅସ୍ଥାୟୀ ଘର, ଏହି ନାଟକ ଲାଗି ନିର୍ମିତ । ସୁଡ଼ଙ୍ଗ ଭିତରୁ ହଠାତ୍ ଦୁଇଜଣ ବାହାରି ପଡ଼ିଲେ ; ଶର୍ଭୁଡ଼ ମହାନନ୍ଦକ—ଏହି ସହରର କାହାରି ଭରସା ତା ମନକୁ ଆସେ ନାହିଁ । ତା ମତରେ କିଏ ଫୁଲିଲା, କିଏ ଉବଉବୀ, କିଏ କଳକାଣ୍ଡୋଇ; ତାର ବିଶ୍ୱାସ—ଶିକ୍ଷିତ ହେଲେ ଲୋକ ଚତୁର ହୁଏ, ଚତୁର ହେଲେ ଠକାମି ମନୋବୃତ୍ତି ଆସେ । ତେଣୁ ସେ ମନେ ମନେ ସ୍ଥିର କରିଥିଲା—ଶିକ୍ଷିତା କନ୍ୟା ବିଭା ହେବନାହିଁ । କଥା ଅଛି—ଭାର୍ଯା ରୂପବତୀ ଶତ୍ରୁଃ—ସୁନ୍ଦରୀ ପତିବ୍ରତା ହୁଅନ୍ତି ନାହିଁ । ତେଣୁ ସୁନ୍ଦରୀ କନ୍ୟା ବିଭାହେବ ନାହିଁ ।

ସେହିପରି ଚତୁର ଚାକର ମଧ୍ୟ ରଖିବ ନାହିଁ । କାରଣ ବଜାର ସଉଦା କଲେ ଠକି ନିଅନ୍ତି ସେମାନେ, ନାନା ଉପାୟରେ ଚୋରି କରନ୍ତି । ମାଲିକର ମନ ଜାଣି ଚଳୁଥିବାରୁ ସହଜରେ ଧରା ପଡ଼ନ୍ତି ନାହିଁ ।

ଶର୍ଭୁଡ଼ ଜଣେ ଚାକର, ଜଣେ ଚାକରାଣୀ ରଖିଥିଲା—ବୋକା-ବୋକା । ଡାକିଲେ ଦୁହେଁ ବାଡ଼ଆବାଡ଼ ହୋଇ କବାଟ ପିଟନ୍ତି—ଏମିତି କି ମାଲିକ ଉପରେ ପଡ଼ନ୍ତି ।

ଏଇ ଶର୍ଭୁଡ଼ ଘରେ ଗୋଟିଏ କନ୍ୟା—ନାଆଁ ଆଲାଇସ୍; ବନ୍ଧୁ ରଖିଦେଇ ଯାଇଛନ୍ତି ଦୂର ଦେଶକୁ । ଶର୍ଭୁଡ଼ ପାଳନ କରୁଛି, ବିନା ସ୍ୱାର୍ଥରେ ନୁହେଁ । ଆଲାଇସ୍‌କୁ ବିଭା ହେବା ତାର ଇଚ୍ଛା; କିନ୍ତୁ ଆଲାଇସ୍ ? ପାଳକ ଲାଗି କୃତଜ୍ଞତା ପ୍ରକାଶ କଲେ ବି ଅନାଡ଼,

ଅପଦାର୍ଥ ଶିଗୁର୍ଡ଼କୁ ବିଘ୍ନଦେବା ଇଚ୍ଛା ତାର ନ ଥାଏ । ନିଷ୍ପୃହତା ଓ ଆଦିମ ସରଳତାର ଭାନ ସେ କରୁଥାଏ । ଶିଗୁର୍ଡ କଥାରେ 'ହଁ' ମାରୁଥାଏ; ଶିଗୁର୍ଡ଼ ବିଷୟରେ—ସବୁ ଠିକ୍ ଅଛି, କିନ୍ତୁ ହୃଦୟ ତାର ସନ୍ଦେହୀ, ନିଜର ସ୍ତ୍ରୀ ବା ବ୍ୟକ୍ତିତ୍ୱ ଉପରେ ତା'ର ବିଶ୍ୱାସ ନ ଥାଏ । କାଳେ ହାତରୁ ଖସିଯିବ ! —କେତେକ ମାତ୍ର ନିୟମ ବାନ୍ଧି ଫର୍ଦ୍ଦଟି ଆଲଇସ୍‌କୁ ଦେଇଥାଏ—

"ପଦାକୁ ଯିବୁ ନାହିଁ; ଯଦି କୌଣସି ରୂପବାନ ଯୁବକ ଉପରେ ଆଖି ପଡ଼ିଯାଏ, ତାକୁ ଠେକା ପକାଇବୁ ।

କୌଣସି ଯୁବକ ପ୍ରଶ୍ନ ଦେଲେ ତାର ଉତ୍ତର ଦେବୁ ନାହିଁ ।

ପଦାରୁ କୌଣସି ସଙ୍ଗୀତ ଭାସି ଆସିଲେ କାନରେ ତୁଳା ଦେଇ ଦେବୁ ।

ବେଶଭୂଷଣ ପିନ୍ଧିବୁ ନାହିଁ ।" ଇତ୍ୟାଦି ।

ଏସବୁ ଆଲ୍‌ଇସ୍ ମନରେ ଓଲଟା କାମ କଲା, ସେ ହେଲା ପ୍ରୀତିଶୀଳା, ଯଦି ବା ଖ୍ୟାତିଶଙ୍କିତା । ରୂପବାନ୍ ଯୁବକ ଦେଖିଲେ ତା ସଙ୍ଗେ ଆଖି ମିଳାଇଲା । ପ୍ରଶ୍ନ ପାଇଲେ ମନର କବିତ୍ୱ ଭରି ଉତ୍ତର ଦେଲା । ଶେଷରେ କ୍ଲେମାଣ୍ଟ ତାର ପ୍ରେମ ଫାନ୍ଦରେ ଧରା ଦେଲା । କ୍ଲେମାଣ୍ଟ ଶିଗୁର୍ଡ଼ର ପରମ ବନ୍ଧୁ—ଦୁହେଁ ଏକ ନାୟିକାର ନାୟକ ।

ଶିଗୁର୍ଡ଼ ନିଜର ହାତରେ କ୍ଲେମାଣ୍ଟକୁ ବିନାଶ କରିବାକୁ ଚେଷ୍ଟା କରି ବିଫଳ ହେଲା । ଆଲାଇସ ଶିଗୁର୍ଡ଼ର ଅସତର୍କ ମୁହୂର୍ତ୍ତରେ ଘର ଛାଡ଼ି ପଳାଇ ଆସିଲା, କ୍ଲେମାଣ୍ଟ ସଙ୍ଗେ ମିଳିତ ହେଲା । କ୍ଲେମାଣ୍ଟ ଜଣେ ବିଶ୍ୱସ୍ତ ବନ୍ଧୁଙ୍କ ଘରେ ପ୍ରଣୟିନୀକୁ ରଖି ସ୍ୱଗୃହକୁ ପ୍ରସ୍ଥାନ କଲା । ଶିଗୁର୍ଡ଼ ଏହି ଚକ୍ରାନ୍ତ ଆବିଷ୍କାର କରି ଆଲାଇସ୍‌କୁ ଅପସାରଣ ଲାଗି ଧକ୍‌କାଇ କଲା—ତାକୁ ଟାଣି ଟାଣି ଘରକୁ ନେଲାବେଳେ ଆଲାଇସ କହିଲା—ତୁମେ ପରା କହିଥିଲ ଯାହାକୁ ଭଲ ପାଇବ ତାକୁ ବିଭା ହେବ ବୋଲି !

ରିଚ୍ଚାର୍ଡ କହିଲା—ମୁଁ ତୋତେ ପ୍ରାଣ ପରି ଭଲ ପାଏ । ତୋ ଲାଗି ଲୋଡ଼ା ହେଲେ ଜୀବନ ଦେବ ।

ଆଲାଇସ କହିଲା—ଏତେ କଥା କହୁ କି ମୂଲ୍ୟ ? ଗୋଟିଏ ଶବ୍ଦରେ କ୍ଳେମାଣ୍ଟ ଯେତେ ପ୍ରକାଶ କରେ, ସାରାଦିନ ଚାଲିଲେ ବି ତମେ ତାର ଚଉଠେ ଭରିପାରିବ ନାହିଁ । ସେ ଏବେ ନାହିଁ । କିନ୍ତୁ ତା ଗୃହାଣି, ମୋ ଆଖି ଆଗରେ ନାଚୁଛି । କିନ୍ତୁ ତୁମେ ଆଗରେ ଥାଇ ନ ଥିଲା ପରି । ମୁଁ ତୁମ ପ୍ରତି କୃତଜ୍ଞ । କିନ୍ତୁ ତାଙ୍କୁ ମୋର ନ ଦେବାର କିଛି ନାହିଁ ।

ଏଥିରେ କ୍ରୁଦ୍ଧ ହୋଇ ରିଚ୍ଚାର୍ଡ଼ ତାକୁ ଧରି ପକାଇ ରଖିଲା । ଏହି ସମୟରେ ଆଲାଇସ ଓ କ୍ଳେମାଣ୍ଟର ପିତା ପହଞ୍ଚିଲେ; ରିଚ୍ଚାର୍ଡ କବଳରୁ ମୁକ୍ତ କରି ଆଲାଇସର ପିତା କ୍ଳେମଣ୍ଟ ହାତରେ କନ୍ୟାକୁ ସମର୍ପଣ କଲେ ।

ନାଟକଟି ଅମୂଳଚୂଳ ହାସ୍ୟରସ ଭରା । ସାମାଜିକ ଜୀବନର ଚିତ୍ର ନାଟକର ସ୍ତରେ ସ୍ତରେ । ଚରିତ୍ର ଚିତ୍ରଣରେ ନାଟ୍ୟକାରର ସୂକ୍ଷ୍ମ ଦୃଷ୍ଟି ଫୁଟିଉଠିଛି । ଜୀବନ ଯାହା ଦିଶେ ସେଇଆ ନୁହେଁ; ଅନ୍ତର୍ଦୃଷ୍ଟି କେବଳ ତାର ମର୍ମୋଦ୍‌ଭେଦ କରିପାରେ ।

ମାତ୍ର ଦୁଇଘଣ୍ଟା ମଧ୍ୟରେ ଅଭିନୟ ଶେଷ ହେଲ । ଟିକେଟର ମୂଲ୍ୟ ସାଢ଼େ ତିନି ଡଲାର ! ଦର୍ଶକଙ୍କ ସଂଖ୍ୟା ମାତ୍ର ଦେଢ଼ ଶହ । ମୋଭି, ଟେଲିଭିଜନ୍, ଅପେରା ପ୍ରତିଯୋଗିତାରେ ଥିଏଟର ତିଷ୍ଠି ପାରୁଛି କେଉଁଠି ? ତେଣୁ ଏଠି ସରକାରୀ ସାହାଯ୍ୟ ଓ ଦରଦୀ ନାଟକପ୍ରେମୀଙ୍କ ଶ୍ରଦ୍ଧାରେ କୌଣସିମତେ ଚାଲିଛି । କଳାକାରମାନଙ୍କ ନିଷ୍ଠା ରଙ୍ଗମଞ୍ଚକୁ ଏ ଦେଶରେ ବଞ୍ଚାଇ ରଖିଛି ।

ଉଦୟନାଥ ଏଇ ଥିଏଟରକୁ ବାର୍ଷିକ ୨୫ ଡଲାର୍ ଚାନ୍ଦା ଦିଏ; ଗୋଟିଏ ଟିକେଟ୍ କିଣି ଦେଖିଲେ ପରବର୍ତ୍ତୀ ଟିକେଟ୍‌ଟି ତାକୁ ମାଗଣା ମିଳେ । ଥିଏଟର ଦେଖି ଫେରିଲାବେଳେ ଜଣେ ବୃଦ୍ଧା ମୋ ସହିତ

ଆଳାପ ଜମାଇଲେ । ନାନା କଥା ପଡ଼ି ପଡ଼ି ସେ କହିଲେ—ମୁଁ ଶିକ୍ଷିତ, ପଣ୍ଡିତ ଭାରତୀୟ ଦେଖିବାକୁ ପାଉନାହିଁ ।

ମୁଁ କହିଲି—ବଜାର ହାଟରେ ଖୋଜିଲେ ମଣ୍ଡିତ ମିଳିବେ କୋଉଠୁ ? ଗ୍ରନ୍ଥ ପଢ଼ିଲେ ହେଁ ମିଳିବ । ମୁଁ ବି ଏଠି କବି, ସାହିତ୍ୟିକ, ପଣ୍ଡିତ ଖୋଜି ନିରାଶ ହୋଇଛି । ଯଥା ସ୍ଥାନକୁ ନ ଗଲେ ଯଥାର୍ଥ ଲୋକର ସାକ୍ଷାତ୍ ମିଳିବ କପରି ?

## ମିସ ଆମେରିକା

ଏ ବ୍ୟବସାୟୀ ଯୁଗରେ ପ୍ରତ୍ୟେକ ପଦାର୍ଥର ମୂଲ୍ୟାଙ୍କିତ ହୋଇଅଛି । ଯୁବତୀର ସୌନ୍ଦର୍ଯ୍ୟ ଅମୂଲ୍ୟ ବା ମୂଲ୍ୟହୀନ ହୋଇ ରହିବ କାହିଁକି ? ବ୍ୟବସାୟୀ ତାର ଉପଯୁକ୍ତ ଉପଯୋଗ ନ କରିବେ କାହିଁକି ? ସେଦିନ କଳା ବା କବିତାର ପ୍ରେରଣା ଥିଲା । ଆଜି ବ୍ୟବସାୟକୁ ନୂତନ ଅର୍ଥ ଓ ଇଙ୍ଗିତ ଦେଉଛି ନାରୀ; ଦୋକାନ ବଜାରରେ ବସିଛି ସେଇ, ବିଜ୍ଞାପନରେ ଅଙ୍କିତ ହୋଇଛି ସେଇ । ସୁନ୍ଦରୀର ସାର୍ଟିଫିକେଟ ଉପରେ ଚାଲିଛି ପ୍ରଧାନ ବ୍ୟବସାୟ । ଆଗେ ରୂପସୀ ରାଜା ବା ସାମନ୍ତଙ୍କ ଉଆସର ରାଣୀ ଥିଲେ, କିଏ ବା ବନର ମାଳତୀ ହୋଇ ବନରେ ଫୁଟି ଝଡ଼ି ଯାଉଥିଲା । ଏବେ ସେ ହୋଇଛନ୍ତି ଜନମନ ଉଆସର ରାଣୀ—ମିସ୍ ଇଣ୍ଡିଆ, ମିସ୍ ବ୍ରାଜିଲ, ମିସ୍ କାନେଡ଼ା; ମିସ୍ ଇଂଲଣ୍ଡ, ମିସ୍ ଆମେରିକା ।

ସୌନ୍ଦର୍ଯ୍ୟ ପ୍ରତିଯୋଗିତା ଦେଖିବା ଲାଗି ପଚାଶ ହଜାର ଦର୍ଶକ ଆସନର ବ୍ୟବସ୍ଥା ହୋଇଅଛି, ଟେଲିଭିଜନରେ ଲକ୍ଷ ଲକ୍ଷ ଦର୍ଶକ ଦେଖୁଛନ୍ତି । ରୂପସୀ ତାର ଅଙ୍ଗ ସୌଷ୍ଠବର ସ୍ଥୂଳ ମୂଲ୍ୟ ପାଉଛି । ମିସ୍ ଆମେରିକା ପାଇବ ପଞ୍ଚସ୍ତରୀ ହଜାର ଡଲାର୍; ହୀରାର ମୁକୁଟ ପିନ୍ଧାଇ ତାର ଅଭିଷେକ କରାଇବ ପୂର୍ବ ବର୍ଷର ମିସ୍ ଆମେରିକା; ବର୍ଷକ ଲାଗି ସେ ହେବ ସୌନ୍ଦର୍ଯ୍ୟର ରାଣୀ । ଶୋଭା ରାଜ୍ୟରେ ତାର ଶାସନ ଜାରୀ—ନଗରେ ନଗରେ ତାର ସମ୍ବର୍ଦ୍ଧନା । ତାର ସୌନ୍ଦର୍ଯ୍ୟ ସର୍ବତ୍ର ସମ୍ମାନିତ, ସଂପୂଜିତ ।

"Let us drink a toast to miss America
Let us raise our glasses on high
From coast to coast in America
As the sweet heart of America is passing by
To a girl to a girl,
To a symbol of happiness
To a one, to a one
Who is the symbol of all we possess."

ମିସ୍ ମିସୌରୀ, ମିସ୍ ଓ୍ୱାଇଓମିଙ୍ଗ୍, ମିସ କାଲିଫର୍ଣ୍ଣିଆ, ମିସ୍ ଫ୍ଲୋରିଡା, ମିସ୍ ଟେକସାସ, ମିସ ନିଉୟର୍କ ପ୍ରଭୃତି ୫୦ଟି ରାଜ୍ୟର ସୁନ୍ଦରୀ ମିସ୍‌ମାନେ ଏହି ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିଲେ । ଆଟଲାଣ୍ଟା ନଗରୀ ସେ ଦିନ ବହୁ ଜନ ସମାଗମ ଓ ଉପଣି ତଥିକାରେ ଉତ୍ସବମୟୀ ହୋଇଥିଲା । ବିଚାରକମାନେ ନାନା ଦିଗରେ ବିଶେଷଜ୍ଞ । କିଏ କଳା, କିଏ ସଙ୍ଗୀତ, କିଏ ପ୍ରସାଧନ ଓ ବେଶଭୂଷଣରେ ବିଶେଷଜ୍ଞ; କିଏ ବା ଉନ୍ନତ ସୌନ୍ଦର୍ଯ୍ୟ ରୁଚିଯୋଗୁଁ ସୁଖ୍ୟାତ ।

ସୁନ୍ଦରୀମାନେ ଯେ ଯାହାର ବିଶେଷତ୍ୱ ଦେଖାଇଲେ । କିଏ ପିଆନୋ ବଜାଇଲା, କିଏ ଗାଇଲା, କିଏ ବା ନୃତ୍ୟ କଲା—କିଏ ନାଟକର କୌଣସି ଏକ ଅଂଶ ଅଭିନୟ କଲା । ହଠାତ୍ ହାସ୍ୟ, ହଠାତ୍ ଅଶ୍ରୁ, ମୁହୁର୍ମୁହୁ ମୁଖଭଙ୍ଗୀର ପରିବର୍ତ୍ତନ ମନମୁଗ୍ଧକର ହୋଇଥିଲା ।

ଚକ୍ଷୁର ଚଟକ, ଅଙ୍ଗ ସୌଷ୍ଠବ, ଚଳନ କଳା; ଆଧୁନିକ ବେଶ ଭୂଷଣ, ଉନ୍ନତ ରୁଚି, ଚମତ୍କାର କଥନ ଭଙ୍ଗୀ, ପ୍ରତ୍ୟୁତ୍ପନ୍ନମତିତା; ବିଦ୍ୟା ବୁଦ୍ଧି ପ୍ରଭୃତି ସମସ୍ତ ଦିଗରୁ ଯୁବତୀର ସୌନ୍ଦର୍ଯ୍ୟ ବିଚାର ହୋଇଥିଲା—ପୂର୍ଣ୍ଣ ବସନ ଭୂଷଣ ଓ ଛାପରେ ସନ୍ତରଣ ପୋଷାକ ପରିଧାନକରି ଯୁବତୀମାନେ ବିଚାରକମାନଙ୍କ ସାମ୍ନାରେ ଯାତ୍ରା କରିଥିଲେ । ସେଥି ମଧ୍ୟରୁ ପାଞ୍ଚଜଣ ସେମି ଫାଇନାଲ୍‌କୁ ଉତ୍ତୀର୍ଣ୍ଣ ହୋଇଥିଲେ । ଶେଷରେ ମିସ୍ ଓକଲାହୋମା ଆମେରିକାର ସୌନ୍ଦର୍ଯ୍ୟ-ରାଣୀ ରୂପେ ସମ୍ବର୍ଦ୍ଧିତା ହୋଇଥିଲେ । ତାଙ୍କ ନାମ ମିସ୍ ଜେନ୍-ଆନ୍-ଜେ-ରେ—ବୟସ ଉଣେଇଶ ବର୍ଷ, ଉଚ୍ଚତା

ସାଢ଼େ ପାଞ୍ଚଫୁଟ୍, ଓଜନ ୧୧୭ ପାଉଣ୍ଡ, ବ୍ଲନେଟ୍ (କୃଷ୍ଣକେଶା) । ଦୁଇ ଲକ୍ଷ ମାଇଲ୍ ଭ୍ରମଣର ସୁଯୋଗ ତାଙ୍କୁ ଦିଆହୋଇଛି ।

ପ୍ରଫୁଲ୍ଲ ପ୍ରସନ୍ନ ମୁଖ; ସୌନ୍ଦର୍ଯ୍ୟ-ରାଣୀର ମୁକୁଟ ପିନ୍ଧି ଜେନ୍-ଆନ୍-ଜେ-ରେ ଜନତାର ଆନନ୍ଦ ଅଭ୍ୟର୍ଥନା ମଧ୍ୟରେ ଛଳପ୍ରଯାତ୍ରା କରିଥିଲେ । ତାପରେ '୧୯୬୬ର ରୂପରାଣୀଙ୍କ ଭାଷଣ ଓ ୧୯୬୭ର ମିସ୍ ଆମେରିକାର ସମ୍ବର୍ଦ୍ଧନା, ପୁରସ୍କାର ପ୍ରାପ୍ତି ଓ କେତେକ ମନୋରଞ୍ଜକ କାର୍ଯ୍ୟକ୍ରମ ମିସ୍‌ମାନଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥିଲା ।

ସୁନ୍ଦରୀମାନଙ୍କୁ ଯେଉଁସବୁ ପ୍ରଶ୍ନ ପଚରା ଯାଇଥିଲା, ସେସବୁ ବେଶ୍ ଚିତ୍ତାକର୍ଷକ । ମିସ୍ କାଲିଫର୍ଣ୍ଣିଆକୁ ପଚରାଗଲା—ତୁମେ ଲେଖିଛ—ତୁମେ ପିତାମାତାଙ୍କର ଏକମାତ୍ର ସନ୍ତାନ ବୋଲି, ତୁମର ଭାଇ ଭଉଣୀ ଥିଲେ ତୁମେ ସେମାନଙ୍କ ପ୍ରତି କିପରି ବ୍ୟବହାର କରନ୍ତ ?

ମିସ୍ କହିଲେ—ମୁଁ ବଡ଼ ଦୁଃଖିନୀ; ଅନ୍ୟର ଭାଇଭଉଣୀ ଦେଖିଲେ ମୋର ବଡ଼ ଈର୍ଷା ହୁଏ । ମୋର ଥିଲେ ମୁଁ ସେମାନଙ୍କ ସଙ୍ଗେ ଖେଳୁଥାନ୍ତି । କେତେ ଆନନ୍ଦରେ ମୋ ସମୟ କଟିଥାନ୍ତା ।

ମିସ୍ ଫ୍ଲୋରିଡାକୁ ପଚରାଗଲା—ତୁମେ ଏବେ ବଡ଼ ହୋଇନାହଁ, ମନେକର, ବଡ଼ ହେଲ । କିନ୍ତୁ······ତୁମେ ସ୍ୱାମୀ ବୋଲି ଯାହାକୁ ପାଇଲ, ସେ ମୋଟେ ହସନ୍ତି ନାହିଁ । ତୁମେ କଣ କରିବ ?

ମିସ୍ କହିଲେ—ମୁଁ ଶୁଖିଲା କାଠରୁ ରସ ବାହାର କରିପାରିବି, ମୂକକୁ ବାଚାଳ କରିପାରିବି, କାନ୍ଦିଲା ଲୋକକୁ ହସାଇ ପାରିବି, ସେ ବିଶ୍ୱାସ ମୋର ଅଛି । କିନ୍ତୁ ସ୍ୱାମୀ ବାଛିବା ଭାର ତ ମୋ ଉପରେ । ମୁଁ କେଉଁପରି ସ୍ୱାମୀ ବାଛିବି କାହିଁକି ?

## ମିସ୍ ଇଉନିଭର୍ସ୍ (୧୬ । ୭ । ୬୭)

ଫ୍ଲୋରିଡ଼ାର ମିଆମି ନଗରରେ ହୋଇଥିଲା—ଏ ତ ଗୋଟିଏ ନାଟକ, ଅଭିନବ; ପଦ୍ୟ ବା ସଙ୍ଗୀତ, ସଙ୍ଗୀତ, ନୃତ୍ୟ ପରସ୍ପରଠାରୁ

ବଛିଲେ । ଟେଲ୍‌ଭିଜନରେ ଦେଖିଲି—ବିଶ୍ୱସୁନ୍ଦରୀ ପ୍ରତିଯୋଗିତା, ପ୍ରକୃତରେ ମନମୋହକର; ଆଖିରେ ପଲକ ପଡ଼ୁଛି କି ନାହିଁ ଜାଣେ ନାହିଁ ।

ସୌନ୍ଦର୍ଯ୍ୟ ଗୋଟିଏ ଦେଶର ଏକଚାଟିଆ ନୁହେଁ, ପ୍ରତ୍ୟେକ ଦେଶରେ ସୁନ୍ଦରୀ ଅଛନ୍ତି; ସୌନ୍ଦର୍ଯ୍ୟର ପରିମାପ ଏ ଦେଶରୁ ସେ ଦେଶରେ ଭିନ୍ନ । ନିଘୋ ସୁକଣ୍ଠ କେବେ ମିସ୍ ଇଉନିଭର୍ସ୍ ହେବ, ଦେଖିବାକୁ ବାକି ରହିଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ରୁଚିର ତାର-ତମ୍ୟ ଅସ୍ୱୀକାର କରିହେବ ନାହିଁ । ପାଶ୍ଚାତ୍ୟ ଦୃଷ୍ଟିରେ ଯେ ସୁନ୍ଦରୀ ପ୍ରାଚ୍ୟ ଦୃଷ୍ଟିରେ ସେ ସେଇଆ ନୋହିପାରେ । 'ଶ୍ରୋଣୀଭାରାତ୍ ଅଳସ-ଗମନା'କୁ ପାଶ୍ଚାତ୍ୟ ପସନ୍ଦ କରି ନ ପାରେ । ତଥାପି ତନ୍ୱୀ, ଶିଖରୀ ଦଶନା, ପକ୍ୱବିମ୍ବାଧରୋଷ୍ଠୀ, କ୍ଷୀଣମଧ୍ୟା, ଚକିତ ହରିଣୀ ପ୍ରେକ୍ଷଣା ପାଶ୍ଚାତ୍ୟ ଶ୍ରୀ ପରିମାପର ଦୂରବର୍ତ୍ତୀ ନୁହେଁ । ଦୀନକୃଷ୍ଣ ଶ୍ରୀ ସଙ୍ଗେ ପ୍ରୀତିକୁ ମିଶାଇ ସୌନ୍ଦର୍ଯ୍ୟର ଯେଉଁ ଗୋଲକଧନ୍ଦା ସୃଷ୍ଟି କରିଛନ୍ତି ତାହା ହୁଏତ ପାଶ୍ଚାତ୍ୟ ମନର ରୋଚକ ନୋହିପାରେ—

'କନ୍ଦର୍ପ କଳା କୁଶଳା ହୋଇଥିବ ବାଳା
କରୁଥିବ ଗତି କଟାକ୍ଷ ଭ୍ରୂଭଙ୍ଗ ଲୀଳା
କର୍ଣ୍ଣରେ କୁଣ୍ଡଳ ଡେଉଥିବ ଦୋଳାୟିତ
କଲେ ତା ଦର୍ଶନ କଉଁ ସୁଖ ନୋହେ ଜାତ ।
କଣିଆଇଁ ରହୁଁଥିବ ନାସିକା ଫୁଲାଇ
କହୁଥିବ ବକ୍ର ବାଣୀ ଅଳପ ହେଲାଇ
କେବଳ ହିଁ ନୋହିଥିବ ଅତ୍ୟନ୍ତ ଉଦ୍ଧତ
କେତେବେଳେ ନୌହିଥିବ ଅତି ଲଜ୍ଜାବନ୍ତ
କହିବାକୁ କହୁଥିବ ସ୍ନେହଗର୍ଭ ବାଣୀ
କି କରିବ ଇନ୍ଦ୍ର ସୁଖ କର୍ଣ୍ଣେ ତାହା ଶୁଣି ।'

ଘନ କେଶ; ଭ୍ରୂ ଧନୁ, ଅଧର ବିମ୍ବ, ନେତ୍ର ପଦ୍ମ, କଟାକ୍ଷ ଭ୍ରମର, ଗ୍ରୀବା ଶଙ୍ଖ; ଅଧର ପ୍ରବାଳ, ବାହୁଲତା, ଅଙ୍ଗୁଳି ଚମ୍ପକ—

ଉପମାମାଳରେ ବନ୍ଦୀ ହୋଇ ପାରମ୍ପରିକ ପ୍ରାଚ୍ୟ ଶ୍ରୀ ପଡି ଗଲଣି । କଳା, କବିତା, ସ୍ଥାପତ୍ୟ, ସଙ୍ଗଷ ପ୍ରାପ୍ତ ଏକ ଜାଗ୍ରତ ରୂପାଙ୍କନ, ସୌନ୍ଦର୍ଯ୍ୟର ଆଧୁନିକ ପରିମାପକ ନାହିଁ ? ଅତୀତର ଗୋଟିଏ ଛିନ୍ନ ଫିତା ଯେମିତି ଆମେ ଏ ଯୁଗର ରୂପ ମାପ ମାରିବା ନାହିଁ, କିମ୍ବା ଅତୀତର ଗତାନୁଗତିକ ମନ ଯେମିତି ଆଧୁନିକ ରୂପ ମୂଲ୍ୟାଙ୍କନ କରି ପାରିବ ନାହିଁ । ତେଣୁ ପାଶ୍ଚାତ୍ୟ ଦୃଷ୍ଟିର ହିଁ ସାଜରୁ ଏଇ ପରୀକ୍ଷାନିରୀକ୍ଷା ମଧ୍ୟରେ । ସୌନ୍ଦର୍ଯ୍ୟ ଲାଗି ସୌନ୍ଦର୍ଯ୍ୟର ବିବେଚନା ଏଇ ପ୍ରତିଯୋଗିତାରେ କେତେ ଦୂର ହେଉଛି, କିଏ କହିବ ?

ଜଣ ଜଣ କରି ରୂପସୀମାନଙ୍କର ନାମ ଡକାଗଲା । ଓଜନ, ଉଚ୍ଚତା, ଆଖିର ବର୍ଣ୍ଣ, କେଶର ବର୍ଣ୍ଣ, କେଉଁ ଦେଶର ଅଧିବାସିନୀ ତାହା ଘୋଷଣା କରାଗଲା—ସେ ଯାହାର ଜାତୀୟ ବସନ ଭୂଷଣ ପିନ୍ଧି ଜଣ ଜଣ ହୋଇ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହେଲେ ।

ଶ୍ରୀ ସଙ୍ଗେ ମେଧାର ଯୋଗ ଅଛି କି ନାହିଁ ପରୀକ୍ଷା କରାଗଲା । କେଉଁ ଜିନିଷକୁ ଭଲ ପାଅ ? କେଉଁ ଫୁଲକୁ ଭଲ ପାଅ ? କବିତା ପଢ଼ କି ନାହିଁ ? ନୃତ୍ୟ ସଙ୍ଗୀତ ଭଲ ଲାଗେ କି ନାହିଁ ? ପୃଥିବୀର କେଉଁ କେଉଁ ଦେଶ ଦେଖିଛ ? କି କି ଭାଷା ଜାଣ ?

ସ୍ପେନର ଲାବଣ୍ୟବତୀ ଇଂରେଜୀ ଜାଣେ ନାହିଁ । yes, no କହି ସେ କିନ୍ତୁ ଆନନ୍ଦର ସିନ୍ଧୁ ଉଚ୍ଛୁଳାଇ ଦେଇ ପାରିଲା । ସୁନ୍ଦରୀମାନେ ସନ୍ତରଣ ପୋଷାକ ପରିଧାନ କରି ଗଲାବେଳେ ବିଚାରକ ମଣ୍ଡଳୀ ପାଦ, ଜାନୁ, ବକ୍ଷ, ମୁଖ, ଚଳନ କଳା; କଥନ ଭଙ୍ଗୀ ଆନୁପାତିକ ପରିମାପ, ଅଙ୍ଗସୌଷ୍ଠବ ପର୍ଯ୍ୟବେକ୍ଷଣ କରି ଦ୍ରୁତ ଉପସଂହାରରେ ଉପନୀତ ହୋଇଥିବେ । କିନ୍ତୁ ମୁଁ ଏକମତ ହୋଇ ପାରିଲି ନାହିଁ । ରୂପସୀର ଏଇ ବିକଚ ଉଦ୍ୟାନକୁ ଦେଖି ମୋର ମନେ ହେଲା—

କେହି ନୋହେ ଉଚ୍ଚ ନୀଚ କୃଶ
କେହି ନୋହେ ପୃଥୁଳ ବିଶେଷ

କେଉଁ କୋଡେ ବସୁସରେ ଭାବ
କେ ବୁଝଇ କୃଷ୍ଣ ମନୋହାରୀ ?

ସେମିଫାଇନାଲକୁ ପାଞ୍ଚ ଜଣ ବଛା ଗଲେ, ପଞ୍ଚାବନଟି ଦେଶର ରୂପସୀମାନଙ୍କ ମଧ୍ୟରୁ । ସେମାନଙ୍କ ମଧ୍ୟରେ ଜଣେ ଭାରତୀୟା—ଯାସ୍‌ମିନ ବାଜ—ଦିଲ୍ଲୀ ମେଡ଼ିକାଲ କଲେଜର ଛାତ୍ରୀ, ସେ ଚତୁର୍ଥ ସ୍ଥାନ ଅଧିକାର କରିଥିବା ଦେଖି ମନରେ ଆଶାର ସଞ୍ଚାର ହୋଇନାହିଁ । ଆଜ ମିସ ଓ୍ୱାର୍‌ଲଡ଼୍ ପ୍ରତିଯୋଗିତାରେ ଭାରତୀୟା ରୀତା ଫରିଆ ସୌନ୍ଦର୍ଯ୍ୟରାଣୀ ରୂପେ ଘୋଷିତା ହେବା ଫଳରେ ଭାରତୀୟା ନାରୀର ସୌନ୍ଦର୍ଯ୍ୟ ଉପରେ ଜଗତର ଆସ୍ଥା ଆସିଛି । ଅନ୍ୟମାନଙ୍କ ପରି ମୋର ହୃଦୟ ଆଜ ଗୌରବରେ ଉତ୍‌ଫୁଲ୍ଲ ।

ମିସ ସ୍ୱିଡେନ-ମାର୍ଗାରେଟ୍ ଆର୍‌ଭିଡ଼୍‌ସନ ତାଙ୍କର ନାମ । ୧୯୬୬ର ମିସ ଇଉନାଇଟେଡ଼ ରୂପେ ଘୋଷିତା ହେଲେ । ୧୯୬୭ର ଏଇ ଦୁଇ ସୁନ୍ଦରୀଙ୍କ ମଧ୍ୟରେ କିଏ ଶ୍ରେଷ୍ଠା ? ଜଣେ ଆମେରିକାରେ, ଆଉ ଜଣେ ଇଂଲଣ୍ଡରେ ବଛା ଯାଇଛନ୍ତି । କମ୍ୟୁନିଷ୍ଟ ଗୋଷ୍ଠୀ ତ ଏଭଳି ପ୍ରତିଯୋଗିତାରେ ଅଂଶ ଗ୍ରହଣ କରୁ ନାହାନ୍ତି । ତଥାପି ଅଧିକାଂଶ ଦେଶ ମଧ୍ୟରେ ଏ ସମ୍ପର୍କରେ ଗୋଟିଏ ରାଜିନାମା ହେବା ଉଚିତ ନୁହେଁ କି ?

ମାର୍ଗାରେଟ୍‌ଙ୍କୁ ଯେତେବେଳେ ମୁକୁଟ ପିନ୍ଧାଇ ସମ୍ବର୍ଦ୍ଧନା କରାଗଲା, ସେ ହସିବାକୁ ଚେଷ୍ଟା କରି କାନ୍ଦି ପକାଇଲେ; କଠୋର ପରୀକ୍ଷାରେ ହିଁ ତାଙ୍କର ଚକ୍ଷୁରୁ ଜଳ ନିର୍ଗତ ହୋଇ ଆସିଥିଲା, ଧୈର୍ଯ୍ୟ ବଳରେ ସେ କୌଣସି ମତେ ରୋକିଥିଲେ; ଏବେ ଆଶାତୀତ ଆନନ୍ଦରେ ଝରି ଝରି ହୋଇ ଅଶ୍ରୁ ଝରି ପଡ଼ିଲା । ଶିଶିର ସିକ୍ତ ସେଇ ସଜ କହ୍ଲାରଟି ଦେଖି ମନ ମୋର ଆନନ୍ଦରେ ପୂରି ଉଠିଥିଲା । କିନ୍ତୁ—କିନ୍ତୁ ସେ ହସିଥିଲେ ହୃଦୟ ଫାଟି ଯାଇଥାନ୍ତା—ନାରୀତ୍ୱର ଅବମାନନା, ଏ ଗ୍ଲାନି ଅସହ୍ୟ, ଏ ରାଣୀ ହେବା ପଛରେ କଣ ବିକଟ ଦାରିଦ୍ର୍ୟ ନାହିଁ ? ସୌନ୍ଦର୍ଯ୍ୟ ପଛରେ ଗୋଡ଼ାନ୍ତି ପ୍ରଣୟୀ, କବି, କଳାକାର; କିନ୍ତୁ ଏ ସୁନ୍ଦରୀ ଗୋଡ଼ାଇଛି କାହା ପଛରେ ?

# ହର୍ଟନ୍ ଓ୍ୱାଟ୍‌କିନ୍‌ସ ହାଇସ୍କୁଲ

ଏଠି ହାଇସ୍କୁଲର ଯେ ପାସ୍ କରେ ତାକୁ ଗ୍ରାଜୁଏଟ କହନ୍ତି । ବହୁ ଆଡମ୍ବରରେ ସମାବର୍ତ୍ତନ ଉତ୍ସବ ଅନୁଷ୍ଠିତ ହୁଏ, ଗାଉନ୍ ଓ ହୁଡ଼୍ ପିନ୍ଧି ଛାତ୍ରଛାତ୍ରୀମାନେ ଡିଗ୍ରୀ ନିଅନ୍ତି । ହାଇସ୍କୁଲ ଗ୍ରାଜୁଏଟଙ୍କ ଛଡ଼ା ଏ ଦେଶରେ କଲେଜ ଗ୍ରାଜୁଏଟ ଅଛନ୍ତି । କିନ୍ତୁ ହାଇସ୍କୁଲରେ ଅଧିକାଂଶଙ୍କ ଶିକ୍ଷା ଶେଷ ହୁଏ । କାରଣ କଲେଜ ଶିକ୍ଷା ବ୍ୟୟବହୁଳ; ଛାତ୍ରଛାତ୍ରୀ ଶିକ୍ଷାର ବ୍ୟୟ ନିଜେ ନିଜେ ବହନ କରନ୍ତି । ବହୁ ପରିଶ୍ରମ ପଡ଼େ । ତା ଛଡ଼ା ମାଟ୍ରିକ୍ ଗ୍ରାଜୁଏଟ ଓ କଲେଜ ଗ୍ରାଜୁଏଟର ଚାକିରୀ ଆୟ ମଧ୍ୟରେ ବିଶେଷ ତାରତମ୍ୟ ନାହିଁ । ଅଯଥା ଉଚ୍ଚ ଶିକ୍ଷା ଲାଗି ଧାଇଁବେ ଭାହିଁକି ?

ହର୍ଟନ୍ ଓ୍ୱାଟ୍‌କିନ୍‌ସ ହାଇସ୍କୁଲର ପ୍ରିନ୍‌ସିପାଲଙ୍କ ନାମ ଜର୍ଜ ସ୍ଲାଉଫର୍, ଇସି ତାଙ୍କୁ ଫୋନ୍ କରି ମୋ ପରିଦର୍ଶନ ସମୟ ନିର୍ଦ୍ଧାରଣ କରି ଦେଇଥିଲା । ତାପରେ ଗାଡ଼ିରେ ମୋତେ ନେଇ ଛାଡ଼ି ଦେଇ ଆସିଲା, ସେଣ୍ଟଲୁଇସ୍ ସହରରେ ଏ ସ୍କୁଲ ଅବସ୍ଥିତ ।

ପ୍ରିନ୍‌ସିପାଲଙ୍କର ଜଣେ ଲେଡ଼ି ସେକ୍ରେଟେରୀ ଅଛନ୍ତି । ସେ ମୋତେ ସ୍କୁଲ ଭିତରକୁ ପାଛୋଟି ନେଲେ, କହିଲେ—ଆପଣଙ୍କ କୋଟ୍‌ଟି ନେଇ ରଖିଦେବି କି ? କହିଲି—ନା, ଧନ୍ୟବାଦ । ତାପରେ ସେ ମତେ ନେଇ ପ୍ରିନ୍‌ସିପାଲଙ୍କ ସଙ୍ଗେ ପରିଚିତ କରାଇ ଦେଲେ । ପ୍ରିନସିପାଲ୍‌ଙ୍କ କୋଠରୀଟି ଶୀତାତପନିୟନ୍ତ୍ରିତ; ସେ ଏହି ସ୍କୁଲକୁ ଯୁବକ ହୋଇ ଆସିଥିଲେ, ଏବେ ପ୍ରୌଢ଼ । ଏଠି ସେ ଷୋଳ ବର୍ଷ ଚାକିରୀ କଲେଣି । ସେ ଏମ୍. ଏ ଟ୍ରେଣିଂପ୍ରାପ୍ତ । ତାଙ୍କର ବାର୍ଷିକ ଦରମା ୧୯ ହଜାର ଡଲାର୍ ।

ସ୍କୁଲର ତିନିଭାଗ ଶିକ୍ଷକଙ୍କ ମଧ୍ୟରୁ ଦୁଇ ଭାଗ ଏମ୍. ଏ । ଶିକ୍ଷକାଙ୍କ ସଂଖ୍ୟା ଏକ ତୃତୀୟାଂଶରୁ ଊଣା । ସନ୍ତାନ ପ୍ରସବ ଲାଗି ଛୁଟି ନେଲେ କାର୍ଯ୍ୟରେ ବ୍ୟାଘାତ ଲାଗିବ ବୋଲି ବେଶୀ ସଂଖ୍ୟାରେ ଶିକ୍ଷକା ରଖା ଯାଇନାହାନ୍ତି । ଶିକ୍ଷକ ଦିନକୁ ପ୍ରାୟ ପାଞ୍ଚ ପିରିଅଡ୍ ପଢ଼ାନ୍ତି । ସକାଳ ନ'ଟାରେ ସ୍କୁଲ ଆରମ୍ଭ ହୁଏ, ମଝିରେ ଘଣ୍ଟାଏ ଲଞ୍ଚ୍ ଛୁଟି, ୪ଟାବେ ବନ୍ଦ ହୁଏ ।

ଶନିବାର ରବିବାର ଦିନ ସ୍କୁଲ୍ ଛୁଟି । କେତେକ ସ୍ଥାନୀୟ ଛୁଟି ଛଡ଼ା ଶିକ୍ଷକ ଓ ଛାତ୍ରମାନେ ଅଢ଼େଇ ମାସ ଗ୍ରୀଷ୍ମ ଛୁଟି ଓ ଦଶ ଦିନ ବଡ଼ ଦିନ ଛୁଟି ଉପଭୋଗ କରନ୍ତି ।

ସ୍କୁଲର ଛାତ୍ର ସଂଖ୍ୟା ଛଅଶହ, ଏଠି ସହଶିକ୍ଷା ପ୍ରଚଳିତ । ଛାତ୍ରୀଙ୍କ ସଂଖ୍ୟା ପ୍ରାୟ ଅଧା । ଶିକ୍ଷକ ଶିକ୍ଷକାଙ୍କ ସଂଖ୍ୟା ୪କ ଶହ । କ୍ୟୁବାର କମ୍ୟୁନିଷ୍ଟ ସରକାରଙ୍କ କବଳରୁ ଖସି ଆସିଥିବା ଜଣେ ଶିକ୍ଷକ ଏହି ସ୍କୁଲରେ ଅଛନ୍ତି । କିନ୍ତୁ ତାଙ୍କ ସହିତ ଆଳାପର ସୁଯୋଗ ମିଳିଲା ନାହିଁ ।

ଏହା ଗୋଟିଏ ପବ୍ଲିକ୍ ସ୍କୁଲ୍, ଛାତ୍ରଛାତ୍ରୀଙ୍କୁ ଦରମା ଦେବାକୁ ପଡ଼େ ନାହିଁ । ସେମାନଙ୍କ ପିତାମାତା ଶିକ୍ଷା କର ଦିଅନ୍ତି ମାତ୍ର । ମୁଖ୍ୟତଃ ସେଇ ଅର୍ଥରେ ସ୍କୁଲ ଚାଲେ । ଛାତ୍ରମାନଙ୍କୁ ପାଠ୍ୟ ପୁସ୍ତକ କିଣିବାକୁ ପଡ଼େ ନାହିଁ । ସେ ସମସ୍ତ ସରକାର ଯୋଗାଇ ଥାନ୍ତି । କେହି ପୁସ୍ତକ ହଜାଇଲେ ବା ନଷ୍ଟ କଲେ ତାକୁ ଦାମ ଦେବାକୁ ପଡ଼େ; ସେ ନୂତନ ପୁସ୍ତକ ପାଏ । ସ୍କୁଲରେ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ଅଛି । ଶିକ୍ଷକ ଓ ଛାତ୍ର ସମସ୍ତେ ଏଠି ଆହାର କରିଥାନ୍ତି । ଗୋଟିଏ ମିଲର ଦାମ୍ ୪୫ସେଣ୍ଟ ।

ସ୍କୁଲ ପ୍ରାଙ୍ଗଣ ଯାନମୟ; ଅଧିକାଂଶ ଛାତ୍ରଛାତ୍ରୀ ନିଜେ ନିଜେ ମଟରଗାଡ଼ି ଚଳାଇ ଆସନ୍ତି । କେହି କେହି ସ୍କୁଲ ବସ୍ ବା ସର୍ବସାଧାରଣ ବସ୍‌ରେ ଯିବା ଆସିବା କରନ୍ତି । 'ଡ୍ରାଇଭିଂ' ଏଠି ପାଠ୍ୟର ଅନ୍ତର୍ଗତ, କିନ୍ତୁ ବାଧ୍ୟତାମୂଳକ ନୁହେଁ । ଅବଶ୍ୟ ପଠିତବ୍ୟ ବିଷୟ ବ୍ୟତୀତ ଏଠି ହୋମ୍‌ମେକିଂ, ବିଜିନେସ ଏଜୁକେସନ୍, ଇନଷ୍ଟ୍ରୁମେଣ୍ଟାଲ୍ ମ୍ୟୁଜିକ୍, ଫିଜିକାଲ୍ ଏଜୁକେସନ୍, ଇଣ୍ଡଷ୍ଟ୍ରିଆଲ୍ ଆର୍ଟ, ସ୍ପିଚ୍, ଜୋର୍ଣ୍ଣାଲିଜମ୍ ଆଦି ବିଷୟାନ୍ତର ରୁଟିନ ରଖାଯାଇଅଛି ।

ଛାତ୍ରଛାତ୍ରୀଙ୍କ ଲାଗି ତିନିଗୋଟି ସାଧାରଣ ଫୋନ୍ ରଖା ଯାଇଛି । ପ୍ରତ୍ୟେକ ଛାତ୍ର ଲାଗି ସ୍କୁଲ କାନ୍ଥରେ ଗୋଟିଏ ବାକ୍ସ ଅଛି । ଲଞ୍ଚ୍ ଖାଇବାକୁ ଗଲେ ସେ ସେଥିରେ ବହିପତ୍ର ରଖି ଚାବି ଦେଇଯାଏ ।

ଶିକ୍ଷକ ଗୋଟିଏ ଗୋଟିଏ ଟେପ୍ ରେକର୍ଡ଼ର ଯନ୍ତ୍ର ଘେନି କ୍ଲାସକୁ ଯାଆନ୍ତି । ଛାତ୍ର ପ୍ରଶ୍ନ କଲେ ଶିକ୍ଷକ ବୋତାମ ଟିପନ୍ତି, ଯନ୍ତ୍ର ତାର ଉତ୍ତର ଦିଏ । ଯନ୍ତ୍ରରେ ରେକର୍ଡ କରା ହୋଇ ନଥିଲେ ଶିକ୍ଷକ ଉତ୍ତର ଦିଅନ୍ତି । ଯନ୍ତ୍ରଠାରୁ ସ୍ୱତନ୍ତ୍ରଭାବରେ ପାଠ ବୁଝିବାର ବ୍ୟବସ୍ଥା ରହିଅଛି । ନିର୍ଦ୍ଦିଷ୍ଟ ଟେପ୍ ଲଗାଇଲେ ହେଲା ।

ଏ ସ୍କୁଲରେ ଗୋଟିଏ ସ୍ୱତନ୍ତ୍ର ଟେଲିଭିଜନ୍ କେନ୍ଦ୍ର ରହିଅଛି । ଅଧ୍ୟାପନାରେ ତାର ଉପଯୁକ୍ତ ଉପଯୋଗ କରାଯାଏ । ନେପୋଲିଅନ ବିଷୟ ପଢ଼ା ହେଉଥିଲେ ନେପୋଲିଅନ୍‌ଙ୍କ ଅଶ୍ୱାରୋହୀ ଛବି, ତାପରେ ବିଭିନ୍ନ ରଣକ୍ଷେତ୍ରର ଦୃଶ୍ୟ, ଗୋଟିକ ପରେ ଗୋଟିଏ ବିଜୟଜୟ; ଶେଷରେ ତାଙ୍କ ପରାଜୟ ଓ ବନ୍ଦୀଜୀବନ ଟେଲିରେ ଫୁଟି ଉଠେ । ଇତିହାସ ଏକ ଶୁଷ୍କ ନୀରସ ବିଷୟ ହୋଇ ରହେ ନାହିଁ । ଛାତ୍ରଛାତ୍ରୀ ଏହାକୁ ଉପଭୋଗ କରନ୍ତି, ସେହିପରି ଭୂଗୋଳ ଓ ଅନ୍ୟ କେତେକ ବିଷୟର ଅଧ୍ୟାପନ ଲାଗି 'ଟେଲି'ର ସାହାଯ୍ୟ ନିଆଯାଏ ।

ଗୋଟିଏ କ୍ଲାସ ଅନ୍ଧକାରମୟ; କାହିଁକି ? ଶୁଣିଲି—ପଢ଼ା ହେଉଛି ଆମେରିକାର ସାହିତ୍ୟର ଇତିହାସ । କବିଙ୍କ ଜୀବନର ଯାବତୀୟ ଘଟଣା, କବିତାର ବୈଶିଷ୍ଟ୍ୟ ଇତ୍ୟାଦିରୁ କିଛି ଫୁଟିଛି ବାଣୀରେ । କିଛି ମୋଭିସ୍କ୍ରିନ୍‌ରେ ରୂପରେ, ମୋଭି ଦେଖି ଦେଖି ସାହିତ୍ୟ ପିରିଅଡ଼ଟି ଶେଷ ହେଲା, ଘଣ୍ଟା ବାଜିଲା ।

ତାପରେ ମି. ଷ୍ଟାଇଫର୍ ଫିଜିକ୍ସ, କେମିଷ୍ଟ୍ରି ଓ ବାଇଓଲଜି ଗୃହ ଫିଟାଇ ବିଭିନ୍ନ ଯନ୍ତ୍ରପାତି ଦେଖାଇଲେ, କିନ୍ତୁ କଳା ବିଭାଗର ଲୋକ ହୋଇଥିବାରୁ ବିଶେଷ କିଛି ବୁଝାଇ ପାରିଲେ ନାହିଁ । ଭୂମିକମ୍ପ ପରିମାପକ ଯନ୍ତ୍ରଟିର ଯତ୍‌ସାମାନ୍ୟ ପରିଚୟ ମାତ୍ର ଦେଲେ ।

ହଟନ୍ ଓ୍ୱାଟ୍‌ସନ୍‌ସ ହାଇସ୍କୁଲ ସାମ୍ନାରେ ଝୁଲି ହୋଇଛି ପ୍ରିନ୍‌ସିପାଲ୍‌ଙ୍କର ଗୋଟିଏ ଫଟୋ; ପ୍ରତି ଶ୍ରେଣୀର ପ୍ରବେଶ ଦ୍ୱାରରେ ଛାତ୍ର-ମାନଙ୍କର ଫଟୋ—ଛାତ୍ରଛାତ୍ରୀମାନଙ୍କର ନିଟୋଳ ସ୍ୱାସ୍ଥ୍ୟ, ପ୍ରଫୁଲ୍ଲ ମୁଖ; ଦାରିଦ୍ର୍ୟ, ଦୁଶ୍ଚିନ୍ତା ସତେ ବା ଏମାନଙ୍କୁ ସ୍ପର୍ଶ କରିନାହିଁ !

ଏ ସ୍କୁଲର ଛାତ୍ରାବାସ ନାହିଁ, ତାର ପ୍ରୟୋଜନ ନାହିଁ ବୋଲି । ସେଭଳି ବିଶେଷ କାରଣ ନ ଥିଲେ ଦୂରବର୍ତ୍ତୀ ଛାତ୍ରଙ୍କୁ ଏହି ସ୍କୁଲରେ ପଢ଼ିବା ଲାଗି ଅନୁମତି ମିଳେନାହିଁ । ମିଳିଲେ ତାଠାରୁ ସ୍ୱତନ୍ତ୍ର ଫି ଆଦାୟ କରାଯାଏ ।

ଶିକ୍ଷକ ବା ପ୍ରିନ୍‌ସିପାଲ କାହାକୁ କ୍ୱାର୍ଟର୍ ଦିଆଯାଇନାହିଁ । ଶିକ୍ଷକ ଟିଉସନ୍ କରିବା ଏଠି ବେଆଇନ୍ । ପୁରସ୍କାରପ୍ରାପ୍ତ ଛାତ୍ରମାନଙ୍କ ଫଟୋ ଟଙ୍ଗାଇବାର ଦେଖିଲି । ସେମାନଙ୍କ ମଧ୍ୟରୁ କିଏ ବିଦ୍ୟା, କିଏ କ୍ରୀଡ଼ା, କିଏ ଅଭିନୟରେ କୃତିତ୍ୱ ଅର୍ଜନ କରିଅଛି । ସୁଛାତ୍ରମାନଙ୍କର ସଦ୍‌ଗୁଣ ଉଦ୍‌ଘୋଷିତ ହୋଇଛି । ସ୍କୁଲରେ ବର୍ଷକୁ ଗୋଟିଏ ନାଟକ ଅଭିନୀତ ହୁଏ, ବର୍ଷକୁ ସ୍କୁଲ ମାଗାଜିନ୍‌ର ଗୋଟିଏ ସଂଖ୍ୟା ପ୍ରକାଶିତ ହୁଏ । ସ୍କୁଲରୁ ଗୋଟିଏ 'ସାପ୍ତାହିକ' ପ୍ରକାଶ ପାଏ । ସେଥିରେ ଶିକ୍ଷକ ଓ ଛାତ୍ରଙ୍କ ସୁବିଧା ଅସୁବିଧା, ଛୁଟି, ଅଧ୍ୟୟନ ନିର୍ଘଣ୍ଟ, ହକି, ଟେନିସ୍, ଗଲ୍ଫ, ବାସ୍କେଟ୍‌ବଲ୍, ଫୁଟ୍‌ବଲ୍, ବେସ୍‌ବଲ୍, ଓ୍ୱାଟର ସ୍କିଂ, ସନ୍ତରଣ ପ୍ରତିଯୋଗିତା, ଅଶ୍ୱାରୋହଣ ପ୍ରତିଯୋଗିତା, ମଲ୍ଲଯୁଦ୍ଧ, କୁସ୍ତି କସରତ୍, ଅଭିନୟ, ମୋଭି ବା ଟେଲିଭିଜନ୍, ପାଠାଗାରକୁ ଆସିଥିବା ନୂତନ ପୁସ୍ତକର ତାଲିକା, ପୁରାତନ ଶିକ୍ଷକଙ୍କ ବିଦାୟ ଓ ନବ ଶିକ୍ଷକଙ୍କ ଆଗମନ ସମ୍ବାଦ ପ୍ରକାଶିତ ହୋଇଥାଏ । ଶିକ୍ଷକ, ଛାତ୍ର, ପୁରାତନ ଛାତ୍ର ଏହାର ଗ୍ରାହକ ।

ପ୍ରତିଷ୍ଠାର ବତରଣୀ ଉତ୍ସବ ଆଡ଼ମ୍ବରରେ ଅନୁଷ୍ଠିତ ହୁଏ । ବର୍ଷକେ ଥରେ ଦୂରବର୍ତ୍ତୀ ସ୍ଥାନ ଭ୍ରମଣର ସୁଯୋଗ ଛାତ୍ରମାନଙ୍କୁ ମିଳେ । ଏ ସ୍କୁଲରେ ଦୁଇଜଣ ଆସିଷ୍ଟାଣ୍ଟ ପ୍ରିନ୍‌ସିପାଲ୍ ଅଛନ୍ତି । ଲାଟିନ୍, ଫ୍ରେଞ୍ଚ, ସ୍ପାନିସ୍, ଜର୍ମାନ୍, ଋଷିୟାନ୍ ଭାଷା ଶିକ୍ଷା ଦେବାର ବ୍ୟବସ୍ଥା ଅଛି । ଏ ସ୍କୁଲରେ ସାହିତ୍ୟ ଶିକ୍ଷାଦାନ ପଦ୍ଧତି ଉଚ୍ଚକୋଟୀର ମନେ ହେଲା । ନିର୍ବାଚିତ ପ୍ରବନ୍ଧ, କବିତାଦି ବ୍ୟତୀତ ଛାତ୍ର ଦଶମରେ ବିଶ୍ୱସାହିତ୍ୟ, ଏକାଦଶରେ ଆମେରିକାନ ସାହିତ୍ୟ, ଦ୍ୱାଦଶରେ ବ୍ରିଟିସ ସାହିତ୍ୟ ଅଧ୍ୟୟନ କରିଥାନ୍ତି । ଇଂରେଜୀ ଏଠି ଶିକ୍ଷାର ମାଧ୍ୟମ । ଅଦଳ ବଦଳ



ଡକ୍ଟର ଓ ମିସେସ୍ ଲଣ୍ଡେଲ୍

ଯୋଜନାରେ ଯେଉଁ ଛାତ୍ରଛାତ୍ରୀମାନେ ଏଠାକୁ ଆସନ୍ତି, ସେମାନଙ୍କୁ ଇଂରେଜୀ ମାଧ୍ୟମରେ ଶିକ୍ଷା ଦିଆଯାଏ ।

## ଡକ୍ଟର ଓ ମିସେସ୍ କିଣ୍ଡ୍ରେଲ୍

ଡକ୍ଟର କିଣ୍ଡ୍ରେଲ ଉଦୟନାଥଙ୍କ ପରମ ହିତାକାଂକ୍ଷୀ; ଇରା ସଙ୍ଗେ ଉଦୟଙ୍କ ବିବାହ କରେଇଛନ୍ତି ସେ । କିନ୍ତୁ ଜଟିଳ ସମସ୍ୟା ଉପସ୍ଥିତ ହେଲେ ଇରା ଉଦୟ ସେମାନଙ୍କ ପରାମର୍ଶ ନିଅନ୍ତି । ନିଃସନ୍ତାନ । ତେଣୁ ଏ ଦୁହିଁଙ୍କୁ ସେମାନେ ନିଜ ସନ୍ତାନ ଦୃଷ୍ଟିରେ ଦେଖନ୍ତି; ଏମାନେ ମାସକେ ଥରେ ଦୁଇଥର ସେମାନଙ୍କ ଘରେ ଆହାର କରିଥାନ୍ତି । କିଣ୍ଡ୍ରେଲ ପରିବାର ମଧ୍ୟ ଇରା ଘରକୁ ବାରମ୍ବାର ଆସିଥାନ୍ତି । ଏହି ସୂତ୍ରରେ ତାଙ୍କ ସହିତ ମୋର ବନ୍ଧୁତ୍ୱ ଜମିଥିଲା ।

ତାଙ୍କ ପ୍ରତି ଶ୍ରଦ୍ଧାର ଅନ୍ୟ ଏକ କାରଣ—ସେ ସୁପଣ୍ଡିତ । ସେ Jack of many trades, କିନ୍ତୁ master of some । ନୃତତ୍ତ୍ୱ, ଭାଷାତତ୍ତ୍ୱ, ସାହିତ୍ୟ, ବାଣିଜ୍ୟ ବ୍ୟବସାୟ, ଅର୍ଥନୀତି, ସମାଜନୀତି, ରାଜନୀତି ଶିକ୍ଷା ପ୍ରଭୃତି ଯେ କୌଣସି ବିଷୟରେ ଆଲୋଚନା କଲେ ତାଙ୍କ ଜ୍ଞାନର ପରିସର ବିଷୟରେ ଉଚ୍ଚ ଧାରଣା ଜନ୍ମେ । ସେ ଆଇନରେ ଡକ୍ଟରେଟ୍ ଡିଗ୍ରୀ ଲାଭ କରିଛନ୍ତି; କିନ୍ତୁ ଜୀବନର ବଡ଼ ବିନୋଦନ ଭ୍ରମଣ । ସେ ଋଷିଆ ଦେଖିଛନ୍ତି, ନିଜେ ଡ୍ରାଇଭ କରି ସମଗ୍ର ଆମେରିକା, କାନେଡାରେ ବୁଲିଛନ୍ତି । ଅଲେସ୍କା ତାଙ୍କର ଏକ ପ୍ରିୟସ୍ଥାନ । ଆଲେସ୍କାର ଉତ୍ତୁଙ୍ଗ ପର୍ବତମାଳାରେ 'ସ୍ଥାୟୀ ତୁଷାର' ଉପରେ ତାଙ୍କର ଗବେଷଣା ରହିଛି । ସେ ଜଣେ ଚିତ୍ରକର । ଯେଉଁସବୁ ସୁଦୃଶ୍ୟ ତାଙ୍କର ହୃଦୟଗ୍ରାହୀ ହୋଇଛି, ସେ ଅଙ୍କନ କରିଛନ୍ତି—ରୁଦ୍ର ସୁନ୍ଦର ପ୍ରତି ତାଙ୍କର ଶ୍ରଦ୍ଧା ଅଧିକ । ତାଙ୍କ ଘର ମୋଡ଼ ପରଦାରେ ତାଙ୍କ ଦେଖା ରଙ୍ଗୀନ ଦୃଶ୍ୟ ସବୁ ଦେଖିଛି, ଉଭୟଙ୍କ ତୁଣ୍ଡରୁ ରୋମାଞ୍ଚକର ଭ୍ରମଣ କାହାଣୀ ଶୁଣିଛି । କାହାଣୀ ଯୋଗୁଁ ଦୃଶ୍ୟସବୁ ଅଧିକ ପ୍ରାସଙ୍ଗିକ ଓ ପ୍ରୀତିକର ହୋଇ ପାରିଛି ।

ଲିଣ୍ଡେଲ ମାନବତାବାଦୀ; ନିଗ୍ରୋଙ୍କ ପ୍ରତି ଗଭୀର ସମବେଦନା ତାଙ୍କ ଲେଖା ଓ ବକ୍ତୃତାରେ ପ୍ରକାଶିତ । କୃଷ୍ଣ ଜାତିର ଘୃଣାକାରୀ ଗୋରି କର୍ତ୍ତୃପକ୍ଷଙ୍କ ପକ୍ଷେ ଏହା ଅସହ୍ୟ । ସେମାନେ ତାଙ୍କୁ ତଳକୁ ଖସେଇବାକୁ ଚେଷ୍ଟା କରି ସଫଳ ହୋଇଛନ୍ତି । ଡ. ଲିଣ୍ଡେଲଙ୍କୁ ଅଧ୍ୟାପକରୁ କରା-ହୋଇଛି ଶିକ୍ଷକ । ମାନବତାର କଠୋର ପରୀକ୍ଷାରେ ଲିଣ୍ଡେଲ ଉତ୍ତୀର୍ଣ୍ଣ, ତେଣୁ ଅଧୋଗତିକ ପାସଙ୍ଗରେ ପକାଇ ନାହାନ୍ତି ।

ଇଉନିଟେରିଆନ୍ ଚର୍ଚ୍ଚର ଜଣେ କର୍ମୀ—ସେ ଗୋଷ୍ଠୀ ଓ ଧର୍ମଭେଦ ସ୍ୱୀକାର କରନ୍ତି ନାହିଁ । ମାନବସେବାକୁ ଜୀବନର ସର୍ବୋତ୍-କୃଷ୍ଟ ପ୍ରାର୍ଥନା ବୋଲି ମନେ କରନ୍ତି ।

## ହୋଲଡାନ୍ ହାଇ ସ୍କୁଲ ଓ ଡ଼: ଲିଣ୍ଡେଲ୍

ଏ ଗୋଟିଏ ନିଗ୍ରୋ ହାଇ ସ୍କୁଲ । ଏହାର ଛାତ୍ରଛାତ୍ରୀ ସଂଖ୍ୟା ଦୁଇ ହଜାର ପାଞ୍ଚଶ । ସମସ୍ତେ ନିଗ୍ରୋ । କେତେକ ଶିକ୍ଷକ ଅବଶ୍ୟ ଗୋରା । ନିଗ୍ରୋ ଛାତ୍ରଛାତ୍ରୀ ଆମେରିକାର ଜାତୀୟ ବେଶଭୂଷା ଗ୍ରହଣ କରିଛନ୍ତି । ଛାତ୍ରମାନେ ଲଣ୍ଡା । ମୁଣ୍ଡ କାଉଖଣ୍ଡିଆ । ବ୍ୟଯ୍ବାହୁଲ୍ୟରୁ ହାତେ ହାତେ କଳୁରି ହୁଅନ୍ତି ଏମାନେ । ଗୋରା ଝିଅଙ୍କ ପରି ନିଗ୍ରୋ ଝିଅମାନେ କେଶ ସଜେଇଛନ୍ତି; ସେମାନଙ୍କ ଗତି ସେଇ ଦିଗକୁ ଦେଖିଲେ ମଧ୍ୟ ଫେସନ କମ୍; ଦାରିଦ୍ର୍ୟ ଏହାର କାରଣ ହୋଇପାରେ ।

ଡ. ଲିଣ୍ଡେଲ୍ ଉପରୁ ଠେଲି ଖାଇ ଏଇ ସ୍କୁଲରେ ଲାଗିଛନ୍ତି । ଅଠର ବର୍ଷ ଅଧ୍ୟାପକ ହେଲା ପରେ ତାଙ୍କର ଏଇ ଦୁର୍ଦ୍ଦଶା । ବଦ୍‌ବଣ୍ଟ ଯେତିକ ବଢ଼ିଛି ଗତି ସେତିକ ତଳକୁ ହୋଇଛି—

ନିକଟ ତରଳ ସାନ ବଡ଼କୁ
ଗରୁ ପିଏ ସେବି ଯାଏ ତଳକୁ !

ଭାରତ ପରି ଏଠି ମଧ୍ୟ କେତେକ ନୀଚ ମନୋବୃତ୍ତିସମ୍ପନ୍ନ ଅଫିସର୍ ଅଛନ୍ତି; ସଂସ୍କୃତିର ଧାର୍ ଧାରନ୍ତି ନାହିଁ, ଅଥଚ ଏହାର

କର୍ଣ୍ଣଧାର । ଆଜି କେତେକ ଧର୍ମାନ୍ଧ । ଧର୍ମରକ୍ଷା ନାମରେ ଯେ କୌଣସି ପାପ କରିବାକୁ ତତ୍ପର । ଆମେରିକାର ବିଦ୍ୱାନ୍, କବି ବେଳେ ବେଳେ ଏହି ମାନଙ୍କର ଶିକାର ହୋଇଥାନ୍ତି । କବି ହୁଇଟ୍‌ମ୍ୟାନ୍‌ଙ୍କ କଥା ମନେ ପଡ଼େ ।

ଯେତେବେଳେ 'Leaves of Grass' ପ୍ରକାଶିତ ହୋଇଥାଏ । ତାକୁ ପଢ଼ି ଉପରସ୍ଥମାନେ ଧରିନେଲେ ଯେ ହୁଇଟ୍‌ମ୍ୟାନ ଚରିତ୍ରହୀନ। ତାଙ୍କ ବିରୁଦ୍ଧରେ ଅନ୍ୟ ପ୍ରମାଣ ଲୋଡ଼ା ନାହିଁ । ସରକାର କବି କିରାଣି ଚାକିରିରୁ ହଟାଇଲେ । ତାଙ୍କର ବନ୍ଧୁମାନେ କର୍ତ୍ତୃପକ୍ଷଙ୍କୁ ଯେତେ ବୁଝାଇଲେ କିଛି ଫଳ ହେଲା ନାହିଁ ।

ଏଇ ମାନବପ୍ରେମୀ କବି ଯେତେବେଳେ ଆହତ ସୈନିକମାନଙ୍କର ସେବା କରି ସୁନାମ ଅର୍ଜିଥିଲେ, ସେ ଲେଖିଥିଲେ—ମୋ ବନ୍ଧୁ ଝୁଇଁବାମାନେ ମଣିଷକୁ ଛୁଇଁବା, ପତିତାକୁ ଦେଖି ଯାହାଙ୍କ ଆଖିରୁ ସମବେଦନାର ଅଶ୍ରୁ ଝରି ପଡ଼ୁଥିଲା—Not till the sun excludes do I exclude you.—ନବଯୁଗ ଓ ଛନ୍ଦର ପ୍ରବର୍ତ୍ତକ, ବିପ୍ଳବୀ, ଭବିଷ୍ୟତବକ୍ତା କବିଙ୍କ ମୁଖର ଗ୍ରାସ କାଢ଼ି ନେବା ଲାଗି ସେ ଦିନର ତଥାକଥିତ ଧର୍ମର ବିବେକ ସଙ୍କୁଚିତ ହେଲା ନାହିଁ । ମାନବତାପ୍ରେମୀ, ମହିମାନ୍ ଡାକ୍ତର ଲିଣ୍ଡେଲଙ୍କୁ ଏଇ ଅବସ୍ଥାରେ ଦେଖିଲେ କଷ୍ଟ ଲାଗେ, କିନ୍ତୁ ତାଙ୍କ ମନରେ କଷ୍ଟ ନାହିଁ । ୬୮ ବର୍ଷ ବୟସରେ ଏବେ ବି ସେ ବିଦ୍ୟାର ସାଧନା କରି ଚାଲିଛନ୍ତି; ଏକ ଦିଗରେ ଗଭୀର ମନନ—ଅନ୍ୟ ଦିଗରେ ସେବା କାର୍ଯ୍ୟ, କିଏ କାହାର ପରିପୂରକ ଜାଣେ ନାହିଁ । କିନ୍ତୁ ଉଭୟ ତାଙ୍କ ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟକୁ ସବଳ, ସୁନ୍ଦର କରିଛନ୍ତି ଓ ବ୍ୟକ୍ତିତ୍ୱକୁ ମହିମାପୂର୍ଣ୍ଣତା ଦାନ କରିଛନ୍ତି ।

ସାଢ଼େ ଏଗାରଟା ବେଳ । ଡ. ଲିଣ୍ଡେଲ୍ ଲଞ୍ଚ୍ ଲାଗି ସ୍କୁଲ ରେଷ୍ଟୁରାଣ୍ଟକୁ ଡାକି ନେଲେ । ପ୍ଲେଟ୍‌ଟିଏ ଧରି ଖଣ୍ଡେ କେକ୍, ସ୍ୟାଣ୍ଡୱିଚ୍ ଓ ଗ୍ଲାସେ ଥଣ୍ଡା ଦୁଧ ନେଇ ଆସିଲି । ଅଧା ଖାଇଛି କି

ନାହିଁ, ଧାଡ଼ି ଲଗିଗଲ—ପଢନ୍ତି ଶବ୍ଦ ଗିଳି ! ଏଇ ତରଙ୍ଗିତ ତାରୁଣ୍ୟର ପ୍ରବାହ ଦେଖାଇବା ଲାଗି ସେ ଆନନ୍ଦରେ ମୋତେ ଭିଡ଼ି ନେଲେ ।

ନବମରୁ ଦ୍ୱାଦଶ—ଏଇ ସ୍କୁଲରେ ଚାରିଗୋଟି ଶ୍ରେଣୀ ଅଛି । ଦ୍ୱାଦଶ ଶ୍ରେଣୀରେ ଇଂରେଜୀ ପଢ଼ା ହେଉଥାଏ । ଲିଣ୍ଡେଲ୍ ମୋତେ ଛାତ୍ରଛାତ୍ରୀଙ୍କ ମେଳରେ ବସାଇ ଦେଇ ଚାଲିଗଲେ । ମୋ ପାଖ ଝିଅଟି ପଢ଼ା ପ୍ରତି ତିଳାର୍ଦ୍ଧ ଧ୍ୟାନ ନ ଦେଇ ଉପନ୍ୟାସ ପଢ଼ି ଚାଲିଥାଏ । ଭାବର ନିଶାରେ ମସ୍‌ଗୁଲ୍ ହୋଇଛି ଯେ । ଉପନ୍ୟାସଟି ଶେଷ ନ ହେବା ପର୍ଯ୍ୟନ୍ତ ରକ୍ଷା ନାହିଁ ।

ଶିକ୍ଷକ ମିସେସ୍ ଗ୍ରୁଣ୍ଡମ୍ୟାନ୍ ପକ୍ୱକେଶା, ମଧ୍ୟବୟସ୍କ ମହିଳା । ଦୁଇ ହସ୍ତର ଅଙ୍ଗୁଳିରେ ଦୁଇଟି ମୁଦ୍ରିକା । କଣ୍ଠ କ୍ଷୀଣ । ଗ୍ରୁଣ୍ଡମ୍ୟାନ୍ ଥାକ୍‌ରେ, ଗଲସ୍‌ୱାର୍ଦ୍ଦି, ହେମିଂୱେ, ସେକସ୍‌ପିଅର୍, ଇବ୍‌ସେନ୍ ପ୍ରଭୃତି ୨୦ ଜଣ ଲେଖକ ଲେଖିକାଙ୍କ ନାମ ଡାକି ଦେଲେ । ଛାତ୍ରଛାତ୍ରୀମାନେ ଏଥି ମଧ୍ୟରୁ ତିନି ଜଣଙ୍କର ତିନି ଖଣ୍ଡ ପୁସ୍ତକ ବାଛି ପଢ଼ିବେ । ବାଉନ୍ନ ଚରିତ୍ର ମଧ୍ୟରେ ଗୋଟିଏ ତୁଳନାତ୍ମକ ଆଲୋଚନା ଲେଖିବେ; ମାଟ୍ରିକ୍ ଗ୍ରାଜୁଏଟ୍‌ର ଥେସିସ୍ ଏ । ଏଇ ଥେସିସ ଉପରେ ଗୁଣାତ୍ମକ ବିବେଚନାରେ ଏ, ବି, ସି ଦିଆଯିବ । ଆମ ଆଡ଼ର ମାଟ୍ରିକ୍ ଛାତ୍ରଙ୍କୁ ଏଭଳି ଥେସିସ୍ ଲେଖା ଅତି ଉଚ୍ଚକୋଟୀର ବୋଧ ହୋଇପାରେ ।

ଘଣ୍ଟା ବାଜିଲା ପରେ ସ୍କୁଲ୍ ପାଠାଗାରରେ ପଶିଲି । ଧାଡ଼ି ଧାଡ଼ି ପୁସ୍ତକ ଉପରେ ଆଖି ବୁଲଉ ବୁଲଉ ଖଣ୍ଡିଏ ପୁସ୍ତକ ଟାଣିନେଲି—ଆଧୁନିକ କବିତା ସଙ୍କଳନ । ତାର ମୁଖବନ୍ଧ ପଢ଼ି ଜାଣିଲି ଯେ ରେନେସାଁ ଯୁଗରେ ଆମେରିକାରେ ଚାରି ହଜାର କବିଙ୍କ କବିତା ପତ୍ରପତ୍ରିକାରେ ପ୍ରକାଶିତ ହୋଇଅଛି । ସେମାନଙ୍କ ମଧ୍ୟରୁ ଅଳ୍ପ କେତେ ଜଣ କବିତା ପୁସ୍ତକ ଛପେଇବାକୁ ସମର୍ଥ ହୋଇଛନ୍ତି । ପ୍ରସିଦ୍ଧ କବିଙ୍କ ମଧ୍ୟରେ ହ୍ୱିଟ୍‌ମ୍ୟାନ୍, ଇମର୍ସନ, ଇମିଲେ ଡିକନ୍‌ସନ, ଲେଟ୍‌ୱେଲ, ରବର୍ଟ ଫ୍ରଷ୍ଟ, ଏଲିଅଟ୍, ଅର୍ଚ୍ଚିବାଲ୍‌ଡ ମାକ୍‌ଲିସ ଓ ଏଜ୍ରା ପାଉଣ୍ଡ ପ୍ରଧାନ । ମାର୍କଟ୍ୱେନ୍, ହ୍ୱିଟ୍‌ମ୍ୟାନ ଆମେରିକାନ୍ ସାହିତ୍ୟରେ ନୂତନ ଯୁଗ ପ୍ରବର୍ତ୍ତନ କରିଛନ୍ତି ।

୧୯୧୨ରେ Poetry ପତ୍ରିକା ପ୍ରକାଶିତ ହେଲା । ଆମେରିକାର ମୁଖ୍ୟ ସହରମାନଙ୍କରେ ଗୋଟିଏ ଗୋଟିଏ କବିତା ପାଠଚକ୍ର ଅଛି । ଏହି ପାଠଚକ୍ର ତରଫରୁ କବିତା ପାଠୋତ୍ସବ ହୁଏ । ପ୍ରତିଯୋଗିତାରେ ବିଜୟୀମାନେ ପୁରସ୍କାର ପ୍ରାପ୍ତ ହୁଅନ୍ତି ।

ଛଅଟାବେଳେ ଡକ୍ଟର କାଣ୍ଟ୍ରେଲ୍‌ଙ୍କ ଅଫିସରେ ପହଞ୍ଚିଲି । ବୁଝି ବୁଝି ଜାଣିଲି ସେ ସ୍କୁଲର ଶିକ୍ଷକ ନୁହନ୍ତି, ପ୍ରିନ୍‌ସିପାଲ ବା ଭାଇସ୍ ପ୍ରିନ୍‌ସିପାଲ ନୁହନ୍ତି । ସେ ଜଣେ ଶାସକ, ନାମକୁ ମାତ୍ର । ସ୍କୁଲରେ କେଉଁଦିନ କିଏ ଅନୁପସ୍ଥିତ ରହିଲା ତନଖି କରିବା ତାଙ୍କର କାମ ।

ପ୍ରତି ପିରିଅଡ୍‌ରେ ଉପସ୍ଥାନ ନିଆଯାଏ । ବିଳମ୍ବ ଉପସ୍ଥିତିକୁ ସ୍ୱତନ୍ତ୍ର ଭାବେ ଚିହ୍ନିତ କରାଯାଏ । ମାସକେ ଦଶଦିନ ଅନୁପସ୍ଥିତିରେ ପିତାଙ୍କ ନିକଟକୁ ପତ୍ର ଲେଖାଯାଏ, ୧୫ଦିନ ଅନୁପସ୍ଥିତ ହେଲେ ପିତାଙ୍କୁ ଡକାଯାଏ, ୨୦ଟି ଅନୁପସ୍ଥିତିରେ ପୁଣି ଡକାଯାଏ । ୩୦ଦିନ ଅନୁପସ୍ଥିତ ହେଲେ ସ୍କୁଲରୁ ଛାତ୍ର ବା ଛାତ୍ରୀକୁ ବାହାର କରି ଦିଆଯାଏ—ନ ପଢ଼ିଲେ ଛାତ୍ର ବା ଛାତ୍ରୀକୁ ଜେଲ୍ ଦଣ୍ଡ ଦିଆ ଯାଇପାରେ ।

ବାର୍ଷିକ ପରୀକ୍ଷା ଉପରେ ବେଶୀ ଜୋର୍ ଦିଆଯାଏ ନାହିଁ । ଦୈନିକ ପାଠ୍ୟ ଓ ପରୀକ୍ଷା ଉପରେ ଫଳ ନିର୍ଭର କରେ; ଛାତ୍ର କ, ଖ ବା ଗ ଶ୍ରେଣୀ ଭୁକ୍ତ ହୁଏ । ମାଟ୍ରିକ ଗ୍ରାଜୁଏଟ୍ ପରୀକ୍ଷା ବିଶ୍ୱବିଦ୍ୟାଳୟ ବା ବୋର୍ଡ଼ କରେ ନାହିଁ । ପ୍ରତ୍ୟେକ ସ୍କୁଲ ତାର ଛାତ୍ରଛାତ୍ରୀଙ୍କ ଫଳ ଘୋଷଣା କରେ । ପ୍ରତ୍ୟେକ ସ୍କୁଲରେ ସ୍ୱତନ୍ତ୍ର ସମାବର୍ତ୍ତନ ଉତ୍ସବ ଅନୁଷ୍ଠିତ ହୁଏ । ଗାଉନ୍ ପିନ୍ଧି ଛାତ୍ରଛାତ୍ରୀ ଡ଼ିଗ୍ରୀ ଆଣନ୍ତି ।

ଡକ୍ଟର କାଣ୍ଟ୍ରେଲ୍ ଏଇ ସ୍କୁଲର 'ଆଟେଣ୍ଡେନ୍‌ସ କାଉନସିଲର୍ ।' ଏହା ଗୋଟିଏ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ । ନିୟମିତ ଉପସ୍ଥିତି ଉପରେ ଛାତ୍ରର ଭବିଷ୍ୟତ ନିର୍ଭର କରେ । ଏଇ ସ୍କୁଲ ଉପରେ ରାଜନୀତିର କୌଣସି ପ୍ରଭାବ ନାହିଁ, ଧର୍ମଘଟ କଥା ଏଠି ଶୁଣାଯାଏ ନାହିଁ । ଶିକ୍ଷକ କର୍ତ୍ତବ୍ୟରେ ତ୍ରୁଟି କରିବା କିମ୍ବା ଛାତ୍ର ଗୁରୁଙ୍କୁ ଅମାନ୍ୟ କରିବା କଥା ଏଠି ଶୁଣାଯାଏ ନାହିଁ । ବିନା କୋଳାହଳରେ ଅଢ଼େଇହଜାର ପିଲ

କପର ଚଳପ୍ରଚଳ ହେଉଛନ୍ତି ? ଏପରି କଠୋର ଶୃଙ୍ଖଳା ଓଡ଼ିଶାର କୌଣସି ହାଇସ୍କୁଲରେ ଦେଖିବା କଥା ମନେ ପଡ଼ୁନାହିଁ ।

ମିଷ୍ଟର କାର୍‌ରେ ମୋତେ ଘରକୁ ନେଇଗଲେ, ଗାଡ଼ି ଡ୍ରାଇଭ୍ କରୁ କରୁ କହିଲେ—ଦକ୍ଷିଣ ଆଫ୍ରିକା ଓ ଆମେରିକା ମଧ୍ୟରେ ତଫାତ୍ କଣ ଜାଣ ? ଭାରତରେ ଯେପରି ଅସ୍ପୃଶ୍ୟଙ୍କୁ ସବର୍ଣ୍ଣ ହିନ୍ଦୁମାନେ ଘୃଣା କରନ୍ତି, ଏଠି ସେହିପରି ନିଗ୍ରୋମାନଙ୍କ ପ୍ରତି ଗୋରିଗୋଷ୍ଠୀ ବ୍ୟବହାର କରିଥାନ୍ତି ।

ମୁଁ କହିଲି—ଡ. ମିଷ୍ଟର, ଏ ନଜର୍ କିନ୍ତୁ ଠିକ୍ ହେଲା ନାହିଁ । ଭାରତରେ ଏବେ ଆଉ ତ କେହି ଅସ୍ପୃଶ୍ୟ ନାହାନ୍ତି । ସ୍ଥାନେ ସ୍ଥାନେ ସବର୍ଣ୍ଣ ହିନ୍ଦୁ ପରିବାର ସହିତ ସେମାନଙ୍କର ବୈବାହିକ ସମ୍ପର୍କ ସ୍ଥାପିତ ହେଲାଣି । କିନ୍ତୁ ଆମେରିକାରେ ଗୋରାଙ୍କ ଅତ୍ୟାଚାରରୁ ରକ୍ଷା କରିବା ପାଇଁ କଳା ସ୍କୁଲ ପିଲାଙ୍କ ସଙ୍ଗେ ପୁଲିସ ଯାଉଛି । ଆନ୍ଦୋଳନ ଦିନୁଁ ଦିନ ବଢ଼ୁଛି ।

ମି. ମିଷ୍ଟର ବଗିଚା ପାଖେ ଗାଡ଼ି ପାର୍କ କରି ତାଙ୍କ ହରଗଜା ଓ ଗୋଲାପ ଗଛ ସବୁ ଦେଖାଇଲେ । ତା ମଧ୍ୟରେ ନାଲି ନାଲି ବଣ ଫୁଲ । ମିଷ୍ଟର କହିଲେ—ବାଳୁଙ୍ଗା, ଅନାବନା !

"ତାର କଣ ଆନନ୍ଦ ଦେବାର ଅଧିକାର ନାହିଁ ? ଗୋରା ତ ମନେ କରୁଛି—କଳା ଏଠି ବାଳୁଙ୍ଗା । କିନ୍ତୁ ତାକୁ ଉପାଡ଼ି ଫିଙ୍ଗି ଦେଇ ପାରିବ କି ? ନେଡ଼ି ଗୁଡ଼ ଯେ କଣ୍ଟକିତ ବୋଲି ଗଲାଣି !"

ମିଷ୍ଟର କହିଲେ—ଏ ଦେଶରେ ନିଗ୍ରୋ ସମସ୍ୟା ମୁଖ୍ୟତଃ ଅର୍ଥନୈତିକ । ଗୋରାଙ୍କ ମାସିକ ଆୟ ମୁଣ୍ଡପିଛା ଛ'ଶହ ଡଲାର୍ ହେଲେ କଳାର ଠିକ୍ ଅଧା ।

"ଏଠି ନିଗ୍ରୋ ବ୍ୟବସାୟୀ ଅଛନ୍ତି ?"

"ଯୁକ୍ତରାଷ୍ଟ୍ରର ଦକ୍ଷିଣାଞ୍ଚଳରେ ନିଗ୍ରୋ ଦୋକାନ କଲେ ଗୋରାମାନେ ମୋଡ଼ଦିଅନ୍ତି, ଉତ୍ତରାଞ୍ଚଳରେ ଗୋରାଙ୍କ ସଂଖ୍ୟା ଅଧିକ। ଏଠି ନିଗ୍ରୋ ଦୋକାନ କଲେ ଗୋରା ସଉଦା କିଣିବାକୁ ଯାନ୍ତି ନାହିଁ। ଦୋକାନରୁ ନିଗ୍ରୋ କେବଳ ମଉଦା ନେଇ ପାରିବେ। କିନ୍ତୁ ସେ ଟିଏ ଜାଗାରେ ଏତେ ନିଗ୍ରୋ କାହାନ୍ତି ? କେବଳ ଜାତିପ୍ରୀତିରେ ଆର୍ଥିକ କ୍ଷତି କରି ଦୂରବର୍ତ୍ତୀ ସ୍ଥାନରୁ କିଏ ବା ଆସିବ ?"

ପୁଣି ବ୍ୟବସାୟ କରିବା ପାଇଁ ନିଗ୍ରୋ ହାତରେ ପାଣ୍ଠି କାହିଁ ? ଗୋରା କୋଡ଼ିଏ ଡଲାରର ଜୋତା କିଣିଲେ ନିଗ୍ରୋ ତିରିଶି ଡଲାରର ଜୋତା କିଣେ। ଯେତେ ଦରିଦ୍ର ହେଲେ ବି ସେ ବେଶ ଭୂଷଣରେ ଗୋରା ଠାରୁ କମ୍ ନୁହେ। ଫଳରେ ତେଜାଳକୁ ମୁକଣି ଆଳ ବଳ ପଡ଼େ।

ସେମାନଙ୍କର ନ୍ୟୂନ ମନୋବୃତ୍ତି ଯଥେଷ୍ଟ ରହିଛି। ଅଶିକ୍ଷିତଙ୍କ ସଂଖ୍ୟା ଅଧିକ। ସେମାନେ ସାଧାରଣ ପାଠାଗାରକୁ ଯାନ୍ତିନାହିଁ; ବହି କିଣିବା ଲାଗି ହାତରେ ପଇସା ନାହିଁ। ଶିକ୍ଷିତ ନିଗ୍ରୋଙ୍କୁ ଯଥାଯୋଗ୍ୟ ଚାକିରି ଦିଆହୁଏ ନାହିଁ। ଗୋରା ନିଯୁକ୍ତିଦାତା। ଗୋରାଙ୍କ ମନରେ ପାଟର ଅନ୍ତର ଭାବ ଯଥେଷ୍ଟ। ତେଣୁ ପ୍ରତିଯୋଗିତା କ୍ଷେତ୍ରରେ ସୁଯୋଗ୍ୟ ନିଗ୍ରୋ ବି ଛିଡ଼ା ହୋଇପାରେ ନାହିଁ। ଗୋରାଙ୍କ ଘରଦ୍ୱାର ପରିଷ୍କାର କରିବା ପାଇଁ ଆସନ୍ତି ଗୋଲା।

ଗୌରବର୍ଣ୍ଣର ହାକମାଣୀ ଯଦି ନିଗ୍ରୋଙ୍କୁ ଚାକରାଣୀ ଏ ପକାଏ, ସେ କାନମୁଣ୍ଡା ଆଉଁସି ରହେ; ପ୍ରତିବାଦ କଲେ କେହି ଶୁଣିବେ ନାହିଁ। ମିଳିଛି ଚାକିରିଖଣ୍ଡେ ଯିବ; ଚାକିରି ବିନା ସେ ଚଳିବ କିପରି ? ହିଂସାତ୍ମକ କାଣ୍ଡ କଲେ ଜୀବନ ଘେନି କିଏ ଘରକୁ ଫେରି ପାରିବ ? ତା ପିଠିରେ କିଏ ପଡ଼ିବ ?

ଦୋଷୀକୁ ଦଣ୍ଡ ଦେବା ଲାଗି ଆଇନ ହୋଇଛି। କିନ୍ତୁ ଆଇନ ପ୍ରୟୋଗ କରିବ କିଏ ? ସାକ୍ଷୀ ଦେବ କିଏ ? ତେଣୁ କଳା ଉପରେ ଅତ୍ୟାଚାର କରି ଗୋରା ଖସିଯାଉଛି।

ଏବେ ମିସିସିପିରେ ନିଗ୍ରୋ ଗୃହ ଗୁଡ଼ିକୁ ଗୋରାଲୋକେ ନିର୍ମମ-ଭାବେ ପିଟି ଦେଇଗଲେ; କେତେ ମୁଣ୍ଡ ଫାଟିଲା । ପୁଲିସ୍ ସାମ୍ନାରେ ଏ କାଣ୍ଡ ଘଟିଗଲା । ପୁଲିସ୍ ଗୋରା; ଦେଖି ନ ଦେଖିଲା ପରି ସେମାନେ ରହିଲେ । ପ୍ରାଦେଶିକ ସରକାର ମଧ୍ୟ ଦୃଢ ହସ୍ତରେ ଗୁଣ୍ଡାମାନଙ୍କୁ ଜବତ୍ କଲେ ନାହିଁ । ଶେଷକୁ କେନ୍ଦ୍ର ସରକାରଙ୍କ ଧମକରେ ଅବସ୍ଥା ଶାନ୍ତ ପଡ଼ିଲା । ଏହା ଦମନ କରିବାର ଏକମାତ୍ର ଉପାୟ—ସମ୍ପୂର୍ଣ୍ଣ ସମସ୍ତ ପ୍ରଦେଶକୁ କେନ୍ଦ୍ରର ଦୃଢ଼ କର୍ତ୍ତୃତ୍ୱରେ ରଖିବା ।”

“ରଖୁନାହାନ୍ତି କାହିଁକି ?”

‘ତାହେଲେ ଗଣତନ୍ତ୍ର ବୋଲି ଏ ଦେଶରେ କିଛି ରହିବ ନାହିଁ ।’

‘ଏବେ କଣ ଅଛି ? ସମ୍ବିଧାନରେ ନିଗ୍ରୋକୁ ଗୋରା ସହିତ ସମାନ ଅଧିକାର ଦିଆଯାଇଛି । କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଠିକ୍ ଓଲଟା ।’

‘ଭାରତରେ ଗଣତନ୍ତ୍ର କିପରି ଚାଲିଛି ?’

‘ଆମ ଗଣତନ୍ତ୍ର ଧର୍ମନିରପେକ୍ଷ; କିନ୍ତୁ ଧନପ୍ରଭାବମୁକ୍ତ ନୁହେ । ଆପଣ ଦକ୍ଷିଣ ଆଫ୍ରିକାଠାରୁ ନିଗ୍ରୋଙ୍କ ଅବସ୍ଥା ଏଠି ଭଲ ବୋଲି କାହିଁକି କହୁଥିଲେ ? ଏଠି ତ ସେମାନଙ୍କ ଧନ ଜୀବନ ନିରାପଦ ନୁହେ !’

‘ଏଠି ଆଇନ ସମସ୍ତଙ୍କୁ ସମାନ ଅଧିକାର ଦେଇଛି । କିନ୍ତୁ ଗୋଟିଏ ଭାଇ ତାକୁ ମାନୁନାହିଁ । ସେଠି ଆଇନ ନିଜେ ଶତ୍ରୁ । ନିଜ ଟଙ୍କାରେ ଭଲ ଘର ଖଣ୍ଡିଏ ତୋଳି ରହିବାର ଅଧିକାର ନିଗ୍ରୋର ନାହିଁ । ବୁଲ୍‌ଡୋଜର୍ ଲଗାଇ ସେ ଘରକୁ ଭାଙ୍ଗି ଦିଆଯାଏ ।’

‘ଏହାର ପ୍ରତିକାର ?’

‘ଜଣେ ନିଗ୍ରୋକୁ ଏ ପ୍ରଶ୍ନ ପଚାରିଥିଲି । ସେ କହିଲା — ରକ୍ତପାତ !—

‘ଯେଷାକୁ ତେଷା
ହାରାମ୍‌ଜାଦାକୁ ଟାଙ୍ଗିଆପଣା ।’

'ନିଗ୍ରୋଙ୍କ ମୁକ୍ତି ଘୋଷଣାର ଶହେବର୍ଷ ପୂରିଗଲାଣି । ଉତ୍ତର ଦକ୍ଷିଣ ଗୃହ ଯୁଦ୍ଧରେ ଛ'ଲକ୍ଷ ଲୋକ ମୃତ୍ୟୁ କବଳରେ ପଡ଼ିଲେ । ତଥାପି ଆମେରିକାନ୍ ଗୋରାଙ୍କ ପ୍ରକୃତି ବଦଳିଲା ନାହିଁ । ଭୌତିକ ଦିଗରୁ ସର୍ବାଗ୍ରଗଣ୍ୟ ହେଲେ ବି ନୈତିକ ଦିଗରୁ ଆମେରିକା ପଛରେ ପଡ଼ିଛି, ମନେ ହୁଏ ।'

'ଆମେ ଜର୍ମାନ୍ ନେଇଛୁ; ଫ୍ରେଞ୍ଚ୍, ଇଟାଲୀୟ ନେଇଛୁ— ଆମେରିକାନ୍ ବୋଇଲେ 'ବାଉ ଜାଟ ଚେର ଗୋଲ' । କିନ୍ତୁ ନିଗ୍ରୋ-ମାନଙ୍କୁ ଆମ ଗୋଷ୍ଠୀରେ ମିଶାଇ ନେଇ ପାରିଲୁ ନାହିଁ । ମୋଟା ଓଠ, ଚେପ୍ଟା ନାକ, କୁଞ୍ଚୁକୁଞ୍ଚିଆ ବାଳ, ଗାଢ଼ କଳା ରଙ୍ଗ । ଏଣୁ ଏମାନେ ଅଲଗା ହୋଇ ରହିଗଲେ । ଫଳରେ ଯାତୀୟ ସମସ୍ୟା ସୃଷ୍ଟି ହୋଇଛି ।'

'ଦୁଇ ଗୋଷ୍ଠୀ ମଧ୍ୟରେ ବୈବାହିକ ସମ୍ପର୍କ ହେଲାଣି କି ନାହିଁ ?'

'ହାଁ ଭାଁ କୋଉଠି ବା ହୋଇଥିବ । କିନ୍ତୁ ବିରୋଧ ଅତି ଶକ୍ତ । ଗୋରା ଝିଅ ଯଦି ତା ବାପ ଆଗେ କହେ ଯେ ତାକୁ ଗୋଟିଏ ନିଗ୍ରୋ ଯୁବକ ଚୁମ୍ବନ କରିଛି, ତେବେ ଫଳ ଭୟଙ୍କର ହେବ । ଗୋରା ଗୋଷ୍ଠୀ ବନ୍ୟ ପଶୁପରି ସେଇ ଯୁବକକୁ ଶିକାର କରିବେ; ଝିଅର ବାପ ମଧ୍ୟ ନିଗ୍ରୋକୁ ଗୁଳିକରି ମାରିଦେଇ ପାରେ ।'

'ଶାସ୍ତି ?'

'ହଁ, ହେଉଛି, କିନ୍ତୁ ଲଘୁ । କଠିନ ଦଣ୍ଡର ବ୍ୟବସ୍ଥା ନହେଲେ ଅପରାଧକୁ ରୋକ ହେବ ନାହିଁ ।'

ଲିଣ୍ଡେଲ୍ ପୁଣି ଥରେ ଭାରତର ଅସ୍ପୃଶ୍ୟଙ୍କ କଥା ଉଠାଇଲେ । କହିଲି 'ଅସ୍ପୃଶ୍ୟତା ଭାରତର ଏକ ସମସ୍ୟା ହୋଇନାହିଁ । ହରିଜନ ଆମ ସଙ୍ଗେ ସ୍କୁଲରେ ପଢ଼ୁଛନ୍ତି, ଏକା ଡାକ୍ତରଖାନାରେ ରହୁଛନ୍ତି, ଏକା ହୋଟେଲରେ ଖାଉଛନ୍ତି; ହରିଜନ ହେ କାନରୁ ସବର୍ଣ୍ଣ ସଉଦା କିଣୁଛି । ଭାରତରେ ହରିଜନମାନେ ଅପେକ୍ଷାକୃତ ଗରିବ; କିନ୍ତୁ ସରକାର

ସେମାନଙ୍କ ପିଲଙ୍କ ପଢ଼ିବା ଲଗି ପ୍ରଚୁର ଅର୍ଥ ସାହାଯ୍ୟ କରିଥାନ୍ତି । ହରିଜନଙ୍କ ଜୀବନର ମାନ କ୍ରମେ ବୃଦ୍ଧିଲାଭ କରୁଛି ।

ଭାରତରେ ଜୀବନର ମାନ ବିଷୟରେ ଲଣ୍ଡନ୍ କଣ ଭାବୁଥିଲେ କେଜାଣି, କହିଲେ—ତୁମେ ସବୁ କଣ ଖାଅ ?

"ଭାତ, ଡାଲି, ତରକାରୀ, କାହାକୁ କାହାକୁ ବରଂ ଦୁଇଟା ଭାତ ମଧ୍ୟ ମିଳେ ନାହିଁ । ଭଜା, ସନ୍ତୁଳା କଥା ପଚାରୁଛ କଣ ?"

"ମାଛ ମାଂସ ?"

"କ୍ୱଚିତ୍ ।"

"ଫଳ ?"

"ପାଚିଲା କଦଳୀ; ଆମ୍ବ ପଣସ ସବୁ ସମୟରେ ମିଳେ ନାହିଁ । ଅଙ୍ଗୁର ବେଦନା ରୋଗୀ ଖାନ୍ତି ।'

'ତୁମ ଧର୍ମ ରୋକୁଚି; ନଇଲେ ପୁଷ୍ଟିକର ଗୋମାଂସ ପଥେଷ୍ଟ ଖାଇ ପାରନ୍ତ ।'

ଅକାମିକା, ବୁଢ଼ା, ରୋଗିଣା ଗୋରୁଙ୍କୁ ଦାଣମୁହିଁକୁ ପଠାଯାଏ । ସେ ମାଂସ ତୁମେ ଏଠି ଛୁଇଁବ ନାହିଁ । ଶସ୍ତା । ପେଟ ବିକଳରେ ଲୋକେ ଖାନ୍ତି । ଭଲ ଗୋରୁର ମାଂସ ଖାଇବା ଲୋକ ବି ଅଛନ୍ତି ।'

'ସୁସ୍ଥ, ସବଳ ଗୋରୁ ମାଂସ ନ ଖାନ୍ତି କାହିଁକି ?'

'ହଳ ବୁଲାଇବ କିଏ ? ଗୋଟାଏ ହଳଯୋଗ୍ୟ ଗୋରୁର ଦାମ୍ କେତେ ! ଭାରତରେ ତ ଟ୍ରାକ୍ଟର ବିଶେଷ ଚାଲୁ ହୋଇନାହିଁ ।'

'ପାଉଣ୍ଡେ ଗୋରୁମାଂସ ଲଗି ଯେତିକି ଖର୍ଚ୍ଚ, ପାଉଣ୍ଡେ ଘୁଷୁରି ମାଂସ ଉତ୍ପାଦନ ଲଗି ତାର ଅଧା ଖର୍ଚ୍ଚ । ଆଗେ ଜୀବନ, ତାପରେ ଧର୍ମ; ଏ ଧର୍ମକର୍ମ ଛାଡ଼ ଘୁଷୁରି ମାଂସ ଖାଇବା ଭଲ ।'

'ତାଙ୍କୁ ଖାଇବାକୁ ଦେବୁ କଣ ?'

'ମକ୍‌କା, ଗହମ, ପିଇବାକୁ ଗାଈ ଦୁଧ !'

'ଆମର ଯାହା ଗହମ, ମକ୍‌କା ତାଏ ମଣିଷଙ୍କୁ ନଅଣ୍ଟ । ଗୋରୁ ଯୋଉଠି ହାଲ୍ଲା ଗ୍ରହଣ୍ଡରେ ଅଛନ୍ତି ସେଠି ପଶୁଙ୍କୁ ପଚାରେ କିଏ ? ସେମାନେ ଅମେଧ୍ୟ ଖାନ୍ତି । ଭଲ ଜିନିଷକୁ ପସନ୍ଦ କରନ୍ତି ନାହିଁ ବୋଲି, ଲୋକ ବିଶ୍ୱାସ । ତେଣୁ ଦୁର୍ଭିକ୍ଷ କାହିଁ ଯାଉନି ଉଦଲୀ······ଠିକ ପ୍ରଚଳିତ । ପଡ଼ିଆବାଡ଼ର ମଞ୍ଜିଳା, କଇଁଗଛର ମୂଳ, ଘୋଡ଼ା ଡାଳ, ମୁଥାମୂଳ ସେମାନଙ୍କର ଆହାର । ସେମାନଙ୍କୁ ଘରେ ରଖାଯାଏ ନାହିଁ, ଆଜ କିନ୍ତୁ ଅଧିକ ଖାଦ୍ୟ ଉଆପାଏ ନାହିଁ । ଅଖାଦ୍ୟ ଖାଉଥିବାରୁ ତା ମାଂସ ଖାଇବାକୁ ଉଚ୍ଚବଂଶୀୟମାନଙ୍କର ଘୃଣା । ଅଳ୍ପ ଲୋକ ଖାନ୍ତି । ଘୁଷୁରି ମାଂସ ବେଶ୍ ମହଙ୍ଗା । ଉଚ୍ଚବଂଶୀୟ ଖାଇବାକୁ ଆରମ୍ଭ କଲେ ଦାମ୍ ଆକାଶକୁ ଉଠିଯିବ ।'

୧୧।୯।୬୭, କାଣ୍ଡେଲ ଲଞ୍ଚ କୁ ନିମନ୍ତ୍ରଣ କରିଛନ୍ତି । ଅନ୍ତରରେ ଆମେ ପରସ୍ପରର ନିକଟବର୍ତ୍ତୀ ହୋଇଛୁ । ସତେ ବା ଦୁଇ ସଙ୍ଗାତ । ଦାନେ ନ ଦେଖିଲେ ନୁହେ । ଦେଶର ଭେଦ, ବୟସର ପାର୍ଥକ୍ୟ ମାନୁ ନାହିଁ—ଦୁଇଟି ମନ ମିଶି ଯିବାକୁ ଚାହୁଁଛି କୌଣସି ଏକ ବନ୍ଧନରେ ।

କାଣ୍ଡେଲ ମୋତେ ପଢ଼ା ଘରକୁ ଟାଣି ନେଲେ । ଆମେରିକାନ୍ କେଡ଼େ ପଢନ୍ତି । କିନ୍ତୁ କାଣ୍ଡେଲ୍‌ଙ୍କ ଟେବୁଲ ? ଯାବତୀୟ ଆଳିମାଳିକା ତା ଉପରେ ଜମା ହୋଇଛି । ବାହାର ଆଖିକୁ ଏ ବିଶୃଙ୍ଖଳା, କିନ୍ତୁ କାଣ୍ଡେଲ୍‌ଙ୍କୁ ଏହାର ସୂକ୍ଷ୍ମ କ୍ରମ ଜଣା । କଥା କହୁ କହୁ ଦରକାରୀ କାଗଜ ପତ୍ର ସେ ସହଜରେ କାଢ଼ି ଆଣି ଯାଉଛନ୍ତି । କାଣ୍ଡେଲ୍‌ଙ୍କ ଲାଇବ୍ରେରୀ; ଛୋଟିଆ କୋଠରୀରେ ପୁସ୍ତକ ଭର୍ତ୍ତି—ବାଇବେଲରୁ ଆଇନ, ଔଷଧରୁ ଇନ୍‌ସାଇକ୍ଲୋପେଡ଼ିଆ, କଳା, ପେଣ୍ଟିଂରୁ ନୃତତ୍ତ୍ୱ, ଭାଷାତତ୍ତ୍ୱ, ସମାଜତତ୍ତ୍ୱ ସମ୍ପର୍କୀୟ ନାନା ପୁସ୍ତକ । ଗତ ଶତାବ୍ଦୀରେ କେଉଁ କେଉଁ ମକଦ୍ଦମାର ରାୟ ନିଗ୍ରୋଙ୍କ ସପକ୍ଷରେ ଯାଇଛି, ତାର ନକଲ କାଢ଼ି ସେ ମୋତେ ଦେଲେ । ତାଙ୍କ ଟାଇପ୍ କରା ଥେସିସ ମୋତେ ଦେଖାଇଲେ ।

ଘରେ ଉତ୍ସାହରେ ଗବେଷକ ଥେସିସ୍ ଲେଖା ଆରମ୍ଭ କରେ, ଅଗ୍ରଗତି ବି ହୁଏ । କିନ୍ତୁ ଗବେଷଣାର ମଧ୍ୟ ଭାଗରେ ସେ ଅନେକ କାଳ ଅଟକି ଯାଏ । ସାହସ ପାଏ ନାହିଁ, କେହି ପଛକୁ ଫେରିଯାନ୍ତି, କେହି ବା ଆଗେଇଯାନ୍ତି । ଏ କାଳର ହତାଶାକୁ କାପଲ ପ୍ରବନ୍ଧରେ ପ୍ରକାଶ କରିଛନ୍ତି ଲିଣ୍ଡେଲ ଦେଖାଇଲେ ।

କାର୍ଡରେ ତାଙ୍କ ଅଙ୍କିତ କେତୋଟି ପେଣ୍ଟିଂ ଟଙ୍ଗା ହେବାର ଦେଖିଲି—ବନ୍ଧ୍ୟ ମରୁ ମହାକାଶଶ୍ରେଣୀ—ନାନା ଧାତୁରଙ୍ଗର ମଣ୍ଡଳିରେ ମନୋହର; ଶୁଷ୍କ, ରୁକ୍ଷ, ଅନାବୃତ ଅଞ୍ଚଳ, ନାନା ଘଟଣାର ଘାତ ପ୍ରତିଘାତରେ ଯେପରି ନାଟକୀୟ ହୋଇ ଉଠିଛି ।

ପେଣ୍ଟିଂ ପାଖରେ ଗୋଟିଏ କାର୍ଟୁନ—ଏହା ଜଣେ ଶିକ୍ଷକଙ୍କ ଗୃହରେ ରହିବା ଲାଗି ଉପଯୁକ୍ତ । ଛାତ୍ର ପାଠ ନ ପଢିଲେ ଅଭିଭାବକ ଶିକ୍ଷକର ଦୋଷ ବାଛୁଥାନ୍ତି, କିନ୍ତୁ ଆପଣା ଅଭ୍ୟାସକୁ ଅନାନ୍ତି ନାହିଁ । କାର୍ଟୁନରେ ମାଆ ପୁଅକୁ କହୁଛି—ଯା, ବଜାରୁ କିଣି ଆଣ, ବାପ କହୁଛି—ଚାଲୁ ଚାଲୁ, କଲମଟା କୋଉଠି ଗୁଡ଼ି ଆସିଲା, ପେନ୍ ଆସିବୁ । କଲମ ଖୋଜି ଅଣିଲା ପରେ ମାଆ ପୁଣି କିଛି ବୋଲି କହାଉଛି । ବାପ ଅଫିସରୁ ଫେରିବା ପରେ ବିଦ୍ୟାରେ ମନୋଯୋଗ ସମ୍ବନ୍ଧରେ ଗୋଟିଏ ଦୀର୍ଘ ଭାଷଣ ଦେଉଛି ।

ଅନ୍ୟ କାର୍ଡରେ 'ମେ-ଫ୍ଲାୱାର'ର ଗୋଟିଏ ଛବି; ଉପନିବେଶ-ବାସୀମାନେ ଏହି ଜାହାଜରେ ଆମେରିକା ଆସିଛନ୍ତି; ସ୍ୱଜାତିଙ୍କ ଦ୍ୱାରା ଅତ୍ୟାଚାରିତ, ଧର୍ମନିପୀଡ଼ିତ । ଗଣତନ୍ତ୍ରର ନାନା ଭାବ ମନରେ କ୍ରୀଡ଼ା କରୁଛି । ଏଣେ ଘୋର ଖାଦ୍ୟାଭାବ । କିପରି ଜୀବନ ବଞ୍ଚାଇବେ ସେହି ଚିନ୍ତା ପଡ଼ୁଛି । ଯେଉଁ ଲୋହିତ ଭାରତୀୟଙ୍କୁ ପରେ ଉପନିବେଶବାସୀମାନେ ଲୋପ କଲେ, ସେମାନେ ମକା ମଞ୍ଜି ଯୋଗାଇଛନ୍ତି; ଉପନିବେଶବାସୀ ମାନେ ଫସଲ ଉତ୍ପାଦନ କରିଛନ୍ତି । ପ୍ରଚୁର ଫସଲ ହେବାରୁ ସେମାନେ 'କର୍ନ ପାଲେସ୍' ନିର୍ମାଣ କରି ସେଠି ଏକତ୍ରିତ ହୋଇ ଭଗବାନଙ୍କୁ ଧନ୍ୟବାଦ ଦେଇଛନ୍ତି ।

'Enough to make every day thanks giving' ଶୀର୍ଷକ; ସେମାନେ ଭବିଷ୍ୟତ ଶାସନ ସଂସ୍ଥାର ଏଇ କେତୋଟି ସୂଚନା ଲିପିବଦ୍ଧ କରିଥିଲେ ।

(କ) ସ୍ୱାଧୀନ ଭାବରେ ଚିନ୍ତା କରିବାର ଅଧିକାର ଆବଶ୍ୟକ ।

(ଖ) ପ୍ରତ୍ୟେକ ବ୍ୟକ୍ତିର ସ୍ୱତନ୍ତ୍ର ଗୃହ ରହିବା ଆବଶ୍ୟକ ।

(ଗ) ଶିକ୍ଷାଳୟର ଅବାଧ ସ୍ୱାଧୀନତା ଆବଶ୍ୟକ ।

(ଘ) ନିଜ ସନ୍ତାନଙ୍କୁ ନିଜେ ପାଳିବାର ଅଧିକାର ଆବଶ୍ୟକ ।

(ଙ) ପୂଜା ଆରାଧନାରେ ବାଧା ବନ୍ଧନ ନ ରହିବା ଆବଶ୍ୟକ ।

(ଚ) ରାଜ୍ୟ ଶାସନରେ ବ୍ୟକ୍ତି ଅଂଶ ଗ୍ରହଣ କରିବା ଆବଶ୍ୟକ ।

(ଛ) ଯେ କୌଣସି ସରକାରୀ ପ୍ରକଳ୍ପରେ ଦେଶବାସୀଙ୍କ ଦାବୀ କରିବାର ଅଧିକାର ଅଛି ।

(ଜ) ସରକାରୀ କର୍ମଚାରୀଙ୍କୁ ସମାଲୋଚନା କରିବାର ଅଧିକାର ଅଛି ।

(ଝ) ଶାସକଙ୍କଠାରୁ ପ୍ରତିକାର ଦାବୀ କରିବାର ଅଧିକାର ଅଛି ।

(ଞ) ନିଜର ଜୀବନ ଗଠନର ଅଧିକାର ପ୍ରତ୍ୟେକ ବ୍ୟକ୍ତିର ରହିଛି ।

ଏଇ ଦଶଟିଗୋଟି ମାତ୍ର ଗଣତାନ୍ତ୍ରିକ ଜୀବନର ମୂଳ ଭିତ୍ତି, ତାହା ପାଳନ କଲେ ଗୃହସଂସାର ସୁଖମୟ ହେବ, ସବୁଦିନ ଈଶ୍ବରଙ୍କୁ ଧନ୍ୟବାଦ ଦେଇ ହେବ ।

କଥାପ୍ରସଙ୍ଗ ନାନା ଦିଗକୁ ଶାଖା ମେଲିଲା । ଉତ୍ତରାଧିକାର ସମ୍ପର୍କରେ ଲିଣ୍ଡେଲ କହିଲେ—ଆମେରିକାରେ ସମ୍ପତ୍ତି ଉପରେ ପୁତ୍ର କନ୍ୟାଙ୍କର ସମାନ ଅଧିକାର । ତେବେ ପିତା ଯଦି ପୁତ୍ର ନାମରେ ଅଧିକ ସମ୍ପତ୍ତି ଉଇଲ୍ କରିଯାଏ, କନ୍ୟାର ପାଟି ଫିଟାଇବାର ସୁ ନାହିଁ । ପିତା

ମାତା ମୃତ; ଗୃହରେ ଗୋଟିଏ ପୁତ୍ର ଗୋଟିଏ କନ୍ୟା । କନ୍ୟା ସମ୍ପତ୍ତିର ଅର୍ଦ୍ଧାଂଶ ପାଏ, ଗୃହ ବନ୍ଦୀ ହୋଇଯାଏ, ମୂର୍ଖର ଅର୍ଦ୍ଧଭାଗ ସେ ପାଏ ।

ମରମ୍ମ୍ୟାନ୍ ଧର୍ମ ସମ୍ପର୍କରେ କହୁଁ କହୁଁ ଲିଣ୍ଡେଲ ଏହାର ମୁଖ୍ୟ ପ୍ରଚାରକ ବ୍ରିଘାମ୍‌ଙ୍କ ବିଷୟରେ କହି ବସିଲେ । ସେକାଳ ରାଜାଙ୍କ ପରି ବ୍ରିଘାମଙ୍କର ୨୭ ଟି ସ୍ତ୍ରୀ ଥିଲେ । ସଲ୍ଟଲେକ୍ ସିଟିରେ ସେ ବ୍ରିଘାମଙ୍କ ଘର ଦେଖିଥିବା କଥା କହିଲେ । ସେଥିରେ ୨୭ଟି ବଖରା ଶୋଇବା ଘର, ଗୋଟିଏ ଗୋଟିଏ ବଖରା ପ୍ରତ୍ୟେକ ସ୍ତ୍ରୀଙ୍କ ଲାଗି ନିର୍ଦ୍ଦିଷ୍ଟ ଥିଲା । ଯେଉଁ ସ୍ତ୍ରୀ ଘରେ ଯେଉଁଦିନ ରହିବେ ବ୍ରିଘାମ ଦୁଆର ବନ୍ଧରେ ଲେଖି ଦେଉଥିଲେ, ସପତ୍ନୀ ଚକ୍ରାନ୍ତ କରି ତାହା ଲିଭାଇ ନିଜ ଦ୍ୱାରରେ ଲେଖି ଦେଇଥିଲେ । ବ୍ରିଘାମ ବିଭବଶାଳୀ, ବ୍ୟକ୍ତିତ୍ୱସମ୍ପନ୍ନ, ନିଶ୍ଚୟ ସୁଶ୍ରୀ ଥିଲେ । ନୋହିଲେ ଏତେ ସ୍ତ୍ରୀ ତାଙ୍କ ପ୍ରତି ଆକୃଷ୍ଟା ହୁଅନ୍ତେ କାହିଁକି ?

ଧର୍ମ ବିଶ୍ୱାସ ସମ୍ପର୍କରେ କଥା ପଡ଼ିବାରୁ ଲିଣ୍ଡେଲ୍ କହିଲେ— ବିଜ୍ଞାନ ଏପରିକି ଇତିହାସ ସଙ୍ଗେ ଧର୍ମବିଶ୍ୱାସ ଖାପ ଖାଉନାହିଁ । ବାଇବେଲ କହେ—ଖ୍ରୀଷ୍ଟ ଜଗତକୁ ସୃଷ୍ଟି କରିଛନ୍ତି । ଖ୍ରୀଷ୍ଟଜନ୍ମ ଆଗରୁ କଣ ସୃଷ୍ଟି ନ ଥିଲା ?

ଡୁମସ୍ ଡେ ଦିନ ମୃତମାନେ ଉଠିବେ । ତାହେଲେ ସଂସାର ତ ଦୂରର କଥା, ସ୍ୱର୍ଗରେ ମଧ୍ୟ ଜାଗା ହେବ ନାହିଁ । ପରିବାର ନିୟନ୍ତ୍ରଣ କରୁଥିବା ଆଧୁନିକମାନଙ୍କର ଏପରି ଏକ ବିଶ୍ୱାସ ଅନ୍ଧତା ଛଡ଼ା ଆଉ କଣ ହୋଇପାରେ ?

ଆର୍ନେ ଟନୋର୍ଭେ ଚେଟି କପରି ସାହିତ୍ୟ ଆଡକୁ ଗଲା ମନେନାହିଁ । ତାଙ୍କୁ କେତେକ ପ୍ରଶ୍ନ ପଚାରିଲି । ଆମେରିକାର ଶ୍ରେଷ୍ଠ କବି କିଏ ? ସର୍ବୋତ୍କୃଷ୍ଟ ଔପନ୍ୟାସିକ କିଏ ? କିଏ ଭଲ ଛୋଟଗଳ୍ପ ଲେଖେ ? ଭଲ ସମାଲୋଚନା କେଉଁ ପତ୍ରିକାରେ ପ୍ରକାଶିତ ହୁଏ ?

ଲିଣ୍ଡେଲ୍ ଉପନ୍ୟାସ ପଢ଼ନ୍ତି ନାହିଁ; କ୍ଷୁଦ୍ରଗଳ୍ପ କ୍ୱଚିତ୍ ପଢ଼ନ୍ତି । ଆଧୁନିକ କବିତା ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ତାଙ୍କ ମତରେ ସେ

ସବୁ କବିତା ନୁହେଁ । ସମାଲୋଚନା ଦେବାର ଆଖିରେ ପଢ଼ିଲେ ପଢ଼ନ୍ତୁ । ସାହିତ୍ୟ ସଭା ବା ସମ୍ମିଳନୀର ମର୍ଯ୍ୟାଦା ରଖନ୍ତୁ ନାହିଁ । ସାହିତ୍ୟର କାର୍ଯ୍ୟ ସମ୍ପର୍କରେ ସେ କହିଲେ ଯେ ସାହିତ୍ୟ ଭଲ ମଣିଷ ଗଢ଼ିପାରେ । ଭଲ ମଣିଷ କାହାକୁ କହନ୍ତି ? ଯେ ନିଜର ସ୍ୱାର୍ଥ ଉପରକୁ ଉଠିପାରେ, ପଡ଼ୋଶୀର ଦୁଃଖ ବୁଝିପାରେ, ଆପଣଙ୍କୁ ସାହାଯ୍ୟ କରେ । ତାପରେ ସେ ଗୋଟିଏ କବିତା ଆବୃତ୍ତି କଲେ, ଶାନ୍ତ ଉପଦେଶ ଭରା । ମୁଁ କହିଲି—ଏଥିରେ ଶିକ୍ଷା ଅଛି, କବିତ୍ୱ ନାହିଁ । ଅବଧାନୀ ଅଛି, ରସ ନାହିଁ । ତାପରେ ସେ ଅନ୍ୟ ଗୋଟିଏ କବିତା ଆବୃତ୍ତି କଲେ—ଆବୃତ୍ତି କରୁକରୁ ଶୋଇ ପଡ଼ିଲେ, ମୁଁ ମଧ୍ୟ; କେତେ ସମୟ କହିବା କଷ୍ଟକର । ଉଦପୁର କବାଟ ଖୋଲା ଶବ୍ଦରେ ଉଠିପଡ଼ି ସେ ପୁଣି ଆବୃତ୍ତି କରିବାକୁ ଲାଗିଲେ—ଯାହା ହାସ୍ୟକର ଶୁଣାଗଲା । ବିଦାୟବେଳେ ସେ ପଚାରିଲେ—କିଏ ଆମେରିକାର ସଭାପତି ହେବ ? କହିଲି—ମୋର ବିଶ୍ୱାସ, ଆପଣ ହେବେ । ସେ ହସି ହସି କହିଲେ—ଆପଣ ଯେପରି ଭାରତର ପ୍ରଧାନମନ୍ତ୍ରୀ ହେବେ ! କହିଲି—ତାହେଲେ ଫିଲାଡେଲ୍‌ଫିଆରେ ସାକ୍ଷାତ୍ ହେବ ଦୁହିଁଙ୍କର ।

ବିଦାୟବେଳେ ଲିଣ୍ଡେଲ୍ ମୋତେ ଦୁଇଟି ମୁଦ୍ରା ଉପହାର ଦେଲେ—ଅଧୁଲି । ଗୋଟିଏ ଯୁକ୍ତରାଷ୍ଟ୍ରର ଅଧ ଡଲାର୍; ତା ଉପରେ liberty ବୋଲି ଲେଖା—କେନେଡ଼ିଙ୍କ ଛବି—୧୯ ୪ ।

ଆଉ ଗୋଟିଏ ଅଧୁଲି କାନେଡ଼ାର—ଏଲିଜାବେଥ୍ ହଷ୍ଟାୟୁଙ୍କ ଛବି ଛପା; କହିଲି—ଭୋଜନ ପରେ ଦକ୍ଷିଣା ନ ଦେଲେ ଚଳିବ କପରି ?

## ମି. ଓ ମିସେସ୍ ଜନ୍

ମି: ଓ ମିସେସ୍ ଜନ୍ ହେଉଛନ ଲିଣ୍ଡେଲଙ୍କ ଅତିଥି । ଗରିତପୁ ପରେ ସେମାନଙ୍କ ସଙ୍ଗେ ଭାବ ଜମିଲା । ଜନ୍ ଜଣେ କୃଷକ, ଘର ମିସୌରି ରାଜ୍ୟର ଓଜାର୍କରେ । ତାଙ୍କର କିଛି ଜମିବାଡ଼ ଅଛି । ଚାଷବାସ କରି ସେ ଚଳୁଥିଲେ । କିନ୍ତୁ ଦୈବ ବିଧାନ ଭିନ୍ନ । ତାଙ୍କ ଆଖି ଖରାପ

ହେଲ୍ । ଟ୍ରାକ୍ଟରରେ ଚଢ଼ି ସେ ଆଉ ଚାଷ କରିପାରିଲେ ନାହିଁ । ଏବେ ତାଙ୍କ ୨୦ ଏକର ଜମିରେ ଘାସ ହେଉଛି । ଡାଇରି ଫାର୍ମ ମାଲିକଙ୍କୁ ପଟ୍ଟା ଦେଇ ସେ କିଛି ଆୟ କରନ୍ତି ।

ସେ ଏବେ ମେଥଡ଼ିଷ୍ଟ ଚର୍ଚ୍ଚର ମିନିଷ୍ଟାର; ଘରେ ଘରେ ପଢ଼ି କିଛି ପାଣ୍ଡିତ୍ୟ ଅର୍ଜନ କରିଛନ୍ତି । ଅକ୍ଷମତା ଯୋଗୁଁ ପେନ୍‌ସନ ପାଉଛନ୍ତି । ଏବେ ଏ ଦେଶରେ ଅବୈଧ ସନ୍ତାନଙ୍କ ସଂଖ୍ୟା ବଢ଼ି ଚାଲିଛି । ସେମାନଙ୍କ ଲାଗି ସରକାର ଅନାଥାଶ୍ରମ ଖୋଲିଛନ୍ତି ।

ମି. ଓ ମିସେସ୍ ଜନ୍ ନିଃସନ୍ତାନ । ସେମାନେ ଏହି ଆଶ୍ରମର ଅଭିଭାବକ ଓ ଅଭିଭାବିକା ହୋଇ ରହିବେ, ନିଯୁକ୍ତିପତ୍ର ପାଇଛନ୍ତି । ମିସେସ୍ ମାସକୁ ଦୁଇଶ ପଚିଶ ଡଲର୍ ଦରମା ପାଇବେ । ତାଛଡ଼ା ଜମିରୁ କିଛି ଆୟ ମିଳିବ । ପିତୃତ୍ୱ ଓ ମାତୃତ୍ୱର ଆନନ୍ଦ ଲାଭ କରିବାର ଅପୂର୍ବ ସୁଯୋଗ ଏ ।

ଏ ପିଲାଙ୍କ ମଧ୍ୟରୁ ଅଧିକାଂଶ ଅନାଥ । ଜନ୍ମ କଲାପରେ ମାଆ ଫୋପାଡ଼ିଦେଇ ଯାନ୍ତି । ଅନାଥାଶ୍ରମର କର୍ତ୍ତା ସେ ସମସ୍ତଙ୍କୁ ଗୋଟାଇ ଆଣି ମଣିଷ କରନ୍ତି; ତାପରେ ପିତୃତ୍ୱ ମାତୃତ୍ୱ ଜଣାଗଲେ ପିତାମାତାଙ୍କୁ ଦତ୍ତକ ସମର୍ପଣ କରାଯାଏ ।

ସ୍ୱାମୀକୁ ଛାଡ଼ପତ୍ର ଦେଲାପରେ ସ୍ତ୍ରୀ ସନ୍ତାନମାନଙ୍କୁ ସଙ୍ଗରେ ନେଇ ପାରେନାହିଁ । ପାଳନ କରିବା ଲାଗି ଅନାଥାଶ୍ରମରେ ଛାଡ଼ି ଦେଇପାରେ । ଏପରି ଏ ଦେଶରେ ବହୁ ଅନାଥାଶ୍ରମ ଗଢ଼ା ହୋଇଛି ।

କଥା ପଡ଼ନ୍ତେ ମି. ଜନ୍ ଓଜାର୍କ ଅଞ୍ଚଳ କଥା କହିଲେ । ଓଜାର୍କ ଗୋଟିଏ ହ୍ରଦ; ତାର ତୀରବର୍ତ୍ତୀ ଗ୍ରାମବାସୀଙ୍କୁ ଆଧୁନିକ ଆମେରିକାର ଲୋକ ବୋଲି କେହି କହିବ ନାହିଁ । ସେମାନେ ଶିକ୍ଷା ପ୍ରତି ବିତୃଷ୍ଣ । ସେମାନେ କାଠ ହାଣି ଜାଳନ୍ତି, ବାଡ଼ରେ ସବୁପ୍ରକାର ପନିପରିବା ଉତ୍ପାଦନ କରନ୍ତି, ନିଜ ପୋଖରୀରୁ ଜାଲରେ ମାଛ ଧରନ୍ତି, ନିଜ ଗୋରୁ, ମେଣ୍ଢା ବା ଘୁଷୁରି ହାଣି ଖାଆନ୍ତି, ମଦ ତିଆରି କରି ପିଅନ୍ତି ।

ପାଞ୍ଚ ଦଶ ମାଇଲ୍ ପାଦରେ ଚାଲିଯାଇ ପୋଷ୍ଟ ଅଫିସରେ ଚିଠି ପକାଇ ଆସନ୍ତି । ସେମାନଙ୍କ ଭାଷା ବୁଝିବା କଷ୍ଟ । କଳ କାରଖାନାର ଧାର୍ ଧାରନ୍ତି ନାହିଁ । ପୂର୍ବପୁରୁଷ ଗ୍ରାମ୍ୟ ଜୀବନ । ଆମେରିକାନ୍ ଲୋକସାହିତ୍ୟର ମାଧୁରୀ ଉପଭୋଗ କରିବା ଲାଗି ମୁଁ ଓଜାର୍କ ଯିବାକୁ ଚେଷ୍ଟାକରି ବିଫଳ ହେଲି ।

## ପକ୍ଷୀଙ୍କ ବିଲୋପ ସାଧନ

ପକ୍ଷୀ ପୋଷିବା ଭାରତ ପରି ଏଠି ଏକ ବିନୋଦନ । ପୃଥିବୀର ବିଭିନ୍ନ ଦେଶର ପକ୍ଷୀ ଓ ବିଭିନ୍ନ ପକ୍ଷୀ ଖାଦ୍ୟ ଏଠା ଦୋକାନରେ ମିଳିଥାଏ । ଗୋଟିଏ ପକ୍ଷୀର ଦାମ୍ ପନ୍ଦରରୁ କୋଡ଼ିଏ ଡଲାର୍, ପଞ୍ଜୁରୀର ଦାମ୍ ପ୍ରାୟ ସେଇଆ ।

ପକ୍ଷୀଟିଏ ଦେଖିବା ଲାଗି ବୟସ୍କଙ୍କ ମନରେ ଶିଶୁର ଆଗ୍ରହ; କିନ୍ତୁ ପାର୍କକୁ ନ ଗଲେ ପକ୍ଷୀର ଦେଖା ମିଳିବ ନାହିଁ । ବନ ଅରଣ୍ୟ ପକ୍ଷୀ କାକଳୀରେ ଆଉ ମୁଖରିତ ହେଉନାହିଁ; କୌଣସି କବି ବ୍ୟଥିତ ହୋଇ 'ମୂକ ବସନ୍ତ' ଶୀର୍ଷକ ଗୋଟିଏ କବିତା ଲେଖିଛନ୍ତି ।

ମତ୍ସ୍ୟ ଶିକାର ପରି ପକ୍ଷୀ ଶିକାର ଏକ ବଡ଼ଲୋକୀ ବିନୋଦନ । ଯାଯାବର ପକ୍ଷୀପଲ୍ଲୁ ଲୋକେ ମାରି ଖାଇଯାନ୍ତି । ଫସଲ ନଷ୍ଟ କଲେ କୃଷକ ପକ୍ଷୀକି କ୍ଷମା ଦିଏ ନାହିଁ । ତାର ଗୁଳିରେ ପକ୍ଷୀ ମରିପଡ଼େ । ଫସଲରେ ପୋକ ମାରିବା ଲାଗି ଔଷଧ ପକାଇଲେ ପୋକ ମରନ୍ତି, ତାକୁ ଖାଇ ପକ୍ଷୀ ମରନ୍ତି ।

ଥରେ ଫେଜାଣ୍ଟ ପକ୍ଷୀ ଗୋଟିଏ ସୌଧରେ ମୃତ ସନ୍ଧ୍ୟାରେ ଅଶ୍ରୟ ନେଉଥିଲେ । ପକ୍ଷୀ ମଳରେ ସୌଧ ଅପରିଚ୍ଛନ୍ନ ହେଉଥିଲା । ମାଲିକ ଖାଦ୍ୟରେ ବିଷ ମିଶାଇ ପକାଇଲା, ତାକୁ ଖାଇ କେତୋଟି ଫେଜାଣ୍ଟ ମଲେ, ଅନ୍ୟମାନେ ସତର୍କ ହୋଇଗଲେ । ଖାଦ୍ୟ ସ୍ପର୍ଶ କଲେ ନାହିଁ, କିନ୍ତୁ ପୂର୍ବପରି ରହିଲେ । ତେଣୁ ମାଲିକ ବିଜୁଳି

ତାର ହେଉଇ ଦେଲ; ଫେଜାଣ୍ଟମାନେ ବେଶ୍ ସୁବିଧା ହେଲ ଷଗ୍ନେର ବସିବା ମାତ୍ରେ ଟଳ ପଡ଼ଲେ ।

ସମ୍ବାଦପତ୍ରରେ ଗୋଟିଏ ନୋଟିସ୍ ବାହାରଛି—ସାନ୍‌ଫ୍ରାନ୍‌ସିସ୍‌କୋର ସମସ୍ତ ଚାରଙ୍କୁ ମାର ଦିଆଯିବ—ଫସଲ ନଷ୍ଟ କରୁଛନ୍ତି, ରୋଗ ବସ୍ତାର କରୁଛନ୍ତି ! ଜଣେ ଧର୍ମପ୍ରାଣ ବ୍ୟକ୍ତି ଏ ନୋଟିସ୍‌ଟି ପଢ଼ି ପତ୍ର ଲେଖିଛି—ମୋର ୩୫ ଏକର ଜମି ଅଛି—ମୁଁ ସେହି ସମସ୍ତ ଜାଗା ଚାରମାନଙ୍କ ଲଗି ଛାଡ଼ଦେବ, ସେମାନଙ୍କ ଭରଣପୋଷଣର ଦାୟିତ୍ୱ ନେବ । ସମସ୍ତ ମାଗ ଧର ମୋତେ ଦିଆଯାଉ । ଚାରସବୁ ତାଙ୍କୁ ଦିଆଗଲ କ ନାହିଁ, ଜାଣେ ନାହିଁ ।

ଚାକର ପୁଷ୍କରଣୀମାନଙ୍କରେ ଗୁଣି ଗଣି ହଂସ, ବତକ, ଆମେରିକାର ସବୁ ଧରଣର ପକ୍ଷୀ ଦେଖାଯାନ୍ତି—ପକ୍ଷୀମାନଙ୍କର ନିରାପଦ ଆଶ୍ରୟସ୍ଥଳୀ ଏ । କେତେକ ପୋଷିତ, କେତେକ ବନ୍ୟ । କିନ୍ତୁ ପାଳୀମାନଙ୍କଠାରୁ ସହଜରେ ଆହାର ସଗ୍ରହ ସୁବିଧା ପାଇ ବନ୍ୟ କ୍ରମେ ପରନିର୍ଭରଶୀଳ ଓ ପୋଷ୍ୟ ହୋଇଯାଉଛି ।

## ଓ୍ୱାସିଂଟନ ବିଶ୍ୱବିଦ୍ୟାଳୟ

ଆଜର ଗାଇଡ଼ ମିସେସ୍ ନିବେ ! ଉଦୟ୍ କହିଲ—ବ୍ରେମ୍ ଜଳ ଯାଇଥିଲ ବେଳେ ନିରୋ ବଂଶୀ ବଜାଉ ଥିଲେ ପର । ଘୋଡ଼ା ବାଘ ଆଗରେ ମଣିଷକୁ ଫୋପାଡ଼ ଦେଇ ବସି ସେ ଦେଖୁଥିଲେ—କିପରି ଖାଉଛି । ଏ ଯୁଗର ବାପ ମାଆ ପୁଅର ନାଆଁ କିପରି ନିରୋ ରଖନ୍ତି ?

ମିସେସ ନିରୋ ଇଂରେଜ କନ୍ୟା; ଆମେରିକା ଭ୍ରମଣରେ ଆସି ଅଟକି ଗଲେ; ମି. ନିରୋଙ୍କ ସଙ୍ଗେ ତାଙ୍କ ମନ ମିଳଗଲ । ସ୍ୱାମୀ ତାଙ୍କର ଜଣେ ପାଇଲଟ, ପେଣାଓ୍ୱାରରେ ଥିବା ଆମେରିକାର ବିମାନ ବାହିନୀରେ ସେ ଚାକିରି କରନ୍ତି । ମିସେସ୍ ନିଜେ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରେ କାର୍ଯ୍ୟ କରନ୍ତେ । ମତେ ପଚାରିଲେ, ପେଶାଓ୍ୱାର କିପରି ଜାଗା ? ପ୍ରଚଣ୍ଡ ଗରମ ?

କହିଲା—ଦେଖିନାହିଁ, ଭୂଗୋଳରେ ପଢ଼ିଛି; ଦିନରେ ଗରମ ହେଲେ ବି ରାତିରେ ଥଣ୍ଡା; ଶୀତଦିନେ ଖୁବ୍ ଶୀତ ହୁଏ ।

ହାଜଘରେ ପୁସ୍ତକର ନାମ, ଲେଖକ, ନମ୍ବର, ଫେରାଇବା ତାରିଖ କପର ଯନ୍ତ୍ର ଟାଇପ୍ କରି ମୁଦ୍ରଣ କରୁଛି ମିସେସ୍ ନିଗେ ବୁଲାଇ ଦେଖାଇଲେ; ତାପରେ ଫୋଟୋ ଟେପ୍—ପାଠାଗାର, ମାଇକ୍ରୋ ଫିଲ୍ମ ସେମିନାର୍, ମାଇକ୍ରୋଫିଲ୍ମ କାର୍ଡ, ଅଧ୍ୟାପକଙ୍କ ପଢ଼ାଘର, ପତ୍ର ପତ୍ରିକା ଓ ପାଣ୍ଡୁଲିପି ବିଭାଗ ଦେଖାଉଁ ଦେଖାଉଁ ପଚାରିଲି—ଟି.ଏସ୍. ଏଲିଅଟ୍‌ଙ୍କ ଜନ୍ମସ୍ଥାନ କେଉଁଠି ?

ମିସେସ୍ ନିଗେ କହିଲେ—ଜାଣେନାହିଁ, ଇଂରେଜୀ ବିଭାଗରେ ପଚାରନ୍ତୁ । ଇଂରେଜୀ ବିଭାଗର ମୁଖ୍ୟ କହିଲେ—ଟି: ଏସ୍ ଏଲିଅଟ୍‌ଙ୍କ ବଡ଼ବାପା ଉଇଲିଅମ୍ ଗ୍ରୀନଲିଫ୍ ଏଲିଅଟ ଓ୍ୱାସିଂଟନ ବିଶ୍ୱବିଦ୍ୟାଳୟର ଜଣେ ସ୍ଥାପୟିତା । ୧୮୫୩ ଖ୍ରୀଷ୍ଟାବ୍ଦରେ ଏଲିଅଟ୍ ସେମିନାରୀ ନାମରେ ଓ୍ୱାସିଂଟନ ବିଶ୍ୱବିଦ୍ୟାଳୟ ପ୍ରଥମେ ସ୍ଥାପିତ ହୋଇଥିଲା । ଗ୍ରୀନ୍‌ଲିଫ୍ ଏଲିଅଟ୍ ଏହାର ତୃତୀୟ ଚାନ୍‌ସେଲର୍ ( ୮୭୦—୧୮୮୭) ଥିଲେ ।

ସେ ପ୍ରଥମେ ଇଉନିଟେରିଆନ୍ ଚର୍ଚ୍ଚର ମିନିଷ୍ଟର ହୋଇ ଆସି ସେଣ୍ଟଲୁଇସ୍ ସହରରେ ରହିଗଲେ । ଧର୍ମ ଚର୍ଚ୍ଚାରେ ତାଙ୍କ ଜୀବନ ବିତିଥିଲା । ତାପରେ ୧୮୪୪ରୁ୧୮୭୨ ପର୍ଯ୍ୟନ୍ତ ସେ 'ମେସାୟା' ଚର୍ଚ୍ଚର ପାଷ୍ଟର ହେଲେ । ଟି. ଏସ୍ ଏଲିଅଟ୍‌ଙ୍କ ବାଲ୍ୟକାଳ ଏକ ଧର୍ମର ବାତାବରଣ ମଧ୍ୟରେ କଟିଗଲା । କବିତା ଉପରେ ତାର ପ୍ରଭାବ ସୁସ୍ପଷ୍ଟ ଭାବେ ଦେଖାଯାଏ ।

୧୮୮୭ରେ ଗ୍ରୀନ୍‌ଲିଫ ଏଲିଅଟ୍‌ଙ୍କ ମୃତ୍ୟୁ ହେଲା । ତାଙ୍କ ସ୍ମୃତି ବିଶ୍ୱବିଦ୍ୟାଳୟରେ ସୁରକ୍ଷିତ । ଟି. ଏସ୍. ଏଲିଅଟ୍ ସେଣ୍ଟଲୁଇସ୍ ସହରରେ ଜନ୍ମ ଗ୍ରହଣ କରିଥିଲେ । କିନ୍ତୁ ତାଙ୍କ ଗୃହର ସତ୍ତା ଏବେ ନାହିଁ । ସେଠି ଗୋଟିଏ ବ୍ୟବସାୟୀ ପ୍ରତିଷ୍ଠାନ ମୁଣ୍ଡ ଟେକିଛି । କବି ଏଲିଅଟ୍‌ଙ୍କ ସ୍ମୃତି ରକ୍ଷା ଲାଗି ଆମେରିକାରେ କିଛି କରାଯାଇ ନାହିଁ ।

କାରଣ ଏଲଗ୍ରିନ୍ ପୂର୍ବପୂର ଜନ୍ମଭୂମିକୁ ଭୁଲିଗଲେ । ପ୍ରଚଣ୍ଡ ବର୍ଷା; ଏଥିରେ ବୁଲି କିଏ ବା ଦେଖିବ ? ନିରାଶ ହୋଇ ଫେରିଗଲି ।

## ଇଉନିଟେରିଆନ୍ ଚର୍ଚ୍ଚ (୧୧ . ୩ . ୬୬)

ତିନିମାସ ଗ୍ରୀଷ୍ମ ଛୁଟି, ଅଧିକାଂଶ ସଭ୍ୟ ଭ୍ରମଣରେ ଯାଇଥିଲେ । ଚର୍ଚ୍ଚ ବନ୍ଦ ଥିଲା । ଆଜି ଖୋଲିଛି । ତେଣୁ ସାଧାରଣ ଦିନ ଅପେକ୍ଷା ଅଧିକ ସଂଖ୍ୟାରେ ସଭ୍ୟ ଉପସ୍ଥିତ ହୋଇଛନ୍ତି । ସୁଆଳାପ ବେଶ୍ ଜମିଛି । ପ୍ରାର୍ଥନା ବେଳ ହୋଇନାହିଁ ।

ପ୍ରାୟ ଦେଢ଼ଶ ବର୍ଷ ତଳେ ଏକ ନୂତନ ଧର୍ମ ପ୍ରବର୍ତ୍ତିତ ହୋଇଥିଲା; ଗତାନୁଗତିକ ଧର୍ମ ଶାସ୍ତ୍ର ଉପରେ ତାର ଆସ୍ଥା ନଥିଲା, ଅନ୍ଧ ବିଶ୍ୱାସକୁ ଧର୍ମ ନାମରେ ଚଳାଇ ନେବା ଏହାର ପ୍ରବର୍ତ୍ତକମାନଙ୍କ ପକ୍ଷରେ ଅସମ୍ଭବ ମଧ୍ୟରେ ମହା ଅସମ୍ଭବ ଥିଲା । କୌଣସି ନିର୍ଦ୍ଦିଷ୍ଟ ଭାବଧାରାରେ ବିଶ୍ୱାସୀ ସମବିଶ୍ୱାସୀମାନଙ୍କ ସହିତ ମିଶି ସତ୍ୟର ସାଧନା କରିପାରେ । ଧର୍ମ ଯଦି ସତ୍ୟ, ତାହା ସହିତ ହେତୁବାଦର ବିରୋଧ ହୋଇ ନ ପାରେ । ଧର୍ମ ଓ ବିଜ୍ଞାନ ପରସ୍ପରର ପରିପୂରକ ହୋଇ ପାରନ୍ତି; ଗୋଟିଏ ଅଜବ କଳ୍ପନା, ଆଉ ଗୋଟିଏ ନିରାଟ ବାସ୍ତବ, ଗୋଟିଏ ପରଲୋକର, ଅନ୍ୟଟି ଇହ-ଲୋକର । ଆପାତତଃ ଏହା ବୋଧ ହେଲେ ବି ଦୁଇଟି ମନୁଷ୍ୟର ସାଧନାର ପ୍ରତୀକ । ଏ ଦୁଇକୁ ଏକମୁଖୀ କରିବା ଇଉନିଟେରିଆନ୍ ଧର୍ମର କାର୍ଯ୍ୟ ।

ଏଇ ଧର୍ମ ଗୋଷ୍ଠୀଧର୍ମକୁ ଅସ୍ୱୀକାର କରେ, ମାନବତା ବିରୋଧୀ ଯେ କୌଣସି ମତକୁ ପ୍ରତ୍ୟାଖାନ କରେ, ସବୁ ଧର୍ମର ଶ୍ରେଷ୍ଠ ଭାବ ଗ୍ରହଣ କରେ ।

ମି. ଓ ମିସେସ୍ ଲିଣ୍ଡେଲ, ଉଦୟ ଓ ଇରା ଏହି ଧର୍ମରେ ବିଶ୍ୱାସୀ । ଏଇ ଧର୍ମତତ୍ତ୍ୱର ଜିଜ୍ଞାସୁ ଭାବେ ଏଠାକୁ ମୋର ଆଗମନ ।

ଚର୍ଚ୍ଚରେ ବିଭିନ୍ନ ଧର୍ମ ପୁସ୍ତକର ଗୋଟିଏ ପାଠାଗାର ଅଛି । ଟେବୁଲ ଉପରେ ନାନା ଧର୍ମର ପତ୍ରିକାସବୁ ପ୍ରଦର୍ଶିତ ହୋଇଛି । ଆଗ୍ରହୀ ବ୍ୟକ୍ତି ପ୍ରାର୍ଥନା ପରେ ଧର୍ମପୁସ୍ତକ ଓ ପତ୍ରିକାମାନ ପଢ଼ାପଢ଼ି କରିଥାନ୍ତି ।

ଚର୍ଚ୍ଚକୁଲଗି କେତୋଟି କୋଠରୀ ଅଛୁ । ଏଠି ଷ୍ରୋଟ ଷ୍ରୋଟ ପିଲମାନଙ୍କୁ ପଢ଼େଇବା, ଧର୍ମ ଶିକ୍ଷା ଦେବା କମ୍ବା ମନୋରଞ୍ଜନ କରିବାର ନାନା ବ୍ୟବସ୍ଥା ରହିଛୁ । କେବଳ ରବିବାର ଦିନ ଏଇ ଶ୍ରେଣୀମାନ ଖୋଲେ । ପିଲଙ୍କୁ ସମ୍ଭାଳିରଖିବା ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର କାର୍ଯ୍ୟ । ନିଜଞ୍ଜାଞ୍ଜି ନ ହେଲେ କୌଣସି ଗୃହିଣୀ ଚର୍ଚ୍ଚକୁ ଆସି ପାରିବେ ନାହିଁ; ସଙ୍ଗରେ ନେଲେ ପିଲାମାନେ ପ୍ରାର୍ଥନାବେଳେ ଗୋଳମାଳ କରି ପାରନ୍ତି । ଇଭ, ଗୀତା, ମୀଗ, ନିକକୁ ବିଭିନ୍ନ ଶ୍ରେଣୀରେ ଛାଡ଼ି ମୋତେ ସଙ୍ଗରେ ନେଇ ଚର୍ଚ୍ଚ ହଲରେ ପଶିଲ ।

ଚର୍ଚ୍ଚର ମଞ୍ଚ ପାଖ କାନ୍ଥରେ ଗୋଟିଏ ପ୍ରାକୃତିକ ଦୃଶ୍ୟର ଛବି, ହ୍ରଦରେ ସୂର୍ଯ୍ୟୋଦୟ, ତୀରବର୍ତ୍ତୀ ତରୁ ଓ ଦୂରବର୍ତ୍ତୀ କୁଜଝଟି ଉପର ଉଦୟମ୍ୟସ୍ତୁ କେତେ କନ୍ତୁ ଉଷାର ନବୀନ ଆଲୋକ ଛଟାରେ ଉଦ୍ଭାସିତ ହୋଇ ଉଠିଛି । ଏଇ ସୁରମ୍ୟ ଦୃଶ୍ୟ ଦେଖୁ ଦେଖୁ ମନ ଅପୂର୍ବ ଆନନ୍ଦ ଓ ଶାନ୍ତିରେ ପୂରି ଆସିଲ ।

ଚର୍ଚ୍ଚକୁ ପବିତ୍ର, ସୁନ୍ଦର ଭଗବତ୍ ଆରାଧନାର ଉପଯୋଗୀ କରିଦେଇ ସେପରି । ସୁନ୍ଦର ଭିତରେ ସତ୍ୟର ଆରାଧନା— ଏଇ ଧର୍ମାବଲମ୍ବୀର ବିଶ୍ୱାସ ।

'Welcome to visitor' ଓ ଅଜର ପ୍ରାର୍ଥନା ନିର୍ଦ୍ଦେଶ ପ୍ରତ୍ୟେକ ଆସନ ସାମ୍ନାରେ ରଖା ଯାଇଥିଲ । Hymn to celebration of life' ନାମକ ସୂକ୍ତ ଗୀତ ପୁସ୍ତକ ଆସନ ସାମ୍ନା ଟେବୁଲରେ ଦେଖିବାକୁ ପାଇଲି । ଏହା ରବୀନ୍ଦ୍ରନାଥ; ହ୍ୱଇଟ୍ ମ୍ୟାନ୍, ତୁଳସୀ ଦାସ, ଜେ: ଏସ୍ ବାକ୍ ପ୍ରଭୃତି ବହୁ ପ୍ରାର୍ଥନାଗୀତିରଚୟିତା କବିଙ୍କର କବିତାର ସଂକଳନ । ଆଜ କେତୋଟି କବିତା ବୋଲିସିବା ପାଇଁ ବଛା ଯାଇଛି ।

"ସୁନ୍ଦର, ଉଦାର ଉଷା
ପ୍ରତି ରସନାରେ ଜାଗୁ ଈଶ ସୂକ୍ତ ଭୂଷା

ଈଶ୍ୱର ଗୌରବ ଗୀତ ଧୀରେ ଫୁଟୁ ଝରି
ସବୁ ସ୍ୱନ ଏକ କଣ୍ଠୁ ବାହାରିଲା ପରି ।,
ସବୁ ହୃଦ ଏକ ହେଉ ଈଶ ମନ୍ତ୍ରମାରେ
ବାନ୍ଧୁ ପୀରତିର ଗଣ୍ଠି ଆଲୋକ ଉଷାରେ ।
ଝଲକୁ ସକଳ ମୁଖେ ଉଷାରକିରଣ
ଦେଖି ନାହିଁ କେବେ ଯାହା ମର୍ତ୍ତ୍ୟର ନୟନ ।
ଶୁଣି ନାହିଁ କର୍ଣ୍ଣ କେବେ ଯାହା ପ୍ରତିଧ୍ୱନି
ଈଶ୍ୱର ପ୍ରାର୍ଥନା ଗୀତ ଏ ବରୁ ଅବନୀ
ଧ୍ୱନି ଉଠୁ ସ୍ତୁତି ଗୀତ ଈଶ ପ୍ରଶଂସାରେ
ସୁନ୍ଦର ଉଦାର ଏଇ ଆଲୋକ ଉଷାରେ ।"

"ଈଶ ସ୍ତୁତି କର
ଢେଳିଛନ୍ତି ଆମ ହୃଦେ ପ୍ରୀତିର ନିର୍ଝର
ଈଶ ସ୍ତୁତି କର
ଭରିଛନ୍ତି ଚତୁର୍ଦ୍ଦିଗେ ଦୃଶ୍ୟ ମନୋହର
ଈଶ ସ୍ତୁତି କର
ହେବ ବୋଲି ଭବିଷ୍ୟ ମଙ୍ଗଳ
ଈଶ ସ୍ତୁତି କର
ମୁକ୍ତ ହୋଇ ଭୂମେ ଟେକାଇ ଚରଣ ଯୁଗଳ ।"

"ବସ୍ତୁଜଗତ ଦୃଶ୍ୟ ଦେଖିଲେ ମନେ ହୁଏ, ଯାହା ଦେଖିବାର କଥା, ଦେଖିପାରି ନାହିଁ ; ପରିଚିତତମ ଦୃଶ୍ୟରେ ଯାହା କିଛି ଅପରିଚିତ ମନେ ପଡ଼େ, ଜୀବନର ଶ୍ରେଷ୍ଠ ପ୍ରଦର୍ଶନୀରେ ନଗଣ୍ୟ ପଦାର୍ଥକୁ ଆମେ ପସନ୍ଦ କରିଛୁ । ଆଜି ଈଶ୍ୱରଙ୍କ ମହତ୍ ଦାନ କଥା ସ୍ମରଣ କର, ଜୀବନର ଆତ୍ମୋତ୍ସର୍ଗ ଦୃଷ୍ଟାନ୍ତରେ ଆମ ଅନ୍ତର ଭଗବତ୍ ପ୍ରାର୍ଥନା ଲାଗି ପ୍ରସାରିତ ହେଉ ।"

ଏହି ସବୁ ଆବୃତ୍ତି ପରେ ଚର୍ଚ୍ଚର ମିନିଷ୍ଟର ଡ. ଥାଉଅସ୍, ଡ. କ୍ଲାର୍କ ଧର୍ମ ସମ୍ପର୍କରେ ଏକ ଲିଖିତ ଭାଷଣ ଦେଲେ । ଧର୍ମାତ୍ମାର ସାଧନ ଶ୍ରୀ ତପସ୍ୟାର ତେଜ କମ୍ପା ହାର୍ଦ୍ଦିକ ପ୍ରେରଣାର ଉଜ ତା

ମଧ୍ୟରେ ନ ଥିଲା । ତଥାପି ମନେ ହେଲା ହୃଦୟ ଯେପରି କ ପରିତୋଷକ ସ୍ଥାନରେ ଶୃଙ୍ଖଳିତ ହୋଇଅଛି ।

## ଖେଳଘର

ଗାଆଁ ଦାଣ୍ଡଟି ଆମର ଖେଳଘର ଥିଲା । ସେଠି ଗୋଷ୍ଠୀ ଭିତ୍ତିବାସ, ବାଣମର, ଯାତ୍ରା, ମଲ୍ଲଯୁଦ୍ଧ; ଶଗଡ଼ ଯାଏ ଆସେ, ହଳ ଯୋଚି ହଳିଆ ଯାଏ, ଗାଈ ପଲ ମଧ୍ୟରେ ଷଣ୍ଢ ଝୁଲି ଝୁଲି ବୁଲେ; ମେଣ୍ଢା ଲଢ଼େଇ ହୁଏ, ଗଣ୍ଡାପୁଅଙ୍କୁ ନଡ଼ିଆ ଲଢ଼େଇ ହୁଏ, ସାପୁଆ କେଳା ସାପ ଖେଳାଏ, ମୁଣ୍ଡପୋତା କେଳା ମୁଣ୍ଡ ପୋତେ, ଚାଉଁଶବାଣୀ, କେଳା କେଳୁଣୀ ନାଚ ହୁଏ, ମାନସିକ ପାଲା ହୁଏ, ଭୋଜି ନିମନ୍ତ୍ରଣ ହୁଏ; ମୋଟା-ମୋଟି ଗ୍ରାମ୍ୟଜୀବନର ରଙ୍ଗମଞ୍ଚ ଏଇ ଗାଆଁଦାଣ୍ଡ ସେଦିନ ଆମର ଖେଳ ଘର ଥିଲା । ଏବେ ଖେଳର ପୁନରାବୃତ୍ତି ହେଉଥିବା । ମାଟିର ଖେଳଣା ଯେଉଁଦିନ ମେଳଣରୁ ଆସୁଥିଲା ସେଇଦିନ ଭାଙ୍ଗୁଥିଲା । ପିଲାଙ୍କ ଖେଳର ଗୋଟାଏ ଗୁରୁତ୍ୱ ଅଛି, କେହି ଭାବୁ ନ ଥିଲେ ।

କିନ୍ତୁ ଗୀତା, ମୀରା, ନୀକର ଖେଳଘର- ଏ ଗୋଟିଏ ବଡ଼ ବଖରା; ଏଠି ଅଧିକାଂଶ ଅଭଙ୍ଗା ଜିନିଷ । ସେମାନେ ମନଇଚ୍ଛା ଫୋପାଡ଼ୁଛନ୍ତି, ସେସବୁ ଗୋଟାହୋଇ ରଖାହୋଇଛି ।

ଏ ଘରେ ନାନାପ୍ରକାର ଖେଳଣା—(କ) କଳକବ୍‌ଜା—ବସ୍, ଟ୍ୟାଙ୍କ୍, ଟ୍ରକ୍, ଟ୍ରେଲର; ଏଥି ମଧ୍ୟରୁ ପିଲା ଗୋଟିକରେ ବସି ଚଲାଇ ଘରେ ବାହାର ରାସ୍ତାରେ ବୁଲିପାରିବ । ରେଲଗାଡ଼ିଟି ଚିଡ଼ିଆଖାନାରେ ବୁଲୁଥିବା 'ଟ୍ରେନ୍‌ଗାଡ଼ି' ଅନୁକରଣରେ ନିର୍ମିତ । ଏଇସବୁ ଖେଳଣା ଆଧୁନିକ ଜୀବନଆଡ଼କୁ ପିଲାଙ୍କ ମନ ଆକର୍ଷଣ କରିନିଏ । (ଖ) ସ୍ପ୍ରିଙ୍ଗଦିଆ ଘୋଡ଼ା—ଯାହା ଉପରେ ବସି ପିଲା ଘୋଡ଼ା ଚଢ଼ାର ସୁଖ ଉପଭୋଗ କରି-ପାରେ । କୁକୁର ପ୍ରତି ଏ ଦେଶରେ ବେଶୀ ଆଦର । ତେଣୁ କୁକୁର ଖେଳଣା ଅଧିକ । ଏହା ବାସ୍ତବ ଜୀବନର ଅବିକଳ ନକଲ ନୁହେଁ; ବ୍ୟଙ୍ଗାତ୍ମକ । ଫିଡ଼, ବ୍ୟାଙ୍ଗ, ରାବଟ୍, ମୂଷିକ, କଚ୍ଛପ, ହଂସ, ମର୍କଟ

ପ୍ରଭୃତି ଜୀବଜନ୍ତୁଙ୍କର ଗୋଟିଏ ଶ୍ରେଷ୍ଠ ଯାଦୁଘର ହୋଇଛି—ଖେଳଣାର ଯାଦୁଘର । (ଗ) ପଞ୍ଚାଶନାରୁ ପେଙ୍କାଳ, ଖଣ୍ଡା, ବନ୍ଧୁକ, ପିସ୍ତଲରୁ ବାଡ଼ି, ଲୋହିତ ଭାରତୀୟ ମୁକୁଟ, ମୁଖା ପ୍ରଭୃତି ହଜାର ହଜାର ଟଙ୍କାର ଖେଳଣା ଏ ଘରେ ସଞ୍ଚିତ ହୋଇ ରହିଛି ।

ଘର ବାହାରେ ଦୋଳି, ନର୍ସରୀ ସ୍କୁଲରେ, ପାର୍କରେ ପିଲଙ୍କ ଲାଗି ନାନା ଖେଳର ବ୍ୟବସ୍ଥା ରହିଛି । ସୁଇମିଂପୁଲ୍‌ରେ ପିଲମାନେ ସନ୍ତରଣ ଶିଖୁଛନ୍ତି । ଏଠି ଜୀବନଟା ଖେଳ ବୋଲି ପିଲ ବୁଝନ୍ତି । କିନ୍ତୁ ଖେଳ ବେଳେ ମାଷ୍ଟରଙ୍କ ହାବୁଡ଼େ ପଡ଼ିଗଲେ ଆମ ଦେହରୁ ମଇଳ ରକ୍ତ ଶୁଖି ଯାଉଥିଲା । ଖେଳ ପଢ଼ାର ବିରୋଧୀ ବୋଲି ଧାରଣା ଥିଲା । ପୋଖରୀରେ ପହଁରି କଇଁଫୁଲ ତୋଳିଲା ବେଳେ, ଓଲଟ ଶୂନ୍ୟ ମାରି ଡେଇଁଲା ବେଳେ, ମାଷ୍ଟରଙ୍କ ହାବୁଡ଼େ ପଡ଼ିଗଲେ କୋଉ ଦଣ୍ଡ ବା ହଣ୍ଟା ହେଉ ନ ଥିଲା ? ହାତ, ପାଦ, ବେତ, ରୋଳବାଡ଼ି ସବୁ ବୋଲ କରୁଥିଲେ । ଏବେ ଖେଳିଲେ ପିତା ମାତା, ଗୁରୁଜନ ସମସ୍ତେ ଖୁସି—ଏଇ ଖେଳଘର ପ୍ରଶସ୍ତତର ହେଉଛି, ଦୁନିଆ ହେଉଛି ଖେଳାଳୀର ଖେଳ୍‌ଘର । 'ବାଲସ୍ତାବତ୍ କ୍ରୀଡ଼ାସକ୍ତଃ' ନୁହେ, ତରୁଣସ୍ତାବତ୍ କ୍ରୀଡ଼ାମତ୍ତଃ, ବୃଦ୍ଧସ୍ତାବତ୍ କ୍ରୀଡ଼ାମଗ୍ନଃ; କ୍ରୀଡ଼ା ଭାବରେ କିଏ ବା ଆଜି ମଗ୍ନ ନୁହେ ? ବାର୍ଦ୍ଧକ୍ୟର ଶିଥିଳ ରକ୍ତକୁ ଲୀଳା ଚଞ୍ଚଳ କରୁଛି ସିନେମାର ନକ୍ଷତ୍ର ଓ ଲୋକପ୍ରିୟ, ବିଶ୍ୱପ୍ରସିଦ୍ଧ ଖେଳାଳୀ ।

## ଦି ବୁକ୍ ନୁକ୍

ଚଷମାରେ ସରୁ ଚେନ୍ ଲଗା—ଗଳାରେ ଝୁଲୁଛି; ଲୋଡ଼ା ହେଲେ ଆଖିରେ ଲଗା ହେଉଛି । ୭୫ ବର୍ଷର ବୁଢ଼ୀ—ଭାଇଓଲ ଡେଭିସ୍ ଗ୍ରେଭ୍‌ସ୍ । ତାଙ୍କ ସହିତ ଆଉ ଜଣେ ଯୁବତୀ—ମିନ୍ କୋପେକ୍‌ସ୍ । ଦୁହେଁ ମିଶି ବହିଦୋକାନଟି କରିଛନ୍ତି । କୋପେକ୍‌ସ୍‌ର ଘର ଜେକୋସ୍ଲୋଭାକିଆ; ସେ ଛଅଟା ପର୍ଯ୍ୟନ୍ତ ଦୋକାନରେ ବସେ । ତାପରେ ସେଣ୍ଟଲୁଇସ୍ ବିଶ୍ୱବିଦ୍ୟାଳୟକୁ ଯାଏ— ସେ ପିଆନୋ ଓସ୍ତାଦ୍ । ବିଶ୍ୱବିଦ୍ୟାଳୟରେ ତାର ଛାତ୍ର ଛାତ୍ରୀ ମିଶି ଷାଠିଏ ।

ବୃଡ଼ୀକି ମାଗିଲି—ଆମେରିକାନ୍ ସାହିତ୍ୟର ଇତିହାସ, କଳାର ଇତିହାସ, ଲେଖକ ଭାରତୀୟ ଲୋକଯାତ୍ରୀ ଓ ନିଗ୍ରୋ ସମସ୍ୟା ସମ୍ପର୍କୀୟ ବହିସବୁ, କମ ଦାମ୍‌ର; କାଗଜ ବନ୍ଧେଇ ହେଲେ ଓଜନ ଅଳ୍ପ ହେବ, ପାର୍ସଲରେ ଘରକୁ ପଠେଇବା ସୁବିଧାଜନକ ।

ବୃଡ଼ୀ 'Subject of Books in printing' ନାମକ ଏକ ବିରାଟ ଗ୍ରନ୍ଥସୂଚୀ ପୁସ୍ତକ ଖୋଲି ଖୋଜିବାକୁ ଲାଗିଲା; ମୋ ମନଲାଖି ବହି ଖଣ୍ଡିଏ ମାତ୍ର ମିଳିଲା । ବୃଡ଼ୀ ବାକି ତିନି ଖଣ୍ଡର ଠିକଣା ଲେଖି ମୋ ହାତକୁ ବଢ଼ାଇ ଦେଲା ।

ଭାରତୀୟ ବୋଲି ମୋର ପରିଚୟ ପାଇ କହିଲା—ଲସ୍-ଆଞ୍ଜେଲସ୍‌ରେ ଗୋଟିଏ ଭାରତୀୟ ପ୍ରଦର୍ଶନୀ ଦେଖି ଯାଇଥିଲା । ଗାନ୍ଧିଜୀଙ୍କ ଛବି, ତାଙ୍କ କଠାଉ, ଚରଖା, ବ୍ୟବହୃତ ପୁସ୍ତକ ଦେଖି ମୋର ହୃଦୟ ଅଭିଭୂତ ହୋଇଗଲା, ମହାପୁରୁଷ; ଭାରତୀୟ ଜୀବନ ଓ ସଂସ୍କୃତିର ପ୍ରତୀକ ସେ । କୌଣସି ପ୍ରଦର୍ଶନୀ ମୋତେ ଏତେ ଅନୁପ୍ରାଣିତ କରିନାହିଁ ।

କିନ୍ତୁ ନେହରୁଙ୍କ 'Glimpses of World History' ପଢ଼ି ନିରାଶ ହେଲି । ଭାବିଥିଲି—ପ୍ରାଚ୍ୟ ସଂସ୍କୃତି ଓ ଜୀବନ ବିଷୟରେ ଢେର ଉପାଦାନ ମିଳିବ ବୋଲି । କିନ୍ତୁ ପାଶ୍ଚାତ୍ୟ ସଂସ୍କୃତିର ସଂକ୍ଷିପ୍ତ ଟିପ୍ପଣୀମାତ୍ର ପାଇଲି । ତାଙ୍କ କନ୍ୟା ଇନ୍ଦିରାକୁ ପାଶ୍ଚାତ୍ୟ ସଂସ୍କୃତି ବିଷୟରେ ଏକ ସ୍ଥୂଳ ଧାରଣା ଦେବାଲାଗି ବୋଧହୁଏ, ପୁସ୍ତକଟି ଲେଖିଥିଲେ ।

ତାର ବୈଦଗ୍ଧ୍ୟକୁ ପ୍ରଶଂସା କଲି କ୍ଷଣି ବୃଡ଼ୀ କହିଲା—ମୋ ପୁଅ କିନ୍ତୁ ଠିକ୍ ମୋର ଓଲଟା । ତାକୁ କୋଡ଼ିଏ ବର୍ଷ ପୂରିବା ପର୍ଯ୍ୟନ୍ତ ସେ ଖଣ୍ଡିଏ ହେଲେ ବହି ପଢ଼ି ନଥିଲା । ବହିପଢ଼ାକୁ ସେ ଅଳସର ବୃତ୍ତି ବୋଲି ମନେ କରେ । ଯଦି କେବେ କିଛି ପଢେ, ସେ ସେକ୍‌ସ ବହି !

ସେତେବେଳକୁ ଘୋର ବର୍ଷା । ବୃଡ଼୍ଢୀ ବର୍ଷାଛାଟିଏ ଆଣିଦେଲା । ଇସ୍ ତାଙ୍କୁ ଚିହ୍ନ ଗାଡ଼ି ଆଣି ଦୋକାନ ପାଖେ ଲଗାଇଲା । ମିସେସ୍ ଗ୍ରେଭ୍ସ୍ ଓ ମିସ୍. କୋପେକସ୍‌ଙ୍କୁ ଧନ୍ୟବାଦ ଦେଇ ଆମେ ଗାଡ଼ିରେ ବସିଲୁ ।

## ସ୍ପ୍ରିଙ୍ଗ୍ ଫିଲ୍ଡ୍ (୧୮ । ୯ । ୭୭)

ଇଲିନଏସ୍ ମିସୌରିର ପଡ଼ୋଶୀ ପ୍ରଦେଶ; ମିସିସିପି ନଦୀ ଦୁଇ ପ୍ରଦେଶକୁ ବିଚ୍ଛିନ୍ନ କରିଛି । ସ୍ପ୍ରିଙ୍ଗ୍ ଫିଲ୍ଡ ଇଲିନଏସର ରାଜଧାନୀ । ଆଜି ସ୍ପ୍ରିଙ୍ଗ୍ ଫିଲ୍ଡ୍ ଦେଖିଯିବା କଥା—କିନ୍ତୁ ଡେରି ହେଲାଣି; ନିକ ଦୁଧ ପିଇନାହିଁ । ଧମକ ବିଫଳ ହୋଇଛି; ଶେଷ ଅଲ୍ଟିମେଟମ୍—ଯଦି ଦୁଧ ନ ପିଇ, ତେବେ ଏ ଘରେ ରଖି ଦେଇ ଆମେ ସମସ୍ତେ ଚାଲିଯିବୁ । ଏକା ଜିଦ୍ ଧରିଛି—ନିକ ଟଳିଲା ନାହିଁ । ତାଙ୍କୁ ଘରେ ରଖି ଦେଇ ଆମେ କିଛି ଦୂର ଚାଲିଗଲୁ । ଦଶ ମିନିଟ୍ ପରେ ଇସ୍ ଗ୍ରିଲ୍ ଖୋଲି ଧୀରେ ଧୀରେ ଆସିଲି ଦେଖିବାକୁ—ନିକ କଣ କରୁଛି ! ନିକ ରେଫ୍ରିଜରେଟର୍ ଖୋଲି ଦୁଧ ପିଉଥିଲା—ମନର କୋହ ଲୁହ ହୋଇ ବୋହି ଯାଉଥିଲା ।

ଆଜି ରବିବାର ଛୁଟି; ତଥାପି ପୁରୁଣା ରୋଗୀଙ୍କୁ ଥରେ ନ ଦେଖିଗଲେ ନୁହେଁ; ଜୟଦେବ ରୋଗୀ ଦେଖିଗଲା । ଇସ୍ ଗଲା ଗ୍ୟାସ୍ ଖୋଜି । ଡାଉନ୍ ଟାଉନ୍‌ରୁ ବହୁ କଷ୍ଟରେ ମିଳିଲା । ତାପରେ ଜୟଦେବଙ୍କୁ ନେଇ ଆମେ ଚାଲିଲୁ ସ୍ପ୍ରିଙ୍ଗ୍ ଫିଲ୍ଡ୍ ।

ମିସିସିପି ପାର ହୋଇ ଆମେ ଇଲିନଏସ୍‌ର ହାଇୱେରେ ପହଞ୍ଚିଲୁ । ଦୁଇପାଖେ ବନ୍ୟ ସୂର୍ଯ୍ୟମୁଖୀ, କୌତୁକ ଆଖିରେ ସତେ ବା ଚାହିଁଛନ୍ତି । ଅଳ୍ପ ଅଳ୍ପ ମେଘୁଆ ଖରା । ଜୟଦେବଙ୍କୁ ପଚାରିଲି—ଆମେରିକାରେ ସବୁଠାରୁ ବଡ଼ ବ୍ୟବସାୟ କଣ ?

ଜୟଦେବ କହିଲା—ମୋଟର ଗାଡ଼ି; ଜେନେରାଲ୍ ମୋଟର କର୍ପୋରେସନ୍ ସବୁଠାରୁ ବଡ଼ କମ୍ପାନୀ; ତାପରେ ଫୋର୍ଡ଼ ମୋଟର କର୍ପୋରେସନ୍ । ଉଭୟ କମ୍ପାନୀର ମୁଖ୍ୟ ଅଫିସ୍ ଡେଟ୍ରୟେଟ୍‌ରେ

ଅବସ୍ଥିତ । ତୃତୀୟ କମ୍ପାନୀର ନାମ କ୍ରାଇସ୍‌ଲର୍ କର୍‌ପୋରେସନ୍, ଚତୁର୍ଥର ନାମ ଆମେରିକାନ୍ ମୋଟର କର୍‌ପୋରେସନ୍ । ପ୍ରଥମ ଶତକଡ଼ା ୫୦ ବା ୫୫% ଗାଡ଼ି, ଦ୍ୱିତୀୟ ୨୫%, ତୃତୀୟ ୧୫।୨୦%, ଚତୁର୍ଥ ୩।୫ ପରସେଣ୍ଟ ଗାଡ଼ି ଉତ୍ପାଦନ କରେ । ପ୍ରଥମ ବର୍ଷକୁ ଦଶ ବିଲିଆନ୍ ଡଲାରସ୍ ଲାଭ କରେ ।

ପ୍ରଥମ ବୁଇକ୍, ଓଲ୍‌ଡସ୍ ମୋବାଇଲ୍, ପୋଣ୍ଟିଆକ୍, ଚେଭର୍-ଲେଟ୍, କର୍‌ଭେଟ୍ଟାର, ଦ୍ୱିତୀୟ ଲିଙ୍କନ, ମର୍‌କରି, ଫୋର୍ଡ଼, ଫାଲ୍‌କନ୍; ମୁସ୍ତାଙ୍ଗ, ଥଣ୍ଡରବାର୍ଡ଼, ତୃତୀୟ ଇମ୍ପେରିଆଲ୍, କ୍ରାଇସ୍‌ଲେର୍, ଡଜ୍, ପ୍ଲାଇମାଉଥ୍, ଭାଲିଆଣ୍ଟ, ଚତୁର୍ଥ ଅାମ୍ବାସାଡ଼ାର, ରେବେଲ୍, ଆମେରିକାନ୍, ମାର୍‌ଲିନ୍ ପ୍ରଭୃତି ଗାଡ଼ି ଉତ୍ପାଦନ କରେ । କାଡ଼ିଲାକ ସବୁଠାରୁ ଦାମିକା ଗାଡ଼ି—ଏହାର ଦାମ୍ ୬ ହଜାରରୁ ଅାଠହଜାର ଡଲାର୍ ପଡ଼େ ।

ଟେଲିଫୋନ୍ କମ୍ପାନୀ ବ୍ୟବସାୟ ହିସାବରେ ଦ୍ୱିତୀୟ ସ୍ଥାନ ଅଧିକାର କରିଅଛି । ତାପରେ ଗ୍ୟାସ୍ କମ୍ପାନୀ; ସେଥି ମଧ୍ୟରେ ଷ୍ଟାଣ୍ଡାର୍ଡ଼ ଅଏଲ କମ୍ପାନୀ ସବୁଠାରୁ ବଡ଼ । ଡିପାର୍ଟ୍‌ମେଣ୍ଟାଲ୍ ଷ୍ଟୋର୍‌ର ସ୍ଥାନ ଚତୁର୍ଥରେ ଅସେ । ଏହି ଷ୍ଟୋର୍‌ରେ ସବୁ ମିଳେ; ଦେଶସାରା ଏହାର ବହୁ ଶାଖାପ୍ରଶାଖା ।

ବ୍ୟବସାୟୀମାନେ ସାଧାରଣଙ୍କ ଗଚ୍ଛିତ ଧନର ଉପଯୁକ୍ତ ଉପଯୋଗ କରିଥାନ୍ତି । ଗୋଟିଏ ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନରେ ବହୁ ଅଂଶୀଦାର । ପ୍ରତିବର୍ଷ ଅଂଶୀଦାରମାନେ ଲାଭାଂଶ ପାଇଥାନ୍ତି । କମ୍ପାନୀର ପ୍ରେସିଡେଣ୍ଟ ଅଂଶୀଦାରମାନଙ୍କ ଭୋଟରେ ନିର୍ବାଚିତ ହୋଇଥାନ୍ତି, ମାତ୍ର ଗୋଟିଏ ବର୍ଷ ପାଇଁ । ଲାଭ ଦେଖାଇ ନ ପାରିଲେ ସେ ବିଦାୟ ନିଅନ୍ତି । କମ୍ପାନୀକୁ ବହୁ ପ୍ରତିଯୋଗିତା ମଧ୍ୟରେ ଗତି କରିବାକୁ ହୁଏ । କମ୍ପାନୀ ଫେଲ୍ କଲେ ବହୁ ଆନୁସଙ୍ଗିକ ବ୍ୟବସାୟ ତା ସଙ୍ଗେ ଫେଲ୍ କରେ । ଷ୍ଟିଲ୍ କମ୍ପାନୀ, ଗଦି କମ୍ପାନୀ, ମୋଟର୍ ଲାଇଟ୍ କମ୍ପାନୀ ମୋଟର କାର୍ ବ୍ୟବସାୟ ସହିତ ଜଡ଼ିତ । କାର୍ କମ୍ପାନୀ ସେମାନଙ୍କର ବଡ଼ ଖରିଦ୍ଦାର୍ ।

ଷ୍ଟକ୍ ମାର୍କେଟରେ ସ୍ତ୍ରୀଲୋକଙ୍କର ବେଶୀ ଭିଡ଼ । କାରଣ ସେମାନେ ସାଧାରଣତଃ ପୁରୁଷ ଅପେକ୍ଷା ବେଶୀଦିନ ବଞ୍ଚନ୍ତି । ପୁରୁଷ ମଲାବେଳେ ପ୍ରାୟ ସ୍ତ୍ରୀ ନାମରେ ଧନର କେତେକାଂଶ ଉଇଲ୍ କରିଯାଏ । ସ୍ତ୍ରୀ ବ୍ୟବସାୟ ଦେଖାମ୍ ରେ ପଶିବ କାହିଁକି ? ଶୁଖିଲାରେ ବାଲିଆ ନ ପିଟିବ କାହିଁକି ? ସେ ବ୍ୟବସାୟରେ ଅଂଶ କିଣେ । ଘରେ ବସି ବ୍ୟବସାୟର ଲାଭାଂଶ ଭୋଗ କରେ । ସ୍ତ୍ରୀ ଧନରେ କ୍ଷି ବଡ଼ ବଡ଼ ବ୍ୟବସାୟ ସବୁ ଚାଲିଛି ।

ପ୍ରାୟ ଦଶଟାବେଳେ ଆମେ ସ୍ପ୍ରିଙ୍ଗ୍ ଫିଲ୍ଡରେ ପହଞ୍ଚିଲୁ । ଏହି ନଗରର ଲୋକସଂଖ୍ୟା ଅ.୦ ଲକ୍ଷରୁ ଅଧିକ । ପଥ ପ୍ରଶସ୍ତ; ଯାନବାହନର ସେପରି ଭିଡ଼ ନାହିଁ । ଆମେ କାପିଟୋଲ୍ ବିଲ୍ଡିଂ ସାମ୍ନାରେ ଉପସ୍ଥିତ ହେଲୁ । ତୃଣପ୍ରାନ୍ତର ସୁରକ୍ଷିତ—ମଧ୍ୟେ ମଧ୍ୟେ ଜୁନିପର୍, ହ୍ରେସ୍ ମାସ୍ ରୋପିତ । ବନସକଳରେ କେଣ୍ଡା କେଣ୍ଡା ଫୁଲ, ଲାଲ୍; ଆମଅଣ୍ଡ କଳିଅର ଫୁଲପରି; ତାକୁ ଛିଣ୍ଡାଇ ପିଲାଏ ମହୁ ଖାନ୍ତି । କିନ୍ତୁ ଛିଣ୍ଡାଇବାରୁ ଇଚ୍ଛା ମନା କଲ; ଏଠି ମହୁମାଛି ମହୁ ଖାଇଲେ ଦୋଷ ନାହିଁ; କିନ୍ତୁ ମଣିଷ····· ? ପୁଲିସ୍ ହଙ୍ଗେ ସଙ୍ଗେ ଆସି ଧରିପକେଇବ ।

୧୮୧୮ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ତିନି ତାରିଖରେ ଇଲିନଏସ୍ ଏକ ସ୍ୱତନ୍ତ୍ର ରାଜ୍ୟ ରୂପେ ଯୁକ୍ତରାଷ୍ଟ୍ରରେ ଯୋଗ ଦେଲା । ସେତେବେଳେ ଏହାର ରାଜଧାନୀ ଥିଲା କାସ କାସିଆ । ମିସିସିପି ନଦୀର ଗତି ପରିବର୍ତ୍ତନ ଫଳରେ ଏହି ନଗର ନଷ୍ଟଭ୍ରଷ୍ଟ ହୋଇଗଲା । ତାପରେ ଭାଣ୍ଡାଲିଆ ସହର ହେଲା ରାଜଧାନୀ । କିନ୍ତୁ ଅଗ୍ନିଦାହରେ ଏହା ମଧ୍ୟ ଧ୍ୱସ୍ତ ହୋଇଗଲା । ତାପରେ ରାଜ୍ୟର କେନ୍ଦ୍ରସ୍ଥଳକୁ ରାଜଧାନୀ ଉଠାଇ ଆଣିବା ଲାଗି ଲୋକେ ଆନ୍ଦୋଳନ କଲେ । ଆବ୍ରାହାମ୍ ଲିଙ୍କନଙ୍କ ବ୍ୟକ୍ତିତ୍ୱ ବିଜୟୀ ହେଲା । ରାଜଧାନୀ ସ୍ପ୍ରିଙ୍ଗ୍ ଫିଲ୍ଡକୁ ଉଠି ଆସିଲା ।

ରାଜ୍ୟର ଶାସନ ସୌଧ ଓ୍ୱାସିଂଟନ କାପିଟୋଲ ସୌଧ ଗୁଞ୍ଜରେ ନିର୍ମିତ; ମନୋହରାକୃତି । ପ୍ରଥମ ମହଲାରେ କେତେକ ନାରୀ ମୂର୍ତ୍ତି—ଏସବୁ ଯୁଦ୍ଧ, ଶାନ୍ତି, କଳା ଓ କବିତାର ପ୍ରତୀକ । ଆବ୍ରାହାମ ଲିଙ୍କନ, ତାଙ୍କ ପ୍ରତିଯୋଗୀ ଷ୍ଟିଫେନ ଏ ଡଗଲାସ ଓ ଗଭର୍ଣ୍ଣରମାନଙ୍କର ବ୍ରୋଞ୍ଜ ମୂର୍ତ୍ତିସବୁ

ସଂସ୍ଥାପିତ । ଗୋଟିଏ କାନ୍ଥରେ ଏକ୍‌ନଏସ୍‌ର ଆଦିମ ଜୀବନ ଯାତ୍ରା, ଲେହ୍ନିତ ଭାରତୀୟଙ୍କ ସଙ୍ଗେ ଉପନିବେଶକାରୀଙ୍କର ପ୍ରଥମ ସାକ୍ଷାତ୍‌କାର ଅଙ୍କିତ ହୋଇଅଛି ।

ଦ୍ୱିତୀୟ ମହଲରେ ଶିଳ୍ପ, ବାଣିଜ୍ୟ ଓ କୃଷିର ପ୍ରତୀକାତ୍ମକ ମୂର୍ତ୍ତି ଓ ଦୁଇ ପ୍ରତିନିଧି ଗୃହର ସାମ୍ନାରେ ଯୁକ୍ତରାଷ୍ଟ୍ରର ପ୍ରଥମ ସଭାପତି ଜର୍ଜ ଓ୍ୱାସିଂଟନଙ୍କ ଛବି ରଖାଯାଇଅଛି ।

ତୃତୀୟ ମହଲରେ ପାଠାଗାର; ପ୍ରାୟ ଦଶ ଲକ୍ଷ ପ୍ରାଚୀନ ସ୍ମୃତି ସମ୍ଭାର ଏଠାରେ ସଂରକ୍ଷିତ; ଏହା ପୁସ୍ତକ, ପତ୍ରିକା, ପାମ୍ପଲେଟ ଓ ଛବିର ଏକ ବୃହତ୍ ସଂଗ୍ରହାଳୟ । ଲିଙ୍କନଙ୍କ ବ୍ୟବହୃତ ବହୁ ଦ୍ରବ୍ୟ ଓ ସମସାମୟିକ ରେକର୍ଡ ପତ୍ର ଏହି ମହଲରେ ପ୍ରଦର୍ଶିତ ହୋଇଅଛି । ଫଟୋ ଲାଇବ୍ରେରୀଟି ବିଶେଷ ଭାବେ ଦୃଷ୍ଟି ଆକର୍ଷଣ କରେ । ପ୍ରାଚୀନ ନଥିପତ୍ର ହଲ ସାମ୍ନାରେ ସ୍ୱର୍ଣ୍ଣ ଅକ୍ଷରରେ ଲେଖା ହୋଇଅଛି—"Archives of Illinois", ତା ପରବର୍ତ୍ତୀ ଗୃହରେ "Archives of Human Achievement । ସୁପ୍ରିମକୋର୍ଟ ସାମ୍ନାରେ ଆଇନ ପୁସ୍ତକର ଗୋଟିଏ ସ୍ୱତନ୍ତ୍ର ପାଠାଗାର ରହିଅଛି ।

ଚତୁର୍ଥ ମହଲରେ ଜଜ୍‌ମାନଙ୍କର ବସିବା ଗୃହ; ବୟସ ଓ ଅଭିଜ୍ଞତା କ୍ରମରେ ଜଜ୍‌ମାନଙ୍କ ମଧ୍ୟରୁ ପ୍ରଧାନ ବିଚାରପତି ନିର୍ବାଚିତ ହୁଅନ୍ତି । କେହି ସେ ପଦ ସ୍ଥାୟୀ ଭାବେ ଅଧିକାର କରିପାରନ୍ତି ନାହିଁ । ପ୍ରାୟ ପ୍ରତ୍ୟେକ ଜଜ୍‌କୁ ପ୍ରଧାନ ବିଚାରପତି ହେବାର ସୁଯୋଗ ମିଳେ ।

କେନ୍ଦ୍ର ଗୃହ ଅଷ୍ଟତଳ ବିଶିଷ୍ଟ । ଏହି ଗୃହରେ ଶ୍ରମ, ଖଣି ଓ ଖଣିଜ; ପି, ଡବ୍ଲ୍ୟୁ. ଡ଼ି ଓ ନିର୍ମାଣ, ରାଜପଥ, ରେଭିନ୍ୟୁ, ବାଣିଜ୍ୟ, ଟୋଲ୍‌ହାଇଓ୍ୱେ କମିସନ୍, ଟିଚରସ୍ ସର୍ଟିଫିକେସନ ବୋର୍ଡ଼, ଟିଚରସ କଲେଜ ବୋର୍ଡ଼, ସୁପରିଣ୍ଟେଣ୍ଡେଣ୍ଟ ଅଫ ପବ୍‌ଲିକ ଇନ୍‌ଷ୍ଟ୍ରକସନ, ବୋର୍ଡ ଅଫ୍ ଏକନମିକସ, ପବ୍ଲିକ୍ ଏଡକମିସନ ପ୍ରଭୃତି ବିଭିନ୍ନ ବିଭାଗ ଅବସ୍ଥିତ । ଏହି ସୌଧରେ ଆର୍ଟଗାଲେରି ଓ ମ୍ୟୁଜିଅମ ଅଫ୍ ନ୍ୟାଚରାଲ୍ ହିଷ୍ଟ୍ରି

ରହିଅଛି । ତା ଛଡ଼ା ଏହି ସୌଧରେ ପବ୍ଲିକ ରେଷ୍ଟୁରମ୍, ଇନ-ଫର୍ମେସନ, ଲସେପସନିଷ୍ଟ ରୁମ, ପବ୍ଲିକ ଟେଲିଫୋନ ରୁମ୍, ପୋଷ୍ଟ ଅଫିସ କାଫେ ଅଛି । ଯିବା ଆସିବା ଲାଗି ଏସକାଲେଟର୍, ଏଲିଭେଟର ସବୁ ରହିଅଛି । କାପିଟୋଲ ଗାଇଡ ଦର୍ଶକମାନଙ୍କୁ ମାଗଣା ଯୋଗାଇ ଦିଆଯାଏ ।

କାପିଟୋଲ ସୌଧର ଉତ୍ତର-ପୂର୍ବ କୋଣ କାନ୍ଥରେ ସାତ ଫୁଟ ଉଚ୍ଚ ଗୋଟିଏ ବ୍ରଞ୍ଜ ମୂର୍ତ୍ତି—କାନ୍ଥରେ ତାର ଗଇଁଠ । ୧୯୬୪ଅକ୍ଟୋବର ୧୬ ତାରିଖରେ ଏହି ମୂର୍ତ୍ତିଟି କୋଇଲାଖଣିର ଶ୍ରମିକମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯାଇଛି । ୧୮୮୨ରୁ ୧୯୬୪ ମଧ୍ୟରେ କେବଳ ଇଲିନଏସ ରାଜ୍ୟରୁ ୯୪ହଜାର ଶ୍ରମିକ ଖଣି ଦୁର୍ଘଟଣାରେ ପ୍ରାଣ ହରାଇଥିଲେ । ସେମାନଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନର ପ୍ରତୀକ ରୂପେ ଏହି ମୂର୍ତ୍ତିଟି ନିର୍ମାଣ କରାଯାଇଅଛି । ସମଗ୍ର ଯୁକ୍ତରାଷ୍ଟ୍ରରେ ଶ୍ରମ ଓ ଶ୍ରମିକ ପ୍ରତି ଏଭଳି ସମ୍ମାନ ଆଉ କେଉଁଠି ପ୍ରଦର୍ଶିତ ହୋଇନାହିଁ । ଶ୍ରମିକର ମୂର୍ତ୍ତି କଳା ମୁଗୁନି ପ୍ରସ୍ତରରେ ନିର୍ମିତ—ତା ଉପରେ ଗୋଟିଏ ଲେଖା ଖୋଦିତ ହୋଇଅଛି ।

"ଜୀବନରେ କୌଣସି ବୃହତ୍ତ ଭୂମିକାରେ ସେ ଅଭିନୟ କରେ ନାହିଁ, ଏ କଥା ସତ୍ୟ । ତା ହେଲେ ବି ତାର ମହତ୍ତ୍ୱକୁ କେହି ଅସ୍ୱୀକାର କରି ପାରିବେ ନାହିଁ । କାରଣ ପୃଥିବୀର ଗଭୀରତମ ଗର୍ଭରେ ତାର ଶ୍ରମ, ତା ବିନା ସଭ୍ୟତା ଗୁଣ୍ଡା ହୋଇ ମୁଠାଏ ଧୂଳିରେ ପରିଣତ ହେବ ।"

ଯୁକ୍ତରାଷ୍ଟ୍ରର ପ୍ରତ୍ୟେକ ରାଜ୍ୟର ଏକ ସ୍ୱତନ୍ତ୍ର ପତାକା ଅଛି । ଇଲିନଏସ ରାଜ୍ୟର ପତାକା ତ୍ରୟୋଦଶ ନକ୍ଷତ୍ର ଶୋଭିତ । ଉଡ୍ଡୀନ ଇଗଲ୍ ମୁଖରେ ସର୍ପ—ଏହା ଶକ୍ତିର ପ୍ରତୀକ । State, Soverneighty, National union—ପତାକା ଉପରେ ଲିଖିତ ହୋଇଅଛି ।

ଓକ୍ ଇଲିନଏସ୍‌ର ଜାତୀୟ ବୃକ୍ଷ । ଯେତିକି ବୟସ ବଢ଼େ, ଓକ ଗଛର ମଞ୍ଜି ସେତିକି ଶକ୍ତ ହୁଏ । ସେହିପରି ଏହି ରାଜ୍ୟର

ଅଭିବୃଦ୍ଧି ହେବ, କାଳ ତାକୁ ଜୀର୍ଣ୍ଣ ବା ଦୁର୍ବଳ କରିପାରିବ ନାହିଁ, ବରଂ ଅଧିକ ଶକ୍ତିଶାଳୀ ଓ ମହିମାନ୍ୱିତ କରିବ ।

ଓକ୍ ବୃକ୍ଷକୁ ଯୁଗ ଯୁଗ ଧରି ଏ ଦେଶରେ ଜନ ସମ୍ମାନ ପ୍ରଦର୍ଶନ କରି ଆସିଛନ୍ତି, 'ଅରଣ୍ୟ ସମ୍ରାଟ', 'ଶ୍ୟାମଳ ବସୁଧାର ସିନେଟ ସଭ୍ୟ' 'ପ୍ରାନ୍ତରର ରାଜା' ନାମରେ ଏହି ବନସ୍ପତି ଆଖ୍ୟାତ ହୋଇଛି । ଶକ୍ତି, ସାହସ ଓ ସମ୍ଭ୍ରମର ପ୍ରତୀକ ସେ; ସେହି ହିସାବରେ ଜାତୀୟ ବୃକ୍ଷ ହେବାକୁ ସର୍ବତୋଭାବେ ଯୋଗ୍ୟ ।

'ଭାଇଓଲେଟ' ପୁଷ୍ପ ଇଲିନଏସ୍‌ର ଜାତୀୟ ପୁଷ୍ପ; 'ସ୍ୱର୍ଗର ଶ୍ରେଷ୍ଠୀ,' 'ବସନ୍ତର ଶ୍ରଦ୍ଧାସ୍ପଦା', "ସୂର୍ଯ୍ୟ ଓ ପୃଥିବୀର ରୂପବତୀ କନ୍ୟା", "ଯେତେବେଳେ ଏକମାତ୍ର ନକ୍ଷତ୍ର ଆକାଶରେ ବିରାଜିତ—ଭାଇଓଲେଟ ସେହି ନକ୍ଷତ୍ର ପରି ସୁନ୍ଦର", "ରୂପର ବସ୍ତୁ" ଆଦି ନାନା ଭାବେ ବର୍ଣ୍ଣିତ । ଇଂରେଜୀ କବିତା ରାଜ୍ୟରେ ଭାଇଓଲେଟ୍‌ର ଉଚ୍ଚ ସମ୍ମାନ । ଏହା ସୌନ୍ଦର୍ଯ୍ୟ ଓ ବିଶ୍ୱସ୍ତତାର ପ୍ରତୀକ ।

ସେହିପରି ରବୀନ୍, ରେନ, ମିଡ଼ୋଲାର୍କ, ହ୍ୱେଲ, ଓରିଓଲ୍ ବ୍ଲୁବାର୍ଡ଼ ଆଦି ପକ୍ଷୀମାନଙ୍କ ପ୍ରତିଯୋଗିତାରେ କାର୍ଡିନଲ ଅଧିକ ଭୋଟ୍ ପାଇ ଜାତୀୟ ପକ୍ଷୀ ରୂପେ ନିର୍ବାଚିତ ହୋଇଅଛି । ଏ ପକ୍ଷୀଟି ଯାଯାବର ନୁହେ, ତଥାପି ସେହି ଶ୍ରେଣୀର ଏହା ସର୍ବଶ୍ରେଷ୍ଠ ଦୃଷ୍ଟାନ୍ତ । ଶୀତ, ବସନ୍ତ ଗ୍ରୀଷ୍ମ ସବୁ କାଳେ ସେ ଦୃଷ୍ଟ ହୁଏ । 'ଅଗ୍ନିଶିଖାର ଅବତାର ।' 'ଉଜ୍ଜ୍ୱଳତମ ରତ୍ନ' 'ବିଦ୍ୟୁତ୍ ଚମକ' ଆଦି ହୃଦୟଗ୍ରାହୀ ବର୍ଣ୍ଣନାରେ ସେ ଅପୂର୍ବ ରୂପେ ଲୋକ ସମକ୍ଷରେ ପ୍ରତିଭାତ ।

ଇଲିନଏସ୍‌ର ଗୋଟିଏ ସ୍ୱତନ୍ତ୍ର ଜାତୀୟ ସଙ୍ଗୀତ ଅଛି । ଦେଶାତ୍ମବୋଧର ପ୍ରତୀକ ସେ । ଗୋଟିଏ ପଦ ଦୃଷ୍ଟାନ୍ତ ସ୍ୱରୂପ ଉଦ୍ଧୃତ ହେଲା—

"From wilderness of Praries —Illinois
Not without thy wonderous stories ,,

By thy rivers gently flowing —Illinois
Strait thy ways never varies ,,
Can be writ the nation's glories ,,

'ହେଣ୍ଡରସନ୍ ହାଉସ୍'ରେ ଭୋଜନ କଲୁ । ଏ ରେଷ୍ଟୁରାଣ୍ଟର ଗୋଟିଏ ବିଶେଷତ୍ୱ ଆଖିରେ ପଡ଼େ—ମନ ଇଚ୍ଛା ଯେ ଯେଉଁ ଜିନିଷ ଯେତେ ଖାଇ ପାରିବ—ବାଧା ନାହିଁ; ଦେୟ ମାତ୍ର ଏକଡଲର୍ ପଞ୍ଚାନବେ ସେଣ୍ଟ । ଏଠି ଖଣ୍ଡିଏ ଗୁଡ଼ି ପୃଷ୍ଠିଆ ଖବର କାଗଜ ଦେଖିଲି । ଦାମ୍ ୨୫ ସେଣ୍ଟ ! କାହିଁକି ? ଲିଙ୍କନଙ୍କ ହତ୍ୟା ସଂପର୍କୀୟ ଯାବତୀୟ ବିବରଣୀ ଏଥିରେ ପ୍ରକାଶିତ, ପ୍ରତ୍ୟକ୍ଷଦ୍ରଷ୍ଟା ସେଇ କାହାଣୀକୁ ଜୀବନ୍ତ ଭାବେ ବର୍ଣ୍ଣନା କରିଛନ୍ତି ।

## ଲିଙ୍କନଙ୍କ ଘର

'ସଂଗମୋ' ନାମକ ସମ୍ବାଦପତ୍ରରେ ବିଜ୍ଞାପନ୍ ବାହାରିଲା—ସୁଲଭ ମୂଲ୍ୟରେ ଘରବିକ୍ରୀ—ସେପ୍ଟେମ୍ବର ପନ୍ଦର ମଧ୍ୟରେ ବିକ୍ରୀ ନ ହୋଇ ପାରିଲେ ଭଡ଼ା ଦିଆଯିବ ।'

ନିର୍ଦ୍ଧାରିତ ସମୟ ମଧ୍ୟରେ ଘରଟି ବିକ୍ରି ହୋଇ ପାରିଲା ନାହିଁ କିମ୍ବା ତା ପରେ କେହି ଭଡ଼ା ମଧ୍ୟ ନେଲେ ନାହିଁ । ୧୮୪୬ ଖ୍ରୀଷ୍ଟାବ୍ଦରେ ଅବ୍ରାହାମ୍ ଲିଙ୍କନ ବାରଶ ଡଲର୍ ମୂଲ୍ୟରେ ଏଇ ଘରଟି କିଣିଲେ; ସ୍ପ୍ରିଙ୍ଗ୍ ଫିଲ୍ଡ ନିକଟରେ ଥିବା ତାଙ୍କର ୮୦ ଏକର ଜମି ବନ୍ଧକ କରି ସେ ଗୃହର ଅଭିବୃଦ୍ଧି ସାଧନ କରିଥିଲେ । ସେହି ବର୍ଷ ଯେତେବେଳେ ସେ କଂଗ୍ରେସର ସଭ୍ୟ ହେଲେ, ନିଜର ଜିନିଷପତ୍ର ଉପର ମହଲାର ଗୋଟିଏ ଘରେ ରଖି ବାକୀ ସମସ୍ତ ଘରକୁ ବାର୍ଷିକ ୩୫୦ ଡଲର୍‌ରେ ପଟା ଦେଇଦେଲେ । ଯୁକ୍ତରାଷ୍ଟ୍ରର ସଭାପତି ହେବାପରେ ୧୮୬୧ ଫେବ୍ରୁୟାରୀ ୬ ତାରିଖରେ ତାଙ୍କ ବନ୍ଧୁବାନ୍ଧବଙ୍କୁ ଡାକି ଏଇ ଘରେ ଗୋଟିଏ ଭୋଜି ଦେଇଥିଲେ । ତାପରେ ଏ ଘରଟି ବିକ୍ରୀ କରିଦେବା ଲାଗି ଇଲିନଏସ୍ ଷ୍ଟେଟ୍

ଜୋର୍‌ନାଲରେ ବିଜ୍ଞାପନ ଦେଲେ । କିନ୍ତୁ ଗୃହଟି ବିକ୍ରୀ ହୋଇପାରିଲ ନାହିଁ । ୧୮୭୪ ପର୍ଯ୍ୟନ୍ତ ଏ ଘରେ ରହିଲେ ରେଲରୋଡ୍‌ର ପ୍ରେସିଡେଣ୍ଟ; ତାପରେ ଭଡ଼ା ନେଲେ ଇଲିନଏସ୍ ଗଭର୍ଣ୍ଣରଙ୍କ ଘବେଇ ଯେନେଟସି । ୧୮୮୨ରେ ମିସେସ୍ ଲିଙ୍କନଙ୍କ ମୃତ୍ୟୁ ହେଲ । ତାପରେ ଓ, ଏଚ୍, ଓଲ୍‌ଡ ରୟେଡ ଏ ଘରଟି ଭଡ଼ା ନେଲେ; ଲିଙ୍କନଙ୍କ ବ୍ୟବହୃତ ଯାବତୀୟ ଜିନିଷ ଆଣି ସଜେଇ ରଖିଲେ ଓ ଏ ଘରଟି ସରକାରଙ୍କୁ ଦେଇଦେବା ଲଗି ଲିଙ୍କନଙ୍କ ପୁଅ ରବର୍ଟଙ୍କୁ ଅନୁରୋଧ କଲେ । ୧୮୮୭ରେ ଲିଙ୍କନଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଏହି ଗୃହଟି ସରକାର ରବର୍ଟଙ୍କଠାରୁ ଗ୍ରହଣ କଲେ, ରୟେଡ୍‌ଙ୍କଠାରୁ ଯାବତୀୟ ସଂଗୃହୀତ ଦ୍ରବ୍ୟ କ୍ରୟ କଲେ । ଲିଙ୍କନଙ୍କ ଗୃହ ଏବେ ଗୋଟିଏ ଯାଦୁ ଘରେ ପରିଣତ ହୋଇଛି । ଲିଂକନଙ୍କ ବ୍ୟବହୃତ ବସନଭୂଷଣ, ବାସନକୁସନ, ରୋଷାଇ ଘର ପ୍ରଭୃତି ସଜ୍ଜିତ ହୋଇ ରହିଛି । ସତେ ଯେପରି ଘରେ ଚାବି ଦେଇ ଲିଙ୍କନ ପରିବାର ଦୁଇ ଚାରିଦିନ ଲଗି କେଉଁଆଡ଼େ ଭ୍ରମଣରେ ଯାଇଛନ୍ତି; ପୁଣି ଫେରି ଆସିବେ ।

ଷ୍ଟେଟ ଦୋ ମହଲା କୋଠା ସାମ୍ନାରେ ପୁରୁଣା କାଳର ସେଇ ରାସ୍ତା, ଇଟାରେ ତିଆରି, ସେହିପରି ରଖା ଯାଇଛି ।

ଗୋଟିଏ ଘରେ ପୁରୁଣାକାଳର ସେଇ ପଲଙ୍କ, ମଶାରି ବାଡ଼, ଗଦି, ଚହଚ ବିଛଣା ଚାଦର, ପୁରୁଣା ଢଙ୍ଗର ଚୌକି, ଆଲମାରି, ଟେବୁଲ, ଚା କପ୍, ନିଆଁ ପୋହିବା ଲଗି ଲୁହା ଚୁଲି, ମହମବତି ସଜେଇବା ଲଗି ଆଲୋକଝାଡ଼, ଲିଙ୍କନଙ୍କ ବ୍ୟବହୃତ କୋର୍ଟ, ଟୋପି ହାତବାଡ଼ି, ମହଣଛତା, ବନ୍ଧୁକ, ଛୁରି; ସେ ପଢ଼ି ପେନ୍‌ସିଲ୍ ଦାଗ ଦେଇଥିବା ବହି ସବୁ, ତାଙ୍କ ହାତଲେଖା ଚିଠି, ବିଭିନ୍ନ ବୟସର ଫଟୋ ସୁନ୍ଦର ଭାବେ ସଜ୍ଜିତ ହୋଇଅଛି ।

ତାଙ୍କ ସ୍ତ୍ରୀ ମେରୀ ଟଡ୍ ସେକାଳର ସହରବାସିନୀ, କିନ୍ତୁ ମଫସଲି ରାଣୀଙ୍କ ପରି ବେଶଭୂଷା । ସାରା ଶରୀର ବସନରେ ଆବୃତ, ମୁଣ୍ଡରେ ହାତରେ କେତେ ପ୍ରକାର ଅଳଙ୍କାର ପିନ୍ଧିଛନ୍ତି; ତାଙ୍କର ମହମ ମୂର୍ତ୍ତି

ଗଡ଼ା ହୋଇ ଏଇ ଘରେ ରଖାଯାଇଛି । ସେ କାଳକୁ ଚାହିଁଲେ ତାଙ୍କ ରୁଚି ଉନ୍ନତତର ଥିଲା ବୋଲି କୁହାଯାଏ । ସେ ବାସଗୃହଟି ସଜେଇବା ଲାଗି ଯତ୍ପରୋନାସ୍ତି ଯତ୍ନ କରିଥିଲେ, ତାଙ୍କ ବ୍ୟବହୃତ 'A manual of domestic Economy for Town & country ' ଗ୍ରନ୍ଥଟି ଏଇ ଗୃହରେ ସୁରକ୍ଷିତ । ତାଙ୍କ ବାସନ ଆଲମାରି, ଚୁଲି, ପିତଳହାଣ୍ଡି, ବେଲଣା ପେଡ଼ି, ଧାନ ମେଣ୍ଟା ପରି ବନ୍ଧା ମକ୍କା ଚଅଁର, କରଚୁଲି, ଲୁହା ଖଡ଼ିକା ପରି କେତେ ଦ୍ରବ୍ୟ ରୋଷେଇ ଘରେ ସଜା ହୋଇ ରହିଛି ।

ନୂତନ ଯେତେ ଅଗ୍ରସର ହେଲେ ବି ପୁରାତନକୁ ସମ୍ମାନ ଦେବାକୁ କୁଣ୍ଠିତ ହୋଇନାହିଁ; ତିତିକ୍ଷା ଓ ମାନବତାର ମହତ୍ତ୍ୱ ଏ ଗୃହରେ ପୂଜିତ, ଅତୀତ ଆତ୍ମମର୍ଯ୍ୟାଦାରେ ପ୍ରତିଷ୍ଠିତ ହୋଇଛି । ପ୍ରତିଭାର ଯୋଗ୍ୟ ଦାୟାଦ ଆମେରିକାବାସୀଙ୍କୁ ନମସ୍କାର ନ କରି ରହିପାରିଲି ନାହିଁ ।

ଏଇ ଘରପାଖରେ ଗୋଟିଏ ଗିଫ୍ଟସପ୍; ଲିଙ୍କନଙ୍କ ଗୃହ ପରିଦର୍ଶନ-କାରୀ ସେ କାଳର ନାନା ଦ୍ରବ୍ୟ ବନ୍ଧୁବାନ୍ଧବଙ୍କୁ ଉପହାର ଦେବାଲାଗି ଏହି ଦୋକାନରୁ କ୍ରୟ କରି ନେଇଥାନ୍ତି । ପୁରୁଣା ଜିନିଷ ସଜେଇ ରଖିବା ଏ ଦେଶର ଏକ ଫେସନ୍ । ତେଣୁ ପ୍ରତ୍ୟେକ ସୁଦୃଶ୍ୟ ସ୍ଥାନରେ ନୂତନ ସଙ୍ଗେ ପୁରାତନ ଦ୍ରବ୍ୟର ବିକ୍ରୟ ଚାଲିଥାଏ ।

ଗିଫ୍ଟ୍ ସପ୍‌କୁ ଲାଗି ଲିଙ୍କନ ମ୍ୟୁଜିଅମ୍ । ଲିଙ୍କନ ଗୋଟିଏ ଚାଷୀ ପରିବାରରେ ଜନ୍ମ ହୋଇଥିଲେ । ସେତେବେଳେ ଏ ଦେଶରେ ବଳଦ ହଳ କରୁଥିଲେ । ତାଙ୍କ ଘରର ଜୋଡ଼ଲଗା ଜୂଆଳଟି ଏ ଘରେ ରଖା ହୋଇଛି । ତାଙ୍କ ଘରର କୁରାଢ଼ୀ, ଦାଆ, ଅଳଥା ଚାମ୍ପୁଡ଼ା ଯନ୍ତ୍ର, ଅରଟ ମଧ୍ୟ ସଜାହୋଇ ରହିଛି । ତାଙ୍କ ପିତୃପିତାମହ ବଣ୍ଣକର୍ମୀ ଥିଲେ । ତାଙ୍କ ବଂଶର କରତ, ନିହାଣ, ବାର୍ସି ପ୍ରଭୃତି ମହାରଣାର ଯାବତୀୟ ଯନ୍ତ୍ରପାତି ଏ ଘରେ ପ୍ରଦର୍ଶିତ ହୋଇଛି । ବାଲ୍ୟକାଳରେ ବ୍ୟବହୃତ ବ୍ୟାକରଣ, ଓ୍ୱାସିଂଟନଙ୍କ ଜୀବନୀ, ଗୃହଯୁଦ୍ଧ କାଳରେ ଉତ୍ତର ପକ୍ଷର ସେନାପତି ଗ୍ରାଣ୍ଟଙ୍କ ସହିତ ତାଙ୍କର ଛବି, ଫରେଷ୍ଟରେଞ୍ଜର, ଜମିର କୃଷକ ଅଶ୍ୱାରୋହୀ ଲିଙ୍କନଙ୍କ ବ୍ରୋଞ୍ଜମୂର୍ତ୍ତି; ପରିବାର ମଧ୍ୟରେ

ସୁଖାଲାମୀ ଲିଙ୍କନ, ତାଙ୍କ ହାତଲେଖା ପତ୍ର, ସେ କାଳରେ ପ୍ରକାଶିତ ବହୁ ସମ୍ବାଦ ଓ ଫଟୋ, ମୁଦ୍ରା, ନୋଟ, ବ୍ୟବହୃତ ଚେରମୂଳ ଔଷଧ ସବୁ ପ୍ରଦର୍ଶିତ ହୋଇଛି । ଗୋଟିଏ ବୃକ୍ଷର ସ୍ଥୂଳ ଗଣ୍ଡି ରଖାଯାଇଛି—ଏହା ଗୃହଯୁଦ୍ଧର କମାଣ ଗୁଳି ବନ୍ଧ କର ବହୁ କ୍ଷତ ବହନ କରେ—ଗର୍ଭିମସ୍ତ; ଥିଏଟର ହଲରେ ତାଙ୍କ ହତ୍ୟାର ଦଶଦିନ ଆଗରୁ ଲିଙ୍କନ ଗୋଟିଏ ଦୁଃସ୍ୱପ୍ନ ଦେଖିଥିଲେ ।

"ଘୁମୁଛି, ଶଯ୍ୟା ତ୍ୟାଗ କରି ମୁଁ ତଳକୁ ଯାଉଛି । ସହିତ ମାରବତା ଭଙ୍ଗ କରି କାନ୍ଦୁଛନ୍ତି ଏସବୁ କିଏ ? କାହିଁକି ? ଦେଖିଲି କେଉଁଆଡେ କେହି ନାହିଁ ! କୋଠରୀସବୁ ଆଲୋକରେ ଉଦ୍ଭାସିତ । କିନ୍ତୁ ଏ ଶୋକ କାନ୍ଦଣା କେଉଁଆଡ଼ୁ ଭାସି ଆସୁଛି ? ଏହାର କାରଣ ବୁଝିବା ଲାଗି ମୁଁ ପୂର୍ବ ଦିଗକୁ ଆଗେଇଲି । ଦେଖିଲି ଜଣକ ଶବକୁ ଲୋକେ କାନ୍ଧରେ ବୋହି ନେଉଛନ୍ତି । ଚାରିପଟେ ବହୁ ସୈନ୍ୟ ଜଗିଆଛି; ଶବର ମୁଖ ଆବୃତ; ତାକୁ ଘେରି ଲୋକେ ବିଳାପ କରୁଛନ୍ତି ? ହ୍ୱାଇଟ୍ ହାଉସ୍‌ରେ କାହାର ମୃତ୍ୟୁ ହେଲା ? ସେ କିଏ ? ଜଣେ ସୈନ୍ୟକୁ ଡାକି ପଚାରିଲି । ସେ ବେଦନଭରା କଣ୍ଠରେ କହିଲା—ଆପଣ ଜାଣନ୍ତି ନାହିଁ ? ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତିଙ୍କୁ ଜଣେ ଆତତାୟୀ ହତ୍ୟା କରିଛି । ଏହାଶୁଣି ଜନତା ଅଧିକ ଶୋକୋଦ୍‌ବେଳିତ ହେଲା । ସେଇ ବିଳାପ ଚିତ୍କାରରେ ମୋର ନିଦ୍ରାଭଙ୍ଗ ହେଲା ।"

ଏହି ଦୁଃସ୍ୱପ୍ନ ଶୁଣି ମେରୀ ଟଡ୍ ବିଚଳିତା ହୋଇ ପଡ଼ି କହିଲେ—ମତେ ବଡ଼ ଡର ମାଡ଼ୁଛି ! କାହିଁକି ଏ କଥା କହିଲ ?

ସେତେବେଳକୁ ୮୦ ଖଣ୍ଡ ଧମକପୂର୍ଣ୍ଣ ପତ୍ର ତାଙ୍କ ପାଖେ ପହଞ୍ଚି-ଥିଲା, ଏ ପତ୍ର ସମ୍ବନ୍ଧରେ ଲିଙ୍କନ ତାଙ୍କର ଜଣେ ବନ୍ଧୁଙ୍କୁ କହିଥିଲେ—ଭଲମନ୍ଦ କଥା ଈଶ୍ୱର ଜାଣନ୍ତି । ତାଙ୍କର ଯାହା ଇଚ୍ଛା ସେ କରିବେ । ଯେତେବେଳେ କାଳ ପୂରିବ, କିଏ ରକ୍ଷା କରିପାରିବ ?

ଗୃହଯୁଦ୍ଧ ଉଦ୍‌ଯାପନର ମାତ୍ର ପାଞ୍ଚଦିନ ପରେ ଲିଙ୍କନ ନିହତ ହୋଇଥିଲେ । ସେତେବେଳକୁ ତାଙ୍କର ବୟସ ୫୬ ବର୍ଷ ମାତ୍ର ହୋଇଥିଲା ।

# ଲିଙ୍କନଙ୍କ ଜୀବନୀ

ବୃକ୍ଷ ଗଣ୍ଡିର କାନ୍ଥ, ମୃତ୍ତିକା ଚଟାଣ, ଗୋଟିଏ ମାତ୍ର ଗବାକ୍ଷ, ଦୁଆରେ ଚମଡ଼ା ଝଙ୍କି ରହିଏ ଲଗିଥିଲ, ମାଟିର ନଳ ବାଟେ ଘରୁ ଧୂଆଁ ବାହାରୁଥିଲ । ଏହିପରି ଗୋଟିଏ ଦରିଦ୍ର କୁଟୀରରେ ୧୮୦୯ ଖ୍ରୀଷ୍ଟାବ୍ଦ, ଫେବୃୟାରୀ ୧୨ ତାରିଖରେ ଯୁକ୍ତରାଷ୍ଟ୍ରର କେନ୍‌ଟକି ରାଜ୍ୟରେ ଅବ୍ରାହାମ୍ ଲିଙ୍କନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଥୋମାସ ଲିଙ୍କନ ଜୀବନ ବଞ୍ଚେଇବା ଲାଗି ଅଳ୍ପ କିଛି ଜମି ଚାଷ କରିବା ସଙ୍ଗେ ସଙ୍ଗେ ମହାରଣା ବୃତ୍ତି ମଧ୍ୟ ଧରିଥିଲେ ।

ଗୋଟିଏ ବର୍ଷ ମାତ୍ର ସ୍କୁଲ ଶିକ୍ଷା ପାଇଥିଲେ । ସେ ଓ ତାଙ୍କ ଭଉଣୀ ସାରା ୯ ମାଇଲ୍ ବାଟ ଚାଲି ଚାଲି ସ୍କୁଲକୁ ଯାଉଥିଲେ । ସେ ସ୍ପ୍ରିଙ୍ଗ୍‌ଫିଲ୍‌ଡ଼ରେ ବଡ଼ ହୋଇଥିଲେ ।

ଶୈଶବ ଅତିକ୍ରମ କଲାପରେ ଲିଙ୍କନ ମି. ବେରୀଙ୍କ ସଙ୍ଗେ ମିଶି ଗୋଟିଏ ଦୋକାନ କଲେ । ଥରେ ଗୋଟାଏ ଅଳିଆ ମଇଳା କାଗଜ ନେଇ ଜଣେ କେହି ତାଙ୍କ ପାଖକୁ ଆସି କହିଲ—ଏସବୁ ନିଅ, ଯାହା କିଛି ଦିଅ । ଲିଙ୍କନ୍ ତାକୁ ଅଧ ଡଲାରେ ଦେଲେ । କାଗଜ ଗୋଛା ଖୋଲାଇ ଦେଖିଲାବେଳକୁ ଆଇନ ବହିସବୁ; ତା ମଧ୍ୟରେ ଆଇନ ଉପରେ ବ୍ଲାକ୍-ଷ୍ଟୋନ୍‌ଙ୍କ ମହାମୂଲ୍ୟ ଟିପ୍‌ପଣୀ । ରାତିରେ ଜାଗର ରହି ଲିଙ୍କନ୍ ସେସବୁ ବହି ପଢ଼ିବାକୁ ଲଗିଲେ । ସେ 'ରୁ ହ' ଯୁଗ; ଆଇନ ସମ୍ପର୍କରେ ଲୋକଙ୍କୁ ପରାମର୍ଶ ଦେଉଁ ଦେଉଁ ସେ ଆଇନଜ୍ଞ ଭାବରେ ପରିଚିତ ହେଲେ; ମକଦ୍ଦମା ଲଢ଼ିବାକୁ ଲଗିଲେ । ଦେଖୁ ଦେଖୁ ସେ ହୋଇଗଲେ ନାମଜାଦା ଓକିଲ । କିନ୍ତୁ ମଣିଷ ଭାବରେ ଥିଲେ ମହାନ୍ । ଯେଉଁ ମକଦ୍ଦମାକୁ ମିଥ୍ୟା ବୋଲି, ଶଠତା ବୋଲି ବୁଝୁଥିଲେ, ଲଭର ଆଶା ଦେଖିଲେ ବି ସେ ହାତକୁ ନେଉ ନ ଥିଲେ । ସେ ୨୦ ବର୍ଷ କାଳ ଆଇନ ବ୍ୟବସାୟ କରିଥିଲେ । ଆଇନଜ୍ଞ ହୋଇଥିବାରୁ ପରବର୍ତ୍ତୀ କାଳରେ ସେ ସରକାର ଚଳେଇବାକୁ ସମର୍ଥ ହୋଇଥିଲେ ।

ଏଇ ଅଳିଆ ଗଦାରୁ ଲିଙ୍କନ କେତେକ ସାହିତ୍ୟପୁସ୍ତକ ମଧ୍ୟ ପାଇଥିଲେ—ମାକ୍‌ବେଥ୍‌, ୱାସିଂଟନ୍‌ଙ୍କ ଜୀବନୀ, ରବିନ୍‌ସନ୍‌ କ୍ରୁସୋ, ପିଲ୍‌ଗ୍ରିମସ୍‌ ପ୍ରୋଗ୍ରେସ୍‌, ଏସପ୍‌ସ ଫେବଲସ୍‌ ଓ ବାଇବଲ । ଏହା ତାଙ୍କୁ ଶିକ୍ଷିତ ଓ ମାର୍ଜିତ କରିବାରେ ସାହାଯ୍ୟ କରିଥିଲା । ସବୁଠାରୁ ବାଇବଲ୍‌ର ପ୍ରଭାବ ତାଙ୍କ ମନ ଉପରେ ଅଧିକ ପ୍ରତିଫଳିତ ହୋଇଥିଲା । ତାଙ୍କ ବକ୍ତୃତାର ସ୍ତରେ ସ୍ତରେ ନମ୍ରତା ଓ ଈଶ୍ୱରଭକ୍ତି ଫୁଟି ଉଠୁଥିଲା । ସେ କହୁଥିଲେ—ଏ ଦେଶ ଈଶ୍ୱରଙ୍କର ଏକ ମହାନ୍‌ ଦାନ । ପ୍ରଚୁର ଐଶ୍ୱର୍ଯ୍ୟର ଅଧିକାରୀ ଆମେ । କିନ୍ତୁ ଧନ ମଦରେ ପ୍ରମତ୍ତ ହେବା ଏକ ପାପ । ସେଇ ପାପରୁ ଏଇ ଭୟଙ୍କର ଗୃହଯୁଦ୍ଧ ଓ କ୍ଷୟକ୍ଷତି ଘଟିଅଛି । ପାପ ସ୍ୱୀକାର କରି ଈଶ୍ୱରଙ୍କ ପାଖେ କ୍ଷମା ପ୍ରାର୍ଥନା କରିବା ଉଚିତ ।

୧୮୬୧, ଅପ୍ରେଲ୍‌ ୧୪ ତାରିଖରେ ସେ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି ହେଲେ । ସେଦିନ ଘୋର ବର୍ଷା; ଅଶ୍ୱାରୋହଣ କରି ଲିଙ୍କନ ଷ୍ଟେସନକୁ ଗଲେ । ତାଙ୍କୁ ବିଦାୟ ଦେବାଲାଗି ବହୁ ଲୋକ ଜମିଥାନ୍ତି । ସେମାନଙ୍କ ଉଦ୍ଦେଶ୍ୟରେ ସେ କହିଲେ—ମୁଁ ଏଇ ସହରରେ (ସ୍ପ୍ରିଙ୍ଗ୍‌ଫିଲ୍ଡ) ଶତାବ୍ଦୀର ଏକ ଚତୁର୍ଥାଂଶ କଟାଇଛି । ଯୌବନରେ ଆସିଥିଲି, ବୃଦ୍ଧ ହୋଇ ଯାଉଛି । ଏଠି ମୋର ପିଲାମାନେ ଜନ୍ମ ହୋଇଛନ୍ତି, ଗୋଟିଏ ସମାଧି ବି ପାଇଛି । ମୋ ଉପରେ ଯେଉଁ ଭାର ପଡ଼ିଛି ତାଠାରୁ ଗୁରୁତର ଭାର ଯେଣି ମୁଁ କେବେ ଏଠାକୁ ଫେରିବି, ଜାଣେନାହିଁ । ଈଶ୍ୱରଙ୍କ ଉପରେ ମୋର ପୂର୍ଣ୍ଣ ବିଶ୍ୱାସ । ସେ ମୋ ସଙ୍ଗେ ଯାଉଛନ୍ତି, ତୁମ୍ଭମାନଙ୍କ ସଙ୍ଗେ ରହିବେ । ସବୁ ଭଲ ହେବ ।

ସେ ରାଷ୍ଟ୍ରପତି ହେବାର କିଛିଦିନ ପରେ ଆମେରିକା ଗୃହଯୁଦ୍ଧରେ ଲିପ୍ତ ହେଲା । ଏହା ଲିଙ୍କନଙ୍କ ଅନ୍ତରକୁ ଆଜୀବନ ବେଦନାଗ୍ରସ୍ତ କରିଥିଲା । ତାକୁ ଉପଲକ୍ଷ୍ୟ କରି ସେ କେତୋଟି ପ୍ରସିଦ୍ଧ ଭାଷଣ ଦେଇଥିଲେ—

ଆମ ଲୋକସଂଖ୍ୟାର ଅଷ୍ଟମାଂଶ ନିଗ୍ରୋ; ସେମାନେ ବିଶେଷ ଭାବରେ ଦକ୍ଷିଣାଞ୍ଚଳରେ ବାସ କରନ୍ତି । ଏବେ ନିଗ୍ରୋ କେତେକ ଲୋକଙ୍କ

ଅର୍ଥୋପାର୍ଜନର ନିମିତ୍ତ ମାତ୍ର ହୋଇଛନ୍ତି । ଏହି ଆର୍ଥିକ ସ୍ୱାର୍ଥକୁ ସେମାନେ ଚିରକାଳ ବଜାୟ ରଖିବାକୁ ଚାହାନ୍ତି । ଏହା ହିଁ ଗୃହଯୁଦ୍ଧର ମୁଖ୍ୟ କାରଣ ହୋଇଅଛି ।

ଯୁଦ୍ଧ ଏତେ ବ୍ୟାପକ ଓ ଦୀର୍ଘସ୍ଥାୟୀ ହେବ, ଏତେ ଧନଜନ କ୍ଷୟକ୍ଷତି ଘଟିବ ବୋଲି କାହାର ବିଶ୍ୱାସ ନ ଥିଲା । ଉଭୟ ପକ୍ଷ ଏକ ସହଜ ବିଜୟ ଉପରେ ଆସ୍ଥା ରଖିଥିଲେ ।

ଉଭୟ ପକ୍ଷ ଏକା ବାଇବଲ ପଢ଼ନ୍ତି, ଏକ ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି । ପୁଣି ଏକ ଅନ୍ୟର ବିପକ୍ଷରେ ଈଶ୍ୱରଙ୍କ ସାହାଯ୍ୟ ଆଶା କରନ୍ତି; ଏହା ବାସ୍ତବିକ୍ ବିସ୍ମୟକର । ଏକର ଶ୍ରମରେ ଅର୍ଜିତ ଧନ ଅପହରଣ କରିବାକୁ ଈଶ୍ୱର ଅନ୍ୟକୁ କିପରି ସାହାଯ୍ୟ କରିବେ ? ଈଶ୍ୱର ନ୍ୟାୟବାନ୍; ସେ ଆମ କାମନାର ବହୁରର ନିକଟରେ ରହିଲେ । ତାଙ୍କର ବି ଗୋଟିଏ ଉଦ୍ଦେଶ୍ୟ ଅଛି; ମଣିଷର ଉଦ୍ଦେଶ୍ୟରୁ ତାହା ଭିନ୍ନ ।

ଗୋଟିଏ ଅପରାଧ ଆଉ ଗୋଟିଏ ଅପରାଧର କାରଣ ହୋଇଛି, ଅତ୍ୟନ୍ତ ଦୁଃଖର ବିଷୟ । ଦାସତ୍ୱ ପ୍ରଥମ, ଯୁଦ୍ଧ ଦ୍ୱିତୀୟ ଅପରାଧ । ଦାସତ୍ୱ ଦୂର ହେଉ, ଏହା ଈଶ୍ୱରଙ୍କ ଇଚ୍ଛା । ସେଥିଲାଗି ସେ ଏହି ମହାଯୁଦ୍ଧ ଘଟେଇଛନ୍ତି । ଅଢ଼େଇଶ ବର୍ଷ ଧରି ଦାସଙ୍କ ସ୍ୱେଦରେ ଅର୍ଜିତ ଯେତେକ ପାପ ଧନ ତାହା ପ୍ରାୟଶ୍ଚିତ୍ତରେ ଲାଗୁ; ଦାସଙ୍କ ଧମନୀରୁ ଯେତେ ରକ୍ତ ଝରିଛି, ନିଜ ରକ୍ତରେ ତାର ପରିଶୋଧ ହେଉ—ଏହା ହିଁ ନ୍ୟାୟବାନ୍ ଈଶ୍ୱରଙ୍କ କଠୋର ରାୟ ।

ଲିଙ୍କନଙ୍କ ଗେଟିସବର୍ଗ ଭାଷଣଟି ଅତି ପ୍ରସିଦ୍ଧ । ତାଙ୍କ ସମାଧି ମନ୍ଦିରରେ ଏହା ଖୋଦିତ ହୋଇଅଛି ।

ତିନିଦିନବ୍ୟାପୀ ଏହି ଅଞ୍ଚଳର ଗୃହ ଯୁଦ୍ଧରେ ୪୫ ହଜାର ବ୍ୟକ୍ତି ମୃତ ଓ ଅଗଣିତ କ୍ଷତବିକ୍ଷତ ହୋଇଥିଲେ । ୧୭ ଏକର ଜମିରେ ଉତ୍ତର ଓ ଦକ୍ଷିଣାଞ୍ଚଳ ସୈନ୍ୟଙ୍କ ସମାଧିମାନ ନିର୍ମିତ ହୋଇଥିଲା । ଯେତେବେଳେ ଏହି ଜାତୀୟ ଶ୍ମଶାନ ନିର୍ମିତ ହେଲା, ଲିଙ୍କନ କହିଲେ—

୮୭ ବର୍ଷ ତଳେ ଆମର ପିତୃପୁରୁଷ ଏହି ଦେଶକୁ ଆସି ଗୋଟିଏ ନୂଆ ଜାତି ଗଠନ କରିଥିଲେ । ମଣିଷ ମଣିଷ ମଧ୍ୟରେ କୌଣସି ତାରତମ୍ୟ ନାହିଁ, ପ୍ରତ୍ୟେକ ମୁକ୍ତିର ଅଧିକାରୀ ବୋଲି ସେମାନଙ୍କର ବିଶ୍ୱାସ ଥିଲା ; ଆଜି ସେଇ ବିଶ୍ୱାସର ପରୀକ୍ଷାର ଦିନ । ଏ ଜାତି ବଞ୍ଚିବ କି ମରିବ ଆଜି ତାହା ଜଣାପିବ, ଜାତି ଲାଗି ଯେଉଁମାନେ ପ୍ରାଣୋତ୍ସର୍ଗ କରିଛନ୍ତି, ଜାତୀୟ ଶ୍ମଶାନରେ ସେମାନଙ୍କୁ ସ୍ଥାନ ଦେବା ଯଥାର୍ଥ ।

ଆସ, ଆମେ ସେହି ଜାତୀୟ ବୀରମାନଙ୍କ ଅପୂର୍ଣ୍ଣ କାର୍ଯ୍ୟକୁ ପୂର୍ଣ୍ଣ କରିବା । ପ୍ରମାଣ କରିଦେବା ଯେ ସେହି ବୀରମାନେ ବୃଥା ମରି ନାହାନ୍ତି, ଏକ ମହତ୍ ଲକ୍ଷ୍ୟରେ ପ୍ରାଣୋତ୍ସର୍ଗ କରିଛନ୍ତି । ଈଶ୍ୱରଙ୍କ କୃପାରୁ ଏକ ନବ ସ୍ୱାଧୀନ ଜାତି ଜନ୍ମ ଲାଭ କରିବ । ତାର ସରକାର ଲୋକସାଧାରଣଙ୍କ ହିତାର୍ଥେ ଲୋକସାଧାରଣଙ୍କ ଦ୍ୱାରା ଗଠିତ ହେବ ।

୧୮୬୩ର ପହିଲା ଜାନୁୟାରୀ ଦାସମାନଙ୍କର ମୁକ୍ତି ଦିବସ । ଆବ୍ରାହାମ୍ ଲିଙ୍କନ ସେଦିନ ରାଜଧାନୀ ଓ୍ୱାସିଂଟନରେ ନିଗ୍ରୋମାନଙ୍କ ମୁକ୍ତି ଘୋଷଣା କରିଥିଲେ ।

"ଆଜି ୧୮୬୩ ଜାନୁୟାରୀ ପହିଲା ତାରିଖରେ ଯୁକ୍ତରାଷ୍ଟ୍ରର ଅନ୍ତର୍ଭୁକ୍ତ ସମସ୍ତ ପ୍ରଦେଶର ନିଗ୍ରୋମାନଙ୍କୁ ମୁକ୍ତି ଦିଆଗଲା । ସରକାରଙ୍କ ନୌ ଓ ସ୍ଥଳ ବାହିନୀ ସର୍ବଦା ସେମାନଙ୍କ ସ୍ୱାଧୀନତା ରକ୍ଷା କରିବେ । ସେମାନେ ଏପରି କିଛି କାର୍ଯ୍ୟ କରିବେ ନାହିଁ ଯାହା ସେମାନଙ୍କ ସ୍ୱାଧୀନତାକୁ ବ୍ୟାହତ କରିବ ।"

କିନ୍ତୁ ଆଜି ଏକ ଶତ ବର୍ଷ ପରେ ମଧ୍ୟ ମୁକ୍ତିଯୁଦ୍ଧର ଅବସାନ ହୋଇନାହିଁ । ନିଗ୍ରୋର ନାଗରିକ ଅଧିକାର ସର୍ବତ୍ର ସ୍ୱୀକୃତ ହୋଇ ନାହିଁ । ଏବେ ବି ସେ ନିଜକୁ ଦଳିତ, ଅପମାନିତ ମନେ କରୁଛି । ଏହା ଦେଖି ସ୍ୱର୍ଗରେ ଲିଙ୍କନଙ୍କ ଆତ୍ମା ନିଶ୍ଚୟ ବ୍ୟଥିତ ହେଉଥିବ ।

## ମାନବତାବାଦୀ ଲିଙ୍କନ

ମୁକ୍ତି ଘୋଷଣା ପରେ ଜଣେ ନିଗ୍ରୋ ବୁଢା ରାଷ୍ଟ୍ରପତିଙ୍କ ପାଦ ତଳେ ଲୋଟିଗଲା । ତାକୁ ତଳୁ ଉଠାଇ ଲିଙ୍କନ କହିଲେ—"ଏମିତି କରିବା

ଠିକ ନୁହେ । ତୁମେ କେବଳ ଈଶ୍ୱରଙ୍କ ଆଗରେ ମୁଣ୍ଡିଆ ମାରିବ, ମୁକ୍ତି ଲାଭ ଲାଗି କେବଳ ଈଶ୍ୱରଙ୍କୁ ଧନ୍ୟବାଦ ଦେବ । ମୁଁ ନିମିତ୍ତ ମାତ୍ର । ତେବେ ଏଇ ଭରସା ଦେଉଛି ଯେ ମୁଁ ବଞ୍ଚିଥିବା ଯାଏ କେହି ତୁମର ସ୍ୱାଧୀନତା ଅପହରଣ କରି ପାରିବ ନାହିଁ; ସାଧାରଣତନ୍ତ୍ରର ଅନ୍ୟ ଅଧିବାସୀଙ୍କ ପରି ତୁମେ ସ୍ୱାଧୀନ ଜୀବନ ଉପଭୋଗ କରିପାରିବ ।”

ଗୃହ ଯୁଦ୍ଧ ସମୟର କଥା । ଦକ୍ଷିଣ ଅଞ୍ଚଳରେ ଗୋଟିଏ ଯୁବତୀ ଜଣେ କର୍ଣ୍ଣେଲ୍‌ର ପ୍ରେମରେ ପଡ଼ିଥାଏ । କିନ୍ତୁ ସେହି ଅଫିସର ଏବେ ବନ୍ଦୀ । ଗୁପ୍ତଚର କାର୍ଯ୍ୟ କରିଥିବା ହେତୁ ତାର ମୃତ୍ୟୁଦଣ୍ଡ ସୁନିଶ୍ଚିତ । ପ୍ରେମିକା ଯାଇ ଲିଙ୍କନଙ୍କ ପାଖେ କର୍ଣ୍ଣେଲ୍‌ର ପ୍ରାଣ ଭିକ୍ଷା କଲା । ଲିଙ୍କନ କହିଲେ—ଯେଉଁ ସୁଯୋଗ ଲାଗି ଆମେ ଚାରିବର୍ଷ କାଳ ଅପେକ୍ଷା କରିଥିଲୁ ତାହା ଏବେ ଉପସ୍ଥିତ । ଦୟା କରିବାର ସମୟ ଏ, ଈଶ୍ୱରଙ୍କୁ ଧନ୍ୟବାଦ ଦିଅ । ଦକ୍ଷିଣ ଲାଗି ମୁଁ କେବଳ ଉତ୍‌ପୀଡ଼ିତ ନୁହେଁ, ଦକ୍ଷିଣ ସହିତ ନିପୀଡ଼ିତ । ତେଣୁ ତୁମ ଦୁଃଖ ମୋର ଦୁଃଖ; ତୁମ ବେଦନା ମୋର ବେଦନା; ତୁମେ ଯାହା ହରାଇଛ ମୁଁ ତାହା ହରାଇଛି । ତୁମେ ଯାହା ପାଇଛ ମୁଁ ତାହା ପାଇଛି ।, ତାହାପରେ ସେ ପୋଟୋମାକ୍ ନଦୀ ଅଡ଼େ ଈଶ୍ୱରଙ୍କୁ ଧ୍ୟାନ କଲା ପରି ଅନାଇ ରହିଲେ । କର୍ଣ୍ଣେଲ୍ ମୁକ୍ତିଲାଭ କଲେ ।

## ଲିଙ୍କନଙ୍କ ସମାଧି

୧୮୬୫, ଅପ୍ରେଲ ୧୪ ତାରିଖରେ ଆତତାୟୀର ଗୁଳିରେ ଲିଙ୍କନ ନିହତ ହେଲେ । ଆତତାୟୀର ନାମ ଜନ୍ ଉଇଲ୍‌କସ୍ ବୁଥ୍ । ଗୋଟିଏ ନାଟକର ତୃତୀୟ ଅଙ୍କର ଦ୍ୱିତୀୟ ଦୃଶ୍ୟ ଉପଭୋଗ କରୁଥିବା ବେଳେ ସେ ପୃଷ୍ଠପଟରୁ ଗ୍ରୀବାକୁ ଲକ୍ଷ୍ୟକରି ଗୁଳି କଲା । ନାଟକର ଏହା ଏକ ଅଂଶ ବୋଲି ଦର୍ଶକମାନେ ମନେ କରିଥିଲେ । ମିସେସ୍ ଲିଙ୍କନ ବି ଝିମି ଥାନ୍ତି । ଜାଣନ୍ତି ନାହିଁ ଯେ ସେତେବେଳକୁ ସର୍ବନାଶ ହୋଇଗଲାଣି । ଲିଙ୍କନଙ୍କ ମୁଣ୍ଡ ଆଗକୁ ଝୁଲି ପଡ଼ିଥାଏ ।

ଏହା ହତ୍ୟାକାଣ୍ଡ ବୋଲି ଜଣାପିବା ମାତ୍ରେ ଲୋକେ ହତ୍ୟାକାରୀକୁ ଧରିବାକୁ ଧାଇଁଲେ । କିନ୍ତୁ ସେତେବେଳକୁ ସେ ଷ୍ଟେଜ୍ ପଛପଟେ ଖସି-ଯାଇ ଘୋଡ଼ାରେ ଚଢ଼ି ପଳାଇଲାଣି । ଡାକ୍ତରୀ ପରୀକ୍ଷାରେ ଜଣାଗଲା ଯେ ଲିଙ୍କନ ମୃତ । ଜଣେ ନିଗ୍ରୋ ବୃଦ୍ଧା ତାଙ୍କ କଫିନ ଉପରେ ଗୋଟିଏ ଫୁଲମାଳା ଦେଲା—ସେଥିରେ ଲେଖା ଥିଲା—ସେ ଚିରକାଳ ଲୋକଙ୍କ ହୃଦୟରେ ବାସ କରିବେ ।

ଆଜି ଗୋଟିଏ ମାଳା ଉପରେ ଲେଖା ଥିଲା—ଏ ଦେଶରେ କୌଣସି ବଡ଼ ଘଟଣା ଘଟିବା ଆଗରୁ ମତେ ସ୍ୱପ୍ନରେ ଦେଖାଯାଏ । ସେଦିନ ରାତିରେ ସ୍ୱପ୍ନ ଦେଖିଲି—ଗୋଟିଏ ପୋତ ଅତି ଦ୍ରୁତଗତିରେ ଧାଇଁ ଚାଲିଛି ।

ଗୋଟିଏ ସ୍ୱତନ୍ତ୍ର ଗାଡ଼ିରେ କଫିନକୁ ଫିଲାଡେଲ୍‌ଫିଆ ନିଆ-ହେଲା । ସାତମାଇଲଲମ୍ବା ପଥ ଆରରେ ୧୧ ଡିଭିଜନ୍ ସୈନ୍ୟ ଯୋଗ ଦାନ କରିଥିଲେ । ଶୋକସୂଚକ ବ୍ୟାଣ୍ଡ ବାଜା ବାଜୁଥିଲା, ସମ୍ମାନସୂଚକ ତୋପ ଫୁଟିଥିଲା । ଶେଷରେ ତାଙ୍କ କଫିନକୁ ସ୍ପ୍ରିଂଫିଲ୍‌ଡ଼ ଅଣା ଯାଇଥିଲା । ସ୍ପ୍ରିଂଫିଲ୍‌ଡ଼ ସିଟି କାଉନସିଲ ଶୋକ ପ୍ରକାଶ କରିବା ପାଇଁ ୨୦ ହଜାର ଡଲାର୍ ଖର୍ଚ୍ଚ କରିଥିଲେ ।

ତାଙ୍କର ଏହି ପ୍ରିୟ ନଗରରେ ସମାଧିସ୍ତମ୍ଭ ନିର୍ମିତ ହେଲା । ଏଥିଲାଗି ମିନେସୋଟା, ମିସୌରୀ, ଆର୍କାନ୍‌ସସ୍, ଇଉଟା, ଇଟାଲୀ, ଫ୍ରାନ୍‌ସ, ସ୍ପେନ ଓ ବେଲଜିଅମରୁ ମାର୍ବଲ ପ୍ରସ୍ତର ଅଣା ଯାଇଥିଲା ।

ସମାଧି ମନ୍ଦିର ନିର୍ମାଣ କାଳରେ ଲିଙ୍କନଙ୍କ ଶବ ହରଣ ପ୍ରଚେଷ୍ଟା ମଧ୍ୟ ହୋଇଥିଲା । ହରଣକାରୀ ଏଥିଲାଗି ଦୁଇଲକ୍ଷ ଡଲାର୍ ପାଇବ ବୋଲି ଆଶା କରୁଥିଲା । କିନ୍ତୁ ଏହି ଷଡ଼ଯନ୍ତ୍ର ବ୍ୟର୍ଥ ହୋଇଥିଲା ।

ଏ ସ୍ମୃତିସୌଧର ଉଚ୍ଚତା ୧୧୭ ଫୁଟ । ଚାରିକୋଣରେ ଚତୁରଙ୍ଗ —ପଦାତିକ, ଅଶ୍ୱାରୋହୀ, ନୌ ଓ କମାଣ ବାହିନୀ । ଦକ୍ଷିଣ ଦିଗର ପ୍ରବେଶଦ୍ୱାରରେ ଦଶ ଫୁଟ ଉଚ୍ଚ ଲିଙ୍କନଙ୍କ ବ୍ରୋଞ୍ଜ ମୂର୍ତ୍ତି; ତା

ବ୍ୟକ୍ତିଗତ ସୈନିକ ଲିଙ୍କନ, ଆଇନଜ୍ଞ ଲିଙ୍କନ, ରାଜନୀତିଜ୍ଞ ଲିଙ୍କନ ଓ ସଭାପତି ଲିଙ୍କନ ଆଦି ବହୁ ମୂର୍ତ୍ତି ନିର୍ମିତ ହୋଇଅଛି । ତାଙ୍କ ସ୍ପ୍ରିଙ୍ଗ-ଫିଲଡ ଓ ଗେଟିସବର୍ଗ ଭାଷଣ କାନ୍ଥରେ ଖୋଦିତ ହୋଇଅଛି ।

୪୮ଟି ସୁବର୍ଣ୍ଣ ନକ୍ଷତ୍ରରେ ଯୁକ୍ତରାଷ୍ଟ୍ରର ୪୮ଟି ରାଜ୍ୟର ପ୍ରତୀକ ପ୍ରକାଶିତ । ଲିଙ୍କନଙ୍କ ନିବିଡ଼ ସମ୍ପର୍କ ଥିବା ଯାତଗୋଟି ରାଜ୍ୟ (ମାସାଚୁ-ସେଟ, ନିଉଜେର୍ସି, ପେନସିଲଭାନିଆ, ଭର୍ଜିନିଆ, କେଣ୍ଟକି, ଇଲି-ନଏସ, ଏଣ୍ଡିଆନା)ର ଜାତୀୟ ପତାକାସବୁ ସମାଧି ସ୍ତମ୍ଭରେ ଉଡ୍ଡୀନ— ଏହାର ଉପର ବାତାୟନ ଉପରେ ଲେଖାଅଛି—"Now he belongs to ages".

ସମାଧି ମନ୍ଦିର ସାମ୍ନାରେ ଗୋଟିଏ ତୃଣପ୍ରାନ୍ତର—ଉଦ୍ୟାନ— ଓକ୍‌ର ଅରଣ୍ୟ । ଏହି ଅରଣ୍ୟରେ ଜାତୀୟ ବୀରମାନଙ୍କର ସମାଧି ପ୍ରସ୍ତରସବୁ—କେତେକରେ ଏ ପର୍ଯ୍ୟନ୍ତ ପ୍ରସ୍ତର ସ୍ଥାପନ କରାଯାଇ ପାରିନାହିଁ; ପ୍ଲାଷ୍ଟିକ ଫୁଲରେ ସମାଧି ସ୍ଥାନ ସବୁ ଚିହ୍ନିତ ହୋଇଅଛି ।

ଲିଙ୍କନଙ୍କ ସ୍ମୃତି ଚତୁର୍ଦ୍ଦିଗରେ ସଙ୍ଗୀବତ; ଲିଙ୍କନଙ୍କ ମାନବତାର କାହାଣୀ ସର୍ବତ୍ର କୀର୍ତ୍ତିତ । ଲିଙ୍କନଙ୍କ ମୃତ୍ୟୁରେ ଜାତିର ମନରୁ ଏବେ ବି ବେଦନାର ଦାଗ ଲିଭିନାହିଁ । ସେହି ଶୋକର ଗଭୀର ବେଦନାରେ ଅନ୍ତର ଭାରାକ୍ରାନ୍ତ କରି ଆମେ ସ୍ପ୍ରିଙ୍ଗଫିଲଡ଼ରୁ ସେଣ୍ଟଲୁଇସ୍ ଫେରିଲୁ ।

## ସେଣ୍ଟଲୁଇସ୍‌ରୁ ନିଉୟର୍କ (୨୦ । ୭ । ୭୬)

ଆଜି ପୁଣି ଥରେ ନିଉୟର୍କ ବାହାରିଲି । ଶରୀର ଟିକିଏ ଅସୁସ୍ଥ; ବିଶେଷତଃ ବାମ ପାଦଟିର ଅବସ୍ଥା ଶୋଚନୀୟ । ବୃଶ୍ଚିକ ଦଂଶନର ଜ୍ୱାଳା ଅନୁଭବ କରୁଛି । କିନ୍ତୁ ଯିବାକୁ ହିଁ ହେବ । ବିରାଟ ଦେଶ, ହାତରେ ସମୟ ଅଳ୍ପ । ଆମେରିକାନ ଏୟାର ଲାଇନ ପ୍ଲେନ ଧରିବାକୁ ପାଞ୍ଚମିନିଟ ବାକି । ଲ୍ଗେଟେଇ ଲ୍ଗେଟେଇ ଦୌଡ଼ି ଦୌଡ଼ି କୌଣସିମତେ ପ୍ଲେନରେ ଉଠିଗଲି । ପ୍ଲେନ ଦରଜାରେ ଉଦୟ ଗୋଟିଏ ଫଟୋ ନେଲା ।

ସିଟ୍‌ରେ ବସି ଖଣ୍ଡିଏ ମାଗାଜିନ ଗଡ଼ାଇବାକୁ ଲାଗିଲି । ମନ ଲାଗିଲା ନାହିଁ । ଡାହାଣପଟ ଝରକାରୁ ଦେଖିଲି—ଖଣ୍ଡଖଣ୍ଡିଆ ମେଘ—ଗଛପତ୍ର, ଘାସ ପଡ଼ିଆ, ଗୃହଜମି । ଜେଟ ବେଶୀ ଉଚ୍ଚକୁ ଉଠିନାହିଁ, ଜର୍କିଂ ମୋଟେ ନାହିଁ—କେବଳ ଗର୍ଜନ ।

କ ଭୟରେ ପ୍ରାଣ ଶୀତେଇ ଉଠିଲା—ମନ୍ଦଟି ଯଦି ଅଚଳ ହୋଇଯାଏ ! ନାଃ, ବୃଥା ଭୟ, ମାତ୍ର ଦୁଇଘଣ୍ଟାର ବାଟ, ଉଡ଼ିବା ଆଗରୁ କେତେଥର ଭଲଭାବେ ପରୀକ୍ଷା କରିଥିବେ । ପ୍ଲେନଟି ନୂତନ; ସାଙ୍ଗରେ ଏୟାର୍ ଇଞ୍ଜିନିଅର ।

ପୁଣି ଭାବିଲି—ଯେତେବେଳେ କଳ ଅଚଳ ହୁଏ, ସେ କଣ ଧୀରେ ଧୀରେ ହୁଏ ? ଟକ୍‌କିନେ ଯନ୍ତ୍ର ବିଗିଡ଼େ, ଭୁଷ୍‌କିନେ ବିମାନଟା ତଳେ କଚାଡ଼ି ହୋଇଯାଏ କିମ୍ବା ଇଞ୍ଜିନଟା ଜଳି ଉଠେ । ମୃତ୍ୟୁ ପରେ ଦାହ ଲାଗି ଚିତାଗ୍ନିର ପ୍ରୟୋଜନ ହୁଏ ନାହିଁ । ପେଟ୍ରୋଲ ଅଗ୍ନି ହାଡ଼ ସୁଦ୍ଧା ପାଉଁଶ କରିଦିଏ । ମରଣ ଶଙ୍କା ମନକୁ ଅସ୍ଥିର କରିବାକୁ ଲାଗିଲା ।

ଇଚ୍ଛା ବାରମ୍ବାର ହେଉଥିଲା—ଉଦୟର ଠିକଣା ପକେଟରେ ରଖିବାକୁ । ଆକ୍‌ସିଡେଣ୍ଟ ହେଲେ ଶବ ଚିହ୍ନଟରେ କିଛି ଅସୁବିଧା ହେବ ନାହିଁ । କର୍ତ୍ତୃପକ୍ଷ ଅନାୟାସରେ ଉଦୟ ନିକଟକୁ ଫୋନ୍ କରିପାରିବେ । ଏ କଥା ମନେ ପଡ଼ି ଚିତ୍ତ ଆହୁରି ବିକ୍ଷୋଭିତ ହେବାକୁ ଲାଗିଲା । ଉଃ, କେତେ ଉଚ୍ଚରେ ଉଡ଼ୁଛୁ ଆମେ । ତଳେ ମେଘ ବ୍ୟତୀତ ଆଉ କିଛି ଦିଶୁନାହିଁ । ନିଜ ଭାର ଭଗବାନ୍‌ଙ୍କ ଉପରେ ଦେଇ ଗୋଟିଏ କବିତା ଲେଖି ବସିଲି—ଗତ ଚାରିମାସ ମଧ୍ୟରେ ଏଇ ପ୍ରଥମ କବିତା—ବିଶେଷତ୍ୱ ଏତିକି ଯେ ଏହା ଆକାଶରେ ଲେଖା ।

"ତଳେ ମୋ ଆକାଶ ଅଛି
ପାରିକଣ୍ଠ ମେଘର ଆକାଶ
ମୁଁ ଭାବୁଚି ମୃତ୍ୟୁ କଥା
ତେଜି ଆସି ସହରର ଗଳି କନ୍ଦି ଭିଡ଼ ।

ସବୁଜ ପ୍ରାନ୍ତର ଯେତେ ପୁଷ୍ପ କୁଞ୍ଜ
ପ୍ରଶସ୍ତ ନଦଭଡ଼; ଚଞ୍ଚଳକେ ଅଗଣିତ ଯାନ
ମୁଁ ଭାବୁଚ ମୃତ୍ୟୁ କଥା ଭୟେ ମି୍ରୟମାଣ ।

ବାଟରେ ମୋର ସୂର୍ଯ୍ୟ ରଶ୍ମି
ଭୟେ ମୋର ହୋଇଅଛୁ କଳା ।
କୁହୁଡ଼ ଆବର ଅଛୁ
ଯେତେ ସବୁ ବସ୍ତି ଜନପଦ
ଏତେ ବଡ ସଂସାରକୁ ଧିକ ଧିକ
ଆଚ୍ଛାଦନ ମାତ୍ର ଏକ ବ୍ୟକ୍ତିର ବପଦ !

ଏଇ ପଥ ଏକ ଯାନ୍ରୁ
ସାଥୀ ମୋର କର୍ଣ୍ଣ ଛନ୍ଦ କୋମା
ସୁଖର ସଂସାର ଯାଏ ମୋଟ୍ଟ ହୋଇ
ଆଖିର ପଲକେ
ମୃତ୍ୟୁ ସ୍ୱପ୍ନ ଦେଖୁଛୁ କନ୍ତୁ ମୁଁ ରୋମାଞ୍ଚ ପୁଲକେ !

ଏଇ ଘୋର ଅନ୍ଧାର ମଧ୍ୟରେ
ଏକ ଏକ ମୁଖ ଭାସେ
ଯେସନ ନକ୍ଷତ୍ର ଜଳିଁ ଆସେ
ଚଲା ମେଘ ଅନ୍ତରାଳେ;
ପଚ୍ଚରୁଛୁ ପ୍ରିୟତମା
'ଦେଖିଲ କ ଭୟ ସ୍ୱପ୍ନ ?'
ପକ୍ଷୀରାଜ ଘୋଡ଼ା ପରେ
କୁନ ଆମ ବସି
ବଜାଉଛୁ ଢୁଙ୍ଗ
ନାଗର ଦୋଳାରେ ବସି ସଂସାରର
ବୁଲୁଛୁ ମୁଁ ହରତ ଭଉଁରୀ ।

ପତ୍ରରନ୍ଧ୍ର ବନ୍ଧୁବର୍ଗ
କି ଦେଖିଲ କହ
ଆମେରିକା ପ୍ରକୃତିର
ବିଜ୍ଞାନ କଳାର ଅଗ୍ରଗତି ?
କିଏ ତୁମେ ମେଲିଅଛ ସ୍ନେହର ପସରା ?
କାହିଁ ମୁକ୍ତି, କାହିଁ ମାଲ୍ୟ
ଚତୁର୍ଦ୍ଦିଗ ଅଭ୍ୟର୍ଥନା ଭରା ।

ବିଦେଶ ସହର ଏକ ବନ୍ଧୁ କୁଟୁମ୍ବିନି
ମନେ ମୋର ଜମାଇଛୁ ଭିଡ଼
ଭାବଥିଲି ମୁହିଁ ଏକ ଝଡ଼ଛିନ୍ନ ନୀଡ଼
ଚାଲିଅଛୁ ଧୂଳି ଭାସି
ଯେତେ ସୁଖ ସ୍ୱପ୍ନ ଭଣା
ଯେତେ ସନ୍ଧ୍ୟା ରଜନୀଗନ୍ଧା ର
ମଧ୍ୟେ ମୁଁ ଉଦାସୀ ।

କିନ୍ତୁ କାହୁଁ ମାଡ଼ିଆସେ
କୁହୁଡ଼ି ଜୁଆର
ରଶ୍ମିରେ ରଜତ ସ୍ରୋତ;
ଦିଶିଯାଏ ବଙ୍କାଟଙ୍କା ପାହାଡ଼ର ଢେଉ
ଘନ ନୀଳ ଆକାଶ କିନାରେ
ଯେତେକ ଆତ୍ମୀୟ ଯେତ୍କେ ଏକ ଏକ ହୋଇ
ଡାକନ୍ତି ମୋ ଦ୍ୱାରେ ।

ଭାସି ଉଠେ କବିତାର ବନ
ସଙ୍ଗୀତର ନିଶା ସବୁ
ଅଳସ ଶରତ ଅପରାହ୍ଣ

କଳାକାର ଦିଗ୍‌ବଳୟ
ଉଦ୍ୟାନର ସଜଳ ପ୍ରତ୍ୟୁଷ
ଅରଣ୍ୟ ଆଲିଙ୍ଗି ଝରେ ଯେ ନିର୍ଝର
ତରଙ୍ଗେ ତା ବିନ୍ଦୁ ବିନ୍ଦୁ ଚନ୍ଦ୍ରିକାର ହସ
ଆଜିର ଦିବସ ମୋତେ ଦେଇଅଛି ଉପହାର
ସ୍ମୃତି ସ୍ୱପ୍ନ ଝରା କେତେ ଅତୀତର ବର୍ଷ ।

ମୃତ୍ୟୁରେ ତ ଚେତିବାକୁ ହୁଏ
ତୁମେ ସବୁ ଆସିଅଛ ଧାଇଁ କେଉଁ ସୁଏ ?
ସବୁ କଣିକାଏ ସ୍ୱପ୍ନ ଗତ ଅନାଗତ
ଏଇ ଏକ ଅପରାହ୍ନ ମନ
ଜାଣି ତ ନ ଥିଲି ଅଛି
ଏ ମୃତ୍ୟୁରେ ଏତେ ଯେ ଜୀବନ
ଏତେ ଯେ କବିତା ।
ତୁମେ ଯାରେ ଚିତାନଳ ତପ
ମଧ୍ୟେ ତାର ଦେଖିଛ କି ସନ୍ଧ୍ୟାର ସବିତା ?

କବିତାର ଶେଷ ଧାଡ଼ି ଲେଖାହେଲା ବେଳକୁ ଆମ ବିମାନ ଆସି ନିଉୟର୍କ ବିମାନ ଘାଟିରେ ଚକ୍‌କର ଦେଉଥିଲା । ବନ୍ଦର, ନଦୀ, ପାର୍କ, ପ୍ରାନ୍ତର, ଉଚ୍ଚ ଉଚ୍ଚ ସୌଧସବୁ ପରିସ୍ଫୁଟ ହେଲା । ବିମାନ ଅବତରଣ କଲା । ବ୍ୟାଗ୍‌ଟି ଧରି ଚାଲିଲି । ଚଳନ୍ତ ବିଦ୍ୟୁତ୍ ଯନ୍ତ୍ରରେ ମୋ ସୁଟ୍‌କେସ୍‌ଟି ବହିଃଦ୍ୱାରରେ ପହଞ୍ଚି ଯାଇଥିଲା । ତା'କୁ ନେଇ ଟାକ୍‌ସିରେ ବସି ଚାଲିଲି ୧୬୧ ନମ୍ବର ଫ୍ଲସିଂ ଷ୍ଟ୍ରିଟ୍‌କୁ, ଆଦିତ୍ୟ ନାରାୟଣ ବର୍ମନ୍‌ଙ୍କ ଘରକୁ । ସେ କଟକ ମେଡ଼ିକାଲ୍ କଲେଜରେ ପଢ଼ୁଥିବା ବେଳେ ମୋର ପରିଚିତ, ଉଦୟପୁର ପଢ଼ା ସାଥୀ । ତାଙ୍କ ଘର ଖୋର୍ଦ୍ଧାରେ । ୧୯୬୬ରେ ଡାକ୍ତରୀରେ ଉଚ୍ଚଶିକ୍ଷା ନେବାଲାଗି ଆମେରିକା ଆସିଥିଲେ । ୧୯୭୩ରେ ତାଙ୍କର ବିଭା-ଘର ହେଲା । ନାମ ପରିବର୍ତ୍ତନ ନ କଲେ ଏଠା ସମାଜରେ ମିଶିବା

କଷ୍ଟକର; ନ ମିଶି ପାରିଲେ ବ୍ୟବସାୟ ଚଳିବ ନାହିଁ । ଘୋର ପ୍ରତି-ଯୋଗିତା । ଆଫ୍ରିକ୍ୟ ନାଗପୁଣ ବର୍ମନ୍ ଏବେ ବୋଲଉଛନ୍ତି ଆଣ୍ଡରସନ୍ ବର୍ମନ୍ ।

ମୁଁ ଆସି ଫ୍ଲାଶିଂ ଷ୍ଟ୍ରିଟ୍‌ରେ ପହଞ୍ଚିଲି ବେଳକୁ ସାଢ଼େ ଚାରି । ଏଠି କୌଣସି ବ୍ୟବସାୟ ପ୍ରତିଷ୍ଠାନ ବା ଅଫିସ୍ ନାହିଁ । ଅଧିକାଂଶ କୋଠା ଦୋମହଲା—ଫୁଟ୍‌ପାଥ୍‌ରେ ଉକ୍—ବିଶ୍ରାମ ନେବାକୁ ଆହ୍ୱାନ କରେ ଯେପରି । ନୀଳବର୍ଣ୍ଣର ଗୋଟିଏ ଗୋଟିଏ ପକ୍ଷୀ ମଝେ ମଝେ ଉଡ଼ିଆସି ଜନ ଆଉ ଯାନବିରଳ ପଥରେ ଶାନ୍ତି ବର୍ଦ୍ଧିତ କରେ ଯେମିତି ।

ବର୍ମନ୍‌ଙ୍କର ତିନୋଟି ପିଲା—ସ୍କଟ୍, ରସେଲ୍—ଏ ଦୁଇଟି ପୁଅ, ସବା ସାନଟି ଝିଅ—ମେଲେନୀ । ମୁଁ ପହଞ୍ଚିଲା ବେଳକୁ ରସେଲ୍ ଫୁଟ୍-ପାଥ୍‌ରେ ସାଇକେଲ୍‌ରେ ବୁଲୁଥିଲା । ସାତ ବର୍ଷ ବୟସ । ଶୁଣିଥିଲା କିଏ ଆସିବେ ବୋଲି । ମୋତେ ସଙ୍ଗରେ ନେଇ ଘରକୁ ଗଲା । ମି: ବର୍ମନ୍ ଡାକ୍ତରଖାନାରେ । ମିସେସ୍ କିଚେନ୍ ଟେବୁଲ୍ ପାଖରେ ମୋତେ ଅଭିବାଦନ ଜଣାଇଲେ । ସ୍କଟ୍‌କେମ୍ନି ଥୋଇ ମୁଁ ଛିଡ଼ା ହୋଇଥାଏ । ବସିବାକୁ କହିଲେ ନାହିଁ । ମୋ ଆଗମନକୁ ତାଙ୍କ କୁକୁରଟି ଆଦୌ ପସନ୍ଦ କରୁ ନ ଥାଏ । ମିସେସ୍ ବର୍ମନ୍ ତାକୁ ବାରମ୍ବାର ତାଗିଦ୍ କରୁଥାନ୍ତି, ଏଣେ ମୋ ସଙ୍ଗେ କଥା ହେଉଥାନ୍ତି । ତାଙ୍କ କଥା ମୁଁ ଅଳ୍ପ ବୁଝୁଥାଏ । ସେହିପରି ମୋ କଥା ବୁଝିବା ତାଙ୍କ ପକ୍ଷେ କଷ୍ଟକର ହେଉଥାଏ । ଶଙ୍କା—ଏଠି ଆଠୋଟି ଦିନ କଟାଇବି କିପରି ? ପୁରାପୁରି ଆମେରିକାନ୍ ସ୍ତ୍ରୀଲୋକ; ଆମେରିକାନ୍ ଚଳଣି । ଆଦବ୍ କାଇଦା ରକ୍ଷି ଚଳିବାକୁ ହେବ ।

କିଛି ସମୟ ପରେ ମିସେସ୍ ପଚାରିଲେ—ଚା ନା କଫି ? କହିଲି —କୋଲ୍‌ଡ ଡ୍ରିଙ୍କ୍; ଗୁଣ୍ଡା ବରଫ ପକାଇ ସେ ମୋତେ ଗୋଟିଏ ଗ୍ଲାସରେ କୋକାକୋଲା ଆଣିଦେଲେ । ନିଜେ କପେ କଫି ଧରି ଗୃହର ପୃଷ୍ଠ ଅଙ୍ଗନ ଉଦ୍ୟାନକୁ ଡାକିନେଲେ । କିଛି ଫୁଲ ଗଛ, କିଛି ଘାସ, ଫୁଆରା ବୁଲୁଥାଏ । ସେଠି କେତୋଟି ଚୌକି । ସମ୍ପର୍କକୁ ସହଜ କରିବା

ଲାଗି ମୁଁ ମେନେଲଙ୍କୁ କାନ୍ଧେଇ ନେଲି । ଝିଅଟି ଅପରିଚୟ ନ ବାଛି ମୋ ସ୍କନ୍ଧରେ ଲାଖିଗଲା । ସତେ ଅବା ରକ୍ତର ଜୋରରେ ଅଜାଣତରେ ଓଡ଼ିଆ ଓଡ଼ିଆକୁ ଚିହ୍ନିଲା । ଚଉକୀରେ ବସାଇଦେବା ମାତ୍ରେ ମେନେଲଙ୍କ ଗଳ୍ପ ଦାନରେ ଏପରି ହସିଦେଲା ଯେ ଆମର ଦୂରତା ଦୂର ହୋଇଗଲା । ଶିଶୁ ଯେ ସବୁଠାରୁ ଆନ୍ତର୍ଜାତିକ, ସବୁଠାରୁ ବିପ୍ଳବୀ । ଧର୍ମ, ଗୋଷ୍ଠୀ, ଜାତି-ଭେଦ ସେ ସ୍ୱୀକାର କରେନାହିଁ ।

ସଜଫୁଟା ଗଙ୍ଗଶିଉଳି ପରି ହସ—ତାର ସ୍ୱରଲିପି ହୋଇନାହିଁ; ହୋଇ ନ ପାରେ । ନିଃଶବ୍ଦ ହେଲେ ବି ତାର ସ୍ୱର ମୂର୍ଚ୍ଛନା ଅପୂର୍ବ । କଳ୍ପ ଥରେ ମାତ୍ର ଫୁଟି ସେ ହାସ୍ୟ ମଉଳି ଗଲା ନାହିଁ । ଭୁଡ଼ାକୁ ଭୁଡ଼ା ଆସିଲା, ସର ସର ପବନରେ ଗଙ୍ଗଶିଉଳିର ଅସରା ଝରିଲା ପରି—ତା ମାଆ ମନର ଦ୍ୱିଧା ଓ ମୋ ମନର ସଙ୍କୋଚ ଦୂର କରିବାକୁ । ଖୋର୍ଦ୍ଧାର ବର୍ମନ, ନିଉଜର୍ସିର ମିସେସ୍ ଦୁହେଁ ସେ ହସରେ ଅଛନ୍ତି । ଆମ ଲାଗି ମଧ୍ୟ ସେଥିରେ ସ୍ଥାନ ଅଛି; କ୍ଷୁଦ୍ର ଦିଶିଲେ ବି ଅଦ୍ଭୁତ ତାର ବିସ୍ତୃତି ମହିମା ।

ମିସେସ୍ ବର୍ମନଙ୍କ ଘର ନିଉଜର୍ସିରେ । ସେ ମାଷ୍ଟର୍ସ ପାସ୍ କରି କଲେଜରେ ଗୋଟିଏ ବର୍ଷ ପଢ଼ିଛନ୍ତି । ଚାକିରିବାକିରି ନାହିଁ । ତିନୋଟି ପିଲାର ଛଟା ବୁଝିବାକୁ ହୁଏ । ଚାକିରି କରିବାକୁ ଅବସର ନାହିଁ । ଡାକ୍ତର ବର୍ମନଙ୍କ ରୋଜଗାର ଘର ସମ୍ଭାଳିବାକୁ ଯଥେଷ୍ଟ ।

ଘରଟି ଡାକ୍ତର ବର୍ମନ ୩୮ ହଜାର ଡଲାର୍‌ରେ କିଣିଛନ୍ତି, ଅବଶ୍ୟ କରଜ କରି । ୨୫ ବର୍ଷ ମଧ୍ୟରେ କରଜ ଶୁଝିବାକୁ ହେବ । ସେ ଏବେ ଆମେରିକାର ସ୍ଥାୟୀ ବାସିନ୍ଦା ।

ସଫେଇକମ୍ପାନୀର ଲୋକ ଆସି ସପ୍ତାହକେ ଥରେ ଏ ଘର ସଫା କରିଯାଏ । ତଥାପି ଘର ସଜାସଜି, ବଜାର ସଉଦା, ରୋଷେଇବାସ ଆଦି ଯାବତୀୟ କାର୍ଯ୍ୟ ମିସେସ୍ ବର୍ମନଙ୍କୁ କରିବାକୁ ହୁଏ । ଘର, ଟେବୁଲ୍, ପ୍ରଦର୍ଶନୀ ଆଲମାରି ସଜାସଜିରୁ ଗୃହିଣୀଙ୍କ ଯୋଗ୍ୟତାର ପ୍ରଚୁର ପରିଚୟ ମିଳେ । ବୈଠକ ଘର ଓ ପଢ଼ାଘରେ ରାଜକୀୟ ଆଡ଼ମ୍ବର;

ପରଦା, କାର୍ପେଟ୍, ବଣ୍ଟଣୀରେ ଅପୂର୍ବ ସୁରୁଚିକ୍ୟ—ଆସବାବ୍ ଓ ଆଲୋକସଜ୍ଜା ଗୃହକୁ ଏକ ଆଭିଜାତ୍ୟର ରଙ୍ଗ ଦେଇଛି ।

ମୁଁ ଭାବୁଛି ଗୃହର ଶୃଙ୍ଖଳା ବା ଶେଷ ମଣ୍ଡଳରେ । ଘଣ୍ଟା ଏଟା ବେଳେ କାନରେ ଝୁଣୁଝୁଣୁ ଶବ୍ଦ ହେଲା । କିଏ ଟେଲିଫୋନ୍ କରୁଛି ? ନାହିଁ ତ; ବୁଝ୍ ବୁଝ୍ ଡିନାର ଲାଗି ଏ ଆହ୍ୱାନ । ମୁଁ ଜାଣିଥିଲେ ବୋଡ଼ାମ୍ ଟିପି ଅବିକଳ ସେହିପରି ଶବ୍ଦ ସୃଷ୍ଟି କରିପାରିଥାନ୍ତି—ଅର୍ଥାତ୍ ଯାଉଛି, ଧନ୍ୟବାଦ !

ମିସେସ୍ ବର୍ମନ୍ ବାଢ଼ିଦେଲେ—ଆଳୁ ଚପ୍, ମେଣ୍ଢା ମାଂସ ଶିଖା, ସାଲାଡ । ପଚାରିଲେ—ସାଲାଡ଼ରେ କଣ ଡ୍ରେସ୍ କରାଯିବ ? ଜର୍ମାନ୍, ଫ୍ରେଞ୍ଚ୍, ଇଟାଲିଆନ୍, ସ୍ପାନିସ୍ ? ଭାବିଲି—ମୋ ପକ୍ଷେ ସବୁ ସମାନ; ସବୁଗୁଡ଼ିକ ଚାଖିଥିଲେ ତା ମଧ୍ୟରୁ ଗୋଟିଏ ବା ପସନ୍ଦ କରନ୍ତି । ହସି ପଚାରିଲି—ତୁମକୁ କେଉଁଟା ଭଲ ଲାଗେ ?

"ଫ୍ରେଞ୍ଚ୍ !"

"ସେଥିରେ ସାଲାଡ୍ ଡ୍ରେସ୍ କରନ୍ତୁ ।"

ଭାତ ତ ଆଶାଶ୍ରିତ; ପାଉଁରୁଟି କାହିଁ ? ଅଧା ଖାଇସାରିବା ପରେ ମିସେସ୍ ବର୍ମନ୍ ବିଭିନ୍ନ ପ୍ରକାରର ପାଉଁରୁଟି ଦେଖାଇଲେ; କେଉଁଟି ଆପଣଙ୍କର ପସନ୍ଦ ? ନିଜର ଦୁର୍ବଳତା ନ ଦେଖାଇ ସେଥିରୁ ଦୁଇଖଣ୍ଡି କାଢ଼ି ନେଲି ।

ଖିଆପିଆ ପରେ ମିସେସ୍ କହିଲେ—ଆସନ୍ତୁ ଖେଳିବା । କହିଲି —ମତେ ତ କିଛି ଖେଳ ଆସେ ନାହିଁ । ମିସେସ୍ ଜିଦ୍ କଲେ—ଏଟା ଖେଳ ଯୁଗ; ଆପଣଙ୍କୁ ଶିଖିବାକୁ ହେବ । ଭାବିଲି—ନାରାୟଣ !

ମିସେସ୍ ଟେଲିଭିଜନ୍ ପାଖେ ମୋତେ ବସାଇ ଦେଇ କାର୍ଯ୍ୟାନ୍ତରରେ ବ୍ୟସ୍ତ ରହିଲେ । ଗୋଛା ଗୋଛା ଖବର କାଗଜ, ମାଗାଜିନ୍ ଗଡ଼ାଗଡ଼ି ମୁଁ ଟେଲିଭିଜନ୍ ଦୃଶ୍ୟରେ ମଜ୍ଜିଗଲି ।

ସାଇବେରିଆର ଲୋକେ ପ୍ରତିକୂଳ ପ୍ରକୃତି ସହିତ ସଂଗ୍ରାମ କରି ସହର ଓ କଳକାରଖାନା ଗଢ଼ୁଛନ୍ତି, ଶୁଖିଲା ମୂଷାର ମାଂସ ଖାଇ ବହୁ ସ୍ଥାନରେ ଜୀବନ ଧାରଣ କରୁଛନ୍ତି । ବରଫ ଝଡ଼, କୁହୁଡ଼ି, ବର୍ଷା—ତା ମଧ୍ୟରେ ଲୋକସଂଗୀତର ମଧୁର ସ୍ୱର ଶୁଣୁ ଶୁଣୁ ନିଦ ଆଖିକି ଝାଙ୍କିଦେଲା; ଏଇ ସମୟରେ ଡାକ୍ତର ବର୍ମନ୍ ଆସି ପହଞ୍ଚିଲେ । ଦୀର୍ଘ ଆଳାପ ଲାଗି ସେ ବା ମୁଁ କେହି ପ୍ରସ୍ତୁତ ନ ଥିଲୁ । ଯତ୍କି ସାମାନ୍ୟ ସୌଜନ୍ୟ ବିନିମୟ ପରେ ମୁଁ ଶୋଇବାକୁ ଚାଲିଗଲି ।

## ନିଉୟର୍କ

'ଟେନ୍' ଷ୍ଟେସନରେ ଓହ୍ଲାଇ ଖଣ୍ଡେ ଟାକ୍ସି ଧରି ବସ୍ ଷ୍ଟାଣ୍ଡକୁ ଗଲି । Sight-seeing ବସ୍—ସାଢ଼େ ତିନି ଡଲର୍ ଭଡ଼ା, ଯାତ୍ରୀମାନଙ୍କୁ ବୁଲାଇ ସହର ଦେଖାଏ । ନିଉୟର୍କ ସହରର ଗୋଟିଏ ଛବି ମନରେ ଧରିନେବା ଲାଗି ଆସିଛି । ବସ୍ ଛାଡ଼ିବାକୁ ଏବେ ଘଣ୍ଟାଏ ଡେରି; ଏଗାରଟା ବାଜିଲାଣି । ଭୋକ । ଗୋଟିଏ ଖାଦ୍ୟ ଦୋକାନରେ ପଶିଲି । ଦୋକାନୀ ଇଟାଲୀୟ ଛୋକରା ଦେଇ ମୋ ଲାଗି ସ୍ୟାଣ୍ଡୱିଚ୍ କରିଦେଲା । ପ୍ୟାକେଟ୍‌ଟି ଧରି ଆସୁ ଆସୁ ଦେଖିଲି—ଜଣେ ଛିଡ଼ା ହୋଇଛି—ମଳିନ, ନିଷ୍ପ୍ରଭ, ବାସବେଶ ଅପରିଚ୍ଛନ୍ନ, ମୁଖ ବନ୍ୟ; ଦେହ ଶୀର୍ଣ୍ଣାକୃତି । ମୋତେ ଦେଖିଲାକ୍ଷଣି ତାର ମୁଖ ଖୋଲିଲା—

I am hungry
Give me five cents

ଭାବିଲି—ଲୋକଟା ଥଟ୍ଟା କରୁଛି ନା କଣ ? ଯୁକ୍ତରାଷ୍ଟ୍ରରେ କ୍ଷୁଧା ଅଛି ? ଭିକାରୀ ଅଛନ୍ତି ?

ଏ ଭିକ ମାଗୁଛି ? ଖଣ୍ଡିଆ ଖାବର ନୁହେ, ଅନ୍ଧ କି ଛୋଟା ନୁହେ, ବୁଢ଼ାହଡ଼ା ନୁହେ !

କିଛି ନ ଶୁଣିଲା ପରି ବି ଚାରି ପାହୁଣ୍ଡ ଚାଲିଗଲି, ପୁଣି ବିଚାରିଲି—ଭୋକିଲା ହୋଇଥିବ । ବେଶୀ ତ ମାଗୁନାହିଁ, ମାତ୍ର ପାଞ୍ଚ-

ସେଣ୍ଟ ! ଫଣ୍ଟକୁଫେଇର ଦେଇଦେଲି । ଲୋକଟି ସେଲ୍ଟକ ପାଇ ମୋ ପିଠିରେ ହାତ ବୁଲାଇ କହିଲା—you, be great. ତାପରେ ସେକ୍‌ହାଣ୍ଡ କରି ଆଉ କଣ କହିଲା—କିଛି ବୁଝିପାରିଲି ନାହିଁ ।

ସେକ୍‌ହାଣ୍ଡରୁ ଶାରୀରିକ ଶକ୍ତି କଳନା କରି ମୋର ଟିକିଏ ସନ୍ଦେହ ହେଲା—ଲୁଟି କରିବ ? କିନ୍ତୁ ଏକମୁହାଁ ଚାଲିଗଲା । ଏଇ ପାଞ୍ଚ ସେଣ୍ଟ ଲାଗି ସେ ଅପେକ୍ଷା କରିଥିଲା ? ତାର ପେଟର କେଉଁ କଣ ପୂରିଥିବ ? ଏଇଆ ଭାବୁଣ ଚାହିଁଲା ବେଳକୁ ଅନ୍ତର୍ଦ୍ଧାନ; କୁଆଡ଼େ ଗଲା ?

ବସ୍‌ର ଜଣେ ଗାଇଡ୍—ଅଭ୍ୟସ୍ତ ବିଦ୍ୟା, ସେ ଗାଇପାଏ, ବସ୍ ଚାଲିଥାଏ; ନାହାକଙ୍କ ମାଦଳା ପାଞ୍ଜି ପଢ଼ା ପରି ଆବୃତ୍ତି, ନିଷ୍ପ୍ରାଣ । ବ୍ୟାଙ୍କ୍, ରେଷ୍ଟୁରାଣ୍ଟ, ବିଶ୍ୱବିଦ୍ୟାଳୟ, ବ୍ୟବସାୟ ପ୍ରତିଷ୍ଠାନ, ଧର୍ମାନୁଷ୍ଠାନ ବିଭିନ୍ନ ରାଜପଥରେ ସେମାନଙ୍କ ଅବସ୍ଥିତି, ଇତିହାସ, ତା ମଧ୍ୟରେ ହାସ୍ୟରସ; ଗାଇଡ୍ ଆମକୁ ହସ ଖୁସିରେ ରଖିବାକୁ ଚେଷ୍ଟା କରୁଥାଏ । ବ୍ୟବସାୟୀ ସହର ଏ । ସହରର ଧ୍ୟାନ କେବଳ ବିଜ୍ଞାପନରେ । ମୋଡ଼, ଟେଲିଭିଜନ୍ ସବୁଠି ସେଇ ବିଜ୍ଞାପନ ।

ସମଗ୍ର ଆମେରିକା କୁବେର ପୁରୀ ହେଲେ ନିଉୟର୍କ ତାର ରତ୍ନାଗାର । ସାରା ଜଗତର କାରବାର ମୁହଁ ଏଇଠି; ବଡ଼ ବଡ଼ ସେଠ ସାହୁକାରଙ୍କ ପ୍ରାସାଦ । ଏତେ ପୁଞ୍ଜି ପତି ପୁଞ୍ଜିତ ହୋଇ ଆଉ କେଉଁଠି ରହିଛନ୍ତି ? ପଦେ ପଦେ ନଗରର ସମୃଦ୍ଧି କଳନା କରି ଚାଲିଥାଉ— ଗାଇଡ଼ ବୁଝାଉଥାଏ—

ଏ ବ୍ରୁକ୍‌ଲିନ୍ ଦ୍ୱୀପ—ଶହେ ମାଇଲରୁ ଅଧିକ ଦୂର ବ୍ୟାପିଛି ଡକ୍‌ର ମୁହଁ; ଯେତେ ଜାହାଜ ଆସିଲେ ବି ଭିଡ଼ ହୁଏ ନାହିଁ । ଏଇ ଦ୍ୱୀପରେ ଗ୍ରେଟ ବଡ଼ ହୋଇ ସାତ ହଜାର କାରଖାନା ଅଛି, କୋଡ଼ିଏ ଲକ୍ଷ ଲୋକ ବାସ କରନ୍ତି । ନାବିକମାନଙ୍କ ଲାଗି ସ୍ୱତନ୍ତ୍ର ରେଷ୍ଟୁରାଣ୍ଟ ଓ ବିନୋଦନ ବ୍ୟବସ୍ଥା ରହିଅଛି । ଏଥିରେ ଗୋଟିଏ ଜାହାଜ ଯାଦୁଘର ଅଛି—ବିଭିନ୍ନଯୁଗର ଜାହାଜମାନଙ୍କର ନମୁନାସବୁ ରକ୍ଷିତ ହୋଇଅଛି ।

ଏହାର ନାମ Seamen's Church ; ସୌଧର ଅଗ୍ର ଭାଗରେ ଗୋଟିଏ ସଂକେତ ଆଲୋକ; ୧୯୧୨ ରେ ଟାଇଟାନିକ୍ ଜାହାଜଡ଼ୁବିରେ ମୃତ ବ୍ୟକ୍ତିଙ୍କ ନାମରେ ଏହା ଉତ୍ସର୍ଗୀକୃତ ।

'ଇଉନାଇଟେଡ୍ ଷ୍ଟେଟସ ଅସେଅଫିସ ସୁବର୍ଣ୍ଣ କାରବାର କରେ । ଅନ୍ତ କମ୍‌ରେ ଶତ ବିଲିଆନ ଡଲାର ମୂଲ୍ୟର ସ୍ୱର୍ଣ୍ଣ ଛଡ଼ ଆକାରରେ ଏଠି ରଖାଯାଇଥାଏ । ପ୍ରତି ଛଡ଼ର ଓଜନ ୨୭ରୁ ୨୯ ପାଉଣ୍ଡ । ଧୂଆ-ଧୋଇ ପାଣିରୁ ପ୍ରାପ୍ତ ୫ ହଜାର ଡଲାର ମୂଲ୍ୟର ସ୍ୱର୍ଣ୍ଣ ସଂଗୃହୀତ ହୋଇଥାଏ । ଏଠି ସୂକ୍ଷ୍ମ ତରାଜୁ ରହିଛି, ପେନ୍‌ସିଲର ମୁନ ଓଜନ କରିବାକୁ ଏହା ସମର୍ଥ ।

ବାମ ହାତରେ ଓ୍ୱାଲଷ୍ଟ୍ରିଟ୍, ପଞ୍ଜିବାଦୀ ବ୍ୟାପାରି; ପୂର୍ବ ଦାସବ୍ୟବସାୟର ଏହା ଗୋଟିଏ ମୁଖ୍ୟ କେନ୍ଦ୍ର ଥିଲା । ଇଷ୍ଟ ନଦୀ ତୀରବର୍ତ୍ତୀ କାନ୍ଥ ଯୋଗୁଁ ଏହା ଓ୍ୱାଲଷ୍ଟ୍ରିଟ ନାମରେ ପରିଚିତ । ନିଉୟର୍କ ଷ୍ଟକ ଏକ୍ସଚେଞ୍ଜର କେନ୍ଦ୍ରସ୍ଥଳ, ପୃଥିବୀର ବଡ଼ ବଡ଼ କାରବାରରେ ଏହାର ହାତ ରହିଛି । ୧୭୯୨, ମଇ ୧୭ ତାରିଖରେ ଏହା ଉନ୍ମୋଚିତ ହୋଇଥିଲା, ମାତ୍ର କୋଡ଼ିଏ ଜଣ ବ୍ୟବସାୟୀଙ୍କୁ ନେଇ । ସେତେବେଳେ ଏକ୍ସଚେଞ୍ଜର ସିଟ୍ ମାତ୍ର ୨୫ ଡଲାର୍‌ରେ ବିକ୍ରୀ ହୋଇଥିଲା; ୧୯୨୯ ବେଳକୁ ଏହାର ଦାମ୍ ରେକର୍ଡ଼ ଛୁଇଁଲା; ପ୍ରତି ସିଟ୍‌ର ମୂଲ୍ୟ ହେଲା ୬ଲକ୍ଷ ୨୫ହଜାର ଡଲାର୍ । ଏଇ ସିଟ୍ ଯୋଗୁଁ ଜଣେ ବାଣିଜ୍ୟବ୍ୟବସାୟର ଅନୁମତି ମାତ୍ର ଲାଭ କରେ ।

ବ୍ରୁକଲିନ୍ ବ୍ରିଜ୍ ୧୮୮୩ ଖ୍ରୀଷ୍ଟାବ୍ଦରେ ନିର୍ମିତ, ଶେଷ ହେବାକୁ ୧୩ ବର୍ଷ ଲାଗିଥିଲା, ୬୦୧୬ ଫୁଟ୍ ଦୀର୍ଘ; ସେନେ ଏହା ପୃଥିବୀର ବିସ୍ମୟ ଥିଲା । ଯାତ୍ରୀଙ୍କଠାରୁ ଏହି ପୋଲରେ ଟିକସ ଆଦାୟ କରା ହେଉଥିଲା— ମଣିଷ—୧ସେଣ୍ଟ, ଗାଈ ବା ଘୋଡ଼ା—୫ସେଣ୍ଟ; ଘୋଡ଼ାଗାଡ଼ି ଆକାର ଓ ଓଜନ ଅନୁମାନରେ ଦଶରୁ ତିରିଶି ସେଣ୍ଟ ।

ବ୍ରୁକଲିନ ନାଭିୟାର୍ଡ଼ ୧୮୦୧ରେ ନିର୍ମିତ, ଏଠି ଏୟାର୍ କ୍ରାଫ୍‌ଟକ୍ୟାରିଅର୍ ଓ ବଡ଼ ବଡ଼ ଯୁଦ୍ଧ ଜାହାଜସବୁ ନିର୍ମାଣ କରାଯାଏ ।

ଫୁଲ୍‌ଟନ୍ ଫିସ୍ ମାର୍କେଟ ୮ ୨ରେ ଜନ୍ମିଛି । ଏଥିରେ ୧୨୪ ପ୍ରକାର ମାଛ ବିକ୍ରୀ ହୋଇଥାଏ ।

ଗୋଲ୍‌ଡ୍‌ଓ୍ୱାଟର୍ ହସ୍‌ପିଟାଲ୍ ଦୀର୍ଘକାଳ ଧରି ରୋଗ ଭୋଗୁଥିବା ବ୍ୟକ୍ତିଙ୍କ ଲାଗି ଉଦ୍ଦିଷ୍ଟ । 'ଏସ୍ କୋଲେର୍ ହସ୍‌ପିଟାଲ୍'ରେ କେବଳ ବୟସ୍କ ରୋଗୀଙ୍କୁ ସ୍ଥାନ ଦିଆଯାଏ । ଏଥିରେ ୧୨୬୪ ଜଣ ରୋଗୀ, କିନ୍ତୁ ୧୬୦୦ ନର୍ସ ରହିଛନ୍ତି । ଅଶୀ ପରସେଣ୍ଟ ରୋଗୀଙ୍କ ବୟସ ୬୦ରୁ ଅଧିକ ।

ଅତ୍ୟଧିକ ମଦ୍ୟପାନରେ ବ୍ୟାଧିଗ୍ରସ୍ତ, କେହି ଉନ୍ମତ୍ତ, କେହି ଖାମ୍‌ଖିଆଲି, ଖିଆଲରେ କେତେବେଳେ କଣ କରି ବସନ୍ତି । ସେମାନଙ୍କର ମନୋବୈଜ୍ଞାନିକ ପରୀକ୍ଷା ଆବଶ୍ୟକ । ଏଇସବୁ ରୋଗୀଙ୍କ ଲାଗି ଏକ ସ୍ୱତନ୍ତ୍ର ଡାକ୍ତରଖାନା ଅଛି—ତାର ନାମ'ବେଲେଭ୍ୟୁ ହସ୍‌ପିଟାଲ ।'

ପର୍ଯ୍ୟବେକ୍ଷଣ ଲାଗି ଏଠି ବନ୍ଦୀ ଅପରାଧୀଙ୍କୁ ରଖା ହୋଇଥାଏ । ଏଥିରେ ୩ ହଜାର ଶଯ୍ୟା ଓ ସାତଶହ ଡାକ୍ତର ଅଛନ୍ତି । ପ୍ରଥମେ ଏଠି ୧୮୬୯ ଖ୍ରୀଷ୍ଟାବ୍ଦରେ ଅମ୍ବୁଲେନ୍‌ସ ଗାଡ଼ି ଚାଲୁହେଲା; ସେତେବେଳେ ଅବଶ୍ୟ ଘୋଡ଼ାଗାଡ଼ିରେ ରୋଗୀସବୁ ଡାକ୍ତରଖାନାକୁ ବୁହାହୋଇ ଯାଉଥିଲେ ।

ଚାନ୍ ଆମେରିକାନ୍ ବିଲ୍‌ଡିଂ ପୃଥିବୀର ସପ୍ତମ ବୃହତ୍ତମ ସୌଧ । ଏହାର ଏଲିଭେଟର୍ ପୃଥିବୀରେ ଦ୍ରୁତତମ—ମିନିଟିକେ ୧୨୦୦ ଫୁଟ୍ ଉପରକୁ ଉଠାଇ ନେଇ ପାରେ ।

'ରେକ୍‌ଫେଲର ଅର୍‌ମରି'ରେ ବାଣିଜ୍ୟିକ ଦ୍ରବ୍ୟ, ଅତି ପ୍ରାଚୀନ ପଦାର୍ଥ, ଆସବାବ ବା ପୁଷ୍ପ ପ୍ରଦର୍ଶନୀ ହୁଏ । ଟେମ୍ପଲ୍ ଇମାନୁଏଲ୍ ଇହୁଦି-ମାନଙ୍କର ମନ୍ଦିର, ବୃହତ୍ତମ, ସମୃଦ୍ଧତମ ମଧ୍ୟ । ଶିଶୁମାନଙ୍କ ଲାଗି ଏଠି ସ୍ୱତନ୍ତ୍ର ଚିଡ଼ିଆଖାନା ରହିଛି । ଏହାକୁ 'ଷ୍ଟୋରି ବୁକ୍ ଜୁ' କୁହାଯାଏ । ୩୪ରୁ ୫୯ ଷ୍ଟ୍ରିଟ୍‌କୁ ବଜାରି ଅଞ୍ଚଳ କହନ୍ତି । ଏଠି ପୃଥିବୀର ଯାବତୀୟ ଦ୍ରବ୍ୟ ମିଳେ । ଏଫ୍, ଏ, ଓ ସ୍ୱାର୍ଜ ସର୍ବବୃହତ୍ ଖେଳଣା ଦୋକାନ; ରାଜା, ବ୍ୟବସାୟୀ ଏଠିକି ପିଲାଙ୍କ ଲାଗି ଖେଳଣା କିଣିବାକୁ ଯାନ୍ତି ।

'ବର୍ଗ ଡଲ୍ଫ ଗୁଡ଼୍ମ୍ୟାନ୍'ରେ ମୂଲ୍ୟବାନ୍ ଶବାଦ କାମ, ଅଳଙ୍କାର ମିଳେ—ହୀରକ, ଚନ୍ଦ୍ରଭଗ ଆଦ ବହୁମୂଲ୍ୟ ରତ୍ନର ଖଣି ଏ । 'ମ୍ୟୁଜିଅମ୍ ଅଫ୍ ମଡ଼ର୍ଣ୍ଣ ଆର୍ଟ'ରେ ବହୁ ସୌନ୍ଦର୍ଯ୍ୟଶବ୍ଦ ଓ ପ୍ରସାଧନଉଦ୍ଭାବନକାରୀ ରହିଛନ୍ତି । ନୂଆ ନୂଆ ଫେସନ ଏଠାରୁ ଗୃହୀତ ହୁଏ । 'ଚେସ୍ ମନ୍ହଟନ ବ୍ୟାଙ୍କ'ରେ ପୃଥିବୀର ୭୫ ହଜାର ପ୍ରକାର ମୁଦ୍ରା ସଂରକ୍ଷିତ, ଖ୍ରୀ: ପୂ. ଦୁଇ ହଜାର ବର୍ଷର ଚୀନ୍ ମୁଦ୍ରା, ୟୁ. ଏନ୍. ଓ ସୌଧ ସମ୍ମୁଖରେ ରକ୍‌ଫେଲର୍ ଦାନ କରିଥିବା ଚେକ୍ ପ୍ରଦର୍ଶିତ । ମେଟ୍ରୋପଲିଟାନ୍ ଇନ୍ସୁରେନ୍ସ କମ୍ପାନୀରେ ଗୋଟିଏ ଘଣ୍ଟା ନିର୍ମିତ ହୋଇଅଛି । ଏହାର ମିନିଟ କଣ୍ଟା ୧୭ ଫୁଟ ଲମ୍ବ । ଲଣ୍ଡନର ବିଗ୍‌ବେନ୍‌ଠାରୁ ଏହା ବୃହତ୍ତର ।

ମାଡ଼ିସନ୍ ସ୍କୋୟାରରେ କୋଟିପତିମାନେ ରହନ୍ତି । ଗୋଟିଏ ଗୋଟିଏ ଲଞ୍ଚରେ ଦଶରୁ ପନ୍ଦର ହଜାର ଡଲାର ଖର୍ଚ୍ଚ କରିବା କଥା ଶୁଣାଯାଏ । କେହି କେହି ଏଠି ୩୦ ହଜାର ଡଲାରର ମଣିମୁକ୍ତାଖଚିତ ପୋଷାକ ପରିଧାନ କରନ୍ତି ।

ନିଉୟର୍କ ୭୮୮ରୁ ୧୭୯୦ ପର୍ଯ୍ୟନ୍ତ ଯୁକ୍ତରାଷ୍ଟ୍ରର ରାଜଧାନୀ ଥିଲା । ଫେଡେରାଲ୍ ହଲ୍‌ରେ ପ୍ରଥମ ରାଷ୍ଟ୍ରପତି ୱାସିଂଟନ ଶପଥ ଗ୍ରହଣ କରୁଥିବା ମୂର୍ତ୍ତି ରହିଅଛି ।

ବାଉଲିଂ ଗ୍ରୀନ୍ ପାର୍କରେ ଇଂଲଣ୍ଡର ରାଜା ଜର୍ଜ ତୃତୀୟଙ୍କ ମୂର୍ତ୍ତି ଥିଲା । ଯେତେବେଳେ ମୁକ୍ତିଯୁଦ୍ଧ ଲାଗିଲା, ଆମେରିକାନ୍‌ମାନେ ଏହି ମୂର୍ତ୍ତିକୁ ଭାଙ୍ଗି ସୀସାରେ ପରିଣତ କରିଥିଲେ, ସେହି ସୀସାରେ ୪୨ ହଜାର ବୁଲେଟ୍ ନିର୍ମିତ ହୋଇଥିଲା ଓ ୪ ଶହ ବ୍ରିଟିସ୍ ସୈନ୍ୟଙ୍କୁ ବିନାଶ କରାଯାଇଥିଲା ।

ତାପରେ ଗ୍ରୀଚନା ଟାଉନ୍, ରେଡ଼ିଓ ମ୍ୟୁଜିକ୍ ହଲ୍, ନିଉୟର୍କ ସିଟି ଥିଏଟର୍, ଲିଙ୍କନ ସେଣ୍ଟର, ଅପେରା ହାଉସ୍ କ୍ରାଇସଲର ବିଲ୍‌ଡିଂ (୭୭ ମହଲା, ୧୦୪୬ ଫୁଟ ଉଚ୍ଚ, ବିଶ୍ୱର ବୃହତ୍ତମ ସୌଧ), ଲକ୍‌ମର ଡ଼ିପାର୍ଟମେଣ୍ଟ ଷ୍ଟୋର ପ୍ରଭୃତି ଦୂରରୁ ମାତ୍ର ଲକ୍ଷ୍ୟ କଲୁ । ସହର ତମାମ ଏହିପରି ବୁଲି ବୁଲି ଗୋଟିଏ ପ୍ରୋଟେଷ୍ଟାଣ୍ଟ ଚର୍ଚ୍ଚରେ ପହଞ୍ଚିଲୁ । ନାମ

କାଥେଡ୍ରେଲ ଅଫ ସେଣ୍ଟ ଜନ । ଏହାର ଉଚ୍ଚତା, ବିପୁଳ ବିସ୍ତାର, ସ୍ଥାପତ୍ୟ, ଭିତ୍ତିଚିତ୍ର ଓ ଐଶ୍ବର୍ଯ୍ୟ ଦେଖି ସ୍ତମ୍ଭୀଭୂତ ହୋଇଗଲି ।

୧୮୯୨ ଖ୍ରୀଷ୍ଟାବ୍ଦରୁ ଏହି ଚର୍ଚ୍ଚଟି ନିର୍ମିତ ହୋଇ ଆସୁଛି । ତିନି-ଭାଗରୁ ଦୁଇଭାଗ ମାତ୍ର ଶେଷ ହୋଇଅଛି । ଏ ପର୍ଯ୍ୟନ୍ତ ଏହାର ନିର୍ମାଣରେ କୋଡ଼ିଏ ନିୟୁତ ଡଲାର ବ୍ୟୟିତ ହୋଇଅଛି ।

ସମସ୍ତ ଚର୍ଚ୍ଚଟି ପ୍ରସ୍ତରରେ ନିର୍ମିତ । ଦୁଇପାଖେ ଦୀର୍ଘ ସ୍ତମ୍ଭ, ମଝିରେ ବିରାଟ ହଲ । ଦୁଇପାଖେ ଧାଡ଼ି ଧାଡ଼ି ହୋଇ ଚୌକି ପଡ଼ିଛି; ଚୌକିରେ ୨ ଖଣ୍ଡ ଲେଖାଏଁ ବାଇବଲ ରଖାଯାଇଛି । ଚର୍ଚ୍ଚର ଧାରେ ଧାରେ ପୃଥକ୍ ମଣ୍ଡଳରେ ଛଅଟି ଚାପେଲ୍, ସାମ୍ନାରେ ବେଦି, ବହୁ ଝାଡ଼ ଆଲୋକ ଓ ମହମବତୀ ଜାଳିବାର ବ୍ୟବସ୍ଥା ଅଛି, ଉତ୍ସବ ଦିନ-ମାନଙ୍କରେ । କାନ୍ଥମାନଙ୍କରେ ଯୀଶୁଖ୍ରୀଷ୍ଟଙ୍କର ଜୀବନ କାହାଣୀ ଚିତ୍ରିତ ହୋଇଅଛି ।

ଏହି ଚର୍ଚ୍ଚରେ ମଧ୍ୟେ ମଧ୍ୟେ ଧର୍ମସଭା ହୁଏ; ଧର୍ମ-ପୁସ୍ତକ ଲିପିର ବ୍ୟବସ୍ଥା ରହିଛି । ଏହି କାଥେଡ୍ରେଲ ଭୂମିରେ ଛିଡ଼ାହୋଇ ୱାସିଂଟନ ଶତ୍ରୁ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ତେଣୁ ତାଙ୍କର ସ୍ମୃତି ସଂରକ୍ଷିତ ହୋଇଛି ।

ଏହି କାଥେଡ୍ରେଲର ଦରଜାସବୁ ବ୍ରଞ୍ଜରେ ନିର୍ମିତ । ଏହାର ଆକାର ବିଶାଳ । ବଡ଼ ବଡ଼ ବ୍ୟବସାୟୀଙ୍କ ଉଦାର ଦାନ ଯୋଗୁଁ ଏହି ବିରାଟ କୀର୍ତ୍ତି ନିର୍ମାଣ ସମ୍ଭବ ହୋଇଛି । ତାହାମାନଙ୍କର ନାମ ଗୋଟିଏ ପୁସ୍ତକରେ ଲିଖିତ ହୋଇ ରହିଅଛି । ପୁସ୍ତକର ମଲାଟ ସୁବର୍ଣ୍ଣ ନିର୍ମିତ । ଏଥିରେ ନାନା ରତ୍ନ ଖଞ୍ଜା ଯାଇଅଛି ।

କାଥେଡ୍ରେଲ ସାମ୍ନାରେ ଗୋଟିଏ ତୃଣପ୍ରାନ୍ତର— କେତେକ ପୁଷ୍ପ ଗୁଳ୍ମ । ମନରେ ଶାନ୍ତି ଆଣେ । ଈଶ୍ବର, ଚର୍ଚ୍ଚକର, ଧର୍ମଜିଜ୍ଞାସୁମାନଙ୍କର ମନ ଗୋଟିଏ ଛନ୍ଦରେ ଯେପରି କି ମିଳିତ ହୋଇଅଛି, ଏହି ଦେବ ଅନୁଷ୍ଠାନର ଛାୟା ମଧ୍ୟରେ ।

ସନ୍ଧ୍ୟେ ଚଳବୁଲ କରିବାକୁ ନ ଚାହୁଁଥିଲେ ବି ବେଶ୍ କ୍ଳାନ୍ତ, ଫେରିଆସି ଶୋଇ ପଡ଼ିଲି । ପାଖ ଚର୍ଚ୍ଚ ଘଣ୍ଟାରେ ବାଜିଲା—ଏକ···ଦୁଇ ···ସାତ । ଝରକାବାଟେ ଅନାଇ ଦେଖିଲି କଏସବୁ ଆସିଛନ୍ତି, ଖୁବ ଗପ ଜମିଛି । ତଳକୁ ଓହ୍ଲାଇଲି । ମି. ବର୍ମନ ପାଖ ସିଟରେ ବସାଇଲେ; ମିସେସ କିଛି ପାନୀୟ ଆଣିବାକୁ ଯିବା ପୂର୍ବରୁ ପଚାରିଲେ—ହୁଇସ୍କି ?

'ନା ।'

'ପିଲ ମର ନିଦେଇ ଯିବେ; ବଡ଼ ଆରାମ ।'

'ନା ।'

ତାପରେ ସେ ମୋତେ ବିସ୍କୁଟ, ଚିଙ୍ଗୁଡ଼ି ଶିଝା ଓ ଗ୍ଲାସେ ଲେମ୍ବୁ ଦିଆ କୋକାକୋଲା ଆଣି ଦେଲେ ।

ତାଙ୍କ ଘରକୁ ସେଦିନ ଆସିଥାନ୍ତି ଜଣେ କଳାକାର, ସ୍ତ୍ରୀଙ୍କ ସଙ୍ଗେ —ନାମ ରବର୍ଟ୍‌ସ । ଏ ଦେଶର କଳା ଓ କଳାକାରଙ୍କ ବିଷୟରେ କିଛି ଜାଣିବା ଲାଗି ମୁଁ ଏହି ଦମ୍ପତିଙ୍କ ସଙ୍ଗେ ଆଳାପ ଜମାଇଲି । ମି. ଗମ୍ଭୀର ପ୍ରକୃତିର । ମିସେସ୍ କିନ୍ତୁ ଭାରି ହସକୁରା, କଥାକହି । କଣ କହୁ କହୁ କୁଆଡ଼େ ପହଞ୍ଚନ୍ତି । ପରେ କଥାକୁ ଫୁଲାଏ ହସ; ହସେଇବାର ଶକ୍ତି ଯାହାର ନାହିଁ, ସେ ନିଜେ ହସେ—ମାତ୍ରା ଅତିକ୍ରମ କରି । ହସିବାର କିଛି କାରଣ ନ ଥିଲେ ବି ଆମେ ହସୁଥାଉ ସହାନୁଭୂତିଶୀଳ ହୋଇ; ନ ହେଲେ 'lady'କୁ 'insult' ହୋଇପାରେ ।

ରବର୍ଟ୍‌ସଙ୍କଠାରୁ କିଛି ସାହିତ୍ୟିକ ସମ୍ବାଦ ସଂଗ୍ରହ କରିବା ଲାଗି ପଚାରିଲି—ଏଠି କୌଣସି ଲେଖକଙ୍କୁ ଚିହ୍ନନ୍ତି ?

'ନିଶ୍ଚୟ; କିନ୍ତୁ 'ଲେଖକ'ର ମାନେ କଣ ? ବିଜ୍ଞାପନଲେଖକ ତ ? ଢେର ଜାଣେ । ମୁଁ ତ ବିଜ୍ଞାପନକଳାକାର; ବିଜ୍ଞାପନଲେଖକ କଳାକାରଠାରୁ ଏଠି ଯଥେଷ୍ଟ ରୋଜଗାର କରନ୍ତି ।'

'ମୁଁ ସେସବୁ ଲେଖକଙ୍କ କଥା ପଚ୍ଛୁ ନାହିଁ—କବିତା, ଗଳ୍ପ, ଉପନ୍ୟାସ ଯେ ଲେଖନ୍ତି······'

'ନାଇଁ, ନାଇଁ, ସେପରି ଏଠି କେହି ଥିବାର ଜାଣେ ନାହିଁ, ଥିଲେ ବି ସେ ପଦାକୁ ବାହାରନ୍ତି ନାହିଁ । ସାହିତ୍ୟ ବୋଇଲେ ଆମେ ବିଜ୍ଞାପନକୁ ବୁଝୁ । ଏଠି ବିଜ୍ଞାପନ ପରି ସର୍ବବ୍ୟାପୀ ଆଉ କିଛି ନାହିଁ । ତାକୁ ଲୋକପ୍ରିୟ କରିବା ମୋର କାମ । ମୁଁ ଜଣେ ବିଜ୍ଞାପନର ଡିଜାଇନର !'

## ମନ୍‌ହଟନ

ଅଜ ଗ୍ରୁଣ୍ଡୱେ ଷ୍ଟେସନରେ ମି. ମଣ୍ଡେଲଙ୍କ ସଙ୍ଗେ ସାକ୍ଷାତ ହେଲା । ମୁଖ ତ ନୁହେ, ଗୋଟିଏ କାର୍ଟୁନ, ବ୍ୟଙ୍ଗାତ୍ମକ । ହସକୁରି କଥା ପୂରି ରହିଛି ସେଥିରେ—ବନ୍ଧୁଙ୍କ ସଙ୍ଗେ ଆଳାପରେ ଫୁଟି ଉଠୁଛି, ଅଦ୍ଭୁତ ସଂକ୍ଷିପ୍ତ ମନ୍ତବ୍ୟମାରେ ବାତାବରଣକୁ ଉଜ୍ଜ୍ୱଳତର କରି । ତାଙ୍କ ସହିତ ପରିଚିତ ହେବାକୁ ଲୋଭ ହେଲା ମୋର । ଭାରତ ସମ୍ପର୍କରେ ନାନା କଥା ପଚ୍ଛରିଗଲେ ସେ । ସଂକ୍ଷିପ୍ତ ଉତ୍ତର ଦେଇ ପରେ ମୁଁ ପଚ୍ଛରିଲି—ତାଙ୍କର ପରିଚୟ; ସେ ଯାହା ଉତ୍ତର ଦେଲେ ନ ହସି କିଏ ରହି ପାରିବ ?

କହିଲେ—ମୋର ପରିଚୟ ? ମୁଁ ମୋ ସ୍ତ୍ରୀକୁ ଭଲପାଏ ନାହିଁ ।

'କାହିଁକି ?'

'ସ୍ଥୂଳାଙ୍ଗୀ !

'ଆପଣଙ୍କ ଶରୀର ଅତି କ୍ଷୀଣ । ସ୍ତ୍ରୀ ହୁଏତ ଆପଣଙ୍କୁ ପସନ୍ଦ କରୁ ନଥିବେ ।'

'ସେ କଥା ମୁଁ ଜାଣେ ନାହିଁ, କିନ୍ତୁ ମୋ ସ୍ତ୍ରୀ ଅପେକ୍ଷା ଆମ ଘର କାନ୍ଥକୁ ମୁଁ ବେଶୀ ଭଲ ପାଏ, ତାକୁ ଅଧିକ ଚୁମ୍ବନ ଦିଏ ।'

'ଆପଣ ଖଣ୍ଡିଆ କାନ୍ଥକୁ ଚୁମ୍ବିବାର ଦେଖି ସ୍ତ୍ରୀ ଆପଣଙ୍କର ରୁଷ୍ଟ ଥିବେ !'

‘ସେ ବିଷୟ ମୁଁ ବୁଝିବାକୁ ଚେଷ୍ଟା କରେ ନାହିଁ—ମଣ୍ଡେଲର କଥା ଏହିପରି ବିଚିତ୍ର । ଏହା କହି କାପ୍‌ଲିଙ୍ଗଙ୍କ କବିତାର ପଦେ ଲେଖିଲା ବୋଲିଲେ; ନିଜ ନାମକୁ ତା ମଧ୍ୟରେ ରଖି—

On the Road where Mondel Lay
He was All Broke That Day
For He Had a Leg In China
And An Arm In Mandaley

‘ପେନ୍’ଷ୍ଟେସନରେ ଏ ରସଉପିଥାକ ଥାଉ ପୂର୍ଣ୍ଣଚ୍ଛେଦ ପଡ଼ିଗଲା—ମି. ମଣ୍ଡେଲ ଚାଲିଲେ ଅଫିସକୁ । ମୁଁ ଟାକ୍‌ସିରେ ଚାଲିଲି ସର୍କଲ ଲାଇନ ବୋଟକୁ—ମନହାଟନ ଦ୍ୱୀପ ଦେଖିବା ଲାଗି ।

ସରକଲ ଲାଇନ ବୋଟ୍ ହଡସନ୍ ଘାଟରୁ ଛାଡ଼େ—ହଡସନ ନଦୀରେ ଯାତ୍ରା କରି ଆଇଲାଣ୍ଡ ଅଫ୍ ଲିବର୍ଟିରେ ପହଞ୍ଚେ—ତାପରେ ଉପର ନିଉୟର୍କ ବନ୍ଦର ବାଟେ ଯାଇ ଇଷ୍ଟ ନଦୀରେ ଯାତ୍ରା କରେ—ବାଟରେ ବ୍ରୁକ୍‌ଲିନ ଓ କ୍ୱିନ୍ ଦ୍ୱୀପ ଅତିକ୍ରମ କରେ । ତାପରେ ‘ହାରଲେମ୍’ ନଦୀରେ ଯାଇ ପୁଣି ହଡସନ୍ ଘାଟକୁ ଫେରିଆସେ—ଏଇ ପରିକ୍ରମାର ଦୀର୍ଘତା ୩୫ ମାଇଲ । ଜଳଭାଗରୁ ନିଉୟର୍କର ଭୌଗୋଳିକ ଓ ମାନବିକ କୃତିତ୍ୱର ଶ୍ରୀ କଳନା କରିବା ଲାଗି ଏ ଗୋଟିଏ ସୁଯୋଗ ।

ନିଉୟର୍କ ଗୋଟିଏ ଦ୍ୱୀପମୟ ସହର । ପାଞ୍ଚଗୋଟି ଦ୍ୱୀପକୁ ନେଇ ଏହା ସଙ୍ଗଠିତ—ବ୍ରୁକ୍‌ଲିନ୍, ବ୍ରନକ୍ସ, କ୍ୱିନ୍‌ସ, ରିଚ୍‌ମଣ୍ଡ, ମନ୍‌ହାଟନ । ଏଥି ମଧ୍ୟରେ କ୍ୱିନ୍‌ସ ବୃହତ୍ତମ; ବ୍ରୁକ୍‌ଲିନ୍‌ର ଲୋକସଂଖ୍ୟା ବେଶୀ । କିନ୍ତୁ ଧନସମ୍ପଦ, ବୈଚିତ୍ର୍ୟଗୌରବରେ ମନ୍‌ହାଟନ ସର୍ବଶ୍ରେଷ୍ଠ, ଏକା ଆମେରିକାରେ ନୁହେ, ସମସ୍ତ ପୃଥିବୀରେ ।

ଏହି ଦ୍ୱୀପଟିର ଦୈର୍ଘ୍ୟ ମାତ୍ର ବାର ମାଇଲ, ପ୍ରସ୍ଥ ସାଢ଼େ ଦୁଇ ମାଇଲ—କିନ୍ତୁ ସ୍ଥାୟୀ ଅଧିବାସୀ ସଂଖ୍ୟା ୨୦ ଲକ୍ଷ; ତା ଛଡ଼ା ୩୦ ଲକ୍ଷ

ଲୋକ ପ୍ରବାହ ଏହି ଦ୍ୱୀପକୁ ଯାତାୟାତ କରିଥାନ୍ତି—ବାଣିଜ୍ୟ ବ୍ୟବସାୟରେ ସମଗ୍ର ଆମେରିକାରେ ଅଗ୍ରଣୀ ।

ଏହି ଦ୍ୱୀପର ସେପରି କିଛି ଉଜ୍ଜ୍ୱଳ ଐତିହାସିକ ଗୌରବ ନ ଥିଲେହେଁ ଏହା ଏକ ବିଶ୍ୱ ଇତିହାସ ଗଠନରେ ମୁଖ୍ୟ ଭୂମିକା ଗ୍ରହଣ କରିଛି । ୧୬୨୩ ଖ୍ରୀଷ୍ଟାବ୍ଦରେ ଡଚ୍‌ମାନେ ପ୍ରଥମେ ଏହି ଦ୍ୱୀପରେ ବସତି ସ୍ଥାପନ କଲେ । ଲୋହିତ ଭାରତୀୟ ଏହାର ଆଦିମ ଅଧିବାସୀ । ଲୋହିତ ଭାରତୀୟଙ୍କଠାରୁ ଡଚମାନଙ୍କୁ ଏହି ଦ୍ୱୀପଟି କ୍ରୟ କରିବାକୁ ପଡ଼ିଥିଲା; ଦାମ୍ ସ୍ୱରୂପ ଦେଇଥିଲେ ୨୪ଡଲାରର ରମ୍ ଓ କିଛି ଅଳଙ୍କାର । ଏଇ ଦ୍ୱୀପ ହୋଇଥିଲା ଡଚ୍ ଉପନିବେଶର ରାଜଧାନୀ । ଡଚ୍‌ଙ୍କ ନେତା ପେଟର ଏଠି ଆମଷ୍ଟେର୍‌ଡାମ୍ ନାମକ ଗୋଟିଏ ଦୁର୍ଗ ନିର୍ମାଣ କରିଥିଲେ । ଡଚ୍ ସାମ୍ରାଜ୍ୟ ଦୃଢ଼ ଭିତ୍ତିରେ ସ୍ଥାପିତ ହୋଇଥିଲା । କିନ୍ତୁ ଦୀର୍ଘକାଳ ତିଷ୍ଠି ପାରିଲା ନାହିଁ । ୧୬୬୪ରେ ଇଂରେଜମାନେ ଏହି ଦ୍ୱୀପ ଅଧିକାର କଲେ; Duke of yorkଙ୍କ ନାମାନୁସାରେ ଏହା ନିଉୟର୍କ ନାମରେ ପରିଚିତ ହେଲା । ଇଂରେଜ ନୌବାହିନୀର ସେନାପତି ନିକୋଲସ୍ ହେଲେ ଏହାର ପ୍ରଥମ ଗଭର୍ଣ୍ଣର । ୧୮୯୮ ଖ୍ରୀଷ୍ଟାବ୍ଦରୁ ପାଞ୍ଚଗୋଟି ଦ୍ୱୀପ ସମନ୍ୱିତ ଭୂଖଣ୍ଡ ନିଉୟର୍କ ବୋଲି କଥିତ ହେଲା । ଆମେରିକା ସ୍ୱାଧୀନ ହେବା ପର୍ଯ୍ୟନ୍ତ ଏହା ଇଂରେଜଙ୍କ କର୍ତ୍ତୃତ୍ୱରେ ଥିଲା ।

ମନ୍‌ହାଟନ ତିନି ଭାଗରେ ବିଭକ୍ତ—ଡାଉନଟାଉନ—ଏଠି ଯାବତୀୟ ବାଣିଜ୍ୟ ବ୍ୟବସାୟ ପ୍ରତିଷ୍ଠାନ, ଇନସ୍ୟୁରେନ୍‌ସ କମ୍ପାନୀ ଓ ବ୍ୟାଙ୍କମାନ ରହିଛି । ମିଡ୍‌ଟାଉନ, ରେଷ୍ଟୁରାଣ୍ଟ, ହୋଟେଲ, ଥିଏଟର୍, ମୋଭି, ନାଇଟକ୍ଲବ ଓ ବିପଣି ବିଥିକାର କେନ୍ଦ୍ରସ୍ଥଳ; ଅପ୍‌ଟାଉନରେ ଲାଇବ୍ରେରୀ, ମ୍ୟୁଜିଅମ, ଚର୍ଚ୍ଚ, ସ୍କୁଲ, କଲେଜ, ପାର୍କ ପ୍ରଭୃତି ଯାବତୀୟ ଶିକ୍ଷା, ସଂସ୍କୃତି ଓ ଧର୍ମାନୁଷ୍ଠାନମାନ ରହିଛି ।

ନଗର ଗର୍ଭରୁ 'ଗ୍ରହିଲ', ଉଲ୍‌ଓ୍ୱାର୍ଥ ବିଲଡ଼ିଂ (ଏହାକୁ cathedral of commece କହନ୍ତି) ଓ ଇଉନାଇଟେଡ଼ ଫ୍ରୁଟ କମ୍ପାନୀର ବିପୁଳ ସୌଧମାନ ଦୃଷ୍ଟି ଆକର୍ଷଣ କରେ । ଶେଷୋକ୍ତ କମ୍ପାନୀ ପାରିଲା

କଦଳୀ ବ୍ୟବସାୟ କରେ । ଦକ୍ଷିଣ ଓ ମଧ୍ୟ ଆମେରିକାରୁ କଦଳୀ ନେଇ ଏହା ଆମେରିକା ଓ କାନେଡ଼ାରେ ପହଞ୍ଚାଇ ଥାଏ ।

ଆମର ଅଳ୍ପ ଦୂରରେ ବେଥେଲ୍‌ହେମ୍ ଷ୍ଟିଲ୍ କମ୍ପାନୀ—ଏକାବେଳକେ ଏଠି କୋଡ଼ିଏଟି ଜାହାଜ ମରାମତି କରାଯାଇ ପାରେ । ତାର କିଛି ଦୂରରେ ଗୋଟିଏ ଇଞ୍ଜିନିଅରିଂ ପ୍ରତିଷ୍ଠାନ—ଏଥିରେ ଷ୍ଟିଭେନ୍‌ସଙ୍କ ସ୍ମୃତି ରକ୍ଷା କରା ଯାଇଛି । ଏହି ଜନ୍ ଷ୍ଟିଭେନ୍‌ସ ଆମେରିକାରେ ପ୍ରଥମେ ବାଷ୍ପୀୟ ଯାନ ଚଳାଇ କରିଥିଲେ । ହଡ଼୍‌ସନ୍ ନଦୀରେ ପ୍ରଥମେ ସେ ଷ୍ଟିମାର ମଧ୍ୟ ଚଳାଇ ଥିଲେ ।

ଅଦୂରରେ ଇଲିସ୍ ଆଇଲଣ୍ଡ । ଦିନେ ନିଉୟର୍କର ଏହା ଏକମାତ୍ର ପ୍ରବେଶ ପଥ ଥିଲା; ଏବେ ଏହା ଲିବର୍ଟି ଆଇଲଣ୍ଡର ଅନ୍ତର୍ଗତ ।

ଓ୍ୱାର୍ଲଡ୍ ଟ୍ରେଡ୍ ସେଣ୍ଟରର ନିର୍ମାଣ କାର୍ଯ୍ୟ ଚାଲିଛି—୧୧୦ ମହଲା; ଉଚ୍ଚତାରେ ଏହା ଇମ୍ପାୟାର୍ ଷ୍ଟେଟ୍ ବିଲ୍‌ଡିଙ୍ଗ୍‌କୁ ବଳିପିବ—ହେବ ପୃଥିବୀର ଉଚ୍ଚତମ ସୌଧ । ୧୯୭୦ ରେ ଏହା ଶେଷ ହେବ !

ନିଉୟର୍କ ବନ୍ଦର ଆମ ଡାହାଣକୁ ଛାଡ଼ିଲା । ଏଠି ଗୋଟିଏ ବୃହତ୍ ବ୍ୟୋମଯାନବାହୀ ଯୁଦ୍ଧ ଜାହାଜ, ଗୋଟିଏ ସବ୍‌ମେରିନ୍ ଓ ଆଉ କେତେକ ଛୋଟ ଛୋଟ ଯୁଦ୍ଧ ଜାହାଜ ଦେଖିଲୁ । ଗାଢ଼ ନୀଳ ଜଳରେ ଏହି ଧବଳ ପୋତମାଳା, ସୂର୍ଯ୍ୟରଶ୍ମିରେ ଅପୂର୍ବ ଶ୍ରୀ ଧାରଣ କରିଥାଏ । ହଡ଼୍‌ସନ୍ ଓ ଇଷ୍ଟ ନଦୀର ଧାରେ ଧାରେ ଜାହାଜଘାଟ—ବିଭିନ୍ନ ଦେଶର ଜାହାଜ ମାନ ନିର୍ଦ୍ଦିଷ୍ଟ ଘାଟରେ ଲାଗନ୍ତି—ଆକାଶକୁ ଲାଗିଛି ଉଚ୍ଚ ଉଚ୍ଚ କ୍ରେନ୍ ସବୁ—କେଉଁଠି ନାନା ଦ୍ରବ୍ୟସମ୍ଭାର ବୋଝେଇ ହେଉଛି, କେଉଁଠି ବା ଖଲାସ ହେଉଛି, ଟ୍ରେନ୍, ଟ୍ରକ୍, କାର୍, ଛୁଟିଛନ୍ତି—ଅଦୂରରେ ହଡସନ୍ ସମୁଦ୍ରରେ ମିଶିଛି ।

ନିଉୟର୍କ ବନ୍ଦରର ପ୍ରବେଶ ଦ୍ୱାରରେ ଗୋଟିଏ ସେତୁ—ନାମ ଭେରାଜାନୋ । ଏଥିରେ ଇଟାଲୀୟ ଆବିଷ୍କାରକ ଭେରାଜାନୋଙ୍କ ସ୍ମୃତି ଘୋଷିତ । ୧୫୨୪ ଖ୍ରୀଷ୍ଟାବ୍ଦରେ ଏଠାକୁ ଭେରାଜାନୋଙ୍କ ଶୁଭାଗମନ;

ନିଉୟର୍କ ଯେ ଗୋଟିଏ ପ୍ରାକୃତିକ ବନ୍ଦର, ସେ ଏହା ପ୍ରଥମେ ଆବିଷ୍କାର କରିଥିଲେ । ଅଳ୍ପ ଦୂରରେ ପୃଥିବୀର ଦ୍ୱିତୀୟ ବୃହତ୍ତମ ବ୍ୟାଙ୍କ—'ଚେସ୍ ମନହଟନ'—ଏହାର ନିର୍ମାଣରେ ୧୩୮ ନିୟୁତ ଡଲାର୍ ବ୍ୟୟିତ ହୋଇଥିଲା । ପାଖାପାଖି ହୋଇ ରହିଛି ନିଉୟର୍କ ବିଶ୍ୱବିଦ୍ୟାଳୟ, କର୍ଣ୍ଣେଲ ବିଶ୍ୱବିଦ୍ୟାଳୟ, ଆଣବିକ ଗବେଷଣା କେନ୍ଦ୍ର, ରକ୍‌ଫେଲର୍, ଏମ୍ପାୟାର୍ ଷ୍ଟେଟ୍ ବିଲ୍‌ଡିଙ୍ଗ୍, ଲାଇଫ୍ ଓ ଟାଇମ୍ ଅଫିସ୍ । ବହୁ ଶିଶୁ ଓ ପଶୁ ଚିକିତ୍ସାଳୟ, ଗ୍ରାଣ୍ଟଙ୍କ ସମାଧି, ଗୃହଯୁଦ୍ଧରେ ସେ ଥିଲେ ଉତ୍ତରର ମୁଖ୍ୟ ସେନାପତି; ସେ ଯୁକ୍ତରାଷ୍ଟ୍ରର ସଭାପତି ମଧ୍ୟ ହୋଇଥିଲେ ।

ନଦୀର ଦୁଇ ତୀରରେ ଶ୍ୟାମଳ ଶୈଳ, ଗଛ ଲତା ଲାଗି ଆସିଛି ଜଳସ୍ରୋତକୁ । ସ୍ୱଚ୍ଛ ରୌଦ୍ର ସ୍ୱଚ୍ଛତର ରୂପରେ ଫୁଟିଛି ଜଳର ମୁକୁରରେ, ଆଖିକି ଝଲସାଇ ଦେଇ । ଉଡ଼ି ଯାଉଛନ୍ତି ଗୋଟା ଗୋଟା ମାଛିଆ ଚଢ଼େଇ, ଇଗଲ୍ ବା ସି-ଗଲ୍ । ନାନା ବ୍ୟବସାୟରେ ଜୀବନର ଗତି କ୍ଷିପ୍ରତର ହେଲେ ବି ପ୍ରକୃତି ବିକୃତ ହୋଇନାହିଁ—ମାନବର ସହାୟିକା, ସେବିକା ହେବାରେ ହିଁ ତାର ଆନନ୍ଦ—ଫୁଟି ଉଠୁଛି ରୌଦ୍ର ଝଲମଲ ହିଲ୍ଲୋଳରେ ।

## ମୁକ୍ତିର ଅଗ୍ରଦୂତିକା (ନିଉୟର୍କ, ୨୩ । ୬ । ୭୭)

ଡ: ବର୍ମନ୍ ଡ୍ରାଇଭ କରି ଚାଲିଲେ । ଗାଡ଼ିରେ ତାଙ୍କ ପୁଅ ସ୍କଟ୍, ରସେଲ୍ ଆଉ ମୁଁ । କେତେକ ସ୍କୁଲ, ଗୀର୍ଜା, ସେତୁ, ବିପଣି ଓ କାରଖାନା ଲଙ୍ଘନ କରିଗଲା ପରେ ବର୍ମନ ତାହାଣପଟେ ଦେଖାଇଲେ— ଭଙ୍ଗାରୁଜା ଜନୀଷର ପାହାଡ଼ସବୁ । ପ୍ରକାଣ୍ଡ ଭୂମଣ୍ଡଳଟି କ୍ଷୀଣ ଗତିରେ ବୁଲୁଛି, ଅବହେଳିତ; ରଙ୍ଗ ତାର ନିଭି ନିଭି ଆସିଲାଣି । ଭୂମଣ୍ଡଳର ଅଳ୍ପ ଦୂରରେ ଗୋଟିଏ ସୌଧ —ଆମେରିକାର ପ୍ରଦର୍ଶନୀ ଗୃହ, ଏ ପର୍ଯ୍ୟନ୍ତ ଭଙ୍ଗା ହୋଇନାହିଁ । ଏହାର ଛାତ ଉପରେ ହେଲିକୋପ୍‌ଟର ଓହ୍ଲାଉଥିଲା ।

ଏହି ବିଶାଳ ପ୍ରାନ୍ତରରେ ପାଞ୍ଚ ନିୟୁତ ଡଲାର୍ ଖର୍ଚ୍ଚହୋଇ ଅସ୍ଥାୟୀ ଗୃହସବୁ ନିର୍ମିତ ହୋଇଥିଲା । ବିଶ୍ୱମେଳା ବସିଥିଲା ଦୀର୍ଘ ଦୁଇ

ବର୍ଷ ପର୍ଯ୍ୟନ୍ତ । ପ୍ରାୟ ପାଞ୍ଚକୋଟି ଲୋକ ମେଳା ଦେଖିବାକୁ ଆସିଥିଲେ । ଏହା ଦେଖି ମୋର ଆମଆଡ଼ ମେଳଣ କଥା ମନେ ପଡ଼ିଲା । ସେ ଗୋଟିଏ ସୀମା; ତାର ପ୍ରାନ୍ତ ସୀମା ଏଇ ମେଳା । ସେଠାକୁ ଠାକୁର ବିଜେ କରନ୍ତି, ଏଠାକୁ କେବଳ ଠାକୁରାଣୀ—ମା ଲକ୍ଷ୍ମୀ, ଯୌବନ ଓ ସମୃଦ୍ଧିର ଚମତ୍କାର ଝକଚକ୍ୟରେ, କଠୋର ଶୃଙ୍ଖଳା ମଧ୍ୟରେ । କଳା ଆଉ ବିଜ୍ଞାନ—ଏ ଦୁଇଟି ପୀଠ ଉପରେ ପଦ ଦେଇ ବିଜେ କରିଥାନ୍ତି ଚଞ୍ଚଳା—ତାଙ୍କ ପ୍ରକୃତିକୁ ବଦଳାଇ ଦେଇଛନ୍ତି ଶିଳ୍ପସମୃଦ୍ଧ ଜାତିସବୁ । ସେ ହୋଇଛନ୍ତି ଚିରନ୍ତନୀ । ମେଳଣର ଜନଗହଳିକୁ ବନ୍ଦ୍ କଳ୍ପିଲେ ଏହାକୁ ସିନ୍ଧୁ କୁହାଯିବ । ଏଠି ଦେବତା ନାହାନ୍ତି, କେବଳ ମାନବ; ମାନବିକ କୃତିତ୍ୱ ଓ ଆମୋଦବିଳାସ ମଧ୍ୟରେ ଆନ୍ତର୍ଜାତିକ ଐକ୍ୟ ମାଧୁର୍ଯ୍ୟ ଉପଭୋଗ୍ୟ ।

ରାସ୍ତାର ଦୁଇ ଧାରରେ ମାଇଲ୍ ମାଇଲ୍ ବ୍ୟାପିଛି—ଏ କଣ ? ସିମେଣ୍ଟେରି ? ମୃତର ସହର ! ଜୀବନ୍ତ ଓ ମୃତର ଦୁଇଟି ନଗର ପାଖାପାଖି ହୋଇ ରହିଛି । ଗୋଟିକରେ ଉଚ୍ଚ ଉଚ୍ଚ ସୌଧସବୁ, ଯାନ ଆଉ ଜନାରଣ୍ୟ, ସମୃଦ୍ଧ ଓ ଆଲୋକର ଝକଚକ୍ୟ । ଅନ୍ୟଟି ପାଷାଣ ଖଣ୍ଡରେ ମାତ୍ର ସୂଚିତ, ନିର୍ଜନ, ନିର୍ଜୀବ । ସଂକ୍ଷିପ୍ତ ସାଂସାରିକ ଇତିହାସ ଲିପିବଦ୍ଧ—କାଳ ସମୁଦ୍ରରେ କେଉଁ ବୁଦ୍‌ବୁଦଟି କେବେ ଦେଖାଦେଇ ଫାଟିଯାଇ-ଥିଲା—ତାର ଚରଣଚିହ୍ନ ଅବିଶ୍ୱସ୍ତ ନଗର ପଥରୁ ଲିଭିଯାଇଛି; ପରିବାର ଭୁଲିଯାଇଛି ସେଇ ରୂପଶ୍ରୀ, ଗୌରବ ଗର୍ବ; ସମାଧି ଉପରେ ଥାପିଦେଇଛି ମୂର୍ତ୍ତିଟିଏ । କିନ୍ତୁ କାହାଲାଗି ଏ ଲେଖା, କାହାଲାଗି ଏ ମୂର୍ତ୍ତି ? ଇତିହାସ ଏକଘରକଥା କହିଛି, ଭାସ୍କର୍ଯ୍ୟ ବାଦ୍ ଦେଇଛି ଅତି ନଗଣ୍ୟ ବୋଲି । ଏ ଜୀବନର ସାହିତ୍ୟ କେଜାଣି କେହି ସୁଯୋଗ୍ୟ ବଂଶଧର ଖୋଜିଲେଡ଼ ପଢ଼ୁଥିବେ । ଶ୍ମଶାନସହର ପାରିହେବା ବେଳର ବୈରାଗ୍ୟ ଜୀବନ୍ତ ସହରରେ ପ୍ରବେଶ ମାତ୍ରେ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା । କିମାଶ୍ଚର୍ଯ୍ୟ ମତଃ ପରମ୍ ?

ଏହାର କିଛି ଦୂରରେ ଆଉ ଗୋଟିଏ ଶ୍ମଶାନ ପଡ଼ିଲା—ଯାନର; ଅଚଳ ମଟରଗାଡ଼ିର ପାହାଡ଼ସବୁ । କାରଖାନାରେ ତରଳା ହେବା ଲାଗି ଗଦା ହୋଇଛି । କାଳକ୍ରମେ ଏହିସବୁ ଗାଡ଼ିର ଶୈଳୀ ବଦଳି

ଯାଉଛି । ତେଣୁ କୌଣସି ଅଂଶ କାର୍ଯ୍ୟରେ ଲଗିବ ନାହିଁ—ଯାହା କଚ୍ଛି ଲୁହା ମୂଲ୍ୟ ।

ବାଟରେ ଗୋଟିଏ ଟନେଲ୍ ପାରହେବାକୁ ହେଲା—ପ୍ରାୟ ପାଞ୍ଚ ମାଇଲ୍ ଦୀର୍ଘ । ଟନେଲ୍‌ର ଗୋଟିଏ ପାଖରେ ଫୁଟ୍‌ପାଥ୍ ଅଛି, ଯୁଗ୍ମରେ ଅନେକର ଧାଡ଼ି ଲମ୍ବିଛି । ଏଥିରେ ଗାଡ଼ି କେବଳ ଯାଏ, ଅନ୍ୟ ଟନେଲ୍‌ରେ ଗାଡ଼ିସବୁ ଆସେ । ରାଜପଥ ପରି ଏଠି ଅନେକ ନିୟନ୍ତ୍ରଣର ବ୍ୟବସ୍ଥା ରହିଛି ।

'ଇଷ୍ଟ' ନଦୀ କୂଳେ କୂଳେ ଯାଇ ଆମେ ହଡ଼ସନ ଘାଟରେ ପହଞ୍ଚିଲୁ । ଗାଡ଼ି ପାର୍କ କରି ରେଷ୍ଟୁରାଣ୍ଟରେ ପଶିଲୁ । ସେତେବେଳକୁ ବାରଟା ବାଜିଲଣି । ଶ୍ରେକ । କିନ୍ତୁ ଗୋମାଂସ ବ୍ୟତୀତ ଏଠି କୌଣସି ଖାଦ୍ୟ ମିଳିଲା ନାହିଁ । ଖାଦ୍ୟ ନ ଥିଲେ ପାନୀୟରେ କେବଳେ ତୃଷ୍ଣ ହେବାକୁ ପଡ଼େ । କୋକାକୋଲା ଟିଏ ପିଇ କ୍ଷୁତ୍‌ପିପାସା ଉଭୟକୁ ଶାନ୍ତ କରିବାକୁ ପଡ଼ିଲା । ତାପରେ ଷ୍ଟିମର୍‌ରେ ବସି ଅଧଘଣ୍ଟାକ ମଧ୍ୟରେ ଯାଇ ଆମେ ମୁକ୍ତିଦ୍ୱୀପରେ ପହଞ୍ଚିଲୁ । ଦ୍ୱୀପଟି ଆକାରରେ କ୍ଷୁଦ୍ର—ଅଳ୍ପ କେତେ ଗଜ ମାତ୍ର; ଏ କୂଳରେ ଛିଡ଼ାହେଲେ ସେ କୂଳ ଦିଶେ । ଦ୍ୱୀପଟିକୁ ଚତୁର୍ଦ୍ଦିଗରେ ଘେରିଛି ହଡ଼ସନ୍ ନଦୀ । ସମୁଦ୍ରର ଜଳ ପରି ନୀଳ, ନିର୍ମଳ ତାର ଜଳ । ବହୁ ଷ୍ଟିମର୍ ଓ ମଟରବୋଟ୍ ସବୁବେଳେ ଯାତାୟାତ କରୁଛି । ବଡ଼ ବଡ଼ ନୌକାରେ ନାନା ଦ୍ରବ୍ୟ ଯାଉଛି ଓ ଆସୁଛି, ସବୁ ଯନ୍ତ୍ରଚାଳିତ । ପାଲବନ୍ଧା, ଆହୁଲା ବା କାତମରା ନୌକା ଗୋଟିଏ ହେଲେ ଦିଶୁନାହିଁ । ଦ୍ୱୀପର ଚତୁର୍ଦ୍ଦିଗରେ ପଥର ବନ୍ଧା—ଯେପରି ନଦୀ ତରଙ୍ଗରେ ଦ୍ୱୀପର ମୃତ୍ତିକାକ୍ଷୟ ନ ଘଟେ । ଶ୍ୟାମଳ ପ୍ରାନ୍ତରରେ ବହୁ ଓକ୍ ଓ ଏଲମ୍ ଗଛ; ଫୁଆରାରେ ଇନ୍ଦ୍ରଧନୁର ଆଭାସ; ସୁନ୍ଦର ପାର୍କ ଉଦ୍ୟାନ ଶାର ପର୍ଯ୍ୟନ୍ତ ଲମ୍ବିଛି । ଏଠି ବି ଗୋଟିଏ ରେଷ୍ଟୁରାଣ୍ଟ—ପଇସା ଗଳେଇଲେ ପାନୀୟ, ଆଇସ୍‌କ୍ରିମ୍ ମିଳିଯାଏ । ଖାଦ୍ୟ ଲାଗି ଧାଡ଼ି ଲମ୍ବିଛି ।

'ବେଡ୍‌ଲୋ' ମୁକ୍ତିଦ୍ୱୀପର ପୂର୍ବ ନାମ । ଏଠି ଜଗୁଆଳୀ ସୈନ୍ୟ ସବୁ ରହୁଥିଲେ । ୬୫୨ ଫୁଟ ଉଚ୍ଚ ଗୋଟିଏ ପାଷାଣପୀଠ—ତା ଉପରେ

୧୫୧ ଫୁଟ ଉଚ୍ଚ ମୂର୍ତ୍ତି, ୩୦୦ ଖଣ୍ଡ ତାମ୍ର ଫଳକରେ ନିର୍ମିତ, ଏହାର ରୂପରେଖ ଅଙ୍କନ କରିଥିଲେ ପ୍ୟାରିସର ଗୁଷ୍ଟାଭ୍ ଆଇଫେଲ୍, ପ୍ୟାରିସ୍ ଆଇଫେଲ ଟାୱାରର ଯୋଜନାକାରୀ । ଏହାର ନିର୍ମାତା ଫ୍ରାନସର ଶିଳ୍ପୀ ଅଗଷ୍ଟ ବାରଥୋଲ୍ଡ଼, ତାଙ୍କ ନିଜ ଜନନୀ ହିଁ ଏହାର ମଡେଲ୍ ।

ମୂର୍ତ୍ତିର ବାମ ହସ୍ତରେ ଗୋଟିଏ ଫଳକ—ମୁକ୍ତି ଘୋଷଣାର ପ୍ରତୀକ, ଦକ୍ଷିଣ ହସ୍ତରେ ମଶାଲ ଉତ୍ତୋଳିତ, ଯୁଗେ ଯୁଗେ ଦାସତ୍ୱର ଅନ୍ଧକାର ଦୂର କରିବା ଲାଗି । ପାଦ ତଳେ ଦାସତ୍ୱର ଛିନ୍ନ ଶୃଙ୍ଖଳ; ବ୍ରୋଞ୍ଜ ଫଳକରେ ଇମ୍ମା ଲାଜାରସ୍‌ଙ୍କର ଗୋଟିଏ କବିତା ଖୋଦିତ—

'Give me your tired' your poor
Your huddled masses yearning to be free
The wretched refuse of your teeming shore
Send these, the hopeless tempest tossed to me,
I lift my lamp beside the golden door'.

ଫରାସୀ ସରକାର ଆମେରିକାବାସୀଙ୍କୁ ଏହି ମୂର୍ତ୍ତି ଦାନ କରିଥିଲେ । ୧୮୮୬; ଅକ୍ଟୋବର, ୨୮ ତାରିଖରେ ଯୁକ୍ତରାଷ୍ଟ୍ରର ତତ୍କାଳୀନ ସଭାପତି ଏହି ମୂର୍ତ୍ତି Island of Liberty ବା ମୁକ୍ତି ଦ୍ୱୀପରେ ପ୍ରତିଷ୍ଠା କରିଥିଲେ ।

ଆମେରିକାନ୍ ଜାତି ନାମରେ ଏହା ଉତ୍ସର୍ଗ ହୋଇଥିଲା—ମୂର୍ତ୍ତି ଉଦ୍‌ଘାଟନ ଉତ୍ସବରେ ସଭାପତି କହିଥିଲେ—'ଆଜିଠାରୁ ଆମ ଦେଶ ହେଲା ମୁକ୍ତିର ଚିରନ୍ତନ ନିକେତନ । ମୁକ୍ତିର ପୂଜାରୀ କେବେ ଏହି ପୀଠକୁ ଅବହେଳା କରିବ ନାହିଁ ।'

ଏହା ଏକ ଶୂନ୍ୟଗର୍ଭ ଉଦ୍‌ଘୋଷଣ ନୁହେ । ମୁକ୍ତିର ମଶାଲଧାରୀ ପଛରେ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ସଜ୍ଜିତ ଯୁଦ୍ଧ ଜାହାଜ ଭେଳା, ତା ପଛରେ ବୋମାରୁ ଓ ଯୋଦ୍ଧା ବିମାନବାହିନୀ, ଚତୁରଙ୍ଗ ସୈନ୍ୟବଳ, ଗବେଷଣାଗାରରେ ସାଧନା ନିବଦ୍ଧ ବୈଜ୍ଞାନିକ—ନିତ୍ୟ ନୂତନ ଉଦ୍‌ଭାବିତ ଅସ୍ତ୍ର

ଶସ୍ତ, ଅଷସ୍ତ ସମ୍ପଦ, ଓ ଅକଳନ୍ତ ଖାଦ୍ୟ । ତେଣୁ ଅପାଷରେ ଏ ଦାନ ଦିଆ ହୋଇ ନାହିଁ । ଅଯୋଗ୍ୟ ହାତରୁ ମଧ ଏ ଦାନ ଗ୍ରହଣ କରା ହୋଇ ନାହିଁ । ଅତ୍ୟାଗୁରୀ ରାଜତନ୍ତ୍ର ବରୁଦ୍ଧରେ ବଦ୍ରୋହୀ ଶର ମୁକ୍ତିକାମୀ ଫରାସୀ ହାତରୁ ଅନାଗ୍ରହୀ ଧର୍ମଧ୍ୱଜୀ କବଳରୁ ମୁକ୍ତ ବପ୍ଳବୀ ଆମେରିକାବାସୀ ତାହା ଗ୍ରହଣ କରିବା ସାର୍ଥକ ହୋଇଅଛି । ବପ୍ଳବ ଏବେ ଶରଜୀବୀ; ଆଜ କେହି ପରପଦାନତ ହେବେନାହିଁ । ସ୍ୱାଧୀନତା ମନୁଷ୍ୟର ଜନ୍ମଗତ ଅଧିକାର ! ପାଶବ ବଳରେ କେହି ଏହା ଲୋପ କରିବାକୁ ବାହାରିଲେ ଆମେରିକା ଦୁର୍ବଳର, ଅସମର୍ଥର ସହାୟକ ହେବ ।

ଚତୁର୍ଦ୍ଦିଗରେ ବୁଲୁଛି, ଦେଖୁଛି ଇଷ୍ଟ ନଦୀର ତରଙ୍ଗରେ ମଧ୍ୟାହ୍ନ ରୌଦ୍ରର ଲୀଳା, ସିଗଲର ଶିକାର—କେତେବେଳେ ବା ଦୃଷ୍ଟି ସୁଦୂରକୁ ପ୍ରସାରିତ ହୋଇ ଦେଖୁଛି ହଗ୍‌ବଲୟରେ ଜାହାଜର ବନ୍ଦର । ଡାକ୍ତର ବର୍ମନ୍ କେତେବେଳେ ଏଲିଭେଟରରେ ଉପରକୁ ଉଠିଗଲେ, ପୁଣି ୧୬୦ଟି ସୋପାନ ଲଙ୍ଘି ମୂର୍ତ୍ତି ଯୌବନର ଶିରୋଦେଶରେ ଯାଇ ପହଞ୍ଚିଲେ, ଜାଣେ ନାହିଁ । ମୁଁ ଜନଗହଳ, ପାର୍କ, ରେଷ୍ଟୁରାଣ୍ଟରେ ତାଙ୍କୁ ଖୋଜ ନିରାଶ ହେଲି । ଶେଷରେ ତୋରଣ ଦ୍ୱାରରେ ଜଗିବସିଲି କୁଆଡ଼େ ଯାଇଥିବେ ଏଇବାଟେ ଫେରିବେ । କନ୍ତୁ ଅଧଘଣ୍ଟାଏ ଅପେକ୍ଷା କଲାପରେ ଗୋଟିଏ ଷ୍ଟିମାର ଆସି ପହଞ୍ଚିଲା । ମୋର ମନେ ହେଲା ପ୍ରବଳ ଜନ ସ୍ରୋତରେ ଦେଖି ପାରିନାହିଁ, ବର୍ମନ୍ ଷ୍ଟିମାରରେ ବସିଛନ୍ତି । ଷ୍ଟିମାରରେ ପଶି ଉପର ମହଲା ତଳ ମହଲା ଖୋଜିବାକୁ ଲାଗିଲି । ଏତିକିବେଳେ ଦୌଡ଼ ଫିଟିଗଲା; ଷ୍ଟିମାର କୂଳ ଛାଡ଼ିଗଲା । ହୁଇସିଲ୍ ଶବ୍ଦରେ ଘୁଡି ଦାଉଁ ଦାଉଁ ପଡ଼ିଲା ।

ଉଦ୍‌ବେଗ ମଧ୍ୟରେ ହଡ଼ସନ୍ ଘାଟରେ ପହଞ୍ଚିଲି । କାର୍ ନମ୍ବରଟି ଜାଣିଥିଲେ ପାର୍କିଂ ପ୍ରାନ୍ତରରେ ଅପେକ୍ଷା କରିଥାନ୍ତି । ବନ୍ଦରର ଗୁଆଡ଼େ ସନ୍ଧାନୀ ଦୃଷ୍ଟି ବୁଲାଇଲି—କେଜାଣି କେତେ-ବେଳେ ଆସି ମତେ ଏଠି ଖୋଜୁଥିବେ । ହଜାର ହଜାର ଲୋକଙ୍କ କୋଳାହଳ, ସୁଦକ୍ଷ ସୁଶୃଙ୍ଖଳ ଜନପ୍ରବାହ, ସୁବର୍ଣ୍ଣ, କଜ୍ଜଳ, ଭୂଷାଗଭ

କେଶଗ୍ରନ୍ଥ । ଦୁଃଖ, ଦାରିଦ୍ର୍ୟ, ଦୁଶ୍ଚିନ୍ତା, କିଂକର୍ତ୍ତବ୍ୟବିମୂଢ଼ତାର କ୍ଷୀଣ ଆଲୋକ କେଉଁଠି ନାହିଁ—ସମସ୍ତଙ୍କ ଲକ୍ଷ୍ୟ ସ୍ଥିର, ଗନ୍ତବ୍ୟପଥ ନିର୍ଦ୍ଦିଷ୍ଟ—ମୁଁ ମାତ୍ର ପଥହରା । ଚତୁର୍ଦ୍ଦିଗରେ ପଥର ଆହ୍ୱାନ, ଯାନର ଅବିରାମ ଗତି; ମୁଁ ମାତ୍ର ନିଶ୍ଚଳ । ପାଦତଳର ପୃଥିବୀ ମୋର ଦୋହଲିବାକୁ ଲାଗିଲା । ଜାହାଜରେ ବସିଛି ?

ସେଇ ଅବସ୍ଥାରେ ଗୋଟିଏ ଗୋଟିଏ ପାଦ ପକାଇ ପିଲଙ୍କ ପାର୍କରେ ପହଞ୍ଚିଲି । ଖେଳିଲେ କେମିତି ହୁଅନ୍ତା ? ହସି ପକାଇଲି । ସାମ୍ନାରେ ଆସି ଛିଡ଼ାହେଲା—ଆଇସ୍‌କ୍ରିମ୍‌ବାଲା—ହେ ବୁଢ଼ା ପିଲା, ଏଥିରୁ ଗୋଟିଏ ନିଅ, ସବୁ ଦୁଃଖ ଭୁଲିହୋଇଯିବ । ପଥହରାକୁ ଆଇସ୍‌କ୍ରିମ୍ ! ଏ କଣ ହତାଶ ? ଅନ୍ଧାରର ମଶାଲ ? ନାଃ, ନିଜକୁ ଶାସ୍ତି ଦେବାକୁ ହେବ । ମୁଁ ଏ ଅସୁବିଧା ଲାଗି ନିଜେ ଦାୟୀ; ଯେ ବାଟ ଦେଖି ନାହିଁ, ସେ ଅନ୍ୟର ପଦାଙ୍କ ଅନୁସରଣ କରିବା ଦରକାର; ସ୍ୱାଧୀନ ଭାବରେ ବୁଲି ଦୃଶ୍ୟ ଦେଖିଥିଲି କାହିଁକି ?

ଦୋଳି ଖଣ୍ଡିକୁ ଆଖିଜ ଛିଡ଼ା ହୋଇଥାଏ । ଏଇ ସମୟରେ ଅନ୍ୟ ଏକ ଭାବ ମନକୁ ଅତିକ୍ରମ କଲା । ମୁଁ କଣ ପିଲା ? ସ୍ୱାଧୀନ ଭାବରେ ବୁଲି କାହିଁକି କିଛି ନ ଦେଖି ପାରିବ ? ସାହସ ଆଉ ଦମ୍ଭ ଆସିଲା ।

ପରିଣତ ଚରିତ୍ର ଏକ ଭୂଇଁତଳ ରେଲ ଷ୍ଟେସନକୁ ଗଲି । ପାତାଳପୁରର ଦ୍ୱାରରେ ଜଣେ ଲୋକ—ଅଫିସ୍ ଖୋଲି ବସିଥାଏ—ତାକୁ ୨୫ ସେଣ୍ଟ ଦେଲାରୁ ସେ ଗୋଟିଏ ଟୋକେନ୍ ଦେଲା, ତାକୁ ଅର୍ଗଳରେ ଗଳାଇବା ମାତ୍ରେ ପାତାଳପୁରର ଦ୍ୱାର ଖୋଲିଗଲା, ସତେ ଅବା ଗୋଟାଏ ଭୂତକୋଠି, ଶତ ଶତ ଲୋକ ଗୃହଛନ୍ତି । କାହାର ମୁହଁରେ କଥା ନାହିଁ । ଜଳୁଛି ନାଲି, ନୀଳ, ଧଳା ରଙ୍ଗର ବତୀସବୁ । ପରିଣତ ଟିକେଟ କରି ମୁଁ ଗୋଟିଏ ଗାଡ଼ିରେ ବସିଲି । ଅଧଘଣ୍ଟାକ ପରେ ଗାଡ଼ିରୁ ଓହ୍ଲାଇ ଏସକାଇଲେଟରରେ ଉପରକୁ ଉଠିଲି—ଅଳ୍ପକେତୋଟି ବ୍ଲକ୍ ପାରିହେଲା ପରେ ଏମ୍ପାୟାର ଷ୍ଟେଟ୍ ବିଲ୍ଡିଂ !

ଫୁଟପାଥରେ ଯାଉଁ ଯାଉଁ ହଜବାର ସତ୍ୟ ମୂଲ୍ୟ ମିଳିଗଲା । ଡାକ୍ତରଙ୍କ ପାଖେ ଯାଇଥିଲେ ତାଙ୍କ ରୁଚିରେ ଚଳିବାକୁ ହୋଇଥାନ୍ତା । ତାଙ୍କର ଅଭଥ ମୁଁ, ତାଙ୍କର ଗାଡ଼, ପିଲଙ୍କର ସୁବିଧା ଅସୁବିଧା ଅଛି । ମୋ ଜୀବନକ୍ଷୁଧା ସେ ବୁଝନ୍ତେ କିପରି ? ଭଲ ଡାକ୍ତର, କିନ୍ତୁ ସାଧାରଣ ମଣିଷ ।

## କୁବେର ପୁରର ଭିକାରୀ

ପ୍ରଥମେ ଜଣେ ଅନ୍ଧର ସାକ୍ଷାତ୍ ମିଳିଲା । ବୟସ ତିରିଶି ମଧ୍ୟରେ ହେବ । ଡାହାଣ ଆଖିଟି ଚର୍ମାବୃତ; ବାଁ ଆଖିରେ ତ ଡୋଳା ନାହିଁ, । ଗୋଟାଏ କଚ୍ଛ ଲାଲ୍ ଗୋଲାପ । ବାଁ ହାତରେ ଗୋଟାଏ ଚମଡ଼ା ଦୌଡ଼, ସେଥିରେ ବନ୍ଧା ହୋଇଛି ଗୋଟିଏ ଗ୍ରେହାଉଣ୍ଡ୍ । କାନ୍ଧରେ ଚମଡ଼ା ମୁଣି, ପଇସା ରଖିବା ଲାଗି । ଛାତି ଆଉ ପିଠି ପଟେ କାଗଜ ପଟାରେ ଲେଖା ହୋଇ ଝୁଲୁ ହୋଇଛି—

"Seeing is possible
Help me to get a transplant"

କିନ୍ତୁ କୁକୁରଟି କାହିଁକି ? ଧର୍ମଶ୍ୱାନ ? ଅନ୍ଧର ଜଗୁଆଳି ? କେହି ପଇସା ଛଡ଼ାଇ ନେବାକୁ ଚେଷ୍ଟା କଲେ ଏ ରକ୍ଷା କରିବ ? ପଚରି ବୁଝିଲି ଯେ ଏ ପୋଲିସ୍ କୁକୁର, ଟ୍ରେନିଂପ୍ରାପ୍ତ; ଲାଇସେନ୍ସ୍ କରିଥିବା ଅନ୍ଧକୁ ସରକାର ଯୋଗାଇଦେଇଛନ୍ତି—ଏ ନିଜପୂର୍ବକ ରାସ୍ତାଘାଟ ଜାଣେ—ଯାନବାହନ ରାସ୍ତା ପାର କରାଇ ଦେଇପାରେ ।

ସେଇ ଅନ୍ଧର ପଛଆଡ଼େ ଜଣେ ସ୍ତ୍ରୀଲୋକ; ହାତରେ ଗୋଟିଏ ଡବା; ଯିଷ୍ଟ୍‌ରର କଳା ପୋଷାକ ପିନ୍ଧିଛି କାହିଁକି ? ସେ କଣ ଅନ୍ଧର ସ୍ତ୍ରୀ ? ନୀରବ ନିଶ୍ଚଳ । କେବଳ ଡବାଟି ପଚାଉଛି । ବେଳେ ବେଳେ ଟୁଣ୍ ଟାଣ୍ ଶବ୍ଦ ହେଉଛି ।

ସେଠୁ ଅଳ୍ପଦୂର ଯାଇ ଦେଖିଲି ଜଣେ ବୁଢ଼ା—ଚକଲଗା ଚୌକିରେ ବସିଛି । ଫୁଟ୍ ପାଥ୍‌ରେ ଚୌକିଟି ଚଲାଇ ଚଲାଇ ନେଉଛି ।

ସେ ମୂକ ବୁଝେଁ, କନ୍ତୁ ପାଟି ଫିଟାଇ ମାଗିବା ମର୍ଯାଦା ହାନିକର । ତା
ଗ୍ଣ୍ଡ ଓ ପିଠିରେ ସେହିପରି ଏକ ଲେଖା ଝୁଲୁ ହୋଇଛି—

This is my means of making a living
Thank you.

ଆଉ କିଛି ଦୂର୍, ଯାଇ ଦେଖିଲି ଅନ୍ୟଜଣେ—ବୋଧହୁଏ ଭିକ୍ଷା ମାଗିବାକୁ ଘୃଣା କରେ, ଫେରିବାଲାର ବେଶ ସେ ଧରିଛି । ମାଗିବାକୁ ହେବନାହିଁ । ଲୋକେ କିଣିବେ—ପେନ୍‌ସିଲ୍; ବଜାରଦାମ୍‌ରୁ କିଛି ଅଧିକା ଦେବେ । ଦେଖିଲି—ଲୋକେ ତାଠାରୁ ପେନ୍‌ସିଲ୍ କିଣୁଛନ୍ତି ଦୟାପାଇଁ । କାରଣ ସେ ଅନ୍ଧ, ବଧିର । ନ ମାଗି ଏଇ ସମ୍ମାନଜନକ ବ୍ୟବସାୟ ଧରିଛି । ତା ସଙ୍ଗରେ ବି ଗୋଟିଏ କୁକୁର—କଣସ—ଡାହାଣ ହାତରେ ଲୁହା ବକୁଲ୍ସ ବାଡ଼ି, ଓଠରେ ସିଗାରେଟ୍; ଗ୍ଣ୍ଡରେ ଓ ପିଠିରେ ସେ ବି ଗୋଟିଏ ଲେଖା ଝୁଲାଇଛି ।

I am blind and almost deaf
My dog's name is 'Lady'
She is friendly
Buy a pencil
Please help me
Thank you.

## ଏମ୍ପାୟାର୍ ଷ୍ଟେଟ୍ ବିଲ୍‌ଡ଼ିଂ

ଏହି ସୌଧଟି ସମସ୍ତ ସୌଧ ମଧ୍ୟରେ ଉଚ୍ଚତମ । ମନୁଷ୍ୟର ଏତେ ତୁଙ୍ଗ କୀର୍ତ୍ତି ଆଉ ନାହିଁ । ଏଥିରେ ୧୦୨ ମହଲା ଅଛି; ଉଚ୍ଚତା ୧୪୭୨ ଫୁଟ୍ । ନିଉୟର୍କ ନଗରର ସମସ୍ତ ସୌଧ ମଧ୍ୟରେ ଏହାର ଗଗନଭେଦୀ ଅଗ୍ରଭାଗ ପରିଦୃଷ୍ଟ ହୁଏ । ଆଧୁନିକ ସ୍ଥାପତ୍ୟର ସର୍ବଶ୍ରେଷ୍ଠ କୃତିତ୍ୱ ଏଥିରେ ପ୍ରଦର୍ଶିତ ।

ଆକାଶ ଆଡ଼କୁ କ୍ରମେ କ୍ଷୀଣତର ହୋଇ ଯାଇଥିବା ଏହାର ସୂକ୍ଷ୍ମ ଦୃଷ୍ଟି ଆକର୍ଷଣ କରେ । ଉପରକୁ ଉଠିବା ଲାଗି ଅଟୋମେଟିକ୍

ଏଲାଭେଟର ଅଛି । ପ୍ରଥମ ଏଲାଭେଟର ୮୦ ମହଲା, ଦ୍ୱିତୀୟ ୮୬ ମହଲା ଓ ତୃତୀୟ ୧୦୨ ମହଲା ଉପରକୁ ନେଇଯାଏ । ସର୍ବୋଚ୍ଚ ମହଲାରେ ଗୋଟିଏ ରେଷ୍ଟୁରାଣ୍ଟ ଓ ଗିଫ୍ଟ ସପ୍ ଅଛି । ବଡ ଦୋଉଳର ବଧ୍ୟ-ନଜରରେ ବୁଲିଲା ପରି ଏମ୍ପାୟାର୍ ଷ୍ଟେଟ୍ ବିଲଡ଼ିଂର ଅଗ୍ରଭାଗର ଚତୁର୍ଦ୍ଦିଗରେ ଏକାବେଳେକେ ସହସ୍ର ଲୋକ ବୁଲି ପାରନ୍ତି । ନିଉୟର୍କର ଚତୁଃପାର୍ଶ୍ୱର ଶ୍ରୀ ଦେଖିବା ଲାଗି ଏହା ସର୍ବୋଚ୍ଚ ସ୍ଥାନ ।

ନିଉୟର୍କ ପରି ମନୋହର ନଗର ଆଉ କେଉଁଠି ଅଛି ? ଦ୍ୱୀପ ଗୁଡ଼ିକ ନଦୀ ବେଷ୍ଟିତ । ଏକ ଆଡ଼େ ହଡ୍‌ସନ୍, ଅନ୍ୟ ଦିଗରେ ଇଷ୍ଟ ଓ ହାରଲେମ୍ ନଦୀର ଗମ୍ଭୀର ପ୍ରବାହ; ଜଳାର୍ଣ୍ଣବରେ ସହରଟି ଭାସିଲା ପରି ଦିଶେ । ବହୁ କେନାଲ ଓ ପଥରେ ଚତୁର୍ଦ୍ଦିଗ ରେଖାଙ୍କିତ । ଗଗନଚୁମ୍ବୀ ଗୀର୍ଜାସବୁ ଆକାଶକୁ ଭେଦ କରୁଛି । ସହରର ମୁଖଶ୍ରୀକୁ ଆବରଣ କରୁଛି ଧୂମର ଗୋଟିଏ ସୂକ୍ଷ୍ମ ଓଢ଼ଣା, ଶରତର ସ୍ୱଚ୍ଛ ରୌଦ୍ର ମଧ୍ୟରେ ।

ଗୋଟିକ ପରେ ଗୋଟିଏ ହେଲିକୋପ୍ଟର ଆସି ଓହ୍ଲାଉଛି କୋଠାର ଛାତ ଉପରେ । କିଏ ବା ଉଡ଼ିଯାଉଛି; ଅଭ୍ୟସ୍ତ ସିଗାଲଙ୍କୁ ତଳେ ଦେଖିଲେ ବିଚଳିତ ନ କର । ଜାହାଜ ପରେ ଜାହାଜ ଚାଲିଛି; ମଟର ବୋଟ୍ ପରେ ମଟର ବୋଟ୍; ପ୍ରଶସ୍ତ ରାଜପଥ ସରୁ ଚଲାବାଟ ପରି, ମଟରସବୁ ପିଲାଙ୍କ ଖେଳଣା ଗାଡ଼ି ପରି ଦିଶୁଛି । ଜୀବନର ଚଞ୍ଚଳତା ତଳେ ଅନୁଭୂତ ହେଉନାହିଁ, ଉଚ୍ଚତମ ସ୍ଥାନକୁ ଉଠିଲେ ବୋଧହୁଏ ସେଇଆ ହୁଏ । କର୍ମଜଞ୍ଜାଳ ଗ୍ରସ୍ତ ଆମେରିକା ଏଠି ବନ୍ଦରେ ସ୍ଥିର, ସ୍ଥଗିତ ହୋଇ ରହିବ ପାଇଛି; କିନ୍ତୁ ଆକାଶୀ ପ୍ରେରଣାର ଉଚ୍ଛ୍ୱାସ ଲାଗି ଯେପରିକ ।

## ମେଟ୍ରୋପଲିଟାନ୍ ମ୍ୟୁଜିଅମ୍ (୨୪ । ୬ । ୬୭)

ଆଜି ରବିବାର; କଲ୍‌ଟାଏ ଥିଲା । ଡାକ୍ତର ବର୍ମନ୍ ଫେରିଆସି ମୋତେ ଓ ତାଙ୍କର ଦୁଇ ପିଲାଙ୍କୁ ନେଇ ଗଲେ ହାର୍‌ଲେମ୍ ନଦୀ କୂଳେ କୂଳେ । ସମୁଦ୍ର ଭୂମି ଭିତରକୁ ଅନେକ ଦୂର ପଶି ଆସିଛି, ମଟର

ବୋଟରେ ବହୁ ଯାତ୍ରୀ ଯାତାୟାତ କରୁଛନ୍ତି—ଫ୍ଲାଶିଂ ଉପସାଗର ! ଏହି ଉପସାଗରକୁ ଲାଗି ଗୋଟିଏ ଉଡ଼ାଜାହାଜ ଘାଟି; ଦୀର୍ଘକାଳ ଧରି ବ୍ୟୋମଯାନ ବିଶ୍ରାମ ନେଇଛନ୍ତି, ଧର୍ମଘଟ ।

ନିଉୟର୍କର କେତେକ ରାଜପଥ ପାରହୋଇ ଆମେ ଫିଫ୍ଥ୍ ଆଭେନ୍ୟୁରେ ପହଞ୍ଚିଲୁ । ଆକାଶଛୁଆଁ କୋଠାସବୁ । ବହୁ ଭାଗ୍ୟବନ୍ତ ଲୋକଙ୍କ ବାସସ୍ଥାନ ଏଠି । ଲଣ୍ଡନରେ ଯେପରି ପିକାଡେଲି ସରକସ୍, କଲିକତାରେ ଯେପରି ଚୌରଙ୍ଗି, ନିଉୟର୍କରେ ସେହିପରି ଫିଫ୍ଥ ଆଭେନ୍ୟୁ । ପୁଞ୍ଜିପତି ପୁଞ୍ଜୀଭୂତ । ଫିଫ୍ଥ୍ ଆଭେନ୍ୟୁ ସାମ୍ନାରେ ମେଟ୍ରୋପଲିଟାନ୍ ମ୍ୟୁଜିଅମ୍—ବିପୁଳ ସୌଧ, ପ୍ରସ୍ତରରେ ନିର୍ମିତ ।

ଏହି ଯାଦୁଘରର ସ୍ଥାପନ ଓ ଉତ୍ତରୋତ୍ତର ଉନ୍ନତି ମୂଳରେ ଜେ. ପି. ମରଗାନଙ୍କ ଅକ୍ଲାନ୍ତ ପ୍ରଚେଷ୍ଟା ରହିଅଛି । ୧୮୭୦ ଖ୍ରୀଷ୍ଟାବ୍ଦରେ ଏହି ଯାଦୁଘର ସ୍ଥାପିତ ହୋଇଥିଲା, ୧୮୮୦ରେ ବର୍ତ୍ତମାନ ସୌଧକୁ ସ୍ଥାନାନ୍ତରିତ ହୋଇଥିଲା । ବହୁ ଛବି ଓ ପେଣ୍ଟିଂର ଏହା ଗୋଟିଏ ଅପୂର୍ବ ସଂଗ୍ରହାଳୟ । 'ମହାକବି ହୋମରଙ୍କ ଅର୍ଦ୍ଧ ମୂର୍ତ୍ତି ଦର୍ଶନରେ ଆରିଷ୍ଟଟଲଙ୍କ ଚିନ୍ତା' ରେମବ୍ରାଣ୍ଟଙ୍କର ଗୋଟିଏ ପେଣ୍ଟିଂ । କେବଳ ଏହାର ଦାମ୍ ୨୩ ଲକ୍ଷ ଡଲର ବୋଲି କଳନା କରାଯାଇଛି । କଳାର ରସିକ ଗ୍ରାହକ ଯେଉଁଠି ଅଛନ୍ତି; ଗ୍ରାହକତା ହିଁ ଦ୍ରବ୍ୟର ଦର ବଢ଼ାଇ ଦେଇଥାଏ । ଦର ଯେତେ ବେଶୀ ହେଲେ ବି ତାହା ଦେବାଲାଗି ଆର୍ଥିକ ଅବସ୍ଥା ଅନୁକୂଳ । ମନ ଓ ଧନ ଉଭୟ ଥିବାରୁ ପୃଥିବୀର ବହୁ ଶ୍ରେଷ୍ଠ ଛବି, ପେଣ୍ଟିଂ ଓ ମୂର୍ତ୍ତି ସଂଗ୍ରହ କରି ରଖିବା ଆମେରିକା ପକ୍ଷରେ ସମ୍ଭବ ହୋଇଅଛି । କଳା ଓ ଭାସ୍କର୍ଯ୍ୟର ଯେ କୌଣସି ମୂଲ୍ୟ ଦେବାକୁ ଆମେରିକା କେବେ କୁଣ୍ଠିତ ହୋଇନାହିଁ ।

ଆମେରିକାନ ଗୋଟିଏ ନୂଆ ଜାତି; ନୂତନତା ପ୍ରତି ତାର ପ୍ରୀତି ସର୍ବଜନବିଦିତ । ପୃଷ୍ଠକୁ ଟାଣିନେବା ଲାଗି ତାର ସମୃଦ୍ଧ ସାଂସ୍କୃତିକ ପରମ୍ପରା ନାହିଁ; କିନ୍ତୁ ଆଗକୁ ଓଟାରିନେବା ଲାଗି ପକ୍ଷୀରାଜ ପରି ତାର ଅଗ୍ରଗାମୀ ବିଜ୍ଞାନ ରହିଛି । ବର୍ତ୍ତମାନ ତାର ସମୃଦ୍ଧ; ଅତୀତ ଶୂନ୍ୟ ଶୂନ୍ୟ

ମହାଶୂନ୍ୟ । ଅଦୂର ଅତୀତକୁ ସେ ସଜାଇବାକୁ ଚାହେଁ—ନିଜର ନ ହେଲେ ବି ସାରା ଜଗତର ସଂସ୍କୃତିରେ ।

ସମଗ୍ର ଭାରତ, ଇଜିପ୍ଟ ବା ଚୀନ ଗୋଟାଏ ଗୋଟାଏ ମ୍ୟୁଜିଅମ ପରି । ଯାଦୁଘରେ କେତେ ବା ସଂଗ୍ରହ କରି ରଖାଯାଇପାରେ ? କିନ୍ତୁ ଆମେରିକାର ଅତୀତ ତାମ୍ରଫଳକ, ଭଗ୍ନ ମୂର୍ତ୍ତି ବା ପାଣ୍ଡୁଲିପିରେ ପାଣ୍ଡୁର ନୁହେଁ । ଆଧୁନିକ ଯୁଗର ସାମାନ୍ୟ ମଳିନତା ସେମାନେ ବରଦାସ୍ତ କରିପାରନ୍ତି ନାହିଁ ।

ଭଙ୍ଗାରୁଜା ଦ୍ରବ୍ୟ ବିକ୍ରି କରିବାରେ ଘୋର ଅଶ୍ରଦ୍ଧା ପ୍ରକାଶ ପାଏ । କିନ୍ତୁ ପୁରାତନ ପ୍ରତି ଆକର୍ଷଣ ଅଳ୍ପ ବୋଲି କହିହେବ ନାହିଁ । ଗବେଷକର ସନ୍ଧାନୀ ଦୃଷ୍ଟି ଖୋଜି ବୁଲୁଛି—ଯାହା ଦୁଷ୍ପ୍ରାପ୍ୟ, ବିରଳ ଆଣି ସାଇତି ରଖିଛି, ଅକଳନ୍ତ ମୂଲ୍ୟ ଦେଇ । ଛବି, ପେଣ୍ଟିଂ, ମୂର୍ତ୍ତି, ଶିଳାଲେଖରେ ଯାଦୁଘର ପୂର୍ଣ୍ଣ । କ୍ଲିଓପାଟ୍ରାସ ନିଡ଼ଲ ବିଶେଷ ଦୃଷ୍ଟି ଆକର୍ଷଣ କରେ । ଇଜିପ୍ଟର ଇସ୍ମାଇଲ ପାଶା ଏହା ଆମେରିକାକୁ ଉପହାର ଦେଇଛନ୍ତି । ୬୯ ଫୁଟ ଉଚ୍ଚ, ଏହାର ଓଜନ ୪୪ ଲକ୍ଷ ପାଉଣ୍ଡ । ସମସାମୟିକ ଇତିହାସ ଏହା ଉପରେ ଖୋଦିତ ହୋଇଅଛି । ତିନିହଜାର ପାଞ୍ଚଶ ବର୍ଷ ତଳେ ଏହା ହେଲିଓପୋଲିସର ସୂର୍ଯ୍ୟମନ୍ଦିର ସାମ୍ନାରେ ରଖାଯାଇଥିଲା । ୧୮୮୧, ଫେବୃୟାରି ୨୨ ତାରିଖରେ ଏହା ମେଟ୍ରୋପଲିଟାନ ମ୍ୟୁଜିଅମକୁ ଅଣାଯାଇଥିଲା ।

ପ୍ରାଚୀନ ଓ ମଧ୍ୟଯୁଗର ଅସ୍ତ୍ରାଗାର, ରାଜସିଂହାସନ, ରାଜ ପୋଷାକ, ସାଞ୍ଜୁ, ହେଲମେଟ, ଫ୍ଲାଙ୍କ୍ସ, ମୁଦ୍ରା, ସିଲ୍, କାର୍ପେଟ, ବହୁ ମୂର୍ତ୍ତି, ବହୁ ଛବି ଓ ପେଣ୍ଟିଂ—ଗ୍ରୀସ, ଇଜିପ୍ଟ, ଚୀନ, ରୋମାନ, ଭାରତୀୟ, ଆସିରୀୟ, କେତେ କାଳର, କେତେ ଯୁଗର—ଅତୀତ ମୂର୍ତ୍ତିମାନ ହୋଇ ବସେ । ଏସବୁ ଗୋଟିଏ ଦିନରେ କେହି ଦେଖିପାରିବ ନାହିଁ; ଆମେ ଘଣ୍ଟାକେ କଣ ଦେଖିବୁ ?

ପୁସ୍ତକାଗାରରେ କଳା, ଭାସ୍କର୍ଯ୍ୟ, ମୁଦ୍ରା, ଟେରାକୋଟା, ଖେଳଣା, ଲୋକସାହିତ୍ୟ ସମ୍ପର୍କୀୟ ନାନା ପୁସ୍ତକ, ପାମ୍ଫଲେଟ୍, କାର୍ଡ଼ ଅଛି । ଥରେ ଆଖି ବୁଲେଇ ଆଣିବାକୁ ବେଳ ହେଲାନାହିଁ ।

କୌଣସି ସ୍ତ୍ରୀ ଉପରେ ମନର ମାୟା ଲଗିଲାବେଳକୁ ସ୍ୱଟ୍ ଡାକ ପକାଏ—ମି. ଦାସ, କମ ଅନ । ବର୍ମନଙ୍କ ପୁଅ ମୋର ଜଗୁଆଳୀ । ସେଦନ ଦ୍ୱନ୍ଦଥିଲ । ଅଜ କାଲେ ଦ୍ୱନ୍ଦପିବ—ଏ ଆଶଙ୍କା ତା ବାପା ଅପେକ୍ଷା ତାକୁ ଅଧିକ ଅସ୍ଥିର କରୁଥାଏ । ସେ ମୋତେ ଗୋଡ଼େ ଗୋଡ଼େ ଜଗିଥାଏ । ବାରମ୍ବାର ଏପରି ଡାକ ଶୁଣିବାରୁ ମ୍ୟୁଜିଅମ ଉପରୁ ମୋର ମମତା ଗୁଡ଼ିଗଲା । ସବୁ ଥାଉ, ଇଜିପ୍ଟ, ଗ୍ରୀସ୍, ରୋମାନ; ଅଦେଖା ଅଜ୍ଞାତ ରହି ଅଦେଖା ହୋଇ ରହିଯାଉ । ଦରକାର ପାଣ୍ଡୁଲିପିର ପୃଷ୍ଠା ଲଭିଯାଉ । ଆଗରେ ମୋର ଭବିଷ୍ୟତ—ସ୍ୱଟ ! ତାକୁ ଏ ଛିନ୍ନ ପୃଷ୍ଠା, ମଳିନ ଛବି, ଭଙ୍ଗା ମୂର୍ତ୍ତି, ଛିଣ୍ଡା ପୋଷାକ କଳଙ୍କିଲଗା ଅସ୍ତ୍ର ଭଲ ଲାଗିବ କାହିଁକି ? ଆଟମିକ୍ ଯୁଗର ପିଲା ସେ, ଂପ୍ରୀତି ମୁଁ, ଯେପରି କ ଗୋଟାଏ ଅଚଳନ୍ତ ଗାଡ଼ି—ଇଞ୍ଜିନ ପରି ସେ ଭିଡ଼ ଭିଡ଼ ମୋତେ ଘେନିଗଲା ।

ୟୁ. ଏନ୍. ଓ. (୨୪ । ୭ । ୬୭)

ଶାନ୍ତ, ଶୀତଳ ଇଷ୍ଟ ନଦୀକୂଳ, କୋଳାହଳପୂର୍ଣ୍ଣ ନଗରର କେନ୍ଦ୍ର ସ୍ଥଳ ; ଏଠି ସଂଯୁକ୍ତ ଜାତିସଂଘ ନିକେତନ ବିପୁଳ ଗୌରବରେ ମସ୍ତକ ଉତ୍ତୋଳନ କରିଛି । ପ୍ରବେଶ ଦ୍ୱାରରେ ଆଇଭିଲତା, ତୃଣ ପ୍ରାନ୍ତର, ଶ୍ୟାମଳ ଭେଲଭେଟର ଗାଲିଚା ପରି ବିଛେଇ ହୋଇଛି । ବିଭିନ୍ନ ଜାତିର ବିଜୟ ପତାକା ସବୁ ଉଡ଼ୁଛି । ନଦୀ ଅଡ଼କୁ ଲମ୍ବି ଯାଇଛି ତରୁଣ ଓକ୍ ଗଛର ଧାଡ଼ି । ତୃଣଭୂମି ଉପରେ ଶାନ୍ତି ଦେବୀଙ୍କର ମୂର୍ତ୍ତି—ଯୁଗୋସ୍ଲାଭିଆର ଦାନ । ଅଳ୍ପ ଦୂରରେ ଗୋଟିଏ ବଳିଷ୍ଠ କୃଷକର ମୂର୍ତ୍ତି—ରୁଷ୍‌ଦେଶର ଉପହାର; ସେ ହସ୍ତରେ ଟେକ୍ସି ଝଟାଇ ତରବାରିକ ଲଙ୍ଗଳ ଲୁହାରେ ପରିଣତ କରୁଛି— ଜାତିସଂଘ ଆଦର୍ଶର ପ୍ରତୀକ—

"ସେମାନେ ତରବାରିକ ଲଙ୍ଗଳ ଲୁହା କରିବେ;
ବର୍ଚ୍ଛାକୁ ଦାଆ କରିବେ
ଗୋଟିଏ ଜାତି ଅନ୍ୟ ଜାତି ବିରୁଦ୍ଧରେ

ତରବାରୀ ଉତ୍ତୋଳନ କରିବ ନାହିଁ
ସେମାନେ ଆଉ ଯୁଦ୍ଧ ଶିଖିବେ ନାହିଁ ।” *

ଏ ଗୋଟିଏ ବିଶ୍ବତୀର୍ଥ; କିନ୍ତୁ କୌଣସି ଧର୍ମ ସ୍ୱତନ୍ତ୍ର ଦାବୀ ସାବ୍ୟସ୍ତ କରି ପାରିବ ନାହିଁ । କୌଣସି ଜାତି ବା ବ୍ୟକ୍ତି ଦଖଲ ସ୍ୱତ୍ୱ ଦାବୀ କରି ପାରିବ ନାହିଁ । ଏହି ମନ୍ଦିର ପ୍ରାଙ୍ଗଣରେ ସବୁ ବ୍ୟକ୍ତି ସମାନ, ସବୁ ଜାତି ସମାନ । ତେଣୁ ଦେବତାହୀନ, ଦେବତ୍ୱପୂର୍ଣ୍ଣ ଏହି ମନ୍ଦିରକୁ ନମସ୍କାର ।

ମନୁଷ୍ୟର ଆତ୍ମାର ଜ୍ୟୋତି ଏଠି ଚିରନ୍ତନ ମନ୍ତ୍ରମାନରେ ଦେଦୀପ୍ୟମାନ—‘ସବାର ଉପରେ ମାନୁଷ ସତ୍ୟ ତାର ଉପରେ ନେଇଁ’ । ତେଣୁ ଏ ଭୂମିର ସ୍ପର୍ଶ ମାନେ ବିଶ୍ୱାତ୍ମାର ସ୍ପର୍ଶ—ପ୍ରାଣ ମୋର ସ୍ପନ୍ଦିତ ହୋଇ ଉଠିଲା ।

ଏହିଭଳି ଭୂମି ଖଣ୍ଡିଏ ଆଜି ପର୍ଯ୍ୟନ୍ତ ନ ଥିଲା । ସବୁ ଜାତି ଯେ ଯାହାର ଭୂମି ଉପରେ ବଡ଼ ଥିଲେ । କିନ୍ତୁ ଏଠି ଆଜି କେହି ବଡ଼ ନୁହନ୍ତି, ପୁଣି ସମସ୍ତେ ବଡ଼ । ଧନ ଜନ ଓ ଅସ୍ତ୍ର ଶକ୍ତିରେ ପ୍ରବଳ ଜାତି ଏଠି ଅଛନ୍ତି; କିନ୍ତୁ ତାର ବଡ଼ିମା ଦେଖାଇବାର ଅବକାଶ ନାହିଁ, ଯେତେ କ୍ଷୁଦ୍ର ହେଲେ ବି ମସ୍ତକ ଅବନତ କରିବାର ହେତୁ ନାହିଁ । ପ୍ରତ୍ୟେକ ଜାତି ବଡ଼ ଓ ତାକୁ ବଡ଼ କରି ରଖିବା ଜାତିସଂଘର ଲକ୍ଷ୍ୟ । ଏହାର ପତାକା ବିଶ୍ୱପତାକା—ପ୍ରଶାନ୍ତ ନୀଳାକାଶ, ତହିଁରେ ଭାସମାନ ଭୂମଣ୍ଡଳ—ଜାତିସଂଘ ପତାକାର ସଙ୍କେତ ।

୧୯୪୫ରେ ଦ୍ୱିତୀୟ ମହାଯୁଦ୍ଧ ଶେଷହେବା ପରେ ଯେଉଁବେଳେ ଜାତିସଂଘର ନିୟମାବଳୀ ଗଠା କରାଗଲା, ସେତେବେଳେ ବିଚାର ପଡ଼ିଲା—ଜାତିସଂଘର ଅଫିସ୍ କେଉଁଠି ରହିବ ? କେହି ଜଣେ ସଭ୍ୟ କହିଲେ

---

* They shall beat their swords into plow shares and their spears into pruning hooks. Nation shall not lift up sword against nation. Neither shall they learn war anymore.

—ଜାହାଜରେ ରହୁ, ସେ ଜାହାଜ ବିଶ୍ୱ ପରିକ୍ରମା କରୁଥାଉ । କିନ୍ତୁ ନାନା ସ୍ଥାନର ବିଚାର ପରେ ଶେଷକୁ ସ୍ଥିର ହେଲା—ଜାତିସଂଘ 'ନୂତନ ଜଗତ'ରେ ରହିବ । ଏଇ ମାଟିରେ ନୂତନ ଭାବନା ସହଜରେ ଚେର ଧରିପାରିବ, ପୃଷ୍ଠକୁ ଟାଣିନେଲା ଭଳି ସୁଦୀର୍ଘ ପ୍ରାଚୀନ ପରମ୍ପରା ଏ ଜଗତର ନାହିଁ । ଏହି ମନ୍ତ୍ରରେ ଆମେରିକାର ଦାନବୀର ଜନ. ଡ଼ି. ରକ୍‌ଫେଲର୍ ଜାତିସଂଘର ଜାଗା ଲାଗି ପଞ୍ଚାଅଶୀ ନିୟୁତ ଡଲାର ଦାନ ଘୋଷଣା କଲେ, ଏହି ଦାନ ସାଦରେ ଗୃହୀତ ହେଲା । ଇଷ୍ଟ ନଦୀ କୂଳରେ ୧୮ ଏକର ଜମି ଉପରେ ଜାତିସଂଘ ସଦନ ନିର୍ମିତ ହେଲା । ଏଥିଲାଗି ନିଉୟର୍କବାସୀଙ୍କ ଦାନ ଅଳ୍ପ ନୁହେ !

ଏହି ସ୍ଥାନର ଇତିହାସ ଖୁବ ପ୍ରାଚୀନ ନୁହେ । ପ୍ରଥମେ ୧୬୩୯ ଖ୍ରୀଷ୍ଟାବ୍ଦରେ ଦୁଇଜଣ ଇଂରେଜୀ କୃଷୀ ଏଠି ବସବାସ କଲେ, ସେମାନଙ୍କ ଧୂଆଁ ପତ୍ର ଖେତକୁ 'ଟର୍ଟଲ ବେ' ଫାର୍ମ କୁହାଯାଉଥିଲା । ଆମେରିକାନ ମୁକ୍ତିଯୁଦ୍ଧବେଳେ ଇଂରେଜମାନେ ନାଥନ୍ ହେଲ୍ ନାମକ ଜଣେ ଦେଶ-ପ୍ରେମୀ ଆମେରିକାନଙ୍କୁ ୧୭୭୬ ଖ୍ରୀଷ୍ଟାବ୍ଦରେ ଏଠି ଫାଶୀ ଦେଇଥିଲେ—ତାଙ୍କର ଶେଷ ବାଣୀ —

ମୋ ଦେଶପାଇଁ ବଳିଦେବା ଲାଗି ମୋର ଗୋଟିଏ
ଆତ୍ମାରୁ ବେଶୀ ନାହିଁ, ଦୁଃଖିତ ।

ଜାତିସଂଘର ଚାରିଗୋଟି ପ୍ରଧାନ ଗୃହ ଅଛି—ସାଧାରଣ ଜାତିସଂଘ ସଭାଗୃହ, ନିରାପତ୍ତା ପରିଷଦ୍ ଓ ସମ୍ମିଳନୀ ଗୃହ, ସେକ୍ରେଟରିଏଟ୍, ପାଠାଗାର । ପାଠାଗାରକୁ ଛାଡି ଅନ୍ୟ ସମସ୍ତ ଗୃହନିର୍ମାଣରେ ପ୍ରାୟ ୬୭ ନିୟୁତ ଡଲାର୍ ବ୍ୟୟିତ ହୋଇଥିଲା । ଜାତିସଂଘ ମାତ୍ର ଦୁଇ ନିୟୁତ ଡଲାର୍ ସଂଗ୍ରହ କରିପାରିଥିଲା । ବାକୀ ସମସ୍ତ ଅର୍ଥ ବିନାସୁଧରେ ଆମେରିକାଠାରୁ ଧାର୍ ସୂତ୍ରରେ ଅଣାଯାଇ ଥିଲା । ଜାତିସଂଘ ସେଇ ଋଣ ଆସ୍ତେ ଆସ୍ତେ ପରିଶୋଧ କରୁଛି । ପାଠାଗାର ନିର୍ମାଣ ଓ ସଜ୍ଜୀକରଣର ସମସ୍ତ ବ୍ୟୟ ଫୋର୍ଡ ଫାଉଣ୍ଡେସନ୍ ବହନ କରିଅଛନ୍ତି; ଏହାର ପରିମାଣ ୬୨ ଲକ୍ଷ ଡଲାର୍ ।

ଜାତିସଂଘର ସାଧାରଣ ସଭ୍ୟସୂଚୀର ଏହାର ସଭ୍ୟ ହୋଇଥିବା ଦେଶମାନେ ବହନ କରିଥାନ୍ତି । କେଉଁ ଦେଶର ଦେୟ କେତେ ତାହା ଜେନେରାଲ୍ ଆସେମ୍ବ୍ଲି ସ୍ଥିର କରିଥାଏ । ନିଜର ନିରାପତ୍ତା ଓ ଶାନ୍ତି ଲାଗି ପ୍ରତ୍ୟେକ ବ୍ୟକ୍ତିକୁ ଯାହା ଦେବାକୁ ହୁଏ, ତାହା ତାର ଗୋଟିଏ ବେଳାର ଖାଦ୍ୟବ୍ୟୟରୁ ଊଣା ।

ଜାତିସଂଘ ସଦନର ଭୂତଳରେ ଗୋଟିଏ ଗ୍ୟାରେଜ ଅଛି । ଏଥିରେ ଏକାବେଳକେ ଏକହଜାରଟି ମଟରଗାଡ଼ି ରଖାଯାଇ ପାରେ । ଏହାର ସ୍ୱତନ୍ତ୍ର ପୋଷ୍ଟଅଫିସ୍ ମଧ୍ୟ ଅଛି । ଜାତିସଂଘ ନିଜର ସ୍ୱତନ୍ତ୍ର ଡାକ ଟିକେଟ୍ ବ୍ୟବହାର କରେ । ସଂଘର ସୀମା ମଧ୍ୟରେ ଯେ କେହି ବ୍ୟକ୍ତି ଜାତିସଂଘର ଟିକେଟ୍ ଲଗାଇ ସ୍ୱଦେଶକୁ ବା ଅନ୍ୟ କୌଣସି ଦେଶକୁ ପତ୍ର ପ୍ରେରଣ କରିପାରେ । କିନ୍ତୁ ଏହି ଟିକେଟ୍ ମାରି ଅନ୍ୟ କୌଣସି ପୋଷ୍ଟ ଅଫିସ୍‌ରେ ଚିଠି ପକାଇଲେ ଚଳିବ ନାହିଁ । ଟିକେଟ୍ ଗୁଡ଼ିକ ଚିତ୍ତାକର୍ଷକ; ତାହା ଉପରେ ଇଉ. ଏନ୍. ର ପତାକା । କାହିଁରେ ନ୍ୟାୟର ତୁଳାଦଣ୍ଡ, ଶାନ୍ତିର କପୋତ, ଶସ୍ୟଶିଷା କିମ୍ବା ଜାତିସଂଘ ସଦନ, ଆନ୍ତର୍ଜାତିକ ବିଶ୍ୱବିଦ୍ୟାଳୟର ଛବି, କାହିଁରେ ବା ନିରାପତ୍ତା, ବିଶ୍ୱ ଐକ୍ୟ ଓ ଶାନ୍ତି ପ୍ରଭୃତି ଜାତିସଂଘର ଆଦର୍ଶ ଲିପିବଦ୍ଧ ।

ପାନ ଭୋଜନର ସୁବିଧା ଲାଗି ତଳ ମହଲରେ ଗୋଟିଏ ରେଷ୍ଟୁରାଣ୍ଟ, ଓ ବନ୍ଧୁ ବାନ୍ଧବଙ୍କ ପାଇଁ ଉପହାର ପଠାଇବା ଲାଗି ଗୋଟିଏ 'ଗିଫ୍ଟ ସପ୍' ଅଛି । ବହି ଦୋକାନରେ ଜାତିସଂଘ, ବିଶ୍ୱଶାନ୍ତି, ବିଭିନ୍ନ ଦେଶର ଇତିହାସ, ସଂସ୍କୃତି ସମ୍ପର୍କୀୟ ନାନା ଉପାଦେୟ ପୁସ୍ତକ, ପତ୍ର ପତ୍ରିକା, ମାନଚିତ୍ର—ଛବି ଓ ଛବିକାର୍ଡ ବିକ୍ରୀ ହେଉଅଛି ।

ତଳ ମହଲଟି ଦେଖିବା ପରେ ସ୍ମିଥ୍ ଓ ରସେଲ୍ କ୍ଳାନ୍ତ ହୋଇ ପଡ଼ିଲେ । ଲାଗିଲେ ଘରକୁ ଫିରିବାକୁ । ଡାକ୍ତର ବର୍ମନ୍ କହିଲେ—ଏଇତ ହେଲା; ଆଉ କଣ ଦେଖିବା ? କିନ୍ତୁ ନିରାପତ୍ତା ପରିଷଦ୍ ଗୃହ ନଦେଖି ଗଲେ ମନରେ ଗୋଟାଏ ଅସନ୍ତୋଷ ରହିଯିବ । ତାଙ୍କୁ କହିବୋଲି ରହିଗଲି ।

ଏକ ଡଲାର୍ ପଚାଶ ସେଣ୍ଟ ଦେଇ ଗୋଟିଏ ଟିକେଟ୍ କଲି । ସବୁଦିନେ ଜନସାଧାରଣ ଆସିଥାନ୍ତି । ସେମାନଙ୍କୁ ବୁଲେଇ ଦେଖାଇବା ଲାଗି ୩୧ଟି ଦେଶର ଶତାଧିକ ଗାଇଡ୍ ଅଛନ୍ତି । ସମସ୍ତେ ସ୍ତ୍ରୀ ଲୋକ । ଆମ ଗାଇଡ୍ ଜଣେ ଅଷ୍ଟାଦଶ ବର୍ଷୀୟା—ମିସ୍ ଲିସା; 'ମୋନା-ଲିସା'ର ଅପଭ୍ରଂଶ । ସଦ୍ୟ ଗ୍ରାଜୁଏଟ୍ । ଗୁଣ୍ଡୁଶୀତାଙ୍ଗ, କାନ୍ଧ ବାଙ୍କୁଲା ପର ସ୍ତ୍ରୀଟି । କାନରେ ସୁନାର ଲବଙ୍ଗପରି କଣ ଲଗାଇଛି । ହାତରେ ଘଣ୍ଟିଟିଏ, ଏଇମାତ୍ର ଅଳଙ୍କାର; ଆଉ କିଛି ମଣ୍ଡନ ଅନ୍ତରାଳ, ଯୌବନ ଦେଖିବାକୁ ନାହିଁ ନାହିଁ କରୁଛି ଯେପରି !

'ବ୍ଲଣ୍ଡ'—କଥା ଗୁଳି ପରି ଠୋସ୍ ଠୋସ୍ । ଏସ୍କାଲେଟରର ପାହାଚରେ ଛିଡ଼ାହୋଇ ଆମେ ଏ ମହଲାରୁ ସେ ମହଲାକୁ ଗଲୁ । ଲିସା ବୁଝାଇ ଚାଲିଲା ।

## ଜେନେରାଲ୍ ଆସେମ୍ବ୍ଲି ହଲ୍

ଲିସା ଆମକୁ ନେଇ ଦର୍ଶକ ଗ୍ୟାଲେରୀରେ ବସାଇଲା, ବୁଝାଇଲା, ଯେପରି ଶିକ୍ଷକ ଛାତ୍ରମାନଙ୍କୁ ବୁଝାନ୍ତି—

ଏଇ ହଲ୍‌ଟିର ଦୈର୍ଘ୍ୟ ୧୬୫ ଫୁଟ୍, ପ୍ରସ୍ଥ ୧୧୫ ଫୁଟ୍ । ଅର୍ଦ୍ଧ-ବୃତ୍ତାକାର ଟେବୁଲ୍ ଲମ୍ବିଛି, ସେଇ ସ୍ଥାନରେ ଚୌକିସବୁ ପଡ଼ିଛି । ଅର୍ଦ୍ଧବୃତ୍ତ ଭିତରେ ତିନୋଟି ଚୌକି ପଡ଼ିଛି । ମଧ୍ୟଭାଗରେ ସଭାପତି, ତାଙ୍କ ଡାହାଣ ପଟେ ସେକ୍ରେଟେରୀ ଜେନେରାଲ୍, ବାମପଟେ ଆସେମ୍ବ୍ଲି ଦାୟିତ୍ୱରେ ଥିବା ଅଣ୍ଡର ସେକ୍ରେଟେରୀ । ଦୁଇପାର୍ଶ୍ୱବର୍ତ୍ତୀ କାନ୍ଥରେ କେତେ-କାଂଶ କାଚରେ ଆବଦ୍ଧ । ସେଠି ଫଟୋଗ୍ରାଫର ଓ ଭାଷଣକୁ ଭାଷାନ୍ତର କରୁଥିବା ବ୍ୟକ୍ତିମାନେ ବସନ୍ତି । ସବୁଜ ଚର୍ମାବୃତ ଡେସ୍କ ଡେଲିଗେଟ୍‌ଙ୍କ ଲାଗି ନିର୍ଦ୍ଦିଷ୍ଟ ।

ଗୋଟିଏ ଦେଶର ଆସେମ୍ବ୍ଲି ସଭ୍ୟ ସବୁଥର ଗୋଟିଏ ସିଟ୍‌ରେ ବସନ୍ତି ନାହିଁ । ଏଥର ଯେ ପ୍ରଥମ ସିଟ୍‌ରେ ବସିଛି, ପରବର୍ତ୍ତୀ ବୈଠକରେ

ତା ଲଗି ବିଶିଷ୍ଟ ସ୍ଥାନ ନିର୍ଦ୍ଧାରିତ ହୋଇଥାଏ । ଇଂରେଜୀ ଅକ୍ଷର କ୍ରମରେ ସିଟ୍‌ସବୁ ନିର୍ଦ୍ଦେଶିତ ହୋଇଥାଏ । ଯେଉଁମାନେ ଆସେମ୍ବ୍ଲିର ସଭ୍ୟ ନୁହନ୍ତି, ସେମାନଙ୍କୁ ପର୍ଯ୍ୟବେକ୍ଷକ ଆସନ ଦିଆହୋଇଥାଏ; ପଶ୍ଚିମ ଜର୍ମାନୀ ଏହି ଆସନ ପାଇଛି । ଚତୁର୍ଦ୍ଦିଗସ୍ଥ ଅତିଥି ଓ ସାମ୍ବାଦିକମାନଙ୍କ ଲଗି ପୃଷ୍ଠ ପଟରେ ଆସନ ନିର୍ଦ୍ଦିଷ୍ଟ ହୋଇଥାଏ । ଏକାବେଳକେ ତିନିଶତ ଦର୍ଶକ ଓ ୧୬୦ ଜଣ ସାମ୍ବାଦିକ ବସିବାର ବ୍ୟବସ୍ଥା ରହିଅଛି ।

ପ୍ରତ୍ୟେକ ଦେଶର ପାଞ୍ଚଜଣ ସଭ୍ୟ, କିନ୍ତୁ ଗୋଟିଏ ମାତ୍ର ଭୋଟ୍ ଦେବାର ଅଧିକାର ଅଛି । ଦୁଇ ତୃତୀୟାଂଶ ଭୋଟ୍‌ରେ ପ୍ରସ୍ତାବ ଗୃହୀତ ହୁଏ ।

ଜେନେରାଲ ଆସେମ୍ବ୍ଲି ଯାବତୀୟ ଜାତିସଂଘ ଅନୁଷ୍ଠାନର ହୃତ୍‌ପିଣ୍ଡ । ନିରସ୍ତ୍ରୀକରଣ, ପଳାତକମାନଙ୍କ ଜୀବନ ରକ୍ଷା, ଖାଦ୍ୟ ସମସ୍ୟା, ଅନଗ୍ରସର ଦେଶରେ ଶିଳ୍ପର ବିକାଶ, ପରାଧୀନ ଦେଶର ସ୍ୱାଧୀନତା ପ୍ରଭୃତି ପୃଥିବୀର ଯେ କୌଣସି ସମସ୍ୟା ଆଲୋଚନା କରିବାର ଅଧିକାର ଏହାର ଅଛି । ଏହି ଆସେମ୍ବ୍ଲି ନିରାପତ୍ତା ପରିଷଦ, ଟ୍ରଷ୍ଟିସିପ୍ କାଉନ୍‌ସିଲର ସଭ୍ୟ ନିର୍ବାଚନ କରେ, କୌଣସି ନୂତନ ସ୍ୱାଧୀନ ଦେଶକୁ ଜାତିସଂଘର ସଭ୍ୟ ଭାବରେ ଗ୍ରହଣ କରେ, ଆନ୍ତର୍ଜାତିକ ବିଚାରାଳୟର ବିଚାରପତି ଓ ନିରାପତ୍ତା ପରିଷଦ୍‌ର ସୁପାରିସରେ ସେକ୍ରେଟେରୀ ଜେନେରାଲ୍ ନିଯୁକ୍ତ କରେ ।

ଆସେମ୍ବ୍ଲି ବର୍ଷକେ ଥରେ ମାତ୍ର ବସେ—ସେପ୍‌ଟେମ୍ବର ମାସର ତୃତୀୟ ମଙ୍ଗଳବାର ଦିନ । ଆଲୋଚନା ପୂର୍ବରୁ ସଭ୍ୟମାନେ ଛିଡ଼ାହୋଇ ନୀରବରେ ପ୍ରାର୍ଥନା କରନ୍ତି । ତାପରେ ସଭ୍ୟମାନେ ବର୍ଷ ଆସେମ୍ବ୍ଲି ଲଗି ଜଣେ ସଭାପତି, ସାତଜଣ ଉପସଭାପତି, ପ୍ରତ୍ୟେକ ଶାଖା କମିଟି ଲଗି ଜଣେ ଜଣେ ପ୍ରତିନିଧି ନିର୍ବାଚନ କରନ୍ତି । ୧୩ ଜଣ ପ୍ରତିନିଧି ୧୩ ଗୋଟି କମିଟିର ଚେୟାରମ୍ୟାନ୍ ରୂପେ କାର୍ଯ୍ୟ କରନ୍ତି । ଆନ୍ତର୍ଜାତିକ ଶ୍ରମିକ ଅନୁଷ୍ଠାନ, ଖାଦ୍ୟ ଓ କୃଷି, ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି, ସ୍ୱାସ୍ଥ୍ୟ, ଯାନ-ବାହନ ଚଳାଚଳ, ପୋଷ୍ଟାଲ୍ ଇଉନିଅନ୍ ଓ ଟେଲି କମ୍ୟୁନିକେସନ୍

ଇତ୍ୟାଦି କମିଟିର କାର୍ଯ୍ୟ ପରିଚାଳନା ଭାର ଆସେମ୍ବ୍ଲିର ନିର୍ବାଚିତ ପ୍ରତିନିଧିଙ୍କ ଉପରେ ନ୍ୟସ୍ତ ଥାଏ । ଆସେମ୍ବ୍ଲିର ସଭ୍ୟମାନେ ଇଂରେଜୀ, ଫ୍ରେଞ୍ଚ୍, ସ୍ପାନିସ୍, ଋଷିଆନ୍, ଚୀଇନିଜ୍—ଏଇ ପାଞ୍ଚଗୋଟି ମଧ୍ୟରୁ ଯେ କୌଣସି ଗୋଟିଏ ଭାଷାରେ ଭାଷଣ ଦେଇପାରନ୍ତି । ବକ୍ତୃତାକୁ ସଙ୍ଗେ ସଙ୍ଗେ ଭାଷାନ୍ତରିତ କରିବାର ବିଚିତ୍ର ବ୍ୟବସ୍ଥା ରହିଅଛି; ଟେଲିଭିଜନ୍ କ୍ୟାମେରାରେ ବକ୍ତାଙ୍କର ଫଟୋ ଉଠାଯାଏ ଓ ତାଙ୍କ ଭାଷଣର ଟେପ୍ ରେକର୍ଡ଼ିଂ ହୁଏ

## ନିରାପତ୍ତା ପରିଷଦ୍

ତାପରେ ଲୁସୀ ଆମକୁ ନିରାପତ୍ତା ପରିଷଦ୍ ହଲ୍‌କୁ ନେଲେ । ଏହି ଗୃହର ସ୍ୱର୍ଣ୍ଣାଭ ସିଲ୍କ ସଜାସଜ ଓ ପେଣ୍ଟିଂସବୁ ନରୱେର ଦାନ; ଅନ୍ଧକାର ଅତୀତରୁ ବର୍ତ୍ତମାନ ଆଲୋକକୁ ଆସିବା ଲାଗି ମନୁଷ୍ୟର ଯୁଗ-ଯୁଗବ୍ୟାପୀ ଉଦ୍ୟମ, ଯୁଦ୍ଧର ତାଡ଼ନା ଓ ଦାସତ୍ୱର ଲାଞ୍ଛନାରୁ ମୁକ୍ତ ହୋଇ ବିଜ୍ଞାନ ଓ କଳାରେ ଉଜ୍ଜ୍ୱଳ ଭବିଷ୍ୟତକୁ ତାର ସ୍ୱଚ୍ଛନ୍ଦ ଗତି, ଆନନ୍ଦୋଚ୍ଛ୍ୱସିତ ନରନାରୀମାନଙ୍କ ପ୍ରାର୍ଥନା କାନ୍ଥମାନଙ୍କରେ ଚିତ୍ରିତ ହୋଇଅଛି । ପରିଷଦ୍‌ର ଲକ୍ଷ୍ୟ ମଧ୍ୟ ଲିପିବଦ୍ଧ ହୋଇଅଛି !

ନିରାପତ୍ତା ପରିଷଦ୍‌ର ମୋଟ ସଭ୍ୟ ସଂଖ୍ୟା ଏଗାର; ସେଥି ମଧ୍ୟରୁ ଆମେରିକା, ଋଷିଆ, ଗ୍ରେଟ୍‌ବ୍ରିଟେନ୍, ଫ୍ରାନ୍‌ସ, କୁମିଂଟାନ୍ ଚିନ୍ ସ୍ଥାୟୀ ସଭ୍ୟ । ବାକି ଛ'ଜଣଙ୍କୁ ଜେନେରଲ୍ ଆସେମ୍ବ୍ଲି ନିର୍ବାଚନ କରି ପଠାଇଥାଏ । ଅସ୍ଥାୟୀ ସଭ୍ୟଙ୍କର ଆୟୁ ଦୁଇବର୍ଷ ମାତ୍ର । ତାପରେ ପୁଣି ନିର୍ବାଚନ ହୋଇଥାଏ ।

ସିଟ୍ ଉପରେ ସଭ୍ୟଙ୍କ ନାମ ଉଲ୍ଲିଖିତ । ଇଂରେଜୀ ଅକ୍ଷର କ୍ରମାନୁସାରେ ପ୍ରତ୍ୟେକ ମାସରେ ଜଣେ-ଜଣେ ସଭାପତି ନିର୍ବାଚିତ ହୋଇଥାନ୍ତି ସଭାପତିଙ୍କ ଦୁଇପାଖେ ଦୁଇଟି ଆସନ—ଦୁଇ ବିବାଦୀୟ ଦେଶ ଲାଗି ଉଦ୍ଦିଷ୍ଟ । କାଉନ୍‌ସିଲ୍‌ର କାର୍ଯ୍ୟରେ ସାହାଯ୍ୟ କରିବା ଲାଗି

ସେମାନେ ନିମନ୍ତ୍ରିତ ହୋଇଥାନ୍ତି । ଉପଦେଷ୍ଟା ବା ସହକାରୀମାନେ ସଭ୍ୟମାନଙ୍କ ପୃଷ୍ଠଦେଶରେ ଆସନ ଗ୍ରହଣ କରିଥାନ୍ତି ।

ପ୍ରତ୍ୟେକ କାଉନ୍‌ସିଲ୍‌ ସଭ୍ୟଙ୍କର ଗୋଟିଏ ମାତ୍ର ଭୋଟ ଦେବାର ଅଧିକାର ଅଛି । ୧୧ ଜଣରୁ ସାତଜଣ ସଭ୍ୟ ସମ୍ମତ ହେଲେ ପ୍ରସ୍ତାବ ଗୃହୀତ ହୋଇଥାଏ । ପାଞ୍ଚଜଣ ସ୍ଥାୟୀ ସଭ୍ୟଙ୍କ ମଧ୍ୟରୁ କେହି ଅସମ୍ମତ ହେଲେ ସିଦ୍ଧାନ୍ତ ଗ୍ରହଣ କରାଯାଇ ପାରେନାହିଁ । ଏହାକୁ ଭେଟୋ ବଳରେ ଅସିଦ୍ଧ କରାଗଲା ବୋଲି କୁହାଯାଏ ।

ଶାନ୍ତିରକ୍ଷା ନିରାପତ୍ତା ପରିଷଦର ମୁଖ୍ୟ କାର୍ଯ୍ୟ । ପରିଷଦର ସିଦ୍ଧାନ୍ତ ବିନା ଦ୍ୱିଧାରେ ଗୃହୀତ ହୋଇଥାଏ । କାରଣ ଜାତିସଙ୍ଘର ସଭ୍ୟ ଦେଶମାନେ ସଙ୍କଳ୍ପରେ ଆବଦ୍ଧ ହୋଇଥାନ୍ତି । ଜରୁରୀ ଅବସ୍ଥାର ସମ୍ମୁଖୀନ ହେବା ଲାଗି ଆଶୁ ସିଦ୍ଧାନ୍ତ ଆବଶ୍ୟକ ହୋଇଥାଏ । ଅଶାନ୍ତି ଉପଦ୍ରବ ପୃଥିବୀରେ କେଉଁଠି ନା କେଉଁଠି ଘଟୁଛି । ତେଣୁ ସଭ୍ୟମାନେ ନିଷ୍ଠପୂର୍ବକରେ ପ୍ରାୟ ଉପସ୍ଥିତ ଥାନ୍ତି ଓ ପରିଷଦର ବୈଠକ ବାରମ୍ବାର ହୁଏ ।

ଦୁଇଟି ଦେଶ ମଧ୍ୟରେ ମନୋମାଳିନ୍ୟ ଘଟି ଅବସ୍ଥା ଗୁରୁତର ହେଲେ ନିଜେ ସେକ୍ରେଟେରୀ ଜେନେରାଲ କିମ୍ବା ଆସେମ୍ବ୍ଲିର ଯେ କେହି ସଭ୍ୟ ପରିଷଦର ଦୃଷ୍ଟି ଆକର୍ଷଣ କରିପାରନ୍ତି । ପରସ୍ପର ମଧ୍ୟରେ ଆଲୋଚନା ବା ମଧ୍ୟସ୍ଥ ଦ୍ୱାରା ପରିଷଦ ବିବାଦ ଦୂର କରିବାକୁ ଚେଷ୍ଟା କରେ । ଏହି ଉପାୟରେ ହଲାଣ୍ଡ ଓ ଇଣ୍ଡୋନେସିଆ ଯୁଦ୍ଧ, ସଂଯୁକ୍ତ ଆରବ ଓ ଇଜରାଏଲ ଯୁଦ୍ଧ, ଭାରତ ଓ ପାକିସ୍ଥାନ ଯୁଦ୍ଧ ଏଡ଼େଇ ଦିଆ ହୋଇଛି, ସାଇପ୍ରସରେ ଶାନ୍ତି ସ୍ଥାପନ କରାହୋଇଛି । ପୁଣି କୋରିଆ ଓ କଙ୍ଗୋକୁ ସୈନ୍ୟବାହିନୀ ପ୍ରେରଣ କରିବାକୁ ହୋଇଛି ।

ଯଦି ନିରାପତ୍ତା ପରିଷଦରେ କୌଣସି ବିଷୟରେ ମତାନୈକ୍ୟ ଉପସ୍ଥିତ ହୁଏ, ଜେନେରାଲ ଆସେମ୍ବ୍ଲିର ଏକ ସ୍ୱତନ୍ତ୍ର ବୈଠକ ଡକା ହୋଇ ଏହାର ସମାଧାନ କରାଯାଏ ।

ତାପରେ ଲିସା ଆମକୁ ସେକ୍ରେଟେରିଏଟ ସୌଧକୁ ନେଇଗଲେ । ଗୃକକ୍ଷରେ ପଶିବା ପୂର୍ବରୁ ପ୍ରତ୍ୟେକ କର୍ମୀକୁ ଶପଥ ନେବାକୁ ହୁଏ । ଏହାର ମର୍ମ—ନିଜ ଦେଶ ବା ଜାତି ପ୍ରତି ସ୍ୱତନ୍ତ୍ର ଆନୁଗତ୍ୟ ତ୍ୟାଗକରି ନିରପେକ୍ଷ ହେବାକୁ ହେବ; ଏକାନ୍ତ ବିଶ୍ୱସ୍ତ ରହି ଜାତିସଂଘର ମହାମାନ୍ୟ ଆଦର୍ଶକୁ କାର୍ଯ୍ୟରେ ପରିଣତ କରିବାକୁ ହେବ ।

ମୋଟ କର୍ମଚାରୀଙ୍କ ସଂଖ୍ୟା ୫୫୦୦; ଜାତି ସଂଘର ସଭ୍ୟଦେଶ ମାନଙ୍କରୁ କର୍ମୀ ବଛାଯାଇଥାନ୍ତି । ଏଥି ମଧ୍ୟରେ ଭାଷାତତ୍ତ୍ୱବିତ୍, ଅର୍ଥନୀତି ସମ୍ପାଦକ, ସମାଜବିଜ୍ଞାନୀ, ଆଇନଜ୍ଞ, ଗ୍ରନ୍ଥାଗାରିକ, ପରିସଂଖ୍ୟାନ ବିଶେଷଜ୍ଞ, ସାମ୍ବାଦିକ ଅଛନ୍ତି । ସେମାନେ ରିପୋର୍ଟ ସମ୍ପାଦନା କରନ୍ତି । ସମ୍ବାଦ ପ୍ରେରଣ କରନ୍ତି, ପୁସ୍ତକ ବା ପାମ୍ଫଲେଟ୍ ଛପାନ୍ତି । ବିଭିନ୍ନ ସଭାର ଆୟୋଜନ କରିଥାନ୍ତି । ସେକ୍ରେଟେରିଏଟ୍‌ର ମୁଖ୍ୟ ସେକ୍ରେଟେରୀ ଜେନେରାଲ୍ ।

ଆନ୍ତର୍ଜାତିକ ବାଣିଜ୍ୟ ବ୍ୟବସାୟର ବିକାଶ କିପରି ହୋଇପାରିବ, ଅନଗ୍ରସର ଦେଶକୁ ନାମ ମାତ୍ର ସୁଧରେ ବିଶ୍ୱବ୍ୟାଙ୍କ କିପରି ଋଣ ଯୋଗାଇ ପାରିବ, କ୍ଷୁଧା ଆଉ ଦାରିଦ୍ର୍ୟ ଦୂରକରି କିପରି ଜୀବନର ମାନ ବୃଦ୍ଧି କରାଯାଇ ପାରିବ, କୃଷି ଓ ଶିକ୍ଷା କ୍ଷେତ୍ରରେ କିପରି ବୈଜ୍ଞାନିକ ରୀତି ଅବଲମ୍ବିତ ହୋଇ ପାରିବ, ପୃଥିବୀରେ ସର୍ବତ୍ର ମନୁଷ୍ୟ କିପରି ତାର ମୌଳିକ ଅଧିକାର ଲାଭ କରିପାରିବ, ଜନସଂଖ୍ୟା କିପରି ନିୟନ୍ତ୍ରଣ କରାଯାଇ ପାରିବ, ଶିଶୁମାନଙ୍କର ସର୍ବାଙ୍ଗୀନ କଲ୍ୟାଣ ସାଧନ କରାଯାଇ ପାରିବ, ବିଷୟରେ ଜାତିସଂଘର ଯାବତୀୟ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ଲାଗି ସେକ୍ରେଟେରିଏଟ୍ ଚେଷ୍ଟା କରିଥାଏ ।

ତାପରେ ଆମେ ଡାଗ ହାମରସୋଲ୍‌ଡ ଲାଇବ୍ରେରୀରେ ପଶିଲୁ । ଏହି ସୌଧଟି ଧଳା ମାର୍ବଲ, କାଚ ଓ ଆଲୁମିନିଅମ୍‌ରେ ତିଆରି; ଏହାର ତିନି ମହଲା ଭୂମି ତଳେ, ବାକି ତିନିମହଲା ଭୂମି ଉପରେ । ଏଥିରେ ଦୁଇଶ ଲୋକ ବସିବା ଭଳି ଅଡ଼ିଟୋରିଅମ୍, ସିନେମା ସ୍କ୍ରିନ୍, ଏକକାଳୀନ ଭାଷାନ୍ତରୀକରଣର ଯନ୍ତ୍ରପାତି ରହିଛି; ପଠନାଳୟରେ ହଜାର

ହଜାର ପତ୍ର ପତ୍ରିକା ସୁସଜ୍ଜିତ ହୋଇ ରହିଅଛି; ଗୋଟିଏ ସ୍ୱତନ୍ତ୍ର ମାଇକ୍ରୋଫିଲ୍ମ ପାଠାଗାର ଅଛି । ଅଟ୍ଲାସ୍ ଲାଇବ୍ରେରୀରେ ୬°ହଜାର ମାନଚିତ୍ର ସଂଗୃହୀତ ହୋଇ ରହିଛି । ରାଜନୈତିକ, ଅର୍ଥନୈତିକ, ସାମାଜିକ, ଭୌଗୋଳିକ ନୃତାତ୍ତ୍ୱିକ ଓ ଏପରି ବହୁ ସମସ୍ୟା ସମ୍ବଳିତ ଅଢ଼େଇ ଲକ୍ଷ ପୁସ୍ତକ ଓ ଲିଗ ଅଫ୍ ନେସନ୍ସ୍‌ର ରେକର୍ଡ, ବହୁ ଗେଜେଟିଅର୍, ଗାଇଡ୍ ସବୁ ସଜ୍ଜିତ ହୋଇ ରହିଅଛି । ୩୦୦ଟି ଭାଷାଭାଷୀ ଲୋକେ ଆଧୁନିକ ଢଙ୍ଗରେ ଅଧ୍ୟୟନ କରିବାର ସମସ୍ତ ସୁବ୍ୟବସ୍ଥା ଏଠି ହୋଇଅଛି ।

ଟିଉନିସିଆର, ମରକୋର ରଙ୍ଗୀନ୍ ମୋଜାଇକ, ପେରୁର ପେଣ୍ଟିଂ, ଜାପାନର ଘଣ୍ଟି, ଇଣ୍ଡୋନେସିଆ ଶାଟିନ୍ କାଠରେ ନିର୍ମିତ ଶାନ୍ତିମୂର୍ତ୍ତି, ବ୍ରାଜିଲ ମୁରାଲ ପେଣ୍ଟିଂ, ଯୁଗୋସ୍ଲୋଭିଆର ଅଶ୍ୱାରୋହିଣୀ ଶାନ୍ତିଦେବୀ, ଋଷିଆର କୃଷକ, ଆଦି ବହୁ ଦେଶର ସାଂସ୍କୃତିକ ଦାନରେ ଜାତିସଂଘ ନିକେତନ ମନୋହର; ଏଣୁ ଐକ୍ୟର ସର୍ବଶ୍ରେଷ୍ଠ ପ୍ରତୀକ ରୂପେ ଏହା ଗୌରବୋଜ୍ଜ୍ୱଳ । ପୁଷ୍କରିଣୀଟି ଭର୍ଜିନ ଦ୍ୱୀପ ଓ ଯୁକ୍ତରାଷ୍ଟ୍ରଙ୍କ ଶିଶୁମାନଙ୍କ ଦାନରେ ଖୋଦିତ ।

ତୃଣ ପ୍ରାନ୍ତରରେ ସିକାମୋର୍, ହନିଲୋକୁଷ୍ଟ, ସ୍ୱିଟ ଗମ, ପିନ୍ଓକ ଓ ହାଥର୍ଣ୍ଣ ଗଛ; ଗୋଲାପ, ଚେରି, ଓ ଡାଫୋଡ଼ିଲ—ପୁଷ୍ପ ଶ୍ରୀ ମଧ୍ୟରେ ଲମା ଶେଷ ହସ ହସି ଆମକୁ ବିଦାୟ ଦେଲି—ଏ ହାସ୍ୟ କୌଣସି ଦେଶ ବା ଜାତିର ନୁହେଁ, ଆନ୍ତର୍ଜାତିକ; ମାଧୁରୀରେ ମନୋମୁଗ୍ଧକର ମହିମାରେ ମହୀୟସୀ ।

## ରକ୍‌ଫେଲର୍ ସେଣ୍ଟର୍—

ଏହା ଆମେରିକାର ବୃହତ୍ତମ ଘରୋଇ ବ୍ୟବସାୟ ପ୍ରତିଷ୍ଠାନ । ଜନ୍ ଡି ରକ୍‌ଫେଲର୍ ବ୍ୟବସାୟୀଙ୍କ ମଧ୍ୟରେ ରାଜଚକ୍ରବର୍ତ୍ତୀ; ଚଞ୍ଚଳା ଏହି ଗୃହରେ ଅଚଳା ହୋଇ ରହିଛନ୍ତି । ଏହି ପ୍ରାସାଦ ବିନୋଦନର କେନ୍ଦ୍ରସ୍ଥଳ—ରେଡିଓ, ଟେଲିଭିଜନ୍, ଥିଏଟର ଦେଖିବା ଲାଗି ଏଠି ବହୁ

ଜନସମାଗମ ହୋଇଥାଏ । ଟିକେଟ୍ କରିବାକୁ ମଣ୍ଡ । ବୁଲାଇ ଦେଖାଇବାକୁ ଗାଇଡ୍ ସବୁ ଅଛନ୍ତି

'ଗ୍ୟାସ୍' ବ୍ୟବସାୟ କରି ରକ୍‌ଫେଲର୍ ଧନୀକୁଳର ମୁକୁଟମଣି ହୋଇଛନ୍ତି । ତା ଛଡ଼ା ସେ ଯୁକ୍ତରାଷ୍ଟ୍ରର ରେଲ୍‌ୱେ, ରାଜପଥ ଓ ସେତୁ ନିର୍ମାଣ କରନ୍ତି; ପୋଲମାନଙ୍କରେ ହାଇଓ୍ୱେ‌ଟୋଲ୍ ଆଦାୟର ବ୍ୟବସ୍ଥା ରହିଛି । ସବୁଗୁଡ଼ିକ ବ୍ୟବସାୟୀଙ୍କ ହାତରେ ଥିଲେ ବି ରାସ୍ତାଘାଟ ନିର୍ମାଣ ବା ପରିଚାଳନାରେ କୌଣସି ତ୍ରୁଟି ଘଟେନାହିଁ ।

ଏଠି ରେକ୍‌ଫେଲ୍‌ରଙ୍କର ୧୭ ଗୋଟି ସୌଧ ରହିଅଛି— ସାଢ଼େ ବାଇଶ ଏକର ଜମିରେ ଏ ସମସ୍ତ ନିର୍ମିତ ହୋଇଛି—ନଗର ଭିତରେ ନଗର ପରି । ଏଥି ମଧ୍ୟରେ ଉଚ୍ଚତମ ସୌଧର ଉଚ୍ଚତା ସତୁରି ମହଲା । ସେଥିରେ ଦ୍ରୁତତମ ଲିଫ୍ଟ ଲାଗିଛି, ସେକେଣ୍ଡକେ ଦୁଇମହଲା ଉଠେ, ୬୫ ମହଲା ଉଠିବାକୁ ୩୭ ସେକେଣ୍ଡ ଲାଗେ । ଏସକାଇଲେଟରରେ ଭୂଇଁ ତଳକୁ ଯାଇଁ ରକ୍‌ଫେଲର୍ ପଥସବୁ ବନ୍ଦ ହେବାର ଦେଖିଲି । ଅଗଣିତ ଟ୍ରକ ଛୁଟିଛି । ଉପରୁ କିଛି ଜଣାଯାଏ ନାହିଁ, ନାନା ବ୍ୟବସାୟ ଚାଲିଥାଏ ପାତାଳ ପୁରେ ।

ଉପରକୁ ଉଠି ଦେଖିଲି ଆଟଲାସ୍‌ଙ୍କର ସାତଟନ୍ ଓଜନର ଲୌହ ମୂର୍ତ୍ତି; କାନ୍ଧରେ ତାଙ୍କର ଶୂନ୍ୟଗର୍ଭା ପୃଥିବୀ; ଗୃହ ସାମ୍ନାରେ ହର୍‌କୁଲସ୍‌ଙ୍କର ଏକ ବିଶାଳ ମୂର୍ତ୍ତି ରହିଅଛି—କାନ୍ଥସବୁ ଫ୍ରେସ୍‌କୋଭରି—ଅତୀତ ଓ ବର୍ତ୍ତମାନ ମାନବର ନାନା ଦୁରବସ୍ଥା ସହିତ ସଂଗ୍ରାମ, ଭବିଷ୍ୟତର ସୁଖୀ ନରନାରୀଙ୍କ ଆନନ୍ଦୋଜ୍ଜ୍ୱଳ ଶ୍ରୀ ଏଥିରେ ରୂପାୟିତ । ବୈଜ୍ଞାନିକ ଅଗ୍ରଗତି ଓ ଶିଳ୍ପସମୃଦ୍ଧି ମାନବକୁ ଯାବତୀୟ ସୁଖ ଆଣି ଦେଇଛି । ଏଇ ଫ୍ରେସ୍‌କୋସବୁ ତାର ପ୍ରତୀକ ରୂପେ ଅଙ୍କିତ । ଗୃହମାନଙ୍କରେ ବହୁ ମୂର୍ତ୍ତି, ବହୁ ଚିତ୍ର, ବହୁ ଶିଳ୍ପ ଦ୍ରବ୍ୟର ଉଜ୍ଜ୍ୱଳ ପ୍ରଦର୍ଶନୀ —କେଉଁଠି ଥିଏଟର, କେଉଁଠି ସିନେମା ଚାଲିଛି, କେଉଁଠି ସଙ୍ଗୀତ ଆସର ଜମିଛି । ବିପଣି ଓ ରେଷ୍ଟୁରାଣ୍ଟର ଚାକଚକ୍ୟ ଅପୂର୍ବ ।

ପ୍ଲଟ ଉପରେ ତୃଣ ପ୍ରାନ୍ତର, ନାନା ପୁଷ୍ପୋଦ୍ୟାନରେ ମନୋହର । ପ୍ରାଙ୍ଗଣରେ ଗ୍ରୀକ୍ ପ୍ରମେଥିଉସଙ୍କ ମୂର୍ତ୍ତି, ସେ ମର୍ତ୍ତ୍ୟବାସୀଙ୍କ ଲାଗି ସ୍ୱର୍ଗରୁ ଅଗ୍ନି ହରଣ କରି ଆଣିଥିଲେ; ସେଥିଲାଗି କକେସସ ପାହାଡ଼ରେ ତାଙ୍କୁ ଅନନ୍ତକାଳ ବନ୍ଦୀ କରି ରଖାଯାଇଥିବାର କିମ୍ବଦନ୍ତୀ ପ୍ରଚଳିତ ।

ପ୍ରାଙ୍ଗଣରେ ଗୋଟିଏ 'ପୁଲ୍'; କୃତ୍ରିମ ପ୍ରପାତ ପଡ଼ୁଛି, ଫୁଆରା ଛୁଟୁଛି—'ପୁଲ୍' ଚତୁର୍ଦ୍ଦିଗରେ ଉଦ୍ୟାନ, ନାନା ରଙ୍ଗର ପୁଷ୍ପ ଭରି । ଜାତିସଂଘର ପତାକାଗୁଡ଼ିକ ଉଡ଼ୁଛି, ନାନା ରଙ୍ଗର ଛତା ଟଣା ହୋଇଛି । ତା ତଳେ ବସି ଲୋକେ ପାନ ଭୋଜନ କରୁଛନ୍ତି । ଶୀତଦିନେ ଏଇ ପୁଲ୍ ଜମାଟ ବାନ୍ଧେ, ଯା ଉପରେ ଲୋକେ ସ୍କେଟିଂ କରନ୍ତି; ପୁଲ କୂଳର ସୁସଜ୍ଜିତ ରେଷ୍ଟୋରାଣ୍ଟ ବିଶେଷ ଚିତ୍ତାକର୍ଷକ ହୁଏ । ଆମ ଗାଇଡ଼ ମିସ ଟୁଡ଼ୁ 'କୋରିଆ' ଦେଶର ଗୋଟିଏ ଯୁବତୀ, ଭାରତୀୟଙ୍କ ପରି ମୁଣ୍ଡରେ ଲମ୍ବ ବାଳ, ବେଣୀ କରି ଜୁଡ଼ା ବାନ୍ଧିଲା ପରି ଗୁଡ଼ାଇଛି । କାନରେ ସୁନାର ଦୁଲ୍, ବାଁ ହାତରେ ପଟେ ସୁନାଖଡ଼ୁ, ଡାହାଣ ଆଙ୍ଗୁଠିରେ ସୁନା ମୁଦି । ସରୁ ଓଠ ଦିଫାଳରେ ସ୍ୱାଭାବିକ ରକ୍ତିମା, ଲିପଷ୍ଟିକ୍ ଲେଡ଼ବାର ପ୍ରୌଢ଼ତା ଆସିନାହିଁ ତାର । ଭ୍ରୂଲତା ରେଖାଙ୍କିତ, କଟାକ୍ଷରେ ମୁହୂର୍ମୁହୁ ପରିବର୍ତ୍ତିତ ଭଙ୍ଗୀ ଫୁଟାଇବାର କୌଶଳ ଜଣା । ସାଧାରଣ ଶ୍ରୀରେ ଫୁଲପଣ ଅନେକଟା ମିଶିଛି । ରାଇଡ଼୍ ତ ନୁହନ୍ତି, ଜଣେ ଅଭିନେତ୍ରୀ । କିନ୍ତୁ ନେତ୍ରୀଙ୍କର ଭାଷଣ ଦିଅନ୍ତି—well, ladies and gentle men; ଦର୍ଶକମାନଙ୍କ ପ୍ରତି ଦୃଷ୍ଟି ଏ ପାଖରୁ ସେ ପାଖକୁ ପ୍ରସାରିତ ହୋଇଯାଏ । ପ୍ରତ୍ୟେକ ଇଂରେଜୀ ଶବ୍ଦ ଉପରେ ଜୋର୍‌ଦେଇ ବକ୍ତୃତା ଦିଅନ୍ତି, କାଳେ ଇଂରେଜୀ ଭଲ ଜାଣନ୍ତି ନାହିଁ ବୋଲି ଶ୍ରୋତାଶ୍ରୋତ୍ରୀମାନଙ୍କର ଧାରଣା ହେବ !

ମିସ୍ ଆମକୁ ମହଲକୁ ମହଲ ଉଠାଇ ନେଇ ପ୍ରଦର୍ଶିତ ଶିଳ୍ପ ଦ୍ରବ୍ୟସମ୍ଭାର, ଛବି, ମୂର୍ତ୍ତି ଏବୁ ଦେଖାଇ ବୁଝାଇ ଲାଗିଲେ । ତାପରେ ସବା ଉପର ମହଲରେ ଆମକୁ ନିଉୟର୍କର ଉହୁଦାସନ୍ନ ରୂପଶ୍ରୀ ଦେଖିବାକୁ ଛାଡ଼ିଦେଇ 'ବାଇ, ବାଇ' କହି ବିଦାୟ ନେଲେ ।

# ରେଡ଼ିଓ, ଟେଲିଭିଜନ୍

ରେଡ଼ିଓ ଓ ଟେଲିଭିଜନ ଯନ୍ତ୍ରପାତି ଦେଖିବା ଲାଗି ଏକ ଡଲାର ମଞ୍ଚାଳଣ ସେଣ୍ଟରର ସ୍ୱତନ୍ତ୍ର ଟିକେଟ କରିବାକୁ ହେଲା । ଏସବୁ ଦେଖାଇବା ଲାଗି ଜଣେ ଗାଇଡ଼ ମଧ୍ୟ ଦିଆଗଲେ—ସେ ଆମକୁ ବଡ଼ ବଡ଼ ଟେଲିଭିଜନ କାମେରା, ସେଥିଲାଗି ନାଟକ ପ୍ରସ୍ତୁତ କରୁଥିବା ଅଭିନେତା ଅଭିନେତ୍ରୀ-ମାନଙ୍କୁ ଦେଖାଇଲେ । ଏ କାମେରାରେ ଏକାବେଳକେ ସାଧାରଣ ଓ ରଙ୍ଗୀନ୍ ଛବି ଉଠାଯାଏ । ବର୍ଷା, ଝଡ଼, ଅଶ୍ୱଧାବନ, ବ୍ୟୋମଯାନ ଯାତାୟାତର ଶବ୍ଦ ସୃଷ୍ଟି କରୁଥିବା ଯନ୍ତ୍ରସବୁ ବୁଲି ଦେଖିଲି । ଶେଷରେ ଗାଇଡ୍ କାମେରା ସାମ୍ନାରେ ଛିଡ଼ା ହେବା ଲାଗି ମୋତେ ଅନୁରୋଧ କଲେ, ପଚାରିଲେ—ଆପଣ କେଉଁ ଦେଶରୁ ଆସିଛନ୍ତି ?

"ଭାରତରୁ"

"ଭାରତରେ ଟେଲିଭିଜନ୍ ଅଛି ?"

"ଚାଲୁ କରିବାର ଆୟୋଜନ ହେଉଛି ।"

"କିଏ କରୁଛନ୍ତି ?"

"ସରକାର"

"ଘରୋଇ ଚେଷ୍ଟା ହେଉ ନାହିଁ ? ଏଠି ତ ଅଧିକାଂଶ ମଉଜ ମଜ୍ଲିସ୍‌ର ଅନୁଷ୍ଠାନ ଘରୋଇ ।"

କାମେରା ପାଖରେ ଗୋଟିଏ ଟେଲିଭିଜନ ଯନ୍ତ୍ର; ସେଥିରେ ମୋ ଛବି ପ୍ରତିଫଳିତ ହେବାର ଦେଖୁଥାଏ; କାମେରାର ଅଳ୍ପ ଦୂରରେ ବହୁ ଟେଲିଭିଜନ୍ ଯନ୍ତ୍ର; ସେଥିରେ ବି ମୋ ଛବି ପ୍ରତିଫଳିତ । ସଙ୍ଗୀ ଯାତ୍ରୀମାନେ ମୋ ଛବି ଦେଖୁଥାନ୍ତି ଓ ଆମ ଦୁହିଙ୍କର ସଳାପ ଶୁଣୁଥାନ୍ତି ।

ମୋ ପରେ ଜଣେ ଯୁବତୀ କାମେରା ସାମ୍ନାରେ ଛିଡ଼ା ହେଲା । ଗାଇଡ୍ ପଚାରିଲା—

'ତୁମେ ତ ଖୁବ୍ ସୁନ୍ଦର, ଟେଲିଭିଜନ୍ ଆର୍ଟିଷ୍ଟ ହେବାକୁ ଇଚ୍ଛା କରୁଛ କି ?''

'ମୁଁ ବିବାହିତ ।'

'ଏଠି ଜଣେ ଖାଲି ମିସ୍ ଅଛନ୍ତି, ମିସେସ୍ ନାହାନ୍ତି ?'

'ମୁଁ ଏଭଳି ଅନୁଷ୍ଠାନରେ ଯୋଗ ଦିଏଁ, ମୋ ସ୍ୱାମୀଙ୍କ ଇଚ୍ଛା ନୁହେଁ ।'

ଏତିକି କହି ସଚେତନ ଜିଭ କାମୁଡ଼ି ପକାଇ ମେ ପଳାଇ ଆସିଲି । କାଳେ କିଏ ଶୁଣିଥିବ, ସ୍ୱାମୀଙ୍କ ଆଗରେ କହିଦେବ !

୧୯୩୦ ଖ୍ରୀଷ୍ଟାବ୍ଦ ବେଳକୁ ଏଠି ଅଳ୍ପ କେତୋଟି କୁଟୀର ଥିଲା; ଆଜି ରକ୍‌ଫେଲର୍ ନଗର ଦଣ୍ଡାୟମାନ । ସେଇ ନଗରରେ 'ଟାଇମ୍' ଓ 'ଲାଇଫ୍' ମାଗାଜିନ୍‌ର ଅଫିସ୍, ରେଡିଓ ମ୍ୟୁଜିକ୍ ହଲ୍, ମନି ମ୍ୟୁଜିଅମ୍, ବ୍ରିଟିସ୍ ଇଣ୍ଟେଶନ୍ୟାଲ୍ ବିଲ୍ଡିଂ, ଇସ୍‌ସୋ ସୌଧ, ନାନା ଶିଳ୍ପ ଓ ବୈଜ୍ଞାନିକ ସାମଗ୍ରୀର ବର୍ଣ୍ଣାଢ଼୍ୟ ପ୍ରଦର୍ଶନୀ । ଏଇ ନଗର ହୋଇଛି ଆମେରିକାର ଚିତ୍ତବିନୋଦନର ରାଜଧାନୀ । ଜନ୍ ଡି. ରକ୍‌ଫେଲର୍ କେବଳ ଧନକୁବେର ନୁହନ୍ତି, ଜଣେ ଦାନବୀର ହିସାବରେ ସେ ଜଗତରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତାଙ୍କ ଦୟାରୁ ଶତ ଶତ ବିଦେଶୀ ଛାତ୍ର ଆମେରିକା ଆସି ସୁଶିକ୍ଷିତ ହୋଇ ଯାଇଛନ୍ତି— ଜଗତର ବହୁ କଲ୍ୟାଣକର ଅନୁଷ୍ଠାନ ତାଙ୍କ ଦାନରେ ଚାଲିଛି । ସେ ହୋଇଛନ୍ତି ବିପୁଳ ଧନସମ୍ପତ୍ତିର ଜଣେ ଟ୍ରଷ୍ଟି ମାତ୍ର । 'ଦେଇଥିଲେ ପାଇ'ରେ ବିଶ୍ୱାସ କରନ୍ତୁ ନ କରନ୍ତୁ, 'ପାଇଥିଲେ ଦେଇ' ଦୀକ୍ଷା ସେ ପାଳନ କରି ଆସୁଛନ୍ତି । ଦାନରେ ହିଁ ଧନର ସାର୍ଥକତା—ସତ୍‌କାର୍ଯ୍ୟ ଲାଗି ମୁକ୍ତ ହସ୍ତରେ ପୃଥିବୀର କେତେ ଜଣ ବ୍ୟକ୍ତି ତାଙ୍କପରି ଦାନ କରନ୍ତି ?

## ବିଜ୍ଞାନ ଓ ପ୍ରାକୃତିକ ଇତିହାସ (ଯାଦୁଘର, ନିଉୟର୍କ)

କେଉଁ କଳାର କାରିଗରରେ ଏତେ ପ୍ରାକୃତିକ ଚିତ୍ର ଅଙ୍କିତ ? କେଉଁ କବି ବା ବିଶ୍ୱପ୍ରକୃତିର ସମଗ୍ର ରୂପ କଳନା କରିପାରିଛି ? ପ୍ରକୃତି ବିଷୟରେ କେଉଁ କବିର ଧାରଣା ଏତେ ସ୍ପଷ୍ଟ ? କେଉଁ ରୂପକାରର ତୂଳୀରେ ଧରା ଦେଇଛି ଊଷା ସନ୍ଧ୍ୟାର, ପୂର୍ବାହ୍ନ ଅପରାହ୍ନର ଜୀବନ୍ତ ଶ୍ରୀ ଏତେ ନିବିଡ଼ଭାବରେ ? ଇତିହାସ ନୁହେଁ, ବିଜ୍ଞାନ ନୁହେଁ, ଏ ଗୋଟିଏ କାବ୍ୟ ଓ କଳାର ମନ୍ଦିର । ପୁଣି କାବ୍ୟ କଳାର କଳ୍ପଭୂମିର ବହୁ ଭାବଧାରଣା ସ୍ଥୂଳ ରୂପରେ ଦେଖା ଦେଇଛି । ଏଥିରେ ପର୍ବତ-ଶ୍ରେଣୀ, ଘନାରଣ୍ୟ, ପାହାଡ଼ ପାର୍ଶ୍ୱବର୍ତ୍ତୀ ହ୍ରଦ, ଉର୍ମିସଂକୁଳ ପର୍ବତ, ଗୋଧୂଳି ଓ ଚନ୍ଦ୍ରିକାର ରୂପ ରଙ୍ଗରେ ଉଜ୍ଜ୍ୱଳ ଦ୍ୱୀପ, ପ୍ରାନ୍ତରର ଜେବ୍ରାଜିରାଫ, ତୃଣବନର ସିଂହ; ଅରଣ୍ୟର ଗରିଲା, ମରୁଭୂମିର ଓଟପକ୍ଷୀ, ଜଳଚାରୀ ବରାହ; ହରିଣ ଉପରକୁ କୁଦା ମାରୁଥିବା ଚିତା-ବାଘ ପ୍ରଭୃତି ଯେତେ ଦେଖିଲେ ବି ନୂତନ ଦିଶେ । ମୃତ୍ତିକା, ଜଳ, ପାଷାଣ, ବୃକ୍ଷଲତା, ରଶ୍ମି, ଜୋତ୍ସ୍ନା ପ୍ରାକୃତିକ ରୂପ ଓ ରଙ୍ଗରେ ମୂର୍ତ୍ତ; ବାସ୍ତବ ବୋଲି ପ୍ରତୀତ ଜନ୍ମେ ।

ଶତ ଶତ ଚୂନା ଚୂନା ବରଫ ଅନାଡ଼ ହୋଇ ପଡ଼ିଛି ପାଇନ୍ ବନର ପଦେ ପଦେ; ତା ମଧ୍ୟରେ ବୁଲୁଛି ଆମେରିକାର ଭଲ୍ଲୁକ, ନିରୁଦ୍‌ବିଗ୍ନ । ପକ୍ଷୀମାନେ ନୀଡ଼ ନିର୍ମାଣ କରୁଛନ୍ତି, ସମବାୟ ସ୍ୱତ୍ୱରେ; ଏ ଗୋଟିଏ ପକ୍ଷୀର ଗ୍ରାମ; ଡାଳଗଦା ଭିତରେ ଗୋଟିଏ ଗୋଟିଏ ଗାତ, ସେସବୁ ପକ୍ଷୀଘର । କେଉଁ ପାହାଡ଼ ଗହ୍ୱରରେ ପକ୍ଷୀ ଡ଼ିମ୍ବ ଉଷୁମାଉଛନ୍ତି, ସମୁଦ୍ରରୁ ଆହାର ସଂଗ୍ରହ କରି ଆଣୁଛନ୍ତି, ଲହରୀ-ଘେରା ପାହାଡ଼ୀ ଦ୍ୱୀପର ପକ୍ଷୀସବୁ । ଶୀତକାଳରେ କାନେଡ଼ାର ପକ୍ଷୀଙ୍କ ଯାଯାବର ଯାତ୍ରା; ଜର୍ଜିଆର ପେଙ୍ଗୁଇନ୍, ଆମାଜନ୍‌ର ଆଲ୍‌ବାଟ୍ରସ୍, ଅଷ୍ଟ୍ରେଲିଆର ଏମୁ, ଲିବିଆର ଓଟପକ୍ଷୀ, ପିକ, ସାମୋଆ ଓ ଗ୍ରେଟ୍ ବ ରିଅର୍‌ରିଫର, ବେରିଂ ପ୍ରଣାଳୀର ଅଚିହ୍ନା ପକ୍ଷୀସବୁ, ତୁନ୍ଦ୍ରାର ଶିଉଳିଭକ୍ଷୀ ଭଲ୍ଲୁକ, ସୂର୍ଯ୍ୟୋଦୟ କାଳରେ ପାହାଡ଼ ଶୃଙ୍ଗରେ ବୀରଦର୍ପରେ ଦଣ୍ଡାୟମାନ ବ୍ୟାଘ୍ର, ଆଫ୍ରିକା ଓ ଭାରତର ହସ୍ତୀ, ଆମେରିକାର

ବାଇସନ୍, ହିପୋପୋଟାମସର ଜଳହସ୍ତୀ, ଅଷ୍ଟ୍ରେଲିଆର କଙ୍ଗାରୁ; ଦକ୍ଷିଣ ଆମେରିକାର ବାଘକୁ ବିସ୍ମୟ ବିସ୍ଫାରିତ ନେତ୍ରରେ ଦେଖିଗଲି । ଘଣ୍ଟାକ ମଧ୍ୟରେ ସତେ ଯେପରି ପୃଥିବୀ ପରିକ୍ରମା ହୋଇଗଲା ମୋର ।

ତା ପରେ ପଶିଲି ଘନଘୋର ଅତୀତ ଭିତରେ, ଏକ ଭୀଷଣ ଶ୍ମଶାନ, ଅତିକାୟ କଙ୍କାଳର—ବ୍ରୁଣ୍ଟୋସରସ୍, ଡିନୋସରସ୍, ଷ୍ଟେଗୋସରସ୍, କାମ୍ପଟୋସରସ୍; ଲକ୍ଷ ଲକ୍ଷ ବର୍ଷ ମାଟି ତଳେ ରହି ଏବେ ପୃଥିବୀ ପୃଷ୍ଠକୁ ଆସିଛନ୍ତି, ଏଇ ରୂପରେ । ପଥର ଉପରେ ପଡ଼ିଥିବା ଯେମାନଙ୍କ ପାଦଚିହ୍ନକୁ କ୍ଷୟକାରୀ କାଳ ଲିଭାଇ ପାରିନାହିଁ । ଡିନୋସରସ୍ ଫସିଲ ହୋଇଯାଇଛି । ଅତିକାୟ ଜୀବଜନ୍ତୁଙ୍କର ଖଣ୍ଡ ଖଣ୍ଡ ଅସ୍ଥି—ଅତୀତର କଙ୍କାଳରେ ଭରି ଅଧା କିଲୋମିଟର ଲମ୍ବ ହଲସବୁ ଭୀଷଣ, ବିକଟ ।

ତାପରେ ଧାତୁ ରାଜ୍ୟରେ ପଶିଲି—ଆଟମ୍ ବୋମା ଲାଗି ବ୍ୟବହୃତ ବାଲୁକା, ଲୌହ, ତାମ୍ର, ସ୍ୱର୍ଣ୍ଣ; ରୌପ୍ୟ, କ୍ରୋମାଇଟ୍, ପ୍ରଭୃତିର ମୁଦ୍ରାସବୁ, ଉଲ୍‌କା ଓ ଫସିଲସବୁ; 'ଭାରତର ନକ୍ଷତ୍ର'. 'ବ୍ରୁଟୋପାଜ', 'ଭାଟିକାନ୍ କାମେଓ', ୬୩୨ କାରେଟ୍ ଓଜନର 'ପାଟ୍ରିସିଆ' ପ୍ରଭୃତି ବିବିଧ ଅମୂଲ୍ୟ ରତ୍ନର ଉଜ୍ଜ୍ୱଳ ଜ୍ୟୋତି ଦେଖି ଆଖି ଝଲସି ହୋଇଗଲା ।

ଏହି ଯାଦୁଘରଟି ୨୫ ଏକର ଜାଗାରେ ଅବସ୍ଥିତ; ଏଥିରେ ୫୮ଟି ବଡ଼ ବଡ଼ ହଲ୍‌ରେ ପ୍ରାକୃତିକ ପରିବେଶରେ ମୃତ ଜୀବଜନ୍ତୁଙ୍କୁ ରଖା ଯାଇଛି । ଚିଡ଼ିଆଖାନାର ଜୀବଜନ୍ତୁଙ୍କ ଅପେକ୍ଷା ସେମାନେ ଅଧିକ ପ୍ରାକୃତିକ ଦେଖାଯାନ୍ତି । ଯୁକ୍ତରାଷ୍ଟ୍ରର ସଭାପତି ଥିଓଡର୍ ରୁଜ୍‌ଭେଲ୍‌ଟଙ୍କ (୧୯୦୧—୧୯୦୯) ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଏହି ଯାଦୁଘରଟି ନିର୍ମିତ ହୋଇଥିଲା । ଯାଦୁଘର ସାମ୍ନାରେ ଅଶ୍ୱାରୋହୀ ରୁଜ୍‌ଭେଲଟଙ୍କ ମୂର୍ତ୍ତି, କକ୍ଷର ଦୂରରେ ପାହାଡ଼, ଅରଣ୍ୟ; ମନକୁ ଅପୂର୍ବ ଭାବରେ ହିଲ୍ଲୋଳିତ କରିଦିଏ—ଯୁଗ ଯୁଗବ୍ୟାପୀ ମନୁଷ୍ୟର ଜୀବନ ସଂଗ୍ରାମ ଏହି ଯାଦୁଘରେ ରୂପାୟିତ ।

# କଲମ୍ବିଆ ବିଶ୍ୱବିଦ୍ୟାଳୟ

ସାଥିରେ ଆମର ନିକୋଲାସ୍, କଲମ୍ବିୟା ବିଶ୍ୱବିଦ୍ୟାଳୟର ଅଣ୍ଡର୍ ଗ୍ରାଜ୍ୟୁଏଟ୍ ଛାତ୍ର, ଡାକ୍ତର ବର୍ମନଙ୍କ ପାଖ ପଡ଼ୋଶୀ । ଜୀବନ ଅର୍ଥ ସଂଗ୍ରାମ ବୋଲି ସେ ବୁଝେ । ଚାକିରି କରେ, ପାଠ ପଢ଼େ । ତା ମନରେ ଉପନ୍ୟାସ ନାହିଁ, କଥା'ରୁ କାବ୍ୟର ଆସ୍ୱାଦ ମଧ୍ୟ ପାଇଲି ନାହିଁ । ଜୀବନର ଯେ କୌଣସି ଜଟିଳ ସମସ୍ୟାର ସମ୍ମୁଖୀନ ହେବାଲାଗି ସେ ଯେପରି କି ପ୍ରସ୍ତୁତ, ମନେ ହେଲା ।

ସେ ଆଜି ଆମର ଗାଇଡ୍; ଗ୍ରୀଷ୍ମ ଛୁଟି । ବିଶ୍ୱବିଦ୍ୟାଳୟ ତ ବନ୍ଦ । କଣ ଦେଖିବୁ ? ପ୍ରାଙ୍ଗଣରେ ବୁଲିବୁଲି 'ଆଲ୍ମା ମେଟର୍'ଙ୍କ ମୂର୍ତ୍ତି ପାଖେ ପହଞ୍ଚିଲୁ । ଆମର ଯେପରି କାମଧେନୁ, ଏଠି ସେହିପରି ଜନନୀ, ଦେବୀ ଆଲ୍ମା ମେଟର୍—ସେ ଅନ୍ତରର ମହତ୍ତ୍ୱ ବାସନା ଚରିତାର୍ଥ କରନ୍ତି । ଶିକ୍ଷାନୁଷ୍ଠାନକୁ ଆଲ୍ମା ମେଟର୍ କୁହାଯାଏ, କାରଣ ସେ ସୁପ୍ତ ଶକ୍ତି ଜାଗ୍ରତ କରେ, ଉଚ୍ଚାକାଙ୍କ୍ଷା ଚରିତାର୍ଥ କରେ, ଗୋଟିଏ ଅସଂସ୍କୃତ ପ୍ରାଣୀକୁ ମହନୀୟ ମନୁଷ୍ୟ କରି ଗଢ଼େ ।

ଇଂଲଣ୍ଡର ରାଜା ଦ୍ୱିତୀୟ ଜର୍ଜଙ୍କର ଗୋଟିଏ ଗ୍ରାଣ୍ଟରେ ନିଉୟର୍କରେ 'କିଙ୍ଗ୍ସ୍ କଲେଜ୍' ଗଢ଼ା ହୋଇଥିଲା । ଆମେରିକାନ୍ ବିପ୍ଳବ ପରେ କଲମ୍ବିୟା କଲେଜ ନାମରେ ଏହା ପରିଚିତ ହେଲା । ତାପରେ ୧୮୯୦ ଖ୍ରୀଷ୍ଟାବ୍ଦରେ ଏହାକୁ ଭିତ୍ତି କରି କଲମ୍ବିୟା ବିଶ୍ୱବିଦ୍ୟାଳୟ ଗଠିତ ହେଲା । ଏବେ ଏହା ବିପୁଳ ଆକାର ଧାରଣ କରିଛି; ଏଥିରେ ବାର୍ଷିକ ସାତ କୋଟି ଡଲାର୍ ବ୍ୟୟିତ ହୁଏ । ଏହାର ଅଧ୍ୟାପକ ସଂଖ୍ୟା ୪୪୦୦, ଛାତ୍ରଛାତ୍ରୀ ସଂଖ୍ୟା ୩୨ ହଜାର ।

ବିଶ୍ୱବିଦ୍ୟାଳୟ ହତା ମଧ୍ୟରେ ଷ୍ଟେସନ । ଛାତ୍ରଛାତ୍ରୀମାନେ ଭୂଇଁ-ତଳ ରେଲ୍ଗାଡ଼ିରେ ନିଉୟର୍କର ଯେ କୌଣସି ଅଞ୍ଚଳକୁ ଯାଇପାରନ୍ତି । ଭୂଇଁ ତଳେ କୁସ୍ତି କସରତର ବ୍ୟବସ୍ଥା ରହିଛି ଓ ଗୋଟିଏ ସୁଇମିଂ ପୁଲ୍ ଅଛି । ଆକାରରେ ଏହି ବିଶ୍ୱବିଦ୍ୟାଳୟର ପାଠାଗାର ପୃଥିବୀରେ ଦ୍ୱିତୀୟ

ସ୍ଥାନ ଅଧିକାର କରିଅଛି । ଏଥିରେ ୩୭ ଲକ୍ଷ ବହି ଅଛି; ତାଛଡ଼ା ବହୁ ଦୁଷ୍ପ୍ରାପ୍ୟ ପୁସ୍ତକ ଓ ପାଣ୍ଡୁଲିପିକୁ ମାଇକ୍ରୋ ଫିଲ୍ମ କରି ରଖାଯାଇଛି ।

କମ୍ପ୍ୟୁଟର ବିଭାଗରେ ଅଧ୍ୟାପକ, ଗ୍ରନ୍ଥଗ୍ରନ୍ଥୀଙ୍କ ବିବରଣୀ, ନାନା ବିଭାଗରେ ଗବେଷଣାର ସାରମର୍ମ ଟେପରେ ରଖାଯାଇଛି । ପୃଥିବୀରେ ଯେତେ ପୁସ୍ତକ ପ୍ରକାଶିତ ହେଉଛି, ସେସବୁ ଗୋଟିଏ ପାଠାଗାରରେ ସାଇତି ରଖିବା କ୍ରମେ ଅସମ୍ଭବ ହୋଇ ଉଠୁଛି; ଏତେ ଜାଗା କେଉଁ ପାଠାଗାର ଯୋଗାଇ ପାରିବ ? ତେଣୁ ଟେପ୍ ରେକର୍ଡ଼ିଂ ଲାଇବ୍ରେରୀର ବ୍ୟବସ୍ଥା ହେଉଅଛି । ଅତି ଅଳ୍ପ ସ୍ଥାନରେ ଲକ୍ଷ ଲକ୍ଷ ପୁସ୍ତକର ମର୍ମ ରଖାଯାଇ ପାରିବ ।

ପ୍ରାକୃତିକ ବିଜ୍ଞାନ, ଭାଷା ଅଧ୍ୟୟନ, ଆଇନ, ଇଞ୍ଜିନିୟରିଂ, ବ୍ୟବସାୟ, ସାମ୍ବାଦିକତା, ଟ୍ରେନିଂ କଲେଜ୍, ରସାୟନ ଓ ପଦାର୍ଥ ବିଦ୍ୟା ବିଭାଗର ପ୍ରାସାଦ ମାତ୍ର ଦେଖିଲୁ । ଶେଷୋକ୍ତ ବିଭାଗ ଆଟମ ବୋମାର ସୂତିକାଗାର । ଏହି ବିଭାଗର ଉଦ୍ଭାବିତ ତତ୍ତ୍ୱମାନ ଶିକାଗୋରେ ପରୀକ୍ଷିତ ହୋଇ ଆଟମ୍ ବୋମାରେ ସ୍ଥୂଳ ରୂପ ନେଇଥିଲା । ହିରୋସିମା ଉପରେ ନିକ୍ଷିପ୍ତ ହୋଇ ଏହା ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣହାନି ଘଟାଇଥିଲା; ଏବେ ବି ସେ କ୍ଷତ ଯାପାନର ଜୀବନରୁ ଲିଭିନାହିଁ, କେବେ ଲିଭି ପାରିବ କି ନାହିଁ ସନ୍ଦେହ ।

ଏଠି ଜଗଦୀଶ ଗୁପ୍ତ ବୋଲି ଜଣେ ଭାରତୀୟ ଛାତ୍ରଙ୍କ ସଙ୍ଗେ ସାକ୍ଷାତ ହେଲା । ବିଜ୍ଞାନର ଛାତ୍ର; ପିଏଚ୍. ଡ଼ି. ଡ଼ିଗ୍ରୀ ହାସଲ କରିଛନ୍ତି । ଏବେ ଭାରତକୁ ଫେରିଯିବେ । ମୋତେ ଏସିଆ ଲୋକସଂସ୍କୃତି ସମ୍ମେଳନକୁ ପ୍ରତିନିଧି ଭାବେ ଭାରତ ସରକାର ପଠାଇଥିବା କଥା ଶୁଣି ବିସ୍ମିତ ହେଲେ, କହିଲେ—ଏସବୁ ପାଇଁ ଭାରତ ସରକାରଙ୍କର ଟଙ୍କା ଅଛି ?

"ଲୋକସଂସ୍କୃତି ଗୋଟିଏ ବିଜ୍ଞାନ; ଭାରତବର୍ଷ ବହୁ ବିଚିତ୍ର ଲୋକଙ୍କର ଗୋଟିଏ ଚିଡ଼ିଆଖାନା; ତେଣୁ ଏ ଦିଗରେ ବ୍ୟୟ ଏକ ଅପବ୍ୟୟ ନୁହେ । ପୃଥିବୀ ତମାମ୍ ଲୋକସଂସ୍କୃତିର ସଂଗ୍ରହ ଓ ଗବେଷଣା ଚାଲିଛି; ଯାହା କିଛି ମାନବିକ, ତାର ମୂଲ୍ୟ ଅବଶ୍ୟ ଅଛି ।"

ଜଗଦୀଶ କଲା, ସାହିତ୍ୟ ସମ୍ବନ୍ଧରେ ବିଶେଷ ସମ୍ବାଦ ରଖନ୍ତି ନାହିଁ, ରଖିବା ଆବଶ୍ୟକ ମନେ କରନ୍ତି ନାହିଁ, କଳାର କୌଣସି ପ୍ରୟୋଜନ ନାହିଁ, ବିଜ୍ଞାନ ବଳରେ ଭାରତର ସର୍ବାଙ୍ଗୀନ ଉନ୍ନତି ହୋଇ ପାରିବ, ତାଙ୍କର ବିଶ୍ୱାସ । ଭାରତରେ ବିଶେଷତଃ ଓଡ଼ିଶାରେ ଏପରି ଅନେକ ଲୋକ ରହିଛନ୍ତି, ଉଚ୍ଚ ପଦରେ ଅଧିଷ୍ଠିତ ହୋଇ ଯେଉଁମାନେ କଳା ଓ ସାହିତ୍ୟକୁ ସ୍ୱଭାବତେ ଅବହେଳା କରି ଆସୁଛନ୍ତି । ତାଙ୍କ ସହିତ ଯୁକ୍ତି କରିବାକୁ ମୋର ଅବକାଶ ନ ଥିଲା; କମିନ୍ ହୋଟେଲ ଦେଖିଗଲେ ଗୋଟିଏ ମଖମଲି ତୃଣପ୍ରାନ୍ତରକୁ, ଫୁଆରାସବୁ ରଙ୍ଗୀନ୍ ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଥାଏ, ସେହି ଆଲୋକର ଉଜ୍ଜ୍ୱଳ ସ୍ତର ଅତିକ୍ରମ କରି ପାତଳ ଚନ୍ଦ୍ରିକା ଆମ ନିକଟରେ ପହଞ୍ଚି ପାରୁ ନ ଥାଏ—ପ୍ରାନ୍ତରର ଧାଡ଼ି ପରି ଧଳା ଆଉ ଲାଲ୍ ଫୁଲର ଧାଡ଼ି; ଫୁଆରାର କୁଣ୍ଡପୀଠ ଉପରେ ବସିଥାନ୍ତି କେତେକ ଯୁବତୀ, ଆଲୋକ ମଧ୍ୟରେ କୁଣ୍ଡର ଜଳକୁ ଅବହେଳାରେ ଖେଳାଇ ଦୋଳାଇ ।

ବିଶ୍ୱବିଦ୍ୟାଳୟରୁ ରାଜପଥ ଉପରେ ଲମ୍ବିଛି ଗୋଟିଏ ସେତୁ—ଆରପାଖ ଲ' କଲେଜକୁ, ସେତୁର ଦୁଇ ଧାରରେ ପୁଷ୍ପ ଗୁଳ୍ମ । ସେଠି ଛିଡ଼ାହୋଇ ଆମେ ତଳେ ଅଗଣିତ ଯାନବାହନର ଯାତାୟାତ ଲକ୍ଷ୍ୟ କଲୁ—ଉଜ୍ଜ୍ୱଳ ଚଞ୍ଚଳ ଜୀବନଧାରା—ଦଶ ନିୟୁତରୁ ଊର୍ଦ୍ଧ୍ୱ ଲୋକଙ୍କ ଚଳାଚଳ—ଭେରାଜାନୋ ଓ ହଡ଼୍‌ସନ୍‌ଙ୍କଠାରୁ ଆଜିଯାଏ ଯାଏଁ ତିନିଶ ବର୍ଷର ଜୀବନଯାତ୍ରା ଓ ବିକାଶ—ଲୋହିତ ଭାରତୀୟଙ୍କର ସେଇ ସବୁଜ ଅରଣ୍ୟ ଏବେ ଶ୍ୱେତ ସୌଧରେ ପରିପୂର୍ଣ୍ଣ ହୋଇଅଛି—ଆଶା ଓ ସ୍ୱପ୍ନର, ସମୃଦ୍ଧି ଓ ଦାରିଦ୍ର୍ୟର, ସାଫଲ୍ୟ ଓ ନୈରାଶ୍ୟର ନଗର—ନିଉୟର୍କ !

ଆମେ ଫେରିଲୁ; ଦିନ ଅପେକ୍ଷା ରାତିର ବୈଚିତ୍ର୍ୟ ଅଧିକ । ଆଲୋକମାଳାରେ ସଜ୍ଜିତ ନିଉୟର୍କ ଦୃଷ୍ଟି ଆକର୍ଷଣ କରି ନେଉଥାଏ, ଯେପରି ମିସ୍ ଇଉନିଭର୍ସ ଭାବେ ନିର୍ବାଚିତା ଆଧୁନିକା; ବାଜପୁରୀର ସେଇ ହାସ୍ୟ ମନରୁ ଲିଭିବାର ନୁହେ । 'ଫ୍ଲସିଂ' ଉପସାଗରର ଉପକୂଳରେ ବିଦ୍ୟୁତ୍, କଳାମେଘ ଘୋଟି ଆସୁଥାଏ । କଳଙ୍କୀ ଚନ୍ଦ୍ର ଆଲୋକମାଳାରେ

ନିଷ୍ପ୍ରଭ ଦିଶୁଥାଏ, ସେଇ ଲଣ୍ଠନାରେ ବୋଧହୁଏ ଦେଖି ଦେଖି ସେ ମେଘ ମଧ୍ୟରେ କୁଆଡ଼େ ହଜିଗଲି ।

୨୭ । ୭ । ୬୭; ମିସେସ୍ ବର୍ମନ୍ ପ୍ରତିଦିନ ଟେଲିଭିଜନ୍ ନାଟକ ଦେଖନ୍ତି । ଶୋଇ ଶୋଇ ରାତି ଗୋଟାଏ । ତେଣୁ ସକାଳୁ ଶେଯ ଛାଡ଼ିଲା ବେଳକୁ ନ'ଟା ପ୍ରାୟ ହୋଇଯାଏ । ସେଥେଇ କାମଟା ସ୍ତ୍ରୀଙ୍କର ଏକଚାଟିଆ ହୋଇ ଏଠି ନାହିଁ । ପୁରୁଷମାନେ ସେଥେଇ ଶିଖିଥାନ୍ତି । ସ୍ତ୍ରୀଙ୍କ ଉପରେ ବେଶୀ ଚାପ ପକାଇ ହେବ ନି । ଆଖି ଦେଖାଇ କାମ ଆଦାୟ କରିବା ଅସମ୍ଭବ । ସେଥେଇ ମଧ୍ୟ ସେପରି ଭିନ୍ନ ନୁହେଁ; ଚୁଲି ଜାଳିବା ସମସ୍ୟା ନାହିଁ । ବୋତାମ୍ ଟିପିଲେ ହେଲା । ମି: ବର୍ମନ୍ ପାଞ୍ଚଟା ବେଳୁ ଉଠି ମୋ ଲାଗି ଟୋଷ୍ଟ, କଫି ପ୍ରସ୍ତୁତ କରିଦେଲେ ।

ଆମେ କଫି କପ୍ ଓଠକୁ ନେଇଛୁ କି ନାହିଁ, ମିସେସ୍ ତଳକୁ ଓହ୍ଲାଇଲେ ଫ୍ଲନ୍ନପା ତଳି ଫର୍କ ଖଣ୍ଡିଏ ପିନ୍ଧି । ମୁହଁଟା ଧୋଇପକେଇ କଫି କପ୍‌ଟି ଧରି ଆମ ସଙ୍ଗରେ ବସି ପଡ଼ିଲେ; ବର୍ମନ୍ ପଚାରିଲେ— ଏତେ ବେଗି ଉଠିଲ କାହିଁକି ?

“ଅତିଥି ଯେ ଯିବେ; କାଲିରାତିରେ ସେଇଆ ଭାବି ଶୋଇଥିଲି । ତେଣୁ ଚଟ୍ କିନେ ନିଦ ଭାଜିଗଲା ।”

ତାପରେ ମୁଁ କହିଲି—“ସାତ ଦିନ ହେଲା କେବଳ କଷ୍ଟ ଦେଇ ଆସୁଛି ।” ମିସେସ କହିଲେ—‘ଏ ଗୋଟିଏ ଆନନ୍ଦ, ନୂଆ ଲୋକଙ୍କୁ ଜାଣିବାର ସୁବିଧା;’ ‘ମୁଁ ଆନନ୍ଦ ଦେଇ ଜାଣେନାହିଁ, କିନ୍ତୁ ସ୍ବହେଁ— ସମସ୍ତେ ମୋତେ ଆନନ୍ଦ ଦିଅନ୍ତି ।’

‘ନର୍ତ୍ତକ, ଅଭିନେତା, ସଙ୍ଗୀତଜ୍ଞଙ୍କ ଆନନ୍ଦଦାନର ରୂପ ଭିନ୍ନ; ଆପଣଙ୍କ ଉପସ୍ଥିତି, ଆଳାପ ହିଁ ଆନନ୍ଦମୟ ।’

ଏତିକି କହି ସେ ଓଠ ଟିକିଏ କେମିତି କଲେ, ଦରଦ, ବିଚ୍ଛେଦବେଦନା ନା କଣ ଇଏ ? କିଛି ଠଉରେଇ ପାରିଲି ନାହିଁ ।

ମୋ ସାଥୀ ଭାଇରୁ ଜଣକୁ ଭଲ ଲାଗେ ସେ ଚଭା ହୋଇଛନ୍ତି । ବର୍ଷେ ଦୁଇ ବର୍ଷରେ ଥରେ ଓଡ଼ିଶାକୁ ଯାନ୍ତି, ଶାଶୂ ଓ ବୋଉମାନଙ୍କୁ ଦେଖିବା ପାଇଁ । ଜୀବନ ଜୀବନରୁ ବିଚ୍ଛିନ୍ନ ହୋଇଛି; ସ୍ନେହ କେତେ ଅଛି ଜାଣେ ନାହିଁ; କର୍ତ୍ତବ୍ୟ ତ ରହିଛି ।

ଅପରିଚିତ ସଙ୍ଗେ ମନ ମିଳାଇବା, ସହାନୁଭୂତିଶୀଳ ବ୍ୟବହାର ଦେଖାଇବା ସହଜ ନୁହେ । ମୋ ଇଂରାଜୀ ସେ ବୁଝିପାରନ୍ତି ନାହିଁ; ତାଙ୍କ ଭାଷା ମୁଁ ମଧ୍ୟ ଭଲଭାବେ ବୁଝି ନାହିଁ । ମୋ ଚଳଣି ସାହେବ ଧରଣର ନୁହେ; ତାଙ୍କ ସାଙ୍ଗରେ କେହି ଚଳି ନ ପାରିଲେ ସେ ଭାବନ୍ତି ନାହିଁ । ଉଦାସୀନ । କାଳିଆ ପ୍ରତି ଲଜ୍ଜାର ଆଭାସ ତାଙ୍କ ମୁହଁରେ ପାଇନାହିଁ । କିଛି ବଡ଼ତ୍ୱର ଭାବ ଦେଖିନାହିଁ । ଅଭିନୟର ଭାନ ନୁହେ; ତାଙ୍କ ବ୍ୟକ୍ତିତ୍ୱର ନିଜସ୍ୱ ଏ ।

ମି: ବର୍ମନ୍ ଏଇ ନାଗରିକର ମୁହଁରୁ ଏପରି କିଛି ପାଇଛନ୍ତି, ଯାହା ପାଇ ଲୋକ ଘରଦ୍ୱାର, ଦେଶ, ଜାତି ସବୁ ଭୁଲିଯାଇ ପାରେ । ତଥାକଥିତ ଅର୍ଥରେ ସେ ଆଧୁନିକା ନୁହନ୍ତି । ବେଶ ପ୍ରସାଧନ ପ୍ରତି ସଦା ସଚେତନ ନୁହନ୍ତି, ଝରଣା ପରି ଚଞ୍ଚଳା ନୁହନ୍ତି । ଭୂଇଁପଥର ପରି ବସି ଯାଇଛନ୍ତି, ମନେ ହେଉଛି ବସିଯିବେ । ମି: ବର୍ମନ୍ ଆଧୁନିକ ଜୀବନ ବେଗ ଭରସାରେ ଏଇ ମଟର ବୋଟ୍‌ଟିକୁ ଧରିଛନ୍ତି, ସେ ଆମେରିକାନ୍ ହୋଇ ପାରିଛନ୍ତି, ଅଭିନୟରେ ନୁହେ, ପ୍ରକୃତରେ । ଭାରତ ତାଙ୍କୁ, ସେହିପରି ଅନେକଙ୍କୁ ହରାଇଛି, ଆଧୁନିକ ଜୀବନର ବହୁ ସୁଯୋଗ ଯୋଗାଇ ନ ପାରି ।

ଷ୍ଟିଟ୍, ରସେଲ୍, ମେଳେନୀ କେହି ଜୁଟିନାହାନ୍ତି । ସେମାନଙ୍କ ଖେଳ, ମେଳ, ମଧୁର ଦୁଷ୍ଟାମି ବାତାବରଣକୁ ସବୁବେଳେ ଲଘୁତର କରି ରଖିଥିଲା— ମୋତେ ଦେଇଥିଲା ମିସେସ୍‌ଙ୍କ ସଙ୍ଗେ ମିଶିବାର ସାହସ । ଏ ଜୀବନ କେତେ ଯାନ୍ତ୍ରିକ, ଆମ ସଂସାରରୁ କେତେ ଭିନ୍ନ ! ଷ୍ଟିଟ୍ ଓ ରସେଲ୍‌ଙ୍କ ପ୍ରତି ସାହେବାଣୀର ଆପାତ ନିଷ୍ଠୁରତା ଲକ୍ଷ୍ୟ କରୁଥିଲି । ସ୍ନେହ ପ୍ରଚ୍ଛନ୍ନ, କର୍ତ୍ତବ୍ୟ କଠୋର । ସ୍ନେହ କର୍ତ୍ତବ୍ୟର ଅବହେଳା କେତେ-ବେଳେ ହେଲେ ବରଦାସ୍ତ କରିପାରୁ ନ ଥିଲା, ଗେଲବସର ହେଉଁ ହେଉଁ

ଅନାଡ଼ ବା ଅପଦାର୍ଥ ହେବାର କୌଣସି ସୁଯୋଗ ଦେଇ ନ ଥିଲ—ଖାଦ୍ୟପେୟ, ବ୍ୟବହାର, ଅଧ୍ୟୟନ ସବୁଥିରେ କଠୋରତା । ମାଆଙ୍କୁ ପିଲଙ୍କର ପ୍ରାଣେ ଡର ।

ମିସେସ୍‌ଙ୍କଠାରୁ ବିଦାୟ ନେଲି । ଡକ୍ଟର ବର୍ମନ୍ ନିଜ ଗାଡ଼ିରେ ମୋତେ 'ଲଗାଡିଆ' ବିମାନଘାଟିରେ ଛାଡ଼ିଦେଇ ଗଲେ । ବର୍ମନ୍ ସଦା ବ୍ୟସ୍ତ । ରାତି ନ'ଟାରେ ଡାକ୍ତରଖାନାରୁ ଫେରନ୍ତି ପରେ ପଢ଼ନ୍ତି । ଡାକ୍ତରୀ ବହି ଛଡ଼ା ସଂସ୍କୃତ, ସାହିତ୍ୟ ସମ୍ପର୍କୀୟ ନାନା ପୁସ୍ତକ ତାଙ୍କ ଅଧ୍ୟୟନାଗାରରେ ସଜ୍ଜିତ ହୋଇଥିବାର ଦେଖିଲି, ସେ ସବୁର ଯତ୍‌ସାମାନ୍ୟ ଉପଯୋଗ କରିଥିଲି । ବର୍ମନଙ୍କୁ ଅଧିକ ନିବିଡ଼ଭାବରେ ଜାଣିବାର କୌଣସି ସୁଯୋଗ ପାଇନାହିଁ । ସେ କର୍ତ୍ତବ୍ୟ କରିଯାଆନ୍ତି, କଥା କହନ୍ତି ଅଳ୍ପ, ଇଂରେଜୀରେ ରସନା ଅଭ୍ୟସ୍ତ, ମଝେ ମଝେ ଓଡ଼ିଆ ବାହାରେ, ଇଂରେଜୀ ମିଶ୍ରିତ ।

## ନିଉୟର୍କରୁ ବଫ୍‌ଲୋ-ନାଏଗ୍ରା

ଆମେରିକାନ୍ ଏୟାର ଲାଇନସର ଗୋଟିଏ ଆଷ୍ଟ୍ରୋ ଜେଟ୍ ବିମାନରେ ଉଠିଲି । ଆକାରରେ ଗ୍ରେଟ; ସିଟ ମଧ୍ୟ ନିର୍ଦ୍ଦିଷ୍ଟ ନାହିଁ, ଯେ ଯେଉଁଠି ବସିଲେ । ଜେଟ୍ ଗୋଟାଏ ଦୌଡ଼ ମାରି ଫ୍ଲସିଂ ଉପସାଗର ଉପରକୁ ଲମ୍ଫ ଦେଲା, ଯେତିକ ଭୂଇଁଛଡ଼ା ହେଲା ପୃଥିବୀର ସବୁ କିଛି ସେତିକ ଗ୍ରେଟ ହୋଇ ଆସିଲା—ହ୍ରଦସବୁ—ତଡ଼ାଗ, ବନାରଣ୍ୟ—ତୃଣପ୍ରାନ୍ତର, ନୀଳ ସମୁଦ୍ରର ସ୍ୱଚ୍ଛ ମେଘ—ପାଲଟଣା ନୌକା; ତା ପରେ ତଳେ ମେଘ, ଉପରେ ମେଘ, ଦିଗ୍‌ବଳୟରେ ନୀଳାକାଶ—କ୍ରମେ ସବୁହେଲା ଏକାକାର—ଅନ୍ଧକାର; ଜେଟ୍‌ଟି ଆମର ଯେତେ ଯେପରି ନୀଡ଼ାଶ୍ରୟୀ ପକ୍ଷୀ ! ଡ୍ରେଣାର ଲାଲ୍ ଆଲୋକ ଫୁଟ୍ ଫୁଟ୍ କରୁଥାଏ—ଘଣ୍ଟାକ ମଧ୍ୟରେ ପହଞ୍ଚିଲି 'ବଫ୍‌ଲୋ'ରେ ।

ସେଠୁଁ ନାଏଗ୍ରା ୩୫ ମାଇଲ୍ ବାଟ, ଟାକ୍‌ସି ବତାଇଲା ଏଗାର ଡଲର୍ । ଏୟାର ଲାଇନ୍‌ସର ଗୋଟିଏ 'ଲିମୋଜିନ୍' ଯାଏ—ଜାଣି ଗୋଟିଏ ଗ୍ରେଟ ବସ୍—ପନ୍ଦର ଜଣଙ୍କ ବସିବାର ବ୍ୟବସ୍ଥା ଅଛି । ମାତ୍ର

ଦୁଇ ଡଲାର୍ ପନ୍ଦର ସେଣ୍ଟ ଭଡ଼ା । ଯାଇ ବସିଲି; ଆଶ୍ଚର୍ଯ୍ୟ, ଏକମାତ୍ର ଯାତ୍ରୀ ମୁଁ ! ଆଜ କେହି ଦେଖି ଯାଉନାହାନ୍ତି ନାଏଗ୍ରା ପ୍ରପାତ ? ଅପରେଟର୍ ମି. ହର୍ସ ମୋ ସୁଟ୍‌କେସଟି ରଖି ଦେଇ ଉଡ଼ାଜାହାଜ ପଡ଼ିଆରୁ ଗାଡ଼ି ଛୁଟାଇ ଦେଲେ । ସତେ ବା ନାଏଗ୍ରା ମୋ ପାଖକୁ ଲଗି ଲଗି ଆସିଲା, ତାର ତରଙ୍ଗ ଦୋସ୍ତକୁ ଗୋଟାଏ ଆଲିଙ୍ଗନ ଦେବାପାଇଁ; ଆକାଶଟା ସତେ କି ଘନଘୋର ପର୍ବତ, ସେଥିରୁ ଅସରନ୍ତି ଧାରରେ ଝରୁଛି ନାଏଗ୍ରା । ବିଜୁଳି ଇନ୍ଦ୍ରଧନୁ ନାହିଁ, ଘଡ଼ଘଡ଼ ଚଡ଼ଚଡ଼ ନାହିଁ, କେବଳ ଛେଚିବୁ କରୁ ବର୍ଷା । କାନାଡ଼ା ଆଉ ଆମେରିକା ସୀମାରେ ମୂଷଳ ଧାରର ବର୍ଷା ଅନ୍ଧକାର ମଧ୍ୟରେ ଗୁଳାଛି ଆମର କାମୋଜନ୍ ।

ମନେ ପଡ଼ିଲା 'ବାଗ୍ରା' ଯାତ୍ରା; ଜୟପୁର ମହାରାଜା ବିକ୍ରମ ଦେବ ବର୍ମା ହାତୀ ଯୋଗାଇ ଦେଇଥିଲେ । ପାହାଡ଼ର ଖୋଲେ ଖୋଲେ ଧାରେ ଧାରେ ହାତୀ ପଲ୍ଲ ପରି ମେଘର ପଟୁଆର—ମୌସୁମୀ ମେଘ; ତାର ଠାଣିମାଣି ଭିନେ । ତାର ବେଗ ଆଉ ଆବେଗ ମଧ୍ୟରେ ଝଡ଼ର ଯେଉଁ ସ୍ୱର, ବନ୍ୟାର ଯେଉଁ ଛନ୍ଦ, ତା ଏ ମେଘରେ ନାହିଁ । ତେଣୁ କଦମ୍ବର ପୁଲକ ଆସୁନାହିଁ, ହୃଦୟ ମୟୂର ପରି ନୃତ୍ୟଶୀଳ ହେଉନାହିଁ; କବିତାର ଉଦ୍ରେକ ହେଉନାହିଁ, ମନରେ ଆସୁଛି ଶଙ୍କା—କଣ କରିବ ? ଏ ବର୍ଷାରେ କି ପ୍ରପାତ ଦେଖିବ ?

ଲଗାଲଗି ଘରର ଗ୍ରାମ ନାହିଁ—ଏଠି ସେଠି ଗୋଟାଏ ଗୋଟାଏ ଘର; ସବୁ ମିଶି ଗୋଟାଏ ଗ୍ରାମ ବୋଲି ଧରିଯାଇ ପାରେ, କିନ୍ତୁ ତା ମଧ୍ୟରେ ପ୍ରାଚୀନତାର ସଙ୍କେତ ନାହିଁ, ଏବେ ଏହା ସହରକୁ ଛଡ଼ାଉଛି, ହୋଟେଲ ମୋଟେଲ୍‌ମୟ, ଯାନବହୁଳ, ଯଦି ବା ପାର୍ଶ୍ୱବର୍ତ୍ତୀ କ୍ଷେତ୍ରସବୁ ଶସ୍ୟ ଶ୍ୟାମଳ ।

ରାସ୍ତା ଦୁଇ ପାଖରେ ଅଚଳନ୍ତି ଗାଡ଼ିର ସ୍ତୂପସବୁ, ଅରମା ବଣ, ତା ମଧ୍ୟରେ ଜଳସ୍ରୋତ ଛୁଟିଛି; ବର୍ଷାର ଧାର ଏବେ ବନ୍ଦ ହୋଇ ଝରିଲେ ବି । ମୁଁ 'ନାଏଗ୍ରା' ନଗରରେ ପହଞ୍ଚିଲି । ନାଏଗ୍ରା ନଦୀର କୂଳେ କୂଳେ କାମୋଜନ୍ ଦୁଇ ତିନି ମାଇଲ୍ ଯିବା ପରେ ପ୍ରପାତର ନିକଟବର୍ତ୍ତୀ

'କନଭର୍ଟ ମୋଟର ଇନ୍' ଦ୍ୱାରରେ ରହିଲି । ଏହି ଇନ୍‌ରେ ପ୍ରାପ୍ୟ ପଦରବଦନ ଆଗରୁ ଫୋନ୍ ଯୋଗେ ରୁମ୍ ରିଜର୍ଭ କରା ହୋଇଥିଲା । ମି: ହର୍ସ ମୋ ସୁଟ୍‌କେସ୍‌ଟି ଇନ୍ ଦ୍ୱାରରେ ରଖିଦେଲେ । ମ୍ୟାନେଜରଙ୍କ ସହିତ ମୋର ପରିଚୟ କରାଇ ଦେଇ ବିଦାୟ ନେଲେ । ମ୍ୟାନେଜର୍‌ଙ୍କ ବରାଦ୍‌ରେ ବୟ୍ ସୁଟ୍‌କେସ୍ ଏଲିଭେଟର୍‌ରେ ନେଇ ତୃତୀୟ ତଳର ଗୋଟିଏ କୋଠରୀରେ ମୋତେ ରଖାଇ ଦେଲା ।

ଭବ୍ୟ ଶଯ୍ୟା, ସୁସଜ୍ଜିତ ଚୌକି, ଟେବୁଲ, ନାନାବିଧ ଆଲୋକ, ଟେଲିଭିଜନ୍, ଫୋନ୍; ସ୍ନାନାଗାରରେ ଉଷ୍ଣ ବା ଶୀତୋଦକ, ସାବୁନ୍, ଟାୱେଲ୍; କୋଟ୍ କାମିଜ ଝୁଲାଇବା ପାଇଁ ହାଙ୍ଗର୍; ଶୀତାତପ ନିୟନ୍ତ୍ରିତ ଏହି କୋଠରୀରେ ଆଧୁନିକ ଜୀବନର ସମସ୍ତ ସୁବିଧା ରହି-ଅଛି । ଟେବୁଲ୍ ଉପରେ ଖଣ୍ଡିଏ ବାଇବଲ୍, ତା ପାଖରେ ଏ ଗୁଗ୍ରା ଖଣ୍ଡିକ କଣ ? "Bottle opener inside bathroom" ଏ କି ବୋତଲ ? ବାଇବଲ୍ ସଙ୍ଗେ ଏହି ବୋତଲ୍ କାହାଣୀ ଏକ ଅସାମଞ୍ଜସ୍ୟ ପରି ମନେ ହେଲା, ଯଦି ବା ମଦ୍ୟ ଏଠି ଜଳବତ୍ ବ୍ୟବହୃତ ।

ଇନ୍‌ରେ ଭୋଜନ ବ୍ୟବସ୍ଥା ନାହିଁ । ରେଷ୍ଟୁରାଣ୍ଟରେ ଖାଇବ, ତେଣେ ନାଏଗ୍ରା ଦେଖିଯିବ ଭାବି ବାହାରି ପଡ଼ିଲି, ଟୋପି ବର୍ଷାକୁ ଖାତିର ନ କରି । ଫୁଟ୍‌ପାଥ୍‌ରେ ଚାଲିଛି; ଜୋର୍‌ରେ ବର୍ଷା ହେଲା; ଗୋଟାଏ ବନ୍ଦ ଦୋକାନର ଦରଜାରେ ଛିଡ଼ା ହୋଇଗଲି । ମୋ ଦେଖାଦେଖି ଆଉ ଜଣେ ସେଠି ଆସି ଛିଡ଼ା ହୋଇଗଲା—ନିରକ୍ଷର ମୁଖ ଅଟଳା ପଥର ପରି କର୍କଶ; ସେ ଉପରେ ପଡ଼ି ମୋ ସହିତ ଆଳାପ ଜମାଇବାକୁ ବସିଲା—'କୋଉଠୁ ଆସିଛ ?'

'ଭାରତରୁ'

'ହିଣ୍ଡୁ—ହିଣ୍ଡୁ ।'

'ହଁ'

ତୁମ ଦେଶରେ କଳା ଗୋରା ଭେଦ ଅଛି କି ନାହିଁ ?'

'ନାହିଁ । ଯେଉଁଠି ଯେ ଭେଦ ଅଛି, ଯେତେ ଶୀଘ୍ର ଦୂର ହୁଏ, ମଙ୍ଗଳ । ସଦ୍ଭାବସ୍ଥାନ ନିତି ଭଲ; ତା ମାନେ—କଳା ଭଲ୍ପବେ, ଗୋରା, ସାବନା ସମସ୍ତେ ଗୋଟିଏ ଦେଶରେ ରହି ପାରିବେ ।'

'କଣ କହିଲ ? କଳା ରହିବେ ? କଟମଟ କରି ସେ ମତେ ଚାହିଁଲା । ସତେ ଯେପରି ହଠାତ୍ ମୁଁ ଗୋଟାଏ ଅକଥା କହି ପକାଇଛି ।'

ତା ପରେ ସେ ମୋତେ ପଚାରିଲା—ଭାରତରୁ କେତେ ଡଲାର୍ ଆଣିଛ ?

'ପଇସାପତ୍ର କଥା କାହିଁକି ପଚାରୁଛ ? ଗୁଣ୍ଡା ନା କଣ ?' ସନ୍ଦେହ ହେଲା । 'ତୁମ ସହିତ ଅଧିକ ଆଳାପ କରିବାକୁ ମୋର ବେଳ ନାହିଁ' କହି ଅଦୂରବର୍ତ୍ତୀ ଗୋଟାଏ ରେଷ୍ଟୁରାଣ୍ଟରେ ପଶିଗଲି । ବର୍ଷା ସେତେବେଳକୁ ଟିକିଏ ଛାଡି ଯାଇଥିଲା ।

ଖାଇସାରି ମୁଁ ପୁଣି ଫୁଟ୍‌ପାଥ୍‌ରେ ଚାଲିଲି—ନାଏଗ୍ରା ଶିକରରେ ଘନଶ୍ୟାମଳ ତୃଣ ପ୍ରାନ୍ତର ଓ ତହିଁରେ ନାଲି ଫୁଲର ଧଡ଼ିଦଆ ଲାଲ୍ ଫୁଲ ମଧ୍ୟ—ଏହିପରି ଫୁଲର କେତେ ବୃତ୍ତ, କେତେ ଅର୍ଦ୍ଧବୃତ୍ତ, ମେଘର ସେଇ ମଳିନ ପରିବେଶରେ ମନରେ ସତେ କି ଖୁସି ହୋଇଗଲା ।

ନୁହେ ମଟର୍, ନୁହେ ରେଲ୍ ଗାଡ଼ି; ହୁଏତ ଏ ଦୁଇର ଗୋଟିଏ ମିଳିତ ସଂସ୍କରଣ । ରେଲ୍‌ଗାଡ଼ି ପରି ତିନି ଚାରିଟି ଡବା ଏଥିରେ ଲାଗିଛି, କିନ୍ତୁ ମଟର ଟାୟାର୍ ଲଗା ଚକ, ପିଚୁ ରାସ୍ତାରେ ଚାଲିଛି । ଟିକେଟ୍ କାଟି ଯାତ୍ରୀମାନେ ବସୁଛନ୍ତି, ଗାଡ଼ିଟି ନାଏଗ୍ରା ନଦୀର ଧାରେ ଧାରେ ଚାଲିଛି, ସ୍ଥାନେ ସ୍ଥାନେ ଅଟକୁଛି । ଯେମାନେ ଦୃଶ୍ୟ ଦେଖି ସାରି ପୁଣି ଯାଇ ଗାଡ଼ିରେ ବସୁଛନ୍ତି—ଗାଡ଼ି ଏହିପରି ଚାଲିଛି, ବହୁଦୂରବ୍ୟାପୀ ପ୍ରପାତ, ପ୍ରପାତ ମଧ୍ୟବର୍ତ୍ତୀ ଦ୍ୱୀପ, ପ୍ରାନ୍ତର, ପାର୍କ, ସେତୁ ଦେଖାଇ । ପ୍ରାକୃତିକଦୃଶ୍ୟ ଦେଖିବାର ଏ ସୌଖୀନତା ମୋତେ ଭଲ ଲାଗିଲା ନାହିଁ; ଶ୍ରୀମଧ୍ୟରେ ନିମଗ୍ନ ହେବାର ସ୍ୱାଚ୍ଛନ୍ଦ୍ୟ ମିଳିବ ନାହିଁ—ଏଇ ଶଙ୍କାରେ ମୁଁ ଚାଲି ଚାଲି ଗଲି ।

## ନାଏଗ୍ରା ପ୍ରପାତ

ଭୌଗୋଳିକମାନେ ନାଏଗ୍ରାକୁ ନଦୀର ମାହାତ୍ମ୍ୟ ଦିଅନ୍ତି ନାହିଁ। ସେମାନଙ୍କ ଦୃଷ୍ଟିରେ ଏହା ଦୁଇଟି ହ୍ରଦର ସଂଯୋଗକାରୀ ଜଳପ୍ରଣାଳୀ ମାତ୍ର। ଏହି ପ୍ରଣାଳୀର ଦୈର୍ଘ୍ୟ ୩୭ ମାଇଲ। 'ବଫାଲୋ' ନଗର ନିକଟବର୍ତ୍ତୀ 'ଇରି' ହ୍ରଦ ନାଏଗ୍ରାର ଉତ୍ସ, ଯୁକ୍ତରାଜ୍ୟ ସମୀପବର୍ତ୍ତୀ ଲେକ୍ 'ଅଣ୍ଟାରିଓ' ପ୍ରଣାଳୀର ପତନ ସ୍ଥାନ। ଲେକ୍ ଅଣ୍ଟାରିଓରୁ ଏହାର ଜଳ ସେଣ୍ଟଲରେନ୍ସ ନଦୀ ବାଟେ ଆଟଲାଣ୍ଟିକ୍ ମହା ସମୁଦ୍ରରେ ନିକ୍ଷିପ୍ତ ହେଉଛି। ନାଏଗ୍ରା ନିର୍ଝରର ମଧ୍ୟଭାଗରେ ନାଏଗ୍ରା ପ୍ରପାତର ସୃଷ୍ଟି। ଲେକ୍ ଅଣ୍ଟାରିଓର ଜଳ ପତନ ଲେକ୍ ଇରିର ୩୨୬ ଫୁଟ୍ ନିମ୍ନରେ।

ନାଏଗ୍ରା ପ୍ରପାତ ତ୍ରିସ୍ରୋତ ସମନ୍ୱିତ—ଆମେରିକାନ୍ ଫଲ୍ସ୍, ଲୁନାଫଲ୍ସ୍, ହର୍ସସୁ ଫଲ୍ସ୍। ଏଇ ତିନିଗୋଟି ସ୍ରୋତରେ ପ୍ରତି ସେକେଣ୍ଡରେ ଦେଢ଼ଲକ୍ଷ ଗାଲେନ୍ ଜଳ ପ୍ରବାହିତ ହୁଏ; ପ୍ରପାତ ମୂଳରୁ ଅଣ୍ଟାରିଓ ପର୍ଯ୍ୟନ୍ତ ନାଏଗ୍ରାର ନିମ୍ନନିର୍ଝର, ଓ ପ୍ରପାତ ଉପରୁ ଇରି ହ୍ରଦ ପର୍ଯ୍ୟନ୍ତ ଉର୍ଦ୍ଧ୍ୱ ନିର୍ଝର ବ୍ୟାପ୍ତ। ତିନିଟି ପ୍ରପାତ ମଧ୍ୟରେ ପ୍ରଥମ ଦୁଇଟି ଆମେରିକାରେ, ହର୍ସସୁ ଫଲ୍ସ୍ କାନେଡାରେ ଅବସ୍ଥିତ। ହର୍ସସୁ ଫଲ୍ସ୍ ବୃହତ୍ତମ, ଏହାର ଉଚ୍ଚତା ୧୮୭ ଫୁଟ୍ ଓ ପ୍ରସାର ଦୁଇହଜାର ଦୁଇଶ ଫୁଟ୍।

ବିହାରର ଜୋହ୍ନା ବା ଗୌତମଧାରା, ନର୍ମଦାର ଧୂଆଁଧାର, ଓଡ଼ିଶାର ଖଣ୍ଡାଧାର, ଡୁଡୁମା, ବାଗ୍ରା ଓ ପ୍ରଧାନପାଟ ଦେଖିଛୁ। ଉଚ୍ଚତା ଅଧିକ ହୋଇପାରେ, କିନ୍ତୁ ଏତେ ବିପୁଳ ଜଳପ୍ରବାହ କେଉଁଠି ନାହିଁ, ରୁଦ୍ର ଗମ୍ଭୀର ନିନାଦରେ ଚତୁର୍ଦ୍ଦିଗ ପ୍ରକମ୍ପିତ, ଜଳ ବିନ୍ଦୁର କୁଜ୍ଝଟୀରେ ନଦୀର ସ୍ରୋତ ଅଚ୍ଛନ୍ନ। ମେଘର ଗୋଟାଏ ଅବିଚ୍ଛିନ୍ନ ପଟୁଆର ଆକାଶରେ ଲମ୍ବିଛି, ଏ ସବୁ ନାଏଗ୍ରାର ମେଘ, ଅଜିର ବର୍ଷା ସହିତ ବା ନାଏଗ୍ରାର କୃତିତ୍ୱ। ପ୍ରପାତ ସ୍ରୋତରୁ ଆକାଶକୁ ଉଠିଛି ମେଘ ପରେ ମେଘ, ତାପରେ ମେଘ—ଉପର ଆଉ ତଳ ସ୍ରୋତରେ ପାହାଡ଼, ଅରଣ୍ୟସଙ୍କୁଳ ଦ୍ୱୀପ; ପ୍ରପାତର ଗର୍ଜନ ସଙ୍ଗେ ବିଷମର ଗର୍ଜନ ଆସି ମିଶୁଛି। ବହୁଦୂରବ୍ୟାପୀ ପ୍ରପାତର ସ୍ରୋତ ସଙ୍ଗେ ମେଘ

ଆଉ ବର୍ଷା; ବସୁନ୍ଧରାର ଏଇ ସଙ୍କେତ ଅନ୍ତରକୁ ଉଚ୍ଛୁଳାଇ ଦିଏ ମହା ସମୁଦ୍ରର ଗର୍ଭରେ । ଶ୍ରୀ ସେତକ ପ୍ରୀତି ଆଣେ, ପ୍ରତାପ ସେତକ ସୃଷ୍ଟି କରେ ଭୀତ । ଏକ ଆଣେ ଆତ୍ମବିସ୍ମୃତି, ଅନ୍ୟଟି ଆଣେ ଆତ୍ମ-ସଚେତନତା, ଗୋଟିଏ ସୃଷ୍ଟିର କାବ୍ୟ, ଅନ୍ୟଟି ପ୍ରଳୟର ଦୁଃଖାନ୍ତ ନାଟକ । ପ୍ରୀତି ଆଉ ଭୀତିର ଏତେ ମଧୁର ସମନ୍ୱୟ ଆଉ କେଉଁଠି ହୋଇଛି ? ରୁଦ୍ର ସହିତ ସୁନ୍ଦର ଆଉ କେଉଁଠି ଏପରି ହାତ ମିଳାଇଛି ? ସୁନ୍ଦର ଯେପରି ମୋର ଧ୍ୟେୟ, ରୁଦ୍ର ସେହିପରି ମୋର ପୂଜ୍ୟ ।

ଜୀବନସର୍ବସ୍ୱ ସାଧାରଣ ଏଠି ଭୀତ, ରୂପପାପୀ ପ୍ରୀତ; କିନ୍ତୁ ବୈଜ୍ଞାନିକ ଏଇ ଭୀତି ଓ ପ୍ରୀତିର ଊର୍ଦ୍ଧ୍ୱଦେଶରେ । ସେ ଦେଖେ ପ୍ରୟୋଜନ, ଶ୍ରୀର ଅର୍ଥ ସେ ବୁଝେ ଲକ୍ଷ୍ମୀ ବୋଲି । ସମୃଦ୍ଧିରୁ ଉଦ୍‌ଭୂତ ସୌନ୍ଦର୍ଯ୍ୟ ଉପରେ ବୈଜ୍ଞାନିକର ଆଖି । ସେ ଏଇ ସ୍ରୋତ ମଧ୍ୟରେ ଖୋଜୁଛି ଶକ୍ତି, ଯାହା ସଭ୍ୟତାର ମାଂସପେଶୀକୁ ଦୃଢ଼ତର କରିବ । ମନୁଷ୍ୟ ସ୍ୱପ୍ନରେ ବଞ୍ଚେ ନାହିଁ, ବଞ୍ଚି ପାରିବ ନାହିଁ । ଶକ୍ତି ବାସ୍ତବ ଲୋଡ଼ା । ସ୍ୱପ୍ନ ଆଉ ବାସ୍ତବର, କଳା ଆଉ ବିଜ୍ଞାନର, ଶୌର୍ଯ୍ୟ ଆଉ ସାଧନାର, ମୃତ୍ୟୁ ଆଉ ଜୀବନର ସଙ୍ଗୀତ ଗାଇ ଯାଉଛି ନାଏଗ୍ରା ପ୍ରପାତ; ଆମେରିକାର ଜୀବନ ଯହିଁରୁ ପ୍ରେରଣା ପାଇ ହୋଇଛି ଏତେ ଦୁର୍ଦ୍ଧର୍ଷ, ଦୁର୍ଦ୍ଦମଭାବେ ଗତିଶୀଳ ।

ଗୋଟ ଆଇଲଣ୍ଡକୁ ନାଏଗ୍ରା ନଦୀ ଘେରି ରହିଛି, ଆମେରିକାନ୍ ଫଲସରୁ କାନେଡ଼ାର ହର୍ସସୁ ଫଲ୍‌ସକୁ ବିଚ୍ଛିନ୍ନ କରିଛି । ଦ୍ୱୀପଟି ଖଣ୍ଡ ଶୈଳ ଓ ବୃକ୍ଷମୟ; ପିକ୍‌ନିକ ଲାଗି ଉପଯୁକ୍ତ ସ୍ଥାନ ।

ଆମେରିକାନ୍ ଫଲ୍‌ସର ଡାକେ ବାଟରେ ଗୋଟିଏ ଟାୱାର୍ ଏଲିଭେଟର୍‌ରେ ଉପରକୁ ଯାଇ ପ୍ରକୃତିର ମଞ୍ଜୁଳ ଶ୍ରୀ ଉପଭୋଗ କରି ହୁଏ, ତଳକୁ ଓହ୍ଲାଇ ନୌକାରେ ପ୍ରପାତ ମୂଳ ପର୍ଯ୍ୟନ୍ତ ଜଳଯାତ୍ରା କରିବା ମଧ୍ୟ ସମ୍ଭବ ହୁଏ । ନୌକାର ନାମ 'କୁହୁଡ଼ି କୁମାରୀ ।' ପ୍ରତି କୋଡ଼ିଏ ମିନିଟ୍‌ରେ ଥରେ ନୌକା ଆସେ ।

ଗୋଟ୍ ଆଇଲଣ୍ଡ୍ ବାଟେ 'ନାଏଗ୍ରା'ର ଗୋଟିଏ ସେତୁ ଅତିକ୍ରମ କରି ମୁଁ ଲୁନା ପ୍ରପାତ ଦେଖିବାକୁ ଗଲି । ପାର୍କର ଓକ୍‌ହବୁ ବିପୁଳ,

ଗାଢ଼ ସବୁଜ ପତ୍ର ଭରା, ଅପରିଚିତ ବନ୍ୟ ଗୁଳ୍ମ ଓ ବିଚିତ୍ର ପୁଷ୍ପରେ ପରିପୂର୍ଣ୍ଣ, ଗ୍ରୀଷ୍ମର ଶେଷ ଆଶୀର୍ବାଦ । ଶଶକ୍ ନିର୍ଭୀକ, ଆନନ୍ଦର ମୂର୍ତ୍ତି, ଯାତ୍ରୀଙ୍କୁ ପ୍ରକୃତିର ପ୍ରାଣପୂର୍ଣ୍ଣ ଅଭିନନ୍ଦନ ଜଣାଇବା ଲାଗି ଯେପରି କି ଆସିଛି ।

ପୁଣି ବର୍ଷାରମ୍ଭ, ଶୀତ; ପାଣି ଟୋପାକ ସାତ ଟୋପା ପଡ଼ିଲା ପରି ଲାଗୁଥାଏ, ବର୍ଷାତି ବା ଛତା ନେଇ ନାହିଁ, ମୁଁ ଗୋଟିଏ ବୃକ୍ଷମୂଳେ ଆଶ୍ରୟ ନେଲି, ମୁଣ୍ଡରେ ରୁମାଲଟି ରଖି; ବର୍ଷା ପରିବେଶରେ, ଆଶ୍ଚର୍ଯ୍ୟ, ମୁଁ ନିଜେ ହେଲି ଗୋଟିଏ ଦୃଶ୍ୟ । ଯାତ୍ରୀମାନଙ୍କର ଆଖି ମୋ ଉପରେ ପଡ଼ିଲା । ବର୍ଷା ହେଲେ ବର୍ଷାତି ବା ଛତା ନ ଥିଲେ ଲୋକେ ଭିଜନ୍ତି, ନିର୍ବିକାର ଭାବରେ; କେହି ଗଛ ମୂଳରେ ଛିଡ଼ା ହୁଅନ୍ତି ନାହିଁ । ହାସ୍ୟମୁଖ ଓ କୌତୁକଭରା ଚକ୍ଷୁରୁ ନିଜକୁ ମୁକୁଳାଇ ମୁଁ ବନେ ବନେ ଭଙ୍ଗା ଫଟା ପଥର ଉପରେ ପାଦ ପକାଇ ପୁଣି ଆଗକୁ ଚାଲିଲି; ଦେହକୁ କାଠ କରିଦେଲି—ବର୍ଷା ହେଉନାହିଁ, ମୁଁ ଭିଜୁ ନାହିଁ ଏହିପରି ଭାବ; କିନ୍ତୁ ମଜ୍ଜା ବେଶ୍ ଥରି ଉଠୁଥାଏ କୁହୁଡ଼ି ଆଉ ବର୍ଷାର କୋହଲା ପବନରେ ।

କିନ୍ତୁ ଦେଖୁ ଦେଖୁ ମେଘ ଫାଟିଗଲା, 'ଲୁନା' ଉପରେ ରଶ୍ମିର ଗୋଟିଏ ଗୁଚ୍ଛ, ମୁହୂର୍ତ୍ତକେ ଇନ୍ଦ୍ରଧନୁର ଆଭା ଉକୁଟି ଉଠିଲା, ପ୍ରପାତର ସ୍ରୋତରେ, ନିମ୍ନ ନଦୀର ବିପୁଳ ଆବର୍ତ୍ତ ଓ ବୁଦ୍‌ବୁଦ ଉପରେ । କିନ୍ତୁ ସ୍ୱପ୍ନପୁରୀର ସେଇ ଝଲକ କ୍ଷଣକ ମଧ୍ୟରେ କୁଆଡ଼େ ଉଭାଇଗଲା । ଚତୁର୍ଦ୍ଦିଗ ପୁଣି ବେଦନଭରା ହୋଇ ଉଠିଲା ।

ପାଣି ଚପ ଚପ ରାସ୍ତା, ଟପ ଟପ ବର୍ଷା, ପାଦ ଚାଲିବାକୁ ଅମଙ୍ଗ । କିନ୍ତୁ କାନାଡ଼ା ପଟୁ ନାଏଗ୍ରାର ଶ୍ରୀ ନ ଦେଖି ଫେରିବି କିପରି ? ରାତିଟିଏ ମାତ୍ର ରହଣି; ତେଣେ ଗୋଟାଏ ଦେଶର ଡାକ, ରୋମାଞ୍ଚକର ମାଟିର ସ୍ପର୍ଶ । ମନରେ ସାହସ ଠୁଳ କରି ଇମିଗ୍ରେସନ୍ ଅଫିସକୁ ଗଲି ! ପାସପୋର୍ଟ ଯାଞ୍ଚ ହେଲା । ତାପରେ ରାତି ଅଧ ପର୍ଯ୍ୟନ୍ତ କାନାଡ଼ାରେ ରହିବା ଲାଗି ମୋତେ ଅନୁମତି ମିଳିଲା । ନାଏଗ୍ରା ନଦୀ

ଉପରେ ଯୁକ୍ତରାଷ୍ଟ୍ର ଓ କାନେଡ଼ାର ସମାନ ଅଧିକାର । ଦୁଇ ଦେଶ ମଧ୍ୟରେ 'ଇନ୍ଦ୍ରଧନୁ' ସେତୁ । ସେତୁର ମଧ୍ୟ ଭାଗରେ ଜାତିସଂଘର ପତାକା ଉଡ଼ୁଛି । ଆମେରିକା ପଟର ନାଏଗ୍ରା ପାଷାଣବନ୍ଧୁର, କାନେଡ଼ା ପଟ ବୃକ୍ଷମୟ, ଆବର୍ତ୍ତମୟ, ସ୍ରୋତ ଫେନିଳ । ନାଏଗ୍ରାର ତୀରେ ତୀରେ ଦୀର୍ଘ ୩୫ ମାଇଲ ପର୍ଯ୍ୟନ୍ତ ବହୁ ପାର୍କ ଓ ଉଦ୍ୟାନ କାନେଡ଼ା ସରକାର ନିର୍ମାଣ କରିଛନ୍ତି ।

ଉଦ୍ୟାନରେ ବସି 'ହର୍ସ୍‌ସୁ' ପ୍ରପାତ ଦେଖିବାର ସୁବ୍ୟବସ୍ଥା ହୋଇଛି । ସ୍ଥାନୀୟ୍ ଏରୀ କାର୍‌ରେ ଚାଲକୁ ଓହ୍ଲାଇ ନୌକାରେ ଯାତ୍ରୀମାନେ ପ୍ରପାତ ଦେଖି ଯାଉଛନ୍ତି । ଏଠୁ ତିନିଗୋଟି ପ୍ରପାତର ଶ୍ରୀ ସ୍ପଷ୍ଟତର ରୂପେ ଦେଖାଯାଏ । ଗ୍ରୀଷ୍ମକାଳରେ ଜଳର ପ୍ରବାହ ବିପୁଳତର ହୁଏ । ଶୀତକାଳରେ ନଦୀ ଜମାଟ ବାନ୍ଧିଯାଏ, 'ଇରି' ହ୍ରଦରୁ ବଡ଼ ବଡ଼ ବରଫ ଖଣ୍ଡ ଭାସି ଆସି ଏଠି ଜମେ—ସ୍ଥାନେ ସ୍ଥାନେ ନିର୍ମିତ ହୁଏ ବରଫର ସେତୁ । ଏଇ ସେତୁରେ ନଦୀ ଅତିକ୍ରମ କରିବାକୁ ଯାଇ ଅନେକ ମୃତ୍ୟୁ ମୁଖରେ ପଡ଼ନ୍ତି ।

ଶୀତକାଳରେ ବୃକ୍ଷଲତା ପତ୍ରଶୂନ୍ୟ ହୁଏ, ବରଫ ନଦ୍ଧ ହୋଇ କେତେକ ଶାଖାକୁ ଅବନତ କରିଥାଏ; ନଦୀ ଉପରେ ଶ୍ୱେତ ମର୍ମର ଶିଳା ପରି ବହୁ ବରଫ ଖଣ୍ଡ; ପ୍ରପାତର ଜଳଧାରା ଜମାଟ ବାନ୍ଧି ଲମ୍ବମାନ ଆକାରରେ ରହିଯାଏ । କେତେବେଳେ ଗୋଟା ଗୋଟା ବରଫ ପାହାଡ଼ ଉପରୁ ତଳେ କସ୍‌ରୁଡ଼ ହୋଇପଡ଼େ; ନଦୀର ବକ୍ଷ କୁହୁଡ଼ିରେ ଆଚ୍ଛନ୍ନ ହୁଏ; ତୁଷାର ଝଟିକା ଏହି ଶ୍ମଶାନର ପରିବେଶକୁ ଅଧିକ ଭୟାବହ କରିଥାଏ ।

ଗୋଧୂଳି ପରେ ପ୍ରତିଦିନ ପ୍ରପାତକୁ ଦୁଇ ଘଣ୍ଟା ଲାଗି ଆଲୋକିତ କରାଯାଏ—ଆଲୋକର ଇନ୍ଦ୍ରଧନୁ, ଜଳୋଚ୍ଛ୍ୱାସ ଓ ରାତିର ରହସ୍ୟ ସଙ୍ଗେ ମିଶି ଅଦ୍ଭୁତ ମାୟାଲୋକ ସୃଷ୍ଟି କରେ—ଚଞ୍ଚଳ ହୁଏ ଚତୁର୍ଦ୍ଦିଗ, ମର୍ତ୍ତ୍ୟ-ମାଣିକ୍ୟର ସ୍ୱପ୍ନରେ ମଞ୍ଜୁଳ—ଅଜ୍ଞାତର ସୁଖ ସ୍ମୃତିକ ଗଭୀର ଭାବେ ରଙ୍ଗୀନ କରି ଛୁଡ଼ା କରାଏ ସାମ୍ନାରେ । ପ୍ରାକୃତିକ ଆଉ କୃତ୍ରିମ—ଦୁଇର

ସମନ୍ୱୟରେ ଅପୂର୍ବ ଶୋଭାର ସୃଷ୍ଟି ସମ୍ଭବ; ଏଇ ନାଏଗ୍ରା ତେଣୁ ଆମେରିକା ଓ କାନେଡ଼ାରେ ବଡ଼ ଆକର୍ଷଣ ହୋଇଛି, ପୃଥିବୀର ରୂପ ରସାମୋଦୀ ମନ କେତେକାଂଶରେ ଏଠି କେନ୍ଦ୍ରୀଭୂତ ହୋଇ ଯାଉଛି । କେତେ ଭ୍ରମଣକାହାଣୀ, କେତେ କାବ୍ୟକବିତା ପୃଥିବୀର କେତେ ଭାଷାରେ ଯେ ଲେଖା ହୋଇଛି କଳନା କରିବା କଷ୍ଟକର । ଚାର୍ଲ୍‌ସ୍ ଡ଼ିକେନ୍‌ସ, ଟ୍ରଲୋପ୍, ହକ୍‌ସ୍ଲେ, ଅସ୍କାର୍ ଓ୍ୱାଇଲ୍‌ଡ଼, ମୂର୍ ପ୍ରଭୃତି ଲେଖକମାନେ 'ନାଏଗ୍ରା ସ୍ମୃତି'ର ସ୍ୱପ୍ନଭରା ଅଧ୍ୟାୟମାନ ଲେଖି ଯାଇଛନ୍ତି । କିନ୍ତୁ ଜଣେ ପ୍ରକୃତିପ୍ରେମୀଙ୍କ କାହାଣୀ ମନରେ ବିଶେଷ ଭାବେ ରେଖାପାତ କରେ ।

ସେ ଜଣେ ଇଂରେଜ, ନାମ ଫ୍ରାନ୍‌ସିସ୍ ଆବଟ୍, ପିଙ୍ଗଳ ବସ୍ତ୍ରଧାରୀ; କାଖରେ ଖଣ୍ଡିଏ କମ୍ବଳ, ହାତରେ ବଂଶୀ ଓ ପୋର୍ଟଫୋଲିଓ । ସେ ହାତରେ ବୋଷେଇ କରି ଖାନ୍ତି, ଚନ୍ଦ୍ରାଲୋକରେ ପ୍ରପାତର ଧାରେ ଧାରେ ବୁଲନ୍ତି; କେତେବେଳେ ବୃକ୍ଷ ଶାଖା ଧରି ପ୍ରପାତ ସ୍ରୋତକୁ ପଦ ଲମ୍ବାଇ ଦିଅନ୍ତି । କେତେବେଳେ ପ୍ରପାତର ସ୍ରୋତ ଶବ୍ଦ ଶୁଣୁ ଶୁଣୁ ଧ୍ୟାନସ୍ଥ ହୋଇ ପଡ଼ନ୍ତି; କେତେବେଳେ କବିତା ଲେଖନ୍ତି, କିନ୍ତୁ କବି ଯଶରେ ଆକାଂକ୍ଷୀ ନୁହନ୍ତି, କେତେବେଳେ ନଦୀରେ ସନ୍ତରଣ କରନ୍ତି, କେତେବେଳେ ଛବି ଅଙ୍କନ୍ତି, ଶିଳ୍ପୀ ହେବାର ବାସନାରେ ମନକୁ କଳଙ୍କିତ ନ କରି । କେତେବେଳେ ବନ୍ଧୁମାନଙ୍କୁ ଆବେଗରେ ରୋମାଞ୍ଚକର ଭ୍ରମଣକାହାଣୀ ଶୁଣାନ୍ତି, କେତେବେଳେ ବା ମୌନୀ, କାହାର ଉପସ୍ଥିତିକୁ ସହ୍ୟ କରି ପାରନ୍ତି ନାହିଁ । ଅଦ୍ଭୁତ ଭାବେ ଖିଆଲି । ଦିନେ ସେ ଧାଡ଼ି ବସିଲେ—ଜୀବନ ଅପେକ୍ଷା ମୃତ୍ୟୁ ଅଧିକ ରୋମାଞ୍ଚକର ହୋଇପାରେ—ନାଏଗ୍ରାକୁ ସେ ଲମ୍ଫ ପ୍ରଦାନ କଲେ ବୋଲି ଜନଶ୍ରୁତି ଅଛି । ସୌନ୍ଦର୍ଯ୍ୟ ଲାଗି ସୌନ୍ଦର୍ଯ୍ୟକୁ ସେ ଭଲ ପାଉଥିଲେ—କାମନା ବାସନାହୀନ ସେଇ ମହତ୍ ବ୍ୟକ୍ତିଙ୍କର ସ୍ମୃତି ସୁନ୍ଦରକୁ ଏଠି ପବିତ୍ର କରି ରଖିଛି । ତାଙ୍କ ଶିଷ୍ୟମାନେ ତାଙ୍କ ହାଗ ବାରମ୍ବାର ଉଦ୍ଧୃତ ବାଣୀ ଏବେ ବି ଉଚ୍ଚାରଣ କରିଥାନ୍ତି—All is change, eternal progress, no death.

ନାଏଗ୍ରାର ପରିବେଶ ସର୍ବଦା ଶାନ୍ତ, ସୁନ୍ଦର ରହି ପାରିନାହିଁ । ବହୁ ଯୁଦ୍ଧରେ ଏହାର ଧାର ରକ୍ତାକ୍ତ ହୋଇଅଛି । ଫରାସୀମାନେ ଥରେ କାନେଡ଼ା ଓ ଯୁକ୍ତରାଷ୍ଟ୍ରର ଏହି ଅଂଶର ଅଧିକାରୀ ଥିଲେ । ୧୭୨୭ ଖ୍ରୀଷ୍ଟାବ୍ଦରେ ଫରାସୀମାନଙ୍କ ନିର୍ମିତ ନାଏଗ୍ରା ଦୁର୍ଗ ଏବେ ସ୍ମାରକ ହୋଇ ରହିଅଛି ।

ସେତେବେଳେ ରମ୍ ଓ ତମାଖୁ ଦେଲେ ଲୋହିତ ଭାରତୀୟମାନେ ଦୂରରୁ ପଶମ ଓ ଚମଡ଼ା ବୋହି ଆଣୁଥିଲେ । ଫରାସୀମାନେ ପରାଜିତ ହୋଇ ଯେତେବେଳେ ଇଂରେଜଙ୍କ ହାତରେ ଏ ଅଞ୍ଚଳ ଛାଡ଼ିଦେଲେ, ମାନବବାଦୀ ଫରାସୀ ସେନାପତି 'ଗୋଟିଏ ସର୍ତ୍ତ ରଖିଥିଲେ—ଆମେ କଡ଼ା ନିଷ୍ଠୁର ଆଚରଣ କରିଛୁ, ସେଥିଲାଗି ଦୁଃଖିତ । ତୁମେ ଆଜି ଲୋହିତଭାରତୀୟଙ୍କ ପିଠିରେ ମେଣ୍ଢାଲୋମ, ପଶୁଚମ ବୋହିବ ନାହିଁ । ସେହି ଦିନରୁ ଏ ଅଞ୍ଚଳରେ ମାଲ ବୋହି ଆଣିବା ଲାଗି ବଳଦ ଗାଡ଼ି ବ୍ୟବହୃତ ହେଲା ।

ଲୋହିତ ଭାରତୀୟଙ୍କ ଭାଗ୍ୟମୀମାଂସା ମଧ୍ୟ ଏହି ସ୍ଥାନରେ ଚିରକାଳ ଲାଗି ହୋଇ ଯାଇଥିଲା । ୧୭୬୩, ସେପଟେମ୍ବର ୧୪ତାରିଖ । ସେମାନେ ମାତୃଭୂମିର ଉଦ୍ଧାର ଲାଗି ଏଠି ଶେଷ ଚେଷ୍ଟା କରିଥିଲେ । ୭୦ ଜଣ ଇଂରେଜ ସୈନ୍ୟ ବହୁ ଗୋଳା ବାରୁଦ ବଳଦ ଗାଡ଼ିରେ ଘେନି ସେ ଦିନ ଏହି ନଦୀ ପାରି ହେଉଥିଲେ । ଲୋହିତ ଭାରତୀୟମାନେ ଅତର୍କିତ ଭାବରେ ଆକ୍ରମଣ କରି ସେମାନଙ୍କୁ ବିନାଶ କଲେ । ଏହି ହତ୍ୟାକାଣ୍ଡ ଫଳରେ ମାତୃଭୂମିର ଉଦ୍ଧାର ତ ହେଲା ନାହିଁ, ଓଲଟି ନାଏଗ୍ରା ତୀରବର୍ତ୍ତୀ ସମସ୍ତ ଜମି ଇଂରେଜଙ୍କ ହାତରେ ଛାଡ଼ି ଦେବାକୁ ସେମାନେ ବାଧ୍ୟ ହେଲେ । ଯେଉଁଠି ଏ ହତ୍ୟାକାଣ୍ଡ ହୋଇଥିଲା ତାହା ଡେଭିଲସ୍ ହୋଲ୍ ନାମରେ ଖ୍ୟାତ ।

ଏଠି ଇଂରେଜଙ୍କ ନିଷ୍ଠୁର ଆଚରଣର କେତେକ ଘଟଣା ଲୋକ ସ୍ମୃତିରେ ସଂଜୀବିତ ହୋଇ ରହିଅଛି । ସେତେବେଳେ ମାତୃଭୂମିର ମୁକ୍ତିଲାଗି ଆମେରିକାନ୍‌ମାନେ ଇଂରେଜ ସହିତ ଯୁଦ୍ଧ କରୁଥାନ୍ତି । ଇଂରେଜ

ସେନାପତି କେତେକ ସୈନ୍ୟ ନେଇ ନାଏଗ୍ରା ପାରହୋଇ ଦେଖିଲେ ଯେ କେତେକ ଆମେରିକାନ୍ ତାଆସ ଖେଳୁଛନ୍ତି । ସେନାପତି ଝରକା ପାଖେ ଛିଡ଼ା ହୋଇ ଏ ଖେଳ ଦେଖିଲାବେଳେ ଜଣେ ଖେଳାଳୀ ଫାଜିଲମିରେ ପଚାରିଲା—ଟିକ୍କା କାହାକୁ କହନ୍ତି, ଜାଣ ? କ୍ରୋଧାନ୍ୱିତ ସେନାପତି ତା ପିଠିରେ ସଙ୍ଗୀନ୍ ଗଳାଇଦେଇ କହିଲା—ଟିକ୍କା ଏହାକୁ ହିଁ କହନ୍ତି । ତାପରେ ଇଂରେଜ ସୈନ୍ୟମାନେ ଆସି ଅନ୍ୟ ଖେଳାଳୀମାନଙ୍କୁ ସଙ୍ଗୀନ୍ ଭୁଷି ମାରିଦେଲେ ।

ନାଏଗ୍ରା ବହୁ ନିଷ୍ଠୁର କୌତୁକର ମୂକ ସାକ୍ଷୀ ହୋଇ ରହିଛି । ୧୮୨୭ ଖ୍ରୀଷ୍ଟାବ୍ଦରେ ମିଚିଗାନ୍ ନାମକ ଗୋଟିଏ ପୁରାତନ ନୌକା ଉପର ହ୍ରଦରୁ ଭସାଇ ଦିଆଗଲା; ଏହାର ଯାତ୍ରୀ—ଦୁଇଟି ଭାଲୁକ, ଗୋଟିଏ କୁକୁର, କେତୋଟି ବତକ, ଅନ୍ୟାନ୍ୟ ଛୋଟ ଛୋଟ ଅନେକ ପ୍ରାଣୀ । ପରିଣାମର ଭୟାବହତା ବୁଝି ବୋଧହୁଏ ଗୋଟିଏ ଭାଲୁକ ସ୍ରୋତକୁ ଲମ୍ଫ ଦେଲା, ନଦୀ ପାର ହୋଇ ଆର କୂଳକୁ ଚାଲିଗଲା । ଅସହାୟ ପ୍ରାଣୀଗୁଡ଼ିକ ପ୍ରପାତରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ମାଂସ ମେଞ୍ଚାରେ ପରିଣତ ହୋଇଥିଲେ । ୩୦ ହଜାର ଲୋକ ନିର୍ବିକାର ଚିତ୍ତରେ ଏହି ନିଷ୍ଠୁର ଦୃଶ୍ୟ ଉପଭୋଗ କରୁଥାନ୍ତି । ଏହିପରି ବିନୋଦନର ବହୁ ନିଷ୍ଠୁର ପୁନରାବୃତ୍ତି ହୋଇଅଛି ।

ପ୍ରକୃତିକୁ ଜୟ କରିବା ଲଗି ମାନବିକ ପ୍ରଚେଷ୍ଟା ଯୁଗ ଯୁଗ ଧରି ଲଗି ରହିଅଛି । ଶୀତଳତମ, ଗଭୀରତମ ଓ ଉଚ୍ଚତମ ସ୍ତରରେ ମନୁଷ୍ୟ ପ୍ରକୃତିକୁ ପରାଭୂତ କରିଅଛି । ନାଏଗ୍ରାର ପ୍ରଖରତମ ସ୍ରୋତ ମୁଖରେ ଶକ୍ତି ପରୀକ୍ଷା ଲଗି ସାହସୀ ବୀରମାନଙ୍କର ଚେଷ୍ଟାର ମଧ୍ୟ ଅନ୍ତ ନାହିଁ ।

ନାଏଗ୍ରା ସଙ୍ଗେ ଲମ୍ଫ ଦେବା ମୃତ୍ୟୁବରଣ ବ୍ୟତୀତ ଅନ୍ୟ କିଛି ନୁହେଁ । କିନ୍ତୁ ବାଧା ବିଘ୍ନ ବା ପ୍ରାଣଶଙ୍କା ମନୁଷ୍ୟକୁ କେଉଁ କାର୍ଯ୍ୟରେ ପଶ୍ଚାତ୍‌ପଦ କରାଇଛି ? ସୈନିକ ନୁହେଁ, ନାବିକ ନୁହେଁ, ମଲ୍ଲଯୋଦ୍ଧା ନୁହେଁ, ଆଶ୍ଚର୍ଯ୍ୟ କଥା, ଏ ଦିଗରେ ପ୍ରଥମ ଚେଷ୍ଟା କରିଥିଲେ ଜଣେ ଶିକ୍ଷକ, ପୁଣି

ସେ କାଳର ଜଣେ ନାରୀ । ତାଙ୍କ ନାମ ଆନ୍ନା ଏଡ୍‌ସନ୍ ଟେଲର । ପରୀକ୍ଷା ସ୍ୱରୂପ ସେ ଗୋଟିଏ ମାର୍ଜାରକୁ ବାକ୍‌ସରେ ବନ୍ଦ କରି ସ୍ରୋତ ମୁଖରେ ଛାଡ଼ି ଦେଇଥିଲେ; ମାର୍ଜାରଟି ଜୀବନ ହରାଇଲା । ମୃତ୍ୟୁର ଏହି ନମୁନା ଦେଖି ସୁଦ୍ଧା ବହୁ ବାରଣ ସତ୍ତ୍ୱେ ଆନ୍ନା ଏହି ଦୁଃସାହସିକ କାର୍ଯ୍ୟରୁ ନିବୃତ୍ତ ହୋଇ ନ ଥିଲେ । ମଦ ପିମ୍ପା ପରି ଗୋଟିଏ ଲୁହାର ବାକ୍‌ସ ସେ ନିର୍ମାଣ କରାଇଥିଲେ । 'ହର୍ସସୁ' ପ୍ରପାତ ବିପୁଳ ଚକ୍ରର ସୃଷ୍ଟି କରିଛି । ଆନ୍ନାଙ୍କର ବିଶ୍ୱାସ ଥିଲା ଯେ ସେ ତାର ଗଭୀର ଜଳରେ ପଡ଼ିବେ; ବାକ୍‌ସ ଭାଙ୍ଗିବ ନାହିଁ । ଶରୀରର ବିଶେଷ କ୍ଷତି ଘଟିବ ନାହିଁ । ବହୁ ଜନ ସମାଗମ ମଧ୍ୟରେ ଆନ୍ନା ବାକ୍‌ସରେ ପଶି ନାଏଗ୍ରାରେ ଲମ୍ଫ ପ୍ରଦାନ କଲେ । ୧୬୦ ପାଉଣ୍ଡ ଓଜନ ଶରୀର ବିକ୍ଷତ ଓ ବିଦୀର୍ଣ୍ଣ ହୋଇଥିଲା । କିନ୍ତୁ ଭାଗ୍ୟବତୀ ସେ; କୌଣସି ପ୍ରକାରେ ବଞ୍ଚିଗଲେ । ପ୍ରକୃତି ଉପରେ ବିଜୟିନୀ ହେବାର ଗୌରବ ସେ ଲାଭ କଲେ । କିନ୍ତୁ ବୀରତ୍ୱର ପୂଜା କରିବା ଲାଗି ସେ କାଳରେ ଗୁଣଗ୍ରାହୀ ନ ଥିଲେ । ଆନ୍ନାଙ୍କୁ ଶେଷ ଜୀବନ ବିକଟ ଦାରିଦ୍ର୍ୟ ମଧ୍ୟରେ କଟାଇବାକୁ ପଡ଼ିଥିଲା । ତାଙ୍କ ମୃତ୍ୟୁ ଶଯ୍ୟା ନିକଟରେ କେହି ଉପସ୍ଥିତ ନ ଥିଲେ ।

ତାପରେ ନାଏଗ୍ରାର ବିଜୟ ଲାଗି ବହୁ ସଫଳ ଓ ବିଫଳ ପ୍ରୟାସ ହୋଇଅଛି, ଏହି ଘଟଣାର ଦଶବର୍ଷ ପରେ ବବିଲିଚ୍ ନାମକ ଜଣେ କ୍ଷୀଣକାୟ ଇଂରେଜ ଲମ୍ଫ ପ୍ରଦାନ କରିଥିଲେ । ତାଙ୍କ ଦାନ୍ତ ଦିପାଟି ଉଡ଼ିଗଲା, ଜଙ୍ଘ ମଧ୍ୟ ସାଙ୍ଘାତିକ ଭାବେ ଜଖମ୍ ହେଲା । ଆରୋଗ୍ୟ ହେବା ଲାଗି ତାଙ୍କୁ ଡାକ୍ତର ଖାନାରେ ୨୩ ସପ୍ତାହ ପଡ଼ି ରହିବାକୁ ହୋଇଥିଲା ।

ଜର୍ଜ ଏଲ୍ ଷ୍ଟାଥାକିସ୍ ନାମକ ଜଣେ ଗ୍ରୀକ୍ ଗୋଟିଏ ଇସ୍ପାତ ବାକସରେ ନିଜକୁ ବନ୍ଦ କରି ନାଏଗ୍ରା ସ୍ରୋତରେ ଭସି ଆସିଲେ । ଦୁର୍ଭାଗ୍ୟବଶତଃ ବାକ୍‌ସଟି ପ୍ରପାତ ଆଡ଼କୁ ନ ଆସି ଗୋଟିଏ ପାହାଡ଼ରେ ଲାଗି ରହିଲା । ସେଥିରେ ମାତ୍ର ତିନିଘଣ୍ଟା ଲାଗି ଅକ୍‌ସିଜେନ୍ ଥିଲା । ଶ୍ୱାସ ରୁଦ୍ଧ ହେବାରୁ ତାଙ୍କର ମୃତ୍ୟୁ ହେଲା ।

ଜନ୍ ଲସିଏର୍ ନାମକ ଆଉ ଜଣେ ବ୍ୟକ୍ତି ରବର କମ୍ପାନୀରେ ତାଙ୍କ କଳ୍ପନା ଅନୁସାରେ ଗୋଟିଏ ବଲ୍ ଗଢ଼ାଇଲେ । ସେଥିରେ ବସି

ନଗୀରେ ଭାସି ଆସିଲେ । ବଲଟି ପ୍ରପାତ ସ୍ରୋତରେ ଗଡ଼ି ଆସି ନିମ୍ନ ନଗୀରେ ଭାସି ଉଠିଥିଲା । ଲସିଏର୍‌ଙ୍କୁ ସେଥିରୁ କଢ଼ା ଯାଇଥିଲା— ଅକ୍ଷତ ଶରୀର, ପ୍ରଫୁଲ୍ଲ ମନ । ରେଡ଼୍‌ହିଲ ନାମକ ଜଣେ ବ୍ୟକ୍ତି ଇପ୍ରାୟ ପିମ୍ପାରେ ନାଏଗ୍ରାରେ ଲମ୍ଫ ପ୍ରଦାନ କରି ଘୋର ଆବର୍ତ୍ତ କବଳରେ ପଡ଼ିଥିଲେ । ବହୁ କଷ୍ଟରେ ସେଥିରୁ ତାଙ୍କୁ ଉଦ୍ଧାର କରା ଯାଇଥିଲା । ଯେପରି ପିତା, ସେହିପରି ତାଙ୍କର ବୀର ପୁତ୍ର ଲମ୍ଫ ପ୍ରଦାନ ଲାଗି ଗୋଟିଏ ପ୍ରଦର୍ଶନୀର ଆୟୋଜନ କରିଥିଲେ । କେତେକ ରବର୍ ଟାୟାର୍ ଏକାଠି ବାନ୍ଧି ତା ଭିତରେ ପଶି ହିଲ୍ ଲମ୍ଫ ଦେଲେ । ପତନ ପରେ ତାଙ୍କୁ ଜଣାଗଲା ଯେପରିକି ହାଡ଼ସବୁ ଗୁଣ୍ଡା ହୋଇ ଯାଇଛି । କଲିଜା ଛାତି ଭିତରୁ ପଦାକୁ ବାହାରି ପଡ଼ୁଛି । କିନ୍ତୁ ତାଙ୍କ ଶରୀର ଅକ୍ଷତ ଥିଲା । ଦର୍ଶକମାନେ ପିତାଙ୍କ ସ୍ମୃତି ରକ୍ଷା ଲାଗି ତାଙ୍କୁ ୩୦୧ ଡଲାର୍ ଅର୍ପଣ କରିଥିଲେ ।

ତାପରେ ଜଣେ ଚଖଚାରିକା ନିଜର କୁକୁରକୁ ଘେନି ଏଇ ଦୁଃସାହସିକ ପ୍ରୟାସ କରିଥିଲେ; ତାଙ୍କର ଶୋଚନୀୟ ମୃତ୍ୟୁ ହେଲା, କିନ୍ତୁ କୁକୁରଟି ବଞ୍ଚିଗଲା ।

ଉପରେ ଦର୍ଜନ ବାନ୍ଧ ନାଏଗ୍ରା ପାରି ହେବାକୁ ଚେଷ୍ଟା କରି କେତେକ ବ୍ୟକ୍ତି ସଫଳ ହୋଇଛନ୍ତି । ବହୁ ବ୍ୟଥିତ, ନିରାଶ ବ୍ୟକ୍ତିଙ୍କୁ ନାଏଗ୍ରା ତାର ଶାନ୍ତିମୟ କ୍ରୋଡ଼ରେ ଆଶ୍ରୟ ଦେଇଛି । ପୁଲିସ୍‌ର ଜାଗ୍ରତ ଦୃଷ୍ଟି ଏଡ଼ି କେତେକ ଏବେ ବି ଏଠି ଆତ୍ମହତ୍ୟା କରନ୍ତି । କିନ୍ତୁ ଏବେ କାନେଡ଼ା ଓ ଯୁକ୍ତରାଷ୍ଟ୍ର ସରକାର ନାଏଗ୍ରା ଲମ୍ଫନକୁ ବେଆଇନ୍ ଘୋଷଣା କରିଛନ୍ତି । ଏଥିଲାଗି ଜେଲ୍ ଓ ଜରିମାନା ଦଣ୍ଡର ବ୍ୟବସ୍ଥା ହୋଇଅଛି ।

ଭୂତତ୍ତ୍ୱବିତ୍‌ଙ୍କ ମତରେ ନାଏଗ୍ରାର ସୃଷ୍ଟି ଅନ୍ଧକାରମୟ ଅତୀତରେ । ସେତେବେଳେ ଏହାର ଧାରା ଅତି କ୍ଷୀଣ ଥିଲା; ବହୁ ମୃତ୍ତିକା କ୍ଷୟକରି ଏହା ଆପଣା ଶଯ୍ୟାକୁ ଗଭୀରତର କରିଅଛି । ଏବେ ଶୈଳ ଶିଖରରୁ ପ୍ରବଳ ପ୍ରବାହରେ ଏହା ନିପତିତ ହେଉଅଛି । ପ୍ରଚଣ୍ଡ ଶବ୍ଦରେ ଘାତ ହୋଇ ଲୋହିତ ଉପତ୍ୟକାମାନେ ଏହାର ନାମ

ଦେଇଛନ୍ତି 'ନାଏଗ୍ରା'—ନାଏଗ୍ରାର ଅର୍ଥ ବଜ୍ରସ୍ୱର; ଈଶ୍ୱରଙ୍କ ବ୍ୟତୀତ ଏତେ ଭୟଙ୍କର ଶବ୍ଦ ଆଉ କାହାର ହୋଇପାରେ ? ତେଣୁ ସେମାନେ ଏହି ପ୍ରପାତକୁ ପୂଜା କରୁଥିଲେ ।

ଝର୍ ଝର୍ ବର୍ଷା, ଜଳଝର୍‌ର କୁହୁଡିରେ ପ୍ରପାତର ଶ୍ରୀ ଅସ୍ପଷ୍ଟ—ଅନ୍ଧକାର ମାଡ଼ି ଆସୁଛି । କାନେଡ଼ା ଉପରେ ଗୋଟିଏ ଅତୃପ୍ତ ଦୂର-ଗାମୀ ଦୃଷ୍ଟି ନିକ୍ଷେପ କରି ଭୂତପଦରେ ମୁଁ ଯୁକ୍ତରାଷ୍ଟ୍ରକୁ ବାହୁଡି ଆସିଲି । ମନ ଭିତରେ ମୋର ନାଚୁଥିଲା ବହୁ ଐତିହାସିକ ଘଟଣା ଦୁର୍ଘଟଣାର ଛାୟା, ରୂପସୀ ନାଏଗ୍ରାର ମନମୋହକର ମାୟା ।

ପ୍ରାୟ ରାତି ଦଶଟା ବେଳେ ଶୋଇଲି । ଦୁଆରେ ଖଡ଼ଖଡ଼ ଶବ୍ଦ; ଶୁଣି ନିଦ ଭାଙ୍ଗିଗଲା; ଖୋଲିବି କି ନାହିଁ ? କାଳେ ଡକେଇତ ହୋଇଥିବ ? ହୋ ହୋ ପାଞ୍ଚ ହୋଇ ଶେଷରେ ଖୋଲିଲି । ଜଣେ ଯୁବତୀ !

'କିଏ ? କାହାକୁ ଖୋଜୁଛନ୍ତି ?'

'ଲିଭି ଏଠିକି ଆସିଛି ?'

'ସେ କିଏ ? ମୁଁ ଚିହ୍ନେନାହିଁ ?

'ତା ହେଲେ ଭୁଲ ହୋଇଯାଇଛି, ମୋତେ କ୍ଷମାକର ?'

ସେ ଚାଲିଗଲା । ନାନା ଶଙ୍କା ଆଉ ସଂଶୟ ମଧ୍ୟରେ ପୁଣି ସେହିପରି ସଙ୍କେତ ।

'କିଏ ? କାହାକୁ ଖୋଜୁଛନ୍ତି ?'

'ଲିସା ଏଠିକି ଆସିଛି ?'

'ଚିହ୍ନେ ନାହିଁ, ଜାଣେ ନାହିଁ, ସେ କାହିଁକି ଏଠିକି ଆସିବ ?'

'ତା ହେଲେ ଏ କୋଠରୀ ନୁହେଁ, ମୁଁ ଭୁଲ୍‌ରେ ଡାକୁଚି, ଅନୁଗ୍ରହ କରି କ୍ଷମା ଦିଅ ?'

ଦ୍ବିତୀୟଥର ପ୍ରାୟ ରାତି ଗୋଟାଏ ବେଳେ ଯେତେବେଳେ ଶବ୍ଦ ହେଲା, ମୁଁ ଭାବିଗଲି, ଏ ଯୁବକଗୁଡ଼ାକ ରାତିସାରା କାହିଁକି ବୁଲୁଛନ୍ତି ? ସେମାନଙ୍କୁ ନିଦ ନାହିଁ ? ସେ ନ ଶୋଇଲେ ବୋଲି ଅନ୍ୟ କେହି ଶୋଇବେ ନାହିଁ ? ଦୁଆର ଖୋଲି ଜିଜ୍ଞାସିଲା ଯୁବକଟିକୁ କହିଲି—ଏଇ ଦରଜାରେ କାହିଁକି ଭୁଲ୍ ହେଉଛି ? ଯୁବକଟି ଲଜ୍ଜା ସଂକୋଚରେ କୁଞ୍ଚିତ୍ ଭାବ କରି କହିଲା—ମୁଁ ଆପଣଙ୍କ ନିଦ ଭାଙ୍ଗି ଥିବାରୁ ଦୁଃଖିତ । ମୋର ଜଣେ ବାନ୍ଧବୀଙ୍କୁ ଖୋଜି ପାଉନାହିଁ । ସେ ଆମ ସଙ୍ଗେ ବୁଲିଯାଇଥିଲା; କେଉଁଠି ହଜି ଯାଇଛି ।

ମୋ ନଜରରେ ପଡ଼ି ନଥିଲା; ମୋ କୋଠରି ପାଖ କୋଠରି ଦୁଆରବନ୍ଧରେ ଲେଖାହୋଇଛି—'girls', ଏଇ ବାଳିକାମାନେ କିଏ ? ଏମାନଙ୍କ ଲାଗି କାହିଁକି ସ୍ୱତନ୍ତ୍ର ଗୃହ ରଖାଯାଇଛି ?

ଜଣେ ଭାରତୀୟ ଡାକ୍ତର ବନ୍ଧୁ ମୋ ମୁଖରୁ ଏଇ କାହାଣୀ ଶୁଣି କହିଲେ—ଆପଣ ମଫସଲି ! ଭଲ କଥା, ଭଗବାନ୍ ରକ୍ଷା କରି-ଛନ୍ତି ।

ଦିନକୁ ୯ ଡଲାର୍ 'ଇନ୍' ଭଡ଼ା । ମ୍ୟାନେଜର୍‌ଙ୍କୁ ସେତକ ଦେଇ ସକାଳ ଛ'ଟା ବେଳେ ବିଦାୟ ନେଲି । ତାଙ୍କେ ବାଟରେ ବସ୍ ଷ୍ଟାଣ୍ଡ । ସୁଟ୍‌କେସ୍‌ଟି ଧରି ପହଞ୍ଚିଲି; ଟାକ୍‌ସିବାଲା ପ୍ରବର୍ତ୍ତାଇଲା— ୧୧ ଡଲାର୍ ଦେଲେ ବଫ୍‌ଲୋ ସହରରେ ପହଞ୍ଚାଇ ଦେବ । ଟିକିଏ କୁନ୍ଥ କୁନ୍ଥ ହେବାର ଦେଖି କହିଲା—ଯଦି ଏଥିରେ ନ ଯିବେ, ଅଧଘଣ୍ଟାଏ ଅପେକ୍ଷା କରନ୍ତୁ, ବସ୍ ଆସିବ । ଏ ବସ୍ 'ବଫ୍‌ଲୋ' ନଗର ପର୍ଯ୍ୟନ୍ତ ଯିବ; ସେଠି ଆପଣ ଗ୍ରେ ହାଉଣ୍ଡ ବସ୍ ପାଇବେ— ବଫ୍‌ଲୋରୁ ବାଲ୍‌ଟିମୁର୍ । ଟାକ୍‌ସିବାଲା ମୋତେ ବସ୍ ଅପରେଟର୍‌ଙ୍କ ସଙ୍ଗେ ପରିଚିତ କରାଇ ଦେଲା । ତା ଟାକ୍‌ସିରେ ନ ଗଲେ ବି ବିରକ୍ତ ନ ହୋଇ ଯେ ଏତେ ଉପକାର କଲା ।–ସେଥିଲାଗି ମୁଁ କୃତଜ୍ଞତା ପ୍ରକାଶ କଲି ।

ମେଦୁଆ ଘାଗ । ନାଏଗ୍ରା ସହର ଛାଡ଼ିହୋଇ ବସ୍ ଗ୍ରାମାଞ୍ଚଳକୁ ଚାଲିଲା । ଦୁଇ ପଟେ ପାହାଡ଼, କେଉଁଠି ଘଞ୍ଚ ଜଙ୍ଗଲ, ଚକ୍‌ଚକଣ ସବୁଜ; ତାହାର ମଝିରେ ଗୋଟି ଗୋଟିକିଆ ଘର—ଖଳାବାଡ଼; ଘରେ ଗହମ ନଡ଼ା ଗଦା; ଶୀତଦିନ ଲାଗି ରଖା ହୋଇଛି । ଗୋଟିଏ ଅନୁଚ୍ଚ କାଠଘଡ଼ ଉପରେ ଘାସ ଗଦା ହୋଇଛି, ଘରପଟ୍ଟ କେଉଁଠି ଖାଇଛନ୍ତି—କଳା ଛଇଳା, କଣଗ୍ଲ ଛଇଲା ଗାଈସବୁ । ସେ ପଟେ ଦଳେ ଘୋଡ଼ା ଚରୁଛନ୍ତି । ମାଇଲ ମାଇଲ ବ୍ୟାପୀ ଗହମ କ୍ଷେତ, ମଧ୍ୟେ ମଧ୍ୟେ ମୋଟେଲ୍ । ବିଜୁଳି ଖୁଣ୍ଟର ଅଗ୍ରରେ ଲୋକେ ଖମା ଖୋଳୁଛନ୍ତି, ହାତରେ ଗ୍ଲୋଭ୍ ।

ଡାହାଣ ପଟେ ଲେକ୍ ଇରି, ଓହାଇଓ ରାଜ୍ୟ, ଓହାଇଓ ନଦୀ ଯୋଗୁଁ ଉର୍ବର; ଯେପରି କୃଷି ସେହିପରି ଶିଳ୍ପସମୃଦ୍ଧ, ଇରି ହ୍ରଦର କୂଳେ କୂଳେ ଲୁହା କାରଖାନା, ଔଷଧ, ରବର, ମଟର କାରଖାନା; ସୁଦୃଶ୍ୟ ସ୍ଥାନ, ଭ୍ରମଣକାରୀଙ୍କ ସ୍ୱର୍ଗ ।

ବାମ ଦିଗରେ ପେନ୍‌ସିଲ୍‌ଭାନିଆ ରାଜ୍ୟ, ଏହାର ରାଜଧାନୀ ଫିଲାଡେଲ୍‌ଫିଆ ନଗର, ବିପ୍ଳବର କେନ୍ଦ୍ରସ୍ଥଳ । ୧୭୯୦ରୁ୧୮୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଯୁକ୍ତରାଷ୍ଟ୍ରର ରାଜଧାନୀ ଥିଲା । ବସ୍ ପେନ୍‌ସିଲ୍‌ଭାନିଆ ରାଜ୍ୟ ସୀମାକୁ ଯାଇ ଗେଟିସ୍‌ବର୍ଗ ସହରରେ ପହଞ୍ଚିଲା । ଏଠି ଉତ୍ତର ଓ ଦକ୍ଷିଣ ରାଜ୍ୟ ମଧ୍ୟରେ ତିନିଦିନବ୍ୟାପୀ ଭୟାବହ ଗୃହଯୁଦ୍ଧ ହୋଇଥିଲା—ମୂର୍ଚ୍ଛାରବେ ରକ୍ତାଘାତ ଭରି ହୋଇଥିଲା, ଦକ୍ଷିଣବାସୀ ଏଇଠାରୁ ପଛଘୁଞ୍ଚା ଦେଲେ; ଯେଉଁମାନେ ଦେଶର ଐକ୍ୟ ଲାଗି ଏଠି ଆତ୍ମବଳି ଦେଇଥିଲେ—ଜାତୀୟ ଶ୍ମଶାନରେ ସେମାନଙ୍କୁ ସ୍ୱତନ୍ତ୍ର ଭାବେ ଚିହ୍ନିତ କରାଯାଇଛି ।

ମକ୍‌କା, ବାର୍ଲି, ଧୂଆଁପତ୍ର, ଆଳୁ ପ୍ରଧାନ ଫସଲ । କୋଡ଼ିଏ ହଜାର ଏକର ଜମିରେ ଏଠି ଫଳଗଛ କରାଯାଏ—ଫଳ ମଧ୍ୟରେ ଆପଲ୍, ପିଚ୍, ଚେରି, ଅଙ୍ଗୁର, ବେରି ପ୍ରଧାନ ।

ତାପରେ ବସ୍ ଗୋଟିଏ ନଦୀ କୂଳେ କୂଳେ ଚାଲିଲା; ଏହାର ଲୋକପ୍ରିୟ ଭାରତୀୟ ନାମ ସସ୍‌କୋହେନା; ଜଳ ପ୍ରାୟ ସ୍ଥିର,

ଅଗଣିର । ନଗର ଦୁଇ ପଟେ ପାହାଡ, ପାହାଡ଼ ଉପତ୍ୟକାରେ ଗ୍ଛୋଟ ଗ୍ଛୋଟ ସହର; ଫୁଟ୍‌ପାଥ୍‌ରେ ଗୋଟିଏ ହେଲେ ଦୋକାନ ନାହିଁ, କେଉଁଠି ଫେରିବାଲାର ଡାକ ଶୁଣିପାରୁ ନାହିଁ; ଟିକିଏ ଧୂଳି ବା ଗୋଟାଏ ମାଛି କେଉଁଠି ଦିଶୁ ନାହିଁ ।

ନଦୀ ମଧ୍ୟରେ ଗ୍ଛୋଟ ଗ୍ଛୋଟ ଦ୍ୱୀପ, ଘାସଭର୍ତ୍ତି; କେଉଁଠି ବା ଘନାରଣ୍ୟ । ଦ୍ୱୀପ ସ୍ପର୍ଶ କରି କରି ଦୃଶ୍ୟମୋଦୀମାନଙ୍କର ନୌକା ଗ୍ଲୁଲିଛି । କିଏ କେଉଁଠି ବନଶୀ ପକାଇ ମାଛ ଧରୁଛନ୍ତି ।

ପ୍ରାୟ ସନ୍ଧ୍ୟାବେଳକୁ ବସ୍ 'ମେରିଲ୍ୟାଣ୍ଡ' ରାଜ୍ୟରେ ପହଞ୍ଚିଲା— ଏହି ରାଜ୍ୟ ଆଟଲାଣ୍ଟିକ୍ ସମୁଦ୍ରରୁ 'ଆଲେଘେନି' ପର୍ବତମାଳା ପର୍ଯ୍ୟନ୍ତ ବିସ୍ତୃତ; ୧୬୩୪ ଖ୍ରୀଷ୍ଟାବ୍ଦରେ ଏଠି ପ୍ରଥମେ ଉପନିବେଶ ସ୍ଥାପିତ ହେଲା; ଆମେରିକାନ୍ ଓ ବ୍ରିଟିଶ୍‌ଙ୍କ ମଧ୍ୟରେ ବହୁ ଯୁଦ୍ଧ ସଂଘଟିତ ହୋଇଥିଲା । ମାକ୍ ହେନେରି ଦୁର୍ଗ ଉପରେ ବ୍ରିଟିଶ୍ ନୌବାହିନୀ ଗୁଳିବୃଷ୍ଟି କରିଥିଲେ; ଫ୍ରାନ୍‌ସିସ୍ ସ୍କଟ୍ ନାମକ ଜଣେ କବି ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହୋଇ 'The starspangled Banner' କବିତା ରଚନା କରିଥିଲେ । ଏହା ଏବେ ଯୁକ୍ତରାଷ୍ଟ୍ରର ଜାତୀୟ ସଙ୍ଗୀତ ଭାବେ ଗୃହୀତ । ମେରିଲ୍ୟାଣ୍ଡ ଯୁକ୍ତରାଷ୍ଟ୍ରରେ କେତେକ ବିଷୟରେ ଅଗ୍ରଣୀ—ଏଠି ପ୍ରଥମ ବାଣିଜ୍ୟିକ ରେଳପଥ ନିର୍ମିତ ହୋଇଥିଲା, ପ୍ରଥମ ଟେଲିଗ୍ରାଫ୍ ଲାଇନ ଓ ଲିନୋ ଟାଇପ୍ ପ୍ରଚଳିତ ହୋଇଥିଲା । ପୂର୍ବ ଉପକୂଳବର୍ତ୍ତୀ ବନ୍ଦରମାନଙ୍କ ମଧ୍ୟରେ ବାଲ୍‌ଟିମୋର୍ ମୁଖ୍ୟସ୍ଥାନ ଅଧିକାର କରିଅଛି । ଏଠି ୬୦ଶ ପ୍ରକାର ମାଛ ଧରାଯାଏ । ସେଥି ମଧ୍ୟରେ ବାସ୍, ବ୍ଲାକ୍‌ଡ୍ରମ୍, ବ୍ଲୁ ଫିସ୍, ବଟର ଫିସ୍, ସାଡ୍, ହେରିଂ, ଟ୍ରାଉଟ୍ ପ୍ରଧାନ ।

ପ୍ରାୟ ରାତ୍ରି ୯ଟା ବେଳେ ବସ୍ ବାଲ୍‌ଟିମୋର୍‌ରେ ପହଞ୍ଚିଲା । ଡାକ୍ତର ଆଲେକ୍‌ଜାଣ୍ଡାର୍ ମୋତେ ନେବା ଲାଗି ବସ୍ ଷ୍ଟାଣ୍ଡକୁ ଆସିବା କଥା । ଆଗରୁ ଚିଠିପତ୍ର କାରବାର ହୋଇଥିଲା । ତାଙ୍କୁ ଦେଖି ନାହିଁ । ସେ ମଧ୍ୟ ମୋତେ ଦେଖି ନାହାନ୍ତି ! ଗ୍ଲରିଆଡ଼େ ଆଖି ବୁଲାଇ ଗଲି; ଖୋଜିଲି ଆଖି ସନ୍ଧିତ୍ସୁ ମନର ସୂଚନା ଯେଉଁଠି ପାଇଲି ପଚ୍ଚରି ବସିଲି—ଆପଣ

କାହାକୁ ଖୋଜୁଛନ୍ତି କି ? କଏ କହିଲା, ନାଇଁ, ଧନ୍ୟବାଦ; କଏ ବା ଅନ୍ୟ ଗୋଟେ ଅସମ୍ପୃକ୍ତ ନାମଟି କହିଲା । ଯିବ କୁଆଡ଼େ ? ବ୍ୟସ୍ତ ହୋଇ ବସି ପଡ଼ିଲା । ତାପରେ ଭାବିଲା—ଟେଲିଫୋନ୍ କରେ; ଅନଭ୍ୟସ୍ତ । ଫୋନ୍‌ଟି ଧରି ୨୫, ୧୦ ଓ ୫ ସେଣ୍ଟ ଗଳାଇ ତାପରେ ନମ୍ବର କହିବା ନିୟମ । ମୁଁ ମୁଦ୍ରାଟକ ଗଳାଇ ସାରି ଫୋନ୍ ଧରିଲା । କେହି ଶୁଣିଲେ ନାହିଁ । ୪୦ ସେଣ୍ଟ ହରାଇ ଫେରି ଆସିଲା ଫୁଟ୍‌ପାଥ୍ ଉପରକୁ । ଗୋଟିଏ ଟାକ୍‌ସି, ଅଟକାଇ ଦେଖିଲା ଡ୍ରାଇଭର ନିଗ୍ରୋ । ତାକୁ ଗଳି ଓ ଘରର ନମ୍ବର ଦେଖାଇଲା । ସେ କିଛି ନ କହି ମୋତେ ବସାଇ ଟାକ୍‌ସି ଡ୍ରାଇଭ କରି ଚାଲିଲା । 'ବଲ୍‌ଟିମୋର' ସହର ତମାମ୍ ବୁଲି ବୁଲି କେଉଁଠି ଆଲେକ୍‌ଜାଣ୍ଡାରଙ୍କ ଘରର ସନ୍ଧାନ ପାଇଲା ନାହିଁ—ତାପରେ ଇନ୍‌ଫର୍ମେସନ୍ ଅଫିସକୁ ଫୋନ୍ କରି ପୁଣି ଗାଡ଼ି ଚଳାଇଲା । ସେ ଗଳିର ପତ୍ତା ପାଇଲା ନାହିଁ । ମିଟର ବଢ଼ି ଚାଲିଥାଏ—୧୦ ସେଣ୍ଟ, ୨୦, ୩୦-୧ ଡଲାର୍—ଏହିପରି ତିନି ଡଲାର ଉଠିଲା । ତାପରେ ସେ ମିଟର ବନ୍ଦ କରିଦେଲା । ଡାକ୍ତର ଆଲେକ୍‌ଜାଣ୍ଡାର୍‌ଙ୍କ ନିକଟକୁ ଟେଲିଫୋନ୍ କଲା ।

କଥା କଣ କି ଆଲେକ୍ ଓ ତାଙ୍କ ସ୍ତ୍ରୀ ଅନୁପସ୍ଥିତ । କନ୍‌ଷ୍ଟାଣ୍ଟିନୋ ଚ୍ୟୁଆକ ନାମକ ଚିଲିର ଜଣେ ଡାକ୍ତର ବନ୍ଧୁ ସେମାନଙ୍କ ଘର ଦାୟିତ୍ୱରେ ଅଛନ୍ତି, ଫୋନ୍ କଲ୍ ହେବା ମାତ୍ରେ ଗାଡ଼ି ନେଇ ବସ୍ ଷ୍ଟାଣ୍ଡରୁ ମୋତେ ନେଇ ଆସିବା କଥା ହୋଇଛି । ଏବେ ଫୋନ୍ କଲ୍ ହେଲା—କିନ୍ତୁ ଦୁର୍ବୋଧ । ନିଗ୍ରୋର ଇଂରେଜି ସେ ବୁଝି ପାରୁ ନାହାନ୍ତି, ତାଙ୍କ ଇଂରେଜୀ ନିଗ୍ରୋ ମଧ୍ୟ ବୁଝି ପାରୁନାହିଁ । ବିରକ୍ତିରେ ଦୁହେଁ ଶୋଧାଶୋଧି ହୋଇ ଗଲେ । ଶେଷକୁ ଡ୍ରାଇଭର୍ କ୍ଷମା ମାଗିଲା—ମୁଁ ବଦରାଗୀ, କିଛି ମନେ କରିବେ ନାହିଁ । ତାପରେ ଡାକ୍ତର ପଚାରିଲେ— କେଉଁଠୁ ଫୋନ୍ କରୁଛ, କହ । ମୁଁ ଗାଡ଼ି ନେଇଯିବି । ଡ୍ରାଇଭର୍ କହିପାରିଲା ନାହିଁ । ଜନଶୂନ୍ୟ ପଥ; ଦୋକାନଟି ବନ୍ଦ । କେବଳ ପବ୍ଲିକ୍ ଫୋନ୍‌ଟି ଖୋଲା । କାହାକୁ ପଚାରିବ ? ଶେଷକୁ ସ୍ଥିର ହେଲା—ଡ୍ରାଇଭର୍ ମୋତେ ଟାକ୍‌ସିରେ ନେଇ ମୋର ନିକଟରେ

ପହଞ୍ଚିବେ । ସେଇଆ ହେଲା । ଟର୍ଣ୍ଣିର ଡାକ୍ତରଙ୍କ ଗାଡ଼ିରେ ମୁଁ ଆଲେକ୍‌ଜାଣ୍ଡାରଙ୍କ ଘରେ ପହଞ୍ଚିଲି ।

ତାଙ୍କ ଘରେ ଜଣେ ଯୁବତୀ; ଭାବିଲି—ମିସେସ୍ ଆଲେକ୍‌ଜାଣ୍ଡାର୍ ହେବେ, ତାଙ୍କ ସଙ୍ଗେ ସେଇ ଭାବରେ କଥାଭାଷା ହେବା ମାତ୍ରେ ସେ କହିଲେ—ମୋ ଘର ଟର୍ଣ୍ଣି—ନାମ ଜେଯେଲ୍-ଡେ-ମଣ୍ଡ । ଭାଷା ଫ୍ରାନସ; ଇଂରେଜୀ ଜାଣେ । ଏଠି ପଢ଼ିବାକୁ ଆସି ଚାକ୍ରୀ ହୋଇଛୁ— ଏଇ ଡାକ୍ତର ମୋର ସ୍ୱାମୀ ! ଏଇ ନାଟକୀୟ ଘଟଣାର ଆବୃତ୍ତି କରି ହସାହସି ହେଉଁ ହେଉଁ ମି. ଓ ମିସେସ୍ ଆଲେକ୍‌ଜାଣ୍ଡାର୍ ଆସି ପହଞ୍ଚି ଗଲେ ।

ଆଲେକ୍‌ଜାଣ୍ଡାର୍ ଭାରତୀୟ ଡାକ୍ତର, ତାଙ୍କ ସ୍ତ୍ରୀ 'ଟମ୍ମି' ଡାକ୍ତରଣୀ । ଆଲେକ୍ ଷ୍ଟେଟ୍‌ର ମେଡିକାଲ୍ କଲେଜର ଅଧ୍ୟାପକ, ଟମ୍ମି ଡାକ୍ତରଖାନାରେ ଚାକିରି କରେ; ତାର ମାସିକ ଦରମା ୧୬୦୦ ଡଲାର । ଦୁହେଁ ତିନି ବର୍ଷ ହେଲା ଆସି ବାଲ୍‌ଟିମୋର୍‌ରେ ରହିଛନ୍ତି । ଟମ୍ମି ଇଭାର ଶ୍ରେଣୀ ସଙ୍ଗିନୀ, ମାନ୍ଦ୍ରାଜ ମେଡିକାଲ୍ କଲେଜରେ । ପୂର୍ବ ବନ୍ଧୁତା ଅକ୍ଷୁଣ୍ଣ ରହିଛି । ସେହି ବନ୍ଧୁତା ସୂତ୍ରରେ ମୁଁ ସେମାନଙ୍କ ଘରେ ଅତିଥି ହୋଇଛି ।

ଟମ୍ମି ସକାଳ ନ'ଟାରେ ଡାକ୍ତରଖାନା ଯାଇ ଉପରବେଳା ଚାରିଟାରେ ଫେରେ । ପୂର୍ବପୂରି ଭାରତୀୟ ସଂସ୍କୃତିର ପରମ୍ପରା ସେ ବଜାୟ ରଖିଛି । ସ୍ୱାମୀଙ୍କ ଆଗରୁ ସକାଳେ ଉଠି ସେ ଜଳଖିଆ ପ୍ରସ୍ତୁତ କରେ, ସ୍ୱାମୀଙ୍କ ଭୋଜନାନ୍ତେ ଭୋଜନ କରେ । ଗୃହକର୍ମ ବାକର ନାହାନ୍ତି । ବଜାର-ହାଟ, ଘୋଷେଇବାସ, ବାସନ ମଜା, ଲୁଗା ସଫା ସବୁ କାମ ହାତେ ହାତେ କରେ । ସ୍ୱାମୀର ନାଆଁ ଧରି ଡାକେ— ଆଲେକ୍ ।

ଏମାନଙ୍କ ଘରେ ଇଂରାଜୀ ଭାଷା ଚାଲୁ । ଆଲେକ୍ କେରଳୀ; କିନ୍ତୁ ତେଲୁଗୁରେ ତାଙ୍କର ବିଦ୍ୟାରମ୍ଭ ହୋଇଥିଲା । କଲେଜରେ ସେ ତାମିଲ୍ ଶିଖିଛନ୍ତି । କିଛି କିଛି ମାଳୟାଳୀ ମଧ୍ୟ ଜାଣନ୍ତି । ଟମ୍ମିର ଘର କୁର୍ଗ । କୁର୍ଗ ଭାଷା ତାର ମାତୃଭାଷା । କନ୍ନଡର ଏହା ଏକ ଉପଭାଷା ।

ନିଜ ନିଜ ଭାଷାରେ କଥାବାର୍ତ୍ତା କଲେ କେହି କାହାକୁ ବୁଝିବେ ନାହିଁ । ତେଣୁ ଇଂରେଜୀ ହୋଇଛି ସାଧାରଣ ଆଳାପର ଭାଷା ।

ସେମାନଙ୍କ କଲେଜ ଜୀବନ କଥା; ଆଲେକ୍ କଲେଜ ମାଗାଜିନର ସମ୍ପାଦକ ଥିଲେ, ଶମ୍ପାର କବିତା ଲେଖିବାର ଅଭ୍ୟାସ ଥିଲା, ଯୌବନରେ ଯେପରି ଅନେକଙ୍କର ହୋଇଥାଏ । ସେ ଦିନେ ଆଲେକ୍ ନିକଟକୁ ଗୋଟିଏ କବିତା ସଂଶୋଧନ ଲାଗି ନେଇଥିଲା, ଉପ-ଯୋଗୀ ହେଲେ ମାଗାଜିନରେ ଛପାଯିବ । ଆଲେକ୍‌ର ସଂଶୋଧନ ପରେ କବିତାଟି ମଧୁରତର ହୋଇଗଲା, ଶମ୍ପାର ଦୃଷ୍ଟିରେ; ହୁଏତ ଆଲେକ୍ ସେହିପରି ଦେଖିଥିବ । ଏହି ମଧୁରତା ପ୍ରସାରିତ ହେଲା ଅନ୍ତରକୁ । ଗୋଟିଏ ଘର ବାନ୍ଧିବାର କଳ୍ପନା ଖେଳିଗଲା ଉଭୟଙ୍କ ଅନ୍ତରରେ । କିନ୍ତୁ ସମାଜ ··· ··· ···

ଅଲେକ୍ ଖ୍ରୀଷ୍ଟିୟାନ୍, ପୁଣି ସିରିଆନ୍ ଖ୍ରୀଷ୍ଟିୟାନ୍, ଖ୍ରୀଷ୍ଟିୟାନ୍ ମଧ୍ୟରେ ଏହି ଗୋଷ୍ଠୀ ବେଶ୍ ରକ୍ଷଣଶୀଳ । ଶମ୍ପା ହିନ୍ଦୁକନ୍ୟା; ତାଙ୍କ ପରି-ବାର ମଧ୍ୟ ଅଳ୍ପ ରକ୍ଷଣଶୀଳ ନୁହନ୍ତି, କୌଣସି ପ୍ରକାରେ ଉଭୟ ପରିବାର ମଧ୍ୟରେ ବୈବାହିକ ସଂପର୍କ ପ୍ରଶ୍ନ ଉଠିଥିଲେ କଣ ଅଧିକ ଦୂର ଆଗେଇ ପାରିଥାନ୍ତା? ଅକାରଣ ପ୍ରତିବନ୍ଧକ ସୃଷ୍ଟି କରିବା ଆଲେକ୍ ବା ଶମ୍ପା କାହାର ଇଚ୍ଛା ନ ଥିଲା । ରେଜେଷ୍ଟ୍ରି ବିବାହ ହୋଇଗଲା । କିନ୍ତୁ ବୋହୂକୁ ଆଦରିନେଇ ପାରିଲେ ନାହିଁ ଅଲେକର ବାପା ।

ଦିନେ ସେ ଆଲେକ୍‌କୁ ବୁଝାଉଥିଲେ—ଜାତିଭେଦ, ଗୋଷ୍ଠୀ-ଭେଦ ମିଥ୍ୟା । ସବୁ ମଣିଷ ସମାନ । କିନ୍ତୁ କଥା ଆଉ କାର୍ଯ୍ୟ ମଧ୍ୟରେ ଯୋଜନେ ତଫାତ୍ ରହିଯାଏ ବହୁ କ୍ଷେତ୍ରରେ । ଦିନକର କଥା ଆଉଦିନେ ପ୍ରତିବନ୍ଧକ ହୋଇ ଛିଡ଼ାହୁଏ, ନିଜ ପ୍ରତିକୂଳେ ନିଜେ ହୁଏ ସାକ୍ଷୀ ।

ଆଲେକ୍ ପଚାରିଲା—ତୁମେ ତ ପିଲାଦିନୁଁ ଶିଖାଇଛ—ସବୁ ମଣିଷ ସମାନ, ମୁଁ ତ ସୁଶିକ୍ଷିତା, ସୁଯୋଗ୍ୟା କନ୍ୟା ବିଭା ହୋଇଛି; ଅନ୍ୟାୟ କଣ ହେଲା ?

ବାପା ତାଇ ମାରିବ । କୌଣସିମତେ ଏ ଘଟଣା ସହ୍ୟ କରିପାରିଲେ ନାହିଁ । କିନ୍ତୁ ବୁଢ଼ୀ ମାଆ ! ସେ ସ୍ନେହାଦରରେ ଆଲିଙ୍ଗନ କରି ଚିନ୍ମୟକୁ ଘରକୁ ନେଇଗଲା, କେଡ଼େ ସୁନ୍ଦର ବୋହୂ, କେଡ଼େ ଭଲ ।

ଆଲୋକ କହେ—ଶିକ୍ଷା, ସଂସ୍କୃତିର ତା ହେଲେ ମୂଲ୍ୟ କଣ ? ବାପା ବିଦ୍ୱାନ, ବୁଢ଼ୀ ମାଆ ତ କିଛି ପଢି ନାହିଁ ।

କହିଲା—ଉତ୍ତମ ଲୋକ ସୁଶିକ୍ଷିତ ହେଲେ ସଂସ୍କୃତିକୁ ଉନ୍ନତତମ ସ୍ତରକୁ ନେଇପାଏ । ଅମାନବରେ ପଡ଼ିଲେ ସଂସ୍କୃତି କଳଙ୍କିତ ହୁଏ । ପିତା ତୁମଠାରୁ ହୁଏତ ଭିନେ ଆଶା କରିଥିଲେ ।

"ଆମ ଗୋଷ୍ଠୀରେ ଉତ୍କୃଷ୍ଟ ପାତ୍ରର ମୂଲ୍ୟ କୋଡ଼ିଏ ହଜାରରୁ ଅଳ୍ପ ନୁହେ, କିନ୍ତୁ ବାପା ତ ଅର୍ଥଲୋଭୀ ନୁହନ୍ତି ।"

"କହିବା ଦୁଷ୍କର; କୁଳଧର୍ମ ରକ୍ଷା, ପୈତୃକ ଅଭିମାନ କିମ୍ବା ଅର୍ଥଲୋଭ—କିଛି ଗୋଟାଏ ହୋଇପାରେ, ଚିନ୍ମୟ ?"

ବାପାଙ୍କ ଦରଜା ତା ଲାଗି ବନ୍ଦ ହୋଇ ଯାଇଛି । ପାଠ ପଢ଼ିବା ଲାଗି ବାପା ତାକୁ ମାନ୍ଦ୍ରାଜ ପଠାଇଥିଲେ । ଫେରିଲାପରେ ସେ ତାକୁ ତାଙ୍କ ମନୋମତ ପାତ୍ରରେ ଅର୍ପଣ କରିଥାନ୍ତେ । ସେ ବଂଶର ଉତ୍କୃଷ୍ଟ କନ୍ୟା ହେଲା ପିତୃଦ୍ରୋହିଣୀ, ଅଜାତିରେ ପଶିଲା, ଅକୁଳରେ ଗଲା । ସେ ସମାଜରେ ମୁଣ୍ଡ ଟେକି ପାରୁନାହାନ୍ତି । ଏବେ ସେ ବାପାଙ୍କ ପାଖକୁ ପତ୍ର ଲେଖେ, କିନ୍ତୁ କୌଣସି ଉତ୍ତର ପାଏନି । ବାପା ତାକୁ କ୍ଷମା କରିପାରି ନାହାନ୍ତି ।

କିନ୍ତୁ ଦୁହେ ଏବେ ପରମ ଆନନ୍ଦରେ ଅଛନ୍ତି । ମନ ପ୍ରଣୟ-ପ୍ରୀତିରେ ଗୁନ୍ଥା ହୋଇ ଗୋଟିଏ ହୋଇଯାଇଛି, ମନେ ହୁଏ । ଆଲୋକ ଚିନ୍ମୟକୁ ପାଇ ହୋଇଛି କବି, ଚିନ୍ମୟ ମନର ମଣିଷକୁ ପାଇ ହୋଇଛି ବାସ୍ତୁ-ଦ୍ରଷ୍ଟା । ସଂସାରକୁ ସୁନ୍ଦରତର କରିବା ଲାଗି କଠୋର ପରିଶ୍ରମ କରୁଛି ସେ ।

ଆଲେକ୍ ପ୍ରମାଣ କରେ ବହୁ ଦୃଷ୍ଟାନ୍ତ ଦେଇ—ପ୍ରଣୟରୁ ଯେଉଁ ପରିଣୟ ତହିଁରେ ବିଚ୍ଛେଦ ଅଳ୍ପ । ଭାରତରେ ପରିଣୀତ ବ୍ୟକ୍ତି ଆମେରିକା ଆସି ନିଜ ସ୍ତ୍ରୀକୁ ଭୁଲି ଯାଆନ୍ତି; କାରଣ ହାର୍ଦ୍ଦିକ ସମ୍ପର୍କ ନ ଥିଲା; ଥିଲେ ତାହା ଦୁଇ ଦିନରେ ତୁଟି ଯାଇ ନ ଥାନ୍ତା ।

ତାର ଏ ତତ୍ତ୍ୱ ମୁଁ ଘେନୁଛି, କାରଣ ସେ ଜୀବନରୁ କହୁଛି । କଥାରେ ଢଙ୍ଗ ନାହିଁ, ଜୀବନର ରସ ଅଛି ।

ବିବାହ ପରେ ଦୁହେଁ ଆରବ ସାଗରର ଭାରତୀୟ ଦ୍ୱୀପପୁଞ୍ଜରେ କାର୍ଯ୍ୟ କରୁଥିଲେ, ଜନସାଧାରଣଙ୍କ ସ୍ୱାସ୍ଥ୍ୟ କିପରି ଅଛି, କି କି ରୋଗ ବିଶେଷ ଭାବେ ବ୍ୟାପୁଛି, କି ପ୍ରତିକାର କରାଯାଇ ପାରେ, ସେ ସମ୍ପର୍କରେ ଭାରତ ସରକାରଙ୍କୁ ରିପୋର୍ଟ ଦେବା ଡାକ୍ତର ଡାକ୍ତରାଣୀଙ୍କ କାର୍ଯ୍ୟ ଥିଲା । ଏହି ଦ୍ୱୀପପୁଞ୍ଜ ବିଷୟରେ ଆଲେକ୍ କହିଲେ—ଲୋକସଂଖ୍ୟା ଅତି ଅଳ୍ପ; ଅଧିକାଂଶ ବାସିନ୍ଦା ମୁସଲମାନ । ଭାରତର କେତେକ ଅଞ୍ଚଳ ଜନ-ବନ୍ୟାରେ ଉଚ୍ଛୁଳି ପଡ଼ୁଥିଲା ବେଳେ ଆଉ କେତେକ ଅଞ୍ଚଳକୁ ଜନ-ବିରଳ କରି ରଖିବାର ଉଦ୍ଦେଶ୍ୟ କଣ ? କୁଆଡ଼େ ଆଇନ ହୋଇଛି ଯେ ଭାରତୀୟମାନେ ସେଠି ଜମି କିଣି ବସବାସ କରିପାରିବେ ନାହିଁ । କାରଣ ? ନିରୀହ ଜନସାଧାରଣଙ୍କୁ ସେମାନେ ଶୋଷଣ କରିବେ । ଏହି ଦ୍ୱୀପପୁଞ୍ଜ ବ୍ୟତୀତ ଭାରତରେ ଅନ୍ୟତ୍ର କଣ ନିରୀହ ନାହାନ୍ତି ? ନା ଶୋଷଣ ହେଉନାହିଁ ? ମତେ ଗୋଟିଏ ବର୍ଷ ଗାଦିରେ ବସାଇ ଦିଅନ୍ତୁ, ଦେଖନ୍ତୁ, ମୁଁ କଣ କରନ୍ତି ।

ମୁଁ କହିଲି— ଭୋଟ୍ ପାଇବା ପୂର୍ବରୁ ସମସ୍ତେ ତ ସେପରି କହନ୍ତି; କିନ୍ତୁ ମନ୍ତ୍ରୀ ଗାଦିରେ ବସିଲା ପରେ ପ୍ରତିଶ୍ରୁତି କଥା ମନେ ପଡ଼େ କେତେ ଜଣଙ୍କର ?

## ବଲ୍‌ଟିକ୍‌ମୋର୍ (୨୭-୬-୭୬)

ବଲ୍‌ଟିମୋର୍‌ରୁ ଓ୍ୱାସିଂଟନ ଡି.ସି ଘଣ୍ଟାକର ବାଟ । ଡାକ୍ତର ଆଲେକ୍ ମୋତେ ନିଜ ଗାଡ଼ିରେ ଘେନିଗଲେ । ଡାକ୍ତରୀ ବୃତ୍ତି; କିନ୍ତୁ

ଚଳଣିରେ ସେ କହ; ସାଧାରଣ ଆଳାପ ବେଳେ ବେଳେ ନାଟକୀୟ ହୋଇ ପଡ଼େ । ଆମ ଭିତରର ଦୂରତା ଦୂର ହେବାକୁ ଘଣ୍ଟାଟିଏ ବି ଲାଗି ନ ଥିଲା । ବଡ଼ ସରସ ତାଙ୍କର ସଙ୍ଗ । ନାନା ଆଳାପ ମଧ୍ୟରେ ପଚାରିଲି —ଏଠେ ଜଙ୍ଗଲ କାହିଁକି ?

ଆଲେକ୍ ଉତ୍ତର ଦେଲେ—ଏ ଦେଶରେ ରୁକ୍ଷ, କର୍କଶ କିଛି ରଖାହୋଇ ନାହିଁ । ଚତୁର୍ଦ୍ଦିଗର 'ସବୁଜ' ମନକୁ ସରସ କରିଦିଏ । ଜଙ୍ଗଲ୍ ଗଛିର ଦିଶୁଛି, କିନ୍ତୁ ବ୍ୟାପକ ନୁହେଁ; କିଛି ଦୂର ଗଲେ ଘର ବା ଜମି ପଡ଼େ ।

'ଆମେରିକାନ୍ ଇଞ୍ଜିନିଅରଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟି ଅଦ୍ଭୁତ, ଭାରି ଅପୂର୍ବ । କାବ୍ୟକୁ ଜୀବନରେ ଏତେ ସୁନ୍ଦର କରି ଫୁଟାଇ ପାରିଛି କିଏ ? ସେଇ ଭିତରେ ପଶିଗଲେ ମନ ଖୁସି ହୋଇଯାଏ ।'

'ଆମ ଭାରତରେ' ?

'ପ୍ରାକୃତିକ ସୌନ୍ଦର୍ଯ୍ୟର ପୀଠ—ଭ୍ରମଣକାରୀର ତୀର୍ଥ ହେବା ଯେ ଯୋଗ୍ୟ—ତାକୁ ଜାଣିଶୁଣି ନଷ୍ଟଭ୍ରଷ୍ଟ କରି ଦେଉଛି ।'

'ସେଥିଲାଗି ପରା ଜଣେ ଇଂରେଜ ଭାରତୀୟଙ୍କୁ ବ୍ୟଙ୍ଗ କରି କହିଛନ୍ତି—

ଏମାନେ ଲୁଚି କରି ଖାଆନ୍ତି, କିନ୍ତୁ ନିର୍ଲଜ୍ଜଭାବରେ ପଦାରେ ଝାଡ଼ା ଫେରି ବସନ୍ତି ! କର୍କଶ ହେଲେ ବି ସତ୍ୟ ।

ଏହିପରି କଥାଭାଷା ହେଉଁ ହେଉଁ ଆମେ ସହର ତଳରେ ପହଞ୍ଚି-ଗଲୁ । ଓ୍ୱାସିଂଟନ୍ ! କେତେ ସୁନ୍ଦର ଏହାର ଅବସ୍ଥିତି ! ପୋଟୋମାକ୍ ଓ ଆନାକୋଷ୍ଟିଆ ନଦୀର ସଙ୍ଗମ ସ୍ଥଳ; ନାନା ଗଛବୃଛ, ପାର୍କପ୍ରାନ୍ତରରେ ପରିପୂର୍ଣ୍ଣ ।

ସୌଧର ନିବିଡ଼ତା ନାହିଁ, ଜୀବନ ଯାତ୍ରା ମଧ୍ୟରେ ସୁଖ ସ୍ୱାଚ୍ଛନ୍ଦ୍ୟ ପୂରି ରହିଥିଲା ପରି ଦିଶୁଛି ।

ଏହା ଯୁକ୍ତରାଷ୍ଟ୍ରର ନବମ ବୃହତ୍ତମ ନଗର, ଲୋକସଂଖ୍ୟା କୋଡ଼ିଏ ଲକ୍ଷରୁ ଅଧିକ । ଏହି ନଗର ଏକ ସ୍ୱତନ୍ତ୍ର ଜିଲା, କେନ୍ଦ୍ରଶାସିତ—ନାମ କଲମ୍ବିଆ, ଆମେରିକା ଆବିଷ୍କର୍ତ୍ତା କଲମ୍ବସ୍‌ଙ୍କ ସ୍ମୃତି ଜଡ଼ିତ । ଜାତିର ପିତା ୱାସିଂଟନ୍ ରାଜଧାନୀ କରିବା ଲାଗି ଏହି ସ୍ଥାନକୁ ମନୋନୀତ କରିଥିଲେ ଓ ଏହି ନଗର ସହିତ ତାଙ୍କର ନାମ ଚିରକାଳ ଲାଗି ଜଡ଼ିତ ହୋଇଗଲା । ୧୮୦୦ ଖ୍ରୀଷ୍ଟାବ୍ଦରେ ଏଠାକୁ ରାଜଧାନୀ ଉଠି ଆସିଲା ।

## ହ୍ୱାଇଟ୍ ହାଉସ୍

ଏହା ରାଜଧାନୀର ପ୍ରାଚୀନତମ ସୌଧ, ନବ ନବ ସଂସ୍କାରରେ ଏବେ ଆଧୁନିକତମ ରୂପ ଧାରଣ କରିଛି । ୧୮୧୪ ର ବ୍ରିଟିସ୍ ଆକ୍ରମଣରେ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତିଙ୍କର ଏହି ବାସ ଭବନ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲା, ସେତେବେଳେ ଏହାର ବର୍ଣ୍ଣ ଲୋହିତ ଥିଲା । ପରେ ଏହାକୁ ଧବଳ ବର୍ଣ୍ଣରେ ରଙ୍ଗାଇ ଦିଆ ହେଲା । ଏହି ଧବଳ ପ୍ରାସାଦ ୧୯୦୨ ଖ୍ରୀଷ୍ଟାବ୍ଦରୁ 'ହ୍ୱାଇଟ୍ ହାଉସ୍' ନାମରେ ପରିଚିତ ହୋଇ ଆସୁଛି ।

ଆଜି ଦର୍ଶକ ବେଶ୍ ଭିଡ଼ ଜମେଇଛନ୍ତି—ଛୋଟିଆ ଧାଡ଼ିର 'କ୍ୟୁ' ଲମ୍ବିଛି ପ୍ରାୟ ମାଇଲିଏ ପର୍ଯ୍ୟନ୍ତ । ଗାଡ଼ି ପାର୍କ କରିବା ଲାଗି କେଉଁଠି ଟିକିଏ ହେଲେ ଫାଙ୍କ ନାହିଁ । ହ୍ୱାଇଟ୍ ହାଉସ୍ ଦର୍ଶନ ଆଶା ତ୍ୟାଗ କଲି ।

ପ୍ରାସାଦର ଚତୁର୍ଦ୍ଦିଗରେ ଗାଢ଼ ସବୁଜ ପାର୍କ, ସ୍ଥାନେ ସ୍ଥାନେ ମଧା ମଧା ଫୁଲ, ଗାଢ଼ ନାଲି 'ଫୁଲର' ଜରି ଧଡ଼ି ପରି ରଙ୍ଗିନ୍ ଫୁଲ ସବୁ – ଉଚ୍ଚ ଉଚ୍ଚ ଓକ୍, କେଉଁଠି ବା ଗୋଲାପ ବଗିଚା । ଆଲେକ୍, ଦେଖାଇ ଦେଲ ଅଙ୍ଗୁଳି ଇଙ୍ଗିତରେ—ଲାଲ୍ ନାଲି ସବୁଜ ପ୍ରାସାଦସବୁ—କେଉଁଠି ବିଦେଶୀ କୂଟନୀତିକମାନେ ସମ୍ବର୍ଦ୍ଧିତ ହୁଅନ୍ତି, ଭୋଜନ ରାଜନ କରନ୍ତି—ଦେଖାଇଦେଲେ ବିପୁଳ ପାଠାଗାର, ଆବ୍ରାହାମ୍ ଲିଙ୍କନଙ୍କ ଶୟନାଗାର । ହ୍ୱାଇଟ୍ ହାଉସ୍ ମାନବିକ ମୁକ୍ତିର ଏକ ଐତିହାସିକ ଦୁର୍ଗ ।

ଏଠି ଲିଙ୍କନ ୧୮୬୩ରେ କ୍ରୀତଦାସଙ୍କ 'ମୁକ୍ତି ଘୋଷଣା' ଦଲିଲ୍‌ରେ ଦସ୍ତଖତ କରିଥିଲେ ।

ହ୍ୱାଇଟ୍ ହାଉସ୍‌ର ଅନତିଦୂରରେ ୱାସିଂଟନ୍‌ଙ୍କ ସ୍ମୃତି ସ୍ତମ୍ଭ— ଆମେରିକାର ସର୍ବଜନବନ୍ଦ୍ୟ ମହାତ୍ମା—ହୃଦୟେ ହୃଦୟେ ତାଙ୍କର ସମ୍ମାନିତ ଆସନ । ତାଙ୍କ ଉଦ୍ଦେଶ୍ୟରେ ଗୋଟିଏ ନମସ୍କାର କଲି ।

୧୭୩୨ ଖ୍ରୀଷ୍ଟାବ୍ଦରେ ଭର୍ଜିନିଆରେ ୱାସିଂଟନଙ୍କ ଜନ୍ମ । ୧୭୭୬ରେ ମୁକ୍ତି ବାହିନୀର ସେନାପତି ହୋଇ ବ୍ରିଟିସ୍‌ବାହିନୀ ସହିତ ଛ'ବର୍ଷ କାଳ ସେ ସଂଗ୍ରାମ କରିଥିଲେ । ସେତେବେଳେ ସୈନ୍ୟବାହିନୀ ବିଶୃଙ୍ଖଳିତ, ଉପଯୁକ୍ତ ଅସ୍ତ୍ରଶସ୍ତ୍ର, ସେ ସବୁ ଚାଳନର ଶିକ୍ଷାଦୀକ୍ଷା ସେମାନଙ୍କର ନଥିଲା । ଏହାକୁ ସେ ଶିକ୍ଷିତ ଓ ଅଭିନବ ଜାତୀୟତାର ମନ୍ତ୍ରରେ ଦୀକ୍ଷିତ କରିଥିଲେ । ତାଙ୍କ ସଂଗଠନ ଶକ୍ତି, ଅସୀମ ଧୈର୍ଯ୍ୟ ଓ ସାହସ ଯୋଗୁଁ ପ୍ରବଳ ପରାକ୍ରାନ୍ତ ବ୍ରିଟିସ୍ ବାହିନୀ ତାଙ୍କ ନିକଟରେ ଆତ୍ମସମର୍ପଣ କରିଥିଲା; ସେ ନିଜେ ସ୍ୱାଧୀନ କରିଥିବା ଦେଶର ହେଲେ ପ୍ରଥମ ସଭାପତି; ସେନାପତି ଜୀବନର ସଂଗଠନଶକ୍ତି ଓ ଶୃଙ୍ଖଳାଜ୍ଞାନକୁ ସେ ଜାତିସଂଗଠନରେ ଲଗାଇ ଯଶସ୍ୱୀ ହେଲେ ! ତାଙ୍କର ସ୍ମୃତି ଆମେରିକାର ପ୍ରାୟ ପ୍ରତ୍ୟେକ ନଗରରେ ସଂରକ୍ଷିତ । ତେବେ 'ୱାସିଂଟନ ସ୍ତମ୍ଭ' ପରି ବିପୁଳ କେଉଁଠି କିଛି ନିର୍ମିତ ହେବାର ଦେଖିନାହିଁ । ୧୮୮୫ ଖ୍ରୀଷ୍ଟାବ୍ଦରେ ଏହି ସ୍ତମ୍ଭ ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ଏଥିରେ କ୍ଷିପ୍ରତମ ଏଲିଭେଟର ଲଗିଛି । ଏହା ଯାତ୍ରୀଙ୍କୁ ଏକ ମିନିଟ୍ ମଧ୍ୟରେ ୫୫୦ ଫୁଟ୍ ଉଚ୍ଚ ସ୍ତମ୍ଭଊର୍ଦ୍ଧ୍ୱକୁ ଘେନିଯାଏ ।

ଏଠି ୯୨ ନିୟୁତ କାଣ୍ଡଲ୍ ପାଓ୍ୱାର୍‌ର ଲାଇଟ୍ ଲଗିଛି । ତୀବ୍ର ଆଲୋକ ଶିଖା ଗଗନ ବକ୍ଷକୁ ତୀକ୍ଷ୍ଣ ତରବାରୀରେ ବିଦୀର୍ଣ୍ଣ କଲାପରି ଦେଖାଯାଏ ।

ଏହି ସ୍ତମ୍ଭର ଚତୁର୍ଦ୍ଦିଗରେ ଯୁକ୍ତରାଷ୍ଟ୍ରର ରାଜ୍ୟମାନଙ୍କର ପଚାଶ ଗୋଟି ପତାକା ଉଡ୍ଡୀନ । ଚତୁର୍ଦ୍ଦିଗରେ ମୃତ ଅର୍ଦ୍ଧମୃତ ତୃଣର ବିପୁଳ

ପ୍ରନ୍ତର, ମଝେ ମଝେ ତରୁଣ ତରୁ; ଇତସ୍ତତଃ ମଧୁ ମଧୁ ଫୁଲ । ଏହି ପୀଠରେ ଓ୍ୱାସିଂଟନଙ୍କ ଜନ୍ମୋତ୍ସବ ଏକ ଜାତୀୟ ପର୍ବ ଭାବରେ ପାଳିତ ହୁଏ । ଏଠି ନାଗରିକ ଅବସରରେ ନବ ସଂକଳ୍ପବଦ୍ଧ ହୋଇ ଆମେରିକା-ବାସୀ ଉତ୍ତ୍ରୀନ ନେତାମାନଙ୍କ ଉଦ୍ଦେଶ୍ୟରେ ନମସ୍କାର କରନ୍ତି । ଓ୍ୱାସିଂଟନବାସୀଙ୍କ ସମୂହ ପ୍ରାର୍ଥନାର ପୀଠ ମଧ୍ୟ ଏଇ ।

ତାପରେ ଲିଙ୍କନ ସ୍ମୃତି ମଣ୍ଡପ ଦେଖିଗଲୁ । ଗୋଟିଏ 'ପୁଲ୍' —ତାର ଅପର ପଟେ ଏଲ୍ମ୍ ଗଛର ଧାଡ଼ି । ସେଇ ବାଟେ ବହୁ ସୋପାନ ଅତିକ୍ରମ କରି ବୃହତ୍‌ସ୍ତମ୍ଭଯୁକ୍ତ ସ୍ମୃତିପୀଠରେ ପ୍ରବେଶ କରିବାକୁ ହୁଏ । ଏହାର ମଧ୍ୟଭାଗରେ ଲିଙ୍କନଙ୍କ ମାର୍ବଲ ପ୍ରସ୍ତରର ମୂର୍ତ୍ତି । ସାରା ଜଗତର ଦୁଃଖବେଦନା ସତେ ଅବା ସେ ମୁଖରେ ବୋଳି ହୋଇ ରହିଛି । ଗମ୍ଭୀର ଚିନ୍ତା ସହିତ ମାନବିକ ସହାନୁଭୂତି ଓ କରୁଣା ସେ ମୁଖକୁ ଅଳଙ୍କୃତ କରିଛି । ଯେପରି ବାସ୍ତବଧର୍ମୀ, ସେହିପରି ରହସ୍ୟବାଦୀ, ଯେପରି ଗମ୍ଭୀର ଧର୍ମବିଶ୍ୱାସୀ, ସେହିପରି ଧର୍ମନିରପେକ୍ଷ, ଧନରେ ଯେମିତି ଦରିଦ୍ର, ମନରେ ସେହିପରି ସମୃଦ୍ଧ ସେ ଥିଲେ । ଜୀବନରେ ଯେ ଗୋଟିଏ ଦାସ ରଖିବାକୁ ଅକ୍ଷମ ହୋଇଥିଲେ ସେ ଲକ୍ଷ ଲକ୍ଷ ଦାସଙ୍କର ମୁକ୍ତି ବିଧାନ କରିବାକୁ ସମର୍ଥ ହୋଇଥିଲେ । ଦ୍ୱିଧାବିଭକ୍ତ ଆମେରିକାକୁ ସେ ପୁଣି ଗୋଟିଏ କରିଥିଲେ, ବିବିଧ କଲ୍ୟାଣକର୍ମରେ ବ୍ରତୀ ହୋଇ ଶେଷକୁ ସେ ଶହୀଦ୍ ହେଲେ । ତେଣୁ ତାଙ୍କ ପ୍ରତି ଯୁକ୍ତରାଷ୍ଟ୍ରର ଓ ପୃଥିବୀର ଅପରିମିତ ଶ୍ରଦ୍ଧା ଓ ସମ୍ମାନ ରହିଛି । ମାର୍ବଲ କାନ୍ଥରେ ଏହି ବାଣୀ ଖୋଦିତ ହୋଇଅଛି—

ଲକ୍ଷ ଲକ୍ଷ ଲୋକ—
ଯେଉଁମାନଙ୍କ ଲାଗି ସେ ଯୁକ୍ତରାଷ୍ଟ୍ରର
ସେବା କରିଥିଲେ,
ତେପରି ଏହି ମନ୍ଦିରରେ
ସେହିପରି ସେମାନଙ୍କ ହୃଦୟରେ
ଆବ୍ରାହମ୍ ଲିଙ୍କନଙ୍କ ସ୍ମୃତି ମୂର୍ତ୍ତି ।

ଲିଙ୍କନଙ୍କ କିଛି ଦୂରରେ ଜେଫରସନ୍ ସ୍ମୃତି ମନ୍ଦିର । ଥୋମାସ୍ ଜେଫରସନ୍ ଆମେରିକାର ରାଷ୍ଟ୍ରପତିମାନଙ୍କ ମଧ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନର

ଅଧିକାରୀ ହୋଇଛନ୍ତି । ସେ ଯେପରି ଦାର୍ଶନିକ, ସେହିପରି ବାଗ୍ମୀ, ଯେପରି ସୌନ୍ଦର୍ଯ୍ୟପ୍ରେମୀ, ସେହିପରି ଶାନ୍ତିକାମୀ, ଯେପରି ଗୁରୁଗମ୍ଭୀର, ସେହିପରି ସରଳ । ସେ ଆମେରିକାର ତୃତୀୟ ସଭାପତି ଥିଲେ । ସ୍ମୃତି-ସୌଧର କାରୁକଳା ଉଚ୍ଚକୋଟୀର; ଗୃହଦ୍ୱାରରେ ସ୍ତମ୍ଭଘେରି ଦ୍ୱାର— ଜେଫର୍ସନ୍‌ଙ୍କ ମନ କିପରି ଚତୁର୍ଦ୍ଦିଗକୁ ଉନ୍ମୁକ୍ତ ଥିଲା ଏହା ତାହାର ପ୍ରତୀକ । କାନ୍ଥମାନଙ୍କରେ ଖୋଦିତ ତାଙ୍କର ଅମର ବାଣୀରେ ତାଙ୍କ ମାନବବାଦୀ ମନର ଚିରନ୍ତନ କଣ୍ଠ ଝଙ୍କୃତ । ସାଧାରଣ ମନୁଷ୍ୟର ଜନ୍ମଗତ ଅଧିକାର ଲାଗି ସେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ, ତାଙ୍କ କଳନାରେ ସବୁ ମଣିଷଙ୍କର ସ୍ୱାଧୀନ ଜୀବନ ଯାପନ ଓ ସୁଖସୌଭାଗ୍ୟ ଭୋଗ କରିବାର ଅଧିକାର ଅଛି ।

'ନିଜ ମତ ବ୍ୟକ୍ତ କରିବା ଓ ଯୁକ୍ତି ଦ୍ୱାରା ତାକୁ ସମର୍ଥନ କରିବାର ଅଧିକାର ପ୍ରତ୍ୟେକର ଅଛି ।'

'ଈଶ୍ୱର ଜୀବନ ସଙ୍ଗେ ମନୁଷ୍ୟକୁ ସ୍ୱାଧୀନତା ଦେଇଛନ୍ତି ।'

'ପ୍ରଭୁ ଓ ଦାସ ସମ୍ପର୍କକୁ ଯଥେଚ୍ଛାସ୍ବର ଲୁହାଯାଏ ।'

'ଆଇନ ବା ଅନୁଷ୍ଠାନ ନୁହେଁ, ଜୀବନ ଚିରନ୍ତନ । ଜୀବନର ବିକାଶ ସଙ୍ଗେ ଆଇନ ବା ଅନୁଷ୍ଠାନର ପରିବର୍ତ୍ତନ ଅବଶ୍ୟମ୍ଭାବୀ ।'

'ମନୁଷ୍ୟର ମନ ଉପରେ ଯେ କୌଣସି ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବି, ଭଗବାନଙ୍କ ଆଗରେ ଏ ମୋର ଶପଥ ।'

ବାକ୍ ଓ କର୍ମ ମନୁଷ୍ୟକୁ ମହନୀୟ ସ୍ଥାନର ଅଧିକାରୀ କରେ । କାଳ ସେଥିରୁ ତାକୁ ବିଚ୍ୟୁତ କରିପାରେ ନାହିଁ । ଜେଫର୍ସନ୍ ତାର ପ୍ରମାଣ । ଆମେରିକାବାସୀଙ୍କ ଅନ୍ତରରେ ସେ ଚିର ଅଭିନନ୍ଦିତ । ଉଚ୍ଚ ମାନବିକ ମହତ୍ତ୍ୱ ଓ ମାନସିକ ଅଭ୍ୟୁନ୍ନତିର ପ୍ରେରଣା ଦେଇ ମୁଁ ଫେରିଲି ।

## ଜାତୀୟ ଶ୍ମଶାନ (ଓ୍ୱାସିଂଟନ୍)

ଯେଉଁମାନେ ମହତ୍ତର ସଭ୍ୟତା ନିର୍ମାଣ ଲାଗି ଜୀବନ ଉତ୍ସର୍ଗ କରିଥିଲେ ଜାତୀୟ ଶ୍ମଶାନରେ ସେହିମାନଙ୍କ ସ୍ମୃତି ରକ୍ଷା କରାଯାଇଛି । ଯେତେବେଳେ ଦାନବ ଅସ୍ତ୍ରବଳରେ ବଳୀୟାନ୍ ହୋଇ ମାନବିକ ମର୍ଯ୍ୟାଦା ଓ ମୂଲ୍ୟ ନଷ୍ଟଭ୍ରଷ୍ଟ କରେ, ସେତେବେଳେ ଜାତୀୟ ନେତା-ମାନଙ୍କ ବାଣୀରେ ଉଦ୍‌ବୁଦ୍ଧ ହୋଇ ସାଧାରଣ ସୈନିକ ଅକାତରରେ ପ୍ରାଣୋତ୍ସର୍ଗ କରେ; ଚିରନ୍ତନ ମାନବିକତାର ଆଦର୍ଶ ରକ୍ଷା ଲାଗି ମୃତ୍ୟୁ-ବରଣ ଏକ ମହନୀୟ ଘଟଣା । କିନ୍ତୁ ସାଧାରଣ ମାପକାଠିରେ ଏହି ବ୍ୟକ୍ତିର ଦାନ ହୁଏତ ନଗଣ୍ୟ ବିବେଚିତ ହୁଏ । ମାନବତାର ବିଜୟ ଉତ୍ସବରେ କେହି ତା କଥା ସ୍ମରଣ କରନ୍ତି ନାହିଁ । ବୁଝିଲେ ଆଜିର ସ୍ୱାଧୀନତାଭୋଗ ବା ସୁଖସମୃଦ୍ଧି ତା ଯୋଗୁଁ ସମ୍ଭବ ହୋଇ ଅଛି । ଆକାଶ, ନୌ ଓ ପଦାତିକ ସୈନ୍ୟଙ୍କ ସମାଧି ଯୋଗୁଁ ଜାତୀୟ ଶ୍ମଶାନର ମର୍ଯ୍ୟାଦାବୃଦ୍ଧି ହୋଇ ଅଛି । ରାଜକୀୟ ମର୍ଯ୍ୟାଦାଠାରୁ ଏହା କୌଣସି ଗୁଣରେ ଊଣା ନୁହେଁ । ସେଥିଲାଗି କବି ଲେଖିଛନ୍ତି—

> And so sepulchered on such pomp dost lie
> That kings for such a tomb would wish to die.

ଏହି ଶ୍ମଶାନ ଗୋଟିଏ ସମତଳ ପ୍ରାନ୍ତର ନୁହେ—ଉଚ୍ଚନୀଚ ପାହାଡ଼ ଓ ଉପତ୍ୟକା, ଶ୍ମଶାନର ଶ୍ରୀବୃଦ୍ଧି ଲାଗି ଯନ୍ତ୍ର ସାହାଯ୍ୟରେ ସେପରି କରାଯାଇଅଛି । ଏଠି ଭୀତିପ୍ରଦ କିଛି ନାହିଁ, ଖଣ୍ଡିଏ ଅସ୍ଥି, କଙ୍କାଳ ବା ନର ମୁଣ୍ଡ କେଉଁଠି ପଡ଼ି ନାହିଁ । କେଉଁଠି ଶ୍ୟାମଳ ତୃଣ, ବୃକ୍ଷ ପୁଞ୍ଜ, କେଉଁଠି ବା ପୁଷ୍ପୋଦ୍ୟାନ । ଗୋଟାଏ ଶୃଗାଳ ବା ଶକୁନି କେଉଁଠି ନାହିଁ, ନିର୍ଜନତା ବିଭୀଷିକା ସୃଷ୍ଟି କରୁ ନାହିଁ । ବରଂ ଏହା ଗୋଟିଏ ଦର୍ଶନୀୟ ସ୍ଥାନ ରୂପେ ବିବେଚିତ । ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ଲାଗି ବହୁ ବ୍ୟକ୍ତି ଏଠାକୁ ଆସିଥାନ୍ତି ।

କେତେ କ୍ରୋଶବ୍ୟାପୀ ଏହି ଶ୍ମଶାନଟି ଅଗଣିତ ସ୍ମୃତିଫଳକରେ ପରିପୂର୍ଣ୍ଣ ହୋଇଅଛି, ଫଳକ ଉପରେ ଗତାସୁର ସଂକ୍ଷିପ୍ତ ଜୀବନକାହାଣୀ

ଖୋଦିତ । ସଦ୍ୟ ସମାଧି ପ୍ରାଷ୍ଟିକ୍ ପୁଷ୍ପଗୁଚ୍ଛରେ ଚର୍ଚ୍ଚିତ । ପରିବାରର କେହି ଆସି ସଦ୍ୟ ପୁଷ୍ପ ଅର୍ଘ୍ୟ ଦେଇ ଯାଉଛନ୍ତି ।

ଜାତୀୟ ବୀରମାନଙ୍କ ସ୍ମୃତିରକ୍ଷା ଲାଗି ସରକାରଙ୍କୁ କଷ୍ଟ କରିବାକୁ ହୁଏ ନାହିଁ । ବୀରର ପରିବାର ଲୋକେ ବା ସର୍ବସାଧାରଣ ଏଥିଲାଗି ଅର୍ଥବ୍ୟୟ କରିଥାନ୍ତି । ସରକାରଙ୍କୁ କେବଳ ଜାଗା ଯୋଗାଇ ଦେବାକୁ ହୋଇଥାଏ ।

## ଅପରିଚିତ ସୈନିକର ସ୍ମୃତିରକ୍ଷା

ପ୍ରଥମ ମହା ଯୁଦ୍ଧବେଳେ ଜଣେ ଅଜଣା ଅଶୁଣା ସୈନିକର ଶବ ଗୋଟାଇ ଅଣା ହୋଇ ଏହି ଶ୍ମଶାନରେ ସମାଧି ଦିଆ ହୋଇଥିଲା । ଯେ କୌଣସି ଦେଶର ସାଧାରଣ ସୈନିକଙ୍କ ପ୍ରତି ଏହା ଯୁକ୍ତରାଷ୍ଟ୍ରର ଶ୍ରଦ୍ଧା ଓ ସମ୍ମାନର ପ୍ରତୀକ । ସେ ଅଚିହ୍ନା ହୋଇ ପାରେ, ଅଶ୍ରଦ୍ଧାର ପାତ୍ର ନୁହେଁ । ବହୁ ସମ୍ମାନିତଙ୍କ ସଙ୍ଗେ ସେ ସମ୍ମାନ ଲାଭ କରିବା ଲାଗି ହକ୍‌ଦାର ତାର ଆତ୍ମତ୍ୟାଗ ନିଷ୍ଫଳ ହୋଇନାହିଁ, ପ୍ରତିଭା ଅପୂଜିତ ହୋଇ ରହିନାହିଁ । ବାହାର ଦେଶର ଜଣେ ସୈନିକଙ୍କୁ ଏପରି ସମ୍ମାନ ଦେବା-ଦ୍ୱାରା ନିଜ ଦେଶବାସୀଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରା ହୋଇନାହିଁ । ତାହା ସ୍ପଷ୍ଟଭାବେ ଗୋଟିଏ ଫଳକରେ ଉଲ୍ଲିଖିତ ହୋଇଅଛି । ଯୁଦ୍ଧ, ଦୁର୍ଘଟଣା, ଜାତୀୟ ବିପଦ ବା ବିଂଶ୍‌ମାସ୍‌ଉତ୍ସବ ବେଳେ ଏଠି ସମୂହ ପ୍ରାର୍ଥନା କରାଯାଏ ।

ଅଜଣା ସୈନିକର ଏହି ସମାଧିମନ୍ଦିରକୁ ଅର୍ଲିଂଟନ ମେମୋରି-ଅଲ୍ ଆମ୍ପିଥିଏଟର୍ କୁହାଯାଏ । ମନ୍ଦିରଟି ରୋମାନ୍ ଆମ୍ପିଥିଏଟର ଆଦର୍ଶରେ ନିର୍ମିତ କରା ଯାଇଅଛି ।

ଆମ୍ପିଥିଏଟର ସହିତ ସଂଯୁକ୍ତ ହୋଇ ରହିଛି ଗୋଟିଏ ଯାଦୁଘର । ବହୁ ହୃଦୟବାନ୍ ବ୍ୟକ୍ତି ଓ ଜନକଲ୍ୟାଣକର ଅନୁଷ୍ଠାନ ଅପରିଚିତ ସୈନିକଙ୍କ ଲାଗି ସୁବର୍ଣ୍ଣ, ରୌପ୍ୟ ବା ତାମ୍ର ଫଳକରେ ସେମାନଙ୍କ ଅନ୍ତରରେ ଗଭୀର ଶ୍ରଦ୍ଧା ଓ ପ୍ରୀତି ଖୋଦନ କରିଛନ୍ତି—କେହି କବିତାରେ

କେବଳ ସୁରମ୍ୟ ଗଦ୍ୟରେ । ଏକ ସ୍ୱତନ୍ତ୍ର ସାହିତ୍ୟ ପାଠ କଲା ପରି ଲାଗିଲା । ବଡ଼ ବଡ଼ ଜ୍ଞାନୀ, ବିଜ୍ଞାନୀ, କବି, ନେତା, ମହାତ୍ମାଙ୍କ ଲେଖା ଏ ନୁହେଁ । ସାଧାରଣ ସୈନିକଙ୍କ ପ୍ରତି ଜନସାଧାରଣଙ୍କ ଅର୍ଘ୍ୟ; ଅକୁଣ୍ଠ ଜୀବନୋତ୍ସର୍ଗର କୃତଜ୍ଞ ସ୍ୱୀକୃତି ।

ଅର୍ଲିଂଟନ୍ ସ୍ମୃତି ମନ୍ଦିର ସାମ୍ନାରେ ଜଣେ ଗୋରା ସୈନିକଙ୍କୁ ଗାର୍ଡ଼ ଦେବାର ଦେଖିଲି । ନୀଳବର୍ଣ୍ଣର ପ୍ୟାଣ୍ଟ, ଧଳା ଟୋପି, କଳା କୋଟ । କାନ୍ଧରେ ତାଙ୍କର ରାଇଫଲ୍, ସେ ପରେଡ୍ କରୁଛନ୍ତି ପୂର୍ବରୁ ପଶ୍ଚିମକୁ, ପଶ୍ଚିମରୁ ପୂର୍ବକୁ—ଗୋଟିଏ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ । ପରେଡ୍ ଏପରି ହେଉଛି ଯେ ଅଚିହ୍ନା ସୈନିକର ସ୍ମୃତି ମଣ୍ଡପକୁ ପୃଷ୍ଠ ପ୍ରଦର୍ଶିତ ହେଉନାହିଁ । ପୂର୍ଣ୍ଣ ଫୂର୍ତ୍ତି, ସୈନିକର ଗାମ୍ଭୀର୍ଯ୍ୟ ଓ ଶୃଙ୍ଖଳା ଚଳନରେ ସ୍ପଷ୍ଟ ।

ପ୍ରତି ଘଣ୍ଟାରେ ଗାର୍ଡ଼ର ପରିବର୍ତ୍ତନ ହୁଏ । ଜଣକୁ ଜଣ ଆସି ଅହୋରାତ୍ର ଏଠି ପହରା ଦେଉଥାନ୍ତି । ଝଡ଼ ହେଉ, ବର୍ଷା ହେଉ, ବରଫ ପଡ଼ୁ; ପହରାରେ ବ୍ୟତିକ୍ରମ ହୁଏ ନାହିଁ । ଜାତିର କର୍ତ୍ତବ୍ୟନିଷ୍ଠା ଓ ଶୃଙ୍ଖଳା ଏହି ସୈନିକରେ ମୂର୍ତ୍ତ । କେହି ଯେପରି ଏହି ସମାଧି ମନ୍ଦିର ଓ ତାହାସ୍ଥ ଶ୍ମଶାନ ପ୍ରତି ଅମର୍ଯ୍ୟାଦା ପ୍ରଦର୍ଶନ ନ କରେ, ଅପବିତ୍ର ନକରେ, ସେଥିଲାଗି ଏହି ପ୍ରହରୀ ପହରା । *

ତାପରେ ଆମେ 'କସ୍ଟିସ୍ ଲି ମାନ୍ସନ୍' ଦେଖିଗଲୁ । ମି.'ଲି' ଉତ୍ତର ଦକ୍ଷିଣ ଗୃହ ଯୁଦ୍ଧବେଳେ ଦକ୍ଷିଣ ପକ୍ଷର ସେନାପତି ଥିଲେ । ତାଙ୍କ

---

* This shrnine sacred to the·memory of United states is guarded each day and night of the year by selected battalion, 3rd infantry (old guard) of the United states' army. Each sentinel marches with his rifle on his shoulder farther from the tomb signifying his duty to guard against intrusion.

ଘର ଭର୍ଜିନିଆଁରେ, ଏହି ଜାତୀୟ ଶ୍ମଶାନ ମଧ୍ୟ ଭର୍ଜିନିଆଁ ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା । 'ଲି' ଅସାଧାରଣ ସେନାପତି ଥିଲେ । ରଣକ୍ଷେତ୍ରରେ ଅପୂର୍ବ କୌଶଳ ପ୍ରଦର୍ଶନ କରି ସେ ରଙ୍ଗମଞ୍ଚରେ ଉତ୍ତର ପକ୍ଷକୁ ବାରମ୍ବାର ପରାଭୂତ କରିଥିଲେ । ଧନ, ଜନ, ଅସ୍ତ୍ରବଳ ସବୁଥିରେ ଦକ୍ଷିଣପକ୍ଷ ଉତ୍ତର ଅପେକ୍ଷା ନ୍ୟୂନତର ଥିଲେ ହେଁ ଲିଙ୍କ ଧୈର୍ଯ୍ୟ, ସାହସ ଓ କୂଟନୀତି ଯୋଗୁଁ ରଣକ୍ଷେତ୍ରରେ ଗୌରବ ଅର୍ଜନ କରିବାକୁ ସମର୍ଥ ହୋଇଥିଲେ । ଶେଷରେ ଉତ୍ତର ପକ୍ଷର ସେନାପତି ଗ୍ରାଣ୍ଟଙ୍କ ହାତ 'ଲି' ପରାସ୍ତ ହେଲେ ଓ ଆତ୍ମସମର୍ପଣ କଲେ । ଉତ୍ତର ପକ୍ଷ ତାଙ୍କ ବୀରତ୍ୱପ୍ରତିଭାକୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିଛନ୍ତି ।

ସର୍ବଶେଷରେ ଆମେ କେନେଡିଙ୍କ ସମାଧି ସ୍ଥଳରେ ଉପସ୍ଥିତ ହେଲୁ । ପହଞ୍ଚିବା ମାତ୍ରେ ହୃଦୟ କପାଟ ବେଦନଭରା ହୋଇ ଉଠିଲା । କେନେଡି ଉଦାର ମାନବତା ଯୋଗୁଁ ବିଶ୍ୱସ୍ତରକୁ ଉନ୍ନୀତ ହୋଇ ପାରିଥିଲେ । ଭାରତ ପ୍ରତି ତାଙ୍କ ପ୍ରାଣରେ ଅପୂର୍ବ ଦରଦ ଥିଲା । ରେଭେନ୍‌ସା କଲେଜରେ ଆମେରିକାନ୍ ଫିଲ୍ମ ଦେଖିଲାବେଳେ ହଠାତ୍ ତାଙ୍କ ମୃତ୍ୟୁ ସମ୍ବାଦ ଶୁଣି କପରି ବଜ୍ରାଘାତ ବ୍ୟଥା ଅନୁଭବ କରିଥିଲି, ମନେ ପଡ଼ିଗଲା ।

କୋଣ ଭାଗରେ ତାଙ୍କ ସମାଧି ସ୍ଥଳର ଗୋଟିଏ ସୀମା ଅଙ୍କିତ ହୋଇଛି, ମଧ୍ୟ ଭାଗରେ ବିଦ୍ୟୁତର ଅଖଣ୍ଡ ଦୀପ ଜଳୁଛି । ଗୋଟିଏ ପ୍ରସ୍ତର ଫସ୍ ପୋତା ହୋଇଛି, ଚତୁର୍ଦ୍ଦିଗରେ ଗୋଲାପଗୁଚ୍ଛ ସଜ୍ଜିତ ହୋଇଛି । ସମାଧି ମନ୍ଦିର ନିର୍ମାଣ କାର୍ଯ୍ୟ ଜୋର୍‌ସୋର୍‌ରେ ଚାଲିଛି ।

କେନେଡି ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି ଭାବରେ ହୁଏତ ଏହି ଜାତୀୟ ଶ୍ମଶାନରେ ସ୍ଥାନ ପାଇ ନଥାନ୍ତେ । ଏଠି ସମାଧି ପାଇବାର ମୁଖ୍ୟ କାରଣ ହେଉଛି, ସେ ସୈନ୍ୟବିଭାଗରେ କାର୍ଯ୍ୟ କରୁଥିଲେ, କର୍ମକ୍ଷେତ୍ରରେ ଶହୀଦ୍ ହେଲେ । କେନେଡି ପରିବାର କେନେଡି ସ୍ମୃତି ମନ୍ଦିରର ସମସ୍ତ ବ୍ୟୟ ବହନ କରୁଛନ୍ତି । ସମାଧି ସ୍ଥଳରେ ଛିଡ଼ା ହୋଇଥିବା ବେଳେ

କେନେଡ଼ିଙ୍କ ମିଳନଳଆ ଚେହେରା ଆଖି ଆଗରେ ନାଚଗଲା । ଆମେରିକାର ପ୍ରବୀଣ କବି ରବର୍ଟ ଫ୍ରଷ୍ଟଙ୍କୁ ଜାତୀୟ ସମ୍ମାନ ଦେବାର ପରମ୍ପରା ସେଇ ପ୍ରଥମେ ସୃଷ୍ଟି କରିଥିଲେ । ସେଥିଲାଗି ସାହିତ୍ୟିକ ଭାବରେ ତାଙ୍କ ପ୍ରତି ମୋର ସ୍ୱତନ୍ତ୍ର ଶ୍ରଦ୍ଧା ଥିଲା ।

ବୁଲି ବୁଲି ବଡ଼ ଦାଲଆ ଲାଗିଲା, ଭୋକ ବି । ଆଲେକ ସଙ୍ଗରେ କେତୋଟି ଆପଲ୍ ନେଇଥିଲେ । ମଟର ଗାଡ଼ିରେ ଗୋଟିଏ ଚଳନ୍ତି ଦୋକାନ—ସେଥିରେ ବର୍ଗର୍, ସେଭେନ୍-ଅପ୍ ଆଦି ପାନୀୟ, ପଟାଟୋ ଚିପ୍ସ୍, ମକ୍କାଲଆ ଆଦି ଖାଦ୍ୟ ବିକ୍ରୀ ହେଉଛି । ଗାଡ଼ିଟି ପାର୍କର ଧାରେ ଧାରେ ବୁଲୁଛି । ଆମେ କିଛି ଲଆ କିଣି ପୋଟୋମାକ୍ ନଦୀ କୂଳରେ ଆସି ବସିଲୁ । ନିଜେ ପ୍ୟାଡ଼ଲ୍ କରି କେତେକ ଯାତ୍ରୀ ନୌକା ଚଳାଉଥାନ୍ତି । ସ୍ରୋତ ମନ୍ଥର, ମେଘୁଆ ପାଗ । ମକ୍କାଲଆ ଗୋଟିଏ ଗୋଟିଏ ପାଟିରେ ପକାଇ ପକାଇ ଡାକ୍ତର କହିଲେ—ଏଭଳି ଏକ ନିର୍ଜନ ସ୍ଥାନରେ ଶୋଇ ରହିବାକୁ ମନ ହୁଏ—ଜଞ୍ଜାଳହୀନ, ନିଶ୍ଚିନ୍ତ । ଜନଗହଳି ମଧ୍ୟରେ କି ଚମତ୍କାର ନିର୍ଜନତା ସୃଷ୍ଟି କରାଯାଇ ପାରିଛି, ଏଇ ପାର୍କରେ କେବଳ ପକ୍ଷୀ, ପ୍ରଜାପତି !

ପ୍ରକୃତରେ କ୍ଳାନ୍ତ ମନଲାଗି ଉପଯୁକ୍ତ ବିଶ୍ରାମସ୍ଥଳ, ନଦୀ ସ୍ରୋତରେ, ତା ତୀରବର୍ତ୍ତୀ କୋନିଫରସ୍ ବୃକ୍ଷମାଳରେ ମନ ଖେଳି ବୁଲିଲା; ଅପୂର୍ବ ଶାନ୍ତି; ଆଖିରେ ତନ୍ଦ୍ରା ଠୁଳହେଲା ବେଳକୁ ପୁଣି ଆମେ ଉଠିଲୁ ।

## ସିନେଟ୍

କାପିଟୋଲ୍ ସୌଧର ସାମ୍ନା ସ୍ତମ୍ଭରେ ତିନିଗୋଟି ମୂର୍ତ୍ତି; ମୂର୍ତ୍ତିଙ୍କ ମଧ୍ୟରେ ଉତ୍ତର ଦକ୍ଷିଣ ଗୃହଯୁଦ୍ଧର ସେନାପତି, ପରେ ଯୁକ୍ତ-ରାଷ୍ଟ୍ରର ସଭାପତି ମି· ଗ୍ରାଣ୍ଟଙ୍କ ମୂର୍ତ୍ତି । ଅନ୍ୟ ଏକ ସ୍ତମ୍ଭରେ ଯୁଦ୍ଧର ଦୃଶ୍ୟ ଖୋଦିତ, ସୈନ୍ୟ ନିପତିତ, ଅଶ୍ୱ ମୃତ, ଅସ୍ତ୍ରଶସ୍ତ୍ର ଭଗ୍ନ । ମନ୍ଦିରାକୃତି କାପିଟୋଲ୍ ଗୃହର ଅଗ୍ରଭାଗରେ ମୁକ୍ତିଦୂତ ।

ଗୃହସବୁ ନାନା ପ୍ରାଚୀନ, ଓ୍ୱାଶିଂଟନ୍‌ଙ୍କଠାରୁ ଜନ୍‌ସନ୍‌ଙ୍କ ପର୍ଯ୍ୟନ୍ତ ମୂର୍ତ୍ତି ଓ ବାଭିନ୍ନ ଫଟୋରେ ସୁସଜ୍ଜିତ । ଯେଉଁମାନଙ୍କ ଦାନରେ ଯୁକ୍ତରାଷ୍ଟ୍ରର ଐଶ୍ୱର୍ଯ୍ୟ ସମୃଦ୍ଧ, ସଭ୍ୟତା ଅଗ୍ରଗାମୀ ହୋଇଅଛି—କବି, ବୈଜ୍ଞାନିକ, ସୁଧୀ—ସେମାନଙ୍କ ମୂର୍ତ୍ତି ମଧ୍ୟ ଏଠି ସ୍ଥାନ ପାଇଅଛି । ସୁଦୀର୍ଘ, ସୁପ୍ରଶସ୍ତ ପ୍ରକୋଷ୍ଠସବୁ ରଙ୍ଗୀନ୍ ଫ୍ରେସ୍କୋରେ ଚିତ୍ରକର୍ଷକ ହୋଇଅଛି । ବଦ୍ୟୁତ୍ ଆଲୋକସବୁ ମହମବତୀ ରୂପରେ ସଜ୍ଜିତ ହୋଇଅଛି, ପରମ୍ପରାର ଗାମ୍ଭୀର୍ଯ୍ୟ ଦେବାଲାଗି । ପୁଲିସ୍‌ସବୁ ଗୃହର ସ୍ତରେ ସ୍ତରେ ଜଗି ରହିଛନ୍ତି; ବହୁ ଲୋକ ଯାତାୟତ କରୁଛନ୍ତି । କିନ୍ତୁ ସ୍ଥାନଟି ଅଭୂତପୂର୍ବ ଶୃଙ୍ଖଳିତ ଓ ନିର୍ଜନ ବୋଧ ହେଉଅଛି ।

ସିନେଟ୍ ବୈଠକ ଦେଖିବା ଲାଗି ପ୍ରବଳ ଇଚ୍ଛା; କିନ୍ତୁ ଟିକେଟ କିପରି ମିଳିବ ? ମୁଁ ଯେ ପ୍ରକୃତରେ ଭ୍ରମଣକାରୀ, ପ୍ରମାଣ କଣ ? ପାସ୍‌ପୋର୍ଟ ପାଖରେ ନ ଥିଲା । ଟ୍ରାଭେଲର୍‌ସ ଚେକ୍ ଦେଖାଇବାରୁ ଟିକେଟ ମିଳିଲା । ଆଲେକ ଓ ମୁଁ ଯାଇ ଦର୍ଶକ ଆସନରେ ବସିଲୁ ।

୧୮୫୯ରେ ଏହି ଗୃହରେ ପ୍ରଥମେ ସିନେଟ ବୈଠକ ବସିଥିଲା । ଏ ମଧ୍ୟରେ କେବଳ ଏହାର ଛାତ ବଦଳ ହୋଇଛି । ଡେସ୍କ ଓ ଚୌକି-ସବୁ ଅର୍ଦ୍ଧବୃତ୍ତାକାରରେ ସଜ୍ଜିତ; ଆସବାବପତ୍ରକ ଅତି ପ୍ରାଚୀନ ଧରଣର । ପ୍ରତି ଡେସ୍କରେ ଗୋଟିଏ କାଳି ଭରିବା ଗାତ, ଗୋଟିଏ କଲମ ଥୋଇବା ଧାର; କାଳି ପଡ଼ିଗଲେ ତା ଉପରେ ପକାଇବା ଲାଗି କାଠ ଦାନିରେ ବାଲି ରଖା ଯାଇଛି ।

ଗୃହର ଉର୍ଦ୍ଧ୍ୱ ସ୍ତରରେ ଜନ୍ ଆଡାମସ୍‌ଙ୍କଠାରୁ ଏ. ହୋଭର୍‌ସ୍‌ଙ୍କ ପର୍ଯ୍ୟନ୍ତ ଯୁକ୍ତରାଷ୍ଟ୍ରର ସହାପତିମାନଙ୍କ ଅର୍ଦ୍ଧ ମୂର୍ତ୍ତିସବୁ ରଖାଯାଇଛି । କାଚରେ ଏହି ଦେଶର ସିଲ୍ ଫଳକିତ ଉଜ୍ଜ୍ୱଳରୂପେ ପ୍ରକଟିତ । ଦେଶାତ୍ମ-ବୋଧ, ବିବେକ, ସାହସର ମୂର୍ତ୍ତି ପ୍ରତୀକସବୁ ଅଙ୍କିତ ହୋଇଛି । ସେହିପରି ପ୍ରବେଶଦ୍ୱାରମାନଙ୍କରେ କେତେକ ଲେଖା ଯୁକ୍ତରାଷ୍ଟ୍ରର ଉଦ୍‌ଯୋଗ ଓ ବିଶ୍ୱାସର ଫଳକିତ ବହନ କରିଅଛି । ପୂର୍ବରେ— 'ଈଶ୍ୱର ଆମର କର୍ମୋଦ୍ୟମକୁ ଆଶୀର୍ବାଦ କରୁଛନ୍ତି' । ପଶ୍ଚିମରେ—

ସଙ୍ଗ ଯୁଗର ଏକ ନୂତନ ଶାନ୍ତ; ଦକ୍ଷିଣରେ 'ଈଶ୍ୱରଙ୍କ ଉପରେ ଆମେ ବିଶ୍ୱାସ କରୁ; ସିନେଟ୍ ଗୃହର ଉର୍ଦ୍ଧ୍ୱଦେଶରେ ଲେଖା ହୋଇଛି— 'ଅନେକଙ୍କ ମଧ୍ୟରୁ ଜଣେ !'

ସିନେଟ୍ ସବୁଠାରୁ କ୍ଷମତାଶାଳୀ ବ୍ୟବସ୍ଥା ଗୃହ । ଯୁକ୍ତରାଷ୍ଟ୍ରର ପ୍ରତ୍ୟେକ ପ୍ରଦେଶ ଦୁଇଜଣ ନିର୍ବାଚିତ ସଭ୍ୟଙ୍କୁ ସିନେଟ୍‌କୁ ପଠାଇଥାନ୍ତି । ସେମାନେ ଛ'ବର୍ଷ ସଭ୍ୟ ରହିବାର ବିଧି । ତିରିଶ ବର୍ଷରୁ ଅଳ୍ପ ବୟସ୍କ ସିନେଟର ସଭ୍ୟ ହେବାରେ କଟକଣା ରହିଅଛି । ସ୍ଥାୟୀ ବାସିନ୍ଦାଙ୍କ ବ୍ୟତୀତ ପ୍ରତିନିଧି ହେବାର ଯୋଗ୍ୟତା ଅନ୍ୟକାହାର ନାହିଁ । ଯୁକ୍ତରାଷ୍ଟ୍ରର ଉପରାଷ୍ଟ୍ରପତି ସିନେଟରେ ସଭାପତିତ୍ୱ କରନ୍ତି । ତାଙ୍କର ଦକ୍ଷିଣରେ ମୁଖ୍ୟ ଦଳର ସେକ୍ରେଟାରୀ ଓ ସହକାରୀ ସେକ୍ରେଟାରୀ ସରଜେଣ୍ଟ ଅଫ ଆରମସ୍; ବାମରେ ଗୌଣଦଳର ସେକ୍ରେଟାରୀ ଓ ଆସିଷ୍ଟାଣ୍ଟ ସେକ୍ରେଟାରୀ, ସିନେଟର ସେକ୍ରେଟାରୀ, ପୃଷ୍ଠଦେଶରେ କରାନ ଓ ରିପୋର୍ଟରସବୁ । ଦକ୍ଷିଣରେ ଡିମୋକ୍ରାଟ୍ ଓ ବାମରେ ରିପବ୍ଲିକାନ୍ ଦଳର ନେତା ଓ ସଭ୍ୟମାନେ ବସିଛନ୍ତି । ରିପବ୍ଲିକାନ୍ ଦଳର ସଭ୍ୟ ମି. କରଟିସ୍ ମୁଦ୍ରାସ୍ଫୀତି ବିଷୟରେ କହୁଛନ୍ତି—ଡଲାର୍‌ର ଆଉ ମୂଲ୍ୟ ଆଜି ନାହିଁ; ଜିନିଷପତ୍ରର ଦର ବଢ଼ିଚାଲିଛି । ଖାଦ୍ୟ ସାମଗ୍ରୀ କିଣିବା ଲାଗି ଯୁକ୍ତରାଷ୍ଟ୍ରର ଗୃହିଣୀମାନଙ୍କୁ ବହୁତ ବ୍ୟୟ କରିବାକୁ ହେଉଛି । ପଚିଶ ବର୍ଷ ତଳେ ଏ ଦେଶରେ ଜୀବନର ମାନ ଯାହା ଥିଲା ଆଜି ତାହା ନାହିଁ । ଡିମୋକ୍ରାଟିକ ଦଳର ଜଣେ ସଭ୍ୟ ତାରି ଜବାବ ଦେଉଛନ୍ତି—ଏ ଅର୍ଦ୍ଧଶତାବ୍ଦୀ ମଧ୍ୟରେ କେତୋଟି ଯୁଦ୍ଧ ହୋଇଛି, ଯୁକ୍ତରାଷ୍ଟ୍ରକୁ ସେଥିଲାଗି କପର ବ୍ୟୟ କରିବାକୁ ପଡ଼ୁଛି, ପୁଣି ଏ ଦେଶରେ ସେ ସମୟ ମଧ୍ୟରେ କେତେ ଶିଳ୍ପବିକାଶ ହୋଇଛି, ତାହା ମାନ୍ୟବର ସଭ୍ୟଙ୍କୁ ଅବଶ୍ୟ ଜଣାଥିବ । ଉପଭୋଗର ସାମଗ୍ରୀ ଓ ଉପାୟ ବଢ଼ି ଚାଲିଛି । ରୋଜଗାରର ବହୁତ ପନ୍ଥା ଖୋଲିଛି । ବହୁତ ଆୟକାରୀ ବହୁତ ବ୍ୟୟ କରିବାରେ କଣ ଅସୁବିଧା ଅଛି ?

ଆଲୋଚନା ମଝିରେ ଆମେ ଚାଲିଗଲୁ । ବାଟରେ ଗୋଟିଏ ଦଳ ସହିତ ସାକ୍ଷାତ୍ ହେଲା— ଭାରତୀୟ । ସେଥି ମଧ୍ୟରୁ ଜଣେ କେରଳୀ—

ନାମ ମି: ମନ, ସଙ୍ଗରେ ତାଙ୍କ ସ୍ତ୍ରୀ—ମୁଣ୍ଡରେ ସିନ୍ଦୁର ଟୋପା, ବାଙ୍କ ଖୋସାରେ ରୁପା ଫାଳିଆ, ଶାଢ଼ୀପିନ୍ଧା, ଅଣ୍ଟାଭଙ୍ଗା ସୁନ୍ଦର ଅଳଙ୍କାରର ଝୁଣ୍ଟୁଣ୍ଟ ଏକ ଭଲ ମଧ୍ୟବିତ୍ତ ନୂତନ ଆଭିମୁଖ୍ୟ ବେଶ ଫୁଟାଉଛନ୍ତି ।

## ଜାତୀୟ କଳା ସଂଗ୍ରହାଳୟ

ଏହି ସୁବୃହତ୍ କଳା ପ୍ରଦର୍ଶନୀ ବ୍ୟକ୍ତିଗତ ପ୍ରଚେଷ୍ଟାରେ ହିଁ ସଂଗଠିତ ହୋଇଅଛି । ଆଣ୍ଡ୍ରୁ ଡବଲ୍ୟୁ ମେଲୋନ ଏହାର ନିର୍ମାଣ ଲାଗି ବହୁତ ସମ୍ପତ୍ତି ଦାନ କରିଥିଲେ । ୧୯୪୧, ମାର୍ଚ୍ଚମାସ, ୧୭ ତାରିଖରେ ସଭାପତି ଫ୍ରାଙ୍କ୍ଲିନ ରୁଜଭେଲଟ ଏହି ଭବନ ଉଦ୍‌ଘାଟନ କରି ଜାତି ଉଦ୍ଦେଶ୍ୟରେ ଏହାକୁ ଉତ୍ସର୍ଗ କଲେ । ପୃଥିବୀର ସର୍ବବୃହତ୍ ମାର୍ବଲ ନିକେତନ ଭାବରେ ଏହା ପ୍ରସିଦ୍ଧ । ଏହାର ନିର୍ମାଣରେ ଟେନେସିର ଧଳା ଓ ଧୂସର ମାର୍ବଲ, ଆଲ୍‌ବାମାର ରକ୍‌ଉଡ୍ ଷ୍ଟୋନ୍, ଇଟାଲୀର ସବୁଜ ମାର୍ବଲ ବ୍ୟବହୃତ । ଇଟାଲୀୟ, ଆମେରିକାନ, ବ୍ରିଟିଶ ଓ ଫରାସୀ ପେଣ୍ଟିଂ ଲାଗି ଉପଯୁକ୍ତ ରଙ୍ଗୀନ ପ୍ରସ୍ତର ବା କାଷ୍ଠର ପରିବେଶ ନିର୍ମାଣ କରା ହୋଇଛି ।

ସମସ୍ତ ଚିତ୍ରାଳୟରେ ତିରିଶ ହଜାର ଚିତ୍ର, ମୂର୍ତ୍ତି, ରୌପ୍ୟ, ଓ ସେରାମିକ୍ କାର୍ଯ୍ୟ ସଂରକ୍ଷିତ ହୋଇଅଛି । ମି. ମେଲୋନଙ୍କର ଯେପରି କଳାପ୍ରେମୀ ମନ, ତାଙ୍କୁ ଦୃଷ୍ଟି ତାଙ୍କ ଗଣ୍ଠିରେ ଯଥେଷ୍ଟ ଧନ ଥିଲା—ଧନ ସଙ୍ଗେ ମନର ସାଧାରଣତଃ ଏପରି ସମନ୍ୱୟ ହୋଇ ନ ଥାଏ—କାନ ଥିଲେ ସୁନା ନାହିଁ, ସୁନା ଥିଲେ କାନ ନାହିଁ—ଦୁନିଆର ଦୈନନ୍ଦିନ ଦୃଷ୍ଟାନ୍ତ ଏ ।

କିନ୍ତୁ ମେଲୋନ ଜଣେ ମହାନ ସଂଗ୍ରାହକ, ତାଙ୍କର ଇଟାଲୀୟ ଚିତ୍ର ସଂଗ୍ରହ ଚିତ୍ରାଳୟର ମୂଳ ଭିତ୍ତି । ତ୍ରୟୋଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ତାଙ୍କ ସଂଗୃହୀତ ଇଟାଲୀୟ ଛବିସବୁ ସେ ଦାନ କରିଥିଲେ; ଅନ୍ୟମାନେ ତାଙ୍କ ଦୃଷ୍ଟାନ୍ତ ଅନୁସରଣ କରନ୍ତୁ, ଆଶା ପ୍ରକାଶ କରିଥିଲେ । ତାଙ୍କ ଆଶା ବ୍ୟର୍ଥ ହୋଇନାହିଁ । ସାମୁଏଲ ଏଚ୍. କ୍ରେସ୍ ନିଜର ସମସ୍ତ ଇଟାଲୀୟ, ଫରାସୀ ଛବିସଂଗ୍ରହ ଦାନ କରିଛନ୍ତି । ଏହିପରି ବହୁ ବ୍ୟକ୍ତି-ଗତ ଦାନରେ କଳାମନ୍ଦିର ପୁଷ୍ଟ ହୋଇଅଛି । ଇଟାଲୀୟ ଛବିସବୁ

ଧର୍ମାତ୍ମକ; କେବଳ ଚର୍ଚ୍ଚରେ ନୁହେ, ପ୍ରାସାଦ ଓ ଭବନରେ ଭଦ୍ରଲୋକ ମାନେ ସେ ଯୁଗରେ ଏ ସବୁ ଝୁଲାଇ ରଖୁଥିଲେ ।

ଇଟାଲୀ, ଫ୍ରାନ୍ସ, ହଲାଣ୍ଡ, ସ୍ପେନ, ଇଂଲଣ୍ଡ, ଆମେରିକାର ଛବି ଓ ମୂର୍ତ୍ତି, ବସ୍ତ୍ର କାଷ୍ଠଖୋଦେଇ, କାଚଚିତ୍ର, ଧାତୁଚିତ୍ର, ବ୍ରୋଞ୍ଜ, ପିତ୍ତଳ, ରୌପ୍ୟ, ସୁବର୍ଣ୍ଣ, ତାମ୍ର ମୂର୍ତ୍ତି, ବହୁ ଯୁଗର ଆସବାବ ଉପକରଣ, ଅଗଣିତ ଫଟୋ—ଏ ସବୁ ଦେଖିବା ଲାଗି ପ୍ରଚୁର କଳାଜ୍ଞାନ, ଶକ୍ତି ଓ ଧୈର୍ଯ୍ୟ ଆବଶ୍ୟକ । ଗୋଟିଏ ଦିନରେ ମୁଁ ସବୁ ଦେଖିବି ବୋଲି ଆସିଛି; ଅନେକ ମଧ୍ୟ ଗୋଟିଏ ଦିନରେ ଏତେ ଅନୁଷ୍ଠାନ ଦେଖାଇ ଥିବାରୁ ଆତ୍ମପ୍ରସାଦ ଅନୁଭବ କରୁଛନ୍ତି । ଚାଲି ଚାଲି ଗୋଡ଼ ଭାଙ୍ଗି ପଡ଼ୁଛି । ମନରେ କିଛି ପଶୁନାହିଁ । ଆଖି ଦେଖୁଛି, କିଛି ନ ଦେଖିଲା ଭଳି । ସକାଳର ରଙ୍ଗୀନ କୁହୁଡ଼ି ଭିତରେ ଛନ୍ଦିଆ ଆକୃତି ପରି ଛବିସବୁ ଦିଶୁଛି—ଧୂଆଁଳିଆ; ମେଡ଼ୋନା ଓ ଶିଶୁ—ଭେନସ୍ ଓ ଗୋଟିଏ ମୟୂର; ଭେନସ୍ ଓ ଆଡୋନିସ୍—ରେମ୍‌ବ୍ରାଣ୍ଟଙ୍କ ଦୈନନ୍ଦିନ ଘଟଣା ଓ ପରିବେଶର ପୁଙ୍ଖାନୁପୁଙ୍ଖ ଚିତ୍ରଣ ସବୁ—ବିଚିତ୍ର, ଦୁର୍ଲଭ, କିନ୍ତୁ ମନ ସେସବୁ ନେଉ ନାହିଁ । ବିଭିନ୍ନ ଯୁଗର କଳା ଓ ସ୍ଥାପତ୍ୟ ସମ୍ପର୍କୀୟ ରେଡ଼ିଓ ଲେକ୍‌ଚରରେ ମଧ୍ୟ ଶୁଣିପାରୁ ନାହିଁ ।

ଛବି ! ଯୁଗ ଯୁଗର ତପସ୍ୟା ସେଥିରେ ରୂପାୟିତ; ଗୋଟିଏ ଗୋଟିଏ ଛବି ଗୋଟିଏ ଗୋଟିଏ ଯୁଗର ମହାକାବ୍ୟ । ସାମାନ୍ୟ କଳାତ୍ମକ ତ୍ରୁଟିବିଚ୍ୟୁତି ଶିଳ୍ପୀ ବରଦାସ୍ତ କରିପାରି ନାହାନ୍ତି । ସେଥିଲାଗି ଘୋର ଦୁଃଖ ଓ ଦାରିଦ୍ର୍ୟ ବରଣ କରିଛନ୍ତି । କିନ୍ତୁ ତାକୁ ଦେଖିବା ଲାଗି ମୁଁ ଅବସର ସୃଷ୍ଟି କରି ପାରିନାହିଁ । ଆଡ଼ ଆଖିରେ ମାତ୍ର ଚାହିଁ ଦେଇ ଯାଉଛି । ଶିଳ୍ପୀଙ୍କ ପ୍ରତି ମୋର ଏ ବ୍ୟବହାର ଏକ ଅନ୍ୟାୟ, ଅଧର୍ମ । ନିଜକୁ କୌଣସିମତେ କ୍ଷମା କରି ପାରିଲି ନାହିଁ । ହେ ଶିଳ୍ପୀ, ହେ କଳାକାର, ମୋତେ କ୍ଷମା ଦିଅ । ମୋ ଜୀବଦ୍ଦଶାରେ ମୋ କବିତା ପ୍ରତି କେହି ଏପରି ଅବହେଳା କଲେ ମୁଁ ବରଦାସ୍ତ କରିପାରେ ନାହିଁ । କାହିଁକି କାହାଠାରୁ କ୍ଷମା ଆଶା କରିବି ?

ବହୁ ପ୍ରସାରିତ କଳା ଜଣ ସାଦର ନିମନ୍ତ୍ରଣ କରୁଥିଲେ ମଧ୍ୟ ମୁଁ ପଳାଇ ଆସିଲି—ସୌନ୍ଦର୍ଯ୍ୟ ମନ୍ଦିରର ପଳାତକ । ସୌନ୍ଦର୍ଯ୍ୟ ପଛ ଆଡ଼ୁ ଡାକ ପକାଇଛି; କିନ୍ତୁ ମୁଁ ···; ତା ସଙ୍ଗେ ଆଖି ମିଳାଇ ପାରୁ ନାହିଁ, ମନ ମିଶାଇବା ତ ଦୂରର କଥା ।

ଆଲେକ୍ ଜଡ୍ ଧଇଲେ—ସ୍ମିଥ୍ ସୋନିଆନ ଯାଦୁଘରଟି ଦେଖିବାକୁ ହିଁ ହେବ । ସେ ଦେଖାଇବାକୁ ପ୍ରସ୍ତୁତ, ମୁଁ ଦେଖିବାକୁ ଅରାଜି । ପାଦ ଅଚଳ । ମନ, ଅଥର୍ବ । ତଥାପି ଗଲି ବିଧି ରକ୍ଷା କରି ।

ଜନ ସ୍ମିଥ୍ସନ ଜଣେ ମହାମନା ଇଂରେଜ ବୈଜ୍ଞାନିକ । ଜ୍ଞାନ ପ୍ରସାର ଲାଗି ଏକ ଅନୁଷ୍ଠାନ ଗଢ଼ିବା ତାଙ୍କ ଜୀବନର ଲକ୍ଷ୍ୟ ଥିଲା । ୧୮୨୯ ଖ୍ରୀଷ୍ଟାବ୍ଦରେ ତାଙ୍କ ମୃତ୍ୟୁ ପୂର୍ବରୁ ସେ ତାଙ୍କର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି ଯୁକ୍ତରାଷ୍ଟ୍ରକୁ ଦାନ କରିଯାଇଥିଲେ । ଏହି ସମ୍ପତ୍ତିର ମୂଲ୍ୟ ଅର୍ଦ୍ଧନିୟୁତ ଡଲାର । ସ୍ମିଥ୍ସନଙ୍କ ନାମରେ ୱାସିଂଟନରେ ଗୋଟିଏ ଯାଦୁଘର ନିର୍ମିତ ହେଲା—ପ୍ରାକୃତିକ ଇତିହାସ ବିଭାଗ, ବୈଷୟିକ ଓ ଐତିହାସିକ ବିଭାଗ । ଏଥିରେ ପ୍ରାୟ ୫୯ ନିୟୁତ ଦ୍ରବ୍ୟ ସଂରକ୍ଷିତ—ନୃତତ୍ତ୍ୱ, ଭୂତତ୍ତ୍ୱ, ଶିଳ୍ପ, କଳା, ଯନ୍ତ୍ର ଓ ବ୍ୟୋମଯାନ ଇତ୍ୟାଦି ବହୁ ଶାଖା ପ୍ରଶାଖାରେ ବିଭକ୍ତ କରି ନାନା ଦ୍ରବ୍ୟସମ୍ଭାର ସୁସଜ୍ଜିତ ହୋଇ ରଖାହୋଇଛି । ପ୍ରାକୃତିକ ପରିବେଶ ମଧ୍ୟରେ ମୃତ ଜୀବଜନ୍ତୁ, ପକ୍ଷୀ, ସରୀସୃପ, ଜୀବନ୍ତ ପରି ଦିଶୁଛନ୍ତି । ପୃଥିବୀର ଆଦିବାସୀ ବିଶେଷତଃ ଲୋହିତ ଭାରତୀୟଙ୍କ ଜୀବନ ଯାତ୍ରା ଓ ସାମାଜିକ ଚଳଣି ସମ୍ପର୍କରେ ଜାଣିବା ଲାଗି ବହୁ ଉପାଦେୟ ଉପାଦାନ ପ୍ରଦର୍ଶିତ ହୋଇଅଛି । ପୃଥିବୀର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଫଟୋ ସଜ୍ଜିତ ହୋଇ ରହିଅଛି । ଆମେରିକାର ରାଷ୍ଟ୍ରପତି, ସେମାନଙ୍କ ପତ୍ନୀଙ୍କ ମୂର୍ତ୍ତି ଓ ସେମାନଙ୍କ ବ୍ୟବହୃତ ଯାବତୀୟ ଦ୍ରବ୍ୟ, ଯୁଗେ ଯୁଗେ ଆମେରିକା ବାସୀଙ୍କର ବ୍ୟବହୃତ ବସନ ଭୂଷଣ ଉପରେ ଦୃଷ୍ଟି ପକାଇ ଆମେ ଗଲୁ ଜଣେ ବଙ୍ଗାଳୀ ଭଦ୍ରଲୋକଙ୍କ ଘରକୁ । ଆଗରୁ ଫୋନ କରା ହୋଇଥିଲା ।

ଆମେ ଖେଳୁଥିଲା ବେଳକୁ ଘରେ ଅତିଥି ଚର୍ଚ୍ଚା କରିବାକୁ ଅଛି ତାନିଆଁ—ଷୋଳ ବର୍ଷର ଝିଅ; ଆଖିଯୋଡ଼ିକ ତାର ଉଜ୍ଜ୍ୱଳ, ଗାଲ ଫୁଲୁକା ଫୁଲୁକା, ଝାମ୍ପୁରା ବାଳ; ଗେଲେଇ ଗେଲେଇ ଇଂରାଜୀ କହୁଛି । ଆଲେକ୍ ଗିଲାସେ ପାଣି ମାଗିଲା । ତାନିଆ ତାଙ୍କୁ ଟେକେଇ ଘରକୁ ଡାକିନେଇ କହିଲା—ହେଇ ଗିଲାସ, ସାବଧାନ, ଭାଙ୍ଗିବ ନାହିଁ !

ଏଇ ସମୟରେ ତାନିଆର ମାଆ ବଜାର ସଉଦା କରି ଫେରିଲେ—ଦୁଧ, ତରକାରି, ମିଠା ପନ୍ଦର ମିନିଟ୍‌ରେ କରିଦେବ, ତାଙ୍କର ପ୍ରତିଶ୍ରୁତି । କିନ୍ତୁ ଆଲେକ୍ ଅପେକ୍ଷା କଲେ ନାହିଁ । ସରବତ୍ ପିଇ ଆମେ ଉଠିଲୁ । ଗଲାବେଳେ ତାନିଆ କହିଲା—ତମେସବୁ କାଲି ପୁଣି ଆସ, ସରବତ୍ ଦେବି······ ।

## ଜନ୍ ହପ୍‌କିନ୍‌ସ୍ ବିଶ୍ୱବିଦ୍ୟାଳୟ

ଜନ୍‌ହପ୍‌କିନ୍‌ସ୍ ବଲ୍‌ଟିମୋର୍ ଅଞ୍ଚଳର ଜଣେ ନାମ୍‌ଜାଦା ବ୍ୟବସାୟୀ ଥିଲେ । ସେ ବହୁତ ଧନ ସମ୍ପତ୍ତି ଅର୍ଜନ କରିଥିଲେ । କିନ୍ତୁ ଅବିବାହିତ । ବନ୍ଧୁମାନଙ୍କ ପାଟିରୁ ଲାଳ ଗଡ଼ୁଥିଲା; ମନେ ମନେ ଆଶା ବାନ୍ଧିଥିଲେ ଯେ ହପ୍‌କିନ୍‌ସ୍‌ଙ୍କ ଅନ୍ତେ ସେମାନେ ଏଇ ବିପୁଳ ଐଶ୍ୱର୍ଯ୍ୟର ଅଧିକାରୀ ହେବେ । କିନ୍ତୁ ସେମାନଙ୍କ ପାଞ୍ଚ ଉଣ୍ଡିଲା ନାହିଁ । ମହାମନା ହପ୍‌କିନ୍‌ସ୍‌ଙ୍କ ଉଦ୍ଦେଶ୍ୟ ଭିନ୍ନ ଥିଲା । ମୃତ୍ୟୁ ପୂର୍ବରୁ ସେ ଦୋକାନପଣ ବିକ୍ରୀ କରି ୭୦ ଲକ୍ଷ ଡଲାର୍ ଦାନ କଲେ । ଟ୍ରଷ୍ଟିମାନେ ସେଥିରେ ଜନ୍ ହପକିନ୍‌ସ୍‌ଙ୍କ ନାମରେ ବଲ୍‌ଟିମୋରରେ ଗୋଟିଏ ବିଶ୍ୱବିଦ୍ୟାଳୟ ଖୋଲିଲେ । ଉପାର୍ଜିତ ଅର୍ଥର ମହତ୍ତମ ଉପଯୋଗ ଆଉ କଣ ହୋଇପାରେ ? ଜନ୍ ହପକିନ୍‌ସ ବିଶ୍ୱବିଦ୍ୟାଳୟ ଏବେ ସମଗ୍ର ଜଗତରେ ସୁପ୍ରସିଦ୍ଧ ହୋଇଅଛି । ଡାକ୍ତରୀ ଶିକ୍ଷା ଲାଗି ଏହା ସୁଖ୍ୟାତ ।

ବିଶ୍ୱବିଦ୍ୟାଳୟର ମେଡ଼ିକାଲ କଲେଜ ସହିତ ସଂଯୁକ୍ତ ହପକିନ୍‌ସ ହସ୍‌ପିଟାଲ ଏକ ପ୍ରାଚୀନ ଚିକିତ୍ସାଳୟ, ହପକିନସ୍‌ଙ୍କ ଅର୍ଥରେ ନିର୍ମିତ । ପ୍ରବେଶ ଦ୍ୱାରରେ ଯିଶୁଖ୍ରୀଷ୍ଟଙ୍କର ବିଶାଳ ମୂର୍ତ୍ତି । ତାଙ୍କ

ପାଦ ତଳେ ଖୋଦିତ ହୋଇଛି—ପତିତ, ପୀଡ଼ିତ, ଘରଛଡ଼ା, ଯେ ଯେଉଁଠି ଅଛ, ଆସ, ମୋ ପାଖେ ଆଶ୍ରୟ ନିଅ ।

ଆଲେକ୍ ଏଠା ମେଡ଼ିକାଲ କଲେଜରେ ଆସିଷ୍ଟାଣ୍ଟ ପ୍ରଫେସର୍ । ମାସକୁ ୬୦୦ ଡଲାର୍ ଦରମା ପାନ୍ତି । ତାଙ୍କ ପ୍ରୋଫେସର୍ ମାସକୁ ଦୁଇ ହଜାର ଡଲାର ପାନ୍ତି । ସ୍ୱତନ୍ତ୍ର ବ୍ୟବସାୟୀ ଡାକ୍ତରମାନେ ଏଠି ଏହା ଅପେକ୍ଷା ଯଥେଷ୍ଟ ରୋଜଗାର କରନ୍ତି । ଭାରତ ପରି ଏଠି ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗ ଉପରେ ଏବେ ବି ସରକାରଙ୍କ ସୁଦୃଷ୍ଟି ପଡ଼ିନାହିଁ । ଡାକ୍ତରମାନଙ୍କ ମନରେ ଅସନ୍ତୋଷ ରହିଅଛି ।

ଡାକ୍ତର ଆଲେକ୍, ପଇସା ଭଙ୍ଗାଇବା ଯନ୍ତ୍ରରେ ଡଲାରଟିଏ ଥୋଇ ଦେଉଁ ଦେଉଁ ରେଜା ଗୁଡ଼ା ଆସିଲା । ତାପରେ ସେ ଅନ୍ୟ ଏକ ଯନ୍ତ୍ରରେ କ୍ୱାଟରଟିଏ ରଖି ରଖି କାଗଜ ଗ୍ଲାସ୍‌ରେ ବରଫଯୁକ୍ତ ପାଇନ ଆପଲ ସରବତ୍ ଚାଲି ଆସିଲା । ପିଇସାରି ଆଲେକଙ୍କ ଅଫିସକୁ ଗଲୁ । କେଉଁ ସହଜରେ କେତେ ବଡ଼ ବଡ଼ ମିଶାଣ, ଗୁଣାଣ ହୋଇ ପାରୁଛି । ସେ ଯନ୍ତ୍ର ଧାହାଯ୍ୟରେ ମୋତେ ବୁଝାଇଲେ । କିନ୍ତୁ ମଣିଷ ମୁଣ୍ଡ ପରି ଯନ୍ତ୍ର ବି ଚଗିଡ଼େ । ଅଙ୍କ କଷା ଯନ୍ତ୍ର ୧୪୪କୁ ୧୨ ରେ ଗୁଣି ପାରିଲା ନାହିଁ । ପରୀକ୍ଷା ହଲରେ କଷ୍ଟ ଅଙ୍କ ପ୍ରଶ୍ନ ଦେଖିଲେ ପିଲାଙ୍କ ମୁଣ୍ଡ ଯେପରି ବାଉଳା ଧରେ, ଯନ୍ତ୍ର ସେହିପରି ହେବାକୁ ଲାଗିଲା । କଣ ବୋଲି କଣ ଫଳ ବାହାରିଲା ।

ତାପରେ ଆମେ ବଲ୍‌ଟିମୋର୍ ଆର୍ଟ ମ୍ୟୁଜିଅମ୍ ଦେଖିଗଲୁ । ସ୍ଥିର ମନରେ ସୌନ୍ଦର୍ଯ୍ୟ ପିପାସା ଚରିତାର୍ଥ କରିବ—ଏଇ ଆଶା ।

ପିକାସୋଙ୍କର 'ମା ଓ ପିଲା', 'ଦୁଇଟି ଲଙ୍ଗଳା ପିଲା', 'ଗୋଟିଏ ସର୍କସ୍ ପରିବାର', 'ଊର୍ଦ୍ଧ୍ୱବାହୁ ଉଲଗ୍ନ ମୂର୍ତ୍ତି', ଡେଗସ୍‌ଙ୍କ 'ବାଲେଟ୍ ନୃତ୍ୟ', ସିସଲେଙ୍କ 'ନଦୀ ତୀରବର୍ତ୍ତୀ ପପଲାର', ସେଣ୍ଟଜନ୍‌ଙ୍କ 'ଶହୀଦ୍ ମୃତ୍ୟୁ' ଭୃତ୍ତିସ୍ ଜର୍ଜଙ୍କ କନ୍ୟା ଅଗଷ୍ଟ ସୋଫିଆଙ୍କ ଲାବଣ୍ୟ କେଉଁ ଦୂରବର୍ତ୍ତୀ ରାଜ୍ୟକୁ ମନକୁ ଘେନିଗଲା । 'ସୁନ୍ଦରୀର ପ୍ରେମପତ୍ର ଲେଖା' ଛବି ଦେଖୁଛି, ଏକାକ

ବେଳେ ନିଗ୍ରୋ ଗାର୍ଡ ଆସି କହିଲା—ଅନୁଗ୍ରହ କରି କ୍ଷମା ଦେବେ । ଯାଦୁଘର ବନ୍ଦ ହେବାକୁ ଯାଉଛି ।

ଆକାଶରୁ ଖସିଲା ପରି ଅନୁଭବ କଲି; ଲକ୍ଷ୍ୟ କରି ଦେଖିଲି ଯେ ସବୁ ଦର୍ଶକ ଚାଲିଗଲେଣି । ଘଣ୍ଟା ଶବ୍ଦ ମୋ କାନରେ ପଡ଼ିନାହିଁ । କାଳେ କିଏ କେଉଁଠି ରହି ଯାଇଥିବ ବୋଲି ଗାର୍ଡ଼ ଦେଖି ଆସିଥିଲା । ଦୌଡ଼ି ଦୌଡ଼ି ଦ୍ୱାରରେ ପହଞ୍ଚି ଦେଖିଲି ଆଲେକ୍ ମୋତେ ଖୋଜି ଖୋଜି ନ ପାଇ ନିଶ୍ଚିନ୍ତ ହୋଇ ଛିଡ଼ା ହୋଇଛନ୍ତି ।

ତାପରେ ଆମେ ବାଲ୍ଟିମୋର ବନ୍ଦରକୁ ଗଲୁ । ବେଳାସ୍ଥାନ ସମୁଦ୍ର ତରଙ୍ଗ ଗର୍ଜନରେ ଘୋର କୋଳାହଳମୟ ମୁଖର । ଶାମୁକା କି କଙ୍କଡ଼ା ଗୋଟାଏ କେଉଁଠି ଦେଖିବାକୁ ମିଳିଲା ନାହିଁ । ଜାହାଜ ପରେ ଜାହାଜ ଲମ୍ବିଛି, ଦିଗ୍‌ବଳୟକୁ ରୋଧି । ସମୁଦ୍ର ଧାରେ ଧାରେ ରାସ୍ତା ନାହିଁ । ବାଣିଜ୍ୟ ଅଫିସ୍ ସବୁ ଭିଡ଼ ଜମାଇଛି । ଏହି ପ୍ରାକୃତିକ ବନ୍ଦର ଉପରେ ଆଖି ବୁଲାଇ ବୁଲାଇ ଆଲେକ୍ କହିଲେ ଏଠି କୃଷ୍ଣ ଗୌର ଭେଦ ଖୁବ୍; ବେଳେ ବେଳେ ଘୋର ଅଶାନ୍ତି ଉପୁଜୁଛି—ଟେକାପଥର ଯୋଡ଼ା ବୋତଲ ଫୋପଡ଼ାଫୋପଡ଼ିରୁ ଗୁଳି ମରାମରି—ସନ୍ଧ୍ୟା ହେବା ଆଗରୁ ଚାଲି ପଳାଇବା ।

ନିଗ୍ରୋ ଅଞ୍ଚଳ ବାଟେ ଗାଡ଼ି ଚାଲିଲା; ଲଗା ଲଗି ଘର ଗୁଡ଼ିଏ—ନାହିଁ ଉଦ୍ୟାନ, ନାହିଁ ତୃଣ ପ୍ରାନ୍ତର—ନିଃଶ୍ୱାସ ମାରିବା ଲାଗି ଟିକିଏ ଫାଙ୍କ ଜାଗା କୋଉଠି ନାହିଁ । ଲମ୍ବିଛି ଏକା ପ୍ରକାର ଘର—ଭଡ଼ାଘର ସବୁ । ନିଗ୍ରୋ ମଜଦୁରଙ୍କ ବସ୍ତି—କିନ୍ତୁ ଆବର୍ଜନା ନାହିଁ ।

ଆଲେକ୍ କହିଲେ—ଏହି ବନ୍ଦର ଅଞ୍ଚଳରେ ରୋଗୀ ବେଶୀ—ବିଶେଷତଃ ଗନେରିଆ, ସିଫିଲିସ୍; ଏଠି ଜାହାଜ ଲାଗେ; ବହୁ ଦେଶର ନାବିକ ଆସନ୍ତି । ବେଶ୍ୟାପଡ଼ା ଅନେକ । ଖାଲି ରୋଗୀ କାହିଁକି, ଡାକୁ ବି ବହୁତ, ଚୋରି, ଡକେଇତି ନିତ୍ୟନୈମିତ୍ତିକ ବ୍ୟାପାର । ଗୋଟାଏ ନୈତିକ ମନ ଖୋଜି ପାଇବା କଷ୍ଟକର ।

'ଶୁଣିଛି—ଏ ଦେଶରେ କର୍କଟ ରୋଗୀଙ୍କ ସଂଖ୍ୟା ଅଧିକ ବୋଲି ।'

'ଭାରତରେ ଭଲ ପରୀକ୍ଷା ହୋଇପାରେ ନାହିଁ । ରୋଗୀ ନମୁନାଆଁରେ ମଲ, କହନ୍ତି; ହୁଏତ କାନ୍‌ସରରେ ମରିଥିବ ।'

ରୋଗରୁ କପରି ରାଜନୀତିରେ ପହଞ୍ଚିଲୁ ମନେ ନାହିଁ । ଆଲେକ୍ କହିଲେ—ଭାରତୀୟ ନେତା ଦୋ ମୁହାଁ; କହୁଛନ୍ତି ପ୍ରକାରେ କରୁଛନ୍ତି ଆଉ ପ୍ରକାରେ—ଅହିଂସା ଆଦର୍ଶ ପ୍ରଚାର କରୁଛନ୍ତି; ଏଣେ ଆଚରଣରେ ହିଂସା ପ୍ରୀତି ଉତ୍କଟ । ଭାରତର ବୈଦେଶିକ ନୀତି ବ୍ୟର୍ଥ ହୋଇଛି । ଆମେରିକାକୁ ନିଜର କରି ପାରିନାହିଁ, ରୁଷିଆକୁ ମଧ୍ୟ । ଆପଦବେଳେ କିଏ ସାହାଯ୍ୟ କରିବ ? ରୁଷ୍ ଚୀନଠାରୁ ପାକିସ୍ତାନକୁ ଅଲଗା ରଖିବାକୁ ଚାହେଁ । ପାକିସ୍ତାନ ଏବେ ତାର ନୂଆ ବନ୍ଧୁ । ସେ ଯଦି ଚେଷ୍ଟା ପ୍ରୟୋଗ ନ କରେ, କାଶ୍ମୀର ଅବସ୍ଥା କଣ ହେବ ?

ମୁଁ କହିଲି—ରାଜନୀତି ମଧ୍ୟରେ କୂଟନୀତି ରହିବ ହିଁ ରହିବ । ନୀତିଶାସ୍ତ୍ର ଦୃଷ୍ଟିରୁ ପ୍ରତ୍ୟେକ ଘଟଣା ବିଚାର କଲେ ନାନା ଜଟିଳତା ସୃଷ୍ଟି ହେବ । ଭାରତୀୟ ନେତାଙ୍କୁ ଦୋମୁହାଁ କହିବା ନିରର୍ଥକ । ସେମିତି ବୁଝିଲେ କେଉଁ ନେତା ମୁହଁରେ କଥାଏ, କାର୍ଯ୍ୟରେ ଅନ୍ୟ ପ୍ରକାର ନ କରନ୍ତି ? ବ୍ରିଟେନ୍ ତ କୂଟନୀତି ପ୍ରବୀଣ, କଥାରୁ କେତେ ଅର୍ଥ ବାହାର କରି ପ୍ରୟୋଗ କରେ । ଆମେରିକା ତ କହିଥିଲା—ପାକିସ୍ତାନ ତା ଅସ୍ତ୍ର ଭାରତ ବିରୁଦ୍ଧରେ ପ୍ରୟୋଗ କରିବ ନାହିଁ । ପାକିସ୍ତାନ ଭାରତ ବିରୁଦ୍ଧରେ ଆମେରିକା ଟ୍ୟାଙ୍କ୍ କପରି ବ୍ୟବହାର କଲା ? ଆମେରିକା ତାର କଣ କରି ପକେଇଲା ?

ରୁଷିର କୂଟନୀତିକ ଶିଶୁ ନୁହନ୍ତି । ପାକିସ୍ତାନକୁ ସନ୍ତୁଷ୍ଟ ରଖିବା ଲାଗି ଭାରତ ପରି ଏକ ବିରାଟ ଦେଶର ପିଠିରେ ଛୁରୀ ମାରିବେ, ସେ ଭଳି ଚେଷ୍ଟା କଲେ ରୁଷ୍ ଭାରତକୁ ହରାଇବ । ପାକିସ୍ତାନ ତ ତାର ହେବନାହିଁ, ଓଲଟି ଭାରତ ଶତ୍ରୁ ପାଲଟିବ । ଏପରିଆରେ ତାର ନୈତିକ ପ୍ରଭାବ ଲୋପ ପାଇବ, ଏଇ ବିଶ୍ୱାସଘାତକତା ଯୋଗୁଁ ଭାରତ ଯେପରି ରୁଷିର, ରୁଷ୍

ସେହିପରି ଭାରତର ବନ୍ଧୁତା ଚାହାନ୍ତି; ବିଶେଷତଃ ଚୀନ୍ ବିରୁଦ୍ଧରେ ଏହା ଆବଶ୍ୟକ । ଜୀବନ ମରଣ ସମସ୍ୟା ଏ ।

## ଆମେରିକାବାସୀଙ୍କ ସଦ୍‌ଗୁଣ

ଉନାର୍ ଦ୍ୱେକେ ପଚାରିଲି—ଆମେରିକାନ୍ କ ସଦ୍‌ଗୁଣର ଅଧିକାଂଶ ? ଆଲେକ କହିଲେ—ଆମେରିକାନ୍ ଗୋଟିଏ ସୁଶିକ୍ଷିତ ଜାତି । ସେମାନଙ୍କ ଚଳଣି ଇଉରୋପୀୟଙ୍କ ପରି । ଖାଦ୍ୟପେୟ ଓ ରୁଚିରେ ଆମେରିକାନ୍ ଓ ଇଉରୋପୀୟଙ୍କ ମଧ୍ୟରେ ଖୁବ୍ ବେଶୀ ତାରତମ୍ୟ ନାହିଁ । ସେମାନଙ୍କର କେତେକ ସାଧାରଣ ଜାତୀୟ ଅଭ୍ୟାସ କାହାରକୁ ସଦ୍‌ଗୁଣ ପରି ଜଣାପଡ଼େ ।

ଇଂରେଜଙ୍କ ପରି ଆମେରିକାନ୍ ଗୁରୁଗମ୍ଭୀର ନୁହନ୍ତି । ସେମାନେ ମିଶାଣିଆ ପ୍ରକୃତିର; ବସ୍‌ରେ ଟ୍ରେନ୍‌ରେ ବ୍ୟୋମଯାନରେ ରାସ୍ତାରେ ମାର୍କେଟରେ ଯେଉଁଠି ଦେଖା ହେଲେ ବି ସେମାନେ ପରିଚୟ ଦେବାକୁ ଓ ପରିଚିତ ହେବାକୁ ଚାହାନ୍ତି । ବହୁ ପରିମାଣରେ ସାମାଜିକ, ସାହାଯ୍ୟ-କାରୀ ମଧ୍ୟ । ପଥହରା ହେଲେ ମାଇଲ୍ ମାଇଲ୍ ସଙ୍ଗରେ ଯାଇ ବାଟ ଦେଖାଇ ଦେବାର ଦୃଷ୍ଟାନ୍ତ ଅଛି । ଅତିଥିବତ୍ସଳ, ଖାଇବାରେ ଯେପରି ଖୋଇବାରେ ସେମାନଙ୍କର ସେହିପରି ଆନନ୍ଦ । କିଛି ଉପହାର ନେବାକୁ ଓ ଦେବାକୁ ଭଲ ପାନ୍ତି । ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ମଧ୍ୟ ଉଚ୍ଚକୋଟୀର ଅତିଥି ଚର୍ଚ୍ଚା କରିଥାନ୍ତି । ଖାଦ୍ୟପେୟରୁ ଦାରିଦ୍ର୍ୟ କଳନା କରିହୁଏ ନାହିଁ । ଘର ସଜାସଜି, ଲୁଗାପଟାରୁ ଦାରିଦ୍ର୍ୟର ସୂଚନା ମିଳେ ନାହିଁ । ସମସ୍ତେ ପ୍ରାୟ ଭଲ ଖାନ୍ତି, ଭଲ ପିନ୍ଧନ୍ତି; ସେ ଦିଗରେ କାହାର ନ୍ୟୂନତା ବୋଧ ନାହିଁ । ସମସ୍ତେ ପ୍ରାୟ କଠୋର ପରିଶ୍ରମ କରନ୍ତି । କାର୍ଯ୍ୟରେ ଆଳସ୍ୟ, ଅବହେଳା କ୍ୱଚିତ୍ ପରିଲକ୍ଷିତ ହୁଏ ।

ପରନିନ୍ଦା, ପରଚର୍ଚ୍ଚାରେ କାଳ କ୍ଷେପ କରନ୍ତି ନାହିଁ । ବଡ଼ ପାଟିରେ କଥା କହନ୍ତି ନାହିଁ । କାହାର କିଛି ଅସୁବିଧା ହେବ, ଏଥି ଲାଗି ସଦା ସଚେତନ । ଛୋଟ ଛୋଟ ପିଲାମାନେ ଚିତ୍କାର କରି କେଉଁଠି ଦୌଡ଼ା ଦୌଡ଼ି କରୁଥିବାର ଦେଖିବ ନାହିଁ । କାହା ବାଡ଼ିରୁ କେହି ଫୁଲଟିଏ

ଛୁଣ୍ଡାଇ ନିଏ ନାହିଁ, ଟୋକେଇ ଟୋକେଇ ଆପଲ୍ ଫଳ ଝଡ଼ ପଡ଼ି ଗଲେ ବି କେହି ତାହା ବାଡ଼ରୁ ଗୋଟାଇ ନିଏ ନାହିଁ, ଯେତେ ଅଭାବ-ଗ୍ରସ୍ତ ହେଲେ ବି। ଅଭାବ ସ୍ୱଭାବ ନଷ୍ଟ କରେ ନାହିଁ—ଏ ଦୃଷ୍ଟାନ୍ତ ପ୍ରାୟ ସବୁଠି ଦେଖିବାକୁ ମିଳେ।

ନିଜ କାମ ଯଥାସମ୍ଭବ ସେମାନେ ନିଜେ କରନ୍ତି, କାହା ଉପରେ ନିର୍ଭର କରନ୍ତି ନାହିଁ। କାର୍ଯ୍ୟଦକ୍ଷତାର ପରିଚୟ ସବୁଠି। 'ମୁଁ ଜାଣେ ନାହିଁ, ଏପରି କରିଦେଲି, ଅମୁକ ଦିନ ଆସନ୍ତୁ, ଆପଣଙ୍କ କାମଟା କରିଦେବା,' କଥା ଶୁଣାଯାଏ ନାହିଁ। ଅଳ୍ପ କାମ କରି ବହୁତ ବାହାଦୁରୀ ମଧ୍ୟ ନିଅନ୍ତି ନାହିଁ। ବର୍ତ୍ତମାନ କରିବା ନଇଲେ ନ କରିବା, ସେମାନଙ୍କର ଅଭ୍ୟାସ। କାହାର କାମ କରିଦେବା ଲାଗି ସତେ ଯେପରି ଉଦ୍‌ଗ୍ରୀବ ହୋଇ ରହିଥାନ୍ତି। କାର୍ଯ୍ୟ ଶେଷ ହେଲାପରେ ଧନ୍ୟବାଦ ନେବା ଓ ଦେବା ସୌଜନ୍ୟର ଅନ୍ତର୍ଗତ।

କୌଣସି ବିଶେଷ କାର୍ଯ୍ୟ ନ ଥିଲେ କେହି କାହା ଘରକୁ ଯାନ୍ତି ନାହିଁ। ସାଧାରଣ ଭାବରେ ଆଳାପ ଚାହିଁଲେ ବି ଆଗରୁ ଫୋନ୍ କରି ସମୟ ନିର୍ଦ୍ଧାରଣ କରିବାକୁ ହୋଇଥାଏ। କାହାର କାର୍ଯ୍ୟରେ ବା ବ୍ୟକ୍ତିଗତ ସୁଖଶାନ୍ତିରେ କିଛି ଯେପରି ବ୍ୟାଘାତ ନ ଘଟେ, ଏଥିଲାଗି ସାଧାରଣ ସଚେତନ। ରାଗାରାଗି, ଜିଦ ପକାପକି, କର୍କଶ କଥାର କଥାର ପ୍ରୟୋଗ କେଉଁଠି ଏକ ଦୃଶ୍ୟ ସୃଷ୍ଟି କରେ ନାହିଁ।

କେହି ଅର୍ଥ ଜମାଇ ରଖେ ନାହିଁ। ପଇସାକୁ ବ୍ୟବସାୟରେ ଲଗାଇବା ଲାଗି ପ୍ରଚୁର ଉତ୍ସାହ ମିଳେ। ବାଣିଜ୍ୟବ୍ୟବସାୟରେ ଟଙ୍କା ଲଗାଇଲେ କ୍ଷୟକ୍ଷତିର ସମ୍ଭାବନା କ୍ୱଚିତ୍ ଥାଏ। ଲୋକେ ଖୁବ୍ ରୋଜଗାର କରନ୍ତି; ଖୁବ୍ ଖର୍ଚ୍ଚ କରନ୍ତି। ଜିନିଷପତ୍ର କାଳିକ ସିରେ କିଣନ୍ତି। ତାକୁ ଯଥାସମୟରେ ଶୁଝିବା ଲାଗି ପ୍ରାୟ ପ୍ରତ୍ୟେକ ତତ୍ପର। ଯାବତୀୟ ବ୍ୟବସାୟ କାଳରେ ଚାଲେ। କେହି କାହା ଟଙ୍କା ବୁଡ଼େଇବା କଥା ଶୁଣାଯାଏ ନାହିଁ। ସାଧୁତା, ବିଶ୍ୱାସ ହିଁ ବ୍ୟବସାୟର ଅସଲ ମୂଳଧନ। ଖାଇପିଇ ଚୁପ୍‌ଚାପ୍ ଖସିଯିବା କଥା ଶୁଣାଯାଏ ନାହିଁ।

# ଅବସର ବିନୋଦନ

ଆମେରିକାନମାନେ ଅବସରର ଉପଯୋଗ କରନ୍ତି କିପରି ? ଆଲେକ କଣ୍ଟେଲେ—ଆମେରିକାର ଜୀବନ ମୁଖ୍ୟତଃ ଏକ ନଗର ଜୀବନ । ପ୍ରତି ଚାରି ଜଣଙ୍କ ମଧ୍ୟରେ ଏଠି ତିନି ଜଣ ନଗରବାସୀ । ଆଗେ ଏଠା ଲୋକଙ୍କୁ ସପ୍ତାହକେ ସତୁରି ଘଣ୍ଟା ପରିଶ୍ରମ କରିବାକୁ ପଡୁଥିଲା; ଏବେ ସେମାନେ ଚାଳିଶ ଘଣ୍ଟା କାମ କରନ୍ତି । ସାତଦିନରେ ଦୁଇଟି ଛୁଟି । ପୃଥିବୀର କ୍ୱଚିତ ଦେଶ ଏତେ କମ ଘଣ୍ଟା କାମ କରନ୍ତି, ଏତେ ଅବସର ପାନ୍ତି । ଏହି ଦୀର୍ଘ ଅବସରକୁ ସରସ ଓ ସୁନ୍ଦର କରିବା ଲାଗି ଆମେରିକାନ ସଚେଷ୍ଟ ।

ପୁରୁଷ ଅବସରରେ ଘରେ ବସି ରହନ୍ତୁ, ସ୍ତ୍ରୀ ଏହା ଚାହେଁ ନାହିଁ । ସ୍ତ୍ରୀ ମଧ୍ୟ ଘର ସଂସାରକୁ ଜାବୁଡ଼ି ବସି ରହେ ନାହିଁ । ସମଗ୍ର ଦେଶରେ ଗାଲରେ ହାତ ଦେଇ କେହି ବସି ରହିବାର ଦେଖିବ ନାହିଁ, ଦାର୍ଶନିକ ପରି ଗମ୍ଭୀର ହେବାଟାକୁ କେହି ପସନ୍ଦ କରନ୍ତି ନାହିଁ । ଖାଅପିଅ, ନାଚ, ହସ, ଖେଳ,—ଏଇ ଜୀବନ । ଜୀବନ ଅର୍ଥ ବିନୋଦନ । ଅବସରରୁ ଯେ ଯେତେ ଆନନ୍ଦ ଆଦାୟ କରି ପାରେ, କରେ ।

ଅବସର ମିଳିବା ମାତ୍ରେ ସମଗ୍ର ଜାତି ସଚଳ ହୁଏ—ପୂର୍ବରୁ ପଶ୍ଚିମ, ଉତ୍ତରରୁ ଦକ୍ଷିଣ । କେହି ଗଡ଼ିଯାନ୍ତି, କେହି ଉଡ଼ିଯାନ୍ତି, କେହି ଭାସିଯାନ୍ତି । ଭ୍ରମଣ ଗୋଟିଏ ଜାତୀୟ ଅଭ୍ୟାସ । ଲୋକଙ୍କ ମଧ୍ୟରେ ଡାକ୍ତର, ବକିଲ, ଅଧ୍ୟାପକ, ଶିକ୍ଷକ, ଏମାନେ କ୍ୱଚିତ୍ ଭ୍ରମଣରେ ଯାନ୍ତି । ଯେଉଁ ନିଗ୍ରୋମାନଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ, ସେମାନେ ଯାଇପାରନ୍ତି ନାହିଁ । କେତେକ ବେସବଲ, ହାଣ୍ଡବଲ, ଫୁଟବଲ, ସ୍କେଟିଂ, ବକ୍ସିଂ, ଟେନିସ ପ୍ରଭୃତି ଖେଳ ଦେଖି ବା ଖେଳି ଯାନ୍ତି । କେହି କେହି ନୌକା ଚଳାନ୍ତି, ସନ୍ତରଣ କରନ୍ତି, ଅଶ୍ୱାରୋହଣ କରନ୍ତି କିମ୍ବା ନୌକାଚାଳନ, ସନ୍ତରଣ ବା ଅଶ୍ୱାରୋହଣ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରନ୍ତି ।

କେହି କେହି କକ୍‌ଟେଲ୍ ପାର୍ଟିରେ ଯୋଗ ଦିଅନ୍ତି, ମୋଭି, ଥିଏଟର ବା ଅପେରା ଦେଖନ୍ତି । କେହି ବା ଘରେ ବସି ଗିଟାର୍, ପିଆନୋ ବଜାନ୍ତି, ଟେଲିଭିଜନ୍ ଦେଖନ୍ତି, ଟେବଲ୍‌ଟେନିସ୍ ଖେଳନ୍ତି, ବଗିଚା କରନ୍ତି, କିମ୍ବା ନିଜ ପଡ଼ିଆରୁ ଘାସ କାଟନ୍ତି ।

କେତେକ ବନ୍ୟ ପକ୍ଷୀ ବା ହରିଣ୍ ଶିକାର କରନ୍ତି । ବନିଶି ପକାଇ ମାଛଧରିବା ଗୋଟିଏ ସାଧାରଣ ଅଭ୍ୟାସ । କେହି ରୋଡ଼ିଓ, ପୁଷ୍ପପ୍ରଦର୍ଶନୀ ବା କୁକୁର ପ୍ରଦର୍ଶନୀ ଦେଖିଯାନ୍ତି; ବହୁ ବ୍ୟକ୍ତି ନାଇଟ୍‌କ୍ଲବ୍‌ରେ ଯୋଗ ଦିଅନ୍ତି, ପଶା ଖେଳନ୍ତି, ନିଶା ଓ ପଶାରେ ଏ ଦେଶରେ ବହୁତ ପଇସା ବରବାଦ୍ ହୁଏ । ପଇସା କିପରି ଖର୍ଚ୍ଚ କରିବେ, କେତେକଙ୍କର ଏ ଗୋଟିଏ ସମସ୍ୟା । ମଦପିଇ ଜୁଆ ଖେଳି କେତେକ ପଇସା ଉଡ଼ାଇ ଦିଅନ୍ତି । ସମ୍ବାଦପତ୍ର, ପତ୍ରିକା ଓ ପୁସ୍ତକପାଠ ଏକ ବିନୋଦନ; ସପ୍ତାହ ଶେଷରେ ଟ୍ରେଲରରେ ବା ନିଜ ଗାଡ଼ିରେ ଦୂରବର୍ତ୍ତୀ ସ୍ଥାନକୁ ଗଲାବେଳେ ଲୋକେ ଗୋଟା ଗୋଟା ମାଗାଜିନ୍ ବାନ୍ଧି ନିଅନ୍ତି ।

୩୧. ୭. ୬୭—ବଲ୍‌ଟିମୋର୍—ବିଦାୟ ।

ଗାଧୋଇ ସଦ୍ୟ ଫେରି ଆସିଛି ତମ୍ଭୁ । ଶାଢ଼ୀ ପିନ୍ଧିବାକୁ ଅବସର ପାଇନାହିଁ । ମୋର ବସ୍ ବେଳ ହୋଇ ଯାଉଛି । ଗାଢ଼ ନୀଳ୍ ଉପରେ ବସ୍ତ୍ର ମାତ୍ର ପିନ୍ଧିଚି—କେଶ ଆର୍ଦ୍ର, ଅଳକାରେ ଝୁଲୁଛି କେତୋଟି ମୋତି । ତା ମଧ୍ୟରେ ଉଜ୍ଜ୍ୱଳ ଓ କରୁଣ ହସ ଫୁଟାଇ ନମସ୍କାର କଲା ସେ—ବିଦାୟ; 'ଆଉ ଗୋଟିଏ ଦିନ ରହିଥିଲେ ହୋଇଥାନ୍ତା । କିଛି ଆଳାପ ହୋଇ ପାରିଲା ନାହିଁ ।' ଆଲେକ୍ ମଧ୍ୟ କହିଲେ—ପ୍ରକୃତରେ ଭାବ ଜମିଆସିଲା ବେଳକୁ ବିଚ୍ଛେଦ—ସେ ଉତ୍ତର ଚଳ୍ପ୍ରାନ୍ତ ମୁହୂର୍ତ୍ତରେ ହଠାତ୍ ଶଲ୍ ଛୁଡ଼ିଲା ପରି, ବଂଶୀ ଲୁଭିଗଲା ପରି ।

କହିଲି—ଭ୍ରମଣକାରୀ ମୁଁ, କିଛି ଭାବ ସାଉଁଟିବା ମୋର କାର୍ଯ୍ୟ । ଗୋଟିଏ ସ୍ଥାନରେ ଦିନେ ଦୁଇଦିନ ଯଥେଷ୍ଟ । ଆକର୍ଷଣ ଅଙ୍କୁରିଲା ବେଳକୁ ବିଚ୍ଛେଦ । ତା ଧରିନେବା ଏକ ଅଭ୍ୟାସ ହୋଇ ଗଲାଣି !

ସତ୍ୟ ବର୍ଣ୍ଣିତ ବୃତ୍ତରୁ ନିଜକୁ ଛିନ୍ନ କରି ନେବାର ନିଷ୍ଠୁରତା ରହିଛି ବୋଲି ମୁଁ ଭ୍ରମଣକାରୀ ହୋଇ ପାରିଛି । ନହେଲେ ଗୋଟିଏ ସ୍ଥାନରେ ଅଟକଯାନ୍ତି, ବନ୍ଧନ ହିଁ ବନ୍ଧନ, ସ୍ନେହରେ ହେଉ ବା ଶିକୁଳିରେ ହେଉ ।

ରେଡ଼ିଓରେ ବାଜୁଥିଲା—

Rock of Ages
Cleft for me
Let me myself in thee.

ହୃଦୟରେ କିଛି ଆବେଗ ଜାଗ୍ରତ ହେବାରୁ ଆଲେକ୍ ହଠାତ୍ ବିଦାୟ ନେଲେ, ବସ୍ ଷ୍ଟେସନରେ ମୋତେ ଛାଡ଼ିଦେଇ । ହଠାତ୍ ଟଣଟାଣ୍ ମନରେ କିଛି ଛିଡ଼ିଗଲା ପରି ଲାଗିଲା—ବସ୍‌ରେ ଦେହ ଆଉଜିଥିଲେ ବି ମନ ଫେରୁଥିଲା ପଛକୁ—କିଛି ମୂଲ୍ୟବାନ୍ କେଉଁଠି ଛାଡ଼ିଆସିଲା ପରି । ସେ ଆଜି କିଛି ନୁହେଁ—ଗୋଟିଏ ଦୋଆବ୍—ଯେଉଁଠି ଗଙ୍ଗା ଯମୁନା ମିଶିଛି ।

## ବାଲ୍‌ଟିମୋର୍‌ରୁ ରାଲେ

ଗ୍ରେ-ହାଉଣ୍ଡ ବସ୍‌ରେ ଯାଇ ପହଞ୍ଚିଲି ଓ୍ୱାସିଂଟନରେ । ସେଇ କାପିଟୋଲ୍ ବିଲ୍‌ଡ଼ିଂ, ହ୍ୱାଇଟ ହଲ୍, ଓ୍ୱାସିଂଟନ ମେମୋରିଆଲ୍, ପୋଟୋମାକ୍ ନଦୀ—ହୃଦୟ କରୁଣ ମଧୁର ସ୍ମୃତିରେ ଆର୍ଦ୍ର ଓ ମନୋହର ହୋଇ ଉଠିଲା । ବାଟରେ ପଡ଼ିଲା ଭର୍ଜିନିଆଁ ରାଜ୍ୟ—୧୬୦୭ରେ 'ଲଣ୍ଡନ କମ୍ପାନୀ' ଏଠି ପ୍ରଥମେ ବସତି ସ୍ଥାପନ କଲା—୧୬୨୬ ଖ୍ରୀଷ୍ଟାବ୍ଦରୁ ଏହା ଉପନିବେଶ ରୂପେ ବ୍ରିଟିସ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ସ୍ୱାଧୀନତା ସଂଗ୍ରାମରେ ଏହି ରାଜ୍ୟ ନେତୃତ୍ୱ ଗ୍ରହଣ କରିଥିଲା—ପେଟ୍ରିକ୍ ହେନେରିଙ୍କ 'ସ୍ୱାଧୀନତା ନୋହିଲେ ମୃତ୍ୟୁ'—ଉତ୍ତେଜକ ଭାଷଣ ସମଗ୍ର ରାଜ୍ୟରେ ଚିନ୍ତାସ୍ରୋତ ବୁହାଇ ଦେଇଥିଲା । ବ୍ରିଟିସ୍ ସେନାପତି ଲର୍ଡ଼ କର୍ଣ୍ଣଓ୍ୱାଲିସ୍ ୧୭୮୧, ଅକ୍ଟୋବର ୧୯ ତାରିଖରେ ଆତ୍ମସମର୍ପଣ କଲେ । ଗୃହଯୁଦ୍ଧରେ ଏହି ରାଜ୍ୟ ଦକ୍ଷିଣ ପକ୍ଷ ଅବଲମ୍ବନ କରିଥିଲା; ଏହି ରାଜ୍ୟ ଯୁଦ୍ଧର କେନ୍ଦ୍ରସ୍ଥଳ ଥିଲା ।

ଭର୍ଜିନିଆର ଧୂଆଁପତ୍ର, ଗହମ, ମକନା ଖେତ, କାଗଜ, ଲୁଗା, କାଚ କାରଖାନା, ବନ୍ଦର ନଗର ଓ ଶ୍ରେଷ୍ଠ ସହର ଅତିକ୍ରମ କରି ଦ୍ୱିପହର ବେଳା ପାଞ୍ଚଟାବେଳେ ପହଞ୍ଚିଲି 'ରାଲେ'ରେ; ରାଲେ ଉତ୍ତରକାରୋଲିନାର ରାଜଧାନୀ । ୧୭୯୨ ଖ୍ରୀଷ୍ଟାବ୍ଦରେ ଏହି ନଗର ପ୍ରତିଷ୍ଠିତ ଓ ଆବିଷ୍କାରକ ଇଂରେଜ ସାର୍ ୱାଲ୍‌ଟର୍ ରାଲେଙ୍କ ନାମରେ ନାମିତ । ଏହା ନର୍ଥକାରୋଲିନାର ମୁଖ୍ୟ ଶିଳ୍ପସହର ଓ ଶିକ୍ଷାକେନ୍ଦ୍ର ।

ମୋ ଶଳା କୃଷ୍ଣମୋହନ ତ୍ରିପାଠୀ (ଡାକ ନାମ ରାଜୁ) ଜଣେ ଟେକ୍‌ସଟାଇଲ୍ ଇଞ୍ଜିନିୟର, ନର୍ଥକାରୋଲିନା ବିଶ୍ୱବିଦ୍ୟାଳୟରେ ପି ଏଚ୍. ଡ଼ି କରେ—ବସ୍‌ଷ୍ଟାଣ୍ଡକୁ ଆସିଛି ମୋତେ ନେବାଲାଗି । ଚାରିବର୍ଷ ପରେ ଦେଖା; ସେ ହାର୍ଦ୍ଦ ଆଲିଙ୍ଗନ ପରେ ସେ ମୋ ସୁଟ୍‌କେସ୍‌ଟି ନେଇ ଚାଲିଲି ଗାଡ଼ିକି । ରାଜୁ ଏବେ ଗାଡ଼ି କିଣିଛି—ସେକେଣ୍ଡହାଣ୍ଡ୍, ଦାମ୍ ମାତ୍ର ଶହେ ଡଲର୍ ! ଏତେ ବଡ଼ ଗାଡ଼ିକିଣିବା ଆବଶ୍ୟକ ନ ଥିଲା । କିନ୍ତୁ ପସନ୍ଦର ପ୍ରଶ୍ନ ନାହିଁ । ଯାହା ତା ଭାଗ୍ୟକୁ ମିଳିଛି । ନୂଆ ଶିଖାଳି, ମୋଡ଼ ବୁଲେଇ ବୁଲେଇ ତା ଗାଡ଼ି ଆଉ ଗୋଟିଏ ଗାଡ଼ିକି ଠୋକ୍ କରି ଦେଲା—ଅବଶ୍ୟ ମୃଦୁ । କିନ୍ତୁ ଏ ତ ଆକ୍‌ସିଡେଣ୍ଟ; ଆଉ ଟିକିଏ ଜୋର୍‌ରେ ବାଜିଥିଲେ କ୍ଷତି ହୋଇଥାନ୍ତା, ଆମର ବା ତାଙ୍କର, ଆଉ ଗାଡ଼ିରେ ସ୍ୱାମୀ—ସ୍ତ୍ରୀ; ଗାଡ଼ି ଅଟକାଇ ସେମାନେ ଓହ୍ଲାଇଲେ । ରାଜୁ ମଧ୍ୟ ଓହ୍ଲାଇ ସେମାନଙ୍କୁ କ୍ଷମା ମାଗିଲା, ସେମାନେ ନୂଆ ଶିଖାଳି ଏଇ ତରୁଣଟିକୁ କ୍ଷମା ଦେଲେ । ନଇଲେ ଗାଡ଼ିର କ୍ଷତି ହୋଇଛି ବୋଲି ହୁଏତ କେସର ନାଲିସ କରିଥାନ୍ତେ—ଯେଉଁ ସଂଖ୍ୟାକ ଡଲର୍ କ୍ଷତିପୂରଣ ଦେବାକୁ ପଡ଼ିଥାନ୍ତା, ତାହା ଦେବା ରାଜୁର ଶକ୍ତିର ଅତୀତ । ଜଣେ ବୃତ୍ତିଭୋଗୀ ଛାତ୍ର; ବିଶ୍ୱବିଦ୍ୟାଳୟରୁ ଯାହା ପାଏ, ସେଥିରେ ଶ୍ରେଷ୍ଠ ପରିବାରଟି କୌଣସି ପ୍ରକାରେ ଚଳିଯାଏ ।

ରାଜୁ ବସାର ଡାକେ ବାଟରେ ଗାଡ଼ିଟି ପାର୍କ କଲା, ବନ୍ଦ ଦେଲା ନାହିଁ । ପଚାରିଲିଣି କହିଲା—ଏ ଗାଡ଼ିକି କିଏ ନେବ ? ଏଠି ଚୋର

କାହିଁକି, ବଡ଼ ବଡ଼ ଡିଗ୍ରୀ ନେଇଛନ୍ତି ସିନା, କିନ୍ତୁ ଏତେ ଶ୍ରେଷ୍ଠ ଲୋକ ନାହାନ୍ତି !

ସେ ବର୍ଷ ନୂଆ ଘର; ରଞ୍ଜୁର ସ୍ତ୍ରୀ ମୀନା ଆସି ଗୋଡ଼ ତଳେ ପଡ଼ିଲା । ବାହା ହେବା ପରେ ଏଇ ପ୍ରଥମ ଦେଖା । ଶଶୁର ଘରେ ତ ଲମ୍ବ ଓଢ଼ଣା; ମାଇକି ଜଣ ମଟେ ଲୁଚିଥିଲା । ଆମେରିକା ଆସି ମନକୁ ମନ ଓଢ଼ଣାଟି ଖସି ପଡ଼ିଛି । ଶରତ ସକାଳର ସଜଳ ଶେଫାଳି ପରି ଗୋଟିଏ ସୁବାସିତ, ସୁନ୍ଦର ହସ ହସି କହିଲା—ତୁମେ ତ ବଡ଼ ଜୋଇଁ; ଆଗେ 'ବାପା' (ମୋର ଓ ତାର ଶ୍ୱଶୁର) ଚର୍ଚ୍ଚା କରୁଥିଲେ । ଏବେ ଚର୍ଚ୍ଚା କରିବାର ଭାର ଆସି ଆମ ଉପରେ ପଡ଼ିଲା । ଏହା କହି କମଳାଲେମ୍ବୁ ସରବତ ଗ୍ଲାସଟିଏ ମୋତେ ଆଣି ଦେଲା । ଆଧୁନିକ ପାଣିରେ ତାର ଏଇ ମଫସଲିଆ କଥା ପଦକ ଶୁଣି କି ଅପୂର୍ବ ପୁଲକରେ ଦେହ ଶୀତେଇ ଉଠିଲା । ପାରିବାରିକ ସ୍ନେହର ସ୍ୱାଦ—ଭଙ୍ଗା ଦରଭଙ୍ଗା ପରିବାରରେ ଆଜି ଚାଖିବାକୁ ମିଳୁନାହିଁ ।

'ଜୋଇଁ, ସକାଳୁ ଅଇଲଣି, ତୁମକୁ ଖରା ଭୋକ ହେଉଥିବ । ଆସ ଖାଇବ'—ଏହା କହି ମୀନା ଟେବୁଲ୍ ସଜେଇବାରେ ଲାଗିଗଲା ।

କହିଲି—ଆରେ ତୁମକୁ ସବୁ ଦେଖି ତ ମୋ ପେଟ ପୂରି ଯାଉଛି; ଆଉ ଭୋକ କଣ ? ଘରେ ଦେଖା, ବିଦେଶରେ ଦେଖା, ଏହା ମଧ୍ୟରେ ତାରତମ୍ୟ ତ ଅଳ୍ପ ନୁହେଁ । ପ୍ରାକୃତିକ ପରିବେଶରୁ ଛିନ୍ନ ତୁମମାନଙ୍କୁ ଦେଖି ସ୍ନେହର ସପ୍ତ ସାଗର ହୃଦୟରେ ଉଚ୍ଛୁଳି ପଡ଼ିଲା ପରି ଲାଗୁଛି !

ନାନା ଆଳାପ ମଧ୍ୟରେ ଖିଆପିଆ ଚାଲିଲା । ସବୁ ମଧ୍ୟରେ ସିଠାଦିଆ ହରଡ଼ଡାଲି, ଶାସନ ଦାମୋଦରପୁରିଆ ମାଛବେଶର ଏ ସ୍ୟାଣ୍ଡ୍‌ୱିଚ, ସାଲାଡ୍ ଓ ଶିଝା ମାଂସଖିଆ ପାଟିକି ବଡ଼ ଭଲ ଲାଗିଲା । ରଞ୍ଜୁ ନଜର ଖାଇ ମୀନା ପତରକୁ ହାତ ବଢ଼େଇଲା । କହିଲି—ଆରେ ରଞ୍ଜୁ, ମୁଁ ଅଛି ନା, ଏ କଣ କରୁଛୁ ?

ନାନା ସୁଖ ଦୁଃଖ ମଧ୍ୟରେ ମୀନା କହିଲା—ହେ ଜୋଇଁ, ତୁମ ଗୋଡ଼ ନଖଗୁଡ଼ାକ କେଡ଼େ କେଡ଼େ ବଢ଼ିଛି !

'ପାଦରେ ହାତ ଦେଲେ ତ ବାରକମ୍ପାଆନ୍ଙ୍କ ମାନ୍ ଯିବ ନଖକଟା କଳରେ ସେ ତଳୁ ନାହିଁ । ବଡ଼ କେତେ ବଢ଼ିଛି ।

'ନାହିଁ, ନାହିଁ—ବସ, ମୁଁ କାଟିଦେଏଁ;' ସ୍ତ୍ରୀ କହି ତା ଚମ୍ପାକଢ଼ି ଆଙ୍ଗୁଠିରେ ଗୋଟେ ବ୍ଲେଡ ଖୁର ଧରି କାଟି ବସିଲା ।

ଅଧା କଥା ହୋଇଛି, ପଦସ୍ଥଲେ ସୁଭାଷ ମହାପାତ୍ର ଓ ତାଙ୍କ ସ୍ତ୍ରୀ ନିରୁପମା । ସୁଭାଷ ଉଦ୍‌ଭିଦ ବିଦ୍ୟାରେ ନର୍ଥକାରୋଲାଇନା ବିଶ୍ୱ ବିଦ୍ୟାଳୟରୁ ପି.ଏଚ. ଡି କରି ଆସିଛନ୍ତି ।

ବାପା ତାଙ୍କ ବିଭାଘର ଠିକ୍ କଲେ—ହୁଏତ ବୋହୂ ଗହଣା ରଖିବାର ଆଶା ମନରେ ଥିଲା । ସୁଭାଷ ଆମେରିକାରୁ ଭାରତକୁ ଯାଇ-ଥାନ୍ତା । ସନ୍ମାନରେ ବେଦୀ ଉପରେ ବିଭାଘର ହୋଇଥାନ୍ତା । କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଭିନେ । ବିବାହ ପୂର୍ବରୁ ତାଙ୍କ ପିତା ଇହଧାମ ତ୍ୟାଗ କଲେ । ସୁଭାଷ ଭାରତ ଫେରିବ ନାହିଁ; ଜିଦ୍ ଧରି ବସିଲା । ଅଗତ୍ୟା ସୁଭାଷର ଜ୍ୟେଷ୍ଠଭ୍ରାତା ଓ ନିରୁର ପିତା ନିରୁକୁ ଆମେରିକା ପଠାଇ ଦେଲେ । ତେଲିଙ୍ଗି ବାଇଦ କି ଯୋଡ଼ନାଗରା ବାଜିଲା ନାହିଁ, ହୋମ ଜଳିଲା ନାହିଁ, କୁଣିଆଁ ମଇଣ କେହି ନାହାନ୍ତି । ହୃଦୟ ସହିତ ହୃଦୟକୁ ସାକ୍ଷୀ ରଖି ବିଭାଘର ହୋଇଗଲା । ନିରୁଲାଗି ଯେଉଁ ଜିନିଷପତ୍ର କିଣା ହୋଇଥିଲା ସେସବୁ ତା ସାନ ଭଉଣୀ ବିଭାଘରେ ଲାଗିଲା । ସୁଭାଷ, ନିରୁ ଏଠି ଖୁବ୍ ସୁଖରେ ଅଛନ୍ତି ।

ନାନା ଆଳାପ ମଧ୍ୟରେ ସୁଭାଷ କହିଲେ—ଓଡ଼ିଶାର କେତେକ ପ୍ରଫେସର ଓ ବିଭାଗୀୟ ମୁଖ୍ୟଙ୍କ କଥା । ନାନା ସଭାପମେଣ୍ଟ ଓ ପରୀକ୍ଷା ନିରୀକ୍ଷା ମଧ୍ୟରେ ଗବେଷଣା କରିବା ଲାଗି ବେଳ ନଥାଏ; କେତେକଙ୍କର ପୋଥିରେ ଡୋରି ବନ୍ଧାହୁଏ, କଲମ ମୁନ ଜଙ୍କ୍ ଧରେ । ଲେକ୍‌ଚରରଙ୍କ ଗବେଷଣାମୂଳକ ପ୍ରବନ୍ଧ ସହିତ ନିଜର ନାମ ଯୋଡ଼ି ରଖନ୍ତି—ଲେକ୍‌ଚରରଙ୍କ ଗୌରବ ବୃଦ୍ଧିର ଆଶ୍ୱାସନା ଦେଇ । ସେହି ଅଧ୍ୟାପକ କୁନ୍ଥୁ କୁନ୍ଥୁ ହେଲେ ତା ବିରୁଦ୍ଧରେ ଉପରିସ୍ଥଙ୍କୁ ରିପୋର୍ଟ କରନ୍ତି; ଏଇ

ରିପୋର୍ଟ ପଦୋନ୍ନତିର ଏକ କଣ୍ଟକ ହୋଇ ରହେ—ହୁଏତ ତାର ବଦଳ ହୁଏ ।

କହିଲି—ଜ୍ଞାନ ବୃଦ୍ଧି ଧ୍ୟାନ ଦେବା ଉଚିତ, ଯାହାର ଏତେ କ୍ଷମତା ବା ଅର୍ଥଲିପ୍ସା ଅଛି, ସେ ଅଧ୍ୟାପକ ହେବାକୁ ଆସେ କାହିଁକି ? ସେ ହାକିମ ବା ଭାନ୍‌ଚସ୍ତି ନ ହୁଏ କାହିଁକି ? ନିଜେ ନ ଲେଖି ପାରିଲେ ନାହିଁ, ଅନ୍ୟର ଲେଖାକୁ ନିଜର ନାମରେ ଚଳାଇ ବଡ଼େଇ କରିବା ଏକ ଘାତତା ।

ଗବେଷକମାନେ ବିଦେଶକୁ ଯାଇ ଜ୍ଞାନ ଲାଭ କରିବାରେ ଅଫିସର-ମାନେ କିପରି ବାଧା ସୃଷ୍ଟି କରନ୍ତି, ପିଏଚ୍. ଡି କରି ଫେରିଲା ପରେ ସ୍ୱଦେଶରେ କିପରି ଗବେଷଣାର ସୁଯୋଗ ମିଳେ ନାହିଁ, ସ୍କୁଲର ଶିକ୍ଷକ ପରି ସପ୍ତାହକେ କିପରି ୨୨।୨୩ ଘଣ୍ଟା ପଢ଼େଇବାକୁ ପଡ଼େ; ଉପର ସ୍ତରର ବ୍ୟକ୍ତି ତଳ ସ୍ତରକୁ କିପରି ଚାପି ଦିଅନ୍ତି । ସେଥିଲାଗି ଭାରତକୁ ଫେରି ଯିବାକୁ କିପରି ଇଚ୍ଛା ହେଉନାହିଁ, ଇତ୍ୟାଦି ନାନା କଥା ମଧ୍ୟରେ ସୁଭାଷ ବିଦାୟ ନେଇ ଗଲେ ।

୧।୮।୭୭;

ପ୍ର ଭଗ୍ରଶ ବେଟେନ ନର୍ଥକାରୋଲିନା ସମ୍ପର୍କରେ ସଜ୍‌ଠାରୁ ଯତ୍‌ସାମାନ୍ୟ ବିବରଣୀ ସଂଗ୍ରହ କଲି । ନର୍ଥକାରୋଲିନା ଆକାରରେ ଓଡ଼ିଶାଠାରୁ ଛୋଟ; ଏହା ଯୁକ୍ତରାଷ୍ଟ୍ରର ଉଦ୍ୟାନ ରାଜ୍ୟ ଭାବରେ ପରିଚିତ । ଦକ୍ଷିଣ ରାଜ୍ୟମାନଙ୍କୁ ପ୍ରଗତିଶୀଳ ନେତୃତ୍ୱ ଦେଇଥିବାରୁ ଏହାକୁ 'ଡିକ୍ସି-ଲ୍ୟାଣ୍ଡ' ମଧ୍ୟ କୁହା ଯାଇଥାଏ । ପ୍ରାକୃତିକ ଦୃଶ୍ୟରେ ବୈଶିଷ୍ଟ୍ୟ ଅଛି । ଆଟଲାଣ୍ଟିକ ସମୁଦ୍ର ତୀର; ପିଏଡ୍‌ମଣ୍ଟ, ଆପ୍‌ଲେଚିଆନ୍ ପର୍ବତମାଳା—ଏହି ତିନୋଟି ପ୍ରାକୃତିକ ବିଭାଗରେ ନର୍ଥକାରୋଲିନାକୁ ବିଭକ୍ତ କରା-ଯାଇପାରେ । ସ୍ମୋକି ପର୍ବତମାଳା ଓ ସମୁଦ୍ର ତୀର ଏହାର ଶ୍ରେଷ୍ଠ ଆକର୍ଷଣ । ଏହି ରାଜ୍ୟର ଲମ୍ବ ୫୦୦ ମାଇଲ, ଓସାର ୧୮୭ ମାଇଲ । ଏହି ରାଜ୍ୟରେ କେପ୍ ଫିଅର୍, ନ୍ୟୁଜ୍, ପାମ୍ଲିକୋ, ରୋନାକ୍ ପ୍ରଭୃତି, ନଦୀ ପ୍ରବାହିତ । ହ୍ରଦମାନଙ୍କ ମଧ୍ୟରେ ମଟାମସ୍କିଟ୍ ପ୍ରଧାନ । ହ୍ରଦ, ଦ୍ୱୀପ, ସମୁଦ୍ର,

ପର୍ବତ, ଦୃଶ୍ୟ ବହୁ ଯାତ୍ରୀଙ୍କୁ ଆକର୍ଷଣ କରି ଆଣିଥାଏ—ତେଣୁ ଏହାର 'ଅବସର ବନୋଦନ' ରାଜ୍ୟ ନାମରେ ଏହା ବିଖ୍ୟାତ ।

ପ୍ରୋଫେସର ଏଲିଶା ମିଚେଲଙ୍କ ନାମରେ ଏହି ରାଜ୍ୟର ସର୍ବୋଚ୍ଚ ଶୃଙ୍ଗ ମାଉଣ୍ଟ ମିଚେଲ୍ (୬୬. ୪ଫୁଟ) ନାମିତ । ତାଙ୍କ ସମାଧି ମଧ୍ୟ ଏହି ଶୃଙ୍ଗରେ ସଂରକ୍ଷିତ । ଅଧ୍ୟାପକ ମହାଶୟ ପ୍ରଥମେ ଏହି ପର୍ବତର ଉଚ୍ଚତା ମାପିଥିଲେ । ଦ୍ୱିତୀୟ ଥର ମାପିବା ଲାଗି ଗିରି ଆରୋହଣ କରିବା ସମୟରେ ତାଙ୍କ ପଦ ସ୍ଖଳିତ ହେଲା । ସେ ପ୍ରାଣ ହରାଇଲେ ।

ପାଇନ ଏହି ରାଜ୍ୟର ଜାତୀୟ ବୃକ୍ଷ, 'କାର୍ଡିନେଲ' ଜାତୀୟ ପକ୍ଷୀ, 'ଡଗଉଡ' ଜାତୀୟ ପୁଷ୍ପ । ଏହି ରାଜ୍ୟର ପତାକା ତିନୋଟି ରଙ୍ଗରେ ରଞ୍ଜିତ—ଲୋହିତ, ନୀଳ, ଶ୍ୱେତ; ନୀଳାଂଶ ଉପରେ ଗୋଟିଏ ନକ୍ଷତ୍ର—ତାର ଏକ ପାଖରେ 'ଏନ' ଅନ୍ୟ ପାଖରେ 'ସି' । ଏହାର ସିଲ୍ ଉପରେ ପ୍ରାଚୁର୍ଯ୍ୟର ପ୍ରତୀକାତ୍ମକ ଛବି—ଦୁଇଟି ନାରୀଙ୍କ ମଧ୍ୟରୁ ଜଣକର ଦକ୍ଷିଣ ହସ୍ତରେ ସଂବିଧାନ, ବାମହସ୍ତରେ ଜାତୀୟ ପତାକା, ଅନ୍ୟ ଜଣକର ଦକ୍ଷିଣ ହସ୍ତରେ ଜାତୀୟ ପୁଷ୍ପ । ବାମ ହସ୍ତରେ ଏହି ରାଜ୍ୟରେ ଉତ୍ପନ୍ନ ନାନାବିଧ ଫଳ—ଏହି ସିଲ ଉପରେ Esse quam videri ଖୋଦିତ—ତା ଅର୍ଥ—'To be rather than to seem' । ଏହି ରାଜ୍ୟର ଜାତୀୟ ସଙ୍ଗୀତରୁ ଦୁଇଟି ଧାଡ଼ି ମାତ୍ର ଉଦ୍ଧାର କରୁଛି—

'Where the weak grow strong
& the stlong grow great
Here's to 'down home' the old n rth state.

ରାଜ୍ଜ ମୋଟରେ ଗାଡ଼ିରେ ଯେଉଁ ପ୍ରଥମେ ରାଜ୍ୟର ବ୍ୟବସ୍ଥା ସଭା ଗୃହରେ ପହଞ୍ଚିଲି । ଏହା କେନ୍ଦ୍ର ସିନେଟ୍ ବୃହ ଗୁମ୍ଫରେ ନିର୍ମିତ; ଲାଲ୍ ଗାଲିଚ୍ଛ ଉପରେ ଚୌକିସବୁ ଅଣା ଯାଇଛି । ଏଥିରେ ୨୫୦ଜଣ ସଭ୍ୟ ବସିବାର ବ୍ୟବସ୍ଥା ଅଛି—ତା ଛଡ଼ା ସାମାଜିକ, ଟେଲିଭିଜନ୍

ଫଟୋ ଉଠାଳି, ରେଡ଼ିଓ ପ୍ରତିନିଧିଙ୍କ ବସିବା ଲାଗି ସ୍ଥାନ ନିର୍ଦ୍ଦିଷ୍ଟ ରହିଛି ।

ସିନେଟ୍ ଓ ହାଉସ୍ ଅଫ୍ ରିପ୍ରେଜେଣ୍ଟେଟିଭ୍ସ ଗୃହ ସହିତ ଗୋଟିଏ ଗ୍ରେଟ ପ୍ରଦର୍ଶନୀ ମଣ୍ଡପ ସଂଯୁକ୍ତ—ସେଥିରେ ଲେଡ଼ିଚ ଘରଣିଙ୍କ ଇଗଲ୍ ନୃତ୍ୟ ରାଜ୍ୟର ସମୃଦ୍ଧ, ଦ୍ୱୀପ, ପର୍ବତ, ପ୍ରପାତ ପ୍ରଭୃତିର ଛବି ପ୍ରଦର୍ଶିତ । ପ୍ରାଙ୍ଗଣରେ ଜଳମୟ 'ପୁଲ୍'ରେ ଫୁଆରା ବୁଲୁଛି—ଫୁଆରାର ଚାରି ପାଖରେ ପ୍ଲାଷ୍ଟିକ୍ ଗୁଳ୍ମଲତାର ଉଦ୍ୟାନ, ସୌଧ ଛାତ ଉପରେ ତୃଣ-ଭୂମି ଓ ଉଦ୍ୟାନ, ବ୍ୟବସ୍ଥାପକର ପାଠାଗାର, ରେଷ୍ଟୁରାଣ୍ଟ ଦେଖିବା ପରେ ଆମେ ମ୍ୟୁଜିଅମ୍‌ର ପ୍ରାକୃତିକ ବିଜ୍ଞାନ ବିଭାଗକୁ ଗଲୁ—କେତୋଟି ଦୃଶ୍ୟ ମନେ ପଡ଼େ—

ଚତୁର୍ଦ୍ଦିଗ ତୁଷାରାଚ୍ଛନ୍ନ, ପତ୍ର ପୁଷ୍ପହୀନ ବୃକ୍ଷରେ ବସିଛି ଗୋଟାଏ ପେଚକ—ନିର୍ଜନତାର ପ୍ରତୀକ ଶୋଚନୀୟ କାରୁଣ୍ୟ ପରି ।

ଗୋଟିଏ ଶୋଳ ବୃକ୍ଷ, ବହୁକୋଟରଯୁକ୍ତ—ଅଗଣିତ ମୂଷିକଙ୍କର ବାସସ୍ଥଳ । ସେମାନେ ନିରାପଦ, ନିଶ୍ଚିନ୍ତ ଜୀବନ ଯାପନ କରୁଛନ୍ତି ଏଠି । ଚପଳ ଚକ୍ଷୁରେ କୌତୁକ ଓ ଦୁଷ୍ଟାମି ପୂରି ରହିଛି ।

ଏହି ରାଜ୍ୟର ସର୍ବ ବୃହତ୍ ସର୍ପ ରାଟଲ୍—ସେ ଗୋଟିଏ ମୂଷିକକୁ ଗଳାଧଃକରଣ କରୁଛି ।

ଅନ୍ୟ ଆକର୍ଷଣୀୟ ବସ୍ତୁ ମଧ୍ୟରେ ତିମିର କଙ୍କାଳ, ଅତି ବୃହତ୍ କଚ୍ଛପର ଖୋଳ, ଆଳୀଠାରୁ ବୃହତ୍ତର ଶାମୁକା, କୁମ୍ଭୀର ଓ ସାର୍କର ଫସିଲ୍ ଦାନ୍ତ, ଫସିଲ ବୃକ୍ଷମୂଳ,ଅଣ୍ଡାକାର ହୀରକ, ବହୁ ଧାତୁ ମିଶ୍ରିତ, ପ୍ରସ୍ତର, ବହୁବିଧ ସାମୁଦ୍ରିକ ଉଦ୍ଭିଦ, କୀଟ ପତଙ୍ଗ ଓ ପ୍ରଜାପତି ଏଠି ପ୍ରଦର୍ଶିତ ହୋଇଅଛି ।

ଛବି ବିଭାଗ ଦେଖିବାକୁ ଗଲି ନାହିଁ; ଅଧାଦେଖା ଅପେକ୍ଷା ଅଦେଖା ଭଲ । ବହୁ ରସିକ ଦର୍ଶକ ଏଠିକି ଆସୁଛନ୍ତି କଳାକୁ ତାର

ପ୍ରାପ୍ୟ ଦେଇଯାଉଛନ୍ତି, କଳାକାରକୁ ହୃଦୟର ଅର୍ଘ୍ୟ ଅର୍ପଣ କରୁଛନ୍ତି । ମୋର ଦେଖା ଗୋଟିଏ ମୁହୂର୍ତ୍ତର ଦେଖା—ଏକ ଅବହେଳା—ନ ଛୁଁଇନା । କଳାର ଏ ଲଞ୍ଛନାକୁ ମୁଁ ଆତ୍ମଲଞ୍ଛନା ମନେ କରେ; କଳା-ଠାରୁ କଳାକାର ଦୂରତା ବା କେତେ ?

## ରାଲେ (୨. ୮. ୭୬)

'ମୀନୁ, ଏତେ ଗ୍ରେଟ୍ କ୍ଲାଉସ୍ ଟିଏ କାହିଁକି ପିନ୍ଧିଛୁ ? '

'ଆମେରିକା ଝିଅଙ୍କ ସଙ୍ଗେ ତ ମିଶିବାକୁ ହେବ !'

'ମିଶିବା ଲାଗି ଅଜ କଷ୍ଟ କରିବୁ ନା, ଏଣିକ ?'

'ସ୍ୱିମିଂ ସୁଟ୍ ପିନ୍ଧି ପୁଲ୍‌କୁ ପହଁରିବାକୁ ଯାଉଛି !'

'ଏବେ ତ ମଫସଲରୁ ଆସିଚୁ, ଲଜ ମାଡୁନାହିଁ ?'

'ଯେ ଦେଶେ ଯାଇ, ସେ ଫଳ ଖାଇ, 'ପୁଲ୍'ରେ ତ ସମସ୍ତେ ମାଇପୀ, ଲଜ କାହାକୁ ?'

'ଭ୍ରମଣରେ ଗଲେ ପୁରୁଷ ସ୍ତ୍ରୀ ତ ଏକାଠି ପହଁରନ୍ତି । ତୁ କଣ କରିବୁ ?'

'ପହଁରିବି !'

'ବୋଇଲ—'ଝଗପ ତୁ ହେଲୁରେ······ଖେଳାଳେଇ······!'

'ଜୋଇଁ, ଗୀତ ବୋଲ ନାହିଁ, ମୁଁ ଝଗପ ହୋଇନାହିଁ !'

'ସବୁ ଖଞ୍ଜନାକ୍ଷି ଝଗପ ନୁହନ୍ତି, ଜାଣେ '

'ପହଁରିଲ ବେଳେ କେହି କଣ କାହାକୁ ଏଠି ଚାହାନ୍ତି ? ହସିବା, ଫଟୋ ଉଠାଇ ନେବା, କାନ୍ଥରେ ଲେଖିବା, ନିନ୍ଦା ଗାଇ ବୁଲିବା ତ ଦୂରର କଥା !'

'ଅଚ୍ଛା ଆମେରିକାନ୍ ହେବାକୁ ଆଉ କଣ କରୁଛୁ ?'

'ଲିପ୍‌ଷ୍ଟିକ୍ ଲଗାଉଛି !'

'ଭାରତରେ ଏହା ସାଧାରଣ ହୋଇ ଗଲଣି, ତୋ ପକ୍ଷେ ବମ୍ବାଧଣୀର ତ ଆଦୌ ପ୍ରୟୋଜନ ନାହିଁ ।'

'ହେୟାର୍ ଡ୍ରେସର ପାଖକୁ ଯାଇ କେଶ ସଜାଇବି । ହୋଜ୍ ପିନ୍ଧିବି, ପ୍ୟାଣ୍ଟି ସ୍ ପିନ୍ଧିବି ।'

'ତା ମାନେ—Polished out-post of civilization ହେବୁ ।'

'କଣ କହୁଲ ?'

'ମୁହଁକୁ ଚାହିଁ ଦେଲେ ଘର ସଭ୍ୟ, ଘର ଶିକ୍ଷିତା ଜଣାପିବ—ହୁଏତ ଗଡ଼ଆଘର ଫାଙ୍କା ! ଆଉ ଏ କାଚ ? ସିନ୍ଦୂର ? କାନର ଦୁଲ୍ ?'

'କାଚ, ସିନ୍ଦୂର ଭାରତୀୟ ସ୍ତ୍ରୀର ଭୂଷଣ, ଏତକ ସେମିତି ରହିବ—ଦୁଲ୍ ନ ହେଲେ ବି ସେହିପରି କିଛି ଏଠା ସ୍ତ୍ରୀ ଲୋକେ ପିନ୍ଧନ୍ତି; ମୁଁ ପିନ୍ଧିବି ।'

'ଏମିତି ବେଶ ବଦଳାଇ କୁଆ ମୟୂର ହୋଇ ନ ପାରେ । ଏବେ ତ ଚୂଳି ମୁଣ୍ଡକୁ ଯୋଗ୍ୟ, ପାଠ ବୌଦ୍ଧ ତ ଦଶମ ଶ୍ରେଣୀ ଯାଏ ।'

'ଆମେରିକା ଆସିଲା ପରେ କିଛି କିଛି ପଢୁଛି । ଜଣେ ମଦର୍ ଚେଷ୍ଟା କରନ୍ତି, ସପ୍ତାହକେ ଦୁଇଥର—ମଙ୍ଗଳବାର, ଶନିବାର । ସ୍କୁଲ ସେଇ ଚର୍ଚ୍ଚରେ । ପାଠପଢ଼େଇବା ଗୋଟିଏ ଧର୍ମକାର୍ଯ୍ୟରେ ଗଣା । ଏ ଦେଶରେ ତ କିଛି ମାଗଣା ନୁହେଁ, ସେଥିଲାଗି ମାସିକ ୫୦ ସେଣ୍ଟ ଦରମା ଦେବାକୁ ହୁଏ । ବେବି ସିଟର୍‌କୁ ୨୫ ସେଣ୍ଟ ଦେବାକୁ ପଡ଼େ । ଏତକ ଦେଲେ ଅନ୍ୟହ ଘଣ୍ଟାଏ କେହି ପଢ଼ାଇବ ନାହିଁ ବା ପିଲା ସମ୍ଭାଳି ରଖିବ ନାହିଁ ।'

'କଣ ପଢ଼ିଲୁଣି ?'

'ଏଠିକି ଆସିଲା ପରେ ତ କାହାର କଥା କିଛି ବୁଝି ପାରୁ ନ ଥିଲି । ଏବେ 'ଏସ୍', 'ନୋ' କହି କାମ ଚଳାଇ ଦେଉଛି ।'

'ଏଠିକି ଆସି କେତେକ ଶିଖନ୍ତି ମଦପିଆ, ବଲ୍ ନାଚ । କିନ୍ତୁ ଆମେରିକାନ୍‌ଙ୍କଠାରୁ ଆମେ ଅନେକ କିଛି ଶିଖିବାର ଅଛି—ବିଦେଶୀଙ୍କୁ ସାହାଯ୍ୟ କରିବା ମନୋଭାବ, କଠୋର କର୍ତ୍ତବ୍ୟନିଷ୍ଠା, ଶୃଙ୍ଖଳାଜ୍ଞାନ, କିନ୍ତୁ ଭାରତ ବା ଆମେରିକାପେରିକା ମଧ୍ୟରେ ଯେଉଁପରି ଗୋଟାଏ ଅହଙ୍କାର; ତଳ କର୍ମଚାରୀଙ୍କୁ ସେ ମାସଙ୍କରେ ପକାଏ ନାହିଁ । ଦେଶର ପ୍ରକୃତ ଅବସ୍ଥା ବୁଝି ପାରେ ନାହିଁ; ଦୀର୍ଘ କାଳ ଏ ବୈଦେଶିକ ସ୍ୱପ୍ନର ରଙ୍ଗୀନ୍ ନିଶା ଚାଲୁ ଥାଏ—

ତୁମେ ଡ୍ରେସ୍ ବଦଳାଇବା ଲାଗି ଏବେ ଚେଷ୍ଟା ନ କରି କିଛି କିଛି ଶିଖ ।'

'ଅରେ ଭ୍ରମଣା
ଡେଇଁ ଡେଇଁ କର ସେଇ ଅଗଣା ।'

ପରେ ତ ଦିନେ ଓଡ଼ିଶା ଫେରିବାକୁ ହେବ । ଏ ବେଶ ବଦଳା ସାମୟିକ । ଝିଅଙ୍କ ସଙ୍ଗେ ମିଶି ନ ପାରିଲେ ଶିଖିବ କେମିତି ।'

ମଙ୍ଗଳା ଘାଟ ନଈକୂଳ—ସମଗଡ଼ି ପାଟ, ନଡ଼ିଆବାଡ଼, ଆମ୍ବ-ତୋଟା, କଅଁଳ ଗୋବର, ଦଳୁଆ ପୋଖରୀ—ଅନ୍ଧାରୁଆ, ସନ୍ତସନ୍ତିଆ ଶାସନ ଦାମୋଦର ପୁରର ଚେହେରା ଆଖି ଆଗରେ ନାଚିଗଲା ମୋର—ବର୍ଷା ଆଉ ବନ୍ୟାରେ ଦ୍ୱୀପ ପରି ଦିଶେ ପୁରା ସହରଟା । ସେଇ ଗାଁର ଲାଜକୁଳୀ ଝିଅ ମୀନୁ । ସେ ହୋଇଛି ଆଧୁନିକା । ଓଡ଼ିଶୀ ଭାବ, ଓଡ଼ିଆ ଗନ୍ଧ ଗୁଡ଼ ଗୁଡ଼ ଆସୁଛି । ଆକଟ କରିବାକୁ ଶାଶୁ ନାହାଁନ୍ତି; ହିଂସା କରିବାକୁ ଜାଆ ବା ଖତ କହିବାକୁ ନଣନ୍ଦ ନାହାଁନ୍ତି । ଗୋଟାଏ ବନ୍ଧା ଘରରୁ ଫିଟି ଆସିଛି ଏଇ ମୁକୁଳା ସଂସାରକୁ । ଏବେ ସ୍ୱାଧୀନତା କିପରି ସେ ଉପଭୋଗ କରିବ, ତା ପକ୍ଷରେ ବି ଅସ୍ପଷ୍ଟ । ଏବେ ସମୟ କିପରି କଟିବ ? ସିନେମା, ଟେଲିଭିଜନ୍ ଦେଖିବ, କାହା ସଙ୍ଗେ ଭାବ

ଜମେଇବ ? କିନ୍ତୁ ଛୁଞା କାହା ସଙ୍ଗେ ମିଶି ପାରୁନ୍ତି ସେ ? ନିଜ'ନଟା ବଡ଼ ଅସହ୍ୟ ହୋଇଛି ତା ପକ୍ଷରେ । ରାଜୁ ପଢ଼ାରେ ବ୍ୟସ୍ତ, ଝିଅ କାମ୍ପି ହୋଇଛି ତାର ଖେଳଣା । ମିନୁ ବେଳେ ବେଳେ ଭାବୁଛି—ହେବ ବେବିସିଟର୍, ଅନ୍ୟର ପିଲାଙ୍କୁ ଖେଳାଇ ରଖିପାରିଲେ ଅବଶ୍ୟ କିଛି କିଛି ଆୟ ହେବ; କାମ୍ପି ବି ଚଞ୍ଚଳ ଇଂରେଜୀ ଶିଖିଯିବ । ରାଜୁ ଓ ମିନୁ ଭାରତକୁ ଫେରିଲା ବେଳକୁ ସଙ୍ଗରେ ନେଇ ଯିବେ କିଛି ପୁଞ୍ଜି—ଘରଦ୍ୱାର ତୋଳିବେ—ସୁଖସମୃଦ୍ଧିର ସଂସାର ଗଢ଼ିବେ—ଜଣେ ଉଚ୍ଚ ଅଫିସରଙ୍କର ସୌଖୀନ ସଂସାର ।

## ରାଲେ (୩।୮।୬୭)

'ବୁଝିଲ ଜୋଉଁ, ଇଏ ମୋତେ କୁଆଡ଼େ ବୁଲେଇ ନେଉ ନାହାନ୍ତି ।' ଡୋଳାକୁ ଟିକିଏ ଢଳ ଢଳ କରି କହିଲା ମିନା ।

'ବାରବୁଲା ହୋଇଯିବାର ଭୟ ଅଛି ବୋଲି ।'

'ତାଙ୍କର ମିନା ଏଠି ବହୁତ ସାଙ୍ଗ; ମୋର କିଏ ଅଛି ?'

'ତାଙ୍କର ବହୁତ ସାଙ୍ଗ, କେମିତି ଜାଣିଲ ? ସେ ତ ପଢ଼ାରେ ବ୍ୟସ୍ତ !'

'ମଲା, ଝିଅଙ୍କ କଣ୍ଠସ୍ୱର ବାରି ପାରିବ ନାହିଁ ? ମୁଁ ତ ରାଗି ଫୋନ୍ ଥୋଇ ଦିଏ !'

'ଈର୍ଷା ! ଆସେ, ନା ? ସନ୍ଦେହ ?'

'ସ୍ୱାଙ୍କର ବଡ଼ ବଡ଼ ଝିଅଙ୍କ ସଙ୍ଗେ କି କାମ ? ଥିବେ, ଥିବେ, ହଠାତ୍ ଅନ୍ତର୍ଦ୍ଧାନ ହୋଇଯିବେ !'

'କରେ ରାଜୁ, ଏମାନେ କଣ ?'

'କାହିଁ ତା କଥା ଶୁଣୁଛ ମ ? ଯେ ମୋ ସଙ୍ଗେ ପିଏଚ୍. ଡି କରୁଛନ୍ତି, ସେ ଫୋନ୍ କଲେ, ଆମ ଘରକୁ ଆସିଲେ କଣ ହେଲା ? ମୋ

ସ୍ତ୍ରୀକୁ ଦେଖିବା, ଆଳାପ କରିବା ସେମାନଙ୍କ ଇଚ୍ଛା; ସ୍ତ୍ରୀ ଗର୍ବଗର୍ବ ଦେଖି ଏବେ ମୁଁ 'ଆଭଏଡ୍' କରେ !'

'ମୋତେ ସଙ୍ଗରେ ନେଉଥିବେ, ସଙ୍ଗୀ ବା ସଙ୍ଗିନୀ ଦେଖିଲେ ଆଳାପରେ ଏମିତ ମସ୍‌ଗୁଲ୍ ହୋଇଯିବେ ଯେ ମନେ ପଡ଼ିବ ନାହିଁ— ପଛରେ ଜଣେ କେହି ଅଛି ବୋଲି, ହେଲା ପଛେ ମୁଁ ଯୋଇଲି ।

କ୍ୱାର୍ଟର୍ ମାଇଲ୍ ପଛରେ ଥିବ, ଆଗେ ଆଗେ ଉଆଁ ମାରି ଚାଲି ଯିବେ !'

'ରାଜୁ, ଯୋଡ଼ିବଳଦ ଉପରେ ଜୁଆଳି ପଡ଼େ, ସଂସାର କଲେ; ସେ ତ ଅଦ୍ୟାପି ମରାଳଗମନା, ତୁ ହୋଇନୁ ମଟର୍ ବୋଟ୍ । ସେ କିଛି ଆଗେଇ ଚାଲୁ, ତୁ କିଛି ପଛେଇ ଆ । ଦୁହେଁ ସମାନ୍ତର ହୋଇ ଚାଲ; ତା ହେଲେ ସଂସାର ଠିକ ଚାଲିବ ।

ତୁ ତାକୁ ଏର୍ଦ୍ଧକାଳ ଗାଆଁରେ ଛାଡ଼ି ଦେଇ ଆସି ଏଠି ଉଆଁ ମାଇଲୁ । ମନରେ ତାର ସଂଶୟ ହେବା ସ୍ୱାଭାବିକ; ଏବେ ସେ ସଂଶୟ ଦୂର କରିପାରିବୁ ନାଇଁ; ସେ ସ୍ୱଳ୍ପ ଶିକ୍ଷିତା, ତାର ନ୍ୟୂନମନୋଭାବ ଦୂର କରିବା ମଧ୍ୟ ତୋର କର୍ତ୍ତବ୍ୟ ।'

ସେମାନଙ୍କ 'ଦାମ୍ପତ୍ୟଜୀବନର ଗଭୀର ସମସ୍ୟା ଏ । କାହା ଆଗରେ ଏସବୁ କହିବେ ? ପରସ୍ପର ବିରୁଦ୍ଧରେ ଅଭିଯୋଗ କଲେ ସମାଧାନ ତ ହେବ ନାହିଁ, ଦୂରତା ବଢ଼ିଯିବ । ଆକଟ କରି ମୀନା ଆଗରେ ରାଜୁକୁ ବହେ ଶୋଧିଲି । ରାଜୁ ଭାବିବରେ ସବୁ ସହିଲି, ଅପରାଧୀ ପରି; ସଂସାର କରି ସେ ସ୍ଥୂଳ ବୁଦ୍ଧିରେ ଏତିକି ବୁଝିଥିଲା ଯେ 'ପଥର ପଡ଼ିଲେ ସହି;' ସ୍ତ୍ରୀଙ୍କ ସଙ୍ଗେ ବେଶୀ ଜିଦ ଜିଦ କଲେ ସଂସାର ପିତା ହୋଇଯାଏ । ସଂସାର ଏକ ମଧୁଚକ୍ର; ମଧୁ ମିଳେ, ଯଦି ସଂସାରୀ ଦଂଶନ ସହ୍ୟ କରିପାରେ । ଖାଲି ମଧୁ ଯେଉଁମାନେ ଚାଖିଛନ୍ତି, ସେମାନେ 'ଅତି ମଧୁର'କୁ ପିତା ବୋଲି ବାନ୍ତି କରି ପକାଇଛନ୍ତି ।

ଆମେ ସମସ୍ତେ ନର୍ଥକାରୋଲାଇନା ଷ୍ଟେଟ୍ ଇଉନିଭର୍ସିଟି ଦେଖି ଗଲୁ । ଏଥିରେ ୭୨ଟି ବିଭାଗ ମଧ୍ୟରୁ ଟେକ୍‌ସଟାଇଲ୍ ବିଭାଗ ଗୋଟିଏ ।

ଅନ୍ୟରେ କେଉଁଠି ଭୁଲାଉଣା, ବଲଣା ତୋଳା ଗ୍ଳଲୁ ତ, କେଉଁଠି ଲୁଗା, ଟର୍କିସ୍ ଟାଓ୍ୱେଲ, ପାଇଜାମା ଫତା, କାର୍ପେଟ୍, ବହୁଣାରୁଦର ବୁଣା ଗ୍ଳଲୁ ।

ଏହି ବଭାଗରେ ଗୋଟିଏ ସ୍ୱତନ୍ତ୍ର ପାଠାଗାର ରହିଛି । ସେଥିରେ ବସ୍ତ୍ର ବ୍ୟବସାୟ, ଧଡ଼ର ଡିଜାଇନ୍, ଲୁଗା ବା ସୂତା ରଙ୍ଗେଇବା ସଂପର୍କରେ ବହୁ ପୁସ୍ତକ ରହିଛି; ପୃଥିବୀର ବସ୍ତ୍ରବୟନ ସଂପର୍କରେ ନାନା ପତ୍ର ପତ୍ରିକା ଏଠାକୁ ଆସେ । ଅତି ଅଳ୍ପ ଶ୍ରମିକରେ କଳ କପଡ଼ା ଗ୍ଳଲି ପାରିବ, କାର୍ଯ୍ୟକୁ କପରି ଅଟୋମେଟିକ୍ କରାଯାଇ ପାରିବ ତାର ବ୍ୟବସ୍ଥା ହେଉଛି । ରଙ୍ଗ୍ ଏହି ବଭାଗଟି ସହିତ ବଶେଷ ଭାବେ ସମ୍ପୃକ୍ତ— ଲୁଗା ରଙ୍ଗେଇବାରେ ସେ ବଶେଷଜ୍ଞ ।

## ଡିଉକ୍ ବଶ୍ୱବିଦ୍ୟାଳୟ

ଯୁକ୍ତରାଷ୍ଟ୍ରର ବହୁ ମହତ୍ତ୍ୱ ଅନୁଷ୍ଠାନ ପରି ଡିଉକ୍ ବଶ୍ୱବିଦ୍ୟାଳୟ ମଧ୍ୟ ଜଣେ ବ୍ୟକ୍ତିର କୀର୍ତ୍ତି—ତାଙ୍କର ନାମ ଜେମ୍ସ୍ ବି. ଡିଉକ୍; ସେ ଆମେରିକାନ ଟୋବାକୋ କମ୍ପାନୀର ପ୍ରତିଷ୍ଠାତା । 'ଧନ ଅର୍ଜନେ ଧର୍ମକଣ୍ଠ' ତାଙ୍କ ଜୀବନର ଆଦର୍ଶ ଥିଲା । ସେ ଏହି ବଶ୍ୱବିଦ୍ୟାଳୟର ନିର୍ମାଣ ଲାଗି ଗ୍ଳଳିଶ ନିୟୁତ ଡଲାର୍ ଦାନ କରିଥିଲେ । ୧୯୨୪ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ଟ୍ରିନିଟି କଲେଜ ଡିଉକ ବଶ୍ୱବିଦ୍ୟାଳୟରେ ରୂପାନ୍ତରିତ ହୋଇଥିଲା ।

ସାତହଜାର ଏକରର ପାର୍କ ଆଉ ଅରଣ୍ୟ; ତା ମଧ୍ୟରେ ବରାଟ ଦୁର୍ଗ ପରି ଛିଡ଼ା ହୋଇଛି ସୌଧ—ଗୋଥିକ୍ ଶୈଳୀରେ ଗୋଟିଏ ପ୍ରକାର ପ୍ରସ୍ତରରେ ନିର୍ମିତ । ଏହି ବଶ୍ୱବିଦ୍ୟାଳୟ କେବେ ଅଭାବ ଅନାଟନର ସମ୍ମୁଖୀନ ହୋଇନାହିଁ । ସବୁ ସୌଧ ଯେପରିକ ଏକାବେଳେକେ ଉଠିଛି, ସବୁ ଅନୁଷ୍ଠାନ ଏକାବେଳେକେ ବକଶିତ ହୋଇଅଛି ! ସୌଧର ଏକ ରୂପତା ମଧ୍ୟରେ ଏପରି ଏକ ବପୁଳତା ଓ ଗୌରବ, ଏପରି ଏକ ଆନ୍ତରିକତା ଓ ନିଷ୍ଠା ପରିଲକ୍ଷିତ ହୁଏ, ଯାହା ଅତ୍ୟନ୍ତ ଦୁର୍ଲଭ ।

ସହରର ୩୦ ମାଇଲ ଦୂରରେ ଏହା ଅବସ୍ଥିତ; ଏହାର ଛାତ୍ର ଛାତ୍ରୀ ସଂଖ୍ୟା 'ଛ' ହଜାର। ବିଶ୍ୱବିଦ୍ୟାଳୟର ପ୍ରାଙ୍ଗଣରେ ଗୋଟିଏ ପ୍ରାଚୀନ ଚ୍ୟାପେଲ୍ ଅଛି। ଏହାର ଟାୱାର୍ ୨୧୦ ଫୁଟ୍ ଉଚ୍ଚ । ଏହା ମଧ୍ୟରେ ପଚିଶ ଗୋଟି ଘଣ୍ଟା ଝୁଲୁଛି। ବୃହତ୍ତମ ଘଣ୍ଟାର ଓଜନ ୧୧୨୦୦ ପାଉଣ୍ଡ । କ୍ଷୁଦ୍ରତମର ଓଜନ ଦଶ ପାଉଣ୍ଡ । ଚ୍ୟାପେଲ୍‌ଟି ନାନା କାରୁ-କାର୍ଯ୍ୟରେ ପରିପୂର୍ଣ୍ଣ ।

ବିଶ୍ୱବିଦ୍ୟାଳୟର ଉଦ୍ୟାନଟି ସମତଳ ନୁହେ, ବହୁ ସ୍ତରରେ ନିର୍ମିତ; କୃତ୍ରିମକୁ ଏକ ପ୍ରାକୃତିକ ଗୌରବ ଦେବାର ପ୍ରୟାସ ହୋଇଛି; ଚତୁର୍ଦ୍ଦିଗରେ ଘନ ଘଞ୍ଚ ଅରଣ୍ୟ ମଧ୍ୟରେ ଏହି ଉଦ୍ୟାନ ଶାନ୍ତିର ଏକ କମନୀୟ ପୀଢ଼—ସବୁଜ ଜୁଆରର ମର୍ମର ନିଶା ପ୍ରାଣକୁ ଘାରେ—ବୋଧ-ହୁଏ ଯୁଗ ଯୁଗର ଏକ ଆରଣ୍ୟକ, ଅଦ୍ୟାପି ସଂଗ୍ରାମ କରୁଛି ମୁଁ ସଭ୍ୟ ହେବା ପାଇଁ—କିନ୍ତୁ ଏକାନ୍ତ ପ୍ରିୟ ଅରଣ୍ୟ ଆବାସକୁ ଭୁଲିପାରି ନାହିଁ ।

ତାର ଚନ୍ଦ୍ରାଭିର ସ୍ୱପ୍ନ, ଝିଆଲ୍ଲି ମାୟାପ୍ରେମୀ ଆଦିବାସୀ ମୁଁ; 'ପୁଲ୍'ରେ ନାନା ରଙ୍ଗର କଇଁଫୁଲ, ଲିଲ୍ ମତ୍ସ୍ୟ, ଆଉ କ ଛୋଟ ଛୋଟ ଫୁଲର ମୁରୁଜ ଆଙ୍କିଛି କିଏ ଗାଢ଼ ସବୁଜ ଗାଲିଚାର ଧାରେ ଧାରେ, ପାର୍କକୁ ଦେଖିଲେ ମନେ ହୁଏ।

ଡ୍ରାଇଭର ସଜୁର ଜଣେ ସାଙ୍ଗ, ୬୦ ମାଇଲ ଗତିରେ ଗାଡ଼ି ଚଲାଉ ଥାଏ । ଜଙ୍ଗଲରେ ଆମେ ବାଟ ଭୁଲିଲୁ; ଏ ରାସ୍ତାରେ ନେବ କି ସେ ରାସ୍ତାରେ ନେବ, ବିଚାରି ବିଚାରି ଡ୍ରାଇଭର୍ ହଠାତ୍ ଗାଡ଼ି ବୁଲାଇଲା, ସମ୍ଭାଳି ନ ପାରି ବ୍ରେକ୍ ଦେଲା—ଗାଡ଼ି ଉପରେ ଗୋଟାଏ ବ୍ୟସ୍ତ ଝଡ଼ର ଚିତ୍କାର କଲା—ଅଃ କେମିତି ଚଲାଉଛ !

ଆମେ ଗୋଟାଏ ଜବର ଧକ୍କା ଖାଇଲୁ—ଆକ୍ସିଡେଣ୍ଟ କାହାକୁ କହନ୍ତି, କେମିତି ହୁଏ, ତାର ଗୋଟିଏ ନମୁନା ।

## ସାଉଣ୍ଡ୍ ଅଫ୍ ମିଉଜିକ୍

ଆଜ କେବଳ ଦୁଲି, ଧାଁ ଧପଡ଼, ଦେଖି ପାରି ନାହିଁ, ଯାହା ଦେଖିବା ଲାଗି ଯାଇଥିଲି; ଦେଖୁଛି, ଯାହା ଉପରେ ଆଖି ପଡୁଛି; ଲକ୍ଷ୍ୟ

ସିଦ୍ଧ ହୋଇନାହିଁ, ସବୁ ସ୍ଥାନରେ ହେବ ବୋଲି ଆଶା କରିବା ବୃଥା । ଉଦ୍ଦେଶ୍ୟ ସଫଳ ହେଲେ କ୍ଲାନ୍ତି ଆପେ ଆପେ ଦୂର ହୋଇଯାଏ । କିନ୍ତୁ ଆଜିର ବୁଲି ଆଣିଛି କେବଳ ଅବସାଦ । ବୁଲିବା ପାଇଁ ଆଜିର ବୁଲି, ଯେପରି କଳା ଲଗି କଳା; ଫୁଲ ପଥ, ଗ୍ଲାଇ ଅଲୁଅ, ପ୍ରଜାପତି ପତଙ୍ଗ —ପ୍ରକୃତିର ଶ୍ରୀ ଓ ସ୍ୱର, ମନରେ ମାଧୁରୀ ମାଖି ଦେଲି । ମୀନା ପଚାରିଲି ଜୋଇଁ, 'ସାଉଣ୍ଡ ଅଫ ମ୍ୟୁଜିକ୍' ଦେଖିଛ ?

'ମ୍ୟୁଜିକ୍ ତ ଶୁଣିବା କଥା ।'

ମୀନା କହିଲି—ଏଠି ଏ ଫିଲ୍ମଟି ୧୪ ମାସ ହେଲା ଚାଲିଛି— ତଥାପି ଭିଡ଼ ।

ରାଜୁ ଆଉ ମୁଁ ଗଲୁ । ପରଦା ଉପରେ ପହିଲେ ଦେଖା ଦେଲି —ମେରିଆ, ଚର୍ଚ୍ଚର ସିଷ୍ଟର—ଯୁବତୀ, ପ୍ରେମବତୀ । କିନ୍ତୁ ମନୁଷ୍ୟ ନୁହେଁ, ପ୍ରକୃତି ପ୍ରତି ସେହି ପ୍ରୀତି ପ୍ରସାରିତ; ପର୍ବତର ଗାମ୍ଭୀର୍ଯ୍ୟ ଶ୍ରୀ, ବସନ୍ତର ପୁଷ୍ପିତ ଅରଣ୍ୟ, ଶରତ୍ ନଦୀର ସ୍ୱଚ୍ଛନ୍ଦ ସ୍ରୋତ । ଗିରି ମଧ୍ୟବର୍ତ୍ତୀ ହ୍ରଦର ଦ୍ୱୀପ—ଗୁଳ୍ମଲତାର ପତ୍ରେ ପତ୍ରେ ଚନ୍ଦ୍ରିକାର ମାୟାଜାଲ ମେରିଆକୁ କରିଥାଏ କବି, ତା ମୁଖରୁ ଛୁଟିଥାଏ କବିତାର ସ୍ରୋତ; ପ୍ରୀତି ଯେପରି ସୁନ୍ଦର, ସୌନ୍ଦର୍ଯ୍ୟ ସେହିପରି ହୋଇଥାଏ ପ୍ରୀତିଭରା । ମେରିଆ ପ୍ରକୃତି ସଙ୍ଗୀତ ଗାଇ ଗାଇ ଚର୍ଚ୍ଚ କର୍ତ୍ତବ୍ୟରେ ଅବହେଳା କଲି । ତାର ପ୍ରୀତି ଚର୍ଚ୍ଚର ବୈରାଗ୍ୟବତୀ ଭଗିନୀମାନଙ୍କ ମନରେ ନାନା ବିପରୀତ ଧାରଣା ଜାଗ୍ରତ କରିଥିଲି—କିଏ କହିଲି—ମେରିଆ ଉନ୍ମାଦିନୀ, କିଏ କହିଲି ସେ ସ୍ୱର୍ଗର ଅପ୍ସରା, କିଏ କହିଲି—ପିଶାଚୀ । ଚର୍ଚ୍ଚର ମୁଖ୍ୟା ମାତା ତା ପ୍ରତି ଶାସ୍ତି ବିଧାନ କଲେ—ସେ ମୃତପତ୍ନୀକ ଜଣେ କ୍ୟାପ୍ଟେନ୍‌ଙ୍କ ପିଲାମାନଙ୍କ ଗୃହ ଶିକ୍ଷକା ରୂପେ ନିଯୁକ୍ତା ହେଲି ।

କ୍ୟାପ୍ଟେନ୍‌ଙ୍କର ସାତଗୋଟି ପିଲା—ଦୁଷ୍ଟାମିରେ ଜଣେ ଜଣକୁ ବଳି । ସେମାନଙ୍କ ଉପଦ୍ରବରେ କେଉଁ ଶିକ୍ଷକା ଦୁଇ ଘଣ୍ଟାରୁ ଅଧିକ କାଳ ତାଙ୍କ ଘରେ ରହିପାରୁ ନ ଥାନ୍ତି । ଶୋଇଥିବା ବେଳେ ଶେଯରେ ମଲା ସାପ, ବ୍ଲାଉଜ୍ ଭିତରେ ଜୀଅନ୍ତା ବେଙ୍ଗ ପୂରାଇ ଦିଅନ୍ତି ।

କ୍ୟାପ୍‌ଟେନ୍ ମହାଶୟ ସୈନିକ ଜୀବନର ଶୃଙ୍ଖଳା ଭିତରେ ଜଗତକୁ ଦେଖୁଥିଲେ, ବାଲ୍ୟ ଜୀବନର କୌତୁକ କଳା ତାଙ୍କ ମନରୁ ଲୋପ ପାଇଥିଲା । ସେ ପ୍ରତ୍ୟହ ପୁଅ ଝିଅଙ୍କୁ ଡ୍ରିଲ କରାଉଥିଲେ—ଏହା ଦ୍ୱାରା ସେମାନଙ୍କ ବିଶୃଙ୍ଖଳ ଜୀବନ ଶୃଙ୍ଖଳିତ ହେବ ବୋଲି ତାଙ୍କର ବିଶ୍ୱାସ ଥିଲା—ସ୍ନେହ ବା ସୌନ୍ଦର୍ଯ୍ୟ ରସରେ ଶିଶୁ ଓ କିଶୋର କିଶୋରୀଙ୍କ ପ୍ରାଣକୁ ସିକ୍ତ କରିବାକୁ ସେ ଅକ୍ଷମ ଥିଲେ ।

ମେରିଆ ଆସିବା ମାତ୍ରେ କ୍ୟାପ୍‌ଟେନ୍ ତା ହାତକୁ ହୁଇସିଲ୍ ବଢ଼ାଇ ଦେଲେ—ନିଅ, ଡ୍ରିଲ କରାଅ, ପିଲାଙ୍କୁ ଜବତରେ ରଖ । ଏଇ ରୀତିରେ ପିଲାଙ୍କୁ ଶୃଙ୍ଖଳିତ କରାଯାଏ ? କ୍ୟାପ୍‌ଟେନ୍‌ଙ୍କ ନିରସତା ମେରିଆର ମନରେ ରସ ସୃଷ୍ଟି କଲା—ତହିଁରୁ ଜାତ ହେଲା ପ୍ରେମ ।

ପ୍ରକୃତିର ଶ୍ରୀ, କବିତା, ସଙ୍ଗୀତ, ଅଭିନୟ ପିଲାମାନଙ୍କ ଜୀବନକୁ ଶୃଙ୍ଖଳିତ କଲା—ଶିକ୍ଷା ପ୍ରତି ସେମାନଙ୍କ ମନ ଆକୃଷ୍ଟ ହେଲା । କିନ୍ତୁ ଶିକ୍ଷିକା ମେରିଆର ମନ ହେଲା ଦୁର୍ଦ୍ଦମ ।

କ୍ୟାପ୍‌ଟେନ୍ ଜଣେ ବୟସ୍କା ସ୍ତ୍ରୀ ସହିତ ଏ ମଧ୍ୟରେ ହୃଦୟର ପରଖ ଚଳାଇ ଥିଲେ—କିନ୍ତୁ ମାଆର ସ୍ଥାନ ଅଧିକାର କରିବାକୁ ସେ ହେଲା ଅସମର୍ଥା । ଉଭୟ ନାରୀ ଜୀବନର ସଂଘର୍ଷ ମଧ୍ୟରେ ଲାଞ୍ଛିତା ମେରିଆ କ୍ୟାପ୍‌ଟେନ୍‌ଙ୍କ ଗୃହ ତ୍ୟାଗ କରି ଚର୍ଚ୍ଚକୁ ଚାଲିଗଲା । ସେ ସିଷ୍ଟର ହୋଇ ମନୁଷ୍ୟ ପ୍ରତି ଆକୃଷ୍ଟ ହୋଇଛି—ଏ ଗୋଟିଏ ଅପରାଧ; ମାତା ପଚାରିଲେ—ମେରିଆ, ତୁ କ୍ୟାପ୍‌ଟେନ୍‌କୁ ଭଲ ପାଉଛୁ ?

ମେରିଆ କହିଲା—ଜାଣେନି; ମୋ ମନ ଗୋଳମାଳିଆ ଧରି ଯାଇଛି । ମାତା କହିଲେ—ମନୁଷ୍ୟ ପ୍ରତି ଆକୃଷ୍ଟ ହେବା ତୋ ପରି ଯୁବତୀ ପକ୍ଷରେ ପାପ ନୁହେଁ, ତୁ ଯା, ବିଭା ହ ।

କ୍ୟାପ୍‌ଟେନ୍ ଓ ମେରିଆର ବାହାଘର ହେଲା । ପିଲାମାନେ ସେପରିକି ନିଜ ଜନନୀକୁ ଫେରି ପାଇଲେ, ଏକ ନୂଆ ପରିବେଶ ମଧ୍ୟରେ ।

ଅଭିନୟ ଏତେ ଚିତ୍ତାକର୍ଷକ ହୋଇଥିଲା ଯେ, ତିନି ଘଣ୍ଟା କିପରି କଟିଗଲା ଜାଣି ପାରିଲି ନାହିଁ । ଫେରିଲା ବେଳକୁ ରାତି ଏଗାର ।

## ତେରେକ୍କା ପଥେ

ରାଜୁ ତ ଡ୍ରାଇଭିଂ ଶିଖୁଛି, ଲାଇସେନ୍ସ ପାଇନାହିଁ, ନିଜ ଉପରେ ବିଶ୍ୱାସ ଆସିନାହିଁ । ପୁଣି ପାହାଡ଼ୀ ରାସ୍ତା । ଗ୍ରୀଷ୍ମଋତୁ ଯୋଗୁଁ ଅଗଣିତ ଯାନର ଗଡ୍ଡୁଆଳ—ଭ୍ରମଣକାରୀ ଦଳ ଛୁଟିଛନ୍ତି ।

ରାଜୁ ଦୁଇଜଣ ବନ୍ଧୁଙ୍କୁ ସାଙ୍ଗରେ ନେଲା; ଜଣେ ଜୟଚନ୍ଦ୍ରନ୍, କମ୍ବେର ମିଲ୍ ମାଲିକଙ୍କ ପୁଅ, ତିନି ଚାରିବର୍ଷ ହେଲା ଗାଡ଼ିଚଲା ଶିଖିଛନ୍ତି, ଆଉ ଜଣେ ରାମଚନ୍ଦ୍ରନ୍, ମିଲ୍ ମ୍ୟାନେଜରଙ୍କ ପୁଅ । ଗାଡ଼ି ଚଳେଇ-ବାରେ ଓସ୍ତାଦ୍, ଜଣେ କ୍ଳାନ୍ତ ହେଲେ ଆଉ ଜଣେ ଚଳାଏ । ସକାଳ ପାଞ୍ଚଟାରେ ଆମେ 'ସ୍ୱୋକ' ଯାତ୍ରା କଲୁ ।

ଗାଡ଼ି ଭିତରେ ନାନା କଥା ମଧ୍ୟରେ ମୀନା କହିଲା, ଆମେରି-କାରେ ବହୁତ ଜଙ୍ଗଲ—ଘନଘଞ୍ଚ ଉଚ୍ଚ ଉଚ୍ଚ ବୃକ୍ଷଲତା; ହେଲେ ଭାରତୀୟ ବରଗଛ ଭଳି ଏଠି କିଛି ନାହିଁ; ସେ ମାଡ଼ିଥିବ ତ ମାଡ଼ି ଚାଲିଥିବ—କେତେ ଯୁଗ କେତେ କାଳ ମଧ୍ୟରେ ତାର ବିସ୍ତୃତି ।

'କିନ୍ତୁ ବରଗଛର ଯୁଗ ଏ ନୁହେଁ । ଯେମିତି ରଜା, ଜମିଦାରଙ୍କ ଯୁଗ ଏ ନୁହେଁ । ଭାରତରେ ଆଉ ଜାଗା କାହିଁ ବରଗଛ ମାଡ଼ିବାକୁ ? ଯାହା କହୁଛ, ଠିକ୍, ଏ ଦେଶର ଓକ୍, ସମ୍ମାନିତ ବନସ୍ପତି; କିନ୍ତୁ ବର ପରି ଆଡ଼ପାର୍ଶ୍ୱରେ ବଢ଼ି ପାରେ ନାହିଁ; ଗମ୍ଭୀର ମନ୍ଦିରେ ଗୋଟାଏ ଗୋଟାଏ ଗଛ ବେଳେ ବେଳେ ଅବସ୍ଥା ସମ୍ଭାଳି ନିଏ ! ବର୍ଷାବେଳେ ତା ମୂଳରେ ଲୋକେ ଛିଡ଼ା ହୋଇ ରହିଯାନ୍ତି । ଦେହରେ ଟୋପାଏ ପାଣି ପଡ଼େ ନାହିଁ ।

ସାଗର ସ୍ନାହାନ ଧନ ଯେ ହରବର
ମହତ ରଖିଲା ସେଇ ତରୁବର ।'

ବରଗଛ ଖୁବ୍ ସୁନ୍ଦର । କାଳିଦାସ ରଘୁବଂଶରେ 'ଶ୍ୟାମ' ନାମକ

ବଟର ଅଭିନବ ଶ୍ରୀ ବର୍ଣ୍ଣନା କରନ୍ତି—

'ଇତ୍ଥଂ ପୁରସ୍ତାଦୁପଯାତଃତୋ ଯଃ
ସୋଽୟଂ ବଟଃ ଶ୍ୟାମ ଇତି ପ୍ରତୀତଃ
ରାଶିର୍ମଣୀନାମିବ ଗାରୁଡ଼ାନାମ୍
ସପଦ୍ମରାଗଃ ଫଳିତୋ ବିଭାତି ।

ରାଧାନାଥ ଚିଲିକା କୂଳର ବଟବର୍ଣ୍ଣନାରେ ପ୍ରାୟ ଏହାର ଅନୁବାଦ କରନ୍ତି—

"ମରକତ ପର୍ଣ୍ଣେ ପଦ୍ମରାଗ ଫଳେ
ଯା ବିରାଜେ ଗ୍ରାମ ସୀମନ୍ତ ଉଜ୍ଜ୍ୱଳେ ।"

ଭାରତୀୟ ସଂସ୍କୃତିରେ ଏହି ବୃକ୍ଷ ଆସନ ଜମାଇଛି, ଯୁଗ ଯୁଗର ସ୍ମୃତି ସଙ୍ଗୀତରେ ଝଙ୍କୃତ ।

ପିଲାଦିନର ଦୋଳି, ଡାଳିମାକୁଡ଼ି ଖେଳ ଏଥିରେ, ବୃଦ୍ଧ ପେଚକର ବସତି ଏହାର କୋଟରରେ, ଶତ ଶତ ବାଦୁଡ଼ି ଓହଳିଥାନ୍ତି ଏହାର ଡାଳରେ । ଗୋଟାଏ ଗଛମୂଳେ ଗୋଟାଏ ମେଳଣ ଯାଏ ହୋଇଯାଏ—ତା ଡାଳରେ ବସି ଲୋକେ ଯାହା ଦେଖନ୍ତି । ସେପରି ବିସ୍ତୀର୍ଣ୍ଣ ଗଛ ଏବେ ଆଉ ଭିଷ୍ଟି ପାରିବ ନାହିଁ, ଜନବନ୍ୟାର ତାଡ଼ରେ, ତେବେ ଠାକୁରଠାକୁରାଣୀଙ୍କ ଯୋଗୁଁ କିଛି ହାଣମୁହଁରୁ ବର୍ତ୍ତି ଯାଇପାରେ । ଦିଅଁଙ୍କ ଗଛରେ ଲୋକେ କୁରାଡ଼ି ଲଗାଇବେ ନାହିଁ, ଧର୍ମ ବିଶ୍ୱାସ ଥିବା ପର୍ଯ୍ୟନ୍ତ ।

ମୀନା କହିଲି—ଆମ ବାଡ଼ି ଆଡ଼େ ଗୋଟାଏ ଚଟଗ ବର ଥିଲି, କେତେ ପୁରୁଷର କିଏ ଜାଣେ ? ମୂଳଟା ତାର ଅତି ଅନ୍ଧାରିଆ; ଦିନ ପହରେ ସେଠିକି ଗଲେ ଦେହ ଶୀତାଏ, ଗୁଡ଼ି ଚମକେ । ଇନ୍ଦୁଡ଼ିହାଣ୍ଡି ତା ମୂଳକୁ ଲୋକେ ଫୋପାଡ଼ନ୍ତି । ଇନ୍ଦୁଡ଼ିଶାଳ ହାଣ୍ଡି ଉପରେ ପିତାଶୁଣୀଙ୍କ ଆଖି; ତେଣୁ ଇନ୍ଦୁଡ଼ି ଗାତରେ ନିଆଁ ଜଳେ, କଜଳପାତି ଟିଏ ଥୁଆହୋଇ

ଥାଏ । ଏମିତି ଗଛମୂଳେ ଗୁଣ୍ଡାଏ ଭଙ୍ଗା ଇନ୍ଦ୍ରୁଡ଼ି ହାଣ୍ଡି ଗଦା ହୋଇ ଗଲା । ସେଠି ଇନ୍ଦୁଡ଼ିଶୁଣୀ ଚଣ୍ଡୀର ଆବର୍ଭାବ ହେଲା । କେତେବେଳେ କଅଁଳା ବାଛୁରୀ ରୂପ ସେ ତଆଁ ମାରୁଥାଏ, କେତେବେଳେ ଘୁଷୁରି ରୂପରେ ଘୁଙ୍ଗୁ ଘୁଙ୍ଗୁ ହୋଇ ଦଉଡ଼ୁ ଥାଏ, କେତେବେଳେ କଂକାଳ ରୂପରେ ଗଛକୁ ଚଢ଼ି ଯାଇ ଉଇମାଟି ଝଡ଼ାଏ । ଅନ୍ଧାର ରାତିରେ କେତେ ବାଟୋଇଙ୍କ ଭେଟଣା ହୁଏ । ଯାହା କଲିଜା ପତଳା, ସେ ରକ୍ତବାନ୍ତି କରି ମରେ । ଏଇ ଚଣ୍ଡୀ ଉପଦ୍ରବ ଯୋଗୁଁ ବାପା ସେ ଗଛଟି ହଣାଇ ଦେଲେ । ଚଣ୍ଡୀ କୁଆଡ଼େ ଗଲା କିଏ ଜାଣେ ?

## ଆର୍.ଜେ.ରେନଲଡ଼୍ସ୍ କମ୍ପାନୀ

ଉଇନ୍‌ଷ୍ଟନ୍-ସାଲେମ୍ ନଗରରେ ଗାଡ଼ି ଅଟକିଲା, ଏହା ଗୋଟିଏ ସିଗାରେଟ୍ ସହର, ଯୁକ୍ତରାଷ୍ଟ୍ରରେ ସର୍ବତ୍ର ସୁପରିଚିତ । ସିଗାରେଟ୍ ଖିଆ ତ ଏକ ସାଧାରଣ ଅଭ୍ୟାସରେ ପରିଣତ ହେଲାଣି—କୋଟି କୋଟି ଡଲାର୍ ଉଡ଼ିଯାଉଛି ଧୂଆଁରେ; ଏଠି ସ୍ତ୍ରୀ ପୁରୁଷ ଉଭୟ ସିଗାରେଟ୍‌ଖୋର୍ । ଦେଖିବା ଲାଗି କୌତୂହଳ ହେଲା, ଦେଖେଇବା ଲାଗି ବି କମ୍ପାନୀ ହଙ୍କ ହଙ୍କ—ବିଜ୍ଞାପନ ହେବ, ବିକ୍ରୀ ବଢ଼ିବ ।

ଏ କମ୍ପାନୀ ମିନିଟକେ ଦୁଇ ହଜାର ସିଗାରେଟ୍ ତିଆରି କରେ । ଏହାର ପ୍ରତିଷ୍ଠାତା ଆର୍.ଜେ. ରେନଲ୍ଡ଼ ୧୮୭୫ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଉଇନ୍‌ଷ୍ଟନ୍ ଗ୍ରାମକୁ ଆସିଲେ । ସେତେବେଳେ ଏହାର ଲୋକ ସଂଖ୍ୟା ଆଠଶ ନଅଶରୁ ଅଧିକ ନୁହେ । ଚତୁର୍ଦ୍ଦିଗରେ ଧୂଆଁପତ୍ର ଖେତ, ଗମ୍ଭୀରକୁ ଚାହିଁର ଲାଗିଛୁ । ରେନଲ୍ଡ଼ଙ୍କ ଘୋଡ଼ା ସେଠି ଅଟକିଲା, ଅଟକିଗଲେ । ସେ ସେହି ଗ୍ରାମରେ ଖଣ୍ଡେ ଛୋଟ ଜାଗା କିଣିଲେ, ଘର ତୋଳିଲେ, ସିଗାରେଟ୍ ତିଆରି ଯନ୍ତ୍ରଟିଏ ପକାଇଲେ । ଏଥି ଲାଗି ମୋଟରେ ତାଙ୍କୁ ସାତ ହଜାର ପାଞ୍ଚଶ ଡଲାର ଖର୍ଚ୍ଚ କରିବାକୁ ହୋଇଥିଲା । ଫ୍ୟାକ୍ଟରୀରେ ମୋଟରେ ଦୁଇଜଣ ସ୍ଥାୟୀ କର୍ମୀ ଥିଲେ—ତା ଛଡ଼ା କେତେକ ଦୈନିକ ମଜୁରିଆ ।

ଏହି ଫ୍ୟାକ୍ଟରୀରୁ ପ୍ରଥମେ 'କାମେଲ' ସିଗାରେଟ୍ ବାହାରିଲା; ତାପରେ ଭଇନ୍‌ଷ୍ଟନ୍, ସାଲେମ୍, କାଭେଲିଅର୍। ଏଇସବୁ ସିଗାରେଟ୍ ଏବେ ଯୁକ୍ତରାଷ୍ଟ୍ରର ବଜାର ଦଖଲ୍ କରି ବସିଛି। ଏହି ବିଭିନ୍ନ ପ୍ରକାରର ସିଗାରେଟର ଭକ୍ତ ଏ ଦେଶରେ ଅଛନ୍ତି।

କମ୍ପାନୀ ବଢ଼ି ବଢ଼ି ଚାଲିଛି—ଏବେ ଦୁଇଶ ଫ୍ୟାକ୍ଟରୀ ଗଢ଼ା ହେଲାଣି। ଏହି କମ୍ପାନୀ ଧନକୁ ଆମେରିକା ସରକାରଙ୍କୁ ୨୦ ଲକ୍ଷ ଡଲାର ଅବକାରୀ ଟିକସ ଦିଏ।

ଆମକୁ ବୁଲାଇ ଦେଖାଇବା ଲାଗି ଜଣେ ଲେଡ଼ି ଗାଇଡ ଆସିଲେ—ଧୂଆଁ ପତ୍ରର ଗଦା, ସିଗାରେଟ୍ କାଗଜ, ବିଭିନ୍ନ ପ୍ରକାରର ମସଲା; ସିଗାରେଟ୍ ଗଣି ହୋଇ ଖୋଳ ଭିତରେ ଭର୍ତ୍ତି ହେଉଥିବା, ପୁଣି ବଡ଼ ବଡ଼ ଡବାରେ ପ୍ୟାକ୍ ହେଉଥିବାର ଦେଖାଇଲେ, ଯନ୍ତ୍ରର ଗର୍ଜନ ଓ ଧୂଆଁ ପତ୍ରର କଡ଼ା ଗନ୍ଧ ମଧ୍ୟରେ। ପଳାଇ ଗଲେ ରକ୍ଷା, ଗାଇଡ୍ କିନ୍ତୁ ଛାଡ଼ିବାର ପାତ୍ର ନୁହେ। ସେ ଆମକୁ କମ୍ପାନୀର ସମସ୍ତ ବିଭାଗ ଦେଖାଇଲା—ଆସିଲା ବେଳକୁ ଗୋଟିଏ ଗୋଟିଏ ପ୍ୟାକେଟ୍ ସିଗାରେଟ; ନାସି ଝାଡ଼ିବା ଲାଗି ଛୋଟିଆ ଲେଖାଏ ପିଉଳ ଥାଳିଆ, କମ୍ପାନୀର ସୌଧ ଛପାଥିବା କାର୍ଡଗୁଚ୍ଛ ଓ ଗୋଟିଏ ଗୋଟିଏ ପେନ୍‌ସିଲ ଉପହାର ଦେଇ ପଚାରିଲା—କେମିତି ଲାଗିଲା? ଆଶା କରେ, ଆଉ ଥରେ ଆସିବେ!

ସବୁ ଆମ ପ୍ୟାକେଟ୍‌ତକ ଏକାଠି କରିନେଲା, ଆଉ ଥରେ ଏ କମ୍ପାନୀ ଦେଖିବାର ନିଶା ବଢ଼ାଇବା ପାଇଁ, ଆମେ ପଳାଇ ଆସିଲୁ—ଏଇ ଧୂଆଁରେ ଆଚ୍ଛନ୍ନ ହେଲା ପରି ଦିଶୁଥିବା ଧୂମାଳ ପର୍ବତମାଳା ଆଡ଼େ।

## ସ୍ମୋକି ମାଉଣ୍ଟେନ୍

ଏଇ ଉଚ୍ଚ ପର୍ବତ ଶ୍ରେଣୀ ସର୍ବଦା ଧୂମାଚ୍ଛନ୍ନ ହେଲା ପରି ଦିଶେ, ତେଣୁ ଏହା ସ୍ମୋକି ମାଉଣ୍ଟେନ୍ ନାମରେ ପରିଚିତ। ନର୍ଥକା-

ଗ୍ରେଲଇନା ଓ ଟେନେସି ଏଇ ଦୁଇ ପ୍ରଦେଶର ଅନ୍ତର୍ଗତ; ପାଞ୍ଚ ଲକ୍ଷ ଏକର ଜମି ମାଡ଼ି ବସି ରହିଅଛି—ଛତିଶ ମାଇଲ୍ ପର୍ଯ୍ୟନ୍ତ ଏହାର ଉଚ୍ଚତା କେଉଁଠି ପାଞ୍ଚହଜାର ଫୁଟରୁ ଊଣା ନୁହେଁ, ଷୋଳ ଗୋଟି ଶୃଙ୍ଗର ଉଚ୍ଚତା ଛଅହଜାର ଫୁଟ ଉପରେ ।

ପାହାଡ଼ର ଧାରେ ଧାରେ ପଥ, କେଉଁଠି ଉଠିଛି, କେଉଁଠି ଓହ୍ଲାଇଛି, କେଉଁଠି ବକ୍ର, କେଉଁଠି ସରଳ । ପାହାଡ଼ର ପେଟ ଫଟାଇ କେଉଁଠି ଟନେଲ୍ ଗଢ଼ା ହୋଇଛି—ଆଲୋକ ଉଜ୍ଜ୍ୱଳ ବହୁ ଟନେଲ, ପାହାଡ଼ୀ ଦୃଶ୍ୟରୁ ଦୃଷ୍ଟିକି ବଞ୍ଚିତ କରେ, ଅଧିକ ଆକର୍ଷଣୀୟ କରି ଦେଖାଇବା ଲାଗି ।

ଗୋଟିଏ ପଥରର ପାହାଡ଼ କେଉଁଠି; ଗୋଟିଏ ଗୋଟିଏ ଘାସ ଉଠିଛି, ବରଳକେଶ ବୃଦ୍ଧ ପରି ଦିଶୁଛି । ପାଦ ତଳେ ତାର ଗୁଚ୍ଛ ଗୁଚ୍ଛ ସୂର୍ଯ୍ୟମୁଖୀ; ବନଦେବୀଙ୍କ ଶ୍ରଦ୍ଧାର ଅର୍ଘ୍ୟ, ଟର୍କି ପକ୍ଷୀର କଣ୍ଠରେ ପ୍ରଶସ୍ତି ଗାଇ ସେ ତାଳ ଦେଉଛନ୍ତି ଯେପରିକି ।

କେଉଁଠି ଗଭୀର ଗର୍ତ୍ତ, କେଉଁଠି ବା କନ୍ଦର, କେଉଁଠି ପ୍ରବାହିତ ନଦୀର ଏକ କ୍ଷୀଣ ଧାରା, ଝନତ୍ ଝଙ୍କାର ଶବ୍ଦରେ, କୂଳରେ ତାର ରୋଡୋଡେନ୍‌ଡ୍ରନ୍ ଫୁଲ ଫୁଟିଛି, ଲରେଲ୍ ଗଛ ଉଠିଛି ଘଞ୍ଚଭାବେ ।

କେଉଁଠି ବ୍ଲେକ୍‌ହିଲର ପାହାଡ଼ ଉପରେ ଘନଘଞ୍ଚ ବନଭୂମି ମଝିରେ ହ୍ରଦ—ନାମ ପ୍ରାଇସ୍ ଲେକ୍, ସ୍ୱଚ୍ଛ ଜଳରେ ପ୍ରତିଫଳିତ ହୋଇଛି ସବୁଜର କାରୁକଳା, ସୂର୍ଯ୍ୟରଶ୍ମିର ପରିବେଶ ମଧ୍ୟରେ—ହ୍ରଦଟି ଲମ୍ବି ଯାଇଛି ଏକ ରହିତ ଗାଳିଚା ପରି ।

ବାଆସ୍ ଆଉ ଟ୍ରାଉଟ୍ ମାଛ ଭରା, ଭ୍ରମଣକାରୀ ବନଶି ପକାଇ ମାଛ ଧରନ୍ତି ଏଠି, ଶୀତ ଦିନେ ହ୍ରଦ ଜମାଟ ବାନ୍ଧିଲେ ଖେଳପ୍ରିୟ ବ୍ୟକ୍ତି-ମାନେ ସ୍କେଟିଂ କରନ୍ତି ।

ରାସ୍ତା ପାଖରେ ଏକ ବୃହତ୍ ପାଷାଣ ଖଣ୍ଡ ନାମ୍ର ଉପତ୍ୟକା ଆଡ଼କୁ ଲମ୍ବି ଯାଇଛି; ତାପରେ ଅରଣ୍ୟ ଫାଙ୍କରେ ଦିଶୁଛି ପାହାଡ଼ ଆଉ

ଉପତ୍ୟକା, ତାପରେ ସମତଳ ଖେତ, ପୁଣି ପାହାଡ଼ ତୁର ପରେ ତୁଙ୍ଗ, ଲମ୍ବିଛି ଦୂରରୁ ସୁଦୂର ସବୁଜକୁ ନୀଳ ନୀଳତର କରି, 'ଆକାଶର ନୀଳ ଧୂମେ ଦେଇଛି ମିଶାଇ; ଆଉ ଯେପରିକ ନୀଳମାରୁ ଦୂରେ କରୁ ନାହିଁ।'

ବାମ ପଟେ ଅନୁଚ୍ଚ ପାହାଡ଼ରେ ଫିର୍ ଓ ସ୍ପ୍ରୁସ୍ ଜଙ୍ଗଲ୍; ହରିଣଟିଏ ଦେଖା ଦେଇ ବନ ମଧ୍ୟରେ ହଠାତ୍ କୁଆଡ଼େ ଅନ୍ତର୍ହିତ ହୋଇଗଲା, ମନରେ ଅପରିଚିତ ଏକ ଅଦ୍ଭୁତ ଭାବ ପରି କ୍ଷଣେ ମାତ୍ର ସ୍ୱପ୍ନମୟ କରି।

ଗାଡ଼ି ପାର୍କ କରିବା ଲାଗି ସ୍ଥାନ ରହିଛି, ବସିବା ଲାଗି ପ୍ରସ୍ତର, ଅଇଁଠା କାଗଜ ଥାଳି ଓ ଗ୍ଲାସ ପକେଇବା ଡ୍ରମ୍ ଅଛି। ଏଠି ମଧ୍ୟାହ୍ନ ଭୋଜନ ହେଲା—ଟମାଟୋ ଓ ଡିମ୍ବର ସ୍ୟାଣ୍ଡୱିଚ, କୁକୁଡ଼ା କଲିଜା ଭଜା, ବନ୍ଧାକୋବି ତରକାରି, ପଟାଟୋ ଚିପ୍ସ୍—ପାନୀୟ ପେପ୍‌ସି। କାଗଜରେ ହାତ ପୋଛି ପୁଣି ଆମେ ଚାଲିଲୁ।

ପାହାଡ଼ର ଅଗଣିତ ସବୁଜ, ଧୂମଳ ତରଙ୍ଗ—ମନ ମୋର ତରଙ୍ଗିତ ହେବାକୁ ଲାଗିଲା, ବିପୁଳ ଭାବାବେଗରେ; 'ସବୁଜ ସମୁଦ୍ରରେ ପଥ ପରି ଗଲା ଯେଉଁମେ ଭାସି, ଅତ୍ୟନ୍ତ ଉଦାସୀ।'

ପୁଣି ମନେ ହେଲା—ଗିରି ଶୃଙ୍ଗେ ଶୃଙ୍ଗେ ଉଠି ଯାଉଛି—କେଉଁ ମହା ଜନ୍ମାନ୍ତର ଅନୁଭବ ଶକ୍ତିକୁ ପ୍ରସାରିତ କଲା—ତା ଭିତରେ ବସିଲା ଗୋଟିଏ ପାର୍କପରି ଏଇ ସ୍ମୋକ ପର୍ବତମାଳା—କେତେବେଳେ ବସନ୍ତର ପୁଷ୍ପଭରା, କସଲଫୁଲରେ ରଙ୍ଗୀନ୍, କେତେବେଳେ ମେଘାଚ୍ଛନ୍ନ, ତଡ଼ିତ୍ ଚୁମ୍ବିତ, କେତେବେଳେ ମର୍ମର ଓ କାକଳୀ ଝଙ୍କୃତ। ସତେ ଏଇ ସ୍ମୋକ ଗୋଟିଏ ଛବିମାତ୍ର ମୋ ମନର ବିପୁଳ ଚିତ୍ରଶାଳା ମଧ୍ୟରେ; ଯେତେସବୁ ଫ୍ରେସ୍କୋ ଆଙ୍କି ଦେଇଛି ଉଷା, ସନ୍ଧ୍ୟା ଓ ଗୋଧୂଳି, ଏଇ ଏକ ଅଜନ୍ତାରେ—ଧୂମଳ ପର୍ବତମାଳା ତହିଁରୁ ଗୋଟିଏ, ଯହିଁ ବା ଗାଢ଼ ସବୁଜ ତାର ରଙ୍ଗ, ଗମ୍ଭୀର ତାର ରେଖା, ଅଦ୍ଭୁତ ତାର ଆବେଦନ। ନିଜର ବିଶ୍ୱରୂପ ଦେଖି ଚମକ ପଡ଼ିଲି।

ଇଚ୍ଛାହେଲା 'ସ୍ୱୋକ'କୁ ଭାବାତ୍ମକ କରି ଖୋଜି ବୁଲନ୍ତି, ମୋର ମନରେ । ଅରଣ୍ୟ, ହ୍ରଦ, ନଦୀ, ପ୍ରପାତ, ପର୍ବତରେ ଭାବରୂପ ଧ୍ୟାନମଧ୍ୟାଗ୍ର ପରି ଆଚ୍ଛନ୍ନ କରିବାକୁ ଲାଗିଲା—ସବୁ ଅନ୍ଧକାରମୟ; କେଉଁ ଏକ ଉଜ୍ଜ୍ୱଳତର ରଶ୍ମିରେ କ୍ରମେ ସବୁ ସ୍ପଷ୍ଟତର ହେଲା—'ସ୍ୱୋକ' ଗୋଟିଏ ଖେଳଣା ମାତ୍ର—ହୃଦୟର କୌତୁକ ଚପଳ ଶିଶୁ ମୋର ତାକୁ ଘେନି ଖେଳୁଛି—ଚକା ଚକା ଭଉଁରି; ପୃଥିବୀ ବୁଲୁଛି ତା'ର ସଙ୍ଗେ—ଏକ ଘୂର୍ଣ୍ଣନ୍ତ ରଙ୍ଗମଞ୍ଚଉପରେ ଅଗଣିତ ପାତ୍ରପାତ୍ରୀଙ୍କ ମଧ୍ୟରେ ଛୁଡ଼ାହେଲା ପରି ଲାଗିଲା ମତେ ।

ଇଚ୍ଛାହେଲା—'ସୁନ୍ଦର'କୁ ରଖିଦେବି ଚିରକାଳ ଲାଗି—କିନ୍ତୁ ସେ କଣ ସେଇଆ ହୋଇ ରହିପାରିବ ? ଚିତ୍ତାନୁଗତିକର ଆକର୍ଷଣ ବା କେତେଦିନ ରହିବ ? ସୁନ୍ଦରତରକୁ ବା ସ୍ଥାନ ଦେଇପାରିବି କିପରି ? ଚିର ପରିବର୍ତ୍ତିତ, ଚିର ଚଞ୍ଚଳ—ଏଇ ଆତ୍ମମୁଖ୍ୟ ଯୋଗ୍ୟ କି ସୌନ୍ଦର୍ଯ୍ୟ ମନୋମୁଗ୍ଧକର । ତଥାପି କୌତୂହଳ—ଧରି ପକାଇବି; ରଖିଦେବି—ପିଲାଏ ଯେପରି ପ୍ରଜାପତି ଧରନ୍ତି; ରଖିବାକୁ ଚେଷ୍ଟାକରି ତାର ମୃତ୍ୟୁର କାରଣ ହୁଅନ୍ତି ।

ସ୍ଲେଟ ପଟରେ ବଣ୍ଡକୁ ଧରିରଖିବାର ଆସ୍ପର୍ଦ୍ଧା ମୋର—ସତେ କି ଅକ୍ଷରର ଗୋଟିଏ ବ୍ୟୂହ ନିର୍ମାଣ କଲି—ଛନ୍ଦରେ ବନ୍ଦୀ କରିବାକୁ ଚେଷ୍ଟାକଲି—ପଳାତକ ସୌନ୍ଦର୍ଯ୍ୟକୁ—

କିନ୍ତୁ ଛିଣ୍ଡା ଗୁଡ଼ି ପରି ଉଡ଼ଯାଉଥିଲା ସେ—ବାଙ୍ଗଭ ପରି ଦୌଡ଼ୁଥିଲି—ହାତ ମୋର ପାଉ ନ ଥିଲା । କିନ୍ତୁ ମନ ଧାଉଁ ଥିଲା ।

ଗାଇବାକୁ ହେବ ପଦ
ଗାଇବି ମୁଁ ପାହାଡ଼ର ଗୀତ
ପାହାଡ଼ମୟ ମୋ ସନ
ହୋଇଛି ଉନ୍ନୀତ

ଯାହା ସବୁ ଧୂମ ହୋଇ
ଦିଶୁଥିଲା ଦୂରେ
ଶ୍ୟାମଳ ହୋଇ ସେ ଆସେ
ମୋ ଆଖି ସୀମାରେ ।
ନାନା ବୃକ୍ଷ ପାରୁଅଛୁ ବାଣ
ବନର ସବୁଜ ଛନ୍ଦେ ଗୀତ ଏକ ଗାଉଛୁ ଝିଙ୍କାଣ ।

ସବୁଜ ଜୁଆରେ ବାଜେ ଏକ ଏକ କୁସୁମର ଢେଉ
ଦୂରଗତ ସ୍ୱପ୍ନ ସମ ।
କର୍କଶ କାର୍ଣ୍ଣି ବା ସେଇ ପାଷାଣ କାନ୍ତାରେ
ମ୍ଳାନ ରୌଦ୍ର, ମେଘ ଛାୟା
ସଙ୍ଗେ ମିଶେ ଛାୟା ପାହାଡର
ବେଳେ ବେଳେ ରୁକ୍ଷ ଏକ ପର୍ବତକୁ ସିକ୍ତକରେ
କେଉଁ ଏକ ଅଜଣା ନର୍ଝର ?
ପବନରେ ପଥ ପଣ ନାଚୁଅଛୁ ଶତ
ଗାଇବାକୁ ହେବ ବୋଲି ପାହାଡ଼ର ଗୀତ ।

ପାରିବ କି କରି ଅଭ୍ୟର୍ଥନା
ଏଇସବୁ ତରୁତୃଣ ? କିଏ ନବ କାନନ କୁସୁମ
ବନର ନୂତନ ପକ୍ଷୀ ପ୍ରଥମ କାକଳୀ
ସେ ଯେଉଁ କଣୋର ଦ୍ରୁମ ଉଠେ ଆଜ ପ୍ରଥମେ ମର୍ମର
ଧରି କି ପାରିବ ତାର ସ୍ୱର ?
ମରୁମୟ କାନ୍ତାରେ କି ପାରିବ ସବୁଜ ରଖି
ଏ ମୋର ଅନ୍ତର ?
କି ଆଦିମ ପ୍ରେମାବେଶେ ମୋ ନାଚୁଅଛୁ ଶତ୍ୱ,
ଗାଇବାକୁ ହେବ ବୋଲି ପାହାଡ଼ର ଗୀତ ।

ଅକାଣୀ କଳ୍ପନା ଆଜ ଖୋଲିଅଛୁ ହୃଦୟର ଦ୍ୱାର
ସବୁ ଆପେ ପଶି ଯେଉଁଠି ପହଁ ଯେତେ ଅରଣ୍ୟ ପାହାଡ଼
ଏକେ ମିଶିଅଛୁ ଆନ ପରବତ ନାସି
କ୍ଷୀଣ ଏକ ପଥ ଦେଇ ବନ୍ୟ ଝରଣାରେ
ସୃଜବାକୁ ଶ୍ରାବଣ ପ୍ରପାତ
ଇନ୍ଦ୍ରଧନୁ ରୂପେ ତାର କରେ ପ୍ରତୀପାତ ।

ଅରଣ୍ୟର ପର୍ବତର ପ୍ରପାତର
ଏଇ ଛନ୍ଦ ପାରିବ କି ରଖି
ଯେଉଁ ସବୁ ଅସୀମ ଜୁଆର ଛୁଆଁଇଛୁ ଏ ପ୍ରକୃତି ସଖୀ
ପାରିବ କି ରଖି ସବୁ ଅଭିଲେଖ ରୂପ ମୋ ଜୀବନ ?
ସବୁ ପୁଷ୍ପ ସବୁ ସ୍ୱପ୍ନ
ପାହାସବୁ ଫୁଟିଅଛୁ ଗୋଧୂଳି ବୃନ୍ତରେ
ଅଜସ୍ର ପାଖୁଡ଼ା ମେଲି ସବୁଜ ଅକ୍ଷରେ ?

ନାନା ଆଳାପ ମଧ୍ୟରେ ଗୁନ୍ଥି ଦେଇଥିଲି ମନର ଆଲୁଅ ବାଲୁଅ ଭାବସବୁ, ସେ ସମୟର ବନପ୍ରେମୀ ମନର ସ୍ୱରୂପ ଦେଖାଇବା ଲାଗି, ଚତୁର୍ଦ୍ଦିଗର ସବୁଜକୁ ଶୋଷି ନେଇଥିଲି ଯେତେ ଇଚ୍ଛା ସେତେ ମନ ଭରି ।

ଆରଣ୍ୟକ ଓ ମୋ ମଧ୍ୟରେ ଏଇ ତାରତମ୍ୟ ଯେ ମୁଁ ଜଣେ ନାଗରିକ—କଣ୍ଠେ ମୋର ସବୁଜ ପିପାସା, ଗୋଟିଏ ମୁହୂର୍ତ୍ତର ଅତିଥି । କିନ୍ତୁ ସେ ଗୋଟିଏ ସମୁଦ୍ର ମତ୍ସ୍ୟ, ସମୁଦ୍ରରେ ଡୁବିଥାଏ । ତାର ସେ ପିପାସା ଅସିବ କୁଆଡ଼ୁ, ବିଚ୍ଛିନ୍ନ ନ ହେଲେ ?

ମନକୁ ମୋର ବୁଲିବାକୁ ଛାଡ଼ିଦେଲି ଏକ ଆମେରିକାନ୍ ବାଇସନ୍ ପରି, ଖଣ୍ଡେ ମୌସୁମୀ ମେଘ ପରି, ବୁଲିବାକୁ ଶୃଙ୍ଗେ ଶୃଙ୍ଗେ; ଶରତର ସ୍ୱଚ୍ଛ ହାଓ୍ୱା ଧରି ହ୍ରଦତୀରବର୍ତ୍ତୀ ବୃକ୍ଷଲତାଙ୍କ ସଙ୍ଗରେ । ପାହାଡ଼ ସଙ୍ଗରେ କେତେବେଳେ ଲୁଚକାଳି, କେତେବେଳେ ଚକା ଭଉଁରି ଖେଳୁ

ଖେଳୁ ମନରେ ଆସିଲା ତୃପ୍ତି, ଆଖିରେ ନିଦ୍ରା । ଗାଡ଼ି ଉପତ୍ୟକାକୁ ଗାଡ଼ି ଆସି ପହଞ୍ଚିଲା 'ଆସ୍‌ଭିଲ୍ଲେ' ସହରରେ । ପଶ୍ଚିମ ନର୍ଥ କାରୋଲାଇନାର ଏହା ବୃହତ୍ତମ ସହର—'ସ୍ମୋକିନୋଆ' ଓ 'ଫ୍ରେଞ୍ଚବ୍ରଡ୍' ଝରଣା ଦ୍ୱାରା ବେଷ୍ଟିତ । ଯାତ୍ରୀମାନେ ବହୁ ସଂଖ୍ୟାରେ ଏହି ପାହାଡ଼ୀ ସହରକୁ ଆସିଥାନ୍ତି —ଲୋହିତ ଭାରତୀୟଙ୍କ ପରମ୍ପରାଗତ ଓ ନୃତ୍ୟୋତ୍ସବ ଦେଖିବା ଲାଗି । ଆସ୍‌ଭିଲ୍ଲେରୁ ସତୁରି ମାଇଲ୍ ଦୂରରେ ଲୋହିତ ଭାରତୀୟ ବସନ୍ତି । ତାଙ୍କ ଗୃହ, ଗ୍ରାମ ସାମାଜିକ ଚଳଣି ଦେଖିବା ଲାଗି ଆମେ ଗଲୁ ଚେରୋକି । ସେତେବେଳକୁ ଘଣ୍ଟା ବାଜିଲାଣି ।

## ଚେରୋକି

ଛ'ଟା ବେଳେ ନାଟକର ଅଭିନୟ ହେବ, ଗୋଟିଏ ଖୋଲା ପାହାଡ଼ୀ ରଙ୍ଗମଞ୍ଚରେ—'Unto these Hills.'

ଏ ଗୋଟିଏ ଆତ୍ମକାହାଣୀ—ଲୋହିତ ଭାରତୀୟଙ୍କର—ଉଚ୍ଛେଦ ଓ ବିଚ୍ଛେଦର କରୁଣତାରେ ଭରପୂର । ନିର୍ମମ ସରକାରୀ ଆଦେଶରେ ଯେବେ ଲୋହିତ ଭାରତୀୟଙ୍କୁ ମାତୃଭୂମି ଓ ଲୁକ୍କାୟିତ ଆତ୍ମୀୟମାନଙ୍କୁ ଛାଡ଼ି ଚାଲିଯିବାକୁ ହୋଇଥିଲା । ପଥ ହୋଇଥିଲା 'ଓକାଲ୍‌ହୋମା'; ମାରି ମାରି ଯେଉଁ କେତେକ ଅବଶିଷ୍ଟ ରହିଲେ ସେମାନଙ୍କୁ ଏହିପରି ଛିନ୍ନ କରି ଦିଆଗଲା ।

୧୫୪୦ ଖ୍ରୀଷ୍ଟାବ୍ଦରେ ଡେସଟୋ ନାମକ ଜଣେ ପର୍ତ୍ତୁଗୀଜ, ଚେରୋକି ଅଞ୍ଚଳକୁ ପ୍ରଥମେ ଆସିଥିଲେ । ତା ପରେ ବହୁ ଗୋରାଙ୍କ ଆଗମନ ହେଲା । କେତେବେଳେ ମଦ୍ୟରେ ମୋହାଚ୍ଛନ୍ନ କରି କେତେବେଳେ ଅଧୁନିକ ଅସ୍ତ୍ରବଳର ବିଭୀଷିକା ଦେଖାଇ ସେମାନେ ଲୋହିତ ଭାରତୀୟଙ୍କ ଜମିଜାଗା ଦଖଲ କରିନେଲେ; ବାଧ୍ୟ ହୋଇ ସେମାନେ ଉଚ୍ଚ ପାହାଡ଼ମାନଙ୍କରେ ଆଶ୍ରୟ ନେଲେ । ୧୮୩୮ରେ ସମୂହଭାବରେ ସେମାନଙ୍କୁ ଏ ଅଞ୍ଚଳରୁ ନିକାଲି ଦିଆଗଲା । ନାନା ଆପଦ ବିପଦ ମଧ୍ୟରେ କେତେକ ଲୋହିତ ଭାରତୀୟ ଏଠି ରହିବାକୁ ସମର୍ଥ ହୋଇଥିଲେ । ତାଙ୍କ

ଆତ୍ମତ୍ୟାଗ ଯୋଗୁଁ ଏହା ସମ୍ଭବପର ହୋଇଥିଲା । ତାଙ୍କ ଜୀବନ କାହାଣୀ ରୂପାୟିତ ହୋଇଛି 'Unto these Hills' ନାଟକରେ ।

ଡେସତୋ ସୁବର୍ଣ୍ଣ ଅନୁସନ୍ଧାନରେ ଚେରୋକି ଗ୍ରାମକୁ ଆସିଥିଲେ । ତାଙ୍କ ଆଗମନ ଏଠା ଆଦିବାସୀଙ୍କ ମନରେ କି ପ୍ରତିକ୍ରିୟା ସୃଷ୍ଟି କରିଥିଲା, ଷୋଡ଼ଶ ଶତାବ୍ଦୀରେ ସେମାନଙ୍କ ସାମାଜିକ ଜୀବନ କପରି ଥିଲା, ଏହି ନାଟକରେ ଅଙ୍କିତ ହୋଇଅଛି । ଆଦିମ ଅଧିବାସୀଙ୍କ ସହିତ ଗୋରାଙ୍ଗମାନଙ୍କ ଦୀର୍ଘ ଯୁଦ୍ଧ ଓ ସେମାନଙ୍କ ଆତ୍ମରକ୍ଷା କାହାଣୀକୁ ରୂପ ଦାନ କରିଛନ୍ତି ନର୍ଥ କାରୋଲାଇନା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ନାଟ୍ୟକାର ହାରି ଡେଭିସ୍, ନାଟ୍ୟକଳା ବିଭାଗର ମୁଖ୍ୟ ସେ ।

ଚେରୋକି ଗୋଟିଏ ଲୋହିତ ଭାରତୀୟ ସଂରକ୍ଷିତ ଅଞ୍ଚଳ । ପ୍ରାୟ ପଚାଶ ହଜାର ଏକର ବ୍ୟାପୀ । ପ୍ରାୟ ଛ' ହଜାର ଲୋହିତ ଭାରତୀୟଙ୍କ ବସତି ଏଠି; ସେ ଦିନର ସେ ବିରାଟ ଜାତି ଆଜି ନାହିଁ; ଯେତେବେଳେ ଟେନେସି, ସାଉଥ୍ କାରୋଲାଇନା, ଆଲବାମା, ଜର୍ଜିଆ, ନର୍ଥ କାରୋ-ଲାଇନାର ଅଧିକାଂଶ ଭୂମି ସେମାନଙ୍କ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା—ଏବେ ବିଚ୍ଛିନ୍ନ, ବିଭକ୍ତ—ଏକ ପ୍ରଦର୍ଶନୀ ହୋଇଛନ୍ତି ସେମାନେ, ଭ୍ରମଣକାରୀଙ୍କ କୌତୂହଳର ସାମଗ୍ରୀ, ଗବେଷକମାନଙ୍କର ଗବେଷଣା ଉପାଦାନ; କେତେକ ବ୍ୟବସାୟୀ ସେମାନଙ୍କୁ ଘେନି ପସରା ମେଲି ବସିଛନ୍ତି—ଗଢ଼ି ଉଠୁଛି ସହର, ଖୋଲୁ ହେଉଛି ବଜାର—ହୋଟେଲ୍, ମୋଟେଲ୍; ଇନ୍, ରେଷ୍ଟୁରାଣ୍ଟ, ମନୋହାରୀ ଦୋକାନ —ଲୋହିତ ଭାରତୀୟଙ୍କ କୁଟୀର ଶିଳ୍ପ ସମ୍ଭାରରେ ଭରପୂର । ଉଚ୍ଚ ପାହାଡ଼କୁ ଉଠି ଚତୁର୍ଦ୍ଦିଗର ପ୍ରାକୃତିକ ଦୃଶ୍ୟ ଉପଭୋଗ କରିବା ସମ୍ଭବ ହୋଇଛି । ଟ୍ରେଲ ବ୍ୟବସାୟ ମଧ୍ୟ ବଢ଼ି ଚାଲିଛି—ଲୋହିତ ଭାରତୀୟଙ୍କ ବ୍ୟବହାର୍ଯ୍ୟ ଦ୍ରବ୍ୟରେ ଗଢ଼ା ହୋଇଛି ଯାଦୁଘର—ସେମାନଙ୍କ ଜୀବନକାହାଣୀ ଘେନି ନାଟକ ଅଭିନୀତ ହେଉଛି ।

ଆମ ଚାରିପାଖେ ଉଚ୍ଚ ଉଚ୍ଚ ପାହାଡ଼—ମଝିରେ ଗଳି ରାସ୍ତା—ସଙ୍କୀର୍ଣ୍ଣ ଉପତ୍ୟକାରେ କ୍ଷୀଣ ନଦୀ, ଖରସ୍ରୋତା—ଛଳଛଳ ଶବ୍ଦ ବନର

ମର୍ମରରେ ପ୍ରଶାନ୍ତ ଗର୍ଜନ କରୁଛି ତରଙ୍ଗଭଙ୍ଗରେ—ସବୁଜର ଶାନ୍ତ ମୁଖରେ ଫେନିଳ ସ୍ମିତ ଶ୍ରୀ ନୂତନ ଛନ୍ଦରେ ପ୍ରାଣକୁ ଗତି ଚଞ୍ଚଳ କରୁଛି ।

ଏଇ ଝରଣାର ଧାରେ ଧାରେ ରେଡ଼ଇଣ୍ଡିଆନ୍‌ଙ୍କ ବସତି—କିନ୍ତୁ ସେମାନେ ପାରମ୍ପରିକ ସ୍ୱଭାବ ଜଳାଞ୍ଜଳି ଦେଇଛନ୍ତି, ଏବେ ଯେ କୌଣସି ଆମେରିକାନ୍‌ଙ୍କ ପରି ଆଧୁନିକ । ତାମ୍ବୁଘର ଜଗାପ୍ପ ନାହିଁ । ଘରଦ୍ୱାରରେ ମଧ୍ୟ କିଛି ନୂଆପଣ ନାହିଁ । ବସନଭୂଷଣ ସୁଯୋଗ-ଯୋଗୀ । କେବଳ କର୍ତ୍ତବ୍ୟ ସାଧନା; 'ରେଡ଼ଇଣ୍ଡିଆନ୍' ନକହି ସେମାନଙ୍କୁ ଖାଲି ଆଦିବାସୀ କହିଲେ ଚଳନ୍ତା । କାରଣ ସେମାନେ ବହୁଳାଂଶରେ ଆଦିବାସୀଙ୍କ ପରି ।

ଉଚ୍ଚ ନୀଚ, ବକ୍ର, ଶପଦସଙ୍କୁଳ ପାର୍ବତ୍ୟ ପଥ—ଅଗଣିତ ଯାନର ଗମନ—ଆଗମନ—ତା ମଧ୍ୟରେ ଆମେ ଧାଇଁଛୁ—ନାଟକ ଦେଖିବା ଲାଗି । ରାସ୍ତାରେ ଦୁଇମାଇଲ୍ ବ୍ୟାପୀ ମଟରଗାଡ଼ି—ପାର୍କ କରିବାକୁ ତିଳାର୍ଦ୍ଧ ସ୍ଥାନ ନାହିଁ, ବର୍କେଇତର୍କେଇ କେଉଁଠି ବା ପଛେଇ ବହୁ କଷ୍ଟରେ ଗାଡ଼ିଟି ଛିଡ଼ା କଲୁ—ପୁଲିସ୍ ଆସି ସାମ୍ନାରେ ହାଜର—କୁଆଡେ ? ଟିକେଟ୍ ସବୁ ବିକ୍ରୀ ହୋଇଯାଇଛି, ଗାଡ଼ି ପାର୍କ କରିବାକୁ ଜାଗା ନାହିଁ !

ଏଇ ଖୋଲା ରଙ୍ଗମଞ୍ଚରେ ସିଟ୍ ସଂଖ୍ୟା ତିନି ହଜାର, ଗୋଟିଏ ହେଲେ ଟିକେଟ୍ ମିଳିଲା ନାହିଁ । ଭଗବାନ୍, ଏ କି ବିପ୍ଳବ ? ଏତେ କଷ୍ଟକରି ବଡ଼ ଭୋର୍‌ରୁ ଗାଡ଼ି ଅଠେଟା ପର୍ଯ୍ୟନ୍ତ ଆମେ ଧାଇଁଛୁ । ସବୁ ବୃଥା ! ମନଟା ଭାଙ୍ଗିଗଲା; କ୍ଲାନ୍ତି, ଅବସନ୍ନତା ଘୋଟିଆସିଲା; ନିଶା ଛାଡ଼ିଗଲେ ଯେପରି ।

ଲୋକେ ତ ଏଠି ସାତ ଆଠ ଦିନ ରହୁଛନ୍ତି, ଜୀବନ ଚଳଣି ଜାଣିବା ପାଇଁ, ଥିଏଟର ଦେଖିବା ପାଇଁ । ଆମେରିକାନ୍ ଗୋଟିଏ ଟୁରିଷ୍ଟ ଜାତି ହୋଇ ଯାଇଛି—ଚକରେ ଗଡ଼ି ଯାଉଛି ଏ ପାଖରୁ ସେ ପାଖ; କେତେ-ବେଳେ ଭାସିଯାଉଛି ସାତସମୁଦ୍ରର ଏ କୂଳରୁ ସେ କୂଳକୁ, ଆକାଶରୁ ଖସି

ତେନା ତେନା ଭୂମି ପରିକ୍ରମା କରୁଛନ୍ତି— ଜୀବନ ଚଳମାନ, ଚଞ୍ଚଳ । ଭ୍ରମଣ-କାରୀ ବୋଲି କୌଣସି ବ୍ୟକ୍ତିର ଏକ ସ୍ୱତନ୍ତ୍ର ଗୌରବ ନାହିଁ—ଯେପରି ଅତୀତରେ ଥିଲା । ଭ୍ରମଣ ଯେମିତି ସ୍ୱଚ୍ଛନ୍ଦ, ସୁଖକର, ସେମିତି ସାର୍ବଜନୀନ ହୋଇ ଯାଇଛି । ତେଣୁ ଯେଉଁଠି କିଛି ଦୃଶ୍ୟର ବିଶେଷତ୍ୱ ଅଛି, ସେଠି ଗଡାଗଡ଼ି, ସଜାସଜ ଲାଗିଛି । ଟୋକାଟୋକୀ, ଯୁବକଯୁବତୀ ବୁଢ଼ା ବୁଢ଼ୀ ସମସ୍ତେ ଟୁରିଷ୍ଟ—ସମସ୍ତେ ଅନୁସନ୍ଧାନ କରୁଛନ୍ତି, ମଜା କରୁଛନ୍ତି, ମଉଜ ଦେଖୁଛନ୍ତି; ଭ୍ରମଣ ହୋଇଛି ଗୋଟାଏ ବଡ଼ ବିନୋଦନ—ଅବସରର ଉପଯୋଗ ଲାଗି ଲାଗିଛି ଧମାଧମ୍ ବ୍ୟବସ୍ଥା । ସବୁଠି ଦୃଶ୍ୟର ଛପା କାର୍ଡ ମିଳୁଛି, ବହୁ ଛବି ସମ୍ବଳିତ ପାମ୍ଫଲେଟ୍ ମିଳୁଛି ।

ଆମେ ଆସିଛୁ ଗୋଟିଏ ଦିନ ଲାଗି, କେତେ ଘଣ୍ଟା ଲାଗି ଆମର ଅବସ୍ଥାନ ଏଠି । ଯାହା କିଛି ପାଇବୁ, ଆଖି ବୁଜି ବାନ୍ଧି ନେବୁ । ଯାହା ଆଜ ନ ପାଇବୁ—'ଗୁଡ଼' । ଆମର ବିଭବ ସାମାନ୍ୟ । ଗରିବ ଟୁରିଷ୍ଟଙ୍କ ଲାଗି ଏଠି ଧର୍ମଶାଳା ନାହିଁ; ଅମେ ଗୋଟେଇ ବୁଲାଲୁ ଦୃଶ୍ୟ ବା ଛବି, ବିକଳ ହୋଇ, ନିସ୍ୱଣ ହେଲେ କଣ ହେବ ?

କାନ୍ଦୁଥିବା
ଯାହା ପାଉଥିବା ବାନ୍ଧୁଥିବା ।

'ତେବେକ' ବଜାରରେ ବହୁତ ନାଗରଦୋଳା ବୁଲୁଛି—ଥିଏଟର ଦେଖିଆସି ନିସ୍ୱଣ ହୋଇଥିବା ଲୋକେ ଏଠି ଚକାଭଉଁରୀ ବୁଲୁଛନ୍ତି; ଘସି ଗଲା କୁଟାଖିଅ ଭଉଁରୀରେ ଆଶ୍ରା ପାଇ ବୁଲାଲା ପରି । ଦୋକାନ ବଜାର ଗହଳରେ ଉଛୁଳି ପଡ଼ୁଛି—ଗ୍ରେଟ ନଦୀରେ ବହୁତ ଧାର ପଶିଲେ ଯେପରି ପାଣି ଢିକୂଳ ଲଙ୍ଘି ତୀରକୁ ମାଡ଼ିଯାଏ, ଏଠି ସେହିପରି ହୋଇଛି, ଗାଡ଼ି ଅନେକ ଦୂରରେ ରଖି ଲୋକେ ଚାଲୁଛନ୍ତି, ଚାଲୁଛନ୍ତି ଅମଡ଼ା ମାଡ଼ି । ସହର ଯେପରି କ ବ୍ୟତିବ୍ୟସ୍ତ ହୋଇ ଗୁଡ଼ୁଛି ଦୀର୍ଘଶ୍ୱାସ !

ଥିଏଟର ତ ଦେଖି ପାରିଲେ ନାହିଁ, କେତେକ ଦେଖୁଛନ୍ତି ଲୋହିତଭାରତୀୟଙ୍କ ନୃତ୍ୟ—ଆମ୍ବ ବଦଳରେ ଅମ୍ବିଡ଼ା; ଭୋକଲା ରହିବା ଅପେକ୍ଷା ଆମ୍ବଡ଼ା ତ ଭଲ !

ମୁଖା ଉପରେ ମୁଖା ଯୋଡ଼ା ହୋଇ ଗୋଟିଏ ଅଡୁତ ମୂର୍ତ୍ତି ତିଆରି ହୋଇଛି, ତା ପାଖରେ ଗୋଟିଏ ବଡ଼ ବାଜା, ବଜାଉଛନ୍ତି ଜଣେ ଓସ୍ତାଦ୍, ବୃଦ୍ଧ, ପିନ୍ଧିଛନ୍ତି ପକ୍ଷୀପରର ରଙ୍ଗୀନ୍ ପୋଷାକ । ସିମେଣ୍ଟ ଚତ୍ୱରର ଉପରେ ଛିଡ଼ା ହୋଇଛନ୍ତି ଚାରିଜଣ ନୋହ୍ଭରଭାରତୀୟ, ରଙ୍ଗୀନ ପକ୍ଷୀପୁଚ୍ଛର ମୁକୁଟ, ରଙ୍ଗୀନ୍ ପକ୍ଷୀପୁଚ୍ଛର ପୃଷ୍ଠ ପଟେ ପଦ୍ମଫୁଲ ଆକୃତିର ବେଶ, ବଳାଗଣ୍ଠିରେ ଜଙ୍ଘରେ ବଡ଼ ବଡ଼ ଘାଗୁଡ଼ି-ମାଳ । ଓସ୍ତାଦ ପଚ୍ଚଲେ ଇଂରେଜୀରେ ଗୋଟିଏ ଭାଷଣ ଦେଲେ, ନୋହ୍ଭରଭାରତୀୟଙ୍କ ଚଳଣି, ଚେରୋକି ଭାଷା ଓ ସ୍ଥାନୀୟ ନୃତ୍ୟ ବିଷୟରେ । ତାପରେ ସେ ବାଜା ବଜାଇଲେ, ନୃତ୍ୟ କଲେ ଏଇ ଚାରିଜଣ ନର୍ତ୍ତକ—ଗୋଟିଏ ପରେ ଆଉ ଗୋଟିଏ ନୃତ୍ୟ, ପନ୍ଦର ମିନିଟ ମଧ୍ୟରେ ତିନିଗୋଟି ନୃତ୍ୟ ଶେଷ ହୋଇଗଲା । ନୃତ୍ୟ ପରେ ନର୍ତ୍ତକ ଦର୍ଶକଙ୍କ ସାମ୍ନାରେ ଗୋଟିଏ ଥାଳି ଧରି ବୁଲିଲେ—ଡଲାରେ, ଅଧ ଡଲାରେ, ପଚିଶ ସେଣ୍ଟ୍, ସେଥିରେ ଯେ ଯାହା ଇଚ୍ଛାମତେ ପକା-ଇଲେ । ତାପରେ ପୁଣି ନୃତ୍ୟ, ଆଦାୟ—ଏହିପରି ଦିନସାରା ନୃତ୍ୟ; ଯାତ୍ରୀ ଥିବା ପର୍ଯ୍ୟନ୍ତ ଯାତ୍ରା ଚାଲିଥାଏ । ନର୍ତ୍ତକଙ୍କ ଦୃଷ୍ଟି ନୃତ୍ୟ ଉପରେ ନ ଥାଏ—କିପରି ଅଳ୍ପ ସମୟରେ ବହୁତ ପଇସା ଆଦାୟ ହେବ, ଏହାହିଁ ଲକ୍ଷ୍ୟ ।

ତାପରେ ଅନ୍ୟ ଏକ ନୃତ୍ୟ ଦେଖିଲୁ । ନୋହ୍ଭରଭାରତୀୟଙ୍କ ନୃତ୍ୟ ଶିଖି ଆମେରିକାର ଯୁବକଯୁବତୀମାନେ ନୃତ୍ୟ କରୁଛନ୍ତି । ବାଜା ବାଜୁଛି—ଧାତୁମ୍—ଧାତୁମ୍, ଧାତୁମ୍—ଧାତୁମ୍ । ପାଦ ପଡ଼ୁଛି ସେଇ ବାଦ୍ୟର ତାଳେ ତାଳେ । ଯୁବକଯୁବତୀଙ୍କ ଶରୀରର ହିଲ୍ଲୋଳ ନୟନରଞ୍ଜକ, ହସଖୁସି ପ୍ରୀତିକର । ଲୋକେ ଜମିଛନ୍ତି, କରତାଳି ପଡ଼ୁଛି, ହୋ ଉଠୁଛି । ଏଠି ବି ସେଇ ବ୍ୟବସାୟ, କେଉଁ ବ୍ୟବସାୟୀର ପସରା ଏ—ଆଦାୟ ଚାଲିଛି । ଯାତ୍ରୀ ତ ଗୋଟାଏ ବରକୋଳି ଗଛ; ହୋହଲିଲେ ଝଡ଼ିଲା—ହୋହଲାଇ ପାରିଲେ ବେଶୀ ଝଡ଼ିବାର ସମ୍ଭାବନା ।

ନୋହ୍ଭରଭାରତୀୟଙ୍କ ମ୍ୟୁଜିଅମ୍‌ରେ ଟୋକେଇକୁଣ୍ଢେଇ, ଲାଉତୁମ୍ବା, ଧନୁତୀର, ମୁଖା, ବାସନକୁସନ, ଅଳଙ୍କାରପତ୍ର, କନ୍ଥି

ରଖାଯାଇଛି ତୁଚ୍ଛାତିତୁଚ୍ଛ; ପ୍ରାରମ୍ଭିକ ଅବସ୍ଥାରେ ଅଛି । ଫେରିବା ଦୁଆରକୁ ଜଣେ ମାତ୍ର ବସିଛନ୍ତି ଟେବୁଲ ଉପରେ ଗୁଡ଼ାଏ ଡଲାର ନୋଟ୍ ଗଦା ହୋଇଛି—ଦେଖି; ଯାତ୍ରୀ କେମିତି ଦେଲ୍‌ବାଲା ! ତୁମେ ସେମିତି ହଅ । ବଡ଼ ଦେଉଳ ଦେବତା କଥା ମନେ ପଡ଼ିଗଲା; ଏଠି ତ ବହୁତ ହଣ୍ଡି, ବହୁତ ପଣ୍ଡା—ପଇସାଏ ପଇସାଏ ପକାଉ ପକାଉ କେତେ ଖର୍ଚ୍ଚ ହୋଇଯାଏ । କେତେ ଜାଗାରେ ଦେଇ ଦେଇ ଏଠି ମୁଁ ୫ସେଣ୍ଟ ପକାଇଲି । ଆଦାୟକାରୀ ଏତେ ଉଚ୍ଚସ୍ୱରରେ ଧନ୍ୟବାଦଟାଏ ଦେଲା ଯେ ମୁଁ ଚମକି ପଡ଼ିଲି—ମୋ ଦାନ ତା ମନକୁ ପାଇଲା ନାହିଁ, ଅଭିବଜନିତ ବ୍ୟସ୍ତକୁଣ୍ଠତା ଯୋଗୁଁ ମୁଁ ମଧ୍ୟ ବ୍ୟଥିତ ହେଲି । ଗୋଟାଏ ମ୍ୟୁଜିଅମ୍‌କୁ କଣ ଏ ଗୃହ ! ଗୋଟାଏ ଭିକାରୀ ମଧ୍ୟ ଏ ଦାନ ନେବାକୁ କୁଣ୍ଠିତ ହେବ ! କିନ୍ତୁ ଯେ ଦୁନିଆକୁ ଏତେ ଦାନ ଦେଉଛନ୍ତି, ତାଙ୍କୁ ଦେବା ଲାଗି କାହାର ଇଚ୍ଛା ହୁଏ ?

ପାହାଡ଼ୀ ଥିଏଟରରୁ ପନ୍ଦର ମାଇଲ ଦୂରରେ ଆମ ମୋଟେଲ୍—ମ୍ୟାନେଜର ଜଣେ ଲେଡ଼ି—ଲେହିତଭାରଭଞ୍ଜିତା; ଭୋଜନ ଅନ୍ୟତ୍ର; ଏଠି କେବଳ ରହଣି । ରାତିକେ ମୁଣ୍ଡ ପିଛା ଛଅ ଡଲାର୍ । ରହିବା ଲାଗି ପ୍ରତ୍ୟେକଙ୍କ ଲାଗି ଗୋଟିଏ ଲେଖାଏଁ ଘର—ପାଞ୍ଚଜଣଙ୍କ ଲାଗି ଗୋଟିଏ ଗାଧୁଆ ଘର, ପାଇଖାନା । ସମସ୍ତଙ୍କ ବ୍ୟବହାର ଲାଗି ଗୋଟିଏ ବୈଠକ ଘର । ସନ୍ଧ୍ୟାବେଳେ ଗ୍ରାହକ ନ ଥିଲେ ବୋଲି ଆମକୁ ଏତେ ଶସ୍ତାରେ ଏ ମୋଟେଲ୍‌ଟି ମିଳିଗଲା । ଯାହା ଭଲ—ଭାବିଥିଲୁ, ଗାଡ଼ିରେ ଶୋଇବାକୁ ହେବ ବୋଲି ।

ରାତି ବାରଟା; କ୍ଲାନ୍ତ ଶେଯରେ ପଡ଼ୁ ପଡ଼ୁ ନିଦ ଲାଗିଗଲା, ତାକୁ ଘେନେଇ ଦେଲା ଟୁପୁ ଟୁପୁ ବର୍ଷା—ଓକ୍ ଓ କୋନିଫର ମର୍ମର ସଙ୍ଗେ ମିଶି । ନିଦ ଭାଙ୍ଗିଲା ବେଳକୁ ପାହାନ୍ତିଆ; ଚନ୍ଦ୍ରିକାରେ ହସି ଉଠୁଛି ଚତୁର୍ଦ୍ଦିଗ । ଡେଙ୍ଗା ଡେଙ୍ଗା ପାହାଡ଼ ଶୃଙ୍ଗରେ ଘୂରି ବୁଲୁଛି ଚନ୍ଦ୍ରିକା, କୁହୁଡ଼ ପିଠିରେ ବସି, ଚନ୍ଦ୍ରାତୁର ମନ୍ଥରତାରେ; ଅଦ୍ଭୁତ ଏକ ପେଣ୍ଟିଂ, ଦିଗ୍‌ଦିଗନ୍ତବ୍ୟାପୀ—କେଉଁ ଶିଳ୍ପୀ ଏପରି ଆଙ୍କିବାର ଦେଖିନାହିଁ । ଏହି ଦୃଶ୍ୟ ସହିତ ଶୁଭ-ଦୃଷ୍ଟିର ଯୋଗ ମୋର ଘଟିଥିଲା, ହେଉ ପଛେ ମୁହୂର୍ତ୍ତେ; ସୁଖ ହିଁ ସବୁ-

କାଳେ ମୁହୂର୍ତ୍ତକର, ଯନ୍ତ୍ର ବା ସ୍ୱତନ୍ତ୍ର ତାର ପାର୍ଶ୍ୱ, ହରାଇବାର ବ୍ୟଥାରେ କରୁଣ ।

ଉଷା ଆସିଲା, କିନ୍ତୁ ବଉଦର ଅବଗୁଣ୍ଠନ ମଧ୍ୟରେ, ଶାନ୍ତଗମ୍ଭୀର, ସଂଯତ ତାର ପଦପାତ, ବିନମ୍ର ତାର ଗତି । ସ୍ୱର୍ଣ୍ଣ ପରିଧେୟଭୂଷା—ଏଥିଲାଗି । ତାର ମର୍ଯ୍ୟାଦା ହାନି ହୋଇନାହିଁ—ନମ୍ର ସ୍ୱଚ୍ଛତାରେ ସେ ତାର ସଦର୍ଥତାର ପରିଚୟ ଦେଲା—ସ୍ମିତ ତାର ଦୃଷ୍ଟିର, ବାକ୍ ବକ୍ରୋକ୍ତିର ।

## ଟ୍ରଲି ଯାତ୍ରା

ସୂର୍ଯ୍ୟ ଦେବର ଫାନ ଟିକିଏ ଢଳିଗଲା—କମାରଶାଳରେ ତାତି-ଥିବା ଲୁହା ପରି—ତାପରେ ଗିଳିଦେଲା ତାକୁ ମେଘର ବନ୍ୟାସ୍ରୋତ । କଥା ଅଛି—

ଉଇଁ ନ ଦିଶେ
ଭିତରେ ପଶେ
ବାପ ବୋଲେ ପୁତା ନିଶ୍ଚେ ବରଷେ ।

ଦୁଇ ପାହାଡ଼ର ମଝିକି ପୂର୍ଣ୍ଣ କରିଦେଲା ଧୂଆଁଳିଆ ମେଘ—ତଳେ କୁହୁଡ଼ି, ଉପରେ ଘନତର ମେଘ—କ୍ଷଣକ ମଧ୍ୟରେ ଉଭୟେ ଗାଢ଼ ଘୁପ୍ପାରେ ଉପତ୍ୟକାକୁ ଆଚ୍ଛନ୍ନ କରିଦେଲେ; ତାପରେ ବିନ୍ଦୁ ବିନ୍ଦୁ ବାରିପାତ—ଦୀର୍ଘ ବିଚ୍ଛେଦ ପରେ ଦୁଇବନ୍ଧୁଙ୍କ ମିଳନାଶ୍ରୁ ପରି ।

ତା'ର ମଧ୍ୟରେ ଅମର ପାହାଡ଼ ଉଠା—ଟ୍ରଲିରେ । ଟ୍ରଲିରେ ଦୁଇ ଜଣଙ୍କ ବସିବା ଲାଗି ଚୌକି—ପାଦ ଥୋଇବା ଜାଗା ଓ ଧରିବା ଲାଗି ହାଣ୍ଡେଲ୍ ଅଛି । ଏହିପରି ଦୁଇଶହ ଚୌକି ଯାଉଛି, ଆସୁଛି । ଗୋଟିଏ ସ୍ପନ୍ଦିତ ତାରରେ ଉଠୁଛି, ଆଉ ଗୋଟିଏ ଖସୁଚି । ତଳୁ ପ୍ରାୟ ପଚାଶ ଫୁଟ ଉଚ୍ଚ ତାରେ ତାରେ ଟ୍ରଲି ଚାଲିଛି । ତଳକୁ ଚାହିଁଲେ ମୁଣ୍ଡ ବୁଲାଇ ଯାଉଛି । ପଡ଼ିଲେ ଗୁଣ୍ଡା ହୋଇଯିବ—ତଳେ ପଥରମାନ ଆଁ

କରନ୍ତି, ସନ୍ଧ୍ୟାରେ ତାର କେତେ ପ୍ରକାର ଘାସ, ନାନା ବର୍ଣ୍ଣର ଅନାବନା ଫୁଲ । ଆଗ ଆଜ ପଛରେ ସୁନ୍ଦର ସୁନ୍ଦର ଦୃଶ୍ୟ; ଖଣ୍ଡ ମଧ୍ୟରେ ପ୍ରୀତି-ତୃପ୍ତି—ଚକ୍ଷୁରେ ଦେଖି ଲାଗିଲା; ଯେଉଁଠି ଟ୍ରଲି ଲାଗିଲା, ସେଠି ହାତ ଧରି ଓହ୍ଲାଇ ଦେବା ଲାଗି ଜଣେ ଲୋକ ଛିଡ଼ା ହୋଇଛି, ଆଉ ଜଣେ ପ୍ରତ୍ୟେକ ଯାତ୍ରୀଙ୍କର ଫଟୋ ନେଉଛି—ଟ୍ରଲିରେ ବସି ଯାତ୍ରା କରୁଥିବା ଦୃଶ୍ୟର । ଦାମ୍ ଗୋଟାଏ ଡଲାର୍ ।

ଟ୍ରଲି ପାଖରୁ ଯାଉଛି ଗୋଟିଏ ବସ୍ ପାହାଡ଼ ମଥାନକୁ । ଶୃଙ୍ଗରୁ ପୂର୍ବ ଆଡ଼କୁ ଅନାଇ ଦେଲି—କେତେ ଯୁଗର ଦୁଃଖ ଯେପରି କ ମୂହୂ-ର୍ତ୍ତକେ ପାସୋରି ଗଲା । କୁହୁଡ଼ି ପାହାଡ଼ ଚୂଳରୁ ଓହ୍ଲାଉଛି ଉପତ୍ୟକାକୁ ବହୁ ଦୂରତ ପାହାଡ଼ ମଧ୍ୟରେ ଗୋଟିଏ ହ୍ରଦ—ସୂର୍ଯ୍ୟାଲୋକର ପୁରା ଫୋକସ୍ ପଡ଼ୁଛି ତା ଉପରେ ମେଘକୁ ଫଟାଇ—ଉଷାକାଳର ପରବର୍ତ୍ତୀ ଶ୍ରୀ, ଯାହାକୁ ଉପେକ୍ଷା କରିପାରିଛନ୍ତି କବି, ଉଷା ବର୍ଣ୍ଣନାରେ ଉନ୍ମତ୍ତ । ମନରେ ଲଗିଗଲା ମୋର ସେଇ ଅଗ୍ନି ଶିଖା,—ଯାହା ଜଳୁଛି, ଜଳୁଛି ଚନ୍ଦ୍ରଉଦଆ ପରି; ସେଠୁ ଆସିବାର ବହୁ ଦିନ ପରେ ବ ।

## ଭୂତ ପାହାଡ଼

ଏଠି ଚଣ୍ଡୀଚରୁବୁଣୀ ବା ଭୂତପ୍ରେତ ନାହାନ୍ତି—ମୃତ ଅତୀତ ରହିଛି, ସେ ଅତୀତ ଲେହିତ-ଘରଖିପୁଙ୍କର । ସେମାନଙ୍କ ଘରଦ୍ୱାର ଦିନେ ଏଇ ପାହାଡ଼ ଚୂଳରେ ଥିଲା । ଉପନିବେଶକାରୀ ଫଉଜଙ୍କ ଗୁଳିରେ କେତେ ମଲେ, କେତେ ଗାଁ ଗଣ୍ଡା ଛାଡ଼ି ପଳାଇ ଗଲେ । ଘରଦ୍ୱାର ଶୂନ୍ୟ, ସେଇଥିରୁ କେତେକ ସଂରକ୍ଷଣ କରି ଯାଇଛି, ସେମାନଙ୍କ ବ୍ୟବହାର୍ଯ୍ୟ ଦ୍ରବ୍ୟ ସଜାଇ ରଖା ହୋଇଛି—ଲାଉ ତୁମ୍ବା, ଲଣ୍ଠନ, ଧନୁଶର, ତେବେ କେତେ ଘରଖିପୁଙ୍କର କେତେକ ମହମ ମୂର୍ତ୍ତି ମଧ୍ୟ ରଖାଯାଇଛି । ପୁରୁଣା ଦ୍ରବ୍ୟସମ୍ଭାର ଦେଖି ନୂଆ ଲୋକେ ଚଳାଇଛନ୍ତି ବ୍ୟବସାୟ । ପୁରୁଣାକୁ ଦେଖାଉଛନ୍ତି, ନୂଆ ଜିନିଷ ବିକ୍ରୀ କରୁଛନ୍ତି । ଯାଦୁଘର ଓ ଦୋକାନ, ରେଷ୍ଟୁରାଣ୍ଟ ଆଉ ଥିଏଟର—ଗୃହଦ୍ୱାର ଛ'ଶହ ଫୁଟ ଉଚ୍ଚ ପାହାଡ଼ ଚୂଳରେ ସହରଟି ଗଢା ହୋଇଛି ଏଇସ୍ବାକୁ

ଯେଉଁ । ସୁଇସ୍ ବାସିନ୍ଦା ନାହାନ୍ତି କହିଲେ ଚଳେ, ଭ୍ରମଣକାରୀଙ୍କ ଭିଡ଼ ସବୁବେଳେ, କେବଳ ଶୀତ କାଳକୁ ଛାଡ଼ ।

ଦୁଇ ଡଲର୍ ଦେଇ ଟିକେଟ୍ କିଣିବାକୁ ହୋଇଥିଲା । ଭାବିଥିଲି —କିଛି ମଜା ଥିବ, ଥିଲା । ବ୍ୟାଙ୍କ୍ ଡକାୟତି ! ଏ ଦେଶର ଏକ ନିତ୍ୟନୈମିତ୍ତିକ ଘଟଣା । ମୋଭି ବା ଟେଲିଭିଜନ୍‌ରେ ଏଇଭଳି ଚମତ୍କାରପ୍ରଦ କିଛି ଥାଏ— ବହୁ ଅର୍ଥ ଓ ଅନର୍ଥର ରୋମାଞ୍ଚକର କାହାଣୀ, ଭିନ୍ନ ଉତ୍ତେଜକ । ଲେହିତ-ଘରଷିପ୍ତଙ୍କ ନାମରେ ଗୌରାଙ୍ଗମାନେ ଏହି ଅଭିନୟ ପ୍ରଦର୍ଶନ କଲେ । ଦୁଇଜଣ ଲୋହିତଘରଷିପ୍ତ ବ୍ୟାଙ୍କ୍‌ରୁ ଗୋଟାଏ ଲୁହା ବାକ୍‌ସ ଉଠାଇ ଆଣିଲେ, ଗାର୍ଡ଼ମାନେ ଗୁଳି କଲେ । ସେଥିରେ ଦୁଇ ଜଣଯାକ ମରି ଶୋଇଲେ । ଡକାୟତମାନେ ପ୍ରକୃତରେ ମରିଛନ୍ତି କି ନାହିଁ ଡାକ୍ତର ଆସି ପରୀକ୍ଷା କଲେ । ସେତେବେଳେ ମଲା ଲୋକ ନାନା ପ୍ରକାର ଖେଳ ଦେଖାଇ ହାସ୍ୟ ସୃଷ୍ଟି କଲେ । ମୋତେ ଚମତ୍କାରପ୍ରଦ ବୋଧ ନ ହେଲେ କଣ ହେଲା, ଏ ହାସ୍ୟକର ପ୍ରହସନ ଦେଖିବା ଲାଗି ଦର୍ଶକ ଢେର—ବିଶେଷତଃ ଭ୍ରମଣବିଳାସୀ କିଶୋର ।

ତାପରେ ଗୋଟିଏ ନୃତ୍ୟ ଦେଖିଲୁ, ରେଷ୍ଟୁରାଣ୍ଟର ବ୍ୟବସାୟୀ ରଙ୍ଗମଞ୍ଚରେ । ଆମେ ଟେବୁଲରେ ବସିସାରିଲା ପରେ ଆସିଲେ ଜଣେ ସୁନ୍ଦରୀ, ଭେଲ୍‌ଭେଟ୍‌ ପରିଧେୟା, ହସ୍ତେ ତାଙ୍କ ପାନପାତ୍ର ଧରି । ଭଙ୍ଗାଧରେ ମନ୍ଦ ହସି ପଚାରିଲେ—ପାନୀୟ ? 'ନାହିଁ, ଧନ୍ୟବାଦ' ।

ଏମିତି ସ୍ୱାସ୍ଥ୍ୟବତୀ, ସୁନ୍ଦରୀ ହସ୍ତରୁ ପାନପାତ୍ର ଗ୍ରହଣ ଚିରକାଳ ସୌଭାଗ୍ୟର କୋଳ ପରିଗଣିତ, ବିଳାସ ବ୍ୟସନଶୂନ୍ୟ କମା ପରି ଶୁଚିବାୟୁଗ୍ରସ୍ତ ଶିକ୍ଷକଙ୍କୁ ନ ରୁଚିଲେ କଣ ହେଲା ? ନୈତିକ ମାନ-ଦଣ୍ଡରେ ଜୀବନକୁ ମାପି ମୂଲ୍ୟାଙ୍କନ କରିବା ଅଯଥାର୍ଥ, ସେଇ ମାପଯନ୍ତ୍ରଟି ସର୍ବତ୍ର ସମାନ ନୁହେଁ; ଦେଶକେ ଫାଙ୍କ୍, ନଈକେ ବାଙ୍କ୍ ।

ମଦ୍ୟ ପରିବେଷଣ ପରେ ଚାରିଜଣ ଯୁବତୀ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହେଲେ । ଗୌରାଙ୍ଗୀଙ୍କୁ କଳ୍ପଳ ଭେଲ୍‌ଭେଟ୍, ଗୁଣ୍ଡିର ଜରିସବୁ ଆଲୁଅରେ ଚକ୍‌ଚକ୍ କରୁଥାଏ—ଓସ୍ତାଦ୍ ପିଆନୋ ବଜାଉଥାନ୍ତି—ସେ କେଉଁ

ସଙ୍ଗୀତ କଲେଜର ଅଧ୍ୟାପକ; ବିଜ୍ଞାପନ ହୋଇଥାଏ । ପୂର୍ବ ଜଲଗ୍ରାମାନଙ୍କର ଯୌନଭଙ୍ଗୀ 'ଲଟଡ଼ା'ର ଏକ ଅନୁକରଣ । ବୃକ୍ଷମାନେ କଉଛାଳ ଦେଇ ଏଇ ଦୃଶ୍ୟ ଯେପରି ଉପଭୋଗ କରୁଥାନ୍ତି ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଏ ଦେଶର ଜୀବନ ତ ଏଇଆ !

କିନ୍ତୁ ଗୋଟାଏ 'ଫନ୍' ଦେଖାଇବାକୁ ହେବ —ଯୁବତୀର ଯୌବନ ହୋଇଛି ଥୋପ, ଯୁବକଙ୍କ ଗାଲସିରେ ଲଗାଇ ଓଟାରିବା ପାଇଁ । ଲଜ୍ଜା ସଙ୍କୋଚହୀନା ଏଇ ସୁନ୍ଦରୀମାନେ ମୋଟା ଦରମାରେ ରେଷ୍ଟୁରାଣ୍ଟରେ ଚାକିରି କରନ୍ତି । ସୌନ୍ଦର୍ଯ୍ୟର ଗୋଟାଏ ସ୍ଥୂଳ ମୂଲ୍ୟ ସ୍ୱୀକୃତ ହୋଇଛି । ଡିପାର୍ଟମେଣ୍ଟାଲ ସପ୍, ରେଷ୍ଟୁରାଣ୍ଟ, ସବୁଠି ।

ଚତୁର୍ଦ୍ଦିଗର ଦୃଶ୍ୟ ଅଦ୍ଭୁତ । ତରଙ୍ଗିତ, ବିସ୍ତୃତ ଗିରିର ମାପୁ— ମନକୁ ଉଚ୍ଛୃଙ୍ଖଳ କରିଦିଏ, ଯୋଗନିଷ୍ଠ; ନିର୍ବାତ. ନିଷ୍କମ୍ପ ଅଗ୍ନି ଶିଖା ଭଳି, କିନ୍ତୁ ତାହା ବୈରାଗ୍ୟର ନୁହେଁ, ସୌନ୍ଦର୍ଯ୍ୟର, ଏଥିରୁ ଜନ୍ମଲଭେ କରେ ପ୍ରୀତି—କାବ୍ୟ କଳାର । 'ସୁନ୍ଦର' ସହିତ ମନର ଏକ୍ୟ ଯୋଗ ଅଦ୍ଭୁତ ।

ଟ୍ରେନରେ ନ ହେଁ ଆମେ ଆସିଲୁ ଏକ ଗଣ୍ଡୋଲା ରେଲ ଗାଡ଼ିରେ । ତାରରେ ବାଲାନ୍ସ ରଖାଯାଇ ଗୋଟିଏ ଗାଡ଼ି ଉପରକୁ ଉଠୁଛି, ଅନ୍ୟ ଗୋଟିଏ ତଳକୁ ଖସୁଛି—ହଠାତ୍ ଏତେ ତଳକୁ ଯେ ମନେ ହୁଏ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବୁ । ଦଶମିନିଟ୍ ମଧ୍ୟରେ ଆମେ ପାହାଡ଼ ଚୂଳରୁ ଖସି ଆସିଲୁ 'ଡେରେକ' ମଝିକୁ ।

## ଗୋଟିଏ ଲୋହିତଭାରତୀୟ ଗ୍ରାମ

ପାହାଡ଼ରେ ନିବିଡ଼ ଜଙ୍ଗଲ, ଝରିଯାଉଛି ଗୋଟିଏ ଝରଣା, କ୍ଷୀଣସ୍ରୋତା । ଝରଣାର କୂଳେ କୂଳେ ବଙ୍କାଡ଼ଙ୍କା ବାଟରେ ଯାଇ ଆମେ ପହଞ୍ଚିଲୁ 'ଓକୋନାଲୁପ୍ଟି'ରେ; ଏଠି କେହି ରହନ୍ତି ନାହିଁ, ଏ ଯୁଗର କୌଣସି ଲୋକ ରହିବାକୁ ପସନ୍ଦ କରିବ ନାହିଁ । ଏହା ଗୋଟିଏ ଲୋହିତଭାରତୀୟ ପ୍ରଦର୍ଶନୀ ଗ୍ରାମ, ପ୍ରାଚୀନ ରୀତିରେ ନିର୍ମିତ । ନିର୍ଦ୍ଦିଷ୍ଟ ସମୟରେ ଅଫିସ ଘର ଖୋଲେ; ବନ୍ଦ ହୁଏ । ଦେଖିବା ଲାଗି ଦେଢ଼

ଡଲାର୍ ଟିକେଟ୍ ଲାଗେ । ଜୀବନ୍ତ ସ୍ଥାୟୀ ବାସିନ୍ଦାଙ୍କ ମଧ୍ୟରେ ନଦୀର ମତ୍ସ୍ୟ, ଅରଣ୍ୟର ପକ୍ଷୀ, ପ୍ରଜାପତି ଓ ପତଙ୍ଗ ।

ଗୋଟିଏ ମୃତ ସଭ୍ୟତାକୁ ଉଜ୍ଜୀବିତ କରି ଦେଖାଇବା ପ୍ରୟାସ ହୋଇଛି; ଏଇ ଗ୍ରାମରେ କେତେକ ଶିଳ୍ପୀ ବା ଶିଳ୍ପିନୀ ଅଛନ୍ତି, ଲୋହିତ ଭାରତୀୟ ଶିଳ୍ପରେ ନିପୁଣ ବା ନିପୁଣା । ବର୍ତ୍ତମାନ ଅଭିନେତା ବା ଅଭିନେତ୍ରୀ ସେମାନେ । ପାରମ୍ପରିକ ବେଶପୋଷାକ ପିନ୍ଧି ସେମାନେ ପ୍ରାଚୀନ ଚଳଣିର ଅଭିନୟ କରନ୍ତି । ଶିଳ୍ପୀ ଓ ଗାଇଡ୍ ସମସ୍ତେ ଲୋହିତଭାରତୀୟ ।

ପୁରୁଷ ପିନ୍ଧିଚି ବିଚିତ୍ର ରଙ୍ଗୀନ୍ କନ୍ଥା—ଗଳାରେ ମାଳ, ମୁଣ୍ଡରେ ପକ୍ଷୀ ପରର ଟାହିଆ । ସ୍ତ୍ରୀର ଲାଲ୍‌ଘେର, ଗଳାରେ ଗୋଛ ଗୋଛ ମାଳ—ଜୁଆଙ୍ଗ ସ୍ତ୍ରୀ ପରି ଦିଶୁଛି । ଆମର ଗାଇଡ୍ 'ଜୟ ସ୍ମିଥ୍' ଲୋହିତଭାରତୀୟା; ଶିକ୍ଷିତା, ଚଳଣିରେ ସର୍ବତୋଭାବେ ଆଧୁନିକା—ହୁଏତ ଲୋହିତଭାରତୀୟ ସଂସ୍କୃତିର ଧାର୍ ଧାରେ ନାହିଁ; ଜୀବିକା ଅର୍ଜନ ଲାଗି ସେ ଏ ବେଶ ଧାରଣ କରିଛି । ଏ ଗାଆଁରୁ ଫେରିଲେ ସେ ଆମେରିକାନ୍ ବେଶ ପିନ୍ଧି ଦୋକାନକୁ ଯାଏ ବା ଘରେ ଟେଲିଭିଜନ ଦେଖେ । ସମ୍ପୂର୍ଣ୍ଣ ବ୍ୟବସାୟୀ ଭିତ୍ତିରେ ଏ ପ୍ରଦର୍ଶନୀ ଚାଲିଛି, ଟିକେଟ୍ ବିକ୍ରୟ ଲବ୍‌ଧ ଅର୍ଥରେ ଚଳେ ।

ଜୟ ପ୍ରଥମେ ଆମକୁ ଗୋଟିଏ କୁଟୀରକୁ ନେଲା , କାଠ ଗଣ୍ଡି ଉପରେ ଗଣ୍ଡି ଗଦା ହୋଇ କାନ୍ଥ ତିଆରି ହୋଇଛି । ଛାତରେ ମଧ୍ୟ ପାଖକୁ ପାଖ ଲଗାଲଗି ହୋଇ କାଠ ପଡ଼ିଛି, ତା ଉପରେ ମାଟି ବିଛା ହୋଇଛି, ଘାସ ଲଗାହୋଇଛି । ମାଟି ଭେଦକରି ପାଣି ତଳକୁ ଗଳେ ନାହିଁ । କୁଟୀରରେ ଚଟେଇ ଉପରେ ବସିଛନ୍ତି ଦୁଇଜଣ ଲୋହିତ-ଭାରତୀୟା ବୃଦ୍ଧା, ମାଳ ଗୁନ୍ଥୁଛନ୍ତି; କନା ଉପରେ ବିଭିନ୍ନ ଡିଜାଇନ୍‌ରେ ମାଳ ଖଞ୍ଜୁଛନ୍ତି । କାହା ଆଡ଼କୁ ଚାହୁଁ ନାହାନ୍ତି—ସତେ ଅବା ନିଜ କାମରେ ବୁଡ଼ି ରହିଛନ୍ତି ।

ତତ୍‌ପରବର୍ତ୍ତୀ କୁଟୀରରେ ବୁଣାବୁଣି କାର୍ଯ୍ୟ ଚାଲିଛି—ଟୋକେଇ, ବାଉଁଶିଆ ବା ଖେଚେଇ ଜାତୀୟ ଜିନିଷସବୁ—କାଠ

ମାଛଅଟରେ, କେତେରେ ବୁଣା; ଏଠି ତ ବାଉଁଶ ମିଳେ ନାହିଁ । ଲଉତୁମ୍ବା ମଧ୍ୟ ତିଆରି ହେଉଛି । ଏଥିରେ ଲେମ୍ବତ ଭରଣ୍ଡପୁମାନେ ନିଜର ବ୍ୟବହାର ଲାଗି ନଈରୁ ପାଣି ବୋହି ଆଣୁଥିଲେ । ନଦୀ ସ୍ରୋତରୁ ଗୋଟାଇ ଆଣିଥିବା ସାଉଁଳିଆ ପଥରରେ ଜଣେ ବୃଦ୍ଧ ଶରମୁନ ତିଆରି କରୁଛି । ହରିଣ ଶିଙ୍ଘରେ ଟିକିଏ ଟିକିଏ ଭାଙ୍ଗି ସେଇ ଗୋଡ଼ିକ ଗୋଜିଆ ବା ମୁନିଆଁ କରୁଛି । ଲେମ୍ବତଭରଣ୍ଡପୁମାନେ କାଠିରେ ଏଇ ପଥରକୁ ଯୋଖି ଶର ତିଆରି କରି ବନ୍ୟ ଜନ୍ତୁଙ୍କ ଶିକାର କରୁଥିଲେ ।

ଆଉ ଏକ କୁଟୀରରେ ପ୍ରଦର୍ଶିତ ହୋଇଛି ଗୋଟିଏ ଯନ୍ତ୍ର, ହରିଣ ବା ଘୁଷୁରି ଶିକାର ଲାଗି—ଠିକ୍ ଆମ ଅଣ୍ଟାଣି ପରି; ଅଣ୍ଟାଣିରେ ଯେମିତି ମାଛ ପଶିଗଲେ, ବାହାରି ଆସି ପାରନ୍ତି ନାହିଁ, ଏ ଯନ୍ତ୍ରରେ ସେହିପରି । ମୁନିଆ କାଠସବୁ ଭିତରକୁ ଯାଇଛି, ଜନ୍ତୁ ପଳାଇବାକୁ ଚେଷ୍ଟା କଲେ ତା ଆଖିରେ ନାକରେ ପଶିଯିବ । ତା ପାଖରେ ରଖା ହୋଇଛି ଗୋଟିଏ ପକ୍ଷୀଧରା ଜନ୍ତା; ଏଥିରେ ଦେବାତ୍ ଗୁଣ୍ଡୁଚିମୂଷା ପଡ଼ିଗଲେ ବି ବାହାରି ଆସିପାରେ ନାହିଁ । ପକ୍ଷୀଜନ୍ତା ପାଖରେ ରଖା-ହୋଇଛି ଗୋଟିଏ ଲମ୍ବା ନଳ, ସେଥିରେ ହାଲୁକା ଶର ପୂରାଇ କୋଣ ଲୁଚି ବସେ—ନଳଟି ଫୁଙ୍କିବା ମାତ୍ରେ ୮ । ୧୦ ଫୁଟ ଦୂର ଯାଇ ଶର ଶିକାର ଦେହରେ ବାଜେ । କୌଣସି ଶବ୍ଦ ହୁଏ ନାହିଁ । ଜଣେ ଲେମ୍ବତ ଭରଣ୍ଡପୁ ଏହିପରି ଶର ଫୁଙ୍କି ଲକ୍ଷ୍ୟ ଭେଦ କଲା ।

ଅନ୍ୟ ଏକ ସ୍ଥାନରେ ଦୁଇଟି 'କାନୋ' ବା ଡଙ୍ଗା ରଖାଯାଇଛି । ଲେମ୍ବତଭରଣ୍ଡପୁଙ୍କ 'କାନୋ' ନିର୍ମାଣ ପ୍ରଣାଳୀ ଅଭିନବ; ସେମାନେ କାଠଗଣ୍ଡିରେ ନିଆଁ ଲଗାଇ ଦିଅନ୍ତି—ନିଆଁ କାଳେ ଅସମାନଭାବରେ ଖାଇବ, ବେଶୀ ଖାଇଯିବ, ଏଥିଲାଗି କାଦୁଅ ଲେପିଥାନ୍ତି; କାଠ ଅଧା ପୋଡ଼ିଗଲା ପରେ ନିଭାଇ ଦିଅନ୍ତି, ସାଧାରଣ ଏଠି ସେଠି ସାମାନ୍ୟ ଅସ୍ତ୍ର ଚାଳିଦେଇ, ସମାନ ଓ ସୁଡ଼ୋଳ କରିବା ଲାଗି; ସେମାନେ କାନୋ ଉପରେ ବହଳ କରି ପଶୁର ଚର୍ବି ବୋଳି ଦିଅନ୍ତି । ଏଇ କାନୋ ସାହାଯ୍ୟରେ ଲେମ୍ବତଭରଣ୍ଡପୁମାନେ ନଦୀ ପାର ହୋଇଥାନ୍ତି ।

ଗହମ ବା ମକ୍କା ଗୁଣ୍ଡ କରିବା ଲାଗି ସେମାନେ ଆମ ଅଧିବାସୀ ଅଞ୍ଚଳର ମୁଷଳ ପରି ଏକ ମୁଷଳ ବ୍ୟବହାର କରୁଥିଲେ—ଏହାର ଊର୍ଦ୍ଧ୍ୱାଗ୍ର ସ୍ଥୂଳ, ତଳର ମୋଟା ଗଣ୍ଡିରେ ଭଗଣ୍ଡି ଖୋଳା ହୋଇଥାଏ ।

ଏତିକି ଦେଖାଇ ଦେଇ ଆମ ଗାଇଡ଼ ଜସ୍ ସ୍ମିଥ ବିଦାୟ ନେଲେ । ବିଦାୟ ବେଳେ ହସି ହସି କହିଲେ—କଲମ୍ବସ ଆମକୁ ଖୋଜିବାକୁ ଯାଇ ତୁମକୁ ଆବିଷ୍କାର କରିଥିଲେ—ମୁଁ ଭାରତୀୟ, ତୁମେ ଲୋହିତଭାରତୀୟ—ମୁଁ ଆଜି ତୁମକୁ ଖୋଜିବାକୁ ଆସିଛି—ତାର ପରିଣାମ 'ଜସ୍'—ମାନେ ଆନନ୍ଦ ।

ତାପରେ ଦେଖିଲି—ଅନେକ ଗୁଳିଛନ୍ତି; କୁଆଡ଼େ ? ମୁଁ ସେମାନଙ୍କ ପିଛା ଧରିଲି । ଗୋଟିଏ ବର୍ତ୍ତୁଳାକାର ପ୍ରାଙ୍ଗଣ—ଏହାର ଚାରିପଟେ ଫାଳିକିଆ କାଠଗଣ୍ଡିର ବେଞ୍ଚ ପଡ଼ିଛି । ଜଣେ ଲୋହିତ-ଭାରତୀୟ ଯୁବକ ଏଠି ଛିଡ଼ା ହୋଇଛି—ସୁସ୍ଥ, ସବଳ; ଟାଣ ଦେହ, ମସ୍ତକରେ ପକ୍ଷୀ ପୁଚ୍ଛର ମୁକୁଟ । ସେ ପ୍ରାଚୀନ ଯୁଗରେ ପ୍ରଚଳିତ ଲୋହିତ-ଭାରତୀୟଙ୍କ ସାମାଜିକ ଜୀବନ ସମ୍ପର୍କରେ ଇଂରେଜୀରେ ବୁଝାଇଲା—ସେମାନେ ସାତ ଭାଗରେ ବିଭକ୍ତ ଦେଶେଶର ଅଧିବାସୀଗୋଷ୍ଠୀଙ୍କୁ ସ୍ମରଣୀୟ କରି ରଖିବା ଲାଗି ସାତକୋଣିଆ ଘର ନିର୍ମାଣ କରୁଥିଲେ, ଦୁଇ ବାହାରେ ଧାଡ଼ିଠାଏ ଲେଖାଏ ଇଗଲ୍ ପର ବାନ୍ଧି ଇଗଲ୍ ନୃତ୍ୟ କରୁଥିଲେ । ଦେବତା, ଗୁରୁ ଓ ଜାତିକୁ ପ୍ରଣାମ କରି ନୃତ୍ୟାରମ୍ଭ ହେଉଥିଲା—କଇଞ୍ଚ ଖୋଳପାରେ ଗୋଡ଼ି ପୁରାଇ ଜଙ୍ଘ ବା ଫେଣ୍ଟାରେ ବାନ୍ଧୁଥିଲେ—ନାଚୁଆ ବା ନାଚୁଣୀର ପାଦର ବାଡ଼ୁଅ ଏ, ନୃତ୍ୟର ତାଳେ ତାଳେ ବାଜୁଥିଲା ।

ନୃତ୍ୟରେ ବହୁ ମୁଖା ଓ ରଙ୍ଗୀନ୍ ପକ୍ଷୀପୁଚ୍ଛ ବ୍ୟବହୃତ ହେଉଥିଲା । ଜ୍ୱର ରୋଗୀକୁ ଚିକିତ୍ସା କରିବାର ରୀତି ଅବଶ୍ୟ ଅଭିନବ ନୁହେଁ, ଦେହକୁ ଅଧିକ ଉତ୍ତପ୍ତ କରି ଦେହର ଉତ୍ତାପ ସେମାନେ ଦୂର କରୁଥିଲେ । ବମ୍ପ ଆଣି ଦେଇ ଜର ଛଡ଼ାଇବା ଆମ ଆଡ଼େ ମଧ୍ୟ ଏକ ପ୍ରଚଳିତ ରୀତି ଥିଲା । କମ୍ବଳରେ ଶରୀର ଆବୃତ କରି ଗରମ ପାଣି

ମାଡିଆର ବାମ୍ପଙ୍କୁ ନାସାରେ ଗ୍ରହଣ କରିବାକୁ ହୁଏ । କିନ୍ତୁ ସମସ୍ତ ପରେ ଖାଲି ବଢ଼େ, ଜର ଉପୁଡ଼ାଇ ଆସେ ।

ପ୍ରାୟ ଉପର ବେଳା; ଲେକ୍ସଡ-ଭାରଗ୍ନାପ୍ ଗାମରୁ ଏକ ସମତଳ ପଥରେ ଆମେ ଗ୍ଲେଫେରିଲୁ । ବାଟରେ କେବଳ ଶସ୍ୟକ୍ଷେତ୍ର, ସହର, କୃତ୍ରିମ ଅରଣ୍ୟ । ମନରେ ଏକ ଇଚ୍ଛା ପଡ଼ିଥିଲା—କର୍ଦମାକ୍ତ ସ୍ରୋତ; ଚକ୍ଷିରେ ପ୍ରତିଫଳିତ ହୋଇପାରୁ ନଥିଲା କୌଣସି ନୂତନ ଦୃଶ୍ୟ; ସ୍ନୋକ, ଚେରୋକ ପରି ମଧୁର, ମହଣୀୟ ଏଠି ଆଉ କଣ ଅଛି ? ଶ୍ରେଷ୍ଠ ଦେଖି ଆସିଲା ପରେ ସାଧାରଣ କଣ ଆଖିରେ ପଡ଼େ ?

## ଧରମ ମାଆ (୫.୭.୭୭. ଗ୍ଲେ)

ଆଜ ଗ୍ଲେରୁ ସେଣ୍ଟଲୁଇସ୍ ଫେରିଯିବାର କଥା । ଜିନିଷପତ୍ର ବନ୍ଧାବନ୍ଧି ସରିଛି । ରାଜୁର ଟ୍ରାଭେଲ୍ ଏଜେଣ୍ଟଙ୍କୁ ପଚାରିବାରୁ ସେ କହିଲେ—ଧର୍ମଘଟ; ନ' ତାରିଖ ପର୍ଯ୍ୟନ୍ତ ଉଡ଼ାଜାହାଜ ଟିକେଟ୍ ମିଳିବ ନାହିଁ । ହଜାରେ ମାଇଲ୍ ବାଟ, ତିନି ଜାଗାରେ ଗାଡ଼ି ବଦଳେଇବାକୁ ପଡ଼ିବ, ପୁରା ଦୁଇ ଦିନ ଲାଗିବ, ବସ୍‌ରେ ଯିବାକୁ ସାହସ ହେଲା ନାହିଁ । ପାଞ୍ଚଦିନ ଅଟକି ରହିବାକୁ ବାଧ୍ୟ । କିନ୍ତୁ ଏଠି କଣ ଅଛି ଦେଖିବାକୁ ?

କଣ କରିବ, ଭାବୁଛି—ଏତିକିବେଳେ ରାଜୁର ଧରମ ମାଆ ଆସି ପହଞ୍ଚିଗଲେ,—ମିସେସ ଫ୍ରାନ୍‌ସିସ୍ ଏର୍‌ଡ଼ଲିସ—ବୟସ ଷାଠିଏ ଟପିଛି, ମୁଣ୍ଡ ଲଣ୍ଡା; ହାତରେ ଘଡ଼ିଟିଏ, ତା ଛଡ଼ା କୌଣସି ମଣ୍ଡନ ବା ଭୂଷଣ ନାହିଁ । ତାଙ୍କ ସ୍ୱାମୀ ନର୍ଥକାରୋଲାଇନା ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିଲେ, ବିଶିଷ୍ଟ ସମାଜବିଜ୍ଞାନୀ ଭାବରେ ଦେଶରେ ତାଙ୍କର ସୁନାମ ଥିଲା । ମାତ୍ର ୪୭ ବର୍ଷ ବୟସରେ ସେ ପ୍ରାଣତ୍ୟାଗ କଲେ । କୌଣସି ଡାକ୍ତର ତାଙ୍କର ରୋଗ ଚିହ୍ନିପାରିଲେ ନାହିଁ । 'ଟିଉମର୍' ବୋଲି ଅପରେସନ୍ ହେଲା, କିନ୍ତୁ ଟିଉମର୍ ନୁହେଁ, ଆଉ କିଛି; ମୃତ୍ୟୁଯୋଗ ଥିଲେ ଏହିପରି ଅଜଣା ବ୍ୟାଧି ଘୋଟେ, ଡାକ୍ତର, ବୈଦ୍ୟଙ୍କ ଚିକିତ୍ସାର ଅଜ୍ଞାତ କୌଣସି ରୋଗ ରୂପରେ ସ୍ୱୟଂ କାଳ ଆସି ପହଞ୍ଚିଯାଏ । ଅନ୍ଧକାର ମଧ୍ୟରେ ବୁଦ୍ଧି ବଣା ହୋଇଯାଏ । ଅଧ୍ୟାପକଙ୍କର ମୃତ୍ୟୁ ହେଲା । ପ୍ରାୟ ଦଶ ବର୍ଷ୍

ଚଳେ; ମିସେସ୍ ପୁନର୍ବିବାହ ନ କରି ଭାଗ୍ୟକୁ ଆଦର କରି ରହିଛନ୍ତି, ଝିଅ ମୁହଁକୁ ଚାହିଁ । ତାଙ୍କର ଏକମାତ୍ର କନ୍ୟା—ସନ୍ଧ୍ୟା, ବୟସ ଚଉଦ ।

ମୀନାକୁ ଯେ ଝିଅ କରିଛନ୍ତି, ପ୍ରଥମେ ଯେଉଁଦିନ ଦେଖିଲେ, ସେହି ଦିନରୁ । ଆମେରିକାର ଜଣେ ସୁଶିକ୍ଷିତା ମହିଳା ଭାରତର ଜଣେ ସ୍ୱଳ୍ପଶିକ୍ଷିତାକୁ କରିଛି ଝିଅ । ମୀନା ଇଂରେଜୀରେ ପଦେ ପଦେ କଥା କଷ୍ଟେମଷ୍ଟେ କହୁଛି । କିନ୍ତୁ ସ୍ନେହ କଣ ଜାତିଭେଦ, ଭାଷାଭେଦ ମାନେ ? ମିସେସ୍ ମଝିରେ ମଝିରେ ମୀନାକୁ ଦେଖିବାକୁ ଆସନ୍ତି, କିଛି କିଛି ଉପହାର ମଧ୍ୟ ଆଣନ୍ତି ।

ସିନ୍ଧିଆକୁ ଦେଖିବା ଲାଗି ଧରମମାଆଙ୍କ ଘରକୁ ଗଲି । ମିସେସ୍‌ଙ୍କୁ ଦେଖିବାମାତ୍ରେ ତାଙ୍କ ପାଳିତ ଦୁଇଟି କୁକୁର ଦୌଡ଼ି ଆସିଲେ—ଲମ୍ବା ଲମ୍ବା ଝାମ୍ପୁରି ଝାମ୍ପୁରି ବାଳରେ ଆଖି ଘୋଡ଼ାଇ ହୋଇ ପଡ଼ୁଛି, ବର୍ଣ୍ଣ କଳା, ଗଢ଼ନ୍ ଗ୍ରେଟ । ସେମାନଙ୍କ ପଛରେ ଦୌଡ଼ି ଆସିଲା ଗୋଟିଏ ବଗଡ଼, ତା ପଛରେ ଛୁଆଟିଏ । "ଆଉ ଥରେ ଛଅଟି ଛୁଆ ଜନମ କରିଥିଲା, ଏଥର ଗୋଟିଏ, କାହିଁକି କେଜାଣି ?" —ମିସେସ୍ କହିଲେ । —ପଚାରିଲି ସେ ସବୁ କାହାନ୍ତି ?

'ବାଣ୍ଟି ଦେଇଛି; ଗୋଟିଏ ନେଲେ······ ଆଉ ଗୋଟିଏ······' କହୁ କହୁ କୁକୁରଟିଏ ମୋ ଉପରକୁ ଚଢ଼ି ଆସିଲା—ମିସେସ୍ ତାଗିଦ୍ କରିଦେଲେ—ଅଡଥି !

କୁକୁର ତାଙ୍କ ପିଛା ଧରିଲା—ମୁଁ ପଛେ ପଛେ ଗଲି ବୈଠକ ଘରକୁ ; ଜିନିଷପତ୍ର ଇତସ୍ତତଃ ପଡ଼ିଛି; ସଜାଡ଼ିବାକୁ ମିସେସ୍‌ଙ୍କର ଆଗ୍ରହ ନାହିଁ ଯେପରି, ଘର ଅପରିଚ୍ଛନ୍ନ; ବହୁ ପୁସ୍ତକ ଏ ଘରେ, ସେ ଘରେ, ତା ପାଖ ଘରେ; ଅଧ୍ୟାପକଙ୍କ ପୁସ୍ତକପ୍ରୀତି ଅସାଧାରଣ ଥିଲା, ମିସେସ୍ ତାଙ୍କର ଅଯୋଗ୍ୟା ନ ଥିଲେ; ସେ ଜଣେ ଉତ୍ତମ ପାଠିକା । ଆର୍ଥିକ ସ୍ୱଚ୍ଛଳତା ନ ଥିଲେ ବି ସେ ଏବେ ପୁସ୍ତକ କ୍ରୟ କରନ୍ତି—ପଢ଼ିବା ତାଙ୍କର ଗୋଟିଏ ନିଶା । ପୁସ୍ତକ ପ୍ରତି ଯେତେ ଦୃଷ୍ଟି, ଘରଦ୍ୱାର

ପ୍ରଶ୍ନ ନାହିଁ । ମାଆ ଓ୍ୱିଲଟରେ ଝିଅ । ଗୃହର ଆସବାବ୍ ଅବିନ୍ୟସ୍ତ । ଶେଯ ଉପରେ ଦୁଇଟା କୁକୁର ଶୋଇଛନ୍ତି—ସନ୍ଧ୍ୟାର ଖେଳନା ଏ; ଘରପାଳ କେତେ ଓଜାଇନ୍‌ର କୁକୁର । ସିନ୍ଥିଆର ପିଲାକଥା ମନ କ୍ଷେଳଣାରୁ ଛୁଡ଼ନାହିଁ—ଯନ୍ତ୍ର ବା ଜୀବନର ବୃନ୍ଦାବନର ଶୀତା ଷଡନୋଦରେ ସେ ଯୋଗ ଦେଇଛି—ଡେଟିଂ କରୁଛି, ବର ବାଛୁଛି ସେ । ମିସେସ୍ ସୂଚନା ଦେଲେ ।

ଗୋଟାଏ ପଟେ ପ୍ରସାଧନ ସାମଗ୍ରୀ, କାନ୍ଥ ଦର୍ପଣ, ଆର ପାଖ କାନ୍ଥ ଆଲମିରାରେ ପଢ଼ାବହି; ସିନ୍ଥିଆ ହାଇସ୍କୁଲରେ ପଢ଼େ । ଘରକାମ ସିନ୍ଥିଆକୁ ବାଧେ ନାହିଁ; ଗୃହକର୍ତ୍ତୀ ହାତରେ କାମ କରିବାକୁ ଚାକିରିରେ ଧନ ନାହିଁ । ଏକମାତ୍ର ସନ୍ତାନ ବୋଲି ମାଆ ଅଳିଲି ଝିଅକୁ ଆକଟ କରେ ନାହିଁ । କଣ ବା କରିବ, ନିଜେ ତ ସେଇଆ । ଘରେ ଉଦାସୀନତା ର ରାଜତ୍ୱ—କାରୁଣ୍ୟର ହାହାକାର ।

ମିସେସ ମଧ୍ୟ ତାଙ୍କ ପିତାଙ୍କର ଏକମାତ୍ର କନ୍ୟା । ତାଙ୍କ ପିତା ଜଣେ କୃଷକ ଥିଲେ । ତାଙ୍କର କିଛି ଜମିବାଡ଼ି ଥିଲା । ସେଥିରେ ଗହମ, ମକ୍କା ଆଦି ଫସଲ ହେଉଥିଲା; ତାଙ୍କର ମେଣ୍ଢା, ଘୁଷୁରି, କୁକୁଡ଼ା ଫାର୍ମ ଥିଲା । ଉତ୍ତରାଧିକାରିଣୀ ହିସାବରେ ମିସେସ୍ ଜମିବାଡ଼ି ପାଇଛନ୍ତି । ଅଧିକ ଫସଲ ହେଲେ ଦର ଶସ୍ତା ହେବ ବୋଲି ସରକାର ଉତ୍ସାହ ଦିଅନ୍ତି ନାହିଁ । ଫଳରେ ଜମିରେ ଘାସ ମାଡ଼ି ଯାଇଛି—ଏବେ ଘାସଣା ପଡ଼ିଆ । ତେବେ ଏହାର ଅବସ୍ଥିତି ଚମତ୍କାର—ଠିକ୍ ଲଇସ୍‌କନ୍‌ସିନ୍ ନଦୀ କୂଳରେ ରହିଛି, ଅଦୂରରେ ପାହାଡ଼, ପାର୍କ ହେବାକୁ ସର୍ବତୋ-ଭାବେ ଯୋଗ୍ୟ । ମ୍ୟୁନିସପାଲିଟି ହୟତ ଏହି ଉଦ୍ଦେଶ୍ୟରେ ଏ ସବୁ ଜମି କିଣିନେବ ବୋଲି ମିସେସ୍ ଆଶା ବାନ୍ଧି ବସିଛନ୍ତି । ଅନ୍ୟ ଗ୍ରାହକ କେହି ଯୁଟି ନାହାନ୍ତି । ମିସେସ୍ ଗୃହକର୍ତ୍ତ୍ରୀ କରି କିଛି ରୋଜଗାର କରନ୍ତି, ଘରଭଡ଼ାରୁ ମଧ୍ୟ କିଛି ମିଳେ । ତଥାପି ଜୀବନର ମାନ ଯେ ଉଣା ଘରକୁ ଚାହିଁଦେଲେ ବୁଝା ଯାଉଛି ।

ତାଙ୍କ ବଗିଚାର ଗୋଲାପ ଫୁଲ ଦିନେ ରାଜ୍ୟର ବହୁ ପ୍ରେମିକ-କନ୍ୟାମାନଙ୍କୁ, କେତେକ ବିବାହ ଉତ୍ସବକୁ ପଠାଯାଉଥିଲା—ଏବେ ସେଠି

ଅଡମା ବଣ—ଗୁଣ୍ଠି ହେଉନାହିଁ । ତେବେ ବାଡ଼ ପଟରେ ପାଇନ୍, ଦ'ଣ୍ଡ-ପଟର ଓକ୍, ଗୋଟାଏ ବଣୁଆ ଚେଷ୍ଟ ଗଛର ଲାଲ ଫଳ ବଡ଼ ଲୋଭ-ନୀୟ ହୋଇଛି ।

ସିଧଆ ସ୍ୱିମିଂ ପୁଲ୍‌କୁ ଯାଉଛୁ । ମୋର ଦେଖିବା ଲାଗି ଯେତକ ମିସେସ୍‌ଙ୍କର ଦେଖାଇବା ଲାଗି ମଧ୍ୟ ସେତକ ଆଗ୍ରହ । ସେ ମୋତେ ସ୍ୱିମିଂ ପୁଲ୍‌କୁ ନେଲେ । 'ଫାକଲ୍‌ଟି'ଙ୍କ ପୁଲର ଅଧିକାଂଶ । ଏଥିରେ ସଭ୍ୟସଭ୍ୟା ତରୁଣତରୁଣୀ । ଲୁଗାପଟା ପାଲଟିବା ଲାଗି ସ୍ୱତନ୍ତ୍ର ଗୃହ ଅଛି । ପ୍ରତ୍ୟେକ ସଭ୍ୟ ବା ସଭ୍ୟାଙ୍କ ଲାଗି ଗୋଟିଏ ସ୍ୱତନ୍ତ୍ର ଡ୍ର ଅଛି । ଏଥିରେ ଶୁଖିଲା ଲୁଗାପଟା ରଖାଯାଏ । ପ୍ରତ୍ୟେକରେ ବଡ଼ ବଡ଼ ଗୃହ । କଏ ବା କାହାର ବସ୍ତ୍ର ହରଣ କରୁଛି ? କାର୍ତ୍ତିକ ଏ ପ୍ରହସନ ?

କ୍ଲବରେ ଗଲ୍‌ଫ, ଟେବଲ୍‌ଟେନିସ୍, ତାଆସ, ପିଙ୍ଗପଙ୍ଗ ଖେଳର ବ୍ୟବସ୍ଥା ଅଛି । ମଦ୍ୟପାନ ଓ ବଲ୍‌ନାଚ ହୁଏ । ମଝେ ମଝେ ଭୋଜହୁଏ । ମାସିକ ସଭ୍ୟ ଚାନ୍ଦା ଦଶ ଡଲାର୍ । ଲଞ୍ଚ୍ ବା ଡିନର ଖାଇଲେ ଅଧିକ ଦେବାକୁ ପଡ଼େ ।

ମିସେସ୍ ସ୍ମିଥ୍‌ଙ୍କ ଲୁଗା ପାଲଟିବା ବାଟେ ଗଲେ—ଆମେ ପୁରୁଷଙ୍କ କୋଠରୀ ବାଟେ ଗଲୁ । 'ପୁଲ୍' ନୀଳ ରଙ୍ଗରେ ରଙ୍ଗା ହୋଇଛି —ଜଳ ନୀଳ ଓ ସ୍ୱଚ୍ଛ ଦିଶୁଛି । ମିସେସ୍‌ଙ୍କୁ ଦେଖିବା ମାତ୍ରେ ଆଉ ଜଣେ ଅଭିବାଦନ ଜଣାଇଲେ —'ହଲୋ' । ଆଳାପରୁ ବୁଝିଲୁ, ସେ ବି ଜଣେ ମିସେସ୍—'ଯାଚ ଚଳନ୍ତା, ଚେପ କ୍ରିଡ଼ ଘଣ୍ଟା'—କେତେଥର ବିଭା ହେଲେଣି, କିଏ ଜାଣେ ? ତେବେ ଅଳ୍ପଦିନ ତଳେ ତାଙ୍କର ସ୍ୱାମୀ ଥିଲେ ଜଣେ ଅଧ୍ୟାପକ; ତାଙ୍କୁ ଛାଡ଼ି ସେ ତାଙ୍କର ଜଣେ ଅଣ୍ଡର ଗ୍ରାଜୁଏଟ୍ ଛାତ୍ରଙ୍କୁ ବିଭା କରିଛନ୍ତି ! ଏ ଶୁଭ ସମ୍ବାଦ ଅତି ଉଲ୍ଲାସରେ ସେ ମିସେସ୍‌ଙ୍କୁ ଜଣାଇଲେ, ଶୁଭେଚ୍ଛା ଆଶାରେ; ସଙ୍ଗେ ସଙ୍ଗେ ଶୁଭେଚ୍ଛା ମଧ୍ୟ ମିଳିଗଲା—ଯଦି ବା ସେଣ୍ଟ ଆଦର୍ଶର ସେ ପକ୍ଷପାତିନୀ ନୁହନ୍ତି; ବୟସ ୫୦ ବର୍ଷରୁ ଅଧିକ, ଖୁବ୍ ଜିଦ୍ଦଣ୍ଡୀ—ନାରୀ ସୁଲଭ ଲଜ୍ଜାସଙ୍କୋଚର ମୁଣ୍ଡ ଖାଇଛି, ଯେପରି ଜଣାଯାଏ ।

ଅପସହ୍ବର ରଣି 'ପୁଲ୍'ରେ ଖେଳୁଛୁ ସତେ ବା ପୁଲକିତ ହୋଇ ! ତରୁଣ ତରୁଣୀମାନେ ପହଁରୁଛନ୍ତି ହସ ଖୁସିରେ । ତା ମଧ୍ୟରୁ ଉଠିଆସିଲ ସିଧଆ, ପାଣିରେ ବୁଡ଼ ବୁଡ଼ ଦେହଟା ଝେଟା, ପାଦ ହଟା କେନ୍ଦର ପଡ଼ ଯାଇଛି । ଛୁଟକନାଟିକ ଗୁଣ୍ଡରେ ମିଞ୍ଜିଯାଇଛି । ମାଥା ବ୍ରୁନେଟ୍, (କୃଷ୍ଣ କେଶା), ଝିଅ ବ୍ଲଣ୍ଡ୍, ଜହ୍ନିବ ବାଳକେଇକ ମୁଣ୍ଡରେ ମିଶିଯାଇଛି —ଛେଚା ଛେଚା ଗୋରା ମୁହଁ ଆଉ ପିଠିରେ ଈଷତ୍ ଲାଲ ବନ୍ଦୁସବୁ— ସ୍ୱାଭାବିକ କଳାଜାଇ ପର ଦିଶୁଛି । ଆଗ କାଳର ଚଟାକୁଟା ପର ଏ ଯୁଗର ଏ ଏକ ଫେସନ୍—ଅଙ୍ଗର ଶ୍ରୀବୃଦ୍ଧ ଲାଗି ।

ପରିଚୟ ପରେ କର ମର୍ଦ୍ଦନ କରି ସିଧଆ କହିଲ—ତୁମକୁ ଦେଖି ମୁଁ ଖୁବ୍ ଖୁସି ।

କହିଲି—ମୁଁ ତ ତୁମକୁ ଦେଖିବାକୁ ଆସିଛି; ମୀନା ତୁମ ମାଆଙ୍କର ଧରମଝିଅ, ତୁମେ ତାର ଭଉଣୀ, ସେ ମୋ ସଳାର ସ୍ତ୍ରୀ !

ସିଧଆ ପଚାରିଲ—ଏଠି କେତେ ଦିନ ରହିବ ? ଆମ ଘରକୁ ପୁଣି କେବେ ଆସିବ ?

'ତୁମ ବାହାଘରକୁ !'

'ମୁଁ ବାହା ହେବି ନାହିଁ !'

'ସେମିତି ସମସ୍ତେ କହୁଥାନ୍ତି । ଯେତେବେଳେ ନିଶା ଲାଗେ ସେତେବେଳେ ଗୁରୁଗୌରବ ମାନନ୍ତି ନାହିଁ । ତୁମେ ବାହା ହୁଅ, ସୁଖୀ ହୁଅ— ଆଶୀର୍ବାଦ ମୋର, ଯାଉଛି ।'

ସିଧଆ ଆମଠୁଁ ବିଦାୟ ନେଇ ପୁଣି ଡେଇଁଲ—'ପୁଲ୍'ରେ କଲ୍ଲୋଳ ଖେଳାଇ ପହଁରିଲ ଏକ ସୁବର୍ଣ୍ଣ ମତ୍ସ୍ୟ—ଅପସହ୍ବ ରଶ୍ମି ତାଇ ଶ୍ରୀ ଉପରେ ଢାଳି ଦେଇଗଲ ଅଜସ୍ର ଆଶୀର୍ବାଦ ଯେପରି ! କେଉଁ ଜାଲୁଆ ସେ ? କେଉଁ ଜାଲ ଆଡ଼କୁ ମୋଡ଼ିବ ସିଧଆ ?

# ପିକ୍‌ନିକ୍

ନର୍ଥକାରୋଲାଇନାର ଷ୍ଟେଟ୍ ପାର୍କ—ପାର୍ଶ୍ୱ ମହୀରୁହସବୁ-ଧାଡ଼ ଧାଡ଼—ଉଜ୍ଜ୍ୱଳ ସବୁଜ ରଙ୍ଗ, ତରଙ୍ଗିତ ଚତୁର୍ଦ୍ଦିଗ, ଅପରାହ୍ନର ସ୍ୱପ୍ନାରଣ୍ୟ ଲୀଳା, ପ୍ରଶାନ୍ତର ତୃପ୍ତି ଆଣେ;

ପଦଷ୍ଟଲ୍ ପାର୍କ ମଧ୍ୟସ୍ଥ ହ୍ରଦରେ; ଡଙ୍ଗାସବୁ ବନ୍ଧା ହୋଇଛି; ଗୋଟିଏ ଡଲାର ଦେଲେ ଘଣ୍ଟାଟିଏ ଜଳଯାତ୍ରା କରିବା ଲାଗି ଅନୁମତି ମିଳେ; ତା ସଙ୍ଗେ ସଙ୍ଗେ ଦୁଇଟି ଆହୁଲା ମିଳେ; ନିଜେ ନିଜେ ଡଙ୍ଗା ବାହିବାକୁ ହୁଏ। ଭଲ ଜମଉର୍। ଗୋଟିକରେ ମୁଁ, ରାଜୁ ଆଉ ମୀନା, ସୁଭାଷର ସ୍ତ୍ରୀ ନିରୁପମା। ଆଉ ଗୋଟିକରେ ଅଧ୍ୟାପକ ସୁଭାଷ; ଆମେ ନୌକା ବାହିବୁ, ସେ ଫଟୋ ନେବେ।

ବୃକ୍ଷପଟେ ଘନ ପାଇନ୍ ବନ—ସୂର୍ଯ୍ୟ ଦିଗ୍‌ବଳୟ ଆଡ଼କୁ ଗଡ଼ି ଯାଉଛନ୍ତି। ଛାଇସବୁ ଲମ୍ବି ଆସୁଛି ଜଳକୁ—ଖରା ଆଉ ଛାଇ, ଛାଇ ଆଉ ଖରା—ଢେଉ ଉପରେ ଐନ୍ଦ୍ରଜାଲିକ ଖେଳ ଲାଗିଛି ଦୁହିଙ୍କର।

କିଛି ସମୟ ପରେ ସୁଭାଷ ଇସାରା ଦେଲା---ନିରୁ ତାଙ୍କ ଡଙ୍ଗାକୁ ଗଲା—ବିବାହ ପରେ ଜୀବନର ପ୍ରଥମ ନାବକେଳି ସେମାନଙ୍କର; ସୁଭାଷ ଭଲ ନୌକାବାହକ। ଆହୁଲା ମାରି ସାଇଁ ସାଇଁ ନୌକାକୁ ଚଳେଇନେଲା, ନିରୁ ଆନନ୍ଦରେ କୁରୁଳୁଥାଏ; ସେମାନଙ୍କ ଆନନ୍ଦ ଉଚ୍ଛ୍ୱାସରେ ଗୋଟିଏ ପଦ ଗୀତ ମନେ ପଡ଼ିଲା---ଜୀବନ ଯମୁନାରେ ଜୁଆର ଉଠେ ରେ......

ରାଜୁ ଆମ ଡଙ୍ଗାରୁ କୂଳକୁ ଡେଇଁଲା—କାଦୁଅରେ ପଡ଼ିଲା, ଜୋତା ପଙ୍କରେ ଲଟପଟ, କୂଳ ତ ନୁହେ, ଆମ ଆଡ଼ ପୋଖରୀ ପରି ପଙ୍କ ଭରା; ଓହ୍ଲାଇବାର ନୁହେ ସେଠି; ରାଜୁ ଆମ ହାସ୍ୟରୋଳ ମଧ୍ୟରେ ଜୋତା ସଫା କରିବାକୁ ଲାଗିଲା। ନୌକାରେ ମୀନା ଆଉ ମୁଁ; ବାହି ବାହି ହ୍ରଦ ମଝିକୁ ଗଲୁ। ତାପରେ ମୁଁ ଆଗକୁ ବାହିଲି, ସେ ବାହିଲା ପଛକୁ। ନୌକା ଏବେ କାହା କଥା ମାନିବ ? କାହାକୁ ଅମାନ୍ୟ କରିବ ? ସ୍ଥିର ହୋଇ ରହିଲା—କେତେବେଳେ ଚକାଭଉଁରୀ ବୁଲିଲା;

କେତେବେଳେ ବା ତୋଫାନ ମାରନ୍ତି—ସତେ ବା ଉଦ୍ଭ୍ରପିଦ । ବୋଧ ହେଲା—ଆମେ ଆଜି କୂଳକୁ ବାହୁଡ଼ି ନେଇ ପାରିବୁ ନାହିଁ । ଆମକୁ ଉଦ୍ଧାର କରିବା ଲାଗି ଆଜି କେହି ଆସିବ । କି ଲଜ୍ଜାର କଥା !

କେତେବେଳକେ ଦୁଷ୍ମନ୍ତଙ୍କର ଆତୁଲା ଗୋଟିଏ ଆଡ଼କୁ ବାହାଲା - ବେହାଲାରେ ବାଜୁ ବାଜୁ ବେଳେ ବେଳେ ସଙ୍ଗୀତରେ ବାଦ୍ୟର ତାଳ ଚଟ୍ଟଗଲା ପରି । ନୌକା କୂଳ ଧରିଲା କେତେ ମିନା କହିଲା— ଯାହାହେଉ, ନଣଟେଇ ଶଳାଦ୍ୱାପ୍ରାନ ମିଶି ଆମେ ତ କୂଳରେ ନୌକା ଲଗାଇ ଦେଲୁ । ତାର ସେହି ପିଲାଳିଆ ଆନନ୍ଦ ଗୋଧୂଳିର ଶ୍ରୀ ସଙ୍ଗେ ମିଶି ଯାଇଥାଏ । ସମଗ୍ର ହ୍ରଦ ସୁବର୍ଣ୍ଣ ଗୁଦଆ ପରି ଜଠୁଥାଏ, ପଡ଼ୁଥାଏ, ସୁନାର ତାରକମି ପରି ପାଇନ୍‌ର ପତ୍ରସବୁ ନାଚୁଥାଏ, ମନକୁ ମୋର ନଚଉଥାଏ; ସେପଟକ ମିନା ସ୍ୱୟଂ ଗୋଧୂଳି, ଆଲୋକଭରା ତାର ଗୃହାଣୀ, ପୁଲକମୟ ତାର ଶ୍ରୀ ପ୍ରସାରିତ ହେଉଥାଏ, ହ୍ରଦରୁ ବନକୁ, ବନରୁ ଆକାଶକୁ, ଏଇସବୁ ତତ୍ତ୍ୱରୁ ମୋର ମନକୁ ।

କୂଳରେ ସାହେବ ଜଣେ ଚୌକରେ ବସି ବନିଶି ପକାଉଥାନ୍ତି, ଆଶ୍ଚର୍ଯ୍ୟ, କିଆଁଜାଡ଼ ଗୃହ । ବହୁ ଦୂରକୁ ବନିଶିକୁ ଘୂଟି ଦେଇଥାନ୍ତି, କାଠ ତ ନାହିଁ, ଗୋଟାଏ ପ୍ଲାଷ୍ଟିକ୍‌ର ଲାଲ୍ ଝୁମୁଝୁମୁକା ଭାସୁଥାଏ । ତାପରେ କଳ ମୋଡ଼ି ମୋଡ଼ି ସୂତା ଗୁଡ଼ାଉଥାନ୍ତି । ଗ୍ଲେଟ ମାଛ ପଡ଼ିଲେ ପାଣିକି ଫିଙ୍ଗି ଦେଉଥାନ୍ତି । ବଡ଼ ମାଛ ପଡ଼ିଲେ ରଖୁଥାନ୍ତି । ଗୋଟେ ଦଳ ତଗଲା ଛୁଆ ହ୍ରଦ କୂଳରୁ କାଣ୍ଡଶର ଭଡ଼ୁଥାନ୍ତି--ପିଲା ତ ପିଲା, ସବୁଠି ଏକା, ଗୋଟିଏ ସାପ ପାଣିରୁ ମୁଣ୍ଡ କାଢ଼ିଥାଏ । କିଏ ? କିଏ ତୁମେ ? ଆଖିରେ ତାର ଏଇ ପ୍ରଶ୍ନବାଚକ, ନ ପଚାରିଲେ କଣ ହେଲା । ମୁଁ ଆତ୍ମପରିଚୟ ନ ଦେଇ ତାକୁ ଓଲଟା ପ୍ରଶ୍ନ ପଚାରୁଛି ? ତୁମେ କିଏ ? ଧଣ୍ଡ, ନା ବୁଢ଼ା ଡମ୍ବ, ନା ହଳାହଳକୁମର ? ବାସୁକୀର ଗୁପ୍ତଚର ?

ହ୍ରଦର ସାମୂଜ୍ୟନ ପ୍ରଶାନ୍ତ ମନରେ ଯେତେ ଆମେ ପାର୍କରେ ପଶିଲୁ । ଅତ ସାର୍ଧ ପାଇନ୍ ଖୁଣ୍ଟାଖୁଣ୍ଟ, ତା ମଧ୍ୟରେ ଟେବୁଲ୍ ଚୌକୀ

ପଡ଼ୁଛି । ଏଇଠି ଆମର ବର୍ଣ୍ଣଶ୍ରେଣୀ ଦେଖ—ଦୁଇ ଗୃହିଣୀ ଯେ ଯାହାର ଖାଦ୍ୟ ନେଇ ଆସିଥାନ୍ତି । ମୀନା ଆଣିଥାଏ ଭାତ, ମାଛ ବେଶର, ଅଙ୍କୁର, ନିରୁ ଆଣିଥାଏ ପୁରି, କୁକୁଡ଼ାମାଂସ, ବସାଦହି; ଯେପରି ।

ଭୋଜନ ପରେ ଯାଇ ଏକ ଖୋଲା ପଡ଼ିଆରେ ବସିଲୁ—ଓଡ଼ିଶାର ପାଞ୍ଚଜଣ ଓଡ଼ିଆ; ଓଡ଼ିଶାର ଉଜ୍ଜ୍ୱଳ ଭବିଷ୍ୟତ ନେଇ କେତେ ଆଲୋଚନା ହେଲା; ମଧୁର ଝିଲ୍ଲୀସ୍ୱର; ସନ୍ଧ୍ୟା ନିବିଡ଼ତର ହୋଇ ଆସୁଥାଏ ନିର୍ଜନତାରେ, କ୍ଷୀଣ କାକଳୀ କ୍ଷୀଣତର, ମର୍ମରିତ ଅରଣ୍ୟରେ ଗୋଧୂଳିର ଶେଷ ରକ୍ତ ଶିଖା ମିଳିଗଲା--ଆମେ ମନରେ ସବୁଦିନ ଲାଗି ଜଳିବା ପାଇଁ, ଏକ ସ୍ୱପ୍ନସୁନ୍ଦର ସ୍ମୃତିମନ୍ଦିର ମଧ୍ୟରେ ।

× × ×

ସେଦିନ ରାତିରେ ମି. ବୃଟର୍ଜି ଆସିଲେ, ସଙ୍ଗରେ ସ୍ତ୍ରୀ ସନ୍ଧ୍ୟା, ମୋ ସହିତ ଆଳାପ ଲାଗି । କିନ୍ତୁ ମୁଁ ବେଶୀ ଶୁଣେ, କହେ ଅଳ୍ପ; ସ୍ୱଭାବସୁଲଭ ମୋର କାର୍ଯ୍ୟ । ଆଳାପ ଲାଗି ଆଳାପ କରେ ନାହିଁ, ଯଦି ବା ଏହା ସୁଖପ୍ରଦ । ବରଂ ବେଳେ ବେଳେ ରସଭଙ୍ଗ କରେ, କ୍ଷମତବ୍ୟ ବିଷୟରେ ପ୍ରଶ୍ନ ପଚାରି ।

ବୃଟର୍ଜି ନର୍ଥକାରୋଲାଇନା ବିଶ୍ୱବିଦ୍ୟାଳୟରେ କୃଷି ଅର୍ଥ ନୀତିରେ ପି.ଏଚ୍.ଡ଼ି କରୁଛନ୍ତି । ସନ୍ଧ୍ୟା ଶ୍ରୀ ନିକେତନର ଛାତ୍ରୀ ଥିଲେ, ମୁଁ ଶାନ୍ତିନିକେତନରେ ଥିଲାବେଳେ । ମୁହଁ ଚିହ୍ନାଚିହ୍ନି ପରିଚୟ, ଭାବ ବିନିମୟ କେବେ ହୋଇ ନଥିଲା, ସେତେବେଳର ସେ ଚାଞ୍ଚଲ୍ୟ ଆଉ ନାହିଁ, ଝରଣା ସ୍ଥିର ହୋଇଛି ଗୋଟିଏ ପୁଷ୍କରିଣୀରେ; ଅତିରିକ୍ତ ସ୍ୱାସ୍ଥ୍ୟ ତାଙ୍କର ଏକ ସମସ୍ୟା, ମାନସିକ ନୈଷ୍କ୍ରିୟ୍ୟ ଆସି ଯାଇଛି, ଭାବିବାକୁ କିଛି ନାହିଁ । କର୍ତ୍ତବ୍ୟ ଏକ ଗତାନୁଗତିକ ସ୍ରୋତରେ ପରିଣତ ହୋଇଛି । ବୁଲି ଦେଖିବାର କୌତୂହଳ ନାହିଁ । ସେ ଦେଖୁଛନ୍ତି—ଯାହା ଆଖିରେ ପଡ଼େ, ଶୁଣୁଛନ୍ତି ଯାହା ଆପେ ଆପେ ଆସି କାନରେ ବାଜେ । ସେଥିଲାଗି କଷ୍ଟ ସ୍ୱୀକାର କରିବାକୁ ସେ ପ୍ରସ୍ତୁତ ନୁହନ୍ତି ।

ବିଭିନ୍ନ ବିଷୟକ ଆଳାପ ମଧ୍ୟରେ ସ୍ୱଟର୍ଜ କହିଲେ—ଏଠା ସମ୍ବାଦପତ୍ରରେ ଭାରତ ବିଷୟରେ ପ୍ରାୟ କିଛି ବାହାରେ ନାହିଁ । ଲୋକେ ବେଶ୍ କୂପମଣ୍ଡୂକ । ଭାରତ ଗୋଟିଏ ଗରିବ ଦେଶ--କେତେକ ବଣ ଜଙ୍ଗଲରେ, କେତେକ କୁଡ଼ିଆ ଘରେ ରହନ୍ତି, ସେମାନଙ୍କର ଧାରଣା । ଜଣେ ମତେ ପଚାରିଲେ—

ଆମେରିକା ଆସି କଣ ଦେଖୁଛ ?
ନିଶ୍ଚୟ ଏ କୋଠାବାଡ଼ି !

ସ୍ୱଟର୍ଜ ତାଙ୍କୁ ଉତ୍ତର ଦେଲେ, କାହିଁକି ? ଆମ ଦେଶରେ କଣ ସେ ସବୁ ନାହିଁ ! କଲିକତାକୁ ତ 'ସିଟି ଅଫ୍ ପାଲେସେସ୍' କୁହାଯାଏ ।

ଥରେ ସେ ବଙ୍ଗଳାରେ ଲେଖୁଥିବାର ଦେଖି ଜଣେ ଆମେରି-କାନ୍ ପଚାରିଲା, ଏ ଭାଷାରେ କଣ ସାହିତ୍ୟ ଅଛି ?

ସ୍ୱଟର୍ଜ ସ୍ପର୍ଦ୍ଧିତ ଗଳାରେ ଉତ୍ତର ଦେଲେ—ତୁମ ଏଠା ସାହିତ୍ୟରେ କେହି ନୋବେଲ ପୁରସ୍କାର ପାଇବା ଆଗରୁ ମୋ ଭାଷାର ସାହିତ୍ୟରେ ଜଣେ ପାଇଥିଲେ, ନାମ ଅବଶ୍ୟ କାନରେ ବାଜିଥିବ, ରବୀନ୍ଦ୍ରନାଥ ଟାଗୋର ।

ଏଠା କୃଷି ବିଷୟରେ ସ୍ୱଟର୍ଜ କହିଲେ, କୃଷକ ସଂଖ୍ୟା ଯୁକ୍ତରାଷ୍ଟ୍ରର ମୋଟ ଜନସଂଖ୍ୟାର ଶତକଡ଼ା ଦଶ । କୃଷକମାନେ ଶିଳ୍ପପତିଙ୍କ ତୁଳନାରେ ଯଥେଷ୍ଟ ଗରିବ । ଏ ଦେଶରେ ଉଚ୍ଚଶିକ୍ଷା ବଡ଼ ବ୍ୟୟସାଧ୍ୟ, ଅର୍ଥାଭାବରୁ କୃଷକମାନେ ନିଜ ପିଲାମାନଙ୍କୁ ମେଡ଼ିକାଲ ବା ଇଞ୍ଜିନିଅରିଂ କଲେଜରେ ପଢ଼ାଇ ପାରନ୍ତି ନାହିଁ । ତାହାରୁ କୃଷକ ଗରିବ ହେଲେ ନାହିଁ, ସେ ଚିରା ବା ମଇଳା ପିନ୍ଧେ ନାହିଁ । ଭଲ ଖାଏ, ଅଧିକ ସଜ ଖାଦ୍ୟ ଖାଇବାକୁ ପାଏ । ଜମିବାଡ଼ି ଛାଡ଼ି ଆସି ବାଣିଜ୍ୟବ୍ୟବସାୟ କରିବା ଅନେକଙ୍କର ଇଚ୍ଛା । କିନ୍ତୁ ସରକାର ତାହା କରେଇ ଦିଅନ୍ତି ନାହିଁ, କୃଷିଦ୍ରବ୍ୟର ମୂଲ୍ୟ ବୃଦ୍ଧି କରି କୃଷକକୁ ଖୁସି ମନୋବୃତ୍ତିରେ ରଖିଥାନ୍ତି ।

## ଲୁଇସ୍ ପିଏରସେଲ୍‌ଙ୍କ ଡାହ୍ୟାରଫାର୍ମ (୭ । ୭ । ୭୭ ସଳେ)

ଶ୍ରୀ ବଳସ୍ତ୍ର ଚେଉ୍‌ଡା ବମ୍ବେର ଲୋକ, ଏଠା ବିଶ୍ୱବିଦ୍ୟାଳୟରେ ପିଏଚ୍ ଡ଼ି କରନ୍ତି; ତାଙ୍କ ସ୍ତ୍ରୀ ମଧୁବାଲା ଏମ୍ ଏ ପାସ୍ କରିଛନ୍ତି । ଉଭୟଙ୍କର ବିବାହର ହୋଇଛି ଆମେରିକାରେ । ସେମାନେ ମୋତେ ଦେଖିବାକୁ ଆସିଥିଲେ, ଡାୟୁାରଫାର୍ମ ଦେଖିବା ଇଚ୍ଛା ଜାଣି ବୁଲାଇ ନେଲେ ।

ସଲେର କୋଡ଼ିଏ ମାଇଲ ଦୂରରେ ଆପେକ୍‌ସ ବୋଲି ଗୋଟିଏ ଗ୍ରାମ । ଗାଡ଼ି ରଖି ଜଣକ ଦୁଆରେ ଠକ୍ ଠକ୍ କଲୁ; କେହି ଶୁଣିଲେ ନାହିଁ । କେବଳ କୁକୁରଟିଏ ପ୍ରତିବାଦ କଲା—ଆଗରୁ ମାଲିକକୁ ଜଣାଇଥିଲ ? ନ ଜଣାଇ ଆସିଲ କାହିଁକି ? ଅସୌଜନ୍ୟ—ଅଭଦ୍ରତା !

କାହାକୁ ନ ପାଇ ଆମେ ସେଠି ଆପେ ଆପେ ବୁଲିଲୁ । କଳା ଛଇଳା ଗାଈସବୁ—କେତେକ ଗୃହାଳରେ ବୁଲୁଛନ୍ତି, କେତେକ ପଦାରେ । ଆକାରରେ ବୃହତ୍, ସୁପ୍ରସାରିତ ପଛା ତଳେ ଲଗେ ନ ଲଗେ । ଗାଈଙ୍କର ଶିଙ୍ଘ ନାହିଁ, ଜଠିଲାବେଳେ ତାକୁ ନିକାଶ କରାଯାଏ । ତଥାପି ସେମାନେ ମୁଣ୍ଡିଆ ମରାମରି ହେଉଛନ୍ତି; ନିରସ୍ତ ସିନା, ପ୍ରକୃତି ଗୁଡ଼ୁଛନ୍ତି କେଉଁଠି ?

କେତେକ ଗାଈ ଲୁହା ଜଞ୍ଜିରରେ ବନ୍ଧା ହୋଇଛନ୍ତି । ସିମେଣ୍ଟରେ ସାଳ ପହଣି ପରି ଗୋଟିଏ ଗଡ଼ା ଯାଇଛି—ସେଥିରେ ଘାସ ପକାଯାଏ, ମୁହଁ ପାଖେ ଗୋଟିଏ କଳ ଲଗିଛି । ଶୋଷ ହେଲେ ଗାଈ ନାକରେ କଳକୁ ଚିପି ପାଣି ପିଏ । କୁଣ୍ଡା, କୋଳଥ ବା ବର, କୃତ୍ରିମ ଏକାଠି ମିଶାଇ କୁଣ୍ଡରେ ଖାଇବାକୁ ଦିଆ ହୁଏ ନାହିଁ ।

ଗୃହାଳଟି ଅତି ଅପରିଚ୍ଛନ୍ନ, ଗାଈ ଗୋବର ମୁତରେ ଲଟପଟ । ବାନାଖିଆ ଗୋରୁଙ୍କ ଗୋବର ମଧ୍ୟ ଦୁର୍ଗନ୍ଧ—ମାଛି ସେଥିକି ବାଇ, କୋଟି କୋଟି ସଂଖ୍ୟାରେ ମାଛି ବେଢ଼ିଛନ୍ତି, ଔଷଧରେ ଗୌଣୀ ଗୌଣୀ

ମାଛି ମରି ପଡ଼ୁଛନ୍ତି । ଗାଈଙ୍କର କିଛି ଦୂରରେ ବାଛୁରି—ଏଡିକି ଦାଣ-ମୂହଁରୁ ବଞ୍ଚେଇ ରଖାହୋଇଛି, ବାଛୁରିମାଂସ ଏଠାରେ ଲୋକପ୍ରିୟ, ମହଙ୍ଗା ମଧ୍ୟ । ତାକୁ 'ଭିଲ୍' କହନ୍ତି । ଛ'ମାସର କଳା ଛଇଳି ଛନଛନିଆ ବାଛୁରି ସବୁ କରତଗୁଣ୍ଡ ଉପରେ ଶୋଇଛନ୍ତି, ପ୍ରତ୍ୟେକ ବାଛୁରିକି ଅନ୍ୟଠାରୁ ସ୍ୱତନ୍ତ୍ର ରଖାହୋଇଛି—କିଛି ଉଚ୍ଚ ସ୍ଥାନରେ ରଖା ହୋଇଛି, କୋମଳ ଦାନା—ଭୋକ ହେଲେ ଖାଇବେ ।

ଆମକୁ ଦେଖି ଗୋଟିଏ ବାଛୁରି ଡାକିଲା—ହ···ମା । ଭାରତ ଓ ଆମେରିକାର ବାଛୁରିଙ୍କ ଭାଷା ଏକା । କିନ୍ତୁ ତା'ର ଅର୍ଥ ଭିନ୍ନ । ଆମେରିକାରେ 'ହମା' ଶବ୍ଦର ଗୋଟାଏ ନିରର୍ଥକ ବୋବାଳି ଛଡ଼ା କିଛି ନୁହେ । ଏଠି ଗାଈ ବାଛୁରିଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ନାହିଁ । ମତ୍ସ୍ୟଗୃଷ ପରି ଏଠି ଗୋ ଗୃଷ—ଗୋ ପାଳନର ସିଧା ସଳଖ ଦୁଇଟି ଉଦ୍ଦେଶ୍ୟ—ମାଂସ ପାଇଁ, ଦୁଗ୍ଧ ପାଇଁ ।

ଏଠି ବାଛୁରି ତ ଗାଈ ଥଣରେ ମୁହଁ ଲଗାଇ ଚଁ ଚଁ କରି ଦୁଧ ପିଏ ନାହିଁ, ଜଙ୍ଘ ମଝିରେ ଡେକ୍‌ଚିକି ଚପିରଖି କେହି ଗାଈ ଦୁହିଁ ବସେ ନାହିଁ, ବାଛୁରିକି ଗୃଟୁ ଗୃଟୁ ଗାଈଦୁହାଁ ହୋଇପାଏ ନାହିଁ; ବାଛୁରି ଲାଗି ଗାଈ ଦୁଧ ଶ୍ୱେଇ ରଖେ ନାହିଁ, ଜନ୍ମ ହେଲା ପରେ ଗାଈ ସଙ୍ଗେ ବାଛୁରିର ସମ୍ପର୍କ ନ ଥାଏ, କେବଳ ଦୁହାଁ ଦୁଧରୁ କିଛି ପିଅଇ ଦିଆ ହୁଏ ମାତ୍ର । ଆମ ଆଡ଼େ ସାଆନ୍ତ ଚମ୍ପଗୃପି ଦୁହିଁଲେ ବାଛୁରି ଦୁଧ ଆଶା ଗୁଡ଼େ, କଅଁଳ ଘାସ ଟିକ ଶିଖେ । ଗହ୍ୱାର ଦଳରେ ବୁଲୁ ବୁଲୁ ବେଳେ ବେଳେ ହଜେ । ତାକୁ ଘର ଲୋକେ ଖୋଜିବାକୁ ଯାନ୍ତି, ଉଚ୍ଚ ସ୍ୱରରେ ଡାକ ଡାକ—ଆ ଗୃଚୁବାଇ—ଆ—ଆ । ଘାସ ପଦାରକ ବେଳେ ଏ ଡାକ ଗହ୍ୱାରକୁ ଗହ୍ୱାର ଡେଇଁ ଯାଉଥାଏ । ଏଠି ଗାଈ ଶାଇଆର ଚୋରଣି କଂସାରେ ମୁହଁ ପୂରାଏ ନାହିଁ, ଶାଇଆ ସ୍ନେହରେ ସରୁ ଗୃପୁଡ଼ାଟିଏ ଦିଏ ନାହିଁ—'କାଳୀ ଗାଈ ମୁଣ୍ଡରେ ଗୃନ୍ଦ, ତାକୁ ନେଇ ଗୃହାଲେ ବାଛ'ର ଅର୍ଥ କିଛି ନାହିଁ । ଏଠି କାମଧେନୁ ନାହିଁ, ସମସ୍ତ କାମନା ଚରିତାର୍ଥ କରିବାକୁ; ବରଦାୟିକା ନନ୍ଦମା ନାହିଁ, ମାୟା ବିସ୍ତାର କରିବାକୁ; ଏଠି ବଉଳା ସତ୍ୟରକ୍ଷା କରିବାର କାହାଣୀ ନାହିଁ ।

ଏଠି ଗାଈବାଛୁରୀଙ୍କ ପଛରେ କଥା ବା କିଂବଦନ୍ତୀ ନାହିଁ, କିଛି ଧର୍ମ ବିଶ୍ୱାସ ନାହିଁ। ଗୋଫସ୍ତି ବେଳ ଏଠି କିଛି ନାହିଁ—ଯାହା ବେଦକୁ ଆଚ୍ଛନ୍ନ କରିଛି, ପୁରାଣର ନାନା ଗଳ୍ପରେ ରୂପ ନେଇଛି। ଗାଈର କିଛି ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ସ୍ୱୀକୃତ ହୋଇନାହିଁ। ଏ ଗାଈ ଯାହା ସେ ଗାଈ ସେଇଆ—ଗୁରୁବାରୀ ଯାହା, ଗୁଡ଼ୀ ବା ପାଟ ସେଇଆ, ଓଳେଇ ହେବାର ପ୍ରୟୋଜନ ନାହିଁ, ସାନ କିଆବାଡ଼ ଡେଇଁବାର ଦୁର୍ଯୋଗ ନାହିଁ, କାଞ୍ଜିଆହାଡ଼ସବରେ ମଡ଼ିବାର ପ୍ରଶ୍ନ ନାହିଁ, ଫସଲ ଖାଇଲେ କିଏ ଦୁଆରକୁ ଆସି ପାଞ୍ଚ ପଦ ଶୋଧିବା କଥା ଶୁଣା ନାହିଁ, ପରର ଫସଲ ଉଜାଡ଼ି ଗହ ସାଧିବା ଶୁଣାଯାଏ ନାହିଁ।

ଷ୍ଟରବର୍ଷ ଦୁଧ ଦେଲ ପରେ ଗାଈକୁ ହାଣମୁଣ୍ଡିକୁ ପଠାଇ ଦିଆ ହୁଏ, ଆମ ଆଡ଼େ ଗାଈକ ଶୁଖେଇ ଶୁଖେଇ ମାରନ୍ତି; ବୁଢ଼ୀ ହେଲେ କିଂସେଇକ ବିକନ୍ତି; ଅଣ୍ଡିରି ମଇଁଷି ଛୁଆକୁ ପାଳକ ପିଟି ପିଟି ମାରି-ଦିଏ। ବୁଢ଼ା ଗୋରୁକୁ ସାଆନ୍ତ ଖାଇବାକୁ ଦିଏ ନାହିଁ, ସେ ଯୁଆଡ଼ା ତଳରେ ଖାଏ। ଠେଙ୍ଗରେ କୁଆ ଶାଗୁଣା ହାଣୁଥିଲେ ବି କିଛି ପ୍ରତିକାର କରେ ନାହିଁ। ଗୋରୁଠାରୁ ଷୋଳଅଣା କାମ ଆଦାୟ କରନ୍ତି, କିନ୍ତୁ ଭଲ ଖାଇବାକୁ ଦିଅନ୍ତି ନାହିଁ, ଏମିତି କୃପଣ ସାଆନ୍ତ ଏ ତଥାକଥିତ ଧର୍ମବିଶ୍ୱାସୀଙ୍କ ମଧ୍ୟରେ ଅନେକ ଅଛନ୍ତି।

ବୁଲୁ ବୁଲୁ ଆମେ ପହଞ୍ଚିଲୁ ଗୋଦୋହନ ପାଖରେ; ଦୋହନ ଲାଗି ଗାଈଙ୍କୁ ଗୋଟିଏ ସ୍ୱତନ୍ତ୍ର ସ୍ଥାନକୁ ନେବାକୁ ହୁଏ। ଏ ପାଖେ ଷ୍ଟଲେଟି ସେ ପାଖେ ଷ୍ଟଲେଟି ଦୁହାଁ ହେବାର ଦେଖିଲି। ଷ୍ଟଲେଟି ଚରିରେ କଳ ଲାଗିଛି। ଦୁଧ କାଚ ନଳୀ ବାଟେ ବୋହି ଆସି ଗୋଟାଏ ନିଷ୍କଳଙ୍କ ଲୁହା ବାକ୍ସରେ ପଡ଼ୁଛି। ଦୁହୁଁଛନ୍ତି ମି. ପିଏରସେଲ୍—ପିଙ୍ଗଳବର୍ଣ୍ଣର ମୁଖ, କୋମଳତାର ଆଭାସ ନାହିଁ, ଭାଷା ମଧ୍ୟ ଅସ୍ପଷ୍ଟ। କଳା ଫୁଲପ୍ୟାଣ୍ଟ, ମୁଣ୍ଡରେ କଳା କନାର ଟୋପି, ପାଦରେ ରବର ଜୋତା। କଳ ଲଗାଇବା ପୂର୍ବରୁ ଗାଈର ଚରିକୁ ସେ ସଫା କରି ଧୋଉଛନ୍ତି—ଏକାବେଳକେ ଆଠୋଟି ଗାଈର ଦୁଧ ସୁଅ ମୁହଁରେ ବୋହି ଆସୁଛି। ପିଏରହେଲ୍‌ଙ୍କର ମୋଟରେ ଶହେ ଗୋଟି ଗାଈ।

ସେଥିମଧ୍ୟରୁ ଷାଠିଏଟି ଦୁଗ୍ଧାଳ, ପ୍ଲଳଣଟି ବରଡ଼, ସେମାନଙ୍କୁ ଅଲଗା ରଖା ହୋଇଛୁ, ଗାଈଙ୍କ ବିଷୟରେ କେତେ କଥା ପଚାରିବାକୁ ମନ ହେଉଥିଲା, କିନ୍ତୁ ମୋ କଥା ତ ସେ କିଛି ବୁଝୁ ନ ଥାନ୍ତି; ବୃଥା ସମୟ ନଷ୍ଟ କରିବ କାହିଁକି ?

୮-୭-୬୬ (ଗୁଲେ)

ମିସେସ୍ ଏରଡ଼ଲିସ ଜବାବ୍ ଦେଇଥିଲେ—ଡାଇରିଫାର୍ମ ଦେଖାଇବା ଲାଗି ସେ ଜଣେ ଗାଇଡ୍ ଠିକ୍ କରିଦେବେ । ଆମର ଏଠି 'ମରଦ୍‌କା ବାତ୍ ହାଥୀକା ଦାନ୍ତ' । ସେଠି ମାଇପୀଙ୍କ ବଚନ ସେଇପ୍ରା —ଟଳିବାର ନୁହେଁ । ମିସେସ୍ ଅଧ୍ୟାପକ ପାର୍ସନଙ୍କୁ ଅନୁରୋଧ କଲେ; ପାର୍ସନ୍ ଆମକୁ ଟେଲିଫୋନ୍ କରି ସମୟ ନିର୍ଦ୍ଦିଷ୍ଟ କରିଦେଲେ । ଡାଇରି ଫାର୍ମ କାଲି ଦେଖିଚୁ; ଆଜି ଦେଖିବାକୁ ମନ ନାହିଁ; କିନ୍ତୁ ମନା କରିବାର ଉପାୟ ନାହିଁ । ପାଞ୍ଚମିନିଟ ମଧ୍ୟରେ ଖାଇ ଢୋକି ଗିଳି ଦୌଡ଼ିଲୁ, ଶଙ୍କା । —କାଳେ ବିଳମ୍ବ ହୋଇଯିବ—ଅପେକ୍ଷାକାରୀ କିଛି କହନ୍ତୁ ନ କହନ୍ତୁ ନିଜ ମନ ହିଁ ନିଜକୁ ଖାଇବ ।

ଠିକ୍‌ରୁ ସତ ନଅଟାବେଳକୁ ବିଶ୍ୱବିଦ୍ୟାଳୟର ଗୋଟିଏ ଗାଡ଼ି ଆସି ଛିଡ଼ା ହୋଇଥିଲା ଓ ମି: ପାର୍ସନ୍ ଆମକୁ ଅପେକ୍ଷା କରି ବସିଥିଲେ । ଦୁଃଖର କଥା, ଆମକୁ ନେଇଗଲେ ସେଇ ଫାର୍ମକୁ, ଯୋଉଟି କାଲି ଆମେ ବୁଲି ଦେଖିଥିଲୁ ! ଓ୍ୱାଲଟର୍ ରେ ଫ୍ରାଙ୍କ କଳରେ ଗୁହାଳ ସଫା କରୁଥିଲା—ଗୋବରଗୁଡ଼ାକ ଠେଲି ଠେଲି ହୋଇ ଗୋଟାଏ ଖାତରେ ଯାଇ ପଡ଼ୁଥିଲା; ମି. ଫ୍ରାଙ୍କ ପାର୍ସନଙ୍କୁ ଦେଖି କଳରୁ ଓହ୍ଲାଇ ଆସି ଅଭିବାଦନ ଜଣାଇଲା; ଆଗମନର କାରଣ ବୁଝିପାରି ଆମକୁ ଘାସବିଲ, ମକ୍‌କା ଖେତ ସବୁ ଦେଖାଇଲା—ଏସବୁ ଗୋଖାଦ୍ୟ ଫାର୍ମରେ ଉତ୍ପାଦିତ ହୁଏ ।

ଘାସ କଳ ସାହାଯ୍ୟରେ ଠିକ ଠିକ କଟା ହୋଇ ଚିମ୍ନିଭଳି ଉଠିଥିବା ଗୋଟାଏ ସିଲ୍‌ଭର୍ କୋଠିରେ ପଶୁଚି, ସେଠି ଗରମ ହୋଇ ତଳକୁ ଆସୁଛି; ଗାଈ ତାକୁ ମହାନନ୍ଦରେ ଖାଉଛନ୍ତି । ପ୍ରୋଟିନ୍‌ଜାତୀୟ

ଆ... ପ୍ରୟୋଜନ ଅନୁସାରେ ଦିଆ ହେଉଛି । ଦିନକୁ ତିରିଶ ପାଉଣ୍ଡ ଦୁଧ ଦେଉଥିବା ଗାଈକୁ ଅଠର ପାଉଣ୍ଡ, ୩୦ ପାଉଣ୍ଡ ଦୁଧ ଦେଉଥିବା ଗାଈକୁ ୨୦ ପାଉଣ୍ଡ ଦାନା ଦିଆ ଯାଉଛି ।

ଗାଈ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଜନ୍ମ କରେ । ପ୍ରସୂତି ଭବନରେ ଗାଈ ସହିତ ବାଛୁରୀକି ତିନିଦିନ ମାତ୍ର ରଖା ହୁଏ । ତାପରେ ବାଛୁରୀକି ଜନ୍ତୁଗୃହ କୋଠରୀକି ଅଣା ଯାଏ । ସେଠି ତାକୁ ସ୍ୱାସ୍ଥ୍ୟପ୍ରଦ ଫର୍ମିଲା ପିଇବାକୁ ଦୁଧ ଦିଆଯାଏ—ତାପରେ ଦାନା । ବାଛୁରୀ ସହିତ ଗାଈର କୌଣସି ସମ୍ପର୍କ ନ ଥାଏ; ବର୍ଷେ ପୂରିଲେ ବାଛୁରୀକି ଅନ୍ୟ ଏକ ଗୃହାଳକୁ ନିଆ ହୁଏ—ସେଠି ତାର ସମବୟସ୍କମାନେ ଥାଆନ୍ତି ।

ଦୁହିଁଲା ବେଳେ ଗାଈକୁ ଦାନା ଦିଆଯାଏ—ଦୁହାଁ ହେଲା ବେଳେ ଗୋଟିଏ ବାଟରେ ସେ ପଶେ, ଅନ୍ୟ ବାଟରେ ବାହାରି ଯାଏ । ଯେତେ ଦାନା, ଘାସ ଖାଇଲେ ବି ଗୋଟିଏ ଜାଗାରେ ବନ୍ଧାହୋଇ ରହିବା ଦରକାର । ଚରିବୁଲି ନ ଗଲେ ଗାଈର ମନ ବୋଧ ହୁଏ ନାହିଁ । ବାଡ଼ ଦିଆ ହୋଇ ଗୋଟିଏ ଗୋଚର ଜଗା ହୋଇଛି । ଗାଈ ତା ମଧ୍ୟରେ ଚରେ । ଗୋଟିଏ ପଲ୍ଲ ଗାଈ ଆଉ ଗୋଟିଏ ପଲ୍ଲ ସହିତ ମିଶିବାର ଉପାୟ ନାହିଁ । ବ୍ୟକ୍ତିଗତ ଭାବରେ କେହି ଗାଈ ପୋଷନ୍ତି ନାହିଁ । ଗାଁ ଗୋଠିଆ 'ଗାଈ ଫିଟାଅ ହୋ' ବୋଲି ଡାକ ମାରେ ନାହିଁ । ଏ ଗୋଟିଏ ବଡ଼ ବ୍ୟବସାୟ ।

ଶୀତଦିନେ ବେଶୀ ବରଫ ପଡ଼ିଲେ ଗାଈଗୋରୁଙ୍କୁ ପଦାକୁ ଛଡ଼ା ଯାଏ ନାହିଁ । ସଞ୍ଚିତ ଘାସ, ନଡ଼ା ଖାଇ ସେମାନେ ଘରେ ବନ୍ଧା ହୋଇ ରହନ୍ତି । ଚରିବୁଲି ପାଣି ପିଇବା ଲାଗି ଫାର୍ମରେ ବଡ଼ ବଡ଼ ପୋଖରୀ ଖୋଳା ଯାଇଛି ।

ଗୋଟିଏ ଦୁଧ ବ୍ୟବସାୟୀ କମ୍ପାନୀ ପିଏରସେଲ୍‌ଙ୍କର ସମସ୍ତ ଦୁଧ କିଣିନିଏ । ସେ ଦୁଇଟି ନିଗ୍ରୋ ଚାକର ରଖିଛନ୍ତି—ପ୍ରତ୍ୟେକ ମାସକୁ ୨୪୦ ଡଲାର ଦରମା ନିଅନ୍ତି । ମିସେସ୍ ପିଏରସେଲ୍ ଗାଈ ଦୁହାଁନ୍ତି; ତାଙ୍କ ବଡ଼ ଝିଅ ମିସ୍ ଜୋଆନ୍ ମଧ୍ୟ ଗାଈ ଦୁହେଁ । ପିଏରସେଲ୍

ସମସ୍ତ ଖର୍ଚ୍ଚ ବାଦ ମାସକୁ ଦୁଇ ହଜାର ଡଲାର୍ ରୋଜଗାର କରନ୍ତି । ପୁଅ ରବର୍ଟ ଓ ଝିଅ ଜୋଆନ୍ ଆଗେଞ୍ଜ ହାଃ ସ୍କୁଲରେ ପଢ଼ନ୍ତି । ପରିବାରର ପ୍ରତ୍ୟେକଙ୍କର ଗୋଟିଏ ଗୋଟିଏ ଘୋଡ଼ା ଅଛି; ସେମାନଙ୍କ ଚଢ଼ିବା ଲାଗି ସ୍ୱତନ୍ତ୍ର ଗେରଦ ରହିଛି । ସବା ସାନ ଝିଅର ନାଆଁ ସେରା, ବୟସ ଛ; ତା'ର ବି ଗୋଟିଏ ଘୋଡ଼ା ଅଛି । ମୁଁ ସେରାକୁ କହିଲି—ତମର ତ ଘୋଡ଼ା ଅଛି, ମତେ ଏ ସାଇକେଲଟି ଦିଅ । ସେରା ଖଣ୍ଡିଆ ଦାନ୍ତରେ ମୃଦୁକ ହସି କହିଲା—ନା; କାଳେ ଘେନିଯିବ ଜାବୁଡ଼ି ଧରିଲା । ତା'ର ମଧୁର କାର୍ପଣ୍ୟ ଦେଖି କହିଲି—ଆଜି ଥାଉ, ଆଉ ଦିନେ ଆସିଲେ ନେବି । ଉପସ୍ଥିତ ବିପଦରୁ ରକ୍ଷା ପାଇ ସେରା ଆଶ୍ୱସ୍ତ ହେଲା ।

ଫାର୍ମ ସାରା ବୁଲି ବୁଲି ଶେଷ ହେଲା, ମନରେ ଗୋଟିଏ ଚିନ୍ତା ଚମକି ଉଠିଲା, ବିଦେଶୀ ମୁଁ, ଉତ୍ପାଦନ କ୍ଷେତ୍ରକୁ ଆସିଛି, ଗ୍ଲାସେ ଲେଖାଏଁ ଘନ ଆଉଟା କ୍ଷୀର ହୁଅନ୍ତା ନାହିଁ—ଆଖୁ ଶାଳକୁ ଗଲେ ଯେପରି ହୋରୁଅ ହଅନ୍ତି, ନୂଆ ଗୁଡ଼ ଚଖାନ୍ତି । ମୋ ମନ କଥା ଶୁଣି ପାଇଲା ପରି ଜୋଆନ୍ ଦୌଡ଼ିଯାଇ ରେଫ୍ରିଜରେଟର୍‌ରୁ କୋକୋଆ ଆଇସ୍‌କ୍ରିମ ଘେନି ଆସିଲା; ସମସ୍ତଙ୍କୁ ଗୋଟିଏ ଗୋଟିଏ ଦେଲା, ନିଜେ ମଧ୍ୟ ଗୋଟିଏ ଚୁଟି ଚୁଟି ଖାଇଲା ।

## ଚାର୍ଲସ୍ ଲଙ୍ଗସ୍ଟନ୍‌ଙ୍କ କୃଷିକ୍ଷେତ୍ର

ଫାର୍ମରେ ପଶୁ ନ ପଶୁଣୁ ଦୃଷ୍ଟି ଆକର୍ଷଣ କଲା ସ୍ୱାଇଲ୍, ଚାର୍ଲସ୍ ଲଙ୍ଗସ୍ଟନ୍‌ଙ୍କ ଅଭିଆଡ଼ୀ ବଡ଼ ଝିଅ—ପାଦରେ ତାର ଲାଲ୍ ଜୋତା ଗାଢ଼ ଅଳତା ପରି ଦିଶୁଛି—ନୀଳାଭ ଚିପା ପ୍ୟାଣ୍ଟ, ଦେହରେ ପୁଣି ଗାଢ଼ ଲାଲ୍ ସ୍ୱେଟର; ବ୍ଲଣ୍ଡ୍; ସୁବର୍ଣ୍ଣ କେଶରାଶି ଉଠୁଚି ପଡ଼ୁଚି, ଘୋଡ଼ା ଛୁଟାଇଲା ବେଳେ । ଫସଲଭରା କ୍ଷେତରେ ଛୁଟିଛି ସେ, ଏ ରାସ୍ତାରୁ ସେ ରାସ୍ତା, ସେ ରାସ୍ତାରୁ ଏ ରାସ୍ତା, ଚଳ ଲକ୍ଷ୍ମୀ ପରି; କୃଷିକ୍ଷେତ୍ର ନବ-ଯୌବନର ରାଗିଣୀରେ ହିଲ୍ଲୋଳିତ ହୋଇ ଉଠିଲା ପରି ବୋଧ-ହେଉଛି ।

ପି. ଲିଙ୍ଗଷ୍ଟନ୍ କୃଷିକ୍ଷେତ୍ର ଦେଖାଇବା ଲାଗି ବାହାରିଲେ, ମକ୍କାଲେ ଦେଖାଇଲେ ସୋୟାବିନ୍, ଫୁଲ ଧରି ନାହିଁ; ଟମାଟୋ, ଫଳ ଝୁଡ଼ ମଡ଼ି ଯାଉଛି; ବ୍ୟବସାୟ ଲାଗି ଯଥେଷ୍ଟ ନୁହେଁ, ଏଣେ ଘାସ ଚାରୁ ନାହାନ୍ତି; ଲଙ୍କା ଚଷ—ଆଗଷ୍ଟ ଶେଷ ଲଙ୍କା ମଟର ମୋହଲା ଶେଷ ପାରିଛି । ଏଠି କଞ୍ଚା ଲଙ୍କା ଖାଆନ୍ତି ନାହିଁ । ମକ୍କା କ୍ଷେତ କୋଶଠୁ କୋଶଯାଏ ଲମ୍ବିଛି । ଧୂଆଁପତ୍ରର ମଞ୍ଜୁଷା କଟା ହୋଇ ଗୋଟିଏ ଜାଗାରେ ଗଦା ହୋଇଛି । ଗଛସବୁ କଟା ହୋଇ କାଠିରେ ବନ୍ଧା ହେଉଛି । କେରୋସିନ୍ ଷ୍ଟୋଭରେ ଗୋଟିଏ ଘରକୁ ଗରମ କରି ରଖା ହୋଇଛି । ସେ ଘରେ ଧୂଆଁପତ୍ର ଧାଡ଼ି ଧାଡ଼ି ହୋଇ ଅଳଗୁଣିରେ ଲୁଗା ଓହଳାଇଲା ପରି ଓହଳୁଛି—ଶୁଖୁଛି । ଶୁଖିଗଲାପରେ ତାକୁ ଅନ୍ୟ ଏକ ଘରକୁ ନିଆ ହେଉଛି—ସେଠାରୁ ପଠାହେଉଛି ସିଗାରେଟ୍ କାରଖାନାକୁ, ଧୂଆଁପତ୍ର ନର୍ଥକାରୋଲିନାର ପ୍ରଧାନ ଅର୍ଥକରୀ ଫସଲ ।

ଲିଙ୍ଗ୍‌ଷ୍ଟନ୍‌ଙ୍କର ମୋଟରେ ଶହେ ଏକର ଜମିଅଛି—ଗୋଟିଏ ଖମାର, ଏସବୁ ଚାଷ କରିବା ଲାଗି ତିନିଗୋଟି ଟ୍ରାକ୍ଟର ଅଛି, ଏ ସମସ୍ତ ଚାଷ କାର୍ଯ୍ୟ ଚଳାଇବା ଲାଗି ତିନି ଜଣ ଲୋକ ଅଛନ୍ତି । ସବୁଠାରୁ ବଡ଼ ଟ୍ରାକ୍ଟରର ଦାମ୍ ଏଠା ମୂଲ୍ୟରେ ଏଗାର ହଜାର ଡଲାର୍ । ଛୋଟକିଆ ଚାଷୀମାନେ ଏସବୁ ଯନ୍ତ୍ର ଭଡ଼ା ନେଇ ଚାଷ କରିଥାନ୍ତି । ଧୂଆଁପତ୍ର କାରଖାନାକୁ ବୋହିନେବା ଲାଗି ତାଙ୍କର ତିନିଗୋଟି ଟ୍ରକ୍ ଅଛି । ଏ ଟ୍ରକ୍ ମଧ୍ୟ ଭଡ଼ା ଲାଗେ । ଦୂର ଜାଗାକୁ ଯିବା ଲାଗି ତାଙ୍କର ଗୋଟିଏ ମଟର ଗାଡ଼ି ଅଛି ।

ପରିବାରର ପ୍ରତ୍ୟେକଙ୍କର ଗୋଟିଏ ଗୋଟିଏ ଘୋଡ଼ା; ଲିଙ୍ଗଷ୍ଟନ୍ ଘୋଡ଼ାରେ ବସି କୃଷିକ୍ଷେତ୍ର ଦେଖନ୍ତି । ଘୋଡ଼ାଚଢ଼ା ଗୋଟାଏ ପ୍ରଧାନ ବ୍ୟସନ, ଟେନିସ୍ ଖେଳିବା ଲାଗି ଗୋଟିଏ ପ୍ରାଙ୍ଗଣ ରହିଅଛି । ଟେଲିଭିଜନ, ରେଡ଼ିଓ, ରେଫ୍ରିଜରେଟର୍ ତ ଘରେ ଘରେ । ଲିଙ୍ଗଷ୍ଟନ୍ ନ ରଖିବେ କାହିଁକି ? ପୋଖରୀ କୂଳେ କୂଳେ ଚରୁଛନ୍ତି ପଲେ ଗାଈଗୋରୁ, ଆଉ ପଟେ ଘୁଷୁରି, ମେଣ୍ଢା । ସେସବୁ ସେ ପାଳୁଛନ୍ତି ମାଂସ ଲାଗି । ସହର ବଜାରରୁ ସେ ମାଂସ କିଣନ୍ତି ନାହିଁ ।

ତାଙ୍କର ଗୃହରେ ଗୋଟି ବଡ଼ ବଡ଼ କୁକୁର ଅଛନ୍ତି—
ପ୍ରତିମୂର୍ତ୍ତି—ଦାନ୍ତ କଡ଼ମଡ଼ କରୁଥାନ୍ତି । ଫିଟାଇଦେଲେ ଆମକୁ କାମୁଡ଼ି କୁଚୁକୁଚା କରିଦେବେ । କ୍ଷେତରେ ଚଢ଼ େସେମାନଙ୍କର କର୍ତ୍ତବ୍ୟ—ଆରେଷ୍ଟ କରିବାର ହୁକୁମ୍ ନାହିଁ । ଅନୁମତିରେ କିଏ କ୍ଷେତ ଭିତରେ ପଶିପାରିବ ? ତେଣୁ ଗୁଣ୍ଡ଼ୁ, ପକ୍ଷୀ ବା ମଣିଷର ଆଇନ୍ କାନୁନ୍ ବର୍ତ୍ତନ ନାହିଁ । ଆହାର ଯୋଗାଡ଼ କରିନେବା ଲାଗି ସେମାନେ ବେଳେ କୃଷିକ୍ଷେତକୁ ପଶିଆସନ୍ତି—ଅନଧିକାର ଚର୍ଚ୍ଚା ଏ । ଚୌର୍ଯ୍ୟ ଦୁଇଟି ଅପରାଧରେ ଅପରାଧୀ ସେମାନେ-ତମାର କୁକୁର ସେମାନଙ୍କୁ ଗୋଡ଼ାଇ ଧରେ ନାହିଁ—ଘୁରୁଡ଼ାଇ ଦ ସେ ସମୟରେ ଜମିମାଲିକଙ୍କୁ ଏ ଦୃଶ୍ୟ ଦେଖାଇ ଦିଏ । ତା ଦୟା ନାହିଁ କି ମାୟା ନାହିଁ । ନିଜେ ବଞ୍ଚିବା ଲାଗି ମଣିଷ ଆଚରଣ ଦେଖାଏ, ଏ ତାହିଁ ମଧ୍ୟରୁ ଗୋଟିଏ; Charity begi home-ଏ ଗୋଟିଏ କଥାର କଥା ।

ଲଙ୍ଗ୍‌ସ୍ଟନ୍‌ଙ୍କ ବାଡ଼ ଘୃଣାସ୍ପଦ ଜାଇଲେ, ମାପଲ, ଆଖରୁଟ୍ ଓ ଅଲୁକେଟୋଟି ଓକ୍ ଗଛ ଅଛି । ଟ୍ରେନ ବଗିଚାଟିଏ ମଧ୍ୟ ଅଛି—କେତୋଟି ମାଣିକସ୍ତୂପ ଗେଣ୍ଡୁ, ପ ମାଗ୍ନୋଲିଆ ଫୁଟିଛି—ଆଜ କି ଲାଲ୍ ଫୁଲରେ ବର୍ଣ୍ଣନୀୟ ହୋଇ ଉଠିଛି—ସବୁ ସୁସଜ୍ଜିତ, ସୁଶୃଙ୍ଖଳ, ସୁନ୍ଦର । ସମସ୍ତେ ମ କୃଷିବାବତ ବ୍ୟସ୍ତ ବାଦ୍ ଯାଇ ତାଙ୍କର ମାସକୁ ଦେଢ଼ ଆୟ ହୁଏ ।

ତାଙ୍କର ତିନିଗୋଟି ବଡ଼ ବଡ଼ ପୁଷ୍କରିଣୀ ରହିଛି । ପାଣି ବୋହି ସେ ଜଳସେଚନ କରନ୍ତି—ଗମ୍ଭୀରଟି ଯାକ ମ ଇମ୍ ବସିଛି— କଳରେ ପାଣି ଉଠେ, ନଳ ବାଟେ ବିଲରେ ମାଡ଼େ; ଛଅ ଆଠ ବର୍ଷା ନ ହେଲେ ଫସଲ ନ ହୁଏ । ତେଣୁ ଲଙ୍ଗସ୍ଟନ୍ ଫସଲ ଇନ୍‌ସୁରେନ୍ସ କରିଛନ୍ତି । ଏ ବାବତ କ୍ଷତି ପୂରଣ କମ୍ପାନୀ ଦେଇଥାଏ ।

ଲଙ୍ଗସ୍ଟନ୍ ଜଣେ ବଡ଼ ଚୂଷୀ, ଆମଆଡ଼ର ... ଦାରଙ୍କ ପରି; ତାଙ୍କ ପାଖରେ ଲୋକର ... ବୟସ ଆଠ; ସୁବେଶରେ ସୁନ୍ଦର ଦିଶୁଛି, ... ରଙ୍ଗ । ନିଶ୍ଚିନ୍ତତା ସେଇ ଟିକ ମୁହଁଟିରେ ପୂରି ରହିଛି ।

ପଚାରିଲି—ମି. ଲଙ୍ଗସ୍ଟନ୍, ତୁମ ପିଲମାନେ ଚୂଷକଷ ବ୍ୟବସାୟରେ ପଶିବେ ନା ପୈତୃକ ବୃତ୍ତି ଗ୍ରହଣ କରିବେ ?

ଲଙ୍ଗସ୍ଟନ୍ କହିଲେ—ଚୂଷରେ ବହୁତ ଆନନ୍ଦ ସ୍ୱାଧୀନତା, ପ୍ରତିଯୋଗିତା ନାହିଁ—ତଟକା ଖାଦ୍ୟ ଖାଇ ଜଳବାୟୁରେ ରହିବା ଆନନ୍ଦ କଣ ସହରରେ ମିଳିବ ?

ଏକ ଦିଗରେ ଗୋଧୂଳି ମେଘର ଦୌଡ଼, ଅନ୍ୟ ଦିଗରେ ... ଲ୍‌ର ଘୋଡ଼ା ଦୌଡ଼ ଦେଖି ଦେଖି ଆମେ ଲଙ୍ଗସ୍ଟନ୍‌ଙ୍କ ଠାରୁ ... ନେଇ ଗାଡ଼ିରେ ବସିଲୁ । କେବଳ ବୁଝି ପାରିଲି ନାହିଁ ଗୋଟି ... ପଚାରିବାକୁ ସଙ୍କୋଚ ଲାଗିଲା; ଘରର ମାଲିକ୍ କାହିଁକି ଏକ ... ପିନ୍ଧିଛନ୍ତି, ବହୁ କଳକାରଖାନା ବାଙ୍କପଜର ଛପାମର ?

## 'ଏଡ଼ି ପାରନ୍ତି କି କେବେ ଅଙ୍ଗନା' ?

ମି. ଚେଷ୍ଟି କୁକୁଡ଼ା ପାଳନରେ ପିଏଚ.ଡ଼ି କରୁଛନ୍ତି । କୁକ୍କୁଟ ଦେହରେ ନାନା ଜୀବାଣୁ ଓ ଧାତୁ ଇଞ୍ଜେକ୍‌ସନ୍ ଦିଆ ହୋଇ ପ୍ରତିକ୍ରିୟା ଲକ୍ଷ୍ୟ କରାଯାଉଛି; ଅଣ୍ଡା କିପରି ଦୀର୍ଘକାଳ ରଖାଯାଇ ପାରେ, ଯନ୍ତ୍ର ସାହାଯ୍ୟରେ ଫୁଟାଯାଇ କିପରି ଛୁଆ ବାହାର କରାଯାଏ—ଚେଷ୍ଟୀ ବୁଲାଇ ଦେଖାଇଲେ—ନାନା କଳକବ୍‌ଜା, ନାନା ଗବେଷଣା ବିଭାଗ; ଯେଉଁ ପରିଚ୍ଛନ୍ନ ରଖାଗଲେ ବି ଦୁର୍ଗନ୍ଧରେ ନାକ ଫାଟି ପଡ଼ୁଥାଏ ।

ରଜୁ ମିସେସ୍ ମାର୍‌ଗାରେଟ୍‌ଙ୍କ ସହିତ ମୋତେ ପରିଚିତ କରାଇ ଦେଲା—କୁକ୍‌କୁଟ ସାହିତ୍ୟରେ ସେ ବିଶେଷଜ୍ଞା—କେତେକ ଖଣ୍ଡ ପୁସ୍ତିକା

ପତ୍ରିକା ସେ ବଢ଼ାଉଛନ୍ତି, ମୁଁ ରଖୁଛି—ଦେଖୁ ଦେଖୁ ହେଲା ଗୋଟିଏ । ଏତେ ବିପୁଳ କୁକ୍‌କୁଟ ସାହିତ୍ୟ ଭାରତକୁ ବୋହିନେଇ ପାରିବ ? ନେଲେ କିଏ ପଢ଼ିବ ? ନ ପଢ଼ିଲେ ନେବ କାହିଁକି ? ମିସେସ୍‌କୁ ନିବୃତ୍ତ କରିବା ଲାଗି ରାଜୁ ଟିକିଏ ଦୁଷ୍ଟ ବୁଦ୍ଧି ବାହାର କଲା, ପଚାରିଲା—ମିସେସ୍, ଏ ଇଅରିରିଙ୍ଗ୍ କୋଉଠୁ ଆଣିଥିଲେ ? ଭାରି ଚମତ୍କାର ହୋଇଛି । ମିସେସ୍ ଉତ୍‌ଫୁଲ୍ଲ ହୋଇ କହିଗଲେ—ମୁଁ ଇଅରିଂକୁ ଭାରି ଭଲ ପାଏ—ଭାରତୀୟ ପଥରବସା ସୁନାଗଡ଼ାକୁ ବି ଭଲ ପାଏ । ଏ ଇଅରିଙ୍ଗରେ ଦୁଇଟି ହୀରା ବସିଛି—ଆଲୁଅରେ ତାହା ଝକ୍ ଝକ୍ କରେ । ମୁଖ ଆଲୋକିତ ହୋଇଯାଏ ।

ଭାବିଲି—ଏତେ ଶିକ୍ଷିତା, ବୃଦ୍ଧା, ଅଳଙ୍କାର ଲୋଭ ଛାଡ଼ିନାହିଁ ? ରାଧାନାଥ ଯାହା କହିଛନ୍ତି—'ଅଳଙ୍କାର ଲୋଭ ଏଡ଼ି ପାରନ୍ତି କି କେବେ ଅଙ୍ଗନା ?' ଏହା ସବୁ ଦେଶର ନାରୀଙ୍କ ପ୍ରତି ସବୁ ଯୁଗରେ ପ୍ରଯୁଜ୍ୟ ।

## ବାର୍‌ବର୍

ବାରବରା ରାଜୁର କ୍ଲାସ ମେଟା ସଙ୍ଗିନୀ, ତେଇଶି ବର୍ଷ ବୟସ୍କା ମହିଳା । ନର୍ଥକାରୋଲାଇନା ବିଶ୍ୱବିଦ୍ୟାଳୟରେ କେମିଷ୍ଟ୍ରିରେ ପି.ଏଚ୍. ଡି. କରେ । କଫି ଖାଇବା ଲାଗି ରାଜୁ ତାକୁ ଡାକିଲା, ରାଜୁ ଯେତେବେଳେ ଗଲେ ଆସେ ଏ ମହିଳା ତାକୁ ନାନା ଭାବେ ସାହାଯ୍ୟ କରିଥିଲା—ଭଡ଼ା ଘର ଠିକ୍ କରି ଦେଇଥିଲା, ବଜାର ସଉଦା କରି ଆଣି ଦେଇଥିଲା, ଏପରିକି ରନ୍ଧଣା ପାତ୍ର ସଜାଡ଼ି ଦେଇଥିଲା; ଏ ଅପରିଚିତ ସହରରେ ଏତେ ଆପଣାର କରି ଜଣେ ପାଇବା କଣ ସହଜ କଥା ?

ପରିଚୟ ପରେ ରେଷ୍ଟୁରାଣ୍ଟକୁ ଆସି ଭଦ୍ରମହିଳା ମୋ ପାଖେ ବସିଲେ । ତାଙ୍କ ସରଳ ହସରେ ଏପରି କିଛି ଆକର୍ଷଣ ଥିଲା ଯାହା ଗଭୀରତର ଆଳାପ ଲାଗି ମୋତେ ପ୍ରବର୍ତ୍ତାଇଲା । ପଚାରିଲି—

ଭାରତୀୟାଙ୍କ ପରି ତୁମ କେଶ କଳା, ପୁଣି ଅତି ଦୀର୍ଘ; ଏପରି କେଶ ଏଠି ପସନ୍ଦ କରନ୍ତି ନାହିଁ ପରା !

'ତା ବାଟରେ ମୁଁ ତାକୁ ବଢ଼ିବାକୁ ଛାଡ଼ି ଦେଇଛି । କାହା ପଦରୁ ଅପଦରୁ ମତେ କି ମିଳିବ ? ଗୁଡ଼ାଏ ଡଲାର ଖର୍ଚ୍ଚ କରି କେଶ ସଜାଡ଼ିବା, ଆଉ କିଛି ଯୋଡ଼ି ସ୍ଫୀତତର କରିବା, ଅଳ୍ପକୁ ବହୁତ ବୋଲି ଦେଖେଇ ହେବା ଠାରୁ ଏ କଣ ଭଲ ନୁହେଁ ? ମୁଁ ନିଜ ହାତରେ ମୁଣ୍ଡ କୁଣ୍ଡାଏ; ହେୟାର ଡ୍ରେସର ପାଖ ମାଡ଼େ ନାହିଁ; ଇନ୍‌ସେକ୍ଟ ରେପେଲେଣ୍ଟ ସ୍ପ୍ରେ ( ଉକୁଣିମାରା ? ) ଆବଶ୍ୟକ ହୁଏନାହିଁ ।

ଏତିକିବେଳେ ରାଜୁ ଜଳଖିଆ, କଫି ଆଣି ଥୋଇଲା; ବାରବରା ଜଳଖିଆ ଛୁଇଁଲା ନାହିଁ ।

'କାହିଁକି ଖାଉନାହଁ ?'

'ଦେଖୁଛ, ମୁଁ କିପରି ଫୁଲୁଚି !'

ଲକ୍ଷ୍ୟ କଲି—ସ୍ଫୀତ ସାଧାରଣ ଲାବଣ୍ୟଟିକି ଆଚ୍ଛନ୍ନ କରି ଶ୍ରୀକୁ ଗ୍ରାସ କରି ଆସିଲାଣି; ସାବଧାନ ନ ହେଲେ ବଢ଼ି ପରି ବସିଯିବ। ଚର୍ବି—ଶରୀର ହେବ ଏକ ଦୁର୍ବହ ଭାର ।

କଥାର ମୋଡ଼ ବଦଳାଇ ପଚାରିଲି—

ପିଏଚ୍. ଡ଼ି କରିବାକୁ ଆଉ କେତେ ବର୍ଷ ଲାଗିବ ?,

'ଦ ବର୍ଷ ।'

'ଘର ।'

'ମଣ୍ଟ୍ରିଲ ।'

'କେତୋଟି ଭାଇ ଭଉଣୀ ?'

'ପିତାମାତାଙ୍କର ଏକମାତ୍ର ସନ୍ତାନ ।"

'ବିବାହ କରିଛ ?'

'ମୋର ଦୁଇଟି ଝିଅ ।'

ରାଜୁ ଟିକିଏ ଟିପ୍‌ପଣୀ ଯୋଡ଼ି ଦେଇ କହିଲା—ଆଉ ମୂର୍ତ୍ତିଏ ଏବେ ଜନ୍ମ ହେବେ ।

ବିପାଶ ଗର୍ଭ ।

ଚଟକୁ ଟିକିଏ କଠୋର କରି ବାର୍‌ବଗ କହିଲ—ଏଇଟାକୁ ମୋ ... କାତ୍ର ନିଅନ୍ତା କି ! ଦୁଷ୍ଟ ପିଶାଚ ମୋର ପେଟରେ ଅଛି । ମୁଁ ... ଙ୍କୁ ସୁଡ଼ପଡ଼ ଦେଉଛି, ତା'ର ପିଲ ଏ ପେଟରେ, ଧିକ୍ ମତେ, ... ଧର ମୁଁ ବୋହୁଚ ।

ଗଜୁ କହିଲ—ବ୍ୟସ୍ତ କାହିଁକି ? ତା ବେଳ ହେଲେ ସେ ବାହାରିବ—ଏଥର ଘୃଅଟିଏ ! ବାର୍‌ବଗ କହିଲ—ନା, ସେଇ ଝିଅ; ଝିଅ ପୁଅ ମୋ ପକ୍ଷେ ସମାନ । ଡାକ୍ତର କହୁଚ—ନ, ପାଉଣ୍ଡ ହେବ । ଏତେ ବଡ଼ ପିଲ ଏ ପେଟରେ ମୁଁ କେମିତି ଧରିବ ?

ମୁଁ କହିଲି—ସେ ତ ଶରୀରର ଆକୃତି, ସ୍ୱାସ୍ଥ୍ୟ ଉପରେ ନିର୍ଭର କରେ ।

'କେତେବେଳେ ଫଳ କି ବୃକ୍ଷକୁ ଭୁଏ ଭାରି ?'

ବାରବଗ କହିଲ—ମୁଁ ଏତେ ପିଲଝିଲଙ୍କୁ ଭଲପାଏ ନାହିଁ ।

ଗଜୁ କହିଲ—ମୁଁ ବି ସେଇଆ, ହଗୁଥିବେ, ମୁତୁଥିବେ, କେଁ କଟର ହେଉଥିବେ !

ତୁମେ ପିଲ୍ ନ ଖାଇଲ କାହିଁକି ?

ମୋର କୌତୂହଳ ଦେଖି ଗଜୁ ବାରବଗର ଜୀବନକାହାଣୀ ଫେଡ଼ି ବସିଲ; କହିଲ—ଛନିବର୍ଷ ତଳେ ଦୁହେଁ ଚାକ୍ରି ହୋଇଥିଲେ— ପ୍ରେମପୂତ୍ର ବିଶେଷ । ସ୍ୱାମୀ ଅଧ୍ୟାପକ, ଡକ୍ଟରେଟ୍ ପାଇଛନ୍ତି । ପହିଲେ ବେଶ୍ ଚଳୁଥିଲ; ଏବେ କଣ ହେଲ କେଜାଣି, ସ୍ୱାଙ୍କ ମୁହଁ ପୂର୍ବକୁ ହେଲେ ତାଙ୍କ ମୁହଁ ପଶ୍ଚିମକୁ ।

ବାରବଗ କହିଲ—ସ୍ୱାମୀଙ୍କର ଇଚ୍ଛା—ବୋଲ ଖିଆଲ୍—ମୁଁ ସବୁବେଳେ ଘରେ ରହିବ, ରନ୍ଧାବଢ଼ା କରିବ, ପିଲ ପାଳିବ, ପୂର୍ବପୁରୁ

ଗୃହିଣୀ ସାଜି ବସିଛ । ମୁଁ ସେ ସବୁ ପସନ୍ଦ କରେ ନାହିଁ । ମୋ ଇଚ୍ଛା —ମୁଁ ପଢ଼ିବି, ଗବେଷଣା କରିବି ।

'ପିଲା ଥିବୁ କୁଆଡେ ଯିବେ ?'

'ମୁଁ ଡାଇଭର୍ସ କଲେ ପିଲାଏ ବାପାଙ୍କ ପାଖେ ରହିବେ—ଲାଳନ ପାଳନ ଦାୟିତ୍ୱ ପୂରାପୂରି ବାପାଙ୍କର, ଆଇନରେ ଅଛି । ଏବେ ଏକ ବର୍ଷ ବିଚ୍ଛେଦ—ପରୀକ୍ଷା ଚାଲିଛି, ବର୍ଷକ ପୂରିଲେ ଦୁହେଁ ଛାଡ଼ ବାଡ଼ ହୋଇଯିବୁ ।'

'ପିଲାଙ୍କୁ ଛାଡ଼ି ରହିଲେ ତୁମକୁ କଷ୍ଟ ଲାଗିବ ନାହିଁ ?'

'ନା, ନା ପିଲା ମୋତେ ଜଦର ପରି ଲାଗେ ।'

ଗଜ୍ କହିଲି—ତା ହେଲେ ଅବ୍‌ଜେକସନ୍ କଲନାହିଁ କାହିଁକି ?

'କରିବା କଷ୍ଟକର ନୁହେଁ; ନର୍ସ ବି ଅଛନ୍ତି । ପାଞ୍ଚଶ ଡଲାର୍ ଖର୍ଚ୍ଚ କଲେ ହେଲା । ମୁଁ ସେତକ ବି ଯୋଗାଡ଼ କରିଥିଲି । କିନ୍ତୁ ସ୍ୱାମୀ ମୋର ପିଛା ଧରିଲେ । କିଛି କରିଥିଲେ ପୁଲିସ୍‌କୁ ଖବର ଦେଇଥାନ୍ତେ । ବେଆଇନ୍ କଥା । ମୋତେ ଜେଲଦଣ୍ଡ ଭୋଗିବାକୁ ହୋଇଥାନ୍ତା !'

'ଝିଅ ଦୁଇଟି ଏବେ କେଉଁଠି ?'

'ଅନ୍ୟ ଜଣକ ଘରେ ପାଳିତ ହେଉଛନ୍ତି । ସ୍ୱାମୀଙ୍କୁ ସେ ବାବଦ ଖର୍ଚ୍ଚ ତୁଲାଇବାକୁ ହେଉଛି । ମୋ ରୋଜଗାରରେ ତ ମୁଁ ଏଠି ଚଳେ ।'

'ପିଲାଗୁଡ଼ାକ କାନ୍ଦନ୍ତି ନାହିଁ ?'

ଗଜ୍ କହିଲି—ମାତୃସ୍ତନ୍ୟର ସ୍ୱାଦ ସେମାନେ ଦିନେ ପାଇ ନାହାନ୍ତି । ମା'ଆ ପାଖେ ଅଳି କରି ଶିଖି ନାହାନ୍ତି, ଭଲମନ୍ଦ କେବେ ମାଗି ନାହାନ୍ତି । ମାତୃସ୍ନେହ ତ କଣ ମୂଳରୁ ଜାଣନ୍ତି ନାହିଁ, କାନ୍ଦିବେ କାହିଁକି ? ଯେପରି ପଶୁପାଳନ, ସେହିପରି ଶିଶୁପାଳନ, ସ୍ନେହବଞ୍ଚିତ ହତଭାଗ୍ୟ !

ହେଡ଼ିଆରେ ପଚାରିଲି—ମାଆ କଣ ଏ ପିଲାଙ୍କୁ ମୋଟେ ଭଲ ପାଏ ନାହିଁ ? ରାଜ୍ କହିଲା—ତାର ଷୋଳଟି ବିରାଡ଼ି ଅଛନ୍ତି । ବିରାଡ଼ି ଦେଖିଲେ ସେ ବାଇ । କିନ୍ତୁ ପିଲାଙ୍କୁ ଦେଖିଲେ ସେ ଦୁର୍‌ଦୁର୍ ମାର୍‌ମାର୍ କରେ, ସତେ ଯେପରି ଏମାନେ ତା ରକ୍ତମାଂସର ନୁହନ୍ତି । ସ୍ୱାମୀ ପିଲାଙ୍କ କାମ ସବୁ କରନ୍ତି ।

'ଚରିତ୍ରରେ କଣ ସନ୍ଦେହ କରାଯାଇ ପାରେ ?'

'ମୁଁ ଯେତେଦୂର ଜାଣେ, 'ନା', ସରଳା, ଶାନ୍ତା, ଶିଷ୍ଟା । ଥରେ ଜଣେ ବିଦେଶୀ ଯୁବକର କାମସ୍ପୃହାର ଇଙ୍ଗିତ ପାଇ ସେ ତାକୁ ପରିଚିତ କରାଇ ଦେଇଥିଲା ଦୁଇଟି ନର୍ସ ସଙ୍ଗେ—ଏମାନେ ସେଇ କାଙ୍କ୍ଷିତା ସ୍ତ୍ରୀ—ମୁଁ ନୁହେଁ । ସେଇ ଯୁବକର ସ୍ତ୍ରୀ ଏବେ ଆସିଛନ୍ତି, କିନ୍ତୁ ପୂର୍ବ ଅଭ୍ୟାସ ସେ ଭୁଲିପାରି ନାହାନ୍ତି । ପଦ୍ମା ଛୁଟିଦେଇ ବେଳେ ବେଳେ ପଳେଇଯାନ୍ତି, ଜଦା ଖାଇବାକୁ ।

ସ୍ତ୍ରୀ ଧରିବସିଛି—ମତେ ସଙ୍ଗରେ ନିଅ; ଏକା ଏକା ପଳାଉଛ କାହିଁକି ? ସ୍ୱାମୀ ତାକୁ ଛାଡ଼ି ଦୌଡ଼ୁଛି । କାରଣ ଏଠି ଦୌଡ଼ ଅଭ୍ୟାସଟି ବେଶୀ; ଚାଲିବା ଏକ ପ୍ରାଚୀନ ପ୍ରଥା । ବେଗ ଉପରେ ବିଶ୍ୱାସୀ ସଂସ୍କୃତି ଦୃଷ୍ଟିରେ ହୁଏତ ଏ ଅସଭ୍ୟ !

ସେ ଆଲୋଚନାକୁ ବଢ଼ାଇବାକୁ ନ ଦେଇ ପଚାରିଲି—

ହାର୍‌ବର, 'ତୁମେ ଆଜ ବିଭା ହେବ ନାହିଁ ?'

'ନାଇ, ନାଇଁ, କଦାପି ନୁହେଁ',

'ଏମିତି ଏକୁଟିଆ ରହି ପାରିବ ?'

ନିଶ୍ଚେ ରହିପାରିବ; ଏକୁଟିଆ ସ୍ୱାଧୀନ ଜୀବନ ମତେ ଖୁବ୍ ଭଲ ଲାଗେ । ସଂସାରର ସ୍ୱାଦ ଯଥେଷ୍ଟ ଚାଖିଛି, ଆଉ ନୁହେଁ । ମୁଁ ସ୍ୱାଧୀନ ଜୀବନ ଯାପନ କରୁ । ୧୯ ବ

ତେବେଶ ଓ ସ୍କୁଲଟାକୁ ଗୁଣ୍ଡି ମନେ ହେବ—ଆଜ ସେ ସୁଯୋଗ ବା ଦୁର୍ଯୋଗ ଜୀବନରେ ବାର୍ବରକୁ ନମିଳପାରେ, ସ୍ୱାମୀ ଲାଗି ଏଠେ ଯୁବଙ୍ଗୀମାନଙ୍କ ମଧ୍ୟରେ ପ୍ରତିଯୋଗିତା ଯେପରି; ଅଭିଜାତ୍ରୀ ଯୁବଙ୍ଗୀ ହିଁ ପ୍ରଥମ ସୁଯୋଗ ପାଏ; ଏ ଶ୍ରୀ ହୀନାକୁ ପସନ୍ଦ କଏ ? ରୂପର କ୍ଷତିପୂରଣ ଗୁଣରେ ହେଲେ ମିଳନ୍ତା । ସତ୍ତ ହୋଇପାରେ, ଏ କଣ ପତି ସୋହାଗିନୀ ହୋଇ ପାରିବ ?

ତାପରେ ବାର୍ବରା ମୋତେ ପଚାରିଲା—କଣ କରନ୍ତି ?

ମୁଁ ଜଣେ ସାହିତ୍ୟିକ, ଅଧ୍ୟାପନା ମୋର ବୃତ୍ତି । ତୁମେ ସାହିତ୍ୟ ପଢ଼ ? ମାନେ—କବିତା, ଗଳ୍ପ, ଉପନ୍ୟାସ ?

'ସେସବୁ ମୁଁ କିଛି ପଢ଼େ ନାହିଁ, ପଢ଼ିବାକୁ ଭଲପାଏ ନାହିଁ । ସ୍କୁଲ୍ ପାଠ୍ୟରେ ଯେତିକ ପଢ଼ିଥିଲି ସେତିକ ।'

'ମୋଭି ଦେଖିପାଅ ନାହିଁ ?'

"ନା'

'ଟେଲିଭିଜନ୍ ଦେଖନାହିଁ ?'

'ନାଟକ ହେଲାବେଳେ ଟେଲିଭିଜନ ବନ୍ଦ କରିଦିଏ—କେବଳ ଖେଳ ଦେଖେ—ଫୁଟବଲ୍, ବେସବଲ୍, ବାସକେଟ୍‌ବଲ୍ । କିନ୍ତୁ ଏବେ ସେ ସନ୍ଧଟି ଭାଙ୍ଗି ଯାଇଛି । ମଗଜକୁ କଷ୍ଟ କରିବାର ଆଗ୍ରହ ନାହିଁ ।'

ବାର୍ବରା ସୁସ୍ଥଦର୍ଶୀ, ଦୂରଦୃଷ୍ଟି, କିନ୍ତୁ ସାଧାରଣଭାବରେ ଫସାଉଣୀ ହେବାକୁ ଅଯୋଗ୍ୟ ସେ । ଆଖିର କଠୋର ଗାମ୍ଭୀର୍ଯ୍ୟ ଆହତ କରେ; ସେ ଅନ୍ତରରେ ଆଲୋଡ଼ନ ସୃଷ୍ଟି କରିପାରେ ନାହିଁ । ସେ କୌଣସି ପ୍ରସାଧନ ବ୍ୟବହାର କରେ ନାହିଁ—ଏପରି କି ଲିପଷ୍ଟିକ୍ । ସେ ମାତା ନୁହେଁ, କେବଳ ଗର୍ଭଧାରିଣୀ; ପ୍ରଣୟିନୀ ନୁହେ, ପରିଣୀତା ମାତ୍ର; କାମିନୀ ନୁହେ; ଯୌବନର ସାଧାରଣ ଧର୍ମ ରୂପେ ହୁଏତ କାମ ତା ଅନ୍ତରରେ କିଛିହିନ ସ୍ଥାନ ପାଇଥିଲା ।

ଆମେରିକାରେ ବୁଲି ବୁଲି ବୁଝିଥିଲି—ଜୀବନର ଅର୍ଥ ଉପଭୋଗ । ଭାରତବର୍ଷ ବୁଝାଇ ଦେଲା—ଉପଭୋଗ ନୁହେଁ, ଉପଯୋଗ, ସଂସାର ବନ୍ଧନ ନୁହେଁ, ତପସ୍ୟା, ରୁକ୍ଷ, କଠୋର । ଜାଗ୍ରତ ରୂପ ନୁହେଁ, ଜନନୀ ରୂପ ନୁହେଁ—ଅନ୍ୟ କିଛି ବିଶ୍ୱବରେ ଭାରତବର୍ଷ ଖୋଜୁଛି ନାରୀ ଜୀବନର ଏକ ନୂତନ ଅର୍ଥ ।

## ସିଲେରୁ ବିଦାୟ (୯।୮।୬୭)

ଉଡ଼ାଜାହାଜ ଧର୍ମଘଟ ବନ୍ଦ ହୋଇନାହିଁ । ପିଏଡ଼ମଣ୍ଟ ଏୟାର ଲାଇନ୍‌ରୁ ଡେଲ୍‌ଟା ଏୟାର ଲାଇନ୍—ମେମ୍ଫିସରୁ ସେଣ୍ଟଲୁଇସ— ବୁଲାଣି ବାଟ । ଫଳରେ ମୋତେ ଓଣେଇଶ ଡଲାର ଅଧିକା ଦଣ୍ଡ ଦେବାକୁ ପଡ଼ିଲା । ସିଲେରୁ ଫେଟ୍‌ଭିଲ୍ ସହରର ବିମାନ ବନ୍ଦରର ଦୂରତା ପଞ୍ଚଷଠୀ ମାଇଲ୍ । ରଞ୍ଜୁ ମଟରଚଲା ଲାଇସେନ୍‌ସ ପାଇନି ନାହିଁ । ମୋତେ ଛାଡ଼ିଦେଇ ଆସିବା ଲାଗି ତାର ଆଉ ଜଣେ ବନ୍ଧୁଙ୍କୁ ଅନୁରୋଧ କଲା, ତାଙ୍କ ନାଆଁ ହରିହର ମହେନ୍ଦ୍ର ଲେ—ସେ କୀଟ-ପତଙ୍ଗ ବିଶେଷଜ୍ଞ; ସେଇ ବିଷୟରେ ସେ ଥେସିସ୍ ଲେଖି ସାରିଲେଣି । ନିକଟରେ ଡିଗ୍ରୀ ନେଇ ଭାରତ ଫେରିଯିବା କଥା । ଏବେ ଚାକିରି କରି କିଛି କିଛି ସଞ୍ଚୁଛନ୍ତି । ସେଥିରେ ସେ ଭାରତ ଫେରିବେ ଓ ବନ୍ଧୁ-ବାନ୍ଧବଙ୍କ ଉଧାର ଶୁଝିବେ ବୋଲି କହନ୍ତି । ମାଙ୍ଗାଲୋର୍ ତାଙ୍କ ଘର; ସିଲେରେ ତିନି ବର୍ଷ ରହିଲେଣି । ରାସ୍ତାଘାଟ ସବୁ ଜଣା ।

ନିରୁପମା, ମୀନା, ରଞ୍ଜୁ ଆମେ ସମସ୍ତେ ତାଙ୍କ ଗାଡ଼ିରେ ଫେଟ୍‌ଭିଲ୍ ଆସିଲୁ । ରାସ୍ତା ଦିଧାରେ ସମତଳ କ୍ଷେତ, ଗଛମାଳ ଲମ୍ବିଛି—ମକ୍‌କା, ଯଅ, ଗହମ କ୍ଷେତ; କୋବି, ଭେଣ୍ଡି ପ୍ରଭୃତି ପନିପରିବା ଚାଷ ମଧ୍ୟ ହୋଇଛି । ଲକ୍ଷ୍ମୀ ହସୁଛନ୍ତି, ଏସବୁ କ୍ଷେତର ପରିବେଶ ଭିନ୍ନ; ମନେ ପଡ଼ିଲା ଆମ ଆଡ଼ ଧାନ ବିଲ କଥା—ଶ୍ରାବଣ ଭାଦ୍ରବ ମାସ, ଏତେ-ବେଳକୁ ଧାନ କଳା ବୁଲି ଆସୁଥିବ, ହିଡ଼ ମୁଣ୍ଡରେ କେଉଁଠି ଗଜାଆ ଫିଟିଥିବ, ଜମିଥିବ ମେଞ୍ଚା ମେଞ୍ଚା ଫେଣ, ବିଲକଙ୍କଡ଼ା ବୁଲୁଥିବେ ଏ ବିଲରୁ ସେ ବିଲକୁ । ଡାହୁକ, ଅନ୍ଧୁଣି ବସିଥିବ । ଗାଢ଼ ସବୁଜ କ୍ଷେତରେ ସ୍ଥାନେ ସ୍ଥାନେ କାଶଫୁଲ ହସି ଉଠୁଥିବ ।

ଦେଖୁ ଦେଖୁ ମେଘ ଘୋଟି ଆସିଲା, ଅସରଣ ପାଣି କଟ୍ଟଡ଼ ଦେଲା । ଗଣ୍ଡା ଭଲ ବଜିଲା ନାହିଁ । ପାନର ଗନ୍ଧ ଶିଥିଳତାର ଢୋଇ- ଗଲା । ଶଙ୍କା ହେଲା- ପଥ ସମସ୍ତରେ ବନ୍ଦରରେ ପହଞ୍ଚ ପାରିବୁ ନାହିଁ । ଆମ ଶରତ୍ ବର୍ଷା ପରି ଏଇ ବର୍ଷା—ହଠାତ୍ ଆସିଲା, ଗୁଡ଼ିଗଲା; ତାପରେ ଗ୍ଣର ଆଲୁଅର ଆଗ ଲୁଚାଲୁଚି ଖେଳ ଲଗିଗଲା, ପିଲାଦିନ ବାଲୁଆ ବାଡ଼ାଘରର ସ୍ମୃତି ମନରେ ସୃଷ୍ଟି କରି ।

ବିଦାୟ ନେଲ ନିରୁପମା—-ମୁଁ ଗୁରୁ ବା ସ୍ନେହୀ ଜନର ସ୍ଥାନ ପୂରଣ କରିଥିଲି; ସେଇ ଫାଙ୍କ ପୁଣି କେବେ କିଏ ପୂରଣ କରିବ— ନିରୁ ପ୍ରଶ୍ନ କରୁଥିଲା ଶୂନ୍ୟକୁ; ଭାରତୀୟ ବିଶେଷତଃ ଓଡ଼ିଆ ଲୋକକୁ ଦେଖିଲେ ଭଙ୍କ ଘର ଲଗୁଥିଲା ତାକୁ । ବିଦେଶରେ ନିଜ ଭାଷାରେ ମନ ଖୋଲି କଥା କହିବାର ଆନନ୍ଦ ସ୍ୱଦେଶରେ ମିଳେ ନାହିଁ ।

ବିଦାୟ ନେଲ ରାଜ. ଧନା ଚିନ୍ତା ତାକୁ ଅନ୍ୟମନସ୍କ କରିଛି; ଅର୍ଥଚିନ୍ତା ମନର ଭଧକୁ ଶୁଖାଇ ଦେଇଛି । ତେଣୁ ବିଦାୟରେ ସୂଲକର କଣ୍ଟକ ଅନୁଭବ କରିପାରିଲି ନାହିଁ ।

ମହେନ ଲେ ବନ୍ଦରରେ ଆମକୁ ଗ୍ଲାସେ ଲେଖାଏଁ 'ମିଲ୍‌କସେକ' ଖୁଆଇଲେ—କ୍ଷୁଧା ଓ ତୃଷା ନାଶକ । ସୁଶ୍ରୀ, ଆଧୁନି- କତାରେ ଶାଣିତ ଶିକ୍ଷୟ, ମମତାରେ ଭରା; ଜୀବନରେ ଆଉ ଥରେ କଣ ତାଙ୍କ ସହିତ ସାକ୍ଷାତ୍ ହେବ ? ସେ ମୋ ଲାଗି ଏତେ କଷ୍ଟ ସହିଲେ, ଏତେ ଖର୍ଚ୍ଚ କଲେ, ପ୍ରତିଦାନର କୌଣସି ଆଶା ନ ରଖି ।

ମୀନା, ଶଳାଭଉଜଟି ମୋ'ର, ବିଭା ହେଲା ପରେ ପୁଅ ଲାଲୁ, ଝିଅ ଲଲୀକ ତା ହାତେ ଦେଇ ରାଜ୍ ଆମେରିକା ଚାଲି ଆସିଥିଲା, ଉଚ୍ଚତର ଡିଗ୍ରୀ ଲାଗି । ଏ ଦେଶରେ ଅଠାକାଠି ଅଛି, ମନର ଚଢ଼େଇକ ବନ୍ଦୀ କରିବା ଲାଗି । ରହୁ ରହୁ ରାଜ୍ ରହିଗଲା ସାଢ଼େ ତିନି ବର୍ଷ; ଏ ବିରହୀ କେତେବେଳେ ପିତାଳୟରେ, କେତେବେଳେ ଶ୍ୱଶୁର ଗୃହରେ ଦାରୁଣ ବିଚ୍ଛେଦ ଦୁଃଖରେ କାଳ କଟେଇବାକୁ ଲାଗିଲା । ଜୀବନ ତ ଏଠି ବନ୍ଧ୍ୟାନ ନୁହେଁ; ଅନେକ ପରିଣୀତାକୁ ଭୁଲିଯାନ୍ତି । ରାଜ୍ ମନେ

ପକାଇ ଅଣିଛି, ଏ ତାର ଉଦାରତା । ମୀନା ନିଜର ବିଷଣ୍ଣ ଜୀବନକୁ ପାଇ ଉତ୍ଫୁଲ୍ଲିତା, କିନ୍ତୁ ମନ ତାର ସଂଶୟମୁକ୍ତ ନୁହେଁ । ରାଜୁର ଅନ୍ୟ-ମନସ୍କତା, ହଠାତ୍ ଅନ୍ତର୍ଦ୍ଧାନ ସଂଶୟର କୁହେଳିକୁ ବେଳେ ବେଳେ ଘନତର କରେ, କୌଣସି ଭିତ୍ତି ନ ଥିଲେ ବି । ବିଚ୍ଛେଦ ଯାଇଛି, କିନ୍ତୁ ତାର ଭୟଙ୍କର ସ୍ମୃତି ଏକୁଟିଆ ମନକୁ ଉତ୍ପୀଡ଼ିତ କରୁଛି । ବାପ, ଭାଇ; ବନ୍ଧୁକୁଟୁମ୍ବ କେହି ନାହାନ୍ତି ଏଠି ପଦେ କହିବାକୁ । ବଳ ଯାହା କିଛି ଅଛି ନିଜର, ତା ମନରେ, ପ୍ରୀତି ଉଦଭୂତ; କିନ୍ତୁ ବିଚ୍ଛେଦ ବିକ୍ଷୋଭ ବେଳେ ବେଳେ ତାକୁ ଭାଙ୍ଗି ଚୂରମାର କରି ଦେଉଛି, ମତେ ଦେଖି ସୂର୍ଯ୍ୟମୁଖୀର ସମସ୍ତ ପାଖୁଡ଼ା ଖୋଲି ଯାଇଥିଲା ଯେମିତି, ରଶ୍ମିଉଜ୍ଜ୍ୱଳ ପ୍ରସନ୍ନତାରେ । କିନ୍ତୁ ତାର ପୁରୁଣା କାନ୍ଦର ବିନ୍ଦୁ ବିନ୍ଦୁ ଲୁହ ଅଦ୍ୟାପି ସେଥିରେ ଲାଗି ରହିଥିଲା ।

ଉଡ଼ାଜାହାଜକୁ ଅପେକ୍ଷା କରି ଦୀର୍ଘ କାଳ କଟିଥିଲା—କ୍ଳାନ୍ତିକର; ଅଳସ ଚିନ୍ତା ବେଳେ ବେଳେ ରୁଗ୍ଣ କରେ । କିନ୍ତୁ ମୁହୂର୍ତ୍ତର ମରୁକାନ୍ତାର ମୋର ଭରି ଉଠିଥିଲା ଛୋଟ ଛୋଟ ଫୁଲରେ । ଅତି ଛୋଟ ଛୋଟ କଥା, ସେସବୁ ଲେଖାଯାଏନା, କିନ୍ତୁ ମନରେ ରେଖାପାତ କରେ । ପ୍ରତ୍ୟେକଟି କ୍ଷୀଣଜୀବୀ ହେଲେ ବି ତାର ଏକ ସମୃଦ୍ଧ ରଙ୍ଗ ରହିଅଛି । ସେଇ ବିନ୍ଦୁରେ ଗଢ଼ା ହୋଇଥାଏ ମଧୁଚକ୍ର ।

ମୀନୁ, ବିଦାୟବେଳେ ମୁହଁ ଭାରି କରିଛୁ କାହିଁକି ? ହସରେ ଯେ ଏତେ କାନ୍ଦ ଫୁଟାଉ ଥିଲା, କାନ୍ଦରେ ସେ ଟିକିଏ ହସ ଫୁଟାଇ ପାରୁନାହିଁ; ସଞ୍ଜର ଜହ୍ନିଫୁଲ ପରି, ଆଶ୍ଚର୍ଯ୍ୟ ।

ପିଏଡ୍‌ମଣ୍ଟ ଗ୍ଲୁଡ଼୍ ଡେଲ୍‌ଟା ଏୟାର୍ ଲାଇନ୍‌କୁ ଗଲାବେଳେ ଟିକେଟ୍ ଚେକ୍ ହେଲା । ସେତେବେଳେ ମୋ ସାମ୍ନାରେ 'କ୍ୟୁ'ରେ ଛିଡ଼ା ହୋଇଥିବା ଜଣେ ଭଦ୍ରଲୋକ ମୋ ସହିତ ଆଳାପ ଜମାଇଲେ—ତାଙ୍କ ନାଆଁ ରବର୍ଟ ହଳମାନ୍; ଷ୍ଟୁର୍ଣ୍ଣିର କମ୍ପାନୀର ସେଲ୍‌ସ ମ୍ୟାନେଜର । ପୂର୍ବ ଆମେରିକାର ସହର ଆଲୋକିତ କରିବାର ଠିକାଦାରୀ ନେଇଛନ୍ତି ସେ । ଆକାଶରେ ଜୀବନର ବେଶୀଭାଗ କଟିଯାଇଛି, ସେତେ-

ବେଳେ ଭୂମି ଶଯ୍ୟାରେ · ନିମଗ୍ନ ଥାନ୍ତି ସେ । ଉଡ଼ିବାବେଳେ ସେ ହିସାବ-କିତାପ୍ କରନ୍ତି, ଚିଠିପତ୍ର ଲେଖନ୍ତି । ବର୍ଷକୁ ତାଙ୍କର ଆକାଶ ଯାତ୍ରାରେ କୋଡ଼ିଏ ହଜାର ଡଲାର ଖର୍ଚ୍ଚ ହୋଇଥାଏ ।

ସେ ପ୍ରଥମ ଶ୍ରେଣୀର ଯାତ୍ରୀ; ମୋ ସହିତ ଆଳାପ କରିବେ ବୋଲି ସେ ଏୟାର୍ ହୋଷ୍ଟେସ୍‌କୁ କହି ଆସି ଏକନମି କ୍ଲାସରେ ବସିଲେ, ଇଞ୍ଜିନ୍ ପାଖରେ । ସେଇ ଗର୍ଜନ ତର୍ଜନ ମଧ୍ୟରେ ଆଳାପ ଜମିଲା, କେତେ-ବେଳେ ଆମ ଯାନ ଉପରକୁ ଉଠିଲା ଜାଣେ ନାହିଁ; ଦେଖିଲାବେଳକୁ ତଳ ଆଉ ଦିଶୁନାହିଁ; ଆମେ ମେଘ ଭିତରେ । ମୋର ନୂତନ ବନ୍ଧୁ ପଚାରିଲେ —

ଆମେରିକାରେ କଣ ସବୁ ଭଲ ଲାଗୁଛି ?

'ଆଧୁନିକତା ସହିତ ନିବିଡ଼ ପ୍ରକୃତି ପ୍ରେମ ।'

'ଆମେରିକା ସରକାର ସ୍ଥିତମତେ ଯୋଜନା କରିଛନ୍ତି ଦେଶକୁ ସୁନ୍ଦରତର କରିବା ପାଇଁ, ଅବଶ୍ୟ ବ୍ୟବସାୟ ସୂତ୍ରରେ । ଦେଶ ସୁନ୍ଦର ହେଲେ ଯାତ୍ରୀ ଆସିବେ, ବ୍ୟୋମଯାନ, ବସ୍ ଆୟ ବଢ଼ିବ ।

ଆଚ୍ଛା, ଆମେରିକାର ନାରୀଙ୍କ ବିଷୟରେ ତୁମର ଧାରଣା କଣ ?'

'ମୁଁ ସେମାନଙ୍କ ସଙ୍ଗେ ମିଶିବାର କ୍ୱଚିତ୍ ସୁଯୋଗ ପାଇଛି, ବିଶେଷ କିଛି ଜାଣେ ନାହିଁ । ତେବେ ମୋର ଧାରଣା—ନାରୀକୁ ଏତେ ଅବାଧ ସ୍ୱାଧୀନତା ଦେବା ଦେଶ ପକ୍ଷେ କ୍ଷତିକାରକ !'

'ସ୍ୱାଧୀନତା କେହି ଦେଇ ନାହିଁ, ସେମାନେ ଯୁଗ ଯୁଗ ଧରି ଯୁଦ୍ଧ କରି ତାହା ହାସଲ କରିଛନ୍ତି । ସମାଜ ପକ୍ଷେ ଏହା କ୍ଷତିକାରକ କି ନୁହେଁ; ଦେଖିବା ଲାଗି ଏବେ ବାକି ଅଛି । ତେବେ ଆମେରିକାର ଏବ ପୁରୁଷ କେତେକାଂଶରେ ମାଇଚିଆ, ସ୍ତ୍ରୀ 'ଅଣ୍ଡିରଚଣ୍ଡୀ ହୋଇଉଠିଛନ୍ତି ।'

'କିଏ ଜଣେ ଲେଖକ କହିଛନ୍ତି ନାଆଁ ମନେ ପଡ଼ୁନାହିଁ—

'ହିନ୍ଦୁଶାସ୍ତ୍ର ମହାସୂତ୍ର ପରେ ଆମେରିକାର ପୁରୁଷମାନଙ୍କ ଅଧୋଗତ ଘଟିଛି । ପୌରୁଷ ଓ ଦୃଢ଼ ସଂକଳ୍ପବଳରେ ଏକଦିନ ସେମାନେ ଏଇ ଦେଶକୁ ସମୃଦ୍ଧିଶାଳୀ ଓ ଅଗ୍ରଗାମୀ କରିଥିଲେ । ଆଜ ସେହି ବଳିଷ୍ଠତା କାହିଁ ?'

'ଆଂଶିକ ଭାବରେ ଏହା ସତ୍ୟ ହୋଇପାରେ; କିନ୍ତୁ ପୌରୁଷ ପ୍ରତି ଏହା ଏକ ଆହ୍ୱାନ; ନାରୀର ଅବାଧ ସ୍ୱାଧୀନତା ପୁରୁଷକୁ ଅଧିକ ମାନବିକ, ଓ ପୌରୁଷସମ୍ପନ୍ନ କରିବ ବୋଲି ଆମେ ବିଶ୍ୱାସ କରୁ । ଯଦି ଏ ଆହ୍ୱାନକୁ ସେ ଗ୍ରହଣ ନ କରେ, ସେ ପଛରେ ପଡ଼ିଯିବ; ନାରୀର ଦାସ ହୋଇଯିବ ।'

'ବାଳକବାଳିକାଙ୍କ ମଧ୍ୟରେ ପ୍ରଣୟ ସମ୍ପର୍କ ପରବର୍ତ୍ତୀ ଦାମ୍ପତ୍ୟ ଜୀବନକୁ ସୁଖମୟ କରୁନାହିଁ । ଅସଂଖ୍ୟ ଅବୈଧ ସନ୍ତାନ ଓ ବର୍ଣ୍ଣସଙ୍କର ଦେଖି କେଉଁ ଜାତି ଗର୍ବ କରିପାରେ ?'

'ଆମେରିକାର ସ୍ତ୍ରୀଙ୍କ ପୂର୍ଣ୍ଣାଙ୍ଗ ବିକାଶ ହୁଏତ ଏବେ ବି ହୋଇନାହିଁ । ହେଲେ ହୁଏତ ଏ ସ୍ଖଳନ ଦୂର ହୋଇଯିବ; ନାରୀ ଆତ୍ମଧର୍ମ ପ୍ରତି ଅଧିକ ସଚେତନ ହେବ । ଆଗାମୀ ଦଶବର୍ଷ ମଧ୍ୟରେ ଆମେ ଏ ପରିବର୍ତ୍ତନ ଆଶା କରୁଛୁ ।

ଏବେ ନାରୀ ପୁରୁଷର ସମଆସୀନରେ ଆସୀନା; ସେ ପୁରୁଷର ଉତ୍ତମତର ଅର୍ଦ୍ଧାଙ୍ଗ ହୋଇଛି । ତାର ପୂର୍ଣ୍ଣ ରୂପ ବିକଶିତ ହେଲେ ଏ ଆପାତ ଆବିଳତା ଦୂର ହୋଇ ପାରିବ, ସେତେବେଳେ ଏକ ଉନ୍ନତତମ ସମାଜ ଗଠିତ ହୋଇ ପାରିବ ।'

ତା'ପରେ କଥାର ମୋଡ଼ ବଦଳିଲା । ଆମେରିକାର ବିଭିନ୍ନ ଅଧିବାସୀଙ୍କ ବିଷୟରେ ଆଲୋଚନା ଚାଲିଲା—ରେଡ୍‌ଇଣ୍ଡିଆନ୍, ନିଗ୍ରୋ ଇତ୍ୟାଦି; ଏମାନେ ଏବେ ଶିକ୍ଷିତ, ସଭ୍ୟ ହୋଇଛନ୍ତି । କିନ୍ତୁ କେତେକ ଗୋଷ୍ଠୀଙ୍କ ଜୀବନ ପ୍ରଣାଳୀ ଆଦୌ ବଦଳୁ ନାହିଁ । ସେମାନେ ଓଜାର୍କ ଅଞ୍ଚଳର ଅଧିବାସୀ, ବିଦ୍ୟାର ଧାର୍ ଧାରନ୍ତି ନାହିଁ, ପୂର୍ବ କାଳର ଗାଆଁ

ପରି ଘର ଲଗାଲଗି ହୋଇ ରହିଛନ୍ତି । ସେମାନେ ପ୍ରାଚୀନ ରୀତିରେ ଗୃହବାସ କରନ୍ତି, ବଣରୁ ଶିକାର କରି ମାଂସ ଖାଆନ୍ତି । ବଣରେ ଗଛ ଅଧରେ ଲୁଚାଇ ଏକ ପ୍ରକାର ମଦ ତିଆରି କରନ୍ତି, ତାର ନାମ ମୁନ୍‌ସାଇନ୍ । କେତେବେଳେ ଧରା ପଡ଼ି ଜେଲ୍ ଯାଆନ୍ତି । ଆଦିବାସୀ ଆଧୁନିକ ହେଉଥିବା ବେଳେ ସେ ଜନେ 'ଆଧୁନିକ' ଆଉ ଆଦିବାସୀ ହୋଇଯାଇଛନ୍ତି । ଆମେରିକାର ଖାଣ୍ଟି ଲୋକସାହିତ୍ୟ ସେଇଠିକି ଗଲେ ମିଳିବ । କିନ୍ତୁ ଆପଣ କଣ ସେମାନଙ୍କ ଭାଷା ବୁଝିପାରିବେ ?'

ତାପରେ ତାଙ୍କ ପରିବାର ବିଷୟରେ ଜାଣିବାକୁ ଆଗ୍ରହ ଦେଖି ହଫମାନ୍ କହିଲେ—ଧର୍ମଗତ ଅତ୍ୟାଚାର ସହ୍ୟ କରି ନ ପାରି ଆମ ପୂର୍ବ ପୁରୁଷ ଜର୍ମାନୀରୁ ପଳାଇ ଆସିଥିଲେ ନିଉୟର୍କ । ସେତେବେଳେ ହାତରେ ପଇସାଟିଏ ନାହିଁ, ଚଳିବେ କେମିତି ? ରେଳଷ୍ଟେସନରୁ ପୋଡ଼ା କୋଇଲା ଗୋଟାଇ ବିକି କୌଣସିମତେ ଜୀବନ ନିର୍ବାହ କଲେ; ସେ ସଞ୍ଚୟଶୀଳ ଥିଲେ । ଏତେ ଦୁଃଖକଷ୍ଟରେ ବି ସେଥିରୁ ପଇସାଏ ପଇସାଏ ସଞ୍ଚି ଗୋଟିଏ ଘୋଡ଼ାଗାଡ଼ି କିଣିଲେ । ଘୋଡ଼ାଗାଡ଼ି ଚଳାଇ କିଛି ଅଧିକ ରୋଜଗାର କଲେ; ସେଥିରୁ କିଛି କିଛି ସଞ୍ଚୟ କରି ଗୋଟିଏ ଟ୍ରକ୍ କିଣିଲେ, ସେଇ ବ୍ୟବସାୟ ଆମର ବଢ଼ି ଚାଲିଲା, ନାନା ଦିଗକୁ ଶାଖା ମେଲିଲା । ଏବେ ମୁଁ ନିୟୁତ ନିୟୁତ ଡଲାରର ମାଲିକ ହୋଇପାରିଛି । କମ୍ପାନୀର ଲାଭାଂଶରୁ ମୁଁ ଦୁଇ ପରସେଣ୍ଟ୍ ପାଏ ।

ବ୍ୟୋମଯାନ ମେମ୍ଫିସ୍ ସହରରେ ପହଞ୍ଚିବା ମାତ୍ରେ ଆଲୋଚନାରେ ଛେଦ ପଡ଼ିଗଲା । ବିଦାୟ ବେଳେ ହଫମାନ୍ ନିଜ ଠିକଣାର ଖଣ୍ଡିଏ ଛପାକାର୍ଡ଼ ଦେଇ କହିଲେ—ଫ୍ଲୋରିଡା ଯିବା ଆଗରୁ ମୋ ପାଖକୁ ଫୋନ କରିବ, ମୁଁ ମାୟାମି ଓ ଅନ୍ୟାନ୍ୟ ସୁଦୃଶ୍ୟ ଅଞ୍ଚଳକୁ ବୁଲାଇ ନେବି । କିଓ୍ୱେଷ୍ଟ ଦ୍ୱୀପକୁ ମଧ୍ୟ ନେବି । ଏହା ସୁପ୍ରସିଦ୍ଧ ଲେଖକ ଅର୍ନେଷ୍ଟ ହେମିଂୱେଙ୍କ ଜନ୍ମସ୍ଥାନ ।

ମେମ୍ଫିସ୍‌ରୁ ସେଣ୍ଟଲୁଇସ୍—ବର୍ଷଣଶଙ୍କିତ, ଶ୍ୱେତସ୍ୱଚ୍ଛ ମେଘ ମଧ୍ୟରେ ଆମ ବିମାନ ଚାଲିଲା—କେତେବେଳେ ମେଘ ତଳକୁ ବା ଓହ୍ଲାଇ ଆସେ,

ମିସିସିପି ନଦୀର ଧାରେ ଧାରେ ବୁଲିଲୁ ଆମେ । ପାଖରେ ମୋର ଗୋଟିଏ ହା. ସ୍କୁଲର ଛାତ୍ର—ନାଆଁ ବାର ।

ପଚାରିଲି—ତୁମ ବାପା ମା' କଣ କରନ୍ତି ?

'ଦୋକାନରେ ଜିନିଷପତ୍ର ବିକ୍ରୀ କରନ୍ତି ।'

'ତୁମ ପଢ଼ିବା ଖର୍ଚ୍ଚ ସେମାନେ ବହନ କରନ୍ତି ?'

'ସେମାନଙ୍କ ସାହାଯ୍ୟ ପ୍ରୟୋଜନ ହୁଏନାହିଁ । ପବ୍ଲିକ୍ ସ୍କୁଲରେ ଦରମା ଦେବାକୁ ହୁଏନାହିଁ । ବହି, କାଗଜପତ୍ର ସୁଦ୍ଧା ସରକାର ଦେଇଥାନ୍ତି ।'

'ତୁମେ ଏବେ ଗ୍ରୀଷ୍ମଛୁଟିରେ କଣ କରୁଛ ?'

'ଚାକିରୀ କରେ ।'

'ଟଙ୍କା କଣ କରିବ ?'

'ଜମାଇ ରଖୁଛି, ସେଇ ଟଙ୍କାରେ କଲେଜରେ ପଢ଼ିବି ।' ଘରଚରେ କି କି ଖେଳ ହୁଏ, ମୁଁ ଆମେରିକା ଆସି କେଉଁ କେଉଁ ମୋଟର ଦେଖିଛି, ଇତ୍ୟାଦି ନାନା କଥା ପଚାରିଲି । ହଠାତ୍ ଉତ୍କଣ୍ଠାରେ ଉତ୍କଣ୍ଠାରେ କହିଲି—ହେଇ ମୋ ସାନ ଭାଇ ମୋତେ ନେବାକୁ ଆସିଛି, ଦେଖୁଛ ?'

ଏ ଗହଳି ମଧ୍ୟରେ ତା ସାନ ଭାଇ କିଏ ଦୂରରୁ ଦେଖି କିପରି ବା ଚିହ୍ନିବି ? ମୁଁ ଆଖି ବୁଲାଇ ବୁଲାଇ ଦେଖିଲି—ଗୀତା, ମୀରା, ନିକ । ଇଏ ସେମାନଙ୍କୁ ସଙ୍ଗରେ ଘେନି ଆସିଛି, ମୋତେ ଘରକୁ ଘେନିଯିବା ଲାଗି । ମନ ଆନନ୍ଦରେ ଫୁଲି ଉଠିଲା ମୋର ।

## ବନିଶ ଓ ବିନାଶ

ଅକାଶେ ଅଶିପଟା ଅଦ୍ୟାପି ଘରଭାନ୍ତ, କୃଷ୍ଣ ମେଘରେ । ଉଦପୁନାଥ ଆଜ ମୁଁ ମଟରରେ ବନିଶି ଧରି ଗଲୁ ସେଷ୍ଟଲୁଇସ୍‌ର ତିରିଶ ମାଇଲ—ଦୂରବର୍ତ୍ତୀ ଗୋଟିଏ ହ୍ରଦକୁ । ଉଦପୁର ବନ୍ଧୁ ଏଫ୍, ଏମ୍. ଷ୍ଟେଲୁ୍ୟପୁର ନିମନ୍ତ୍ରଣ କରିଛନ୍ତି, ଏ ହ୍ରଦରେ ତାଙ୍କର ଅଂଶ ଅଛି ।

ବାହାରେ ଥୋପଦୋକାନ (Bait shop) ପଡ଼ିଲା । ଦୋକାନୀ ମି: ହାର୍ଡିଞ୍ଜ୍ ଭିତରକୁ ପାଛୋଟି ନେଲେ । ସେ ଯେପରି ସୂକ୍ଷ୍ମଶରୀର, ତାଙ୍କ ସ୍ତ୍ରୀ ସେହିପରି ସ୍ଥୂଳାଙ୍ଗିନୀ । ସୂକ୍ଷ୍ମ ସ୍ଥୂଳର ଏ ମିଳନ ବିଚିତ୍ର, ବିରଳ । ବିବାହବେଳେ ହୁଏତ ଯୋଡ଼ି ଠିକ୍ ଥିଲା—ପରେ ଦୁହେଁ ବିପରୀତ ଦିଗରେ ଗତି କରିଛନ୍ତି । ବାହାରେ ଏ ବୈଷମ୍ୟ, କିନ୍ତୁ ମନର ପନ୍ତ ଠିକ ଅଛି—ତେଣୁ ଏ ବ୍ୟବସାୟ ଓ ସଂସାର ଚାଲିଛି ।

ଆରେ କେତେ ବଡ଼ ଦୋକାନ ! କେତେ ପ୍ରକାର ବନଶୀ, ଶିସା, କେତେ ପ୍ରକାର କଣ୍ଟା, ସୂତା ! କେତେ ପ୍ରକାର ପ୍ଲାଷ୍ଟିକ୍ ଥୋପ—କେଉଁଟି ଜିଆନାଡ଼ ପରି, କେଉଁଟି ଗୋବର ପୋକ, କେଉଁଟି ବିରୁଡ଼ି ଡିମ୍ବ; ମାଛଙ୍କ ପ୍ରକୃତି ଜାଣି ସେଇସବୁ ଆକୃତିର ଥୋପ ତିଆରି କରା ହୋଇଛି । ଏ ଆହାର ନୁହେ, ଆହାର ପରି । ଯାହାକୁ ମାରିବାକୁ ହେବ, ତାକୁ ଠକିଲେ ଦୋଷ କଣ ? ଖୋଇ ମାରିଲେ ସେ ନ ଖୋଇ ମାରିଲେ ସେ । ବରଂ ଆହାର ଉପରେ ପାହାର ଦେବା ଅଧିକ ଦୋଷାବହ ।

କୃତ୍ରିମ ଥୋପ ବ୍ୟତୀତ ପ୍ରାକୃତିକ ଥୋପ ମଧ୍ୟ ଏଠି ରଖାଯାଇଛି । ମାଛଙ୍କର ପ୍ରିୟ ଖାଦ୍ୟ ବୋଲି ପ୍ରଥମେ କିଏ ତାହା ଆବିଷ୍କାର କରିଥିଲା ? କିନ୍ତୁ ଏହା ଅତି ପ୍ରାଚୀନ; ପୃଥିବୀରେ ସର୍ବତ୍ର ପ୍ରଚଳିତ—ଜିଆନାଡ଼ ! କୀଟ ପତଙ୍ଗଙ୍କ ମଧ୍ୟରେ ମଣିଷର ସବୁଠୁ ଉପକାରୀ, ସବୁଠାରୁ ଅନ୍ତରଙ୍ଗ ଓ ନିରୀହ, ମଣିଷର ପୂର୍ବଜ, ଆଦିମତମ କୃଷିକାରୀ । କିନ୍ତୁ ଥୋପ ବ୍ୟତୀତ ସାଧାରଣରେ ତାର ଅଧିକ ମୂଲ୍ୟ ସ୍ୱୀକୃତ ନୁହେ । ନିରୀହମାନେ ଲୋଭର ବେଦୀରେ ଚିରକାଳ ଶିକାର ହୋଇଆନ୍ତି । ମତ୍ସ୍ୟ ଶିକାର ଲାଗି ଜିଆନାଡ଼ ଶିକାର—ଗୋଟିକୁ ମାରିବା ଲାଗି ଆଉ ଗୋଟିକୁ ମାରିବା ଆବଶ୍ୟକ ହୋଇଥାଏ । ମି. ହାର୍ଡିଞ୍ଜ ବୁଢ଼ା ବୁଢ଼ା ଜିଆନାଡ଼ସବୁ ଚାଉଆଣି ବହୁ ଟିଣ ଗାମଲାରେ ରଖିଛନ୍ତି—କଅଁଳ ଓଦା ମାଟି ଯୋଡ଼ାଇ ରଖିଛନ୍ତି—ଜାଣନ୍ତି କି ନାହିଁ କେଜାଣି, ସେମାନଙ୍କର ଏ ଗୋଟିଏ କଏଦଜୀବନ, ଏହି ବାଧ୍ୟତାମୂଳକ ଭାଗ୍ୟକୁ ଆଦରି ପଡ଼ି ରହିଛନ୍ତି । କେଉଁ ମୁହୂର୍ତ୍ତରେ ପ୍ରାଣ ଯିବ, କିଏ ଜାଣେ ? ଗୋଟିଏ ଜିଆନାଡ଼ର ମୂଲ୍ୟ ପଚିଶ ପଇସା ।

ହାର୍ଡିଞ୍ଜଙ୍କ ଦୋକାନ ସାମ୍ନାରେ ଦୁଇଟି ପୋଖରୀ—ମୀନଙ୍କ ନିରାପଦ ବାସସ୍ଥାନ । କାଳିଆ, ଛିନ୍ନଳ ବା ଟ୍ରାଉଟ୍ ଜାତୀୟ ମାଛକୁ ଏଥିରେ ଛଡ଼ା ଯାଇନାହିଁ । ମୀନଙ୍କ ସାଧାରଣତନ୍ତ୍ର ରାଜ୍ୟ ଏ; ଏଠି ହୁକୁମ୍ ଚଳେଇବାକୁ ରାଜା ନାହାନ୍ତି; କରଜ ଲଗେଇ ଦଉଡ଼ାଉ କରିବାକୁ ସାହୁକାର ନାହାନ୍ତି । ଟିକସ ବା ମାସୁଲ୍ ଆଦାୟ କରିବାକୁ ବକ, ମାଛିଆ ଚଢ଼େଇ, ଗେଣ୍ଡାଳ, ମାଛରଙ୍କା ଜାତୀୟ ପକ୍ଷୀ ଆସନ୍ତି ନାହିଁ । ହାର୍ଡିଞ୍ଜଙ୍କ ଗୃହରେ ପ୍ରାଣ ଯାଏ । କେତେକ ମୀନଙ୍କୁ କାଚ ବାକ୍ସରେ ରଖାଯାଇଛି । ବଡ଼ ପୋଖରୀରୁ ଆଣି କାହିଁକି ଏ ଛୋଟ ପୋଖରୀରେ ରଖାଯାଇଛି; ସେମାନେ ବୁଝିପାରୁ ନାହାନ୍ତି । ଯେମିତି କ ପରୁଛନ୍ତି, ପଚାରିବେ କେଉଛନ୍ତି, କିନ୍ତୁ କାହାକୁ ? ଅଖଣ୍ଡ ସ୍ୱାଧୀନତା ବ୍ୟାହତ ହୋଇଛି; ଅନାହାର କ୍ଲେଶ ଓ ବନ୍ଦୀ ଜୀବନ ବଡ଼ କାଦୁଛି । ଏ ଦେଶର କୌଣସି ଲୋକ ଏ ଶାସ୍ତି ସହ୍ୟ କରନ୍ତେ ନାହିଁ, ଭାରତର ମତ୍ସ୍ୟ, ପୁଣି ନିମ୍ନତମ ସ୍ତରର ମୀନ, କ ଉପାୟ ଅଛି ତାର, ଅଗ୍ନିରେ ଲାଞ୍ଛନାଭୋଗ କରିବା ବ୍ୟତୀତ ? ସେମାନଙ୍କର ଦୁଃଖ ଅଛି, ଏହା ସ୍ୱୀକାର ବି କରାଯାଏ ନାହିଁ; ପ୍ରତିକାର ତ ଦୂରର କଥା ।

ସେ ସବୁ ଥୋପ ହେବେ, ମରିବେ, ଅନ୍ୟର ମୃତ୍ୟୁର କାରଣ ହେବେ, ବଡ଼ ମାଛଙ୍କ ବଂଶ ବୁଡ଼ାଇବେ । କୁଳନାଶୀ ହିସ୍ପା ମଣିଷ କରି ଯାଉଛି । ପାପ ଅଭ୍ୟାସରେ ପଡ଼ିଯାଇଛି, ଖାଦ୍ୟରେ ପାପ ନାହିଁ, ସେମିତି ଧରିଲେ ମଣିଷ ବଞ୍ଚିପାରିବ ନାହିଁ, ଏ ତାର ବ୍ୟାଖ୍ୟା; ପାପ ପୁଣ୍ୟର ବସ୍ତୁର ତା ହାତରେ; ଗୋଟିଏ ଦେଶରେ ଯାହା ପାପ, ଅନ୍ୟ ଦେଶରେ ତା ସେଇଆ ନୋହିପାରେ ।

ମି: ଷ୍ଟେନ୍ଲୁ୍ୟର୍ ହୋଟେଲ୍, ସହରର ଦୂରବର୍ତ୍ତୀ ହ୍ରଦ କୂଳର ପଞ୍ଚ କୁଟୀରକୁ ଯେ ମଝେ ମଝେ ଆସନ୍ତି, ମନ ପରିବର୍ତ୍ତନ ପାଇଁ; ଏଠି ମାଛ ଧରନ୍ତି, ନୌକା ଚଳାନ୍ତି, ପହଁରନ୍ତି, ତାସ ଖେଳନ୍ତି । ମଉଜ କରିବା ଲାଗି ଏ ଘର ।

ତାଙ୍କ ବାଡ଼ି ପଛଆଡ଼େ ହ୍ରଦ, କୂଳରେ କାଠରେ ତିଆରି ଘାଟ, ମଝିରେ ଚଳ ବନ୍ଧା, ନୌକା ବାନ୍ଧିଲେ ଚଢ଼ିହେବ ନାହିଁ । ଘାଟରେ ଦୁଇଟି ନୌକା ବନ୍ଧା ହୋଇଛି; ଗୋଟିଏ ମଟର ବୋଟ୍; ଅନ୍ୟଟି ଆହୁଲା ମାରି ଚଳାଇବାକୁ ହୁଏ । ସବୁଜ ପଡ଼ିଆରୁ ସରୁ ରାସ୍ତାଟିଏ ଘାଟକୁ ଲମ୍ବିଛି । କୂଳରେ ବସିବା ଲାଗି ଚୌକି ପଡ଼ିଛି ।

ତିନି ଗୋଟି ଗଦି ନୌକାର କାଷ୍ଠାସନରେ ପଡ଼ିଲା । ବନଶିକଣ୍ଟା, ପ୍ଲାଷ୍ଟିକ ଥୋପର ବାକ୍ସ, କଅାଁନାଡ଼ି ଜାରା, ବନଶିଖଡ଼ା ସବୁ ରଖାହେଲା । ହାତରେ ଗୋଟିଏ ଗୋଟିଏ ବୋତଲ କୋକାକୋଲା ଧରି ଆମେ ବସିଲୁ । ବୋଟ୍ ଦ୍ରୁତଗତିରେ ହ୍ରଦ ମଝିକି ଗଡ଼ିଲା । ଉଦୟ ଓ ଷ୍ଟେନ୍ଲ୍ୟୁସ୍ୱର୍ କଅାଁନାଡ଼ି ଗୁଡ଼ି ପକାଇଲେ; ଏ ତ ଜଳ ବନଶି । ପ୍ରଥମ ଥର ପାଣି ପକାଉଛି, ମତେ ଗୁଡ଼ି ଆସେ ନାହିଁ । ଅଯଥା ଜୀବହତ୍ୟା ଥୋପ ନଷ୍ଟ କରିବା ଲାଗି ମତେ ଦୟା ଆସିଲା ନାହିଁ । ମୁଁ ପ୍ଲାଷ୍ଟିକ ଥୋପ ଗୁଡ଼ି ପକାଇଲି ।

ପଚ୍ଛଲେ ଷ୍ଟେନ୍ଲ୍ୟୁସ୍ୱର୍ ଗୋଟିଏ 'ବା-ଆସ' ମାଛ ଧରିଲେ— ଛୋଟ, ବାଙ୍କୁଡ଼; ବଧ ଅନ୍ୟାୟ । ଗାଳିଦିଅନ୍ତୁ ଆସ୍ତେ କଣ୍ଟା କାଢ଼ି ତାକୁ ଛାଡ଼ି ଦିଆହେଲା । ତାପରେ ଦୁଇଘଣ୍ଟା ବନଶି ପକାଇଲା ପରେ ସେ ଦୁଇଟି ବଡ଼ ବା-ଆ-ସ୍ ଧରି ଜାଲ ଛଞ୍ଚିରେ ଭର୍ତ୍ତି କରି ନୌକାରେ ବାନ୍ଧିଦେଲେ । ମାଛ ତା ମଧ୍ୟରେ ଜୀଇଁ ରହିଲେ । ତାପରେ ଉଦୟର ବନଶି ଥୋପକୁ କଚ୍ଛ ଗୋଟାଏ ଧରିଲା । ଧରିବା ମାତ୍ରେ ଓଟାରିଲା— ତା ଝିଙ୍କାରେ ଉଦୟ ପାଣିକି ଟାଣି ହୋଇଗଲା । ସେ ଆତ୍ମରକ୍ଷା କରିବା ସଙ୍ଗେ ସଙ୍ଗେ ବନଶିକୁ ଓଟାରିଲା; ଦୁଇ ଶକ୍ତିର ସଂଘର୍ଷରେ ବନଶିଟା ବାଙ୍କୁଲଖଡ଼ା ପରି ବୁଲିଗଲା । ଜବର ମାଛ ପଡ଼ିଛି ବୋଲି ଉଦୟ ଖୁସି; ଛୁରି ଧରି ଷ୍ଟେନ୍ଲ୍ୟୁସ୍ୱର ତିଆରି—ସେ ବଡ଼ ମାଛୁଆ । ଲେଉଡ଼ା ହେଲେ ପାଣିକି ଡେଇଁବେ । କିନ୍ତୁ ଛାଡ଼ିଦେବେ ନାହିଁ । ଚକ ବୁଲେଇ ଖେଳେଇ ଖେଳେଇ ଜନ୍ତୁକୁ କ୍ଳାନ୍ତ କରିଗଲା—ଉପରକୁ ଉଠାଇଲା ବେଳକୁ ଏ କଏରେ ବାପା ? କଚ୍ଛପ ଅବତାର ! ଓଜନ ପ୍ରାୟ ଛ ପାଉଣ୍ଡ ହେବ । ଥୋପ ତୋକ ନାହିଁ, ବନଶି କଣ୍ଟା ତା ପାଦରେ ଲାଗି ଯାଇଛି ।

କାଢିଲା ବେଳକୁ କାମୁଡ଼ ଆସୁଛି । କିଛି ଉପାୟ ନ ପାଇ ଶେଷକୁ ସ୍ଥିର ହେଲା—ସୂତା କାଟିଦେବା । କିନ୍ତୁ ମନକୁ ମନ କଇଁଛଟା ପାଣିକି ଖସି ପଡ଼ିଲା—ପାଦରୁ ଫନ୍ଦାଏ ଅବଶ୍ୟ ଘୁଞ୍ଚିଗଲା । ଉକ୍ତ ବୋଧହୁଏ, ମୃତ୍ୟୁ କବଳରୁ ଖସି ଆସିଛି ବୋଲି ସେ ବନ୍ଧୁବାନ୍ଧବଙ୍କୁ କହିଥିବ, ଓ ଗୋଡ଼ଆ ଜନ୍ତୁ କେତେ ମାରଣା ତାହା ମଧ୍ୟ ବୁଝାଇ ଦେଇଥିବ ।

ଦୁଇଘଣ୍ଟା ବନଶୀ ପକାଇବା ପରେ ଆମେ ରେଷ୍ଟହାଉସକୁ ଆସିଲୁ; ଲଞ୍ଚର କ୍ୟପ୍ଟେନର ଷ୍ଟେନ୍ୟୁପୁର ବଦଳ କଲେ । ବସ୍ତୁରଳ—ମାଛଧରା ଅନୁଭୂତି ତ ଯଥେଷ୍ଟ ହେଲାଣି, ଏବେ ଫେରିଗଲେ ଭଲ ହୁଅନ୍ତା ।

କିନ୍ତୁ ମାଛ ଧରିବା ଗୋଟାଏ ନିଶା ମାଛୁଆ କଣ ଖରବର୍ଷା, ଝଡ଼ ଅନ୍ଧାର, ଶୀତକାକର ମାନନ୍ତି ? ବନଶୀ ପକାଇବା ଗୋଟାଏ ବିନୋଦନ; ଏଥିଲାଗି ଏ ହ୍ରଦସବୁ ଖୋଳା ଯାଇଛି, ମାଛ ଛଡ଼ା ଯାଇଛି । ଗ୍ରାମ ଗୃହସବୁ ନିର୍ମିତ ହୋଇଛି, ମାଛମାରିଙ୍କ ଯୋଗୁଁ ଏ ରେଷ୍ଟହାଉସ ରହିଛି । ଖାଇବା ପାଇଁ ମାଛ ଧରିବା ଲୋକ ଏଠି ଅଳ୍ପ । ମାଛ କାଟି କେଳେଇ ରାନ୍ଧିବା ଏକ ହେଙ୍ଗାମ୍ । ବଙ୍ଗଳା ବା ଓଡ଼ିଶା ପରି ଆଇଁଷଖିଆହାଣ ଏଠି ନାହାନ୍ତି । ମାଂସାଶୀ ଅଧିକାଂଶ । ସପ୍ତାହରେ ଶୁକ୍ରବାର ଦିନ କାଥଲିକ୍-ମାନେ ମାଂସ ଖାଇବା ମନା, କିନ୍ତୁ ସେଦିନ ମାଛ ଖାଇବାର କଟକଣା ନାହିଁ ।

ନୌକାରେ ବସି ନାନା କଥା ଭାବୁ ଭାବୁ ପିଲାଦିନ କଥା ମନେ ପଡ଼ିଲା—ମୁଁ କେମିତି ଥିଲି ଏକ ଆଇଁଷଖିଆହାଣ । ଗୋଟାଏ କେରଣ୍ଡି ଲାଗି ଶ୍ରାବଣ ଭାଦ୍ରବ ମାସରେ କାଦୁଅ ପଚ ପଚ, ମାଛୁ ଭଣ ଭଣ ପୋଖରୀ କୂଠରେ ବସି ବନଶୀ କାଠି କି ଏକାଗ୍ର ଦୃଷ୍ଟିରେ ରହୁଁଥାଏ—ମାଛ କେତେବେଳେ ହାଣିବ, ଝିଙ୍କି ନେବ କି ବୁଡ଼ାଇବ; ବରୁଡ଼ ଓମ୍ବରେ ଭଲ ମାଛ ପଡ଼ନ୍ତି ବୋଲି କିଆ ଗୋହିରୀରେ ବରୁଡ଼ଭିରା ଖୋଜି ବୁଲୁଥାଏ । ସଜଳ ଧରିବା ଲାଗି କେରଣ୍ଡି ଗୁଣ୍ଡ ସନ୍ଧ୍ୟାରେ ବନଶୀ ପୋତେ । ସକାଳୁ ଉଠାଏ । ମାଛ କେବେ କେବେ ଖଡ଼ାକୁ ଟାଣି ପୋଖରୀ ମଝିକି ନେଇଯାଇଥାଏ, କମ୍ପା କଙ୍କଡ଼ା କଣ୍ଟା କାଟି ନେଇଥାଏ । ସଜଳ, ପୋଲ

ଗଡ଼ଶା କ ପାଟେଟଙ୍ଗ ମନ୍ଦା ଖେଳାଇଲା ବେଳେ ଥୋପ ହାବୁଡ଼େଇ ଦିଏ । କ୍ଷୁଧାର୍ତ୍ତ ମତ୍ସ୍ୟମାନେ ଥୋପ ଠୋକେ; ମରେ । ମାତୃହୀନ ଜାଆଁଳ ସବୁ ବିକଳ ହୋଇ ମାଆକୁ ଏଣେ ତେଣେ ଖୋଜ ବୁଲନ୍ତି, ଅନ୍ୟ ମତ୍ସ୍ୟ ଭେକ, ସର୍ପ ବା କଚ୍ଛପ କବଳରେ ପଡ଼ନ୍ତି । ସେ କାରୁଣ୍ୟର ଝଙ୍କାର ହୃଦୟ ମର୍ମରେ ବାଜୁଛି । କିନ୍ତୁ ଆଇଁଷଖିଆ ହାଣା ମୁଁ, ମାଛୁଆ ମୁଁ । ପୁଷ ମାସ ଜାଡ଼, ରାତିରେ କେବେ ପାଣିରେ ପଶି ପୋଖରୀରେ ପଡ଼ିଥିବା କଞ୍ଚା ଠେକ ଚଙ୍ଗୁଡ଼ି ମାଛ ଧରେ । ମାଛ ଗୋଳ; କିଏ ମଡ଼ାଜାଲ, କିଏ ଗୁଣି ଜାଲ, କିଏ ପୋଲୁହରେ ମାଛ ଧରନ୍ତି । ଆକାଶରେ ଶହ ଶହ ଶଙ୍ଖଚିଲ ବଣ୍ଟାର; ମାଛଙ୍କର ବଡ଼ ବିପତ୍ତିବେଳ । ମୁଁଆଡ଼େ ଗଲେ ବି ରକ୍ଷା ନାହିଁ । ମୁଁ ବଡ଼ଜାଲ ମଡ଼ାଇ ମାଛ ଧରିବାକୁ ଭଲ ପାଉଥିଲି ।

ଜ୍ୟେଷ୍ଠ ମାସ ଶେଷ, କେବେ କେବେ ଗୋଟାଏ ବଡ଼ ଅସରା ବର୍ଷା ହୋଇଯାଏ । ରାତିରେ ପିଚାପାଣି ବରଷିଲେ ଚରୁବୁଣୀ ବାହାରନ୍ତି କିନ୍ତୁ ସେଥିଲାଗି ମୋର ଉରଭସ୍ତ ନ ଥାଏ । ନୂଆ ପାଣିସୁଅ ପୁରୁଣା ପାଣିଥିବା ପୋଖରୀରେ ପଶିଲେ କିଛି ଦାଉ ଘାତ ସହିଥିବା ମାଛ ଉଠନ୍ତି, —ମଞ୍ଜୁଆ ଶିଙ୍ଗି, କାଙ୍ଗିଆ, ମାଗୁର, କଉ, ରଚା, ଛେଲକେରାଣ୍ଡି, ମହୁରାଡ଼ି । ଆଃ, ମାଛ ଖାଇବା ମଜା ତ ସେତେବେଳେ !

ପୁଣି ଦାନ୍ତିଆ ବସେଇ ତା ଉପରେ ଟେକା ନଦ ମାଟି ଘୋଡ଼େଇ କେବେ କେବେ ମୁଁ ଗଛ ମୂଳରେ ଲୁଚି ବସେ । କାର୍ତ୍ତିକ ମାସରେ ଯେତେବେଳେ ବିଧବାମାନଙ୍କର ଚଉରାପୂଜା ହୁଳହୁଳି ପଡ଼ୁଥାଏ, ନଗର କୀର୍ତ୍ତନ ବୁଲୁଥାଏ (ହରେକୃଷ୍ଣ ହରେରାମ, ନିତାଇ ଗଉର ରାଧେ ଶ୍ୟାମ), ଦେଉଳରେ ଆଳତିଘଣ୍ଟା ବାଜୁଥାଏ, ସେତେବେଳେ ପୋଖରୀ ହୁଡ଼ାରେ ଗାଛ ଖୋଳ ମୁଁ ଦାନ୍ତିଆ ଝାଡ଼ୁଥାଏ; ନିର୍ମଳ କେରାଣ୍ଡି ଗୁଡ଼ିଏ ଠକ ଠକ ଡେଉଁଥାନ୍ତି । ମୋ ଭାଇନା ତାକୁ ଜଆ କେରାଣ୍ଡି କହନ୍ତି; କାର୍ତ୍ତିକ ମାସରେ ମବୁଚ ଜଆ; ଜଆ କହିଲେ ଆଇଁଷିଆଙ୍କ ଆଉ ରହିବ କୁଆଡ଼ୁ ?

ଏହିପରି ଏକ ମାଛୁଆ ଥିଲି ମୁଁ, କେଉଟ ଘରେ ଜନ୍ମ ନ ହେଲେ କଣ ହେଲା ? କିନ୍ତୁ ଆଜ ମୋର ଜାଲ ମେଲିଉଛି ଘର-

ସାଗରରେ; ଏକ ରୂପଗ୍ରାହାଣୀ ମୁଁ, ରସକାଙ୍ଗାଳ; ଖରବ ଆବରଣରେ ମୁଁ ଉଆ ଉସୁନା ବାରେ ନାହିଁ, ଦରିଦ୍ର୍ୟ ମାନେ ନାହିଁ । ସବୁ ମାସ ମୋର ପ୍ରିୟ—ଖର ବର୍ଷା ଶୀତ ବସନ୍ତ; ଜୀବନ ଅନୁଭୂତି ଜାଣିବା ଲଗି ବାଉ ହୋଇଛି । ସେଥିଲଗି ସନ୍ଧ୍ୟାସନ୍ଧ୍ୟା ଜାଗାରେ ବସି ବନଶି ପକାଇବାକୁ କୁଣ୍ଠା ନାହିଁ ମୋର । ସେଇ ଲୋଭରେ ଆଜ ଅସିଛି ବଙ୍ଗୋପସାଗରରୁ ଆରବ ସାଗର, ଭୂମଧ୍ୟସାଗରରୁ ଆଟଲାଣ୍ଟିକ ମହାସାଗର—ଆମେରିକାନ୍ ଜୀବନ ଉପଭୋଗ କରୁଚ ମୁଁ ବନଶି ପକାଇ—ମୋ ମନ ମୁନରେ ଯାହା ଲାଗୁଚ ଧରୁଚ ।

ସେ କାଲର ମୋ ମାଛଧର ନିଶା ଏ ଦୁଇ ବନ୍ଧୁଙ୍କୁ ଧରିଛି । ରାତି ନ'ଟା ପର୍ଯ୍ୟନ୍ତ ମାଛ ଧରିବେ । ଆଗେ ବାରଟା ରାତି ପର୍ଯ୍ୟନ୍ତ ମାଛ ଧରିବାର ରେକର୍ଡ଼ ସେମାନଙ୍କର ଅଛି—ବିକ୍ଷିପ୍ତ ମନକୁ ଯୋଗନିଷ୍ଠ କରିବେ, ପରସ୍ପରର ସୌହାର୍ଦ୍ଦ୍ୟ ପୂର୍ଣ୍ଣପ୍ରାଣରେ ଉପଭୋଗ କରିବେ । ଆଜ ଏମିତି କଛି ଉଚ୍ଛୁର ହୋଇନାହିଁ । କନ୍ତୁ ମେଘ ଘୋଟି ଆସୁଛି, ହୟତ୍ ବଳସ୍ପୃହ ଘରି କାନରୁ; ସତେ ବା ଏକ୍ସଖଣ୍ଡ ପାଣି ଲଗାଇ ଦେବ । ହାଲୁକା ପବନ; ଏ ପାଗରେ କଣ ବନଶିରେ ମାଛ ଖାନ୍ତି ? ମେଘୁଆ ପାଗ ହେଲେ ଗଡ଼ାରେ ମାଛ ଗଡ଼ନ୍ତି ନାହିଁ, ଗଡ଼ା ମୁହଁରେ ଖେଳନ୍ତି । ବନଶିଆମାନେ ମୁହଁ ଶୁଖେଇ ବସିଥାନ୍ତି । ଏଠା ମାଛଙ୍କ ଚରିତ୍ର ତ ସେହିପରି । ପୃଥିବୀର ମଣିଷ ଯେପରି, ମାଛ ମଧ୍ୟ ସେହିପରି, ଯଦ୍ଧ ବା ନାମ ଭିନ୍ନ ।

ନିରଶ ହୋଇ ଆମେ ତିନିଗୋଟି ମାତ୍ର 'ବାଆସ' ଘେନି ଫେରିଲୁ । ଏଥି ମଧ୍ୟରୁ ଦୁଇଟି ଆଜ ଧରା ହୋଇଛନ୍ତି, କାଲ ମିସେସ୍ ଷ୍ଟେନ୍ସ୍ୟୁର ଗୋଟିଏ ଧରି କୂଳରେ ଜୀଆଇଁ ରଖିଥିଲେ । ମେଘ ଅନ୍ଧାରିଆ ହ୍ରଦ ତଳକତିରେ ଥିବା ଗଛବୃକ୍ଷରେ ପବନ ସୁଜ ସୁଜ ଲେଉଁଥାଏ—କୂଳରେ ଆଲୁଅସବୁ ତେଜରେ ସାପ ପରି ବଙ୍କେଇ ବଙ୍କେଇ ହୋଇ ଖେଳୁଥାନ୍ତି, ପାଣି ଖଲ୍ ଖଲ୍ ଲପ୍ ଲପ୍ କରୁଥାଏ କୂଳେ କୂଳେ ।

## ଓ୍ୱିସ୍କନ୍‌ସିନ୍ ପଥେ (୧୩।୮।୬୭)

ମେଘମେଦୁର ଆକାଶ, ମଥ ଯାନ ଗମନାଗମନରେ ଅଦ୍ୟାପି ମୁଖରିତ ହୋଇନାହିଁ । ଗୁରୁ ଗମ୍ଭୀର ପରିବେଶରେ ମିସିସିପି ସେତୁ ପାରିହୋଇ ଆମେ ଇଲିନଏସ୍ ପ୍ରଦେଶରେ ପ୍ରବେଶ କଲୁ । ଚାରିଲ କୁହୁଡ଼ି ସୁଦୂରକୁ ଏକ ରହସ୍ୟାଚ୍ଛନ୍ନ ରୂପ ଦେଇଛି, ନିକଟବର୍ତ୍ତୀ ସବୁଜ ଅରଣ୍ୟକୁ କରିଛି ଶ୍ୟାମଳତର । ମେଘ ଓ କୁହେଳୀର ମିଳନ ଘଟିଛି ଗିରିଶୃଙ୍ଗରେ ନିବିଡ଼ତମ ରୂପରେ ।

ସେଣ୍ଟଲୁଇସ୍‌ରୁ ତିରିଶ ମାଇଲ୍ ଦୂରରେ 'ହଲିଡେ ଯୋନ୍' ବୋଲି ଗୋଟିଏ କୃତ୍ରିମ ହ୍ରଦ; ତା'ର କୂଳରେ ଉଦୟ କିଣିଛି ଟିକିଏ ଜମି, ଏକରକୁ ପାଞ୍ଚ ହଜାର ଡଲାର୍ ମୂଲ୍ୟରେ; ଏଠି ଗୋଟିଏ ଗୃହ ନିର୍ମାଣ କରିବେ; ମନ ପରିବର୍ତ୍ତନ ଲାଗି ମଝେ ମଝେ ଆସି ରହିବ । ଏ ହ୍ରଦରେ ତାର ଅଂଶ ଅଛି । ଆମେରିକାର ଅଧିକାଂଶ ଅବସ୍ଥାପନ୍ନ ବ୍ୟକ୍ତି ପ୍ରାୟ ଦୋଘରିଆ, ଯୁଦ୍ଧ ହେଲେ ହୁଏତ ଏଠି ଆଶ୍ରୟ ନେବେ ; ଯୁଦ୍ଧ ବା ସେପରି ଶଙ୍କା ଆମେରିକାରେ ଅଳ୍ପ ।

ମଟରରେ ତିନିଗୋଟି ବଖରା, ଉଦୟ ଗାଡ଼ି ଚଳାଉଛି, ସେ କ୍ଳାନ୍ତ ହେଲେ ଇରା ଚଳାଇବ; ରାସ୍ତାଘାଟର ମାନଚିତ୍ର ତା ହାତରେ, ସେ ପଥ ସମ୍ପର୍କରେ ଉଦୟକୁ ଆବଶ୍ୟକ ପରାମର୍ଶ ଦେଉଛି । ମୁଁ ମଧ୍ୟ-ବଖରାରେ ଏକାକୀ । ପଛ ବଖରାରେ ପିଲାମାନେ ଶୋଉଛନ୍ତି, କେତେ-ବେଳେ ଖେଳଣା ସୁଟ୍‌କେସ୍ ଖୋଲି ଦେଉଛନ୍ତି । ଗାଡ଼ିର ଉପରେ ଓ ପଛବଖରା ତଳେ ଜିନିଷପତ୍ର ରଖାଯାଇଛି । ଶୀତାତପନିୟନ୍ତ୍ରିତ ଏହି ଯାନରେ ରେଡ଼ିଓ ଖଞ୍ଜା ଯାଇଥିବାରୁ ଗୀତ, ସମ୍ବାଦ ଶୁଣିବାକୁ ମିଳୁଛି ।

ବାଟରେ ଗୋଟିଏ ଗାଡ଼ି ଅଟକି ପଡ଼ିଛି; ଚକ ଫାଟିଛି ? ନା, ପୁଲିସ୍ ଗୁଳି କରି ଫଟାଇ ଦେଇଛି, ନିର୍ଦ୍ଦେଶ ନ ମାନିବାରୁ । ଗୋଟିଏ କଳ ଯନ୍ତ୍ରର ବଳରେ ଗହମ ନଡ଼ା ବିଡ଼ା ବିଡ଼ା କରି ବାନ୍ଧୁଛି । ବରଫରେ ସଢ଼ିଯିବ ବୋଲି ନଡ଼ା ସ୍ୱତନ୍ତ୍ର ଘରେ ସାଇତା ଯାଏ ।

ମାଇଲ୍ ମାଇଲ୍ ଲମ୍ବା ମକ୍‌କାଖେତ, ଗହମ ମୂଳ ଶୁଷ୍କ; ତେଣୁ ପାର୍ଶ୍ୱବର୍ତ୍ତୀ ଶ୍ୟାମଳ କ୍ଷେତ୍ର ଅଧିକ ମନୋରଞ୍ଜକ ହୋଇଅଛି । ରୁକ୍ଷତା ନ ଥିଲେ ମାଧୁର୍ଯ୍ୟ ଉପଭୋଗ୍ୟ ହେବ କିପରି ? କଳ ରାସ୍ତା ଦୁଇ ଧାରର ଘାସ କାଟି ନିର୍ମଳ କରୁଛି, ଗୋଟାଏ ଟ୍ରାକ୍ଟର ମାଟି ଚାଷ କରୁଛି । ପୋଖରୀ କୂଳରେ ବୁଲୁଛନ୍ତି କେତୋଟି ବକ, ଚରୁଛନ୍ତି ପନ୍ଦର ମେଷ, ମଧ୍ୟେ ମଧ୍ୟେ ଏକ ଅପରିଚିତ ପକ୍ଷୀ ଆଖି ଆଗରେ ନାଚିଯାଏ । ଭୂମି ସବୁଜ, ଆକାଶ ଧୂସର—ଉଭୟ ମଧ୍ୟରେ ପାତଳ କୁହୁଡ଼ି, ମାଳ ଜଙ୍ଗଲ, ମନରେ ଶାନ୍ତିର ରଙ୍ଗ ମାଖି ଦେଉଛି; ବୁଢ଼ିଆଣି ସୂତାର ଜାଲଭଳି ଜାଳ—ଏ ଗଛରୁ ସେ ଗଛ ଲମ୍ବିଛି ତାର ଶିଶିରର ରୂପେଲୀ ତାରସବୁ, ରାସ୍ତା ଦୁଧାରେ ରୁପେଲୀ ପଦ୍ମସବୁ ଝଟକୁଛି ସୂର୍ଯ୍ୟକିରଣରେ । କେତେବେଳେ ବର୍ଷା ଝର୍ ଝର୍ ସଙ୍ଗେ ତେଉଁଡ଼ ସଙ୍ଗୀତର ସ୍ୱର ମିଳି ଯାଉଥାଏ, ବନ୍ୟଗୁଳ୍ମଯୁକ୍ତ ଜଳାଧାରରେ, ଅନାମିକା ନଦୀ ତଟରେ ତଟରେ, କେତେବେଳେ ତରୁ ତଟଯୁକ୍ତ ହ୍ରଦ କୂଳେ କୂଳେ ଗ୍ଡ଼ୁଥାଏ ଆମର ଗାଡ଼ି ।

ଭ୍ରମଣକାରୀଙ୍କ ସୁବିଧା ଲାଗି ରାସ୍ତାରେ ସରକାରୀ ବିଶ୍ରାମଗୃହ; 'ଗ୍ୟାସ୍' ନେବା ଲାଗି ଗାଡ଼ି ଏଠି ଅଟକିଲା । ତେଲ ପକାଇ ସାରିଲା ପରେ ଗାଡ଼ିର ସାମ୍ନା କାଚ ସାବୁନ ପାଣିରେ ସଫା କରି ଦିଆହେଲା । କାଦୁଅ ବା ଧୂଳି ନ ଥିବାରୁ ଗାଡ଼ି ସାଧାରଣତଃ ଅପରିଚ୍ଛନ୍ନ ହୁଏ ନାହିଁ । ମାସେ ଦୁଇ ମାସରେ ଥରେ ସଫା କରିବାକୁ ହେଲେ ତେଲ-ଟାଙ୍କିକୁ ଦୁଇରୁ ଅଢ଼େଇ ଡଲାର ଦେବାକୁ ହୁଏ ।

ପଥପାର୍ଶ୍ୱ ବିଜ୍ଞାପନ—ହୋଟେଲ୍ ମୋଟେଲ, ଦୋକାନ, ମଦ୍ୟ ବା ଖାଦ୍ୟର; ଏହା ପ୍ରାକୃତିକ ଦୃଶ୍ୟର ଶ୍ରୀ ହାନି ଘଟାଉଛି । ଅକାରଣେ ବାସ୍ତବ ସଚେତନ କରୁଛି ବୋଲି ଉଠାଇ ଦେବା ଲାଗି ଆନ୍ଦୋଳନ ହେଉଛି । ସଭାପତି ଜନ୍‌ସନ୍‌ଙ୍କ ସ୍ତ୍ରୀ ଏ ଦିଗରେ ଆନ୍ଦୋଳନକାରୀମାନଙ୍କ ନେତୃତ୍ୱ ଗ୍ରହଣ କରିଛନ୍ତି ।

ଦେଖି ଦେଖି ଗୋଟା ଗୋଟା ଖେଳଣା ଆସି ମୋ କୋଠରୀରେ ପଡ଼ିଲା—କାଠକଇଁଛ, ବନ୍ଧୁକ, ମଟରଗାଡ଼ି, ଲୋହିତଭାରତୀୟ । ସମସ୍ତେ

କହିଲେ—ଆମେ ମା'ଆ ପାଖରେ ବସିବୁ; ଏଠି ଜାଗା କାହିଁ ? ଜଣେ ଜଣେ ପାଳି କରି ବସିବା କଥା ସ୍ଥିର ହେଲା । ମଝିଆଁ ଝିଅ ମୀରା, ସ୍ୱାସ୍ଥ୍ୟ ଦୁର୍ବଳ, ମା'ଆର ଦରଦ ତା ପ୍ରତି ଟିକିଏ ବେଶୀ । ପିଲାଙ୍କ ଭିତରେ ଝଗଡ଼ା ହେଲେ ସେ ଟିକିଏ ତା ପଟିଆ ହୋଇ ବାହାରେ । ତାର କାରଣ ମୀରା ଦୁଇ ପଟରୁ ଦକ୍ଷିଣା ପାଏ, ବଡ଼ ଭଉଣୀ ଗୀତା ତା ଉପରେ ବଡ଼ପଣରେ ଆକଟ କରେ, ସବା ସାନ ତ ପୁଅ, ବାପ ମାଆଙ୍କର ଏକମାତ୍ର, ଦୁଇଟିଝିଅ ପରେ । ସେ ପୁଅପଣ ଜାହିର କରେ । ଦୁଇ ପଟୁ ଧକ୍କା ଖାଇ ମୀରା ବୋବାଳି ଛାଡ଼େ । ମାଡ଼ର ଧମକ ଦେବା ଛଡ଼ା ବାପ ମା'ଆ କାହା ଦେହରେ ଟିପ ଛୁଆନ୍ତି ନାହିଁ ।

ଏ ଦେଶରେ ମାଡ଼ ଚଳେ ନାହିଁ । ତଥାପି ନମୁନା ମାଡ଼ର ଯେ ଦରକାର ନାହିଁ ଏ କଥା କୁହା ଯାଇ ପାରିବ ନାହିଁ । ଏହା ପିଲାଙ୍କ ଦୁଷ୍ଟାମିର ପରିମାଣ, ଓ ବାପମାଆଙ୍କ ଚରିତ୍ର ଉପରେ ନିର୍ଭର କରେ । ତେବେ ମା'ଆ ବେଶୀ ମାଡ଼ ଦେଲେ ବାପ ଓ ବାପ ବେଶୀ ମାଡ଼ ଦେଲେ ମା'ଆ କଚେରୀରେ ନାଲିସ୍ କରିପାରେ । ଏହା ଫଳରେ ବାପ ମାଆଙ୍କ ମଧ୍ୟରେ ମନୋମାଳିନ୍ୟ ଓ ଛାଡ଼ପତ୍ର ଢଆଦେଇ ମଧ୍ୟ ହୋଇ ଯାଇ ପାରେ; ଝିମିଟି ଖେଳରୁ ମହାଭାରତ ଉପୁଜିଲା ପରି ଏଇ ମାଡ଼ରୁ ସଂସାର ଭାଙ୍ଗେ । ବାପମାଆ ଯେଉଁଠି ଉଭୟେ ମିଶି ମାଡ଼ ଦିଅନ୍ତି । ସେଠି ପଡ଼ୋଶୀ ଏମାନଙ୍କ ବିରୁଦ୍ଧରେ ପ୍ରାଦେଶିକ ସରକାରଙ୍କ ନିକଟକୁ ଦରଖାସ୍ତ ଦେଇପାରେ । ସରକାର ଏହି ଦମ୍ପତି ବିରୁଦ୍ଧରେ ନିଷ୍ଠୁର ଆଚରଣ ଲାଗି ମକଦ୍ଦମା କରିପାରନ୍ତି । ତେବେ ମାଡ଼ ମାତ୍ରା ଅତିକ୍ରମ କଲେ ଏସବୁ ହୁଏ ।

ଲଳନାର ଲାଳିତ୍ୟ ନାହିଁ, ତଥାପି ଦୃଷ୍ଟି ଆକର୍ଷଣ କରନ୍ତି ରାସ୍ତା ଧାରର ଗୁଳ୍ମ, କେବଳ ବଞ୍ଚିବା ଲାଗି ବଞ୍ଚି ନାହାନ୍ତି, ଅନ୍ୟକୁ ଉତ୍ଫୁଲ୍ଲ କରିବାକୁ ଚେଷ୍ଟିତ, ବୋଧହୁଏ । ଚୁନା ଚୁନା ଅଗଣିତ ରଙ୍ଗର ଫୁଲ, ଉଜ୍ଜ୍ୱଳ ମଞ୍ଜୁଳ, ସଂଗ୍ରାମର ମାଧୁର୍ଯ୍ୟରେ ଭରପୂର; କେବଳ ମନକୁ ରଙ୍ଗୀନ୍ କରେ ନାହିଁ; ପ୍ରାଣରେ ଶକ୍ତି ଭରିଦିଏ । ପେନ୍ଥା ପେନ୍ଥା ଲାଲ୍ ମାଳ ବାଇଗେଣୀ ବଜ୍ରଲବଣ୍ଠ ପରି ଏବେ ଜଳୁଛି, ସ୍ତୂପର ସବୁଜ ସଭା ମଣ୍ଡପରେ ।

କେଣ୍ଟକୀ ନଦୀର ରଶ୍ମି ଉଜ୍ଜ୍ୱଳ ରୂପ ମୁହୂର୍ତ୍ତେ ମାତ୍ର ନାଚଗଲା, ଯେମିତି ନାଚି ନାଚି ଉଭେଇ ଯାଉଛି ବହୁ ପ୍ରାନ୍ତର, ଉଦ୍ୟାନ କୁଞ୍ଜ; ହ୍ରଦ ଓ ଅରଣ୍ୟ, ହଠାତ୍ ଅନ୍ତର୍ଦ୍ଧାନର କାରୁଣ୍ୟରେ ମନକୁ ବିକଳ କରି ।

ହଠାତ୍ ରାସ୍ତାର ମଝିରେ ଲାଲ୍ ଅକ୍ଷରରେ ଲେଖି ହୋଇଗଲା —Stop; ଉପରୁ ଗାଡ଼ି ବ୍ରେକ ୩୦ ସେକେଣ୍ଡ ଗଳାଇ ଦେଲା, ତାପରେ ସବୁଜ ଅକ୍ଷରରେ ଲେଖି ହୋଇଗଲା—Thank you । ଏହିପରି ବହୁ ସ୍ଥାନରେ ଆମକୁ ଟୋଲ୍ ଦେବାକୁ ପଡ଼ିଲା । ଦେଖୁ ଦେଖୁ ଆମେ ଶିକାଗୋ ସହରର ହାଇ ଦେହଳୀରେ ପହଞ୍ଚିଲୁ । ଯୁକ୍ତରାଷ୍ଟ୍ରର ଦ୍ୱିତୀୟ ବୃହତ୍ତମ ସହର ହେଲେ ମଧ୍ୟ ଏହାକୁ ରାଜଧାନୀ କରାଯାଇ ନାହିଁ । ପ୍ରଦେଶର କେନ୍ଦ୍ର ସ୍ଥଳରେ ‘ଅବସ୍ଥିତ ସ୍ପ୍ରିଙ୍ଗ’ ଫିଲ୍ଡ ଇଲିନଏସ୍‌ର ରାଜଧାନୀ । ଆବ୍ରାହାମ୍ ଲିଙ୍କନଙ୍କ ଯୌବନ ଏଠି କଟିଥିଲା । ସୁପ୍ରସିଦ୍ଧ କବି ଲିଣ୍ଡସେଙ୍କ ଜନ୍ମସ୍ଥାନ ମଧ୍ୟ ଏଇଠି ।

କେକେର୍ଜ ହ୍ରଦ ଅତିକ୍ରମ କଲାପରେ ଆମେ ଓ୍ୱିସ୍‌କନ୍‌ସିନ୍ ରାଜ୍ୟରେ ପ୍ରବେଶ କଲୁ । ଆମେରିକା ବାହାରୁ ବହୁ ନାମ ଉଧାର କରିଆଣିଛି—କାଏରୋ; ଆଲେକଜାଣ୍ଡ୍ରିଆ, ଦିଲ୍ଲୀ, ଜେନେଭା; ଏହି ନାମରେ ସହରସବୁ ନାମିତ ହୋଇଛି । ଜେନେଭା ହ୍ରଦ ଯୋଗୁଁ ଜେନେଭା ସହରର ଅଭିବୃଦ୍ଧି ସମ୍ଭବ ହୋଇଅଛି । ହ୍ରଦର ଚତୁର୍ଦ୍ଦିଗରେ ବହୁ ହୋଟେଲ, ମୋଟେଲ, ରେଷ୍ଟୁରାଣ୍ଟ, ଦୋକାନ ବଜାର ଗଢ଼ିଉଠିଛି । ସ୍ୱାସ୍ଥ୍ୟକର ସ୍ଥାନ, ଭ୍ରମଣକାରୀ ଭିଡ଼ ଜମେଇଛନ୍ତି । ହୋଟେଲରେ ସ୍ଥାନ ପାଇବା କଷ୍ଟକର, ମିଳିଲେ ବି ମହାର୍ଘ । ଏକ ପାଖେ ପାହାଡ଼, ଅନ୍ୟ-ଆଡ଼େ ତରଳ ଜଳରାଶି; ମଟରବୋଟ୍ ଛୁଟିଛନ୍ତି; ମଧେ ମଧେ ପାଲଟଣା ନୌକା, ନୀଳ ସବୁଜ ପରିବେଶରେ ନେତ୍ର ଆକର୍ଷଣ କରି ନେଉଛି । ଜେନେଭା କ୍ଲବରେ ରାତିଟିଏ କଟାଇଥିଲେ କି ମଜା ହୋଇଥାନ୍ତା; ଭାଗ୍ୟରେ ନାହିଁ । ହ୍ରଦ ଉପରେ ମୁହୂର୍ତ୍ତେ ସୌନ୍ଦର୍ଯ୍ୟଶୋଷୀ ଦୃଷ୍ଟିକ୍ଷେପ କରି ଓ୍ୱିସ୍‌କନ୍‌ସିନ୍‌ର ରାଜଧାନୀ ମାଡିସନ୍ ନଗର ପଥରେ ଚାଲିଲୁ ।

ହଲିଡେ ଇନ୍

ଆଗରୁ ରିଜର୍ଭ କରି ହୋଇଥିଲା । ପନ୍ଦର ଡ଼ଲାର ମାପରେ ସ୍ୱାତ ଆଣି ଆମେ ଦୁଇଗୋଟି କୋଠରୀ ଅଧିକାର କଲୁ । ଗୋଟିଏ ଗୋଟିଏ କୋଠରୀର ଭଡ଼ା ଦିନକୁ ବାର ଡଲାର । ଜଣେ ବ୍ୟକ୍ତିର ପୁଞ୍ଜିରେ ଏହି ବିଶାଳ ବ୍ୟବସାୟୀ ଅନୁଷ୍ଠାନ ଗଢ଼ା ହୋଇନାହିଁ । ଏଥିରେ ବହୁ ଅଂଶୀଦାର, ଗୋଟିଏ ଗୋଟିଏ ଅଂଶର ମୂଲ୍ୟ ପନ୍ଦର ଡଲାର । ଗୋଟିକରୁ ବଢ଼ି ବଢ଼ି ଏବେ ଅନେକ ହୋଇଛନ୍ତି—ଏହାର ମୋଟେଲ୍ ବା ଇନ୍‌ସଂଖ୍ୟା ସାତ ଶହ ତିରିଶ—ସେ ସବୁ ଯୁକ୍ତରାଷ୍ଟ୍ର, କାନେଡ଼ା ଓ ବାହାମାଦ୍ୱୀପରେ ଅବସ୍ଥିତ । ସାଧୁତା ଓ ପରସ୍ପର ପ୍ରତି ପ୍ରତ୍ୟୟ ଏହି ବ୍ୟବସାୟର ଅଭିବୃଦ୍ଧିର ମୂଳ କାରଣ । ବ୍ୟବସାୟପୁଞ୍ଜି ଆତ୍ମସାତ୍ କରିବାର ଅପଚେଷ୍ଟା ଏଠି ନାହିଁ । ବ୍ୟବସାୟକୁ ସଫଳ ଓ ସାର୍ଥକ କରିବା ଲାଗି ବରଂ କର୍ମୀମାନେ ଆତ୍ମ-ଦାନ କରିଥାନ୍ତି । ଆମେରିକାର ସମୃଦ୍ଧିର ମୂଳ ହେଉଛି ଏଇଆ । ସଂଚୋଟପଣ ଯୋଗୁଁ ବ୍ୟବସାୟ ବଢ଼ି ବଢ଼ି ଚାଲିଛି । ବୁଡ଼ିବାର ସମ୍ଭାବନା ମଧ୍ୟ ନାହିଁ, ସାତପୁରୁଷ ଅଗତ ହେଲେ ବି । ଅଧିକ ବେତନ ବା ମଜୁରି ଦାବୀ କରି କର୍ମୀମାନେ ଧର୍ମଘଟ କରିପାରନ୍ତି, କିନ୍ତୁ କାମରେ କେହି ଠକନ୍ତି ନାହିଁ । କାର୍ଯ୍ୟ ବେଳେ କେହି କାହା ସଙ୍ଗେ ପଦେ ଅଧିକ କଥା ହୁଏ ନାହିଁ—ଯେତିକି ଦରକାର ସେତିକି ।

ବନ୍ଦ ଘର ଭିତରେ ଗୋଟିଏ ସ୍ୱିମିଂ ପୁଲ୍ । ପାଣି ମହାର୍ଘ । ତେଣୁ ବହୁ ସ୍ଥାନରେ କଳୁଷିତ ହେଲେ ବି ପୋଖରୀର ପାଣି କାଢ଼ି ଦିଆଯାଏ ନାହିଁ । ସେଇ ପାଣିକି ପୁଣି ଫିଲ୍‌ଟର କରାଯାଏ । ଉଦୟ, ଇରା, ମୀରା,ନାକ ସମସ୍ତେ ସନ୍ତରଣପୋଷାକ ପିନ୍ଧି ବାହାରିଲେ । ପ୍ଲାଷ୍ଟିକ୍ କ୍ରିସ୍‌ମାସ୍ ଗଛରେ ବିଦ୍ୟୁତର ଆଲୋକର ରଙ୍ଗୀନ୍ ଫୁଲ ଫୁଟିଛି । 'ପୁଲ୍' ଉପରେ ଝୁଲୁଛି ପ୍ଲାଷ୍ଟିକ୍ ଫୁଲମାଳା, ଆଲୋକମାଳା—ଜୀବନ ଏଠି ଉଜ୍ଜ୍ୱଳ ମୁଖରିତ, ଚଞ୍ଚଳ; ସ୍ନାନଘରୁ ମୁଁ; ବୁଲି ବୁଲି ଅନ୍ୟର ଉଚ୍ଛ୍ୱ-ଫୁଲ୍ଲତା ଉପଭୋଗ କରୁଥାଏ ।

ଗ୍ଧନାର ପରେ ଉଦୟ ମୋତେ ଖେଳିବାକୁ ଡାକିଲା—ଯେପରି ଡାକୁଥିଲା ପିଲାଦିନେ—ସଫଲ୍ ବୋର୍ଡ଼ ଖେଳ । ବିଲିଆଡ଼, ଟେବୁଲ-

ଟେନିସ୍ କିଛି ତ ଜାଣେ ନାହିଁ । ସଫଲ୍ବୋର୍ଡ଼ ଗୋଟିଏ ଅଖେଳାଳୀଙ୍କ ଖେଳ । ତେଣୁ ଉତ୍ସାହ ପାଇ ଅଗ୍ରସର ହେଲି । ଅଧଘଣ୍ଟାଏ ଅଭ୍ୟାସ କଲା ପରେ କିଛି ସଫଳ ମଧ୍ୟ ହେଲି । ଗୀତା ବଜାଉଥାଏ ପିଆନୋ । ନିଜେ ବଜାଇବାକୁ ବସିଲି । ଶ୍ରୋତା ତ ନାହାନ୍ତି । ଶ୍ରୁତିକଟୁ କାହାକୁ ହେବ ? ମନର ଅର୍ମାନ୍ ମେଣ୍ଟିଗଲା, ନା ବେହେଲା, ନା ତାନପୁରା, ନା ସେତାର କିଛି ଶିଖିନାହିଁ ଜୀବନରେ । ସାରେଗାମା କରୁ କରୁ ହାର-ମୋନିୟମ୍ ଶିକ୍ଷା ଶେଷ ହୋଇଥିଲା, ତେବେ ଦିନାକେତେ ପାଶାଗ୍ରରୁ ବଜାଥିଲି; ଢୋଲକ, ପଖଉଜ କିଛିଟା ବଜାଇ ଜାଣେ—ଅବଶ୍ୟ ଅର୍ଦ୍ଧ-ଢାଳିଆ, ବେତାଳିଆ । ନିଜର ଅପୂର୍ଣ୍ଣ ବ୍ୟକ୍ତିତ୍ୱ କଥା ଚିନ୍ତା କରୁ କରୁ ମନରେ ଘୋର ଦୈନ୍ୟ ଆସିଲା । ଜୀବନ ବଞ୍ଚିଜାଣେ ନାହିଁ ମୁଁ, ଅବସର ସୃଷ୍ଟିକ ସମସ୍ତ ଟେନସନ୍ କାଳେ କାଳେ କଷ୍ଟ ଆସିଛି ।

ଉଦୟ, ଇରା ଗୋଟିଏ ଘରେ, ମୁଁ ଓ ପିଲାମାନେ ଅନ୍ୟ ଘରେ ଶୋଇଲୁ । ମୀରା ପଚାରିଲା—ଦାଦେଇ, ତମେ କଣ ବେବିସିଟର୍ ? ଅର୍ଥାତ୍ପିଲାଙ୍କୁ ଜଗିଛ ! ଡାଡ଼ଙ୍କ ଠାରୁ ଡଲାର୍ ପାଇବ !

ଅଭ୍ୟାସମତେ ରାତି ଦୁଇଟାରେ ନିଦ ଭାଙ୍ଗିଲା; ଲେଖି ବସିଲି । କିଛି ଭାବ ପଲଟିଲା ନାହିଁ । ପଢ଼ିବାକୁ ଇଚ୍ଛା ହେଲା, କିନ୍ତୁ ବହି କାହିଁ ? ବାଇବେଲ୍ ଖଣ୍ଡିଏ ଇନ୍ର ପ୍ରତ୍ୟେକ କୋଠରୀରେ ରଖା ହୋଇଛି । ୧୮୯୮ ଖ୍ରୀଷ୍ଟାବ୍ଦରେ ଉଇସ୍କନ୍ସିନ୍ରୁ ପ୍ରଥମେ ଏଇ ପ୍ରଥା ଆରମ୍ଭ ହୋଇଥିଲା । ଦୁଇଜଣ ବନ୍ଧୁ ଦିନେ ଏକାଠି ବସି ପ୍ରାର୍ଥନା କଲେ, ଅନ୍ତରରେ ଈଶ୍ୱରଙ୍କ ବାଣୀ ଶୁଣି ପାରିଲେ—'ଧର୍ମଶାସ୍ତ୍ର ପ୍ରଚାର କର ।' ସେମାନେ ଆଉ ଜଣଙ୍କୁ ନେଇ ଗୋଟିଏ ସଂଘ ଗଢ଼ିଲେ, ତାର ନାମ 'ଗିଡ଼ିୟାନ୍ ଆସୋସିଏସନ୍ ।'

ଗିଡିୟାନ୍ମାନେ ଈଶ୍ୱରଙ୍କ ବାଣୀ ପ୍ରଚାର ଲାଗି ଲକ୍ଷ ଲକ୍ଷ ସଂଖ୍ୟାରେ ବାଇବେଲ୍ ଛପାଇଛନ୍ତି । ସ୍କୁଲ୍, କଲେଜ, ଡାକ୍ତରଖାନା ବସ୍ଷ୍ଟାଣ୍ଡ ସବୁଠି ଏହା ସୁଲଭ ।

ସକାଳୁ ଉଠିଲା ବେଳକୁ ଦେଖିଲି—ଚତୁର୍ଦ୍ଦିଗ କୁହୁଡ଼ିରେ ଅନ୍ଧକାର; ପକ୍ଷୀସବୁ ଡେଣା ଫଡ଼ ଫଡ଼ କରି ଉଡ଼ି ଯାଉଛନ୍ତି; ବଡ ଭୋରରୁ ଆମେ ବାହାରି ପଡ଼ିଲୁ—'ମାଡ଼ିସନ୍' ଅଭିମୁଖେ । ଏହି ନଗର ୧୮୩୭ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ, ଗୋପାଳନ ଲାଗି ପ୍ରସିଦ୍ଧ । ଏଥିରେ ଏବେ ଏକଶହରୁ ଅଧିକ ବଡ ବଡ କାରଖାନା ରହିଅଛି । ୧୯୧୦ରେ ଏଠି ଫରେଷ୍ଟ ପ୍ରଡକ୍ଟ ଲେବରେଟରୀ ସ୍ଥାପିତ ହୋଇଥିଲା, ପୃଥିବୀରେ ଏହା ସର୍ବପ୍ରଥମ । କାଗଜ, ପ୍ଲାଷ୍ଟିକ୍, ସେଲୁଲୋଜ୍, ଲିଗ୍‌ନମ୍ ତିଆରିରେ କାଷ୍ଠ କପରି ପ୍ରଯୁକ୍ତ ହୋଇପାରେ ତାରି ଗବେଷଣା ଚାଲିଅଛି । ଅରଣ୍ୟର ଯଥା ସମ୍ଭବ ଅର୍ଥନୈତିକ ବିନିଯୋଗ ବ୍ୟବସ୍ଥା ହେଉଅଛି ।

ମାଡ଼ିସନ୍ ଏକ ହ୍ରଦସହର; ମେଣ୍ଡୋଟା, ମନୋନା, ୱଇଙ୍ଗ୍ରା, କେଗୋନ୍‌ସା, ଓ୍ୱାବେଶା ପ୍ରଭୃତି ହ୍ରଦ ମଧ୍ୟରେ ପ୍ରଥମଟି ବୃହତ୍ତମ, ଏହାର ଗଭୀରତା ଆଠମାଇଲ । ଏହାର ତୀରବର୍ତ୍ତୀ ଅରଣ୍ୟ ମଧ୍ୟରେ ଓ୍ୱିସ୍‌କନ୍‌ସିନ୍ ବିଶ୍ୱବିଦ୍ୟାଳୟ; ୧୮୪୯ ଖ୍ରୀଷ୍ଟାବ୍ଦରେ ମାତ୍ର କୋଡ଼ିଏ ଜଣ ଛାତ୍ରଙ୍କୁ ନେଇ ଏହା ଆରମ୍ଭ ହୋଇଥିଲା, ଏବେ ଯୁକ୍ତରାଷ୍ଟ୍ରର ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ଏହା ମୁଖ୍ୟ ସ୍ଥାନ ଅଧିକାର କରିଅଛି ।

ମାଣ୍ଡୋଟା ହ୍ରଦରେ କୁହୁଡ଼ି ଭର୍ତ୍ତି, ନୌକାସବୁ ସ୍ଥିର; ଗୋଟା କେତେ ମତ୍ସ୍ୟଶିକାରୀ ପକ୍ଷୀ ଏଣେତେଣେ ଉଡ଼ିବୁଲୁଛନ୍ତି, କୁହୁଡି କାକର ନ ମାନି ଗୋଟିଏ ଦଳ ବାହାରିଛନ୍ତି ଭ୍ରମଣରେ । କାପିଟୋଲ୍ ବିଲଡିଂ, ହସ୍‌ପିଟାଲ୍, ଯାଦୁଘର, ଚିଡ଼ିଆଖାନା, ପ୍ଲାନେଟୋରିୟମ୍;ରେଡ଼ିଓହଲ, ଇଣ୍ଟରନାଶନାଲ ଚର୍ଚ୍ଚ, ଟେନିସ୍‌କୋର୍ଟ, ଗଲ୍‌ଫକୋର୍ସ, ଷ୍ଟେଡ଼ିୟମ, ସ୍କୁଲ, କଲେଜ, ସିନେମାଘର, ରେଷ୍ଟୁରାଣ୍ଟ, ଇନ୍‌ସୁରେନ୍‌ସ କମ୍ପାନୀ ଗୃହସବୁ ଅତିକ୍ରମ କରି ଆମ ଗାଡ଼ି ଚାଲିଲା; ଦୋକାନସବୁ ବନ୍ଦ, ପ୍ରଦର୍ଶନୀ ଗୃହର କାଚ ମଧ୍ୟରେ ପ୍ଲାଷ୍ଟିକ୍ ତିଆରି ବିଦ୍ୟୁତ୍ ଚାଳିତ ସ୍ତ୍ରୀ ଲୋକସବୁ ଚଳ-ପ୍ରଚଳ ହେଉଛନ୍ତି । ବିଦ୍ୟୁତ୍‌ତରଙ୍ଗାପ୍ଲୁତ ବିଜ୍ଞାପନ ସବୁ ବିଶେଷ ଦୃଷ୍ଟି ଆକର୍ଷଣ କରୁଛି । ଓକ୍, ପପ୍‌ଲର୍, ଏଭରଗ୍ରିନ୍, ତୃଣପ୍ରାନ୍ତର, ଶସ୍ୟ-କ୍ଷେତ୍ରକୁ କୁହୁଡ଼ି ଦେଇଛି ଏକ ମାୟା ମଞ୍ଜୁଳ ରୂପ । ଚିହ୍ନି ଚିହ୍ନି କରି ନ ଦେଖିଲେ ବି ମାଡ଼ିସନ୍‌ର ଏକ ଛାପ ମନ ଭିତରେ ଆଙ୍କି ହୋଇଗଲା;

—କିଛୁ ଅଳ୍ପ ଦେଖା, କିଛୁ ଅଦେଖା, ସ୍ମୃତିରେ ଚିର ଜୀବନ୍ତ କରି ରଖିବ ତାର କୁହେଳିକୃଷ୍ଣ, ଶିଶିର ସଜଳ ରୂପକୁ ।

## ରିଙ୍ଗ୍‌ଲିଙ୍ଗ୍ ସର୍‌କସ୍

ବାରାବୁ ଗୋଟିଏ ଷ୍ଟେଟ୍ ସହର, 'ବାରାବୁ' ନଦୀ କୂଳରେ ଏହା ଅବସ୍ଥିତ । ନଦୀ ଉପରକୁ ଗଛସବୁ ଟିକ୍ଲି ପଡ଼ିଛି, କୂଳେ କୂଳେ ପଥର ଡିମାସବୁ ପଡ଼ିଛି, ବସିବା ଲାଗି, ଡିମା ପାଖେ ପାଖେ ବଡ଼ ବଡ଼ ରଙ୍ଗୀନ ଛତିସବୁ ଟଣା ହୋଇଛି, କେହି କେହି ବନ୍ସିରେ ମାଛ ଧରୁଛନ୍ତି । ନଦୀ କୂଳରେ ଗୋଟିଏ 'ବାରାବୁ'କୁ ବୁଲାଉଛନ୍ତି ଦୁଇଜଣ ଲୋକ—ଗୁଆନା ଆକୃତିର ବିଚିତ୍ର ପ୍ରାଣୀଟିଏ, ଦୀର୍ଘ ଲୋମଯୁକ୍ତ, ଗ୍ରୀବା ଦୀର୍ଘ, ଶୃଙ୍ଗହୀନ, ଦକ୍ଷିଣ ଅମେରିକାରୁ ଅଣା ଯାଇଛି ।

ନଦୀ କୂଳରେ ଗୋଟିଏ ସର୍କସ୍ ମ୍ୟୁଜିଅମ୍ ଅଛି । ଏଥିରେ ସର୍କସରେ ବ୍ୟବହୃତ ଯାନ ଓ ଯନ୍ତ୍ର, ସର୍କସ୍‌ରେ କୃତିତ୍ୱ ଅର୍ଜନ କରିଥିବା ଖେଳାଳୀମାନଙ୍କ ଫଟୋ, ଜୀବଜଗତ, ସିଂହ, ବ୍ୟାଘ୍ର, ହସ୍ତୀ ଆଦି ଜୀବଜନ୍ତୁମାନଙ୍କର ଫଟୋ, ବିଭିନ୍ନ କ୍ଲାଉନ୍‌ଙ୍କ ଫଟୋ ଓ ଯନ୍ତ୍ରସବୁ ସୁରକ୍ଷିତ ହୋଇଅଛି । ବିଦ୍ୟୁତ୍ ସାହାଯ୍ୟରେ ଚାଳିତ ପିତୁଳାମାନଙ୍କର ଗୋଟିଏ ସର୍କସ୍ ମଧ୍ୟ ଏଠି ହେଉଅଛି—କେଉଁଠି ଅଶ୍ୱମାନଙ୍କର ପଛଆଡ଼ ଗୁଳାଛି । କେଉଁଠି ବା ହସ୍ତୀ ସାଇକେଲ୍‌ରେ ଚଢ଼ି ବୁଲୁଛି, ଜିରାଫ୍ ମୁଣ୍ଡ ହଲାଉଅଛି । ବିଭିନ୍ନ ଜୀବଜନ୍ତୁଙ୍କ ଦୈନିକ 'ମେନୁ' ଓ ଖାଦ୍ୟର ପରିମାଣ ଲେଖା ହୋଇ ପ୍ରଦର୍ଶିତ ହୋଇଛି, ବୃହତ୍ ହସ୍ତୀବଳଟିଏ କିଣିବାକୁ ଦଶହଜାର ଡଲାର ପଡ଼ୁଛି । ସେ ପ୍ରତି ଦିନ ଅନ୍ୟ ଖାଦ୍ୟ ସହିତ କେତେ ବନ୍‌କୁଟ୍, କେତେ କେକ୍, କେତେ ହୁଇସ୍କି ଖାଏ ତାହା ଉଲ୍ଲିଖିତ ହୋଇଅଛି । ବିଶିଷ୍ଟ ଭାରତୀୟ ସର୍କସ୍ ଖେଳାଳୀ ଦାମୋଦର ଗଙ୍ଗାଧର ହୋଟେ କିପରି ହିଂସ୍ର ଜନ୍ତୁଙ୍କୁ ଭଲପାନ୍ତି, ଜୀବଜନ୍ତୁଙ୍କୁ ଟ୍ରେନିଂ ଦେବାରେ କିପରି ଅସାଧାରଣ ବ୍ୟକ୍ତିତ୍ୱର ପରିଚୟ ଦେଇଛନ୍ତି, ତାହା ପ୍ରକାଶିତ ହୋଇଅଛି । ଥିଏଟର୍ ପରି ବିଭିନ୍ନ ଯୁଗରେ ସର୍କସର କ୍ରୀଡ଼ାକୌଶଳ ଓ ଯନ୍ତ୍ରପାତିର ମଧ୍ୟ ପରିବର୍ତ୍ତନ ହୁଏ । ସେହିସବୁ ପରିବର୍ତ୍ତନର ଚିତ୍ର ମ୍ୟୁଜିଅମ୍‌ରେ ପ୍ରଦର୍ଶିତ ହୋଇଅଛି ।

ବାଗବୁ କୂଳକେ ଗଛସବୁ ସ୍ରୋତ ଉପରକୁ ଝୁଙ୍କି ପଡ଼ଛନ୍ତି—ନଦୀସ୍ରୋତର ମଧ୍ୟେ ମଧ୍ୟେ ଗୋଟାଏ ଗୋଟାଏ ଦ୍ୱୀପ, ସେଥିରେ ଗୋଟିଏ ଦୁଇଟି ଲେଖାଏ ଗଛ, ଅନ୍ୟାନ୍ୟ ବନ୍ଧୁ ବନ୍ୟ ଗୁଳ୍ମ ମଧ୍ୟରେ ବଣସାରୁ ବା ସେହିପରି କଛୁ ମୋର ଦୃଷ୍ଟି ଆକର୍ଷଣ କଲା । କୂଳେ କୂଳେ ଭ୍ରମଣକାରୀଙ୍କ ବସିବା ଲାଗି ବଡ଼ ବଡ଼ ପଥର ଡ଼ିମା ପଡ଼ଛି । ରଙ୍ଗୀନ୍ ଛତାସବୁ ଟଣା ହୋଇଛି । ଗ୍ଲାଉନ୍ ମୁଖର ଗଠି ବାକ୍ସ, ହଂସମୁଖର ଅବଆତ୍ମ ପ୍ରଭୃତି ଦ୍ୱାରା ଚତୁର୍ଦ୍ଦିଗରେ ସର୍କସ ର ବାତାବରଣ ଆଣିବା ଚେଷ୍ଟା ହୋଇଅଛି । ପିଲାମାନଙ୍କ ଲାଗି ଗୋଟିଏ ବିଦ୍ୟୁତ୍‌ଚାଳିତ ନାଗରଦୋଳା ବୁଲୁଛି । ଭ୍ରମଣକାରୀଙ୍କ ଲାଗି ଏଠି ସ୍ୱତନ୍ତ୍ର ଉଡ଼ାଜାହାଜ ପଡ଼ିଆ ନିର୍ମାଣ କରାଯାଇଛି । ଖେଣ୍ଡୁ ଫୁଲ, ଘାସ ପଡ଼ିଆ, ବାଗବୁ ଉପରେ ଆଖି ବୁଲାଇ ବୁଲାଇ ଆମେ ସରକସ୍ ପାଖେ ପହଞ୍ଚିଲୁ । ଟିକେଟ୍ ଲାଗି ଏକ ଡଲାର ପଚିଶ ସେଣ୍ଟ୍ ପଡ଼ିଲା ।

ଗୋଲାକାର ଗୃହର ପାହାଚ ତା ଉପରକୁ ତା ଉପର ଉଠିଛି, ସ୍ତର ପରେ ସ୍ତର ହୋଇ ଦର୍ଶକ ବସିଛନ୍ତି—ଅଧିକାଂଶ ଭ୍ରମଣକାରୀ; ଗୃହରେ ପୃଥିବୀପ୍ରସିଦ୍ଧ ସର୍କସ୍ ଗୁଡ଼କର ନାମ ଉଲ୍ଲିଖିତ ହୋଇଅଛି, ଯଥା—ଭାରତର କମଲା ସର୍କସ୍, ରେମାନ୍ ସର୍କସ୍, ଜେନ୍‌ମାର୍କର ସ୍ୱୀଡାନ୍ ସର୍କସ୍, ଆଫ୍ରିକାର ବସ୍‌ଟଣ୍‌ଭିଲ ସର୍କସ୍, ଯାପାନର ଯୁନୋ ସର୍କସ୍, ଇଂଲଣ୍ଡର ଗ୍ରେଟ୍ ଲଣ୍ଡନ ସର୍କସ୍ ।

ନୀଳ ରଙ୍ଗରେ ରଞ୍ଜିତ ନାସା, କୃଷ୍ଣ ଅଧର, ଲଣ୍ଡିତ ମୁଣ୍ଡ, ଅତି ଦୀର୍ଘ ଉପାନତ୍, ଅଦ୍ଭୁତ ଟୋପି ଓ ଚଷମା—ମୁଣ୍ଡରୁ ଚରଣଦେଶ ପର୍ଯ୍ୟନ୍ତ କଳାଗାର ଲମ୍ବିଛି—ପ୍ରଥମେ କ୍ଲାଉନ୍ ହାସ୍ୟର ହିଲ୍ଲୋଳ ଖେଳାଇ ଦେଲା ।

ସର୍କସରେ କୁକୁରମାନେ ଘୋଡ଼ା ପିଠିରେ ଚଢ଼ି ଦୌଡ଼ିବା, ଘୋଡ଼ା ମଣିଷ ପରି ବସିବା, ଘୋଡ଼ା ଚକାଭଉଁରୀ ଖେଳିବ, ପଚାଶଟି ଘୋଡ଼ା ବୃତ୍ତମାଝେ ପଟୁଆର କରିବା, ମଝିରେ ଗୋଟିଏ ଘୋଡ଼ା ନାଚିବା, ତା ପରେ ଯୋଡ଼ି ଯୋଡ଼ି ହୋଇ, ତିନି ତିନି ହୋଇ ଦଳେ ଆଗକୁ

ବଡଳ ମଣକୁ ହୋଇ ଘୋଡ଼ାସବୁ ଦୌଡ଼ିବା, ଦୁଇ ଗୋଡ଼ରେ ଚାଲି ଚାଲି ଯିବା, ଦୁଇ ଗୋଡରେ ମଣିଷ ମଳ ଡ଼େଇଁବା, ଛଅଟି ଘୋଡ଼ା ଏକାବେଳକେ ନାଚିବା, ହାତୀ ଆଗ ଦୁଇ ଗୋଡ଼ରେ ଭରା ଦେଇ ପଛ ଦୁଇଗୋଡ଼ ଟେକିବା, ଚଉକୀରେ ବସିବା, ଆଗ ଦୁଇ ଗୋଡ଼ ଅନ୍ୟ ଏକ ହାତୀ ପିଠିରେ ରଖି ଚାଲି ଚାଲି ଯିବା, ଥୋଡ଼ପାଖରେ ମଣିଷ ବସାଇ ଟେକିବା, ଦୁଇ ହାତୀ ପିଠିରେ ଦୁଇ ଗୋଡ଼ ରଖି ଘୁଷୁରିଟିଏ ଛିଡ଼ା ହେବା ଓ ହାତୀମାନେ ଦୌଡ଼ିବା, ହାତୀକୁ ସର୍କସ୍‌ବାଲା ନାନା ପ୍ରଶ୍ନ ପଚାରିବା, ସେ ହଁ ବା ନା ମୁଣ୍ଡ ହଲାଇ ଉତ୍ତର ଦେଇ ହାସ୍ୟ ସୃଷ୍ଟି କରିବା, ପ୍ରଭୃତି ନାନା ବଚିତ୍ର କ୍ରୀଡ଼ା କୌଶଳ ଦେଖି ମୁଗ୍‌ଧ ହେଲି । ଶେଷରେ ଯୁକ୍ତରାଷ୍ଟ୍ରର ଜାତୀୟ ସଙ୍ଗୀତ ବୋଲା ହେଲା—ଏଥିରେ ଦର୍ଶକଦର୍ଶିକାମାନେ ଯୋଗ ଦେଲେ ।

ରିଙ୍ଗ୍‌ଲିଙ୍ଗ୍ ସର୍କସ୍‌ର ଏହା ସାମାନ୍ୟ ନମୁନା ମାତ୍ର, ଆମେରିକାର ଶକ୍ତିସାଧନାର କଣ୍ଟିନ୍ୟୁ ଆଭାସ ଦିଏ ।

## ଓ୍ୱିସ୍‌କନ୍‌ସିନ୍ ଉପତ୍ୟକାରେ

ନଦୀର ନାମ ଗ୍ରହଣ କରିଛି ରାଜ୍ୟ । ଉଇସ୍‌କନ୍‌ସିନ୍ ଏ ରାଜ୍ୟର ବୃହତ୍ତମ ନଦୀ; ଗୋଟିଏ ନୁହେଁ, ଅନେକ ହ୍ରଦରୁ ଏ ନିର୍ଗତ । ଲମ୍ବ ୪୩୦ ମାଇଲ୍, ପାହାଡ଼ିଆ ପଥରେ ଅଗଣିତ ପ୍ରପାତ ସୃଷ୍ଟି କରି ଶେଷରେ ମିସିସିପି ନଦୀ ସଙ୍ଗେ ମିଶିଛି । ଏହି ନଦୀର ଛବିଶଟି ପ୍ରପାତରୁ ଏବେ ବିଦ୍ୟୁତ୍ ଉତ୍ପାଦିତ ହେଉଛି । ତୀରେ ତୀରେ ଘନ ଅରଣ୍ୟ, କାଷ୍ଠ ବ୍ୟବସାୟ ଏହି ରାଜ୍ୟର ଏକ ମୁଖ୍ୟ ବ୍ୟବସାୟ, ଶତାଧିକ କଳକାରଖାନା ଚାଲିଛି । ଜଳଶକ୍ତିରେ ଉଇସ୍‌କନ୍‌ସିନ୍ ଯେପରି ସମୃଦ୍ଧ, ପ୍ରାକୃତିକ ଦୃଶ୍ୟ ସେହିପରି ପର୍ଯ୍ୟଟକଆକର୍ଷଣକାରୀ । ଆମର ଯେପରି ପ୍ରାକୃତିକ ଦୃଶ୍ୟ ସହିତ ଦେବାୟତନ ଓ ତୀର୍ଥ, ଏଠି ସେହିପରି ତା ସହିତ ନାନାଜାତୀୟ ବ୍ୟବସାୟ ଜଡ଼ିତ ହୋଇ ରହିଛି—ନୌକାଯାତ୍ରା, ହୋଟେଲ୍ ମୋଟେଲ୍, ଦୋକାନ ବଜାର—ସହର ବୃହତ୍ତମ ରୂପ ଧାରଣ କରେ ଭ୍ରମଣ ଋତୁରେ ।

ଆମେ ଥଣ୍ଡର୍‌ବାର୍ଡ୍ ମୋଟେଲ୍‌ରେ ରହିଲୁ—ଏହା ହ୍ରଦ କୂଳରେ ଅବସ୍ଥିତ; ସାମ୍ନାରେ ଆମର ସବୁଜ ପ୍ରାନ୍ତର, ପିଲଙ୍କ ଦୋଳି; ଏଠି ପ୍ରଥମେ ଦେଖିଲି ମଟର ନୌକା— ଯାହା ସ୍ଥଳେ ମଟର ପରି ଚାଲେ, ପୁଣି ମଟରବୋଟ୍ ପରି ହ୍ରଦରେ ମଧ୍ୟ ଚାଲେ; ହ୍ରଦର ଦ୍ୱୀପରେ ଗୋଟିଏ ରେଷ୍ଟୁରାଣ୍ଟ । ମଧ୍ୟାହ୍ନ ରୌଦ୍ର ଭଙ୍ଗାକାଚ ପରି ଚୁଣି ହୋଇ ଯାଉଛି ଯେପରି ତରଙ୍ଗେ ତରଙ୍ଗେ !

ମୁଁ ଗୋଟିଏ ଛୋଟ ଜାହାଜରେ ବସିଲି, ବହୁ ପାହାଡ ଚଳେଇ ଉଠିଲାଇ । ଆମର ଗାଇଡ୍ ଜଣେ ଲୋହିତଭାରତୀୟ ଯୁବକ । ମୁଣ୍ଡରେ ତାର ଟୋପିପର, ଚମ ଜନାଟିଏ ବନ୍ଧା, ଦେହରେ ଚମ ଜାମା । ଏ ତାର ପ୍ରକୃତ ବେଶ ନୁହେଁ, ବ୍ୟବସାୟୀ ଭେକ । ଯାତ୍ରୀଙ୍କ ଦୃଷ୍ଟି ଆକର୍ଷଣ ଲାଗି ଉଦ୍ଦିଷ୍ଟ । ଗାଇଡ୍ ପ୍ରଥମେ ଉଇସ୍‌କନ୍‌ସିନ୍ ନଦୀର ଉତ୍ପତ୍ତି ସମ୍ବନ୍ଧରେ ଗୋଟିଏ ଗଳ୍ପ କହିଲା । ସେଥିରୁ ବୁଝିଲି—ଭାରତରେ ଯେପରି କାଳନ୍ଦୀ, ଯୁକ୍ତରାଷ୍ଟ୍ରରେ ସେହିପରି ଲେକ୍ ସୁପେରିଅର୍; କାଳିନ୍ଦୀରେ କାଳୀୟ ପରି ଲେକ୍ ସୁପିରିଅର୍‌ରେ ଗୋଟାଏ ବୃହତ୍ ସର୍ପ ବାସ କରୁଥିଲା । କାଳୀୟ, ଯେପରି କାଳନ୍ଦୀ ତ୍ୟାଗ କରି ସମୁଦ୍ରରେ ପ୍ରବେଶ କରିଥିଲା, ଏ ଅତିକାୟ ସର୍ପ ସେହିପରି ଲେକ୍ ସୁପିରିଅର୍ ତ୍ୟାଗ କରି ସମୁଦ୍ର ଯାତ୍ରା କଲା; ସେ ଚାଲିଲା ବେଳେ ଗୋଟାଏ ବୃହତ୍ ଗର୍ତ୍ତ ଖୋଳା ହୋଇଗଲା, ଖାଲ ହୋଇ ଚାରିଆଡ଼େ ପାଣି ଛୁଟିଗଲା, ବହୁ ହ୍ରଦର ସୃଷ୍ଟି ହେଲା । ଏ ପ୍ରଦେଶ ବାଟେ ସେହି ସର୍ପ ଗତି କରିଥିଲା । ଏହାର ହ୍ରଦ ସଂଖ୍ୟା ଆଠ ହଜାର । ଚାଲିବେଳେ ସେ ଗୋଟାଏ ବୃହତ୍ ପାହାଡ଼ୀ ଗର୍ତ୍ତରେ ପ୍ରବେଶ କରିଥିଲା —ତା ଶରୀରର ଆଘାତ ପାଇ ବହୁ ପାହାଡ଼ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଇଥିଲା—ସୃଷ୍ଟି ହେଲା ଉଇସ୍‌କନ୍‌ସିନ୍ ଉପତ୍ୟକାର ଏହି ଦୃଶ୍ୟ— ତାପରେ ମିସିସିପି ନଦୀ ବାଟେ ସେହି ସର୍ପ ଆଟଲାଣ୍ଟିକ ମହା ସମୁଦ୍ରରେ ପ୍ରବେଶ କରିଥିଲା ।

ଗାଢ଼ ନୀଳ ଜଳ, ଉପରେ ଆମର ହେଲିକୋପ୍ଟର ଉଡ଼ୁଛି, ଦୁଇ ପାଖେ ଛୋଟ ଛୋଟ ପକ୍ଷୀ, ଜଳରୁ ଉଡ଼ି ଗଛରେ ବସୁଛନ୍ତି । ଗଛରୁ ବା ଶିକାର ଲାଗି ନଦୀ ଦ୍ୱୀପକୁ ଆସୁଛନ୍ତି । ଆମ ବାଁ ଓ ଡାହାଣ ପଟେ

ତଳେ ମସ୍ତକକୁ ହୋଇ ଘୋଡ଼ାସବୁ ଦୌଡ଼ିବା, ଦୁଇ ଗୋଡ଼ରେ ଚାଲି ଚାଲି ଯିବା, ଦୁଇ ଗୋଡ଼ରେ ମଣିଷ ମଭ ଡେଇଁବା, ଛଅଟି ଘୋଡ଼ା ଏକାବେଳକେ ନାଚିବା, ହାତୀ ଆଗ ଦୁଇ ଗୋଡ଼ରେ ଭର ଦେଇ ପଛ ଦୁଇଗୋଡ଼ ଟେକିବା, ଚଉକିରେ ବସିବା, ଆଗ ଦୁଇ ଗୋଡ଼ ଅନ୍ୟ ଏକ ହାତୀ ପିଠିରେ ରଖି ଚାଲି ଚାଲି ଯିବା, ଥୋଡ଼ପାଡ଼ରେ ମଣିଷ ବସାଇ ଟେକିବା, ଦୁଇ ହାତୀ ପିଠିରେ ଦୁଇ ଗୋଡ଼ ରଖି ପୁଅଟିଏ ଛିଡ଼ା ହେବା ଓ ହାତୀମାନେ ଦୌଡ଼ିବା, ହାତୀକୁ ସର୍କସ୍ବାଲା ନାନା ପ୍ରଶ୍ନ ପଚାରିବା, ସେ ହଁ ବା ନା ମୁଣ୍ଡ ହଲାଇ ଉତ୍ତର ଦେଇ ହାସ୍ୟ ସୃଷ୍ଟି କରିବା, ପ୍ରଭୃତି ନାନା ବିଚିତ୍ର କ୍ରୀଡ଼ା କୌଶଳ ଦେଖି ମୁଗ୍ଧ ହେଲି । ଶେଷରେ ଯୁକ୍ତରାଷ୍ଟ୍ରର ଜାତୀୟ ସଙ୍ଗୀତ ବୋଲା ହେଲା—ଏଥିରେ ଦର୍ଶକଦର୍ଶିକାମାନେ ଯୋଗ ଦେଲେ ।

ରିଙ୍ଗ୍ଲିଙ୍ଗ୍ ସର୍କସ୍ର ଏହା ସାମାନ୍ୟ ନମୁନା ମାତ୍ର, ଆମେରିକାର ଶକ୍ତିସାଧନାର କଣ୍ଟିନ୍ଦ୍ର ଆଭାସ ଦିଏ ।

## ଓ୍ବିସ୍କନ୍ସିନ୍ ଉପତ୍ୟକାରେ

ନଦୀର ନାମ ଗ୍ରହଣ କରିଛି ରାଜ୍ୟ । ଓ୍ବିସ୍କନ୍ସିନ୍ ଏ ରାଜ୍ୟର ବୃହତ୍ତମ ନଦୀ; ଗୋଟିଏ ନୁହେଁ, ଅନେକ ହ୍ରଦରୁ ଏ ନିର୍ଗତ । ଲମ୍ବ ୪୩୦ ମାଇଲ୍, ପାହାଡ଼ିଆ ପଥରେ ଅଗଣିତ ପ୍ରପାତ ସୃଷ୍ଟି କରି ଶେଷରେ ମିସିସିପି ନଦୀ ସଙ୍ଗେ ମିଶିଛି । ଏହି ନଦୀର ଛବିଶଟି ପ୍ରପାତରୁ ଏବେ ବିଦ୍ୟୁତ୍ ଉତ୍ପାଦିତ ହେଉଛି । କୂଳରେ କୂଳରେ ଘନ ଅରଣ୍ୟ, କାଷ୍ଠ ବ୍ୟବସାୟ ଏହି ରାଜ୍ୟର ଏକ ମୁଖ୍ୟ ବ୍ୟବସାୟ, ଶତାଧିକ କଳକାରଖାନା ଚାଲିଛି । ଜଳଶକ୍ତିରେ ଓ୍ବିସ୍କନ୍ସିନ୍ ଯେପରି ସମୃଦ୍ଧ, ପ୍ରାକୃତିକ ଦୃଶ୍ୟ ସେହିପରି ପର୍ଯ୍ୟଟକଆକର୍ଷଣକାରୀ । ଆମର ଯେପରି ପ୍ରାକୃତିକ ଦୃଶ୍ୟ ସହିତ ଦେବାଳୟ ଓ ତୀର୍ଥ, ଏଠି ସେହିପରି ତା ସହିତ ଆବଶ୍ୟକ ବ୍ୟବସାୟ ଜଡ଼ିତ ହୋଇ ରହିଛି—ନୌକାଯାତ୍ରା, ହୋଟେଲ ମୋଟେଲ୍, ଦୋକାନ ବଜାର—ସହର ବୃହତ୍ତମ ରୂପ ଧାରଣ କରେ ଭ୍ରମଣ ଋତୁରେ ।

ଆମେ ଥଣ୍ଡରବାର୍ଡ ମୋଟେଲ୍‌ରେ ରହିଲୁ—ଏହା ହ୍ରଦ କୂଳରେ ଅବସ୍ଥିତ; ସାମ୍ନାରେ ଆମର ସବୁଜ ପ୍ରାନ୍ତର, ପିଲଙ୍କ ଦୋଳି; ଏଠି ପ୍ରଥମେ ଦେଖିଲି ମଟର ନୌକା—ଯାହା ରାସ୍ତାରେ ମଟର ପରି ଚାଲେ, ପୁଣି ମଟରବୋଟ୍ ପରି ହ୍ରଦରେ ମଧ୍ୟ ଚାଲେ; ହ୍ରଦର ଦ୍ୱୀପରେ ଗୋଟିଏ ରେଷ୍ଟୁରାଣ୍ଟ। ମଧ୍ୟାହ୍ନ ରୌଦ୍ର ଭଙ୍ଗାକାଚ ପରି ବୁଣି ହୋଇ ଯାଉଛି ଯେପରି ତରଙ୍ଗେ ତରଙ୍ଗେ!

ମୁଁ ଗୋଟିଏ ଛୋଟ ଜାହାଜରେ ବସିଲି, ବହୁ ପାହାଡ ତଳକୁ ଓହ୍ଲାଇ। ଆମର ଗାଇଡ୍ ଜଣେ ଲୋହିତଶ୍ମଶ୍ରୁଶ୍ମାସ୍ୟ ଯୁବକ। ମୁଣ୍ଡରେ ତାର ଟୋପିପର, ଚିତ୍ର କନାଟିଏ ବନ୍ଧା, ଦେହରେ ଚିତ୍ର ଜାମା। ଏ ତାର ପ୍ରକୃତ ବେଶ ନୁହେଁ, ବ୍ୟବସାୟୀ ଭେକ। ଯାତ୍ରୀଙ୍କ ଦୃଷ୍ଟି ଆକର୍ଷଣ ଲାଗି ଉଦ୍ଦିଷ୍ଟ। ଗାଇଡ୍ ପ୍ରଥମେ ଉଇସ୍କନସିନ୍ ନଦୀର ଉତ୍ପତ୍ତି ସମ୍ବନ୍ଧରେ ଗୋଟିଏ ଗଳ୍ପ କହିଲା। ସେଥିରୁ ବୁଝିଲି—ଭାରତରେ ଯେପରି କାଳିନ୍ଦୀ, ଯୁକ୍ତରାଷ୍ଟ୍ରରେ ସେହିପରି ଲେକ୍ ସୁପିରିଅର୍; କାଳିନ୍ଦୀରେ କାଳୀୟ ପରି ଲେକ୍ ସୁପିରିଅର୍‌ରେ ଗୋଟାଏ ବୃହତ୍ ସର୍ପ ବାସ କରୁଥିଲା। କାଳୀୟ, ଯେପରି କାଳିନ୍ଦୀ ତ୍ୟାଗ କରି ସମୁଦ୍ରରେ ପ୍ରବେଶ କରିଥିଲା, ଏ ଅତିକାୟ ସର୍ପ ସେହିପରି ଲେକ୍ ସୁପିରିଅର୍ ତ୍ୟାଗ କରି ସମୁଦ୍ର ଯାତ୍ରା କଲା; ସେ ଚାଲିଲା ବେଳେ ଗୋଟାଏ ବୃହତ୍ ଗର୍ତ୍ତ ଖୋଳି ହୋଇଗଲା, ଖାଲ ହୋଇ ଚାରିଆଡ଼େ ପାଣି ଛୁଟିଗଲା, ବହୁ ହ୍ରଦର ସୃଷ୍ଟି ହେଲା। ଏ ପ୍ରଦେଶ ବାଟେ ସେହି ସର୍ପ ଗତି କରିଥିଲା। ଏହାର ହ୍ରଦ ସଂଖ୍ୟା ଆଠ ହଜାର। ଚାଲିବେଳେ ସେ ଗୋଟାଏ ବୃହତ୍ ପାହାଡ଼ି ଗର୍ତ୍ତରେ ପ୍ରବେଶ କରିଥିଲା—ତା ଶରୀରର ଆଘାତ ପାଇ ବହୁ ପାହାଡ଼ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଇଥିଲା—ସୃଷ୍ଟି ହେଲା ଉଇସ୍କନସିନ୍ ଉପତ୍ୟକାର ଏହି ଦୃଶ୍ୟ—ତାପରେ ମିସିସିପି ନଦୀ ବାଟେ ସେହି ସର୍ପ ଆଟଲାଣ୍ଟିକ ମହା ସମୁଦ୍ରରେ ପ୍ରବେଶ କରିଥିଲା।

ଗାଢ଼ ନୀଳ ଜଳ, ଉପରେ ଆମର ହେଲିକୋପ୍ଟର ଉଡ଼ୁଛି, ଦୁଇ ପାଖେ ଛୋଟ ଛୋଟ ପକ୍ଷୀ, ଜଳରୁ ଉଡ଼ି ଗଛରେ ବସୁଛନ୍ତି। ଗଛରୁ ବା ଶିକାର ଲାଗି ନଦୀ ଦ୍ୱୀପକୁ ଆସୁଛନ୍ତି। ଆମ ବାଁ ଓ ଡାହାଣ ପଟେ

ପାହାଡ଼ ଶ୍ରେଣୀ, ପଠା ଉପରେ ପଠା ନଦୀ ଦେଲି ପରି ସ୍ତର ପରେ ସ୍ତର ପ୍ରସ୍ତର ଖଣ୍ଡ ଦିଶୁଛି । ସେଇ ପ୍ରସ୍ତର ଉପରେ ପାଇନ୍ ଉଠିଛି— ପାଇନର ଅରଣ୍ୟ । ତାପରେ ,ନଦୀ ବନ୍ଧ ହୋଇ ଯାଇଛି, ମଧ୍ୟେ ମଧ୍ୟେ ଭଗ୍ନ ପାହାଡ଼ର ଦ୍ୱୀପସବୁ—ତରଙ୍ଗର କଠୋର ଛେଦନରେ ପାହାଡ଼ ମୂଳ କ୍ଷୀଣରୁ କ୍ଷୀଣତର ହେଉଅଛି—ତଥାପି ତା ଉପରେ ବନ, ଦୂରରୁ ସବୁଜ ଛତ୍ର ପରି ଦିଶେ—ରୌଦ୍ରଛାୟାର ଲୁଚକାଳି ମୁହୂର୍ତ୍ତ ବଦଳୁଛି, ପାହାଡ଼, ଅରଣ୍ୟ, ଦ୍ୱୀପ ନଦୀର ତରଙ୍ଗେ !

ଲୋହିତ ପୁଷ୍ପମୟ ଶାଖ—ଦ୍ୱୀପ ପାହାଡ଼ ଗବାକ୍ଷରେ ନଦୀ ଆର ପାଖରେ ଝଲମଲ ତରଙ୍ଗ ଦିଶେ, ଭବିଷ୍ୟର ସୁଖସ୍ୱପ୍ନ ପରି । ଗର୍ତ୍ତମଧ୍ୟ ପାହାଡ଼ କଙ୍କାଳ ଛୁଇଁ ଛୁଇଁ ଚାଲିଲା ଆମର ନୌକା ।

ଉଇସ୍‌କନ୍‌ସିନ୍ ସହରରେ ନଦୀ ଉପରେ ଗୋଟିଏ ବନ୍ଧ ନିର୍ମିତ ହୋଇଛି । ବନ୍ଧର ତଳଭାଗ ଓ ଉପର ଭାଗ ଦେଖିବା ଲାଗି ସ୍ୱତନ୍ତ୍ର ଟିକେଟ୍ କରିବାକୁ ହୁଏ । ଉପର ଉପତ୍ୟକା ଦେଖି ବୋଟ୍ ଷ୍ଟେସନକୁ ଆସି ମୁଁ ଲଞ୍ଚରେ ତଳ ଉପତ୍ୟକାକୁ ଓହ୍ଲାଇଲି— ପାହାଡ଼ୀକାନ୍ଥକୁ ଲାଗି ବୋଟ୍ ରହିଥାଏ । ନଦୀ ବନ୍ଧ ଯୋଗୁଁ ଉଇସ୍‌କନ୍‌ସିନ୍ ଦୃଷ୍ଟିଲୋଭା । ସନ୍ଧ୍ୟାର ଲୋହିତ ଆଭା ଅସ୍ତାଚଳ ଅତିକ୍ରମ କରି ଆସି ନଦୀଜଳକୁ ସିନ୍ଦୂରିତ କରିଥିଲା, ତା ସଙ୍ଗେ ରଙ୍ଗୀନ୍ କରିଦେଲା ମୋର ମନ ଅପୂର୍ବ ସ୍ୱପ୍ନରେ—ବୃହତ୍ ଓ ମହତର ମିଳନ, କାବ୍ୟ ଓ କଳାର ସମନ୍ୱୟ ଘଟୁଛି ସତେ ଯେପରି ସେଥିରେ ।

ଭଙ୍ଗା ଦଦରା, ନକ୍ର କୋଣ ହୋଇଯାଇଥିବା ପାହାଡ଼ ଉପରେ ରେଖାଚିତ୍ର ସବୁ, କ୍ଷୀଣ ଗର୍ଭର ନଦୀ ଧାରରେ ଦୁଇ ପାଖର ପାହାଡ଼ ଲାଗିଗଲା ପରି ଦିଶୁଛି—ସଦ୍ଭାବର ସ୍ତରେ ସ୍ତରେ ସନ୍ଧ୍ୟାର ବ୍ୟକ୍ତିତ୍ୱ ବିସ୍ମୃତ; କେଉଁସ୍ଥାନ ଗର୍ଭର ଭାବେ ଉତ୍କ୍ରମ, କେଉଁଠି ଫଗୁଲ ଆଭାସ ମାତ୍ର— ମୁହୂର୍ତ୍ତ ବଦଳାଇ ଚିତ୍ରଛନ୍ଦ ଚିତ୍ରଶିଳ୍ପୀ—ଆତ୍ମତୁଷ୍ଟ ଆପଣାଙ୍କ ତାଙ୍କର; ମନର କଥା ସମ୍ପୂର୍ଣ୍ଣ ରୂପେ ପ୍ରକାଶ କରି ପାରୁ ନାହାନ୍ତି ଯେପରି । [illegible]

ସ୍ୱଳନ୍ତନ୍ତି, ଆଙ୍କି ଯାଉଛନ୍ତି ମୂର୍ତ୍ତି, ଶିଳ୍ପରେ ସମ୍ପୂର୍ଣ୍ଣ ବୋଲି କହୁ ନାହିଁ, କହୁ ଶେଷ ହୁଏ ନାହିଁ, ଶେଷ କରିବାର ଅବକାଶ ରହିଥାଏ, ଚିରକାଳ ରହିଯାଏ ।

ସନ୍ଧ୍ୟାର ଶୀତଳ କର ସ୍ପର୍ଶ ଅନୁଭବ କଲି କପାଳରେ ମୋର,ଝିପା ଦେଉଛୁ ବୋଧହୁଏ । ଏଇ ଟେଲି ଟେଲିକା ପାହାଡ଼, ଟେଲି ଟେଲିଆ ହ୍ରଦ ଓ ସବୁଜ ପରିବେଶରେ ସ୍ନିଗ୍ଧ ରମଣୀ ସ୍ରୋତସ୍ୱିନୀ ପ୍ରତି ତ ର ଯେପରି ସ୍ନେହ, ମୋ ପ୍ରତି ମଧ୍ୟ ସେହିପରି ସ୍ନେହ; ସବୁଜ ଶାନ୍ତିରେ, ସନ୍ଧ୍ୟାର ଅଧର ସ୍ୱପ୍ନେ କ୍ଲାନ୍ତ ମନ ଯେପରି କ ଘୁମାଇ ପଡ଼ୁଛି । ପୁଣି ଜାଗ୍ରତ ହେଉଛୁ କଳ କଳ ଧ୍ୱନିରେ ସନ୍ଧ୍ୟାର ସିନ୍ଦୂର ମୁଣ୍ଡରେ ନେବାଲାଗି କଶୋର କୌତୂହଳରେ ଲମ୍ଫ ଦେଉଛନ୍ତି ତରଙ୍ଗସବୁ, ସେମାନଙ୍କ ସଙ୍ଗେ ଲମ୍ଫ ଦେଉଛୁ ମୋର ହୃଦୟ ପାହାଡ଼ର ବାଡ଼େ ବାଡ଼େ, ମେଘ ସ୍ତରେ, ସ୍ତରେ, ମୋ ଦେଶର ନ ହେଲେ ବ ମୋ ପ୍ରାଣର—ଏଇ ଉଇସ୍‌କନ୍‌ସିନ୍ ନଦୀ, ସୁନାର ପ୍ରପାତ ପରି ଜଳ ଉଠେ ହାସ ତାର, ଜଳଦର୍ଚି ଲମ୍ଫିଯାଏ ହୃଦର ତରଙ୍ଗେ, ଭଗ୍ନଦୁର୍ଗ ମାନେ, ଅଗଣା ସମ୍ପାଳୀ ଜାଳ ରାଜକନ୍ୟା ବସିଅଛୁ କାହା ପ୍ରତୀକ୍ଷାରେ ?

## 'ଷ୍ଟାଣ୍ଡରକ୍' ରଙ୍ଗମଞ୍ଚେ

ଜାହାଜ ଅଟକିଲ; କାଷ୍ଠ ପଥରେ ଯାଇ ଆମେ ଦୁଇ ପର୍ବତ ମଧ୍ୟସ୍ଥ କ୍ଷୀଣ ଉପତ୍ୟକାରେ ପ୍ରବେଶ କଲୁ । ପାହାଡ଼ ଉପରେ ନକ୍ସ ଅର୍ଦ୍ଧ ପର୍ଯ୍ୟନ୍ତ କାଷ୍ଠାସନର ସୋପାନ, ପ୍ରାୟ ଅଢ଼େଇ ହଜାର ଦର୍ଶକଙ୍କ ବସିବାର ବ୍ୟବସ୍ଥା ହୋଇଅଛୁ । ଦୁଇ ପାହାଡ଼ର ଊର୍ଦ୍ଧ୍ୱ ଦେଶରେ ଘନ ପାଇନ୍ ବନ, ତା ମଧ୍ୟରେ ଖଣ୍ଡିତ ଆକାଶ, ପତ୍ର ଫାଙ୍କରେ ଗୋଟିଏ ଗୋଟିଏ ତାରା ଫୁଟି ହସୁଛନ୍ତି । ପାହାଡ଼, ବନ, ବସ୍ତୁତ ଉଇସ୍‌କନ୍‌ସିନ୍ ଦ୍ରୁତ ଅନ୍ଧକାରରେ ଘୋଟି ଆସିଲା ପରି ଲାଗୁଛୁ । ଶଙ୍କିତ ହୃଦୟକୁ ଅଶ୍ୱାସନା ଦେଉଛୁ କେବଳ ଝିଙ୍କାରୀ ।

ପ୍ରାଚୀନ ଆମ୍ଫିଥିଏଟର୍ ଅନୁକରଣରେ ନୈହ୍ୱତଭାଗସ୍ଥ ରଙ୍ଗମଞ୍ଚର ପରିକଳ୍ପନା ହୋଇଅଛୁ । ପାହାଡ଼ର ଅର୍ଦ୍ଧଭାଗରୁ ଉପତ୍ୟକା

ପର୍ଯ୍ୟନ୍ତ ରଙ୍ଗମଞ୍ଚ ଲମ୍ବି ଆସିଛି । ବ୍ୟକ୍ତିକ ନୃତ୍ୟ ଅର୍ଦ୍ଧଭାଗରେ ଓ ସମୂହ ନୃତ୍ୟ ଉପତ୍ୟକାରେ ଅନୁଷ୍ଠିତ ହେଉଅଛି । ଦର୍ଶକ ବସିଥିବା ପାହାଡ଼ରୁ ସୁବିସ୍ତୃତ ରଙ୍ଗମଞ୍ଚ ଉପରକୁ ଆଲୋକ ଫୋକସ କରା ଯାଉଛି । ପ୍ରାକୃତିକ ଶ୍ରୀ ଏହି ନୃତ୍ୟକୁ ଏକ ମୌଳିକ ରଙ୍ଗ ଓ ରସ ପ୍ରଦାନ କରିଅଛି, ଏ ସ୍ଥାନରେ ଥିଏଟରର ପରିକଳ୍ପନା ଅପୂର୍ବ, ଅନବଦ୍ୟ ।

ଗ୍ରୀଷ୍ମଋତୁରେ ଅନୁଷ୍ଠିତ ଏହି ଉତ୍ସବକୁ 'ଷ୍ଟାଣ୍ଡରକ୍ ଏଣ୍ଡିଆନ୍ ସିରେମୋନିଆଲ୍' କୁହା ଯାଏ । ଲୋହିତଭାରତୀୟଙ୍କର ସେଇ ଆଦିମତା ଆଉ ନାହିଁ । ସେମାନେ ଏବେ ଶିକ୍ଷିତ, ସଭ୍ୟ । ଏଠା ନୃତ୍ୟକାରଙ୍କ ମଧ୍ୟରୁ କିଏ ଶିକ୍ଷକ, କିଏ କିରାଣି, କିଏ ବା ଛାତ୍ର—ନୃତ୍ୟ କାହାର ବୃତ୍ତି ନୁହେଁ । କିନ୍ତୁ ସବୁ ଲୋହିତଭାରତୀୟ ଏହି ନୃତ୍ୟ ଶିଖିଛନ୍ତି, ପ୍ରାଚୀନ ପ୍ରଥା ପ୍ରତି ଆନୁଗତ୍ୟ ଅଛି ବୋଲି ନୁହେଁ, ଏଥିରୁ ବହୁତ ଅର୍ଥ ଉପାର୍ଜନ କରନ୍ତି ବୋଲି । ତେଣୁ ଗ୍ରୀଷ୍ମଋତୁରେ ଏକାବେଳକେ ଟେସେକ, ଷ୍ଟାଣ୍ଡରକ୍, କଲ୍‌ରାଡୋ, ଓକାଲ୍‌ହାମାରେ ନୃତ୍ୟଗୀତ ଅନୁଷ୍ଠିତ ବା ନାଟକ ଅଭିନୀତ ହୁଏ । ଆଞ୍ଚଳିକ ନୃତ୍ୟକୁ ବୈଚିତ୍ର୍ୟ ଦେବା ଲାଗି ଭିନ୍ନ ଭିନ୍ନ ସ୍ଥାନରୁ ଲୋହିତଭାରତୀୟ ନୃତ୍ୟକାରମାନେ ଆସି ଯୋଗ ଦେଇଛନ୍ତି, ଏହାଦ୍ୱାରା ଲୋହିତଭାରତୀୟଙ୍କ ମଧ୍ୟରେ ଆସିଛି ଐକ୍ୟ, ପ୍ରାଚୀନ ସଂସ୍କୃତି ସୁରକ୍ଷିତ ହୋଇ ପାରିଛି । ଗୋଟିଏ ବ୍ୟବସାୟୀ ଅନୁଷ୍ଠାନ ଏହି ନୃତ୍ୟ ସଂଗଠନକୁ ହାତକୁ ନେଇଥିବାରୁ ଏହା ଭାଙ୍ଗିଯିବାର ଶଙ୍କା ନାହିଁ । ବରଂ ଏହାର ଉତ୍ତରୋତ୍ତର ଅଭିବୃଦ୍ଧି ସାଧିତ ହୋଇଅଛି, ଲୋହିତଭାରତୀୟଙ୍କ ଆର୍ଥିକ ଅବସ୍ଥା ଉନ୍ନତତର ହୋଇଅଛି । ଲୋହିତଭାରତୀୟ ବୋଇଲେ ଆଧୁନିକ ଯୁବକଯୁବତୀ; ପାରମ୍ପରିକତା ରକ୍ଷା ସେମାନଙ୍କର ଏକ ଅଭିନୟ, ଅବଶ୍ୟ ଅର୍ଥକରୀ ।

ଉଇନେବାଗୋ, ସିଓକ୍ସ, ଚକାସ୍, ଜୁନି, କୋଶଟି ମେନୋମିନି ପ୍ରଭୃତି ବିଭିନ୍ନ ଗୋଷ୍ଠୀର ଲୋହିତଭାରତୀୟ ଯୁକ୍ତରାଷ୍ଟ୍ରର ବିଭିନ୍ନ ଅଞ୍ଚଳରୁ ଆସି ଏଠି ଏକତ୍ର ହୋଇଛନ୍ତି—ମହିଷ ନୃତ୍ୟ, ବନ୍ୟ ହଂସ ନୃତ୍ୟ, ସର୍ପ ନୃତ୍ୟ, ମତ୍ସ୍ୟନୃତ୍ୟ, ଇଗଲନୃତ୍ୟ, ଯୁଦ୍ଧ ନୃତ୍ୟ, ମୈତ୍ରୀନୃତ୍ୟ ପ୍ରଭୃତି ନୃତ୍ୟ ଓ ପ୍ରାଚୀନ ଗୀତ ପରିବେଷଣ କରୁଛନ୍ତି । ଗୀତର ସ୍ୱର, ବାଦ୍ୟର

ଗତାନୁଗତିକତାର ମଧ୍ୟେ ମଧ୍ୟେ କଳକଳା ପାଇଁ, ନୃତ୍ୟର ତାଳ ଆମ ଆଦିବାସୀଙ୍କ ସ୍ମୃତି ମନରେ ଜାଗ୍ରତ କରେ । ଆଦିବାସୀଙ୍କ ସଂସ୍କୃତି ପ୍ରାୟ ସର୍ବଦା ରକ୍ଷଣଶୀଳ । ତେଣୁ ସଭ୍ୟତର ବ୍ୟକ୍ତିମାନେ ସେମାନଙ୍କୁ ସମତଳ କ୍ଷେତ୍ରରୁ ଅନୁର୍ବର ପାହାଡ଼ ଜଙ୍ଗଲକୁ ତଡ଼ି ଦେଇଥିଲେ । ଯୁଗ ଯୁଗ ଧରି ସଂଗ୍ରାମ କଲେ ମଧ୍ୟ ଆଦିବାସୀମାନେ ଆତ୍ମରକ୍ଷାର ଅସ୍ତ୍ରଶସ୍ତ୍ର ଉନ୍ନତତର କରି ପାରି ନ ଥିଲେ । ଅନୈକ୍ୟ ଓ ଗୋଷ୍ଠୀବିରୋଧ ସେମାନଙ୍କୁ କ୍ରମ ବିଲୋପ ପଥରେ ନେଇ ଯାଇଥିଲା ।

ଯୁଦ୍ଧ ନୃତ୍ୟରେ ବାଜା ବାଜେ ନାହିଁ; ପୁରୁଷମାନେ ଯୁଦ୍ଧକୁ ଗଲେ ସ୍ତ୍ରୀ ମାନଙ୍କ ମନରେ ନାନା ଶଙ୍କା ଜାଗ୍ରତ ହୋଇଥାଏ । ତେଣୁ ସେମାନେ ଶୋକାକୁଳ ବେଶ ଧାରଣ କରିଥାନ୍ତି । କିନ୍ତୁ ବିଜୟ ଲାଭ ପରେ ସେମାନେ ଆନନ୍ଦରେ ଅଭିଭୂତ ହୁଅନ୍ତି, ନୃତ୍ୟର ହିଲ୍ଲୋଳରେ ତାହା ପ୍ରକାଶିତ ହୁଏ । ଯୁଦ୍ଧ ନୃତ୍ୟର ଉଦ୍ଧତ ଗତିକ ଡ୍ରମ୍ ଉତ୍ସାହିତ କରେ ।

ସର୍ପନୃତ୍ୟ ଏକ ସାମାଜିକ ନୃତ୍ୟ । ଏବେ ଏହା ଏକ କୌତୁକ ବିନୋଦନ; ପ୍ରାଚୀନ ଧର୍ମ ପ୍ରଥା ସମ୍ବଳିତ ନୃତ୍ୟ ସହିତ ଏହାର କୌଣସି ସଂପର୍କ ନାହିଁ । ଏହି ନୃତ୍ୟରେ ଆଗେ ଜୀବନ୍ତ ରାଟଲ୍ ସ୍ନେକ୍ ବ୍ୟବହାର କରା ଯାଉଥିଲା ।

ହଂସନୃତ୍ୟ ସ୍ତ୍ରୀମାନଙ୍କର ନୃତ୍ୟ—ବାହାରେ ହଂସପର ଲଗାଇ ସେମାନେ ନାଚିଥାନ୍ତି । ଲୋହିତ ଭାରତୀୟଙ୍କ ମତରେ ହଂସ ଏକ ପବିତ୍ର ପକ୍ଷୀ । ମନୁଷ୍ୟ ଆଗରୁ ତାର ସୃଷ୍ଟି ହୋଇଥିଲା; ବୁଦ୍ଧି ବିବେକରେ ମନୁଷ୍ୟ ଠାରୁ ହଂସ ଶ୍ରେଷ୍ଠତର । ନୃତ୍ୟର ଆନୁସଙ୍ଗିକ ଗୀତ ପ୍ରାୟ ଦୁର୍ବୋଧ୍ୟ; ଏହା ତାର ପ୍ରାଚୀନତାର ପ୍ରମାଣ ଦିଏ ।

କୁକୁର ଭୋଜ ନୃତ୍ୟର ଏକ ପ୍ରାଚୀନ ପରମ୍ପରା ରହିଅଛି । ବର୍ଷେ ଶୀତକାଳରେ ଘୋର ଖାଦ୍ୟାଭାବ ଘଟିଲା । ଭଲ ଶିକାର ମିଳିଲେ ଲୋହିତଭାରତୀୟମାନେ କୁକୁରମାନଙ୍କୁ ଭଲ ଭୋଜ ଦେବେ ବୋଲି ମାନତି ହେଲେ । ଯୋଗକୁ ସେଦିନ ଭଲ ଶିକାର ମିଳିଲା । କ୍ଷୁଧାକୁ ଅଧିକ ଶାଣିତ କରିବା ଲାଗି କୁକୁରମାନଙ୍କୁ ଦୀର୍ଘକାଳ ଉପାସରେ ବାନ୍ଧି

ଲଗାଦେଲ । କ୍ଷୁଧାରେ ଅତି ଆତୁର ହେବା ବେଳେ ସେମାନଙ୍କୁ ପ୍ରଚୁର ପରିମାଣରେ ଉତ୍କୃଷ୍ଟ ମାଂସ ପରିବେଷଣ କରା ହୋଇଥିଲା । ଏବେ ନୃତ୍ୟରେ ସେହି ଦୃଶ୍ୟ ପ୍ରଦର୍ଶିତ ହୁଏ ।

ଯୁକ୍ତରାଷ୍ଟ୍ରର ସଂସ୍କୃତିରେ 'ଇଗଲ' ଏକ ପ୍ରତୀକ ରୂପେ ବ୍ୟବହୃତ ହୋଇଅଛି । ଆମ ସଂସ୍କୃତିରେ ଯେପରି ସିଂହ, ହସ୍ତୀ, ଏଠି ସେହିପରି ଇଗଲ—କ୍ଷମତା ଓ ଶକ୍ତିମତ୍ତାର ସଙ୍କେତ । ରେଡ଼ଇଣ୍ଡିଆନ୍‌ମାନେ ଶିରୋଭୂଷଣ ରୂପେ ଇଗଲ ପର ବ୍ୟବହାର କରୁଥିଲେ; ଏବେ ଦୁଷ୍ପ୍ରାପ୍ୟ ହେବାରୁ ସୁରକ୍ଷିତ ଇଗଲ ପର ସହିତ ଅନ୍ୟ ପକ୍ଷୀମାନଙ୍କ ପର ବ୍ୟବହୃତ ହୋଇଅଛି ।

ବ୍ୟକ୍ତିକ ନୃତ୍ୟ ଓ ଅଭିନୟ ଚିତ୍ତାକର୍ଷକ । କେହି ଜୀବଜନ୍ତୁଙ୍କର ଶବ୍ଦ ଅନୁକରଣ କରେ ତ, କେହି ଅଗ୍ନି ନୃତ୍ୟ ନାଚେ, କେହି ବ୍ୟଙ୍ଗାତ୍ମକ ଅଙ୍ଗ ଭଙ୍ଗୀ କରେ ତ, ଏଭରଗ୍ରୀନ୍ ନାମକ କୌଣସି ରେଡ଼ଇଣ୍ଡିଆନ୍ ଗୀତ ଓ ନୃତ୍ୟର ବ୍ୟାଖ୍ୟା କରେ; ରେଡ଼ଇଣ୍ଡିଆନ୍‌ଙ୍କ ପକ୍ଷୀପର ବେଶ, ବଜ୍ରମାଳ, ଘଣ୍ଟିଯୁକ୍ତ, ବିଭିନ୍ନ ରଙ୍ଗର ପୋଷାକ ରଙ୍ଗୀନ୍ ଆଲୋକ ସମ୍ପାତରେ ସେଇ ପାହାଡ଼ୀ ପରିବେଶରେ ଅଦ୍ଭୁତ ସ୍ୱପ୍ନଲୋକ ସୃଷ୍ଟି କରେ ।

ମୋ ପାଖରେ ବସିଥିଲେ ଗୋଟିଏ ଆମେରିକାନ୍ ଦମ୍ପତି— ସଙ୍ଗରେ ବର୍ଷକର ଶିଶୁଟିଏ । ସେ ଉଚ୍ଚସ୍ୱରରେ ଚିତ୍କାର କଲା; କ୍ଷୁଧା ନାହିଁ, ତୃଷା ନାହିଁ, ଆମେରିକାନ୍ ପିଲା କାନ୍ଦନ୍ତି କାହିଁକି ? ସମସ୍ତଙ୍କ ଦୃଷ୍ଟି ସେଇ ପିଲା ଉପରେ । କେହି କିଛି ଭଦ୍ରତାରେ କହୁ ନାହାନ୍ତି— କିନ୍ତୁ ଭାବୁଥିବେ—ଏତେ ଛୋଟ ପିଲା ସେ ଆଣିଛୁ କାହିଁକି ? ଆପଣା ଲଜ ଆପଣାକୁ ଖାଇଲା । ସ୍ୱାମୀ ପିଲା ମୁହଁରେ ହାତ ଦେଇ ଦୂରକୁ ନେଇ ଗଲା—ବୁଝେଇ ଚୁପ କରିବା ପାଇଁ । କିନ୍ତୁ ସ୍ତ୍ରୀ ଏକେଲା ପଥର ପରି ବସିଥାଏ । ସତେ ଯେମିତି ତାର କିଛି କର୍ତ୍ତବ୍ୟ ନାହିଁ । ସେ ଜନ୍ମ କରିଛି, ପାଳନ କରିବ ସ୍ୱାମୀ । ଆମ ସ୍ତ୍ରୀ ଲୋକ ହୋଇଥିଲେ ପାଟିରେ ଦୁଧ ଗୁଞ୍ଜି ଦେଇଥାନ୍ତା । ଏଠା ପିଲା ସେଥିରେ ଅନଭ୍ୟସ୍ତ ପରା; ସ୍ୱାମୀ ଅନୁପସ୍ଥିତ । ସ୍ତ୍ରୀ ଶେଷ ପର୍ଯ୍ୟନ୍ତ ନୃତ୍ୟ ଉପଭୋଗ କରୁଥାଏ ।

ସାଢ଼େ ଦଶଟା; ଭୟଙ୍କର ଶୀତ । ପାହାଡ଼, ହ୍ରଦ, ଅରଣ୍ୟରେ ଅଦ୍ଭୁତ ଘେରବନ୍ଦୀ; ଭଙ୍କୁର ପାହାଡ଼ ଜାନ୍ଥୀ ମଧ୍ୟରେ ସ୍ଖଲନ୍ ଆମ ଜାହାଜ—ବଜାରର ଅନେକ ମାଳା ନଦୀ ଜଳକୁ ଦେଇଥାଏ ଅଦ୍ଭୁତ ସ୍ୱକଚର୍ଯ୍ୟ । ଉଦୟପୁର ମଟରରେ ମୁଁ ଗଲି ପାଇନ୍ ନିକୁଞ୍ଜିତ ଅନ୍ତର ବାର୍ଡ ମୋଟେଲ୍‌କୁ ।

## ଷ୍ଟୋରି ବୁକ୍ ଗାର୍ଡେନ୍

ନଦୀର କୂଳେ କୂଳେ ପାଇନ୍ ବନେ ବନେ ଯାଇ ଆମେ ପହଞ୍ଚିଲୁ ଗଳ୍ପର ସଂସାରରେ । ପୁରୁଣା ଗଛଟିଏ ପଡ଼େ ବା ବୁଢ଼ା ପରି ବସିଛି କାହାଣୀ କହିବାକୁ ! ତାର କୋରଡ଼ରୁ ମୁହଁ କାଢ଼ିଛି ଗୋଟାଏ ବୁଢ଼ା ପେଚା, ନିଶ କାଢ଼ିଛି ଗୁଣ୍ଡୁଚି ମୂଷା । ସାଢ଼େ ନ'ଟା ବାଜିଲାକ୍ଷଣି ଜଣେ ଆସି ଗଳ୍ପ ରାଜ୍ୟର ଦରଜା ଖୋଲିଦେଲା—ଗୁଡ୍ ମର୍ନିଂ, ମୁହଁରେ ଦାଢ଼ି, ଆଖିରେ ତାର ସ୍ୱପ୍ନର ପ୍ରଲେପ । ଏ ପ୍ରକୃତ ମଣିଷ ନା କାହାଣୀର କେହି ଜଣେ ?

ପିଲାମାନେ ଯୋଉ ସବୁ ଗଳ୍ପ, କବିତା ପଢ଼ନ୍ତି ତାକୁ ରୂପଦେବା ଚେଷ୍ଟା ହୋଇଛି ଏହି ଉଦ୍ୟାନରେ । କୋଉଠି ବୁଲୁଛି ଫୁଆରା, ପଡ଼ୁଛି ଜଳପ୍ରପାତ, ଧାଇଁଛି ଝରଣା, ହ୍ରଦରେ ସନ୍ତରଣ କରୁଛନ୍ତି ରାଜହଂସ, ପାତିହଂସ; ଡେଣା ଶୁଖାଇଛି ମୟୂର, କଳା ମାକଡ଼ ଘୁମାଉଛି ମିଛେ ମିଛେ; ନିଦ ନାହିଁ ତାର ଆଖିରେ; ଧଳା ଘୁଷୁରି ଶୋଇଛନ୍ତି, ମେଣ୍ଢା ଛେଳି ପାଟି ପାକୁ ପାକୁ କରି ମାଗୁଛନ୍ତି ଖାଦ୍ୟ ।

ଗଳ୍ପ ଓ କବିତାର ଚରିତ୍ରସବୁ ମୂର୍ତ୍ତି ହୋଇଛନ୍ତି—ଗୋଟିଏ ଦେଶରେ ଜଣେ ରାଜା, ତାଙ୍କ ନାମ 'କୋଲ', ତାଙ୍କ ଦରବାରରେ ତିନିଜଣ ବେହେଲାବଜାଳି ରହିଛନ୍ତି, ପୃଥିବୀରେ ସେମାନଙ୍କ ପରି ବଜାଇବାବାଲା ଆଉ ନାହାନ୍ତି—

'Over story book gardens
with lots of glee

Rules old king and his fiddlers three
For in this kingdom of magic and charm
No one can do the least bit of harm.'

ସୁନ୍ଦର କନକ ଗୁଡ଼ାଳୀ, ଅବଧାନ, ସିଲଟ, ଖଡ଼ି, କଳାପଟାର ନମୁନା ଗୋଟିଏ ଘରେ ରଖାଯାଇଛି । ଏ ଯୁଗରେ ସେସବୁ ଆଉ ନାହିଁ— ମାଡ଼ ନାହିଁ କି ଗାଳି ନାହିଁ । ଶାଠ ଶିଖ୍ ଶିଖ୍ ପିଲା ପାଠ ଶିଖେ; ପାଠ ଗୋଟାଏ ଖେଳ; ମଜା ଖେଳ। ଉଦ୍ୟାନର ଦୋକାନଟି ସେପରି ହାତ-ଠାର ତାକୁଛି, ଚକଚକିଆ, କନକୁକିଆ ଛବି ବହିରେ ଭରା ।

'Books of wonder books of fun
Books of all kinds for every one
Little women and kidnapped too
Five little peppers and how they grew
Books of animals, songs and stars
Space ships, Indians, Boots & Cars
Come right in and take a look
You are sure to find a perfect book'

ପିଲାଦିନେ କଣ ମୁଁ ପଢ଼ିଥିଲି ? ମାନସିକ ଉପବାସ କରୁଥିଲେ ଚଳେ । ପିଲାଙ୍କ କଳ୍ପନାକୁ ଚିନ୍ତାଧାରାକୁ ପୁଷ୍ଟ କଲାଭଳି କେତେ ପୁସ୍ତକ ! ଆମ କାଳରେ ଖାଲି କାନ ଟେଣ୍ଡା, ବେତମାଡ଼, ବେତ ରୁଳ ଗଲେ ଗୋଳବାଡ଼ି ! ଓଃ, କି ଲାଲ୍ ଆଖି !

ପିଲାଙ୍କ ରେଳ୍‌ଗାଡ଼ିଟି ସେଇ ଗଳ୍ପ ରାଜ୍ୟରେ ବୁଲୁଛି । କେତେ ଧଳା ମୁଣ୍ଡିଆ, ନାଲିମୁଣ୍ଡିଆ, କଳାମୁଣ୍ଡିଆ ପିଲା କୌତୁକଆଖିରେ ଗୁଣ୍ଡାଗରକୁ ଚାହିଁ ବସିଛନ୍ତି । ଡ୍ରାଇଭର୍ ନ ଥାଇ ଯାଉଥିବା ପିଲାଙ୍କୁ 'ଗୁଡ଼୍‌ବାଇ' କହି ଗାଡ଼ି ଛାଡ଼ିଦେଲା । ଆମେ ଟେଣ୍ଡରେ ଯାଇ 'ସାଇମନ୍' ବୋଲି ଗୋଟିଏ ପିଲା ପାଖେ ପହଞ୍ଚିଲୁ—ସାଇମନ୍ ! କେଡ଼େ ସରଳ ତାର ମୁଖ ! କେଡ଼େ ନିଷ୍କପଟ ତାର ଆଖି ! ଜାଣେ ନାହିଁ 'ପାଇ' (pie) କିଣିବାକୁ ହେଲେ ପଇସା ଦେବାକୁ ପଡ଼େ ବୋଲି । ଜୀବନରେ କେବଳ ମାଛଟିଏ

ଧରିନାହାନ୍ତି; କିନ୍ତୁ ତମି ଧରିବାକୁ ତାର ଇଚ୍ଛା; ପୁଣି ସମୁଦ୍ର ଦେଖି ନାହିଁ । ପାଣି ବୋଲି ଯାହା ଦେଖିଛି ତା ଜନନୀର ସ୍ତନ୍ୟରେ । ନିଗ୍ରୋ ସାଇମନ୍ ଠାରୁ ବଡ଼ାପୁ ଧେଳି ଆମେ ପଢ଼ିଥିଲୁ ପିଠର ବୋଲି ଗୋଟିଏ ଗ୍ରବଟ୍ ପାଖରେ । ଗ୍ରବଟ୍ ତାର ପ୍ୟାଣ୍ଟ ଖଣ୍ଡି କୋଉଠି ହଜାଇଛି ଖୋଜିଖୋଜି ପାଉନାହିଁ !

ତାପରେ ଆମେ ପୁଷି ପାଠ ପଢ଼ିଥିଲୁ । ଯେ ଚୌକି ତଳେ ଲୁଚିଥିବା ମୂଷିକ ଗୋଡ଼ାଇଛି । ପୁଷିର ଏଇ ଦୁଷ୍ଟାମିକି ପିଲାମାନେ ପସନ୍ଦ କରିପାରି ନାହାନ୍ତି । କାରଣ ଯେମାନେ ପୁଷିକି ଯେମିତି ଭଲ ପାନ୍ତି, ମୂଷିକ ମଧ୍ୟ ସେହିପରି ଭଲ ପାନ୍ତି । କିନ୍ତୁ ପୁଷି ବୁଝାଇ ଦେଉଛି— ମୋତେ କାହିଁକି ଦୋଷ ଦେଉଛ ? ମୂଷା କଣ ଅଳ୍ପ ଦୁଷ୍ଟ ? ସେ କାହିଁକି ମହାମାନ୍ୟା ରାଣୀଙ୍କ ବିରକ୍ତ କରୁଛି ?

ତାପରେ ଆମେ ପଢ଼ିଥିଲୁ ଛେଳି ଛୁଆଙ୍କ ପାଖରେ, ସେମାନଙ୍କର ପଡ଼ାପଢ଼ି ନାହିଁ, ବଣସାରା ଖେଳ ।

ଗାଈଜଗା ଛୁଆ ଗାଈ ଜଗିବ କଣ ଶିଙ୍ଘାଟି ଧରି ଶୋଇପଡ଼ିଛି । କୋଇଲିମାନଙ୍କ ମଧୁର ଗୀତ ବାଣୀ ଶୁଣୁଛନ୍ତି । କିନ୍ତୁ ରାଜା ଟଙ୍କା ଗଣୁଛନ୍ତି । ତେଣିକି ତାଙ୍କର ନିଘା ନାହିଁ ।

ତିନିଟି ଭାଲୁ 'ପରିଜ୍' ଖାଉଛନ୍ତି; ପିଲମାନେ ସେମାନଙ୍କ ସଙ୍ଗେ ବସି ମିଛେ ମିଛେ ଖାଉଛନ୍ତି ।

ଗୋଟିଏ କଖାରୁ—ଗାଡ଼ିରେ ପିଲାମାନେ ବସିଛନ୍ତି— ମୂଷାମାନେ ଗାଡ଼ି ଭିଡ଼ି ଚାଲିଛନ୍ତି, ଛଅଟି ଚକ ଉପରେ କଖାରୁଟି ରଖାହୋଇଛି । ଜଣେ 'ପରୀ' ଗାଡ଼ି ଚଳାଉଛି ।

ଏହିପରି କେତେ କଣଡୁକିଆ ପ୍ଲାଷ୍ଟିକ୍ ପିଲସବୁ—ବିଦ୍ୟୁତ୍ ଯୋଗେ କଏ ଢୋଲ ଖେଳୁଛି, କଏ ନାଚୁଛି, ଫୁଲକୁଞ୍ଜ ମଧ୍ୟରେ ଝୁଲୁଛି କେତେ ବଡ଼ ବଡ଼ ଅକ୍ଷରରେ ଲେଖା କବିତା । ସମସ୍ତ ବଗିରୁଟି ଯେପରି କି କଥା କହୁଛି, ଗୀତ ଗାଉଛି ।

ଖେଳଣା ଦୋକାନଟି ପିଲଙ୍କୁ ହାତ ଠାରି ଡାକୁଚି । କିଏ କିଣୁଛି ଝୁନ୍‌ଝୁନିଆ ବାଜା, କିଏ ଗାଡ଼ି; କିଏ ଜଉଭୁକିଆ କୁକୁର କିମ୍ବା ରବଟ୍ । ଖେଳର ସଂସାରରୁ ଆମେ ଖେଳଣାର ସଂସାରରେ ପହଞ୍ଚିଲୁ । ମନ ହେଲା ମୋର ପୁଣି ଥରେ ପିଲା ହୋଇଯିବା ପାଇଁ, ପିଲାବେଳେ କିଛି ତ ମୋର ନ ଥିଲା । ଅଭାବର ଅନୁଭବ ମଧ୍ୟ ନ ଥିଲା । ଗାଁଆରେ ଆଉ କାହାର ଥିଲା, ମୋର ନ ଥିଲା, ତା ନୁହେ । ମେଳଣକୁ ଗଲେ ଗୋଟାଏ କାଗଜଫୁଲ, ପେଁକାଳି, ଜହ୍ନଙ୍କା ମାଙ୍କଡ଼, କିମ୍ବା ପେଟ୍ ବାବୁ କିଣି ଆଣୁଥିଲି । କେତେବେଳେ ଉଦା ବାଲିରେ ଗୋଡ଼ ଭର୍ତ୍ତି କରି କୁଡ଼ିଆ କରୁଥିଲି, ନଇଲେ ସଡ଼େଇରେ ଚୁଲି ପାରି ଭାତ ତିଅଣ ରାନ୍ଧୁଥିଲି । ରାନ୍ଧିବା କିମ୍ବା ଖାଇବା ଚିନ୍ତା ! ଏ କି ଖେଳ ? ଖେଳରେ ଯିବା ରାନ୍ଧିବା, ଖାଇବାକୁ ଭୁଲି ଯିବାକୁ ହୁଏ ।

ସ୍କୁଲ୍‌ରେ ପିଲାଏ କି ପୁଲକରେ ପଢ଼ୁଛନ୍ତି । ଆମେ ଗାଡ଼ିଆରେ ପଢ଼ିଲେ ମାଷ୍ଟ୍ରେ ମାଡ଼ ଭରଣକୁ ପାହୁଲାଏ କରନ୍ତି । ଏ ମାଡ଼ରେ ମାଆ ସରସ୍ୱତୀ ଛୁଟି ପଳାନ୍ତି । ମନ ବସେଇ ଯାଏ । ଆଜି ସେଇ ଅପମାନ୍ ମେଣ୍ଟାଇ ନେବା ଲାଗି ବସି ପଡ଼ିଲି ନାଗର ଦୋଳାରେ । ଯଦିଓ ନାଗର ହେବାର ଯୋଗ୍ୟତା ମୋର ନାହିଁ; କିନ୍ତୁ ପିଲା ହେବାର ଯୋଗ୍ୟତା କାଳେ କାଳେ ରହିଛି, ମନ କହୁଛି । ପିଲଙ୍କ ଘୋଡ଼ାଟି, ତା ପିଠିରେ ବସିଲେ କ୍ଳାଉନ୍ ଭଳି ଦିଶିବ । ତେଣୁ ଡଉଙ୍ଗାରେ ବସି ଆଖା ଘେରାଟାଏ ବୁଲିଲି ।

ମୟୂର ପୁଞ୍ଜିଏ ଅମେରିକାନ୍ ଦମ୍ପତି ଆଦରରେ ଦେଖୁଥିବା ଦେଖି କହିଲି— ଖୁବ୍ ସୁନ୍ଦର, ନା ? ଯେମିତି ସୁନ୍ଦର ସେହିପରି ବୃହତ୍, ଶକ୍ତିଶାଳୀ । ଭାରତ ସେଥିଲାଗି ଏହାକୁ ଜାତୀୟ ପକ୍ଷୀ ରୂପେ ମନୋନୀତ କରିଛି । ସେମାନେ କହିଲେ—ଉପଯୁକ୍ତ ବିବେଚନା ।

ଏତିକିବେଳେ ଜଣେ ଲାଲ୍ ପୋଷାକ ପରିହିତା ରୂପସୀ କୁଆଡ଼େ ବୁଲି ବୁଲି ଆସି ଆମ ପାଖେ ପହଞ୍ଚିଲେ—ତାଙ୍କ ବ୍ୟାଗରେ ଚକୋଲେଟ୍ ଭରି । ସେ ଗୀତା ମୀରା ଓ ନିକକ ଗୋଟିଏ ଲେଖାଁ ଚକୋଲେଟ୍

ଦେଲେ । ମୋତେ ଦେବା ଲାଗି ହୁଏତ ସାହସ ହେଲା ନାହିଁ କିମ୍ବା ସଙ୍କୋଚ ଆସିଲା । କହିଲି—

ଏ ବୁଢ଼ା ପିଲାଟାକୁ ବାଦ୍ ଦେଇ ଯାଉଛନ୍ତି ଯେ ! ଶରୀରକୁ ଚାହିଁଲେ ଜଣା ହେବ ? ଆପଣ ଜଣ ମନ ଦେଖି ପାରୁଛନ୍ତି ? ଛନଛନିଆ କନକନିଆ ରାବଟ୍ ସେ !

ସୁନ୍ଦରୀ ତନ୍ୱୀ ହସି ମୋ ହାତକୁ ଗୋଟିଏ ଚକୋଲେଟ୍ ବଢ଼ାଇ-ଦେଲେ । ତାଙ୍କ ହସରୁ ବୁଝିଲି—ସେ ମୋତେ ପିଲା ଭାବରେ ଗ୍ରହଣ କରିଛନ୍ତି; ନଇଲେ ନିଜେ ବାଲ୍ୟ କାଳର ସ୍ୱପ୍ନରୁ ବଞ୍ଚିତ ହେବେ ଯେ ! ତାଙ୍କର କି ଅଧିକାର ଅଛି ଏ କଉତୁକ ରାଜ୍ୟରେ ବୁଲିବାକୁ ?

## ଲମ୍ବର ଜାକ୍

କାଠଗଡ଼ ଉପରେ ଗଢ଼ା ହୋଇ ଘର ତିଆରି ହୋଇଛି—ପ୍ରାଚୀନ ଲେମ୍ବରଜାରକଷ୍ଟସୁଙ୍କ ଘର ପରି ଏହାର ଶୈଳୀ; ବାହାରେ ଯେମିତି ଆଦିମ, ଏଇ ରେଷ୍ଟୁରାଣ୍ଟଟି ଭିତରେ ସେମିତି ଆଧୁନିକ—ବହୁ ଆକର୍ଷଣୀୟ ଦୃଶ୍ୟ, ଫଟୋ, ଗିଫ୍ଟସପ୍ । ଏହି ରେଷ୍ଟୁରାଣ୍ଟର ଗୋଟିଏ ବିଶେଷତ୍ୱ ଏହି ଯେ ସବୁ ଜିନିଷ ପ୍ରଚୁର ପରିମାଣରେ ଟେବୁଲ୍ ଉପରେ ରଖାଯାଏ; ଯେ ଯାହା ବାଛି ଖାଇଲା ବା ନ ଖାଇଲା; ଗୋଟିଏ ଜିନିଷ ଯେତେ ଇଚ୍ଛା ସେତେ ଖାଇପାରେ । ଏଠି ବାଜୁଙ୍କାଧାନର ଭାତ ଖାଇବାକୁ ମିଳେ, ଏହା ଦକ୍ଷିଣପୂର୍ବ ଏସିଆରୁ ଆସେ । ତା ଛଡ଼ା ପାଉଁରୁଟି, କୁକୁଡ଼ା ମାଂସ, ଆଳୁ, ମଟର ମଞ୍ଜି ଶିଝା, ଟମାଟୋ ସ୍ୟାଣ୍ଡୱିଚ୍, ଛେନା, ଫଳ ଓ ଦୁଧ; ମୁଁ ମାଂସ, ଛେନା, ଦୁଧ, ଫଳ ଖାଇଲି ।

ଖାଇସାରି ଡାଉନ୍ ଟାଉନ୍ ବାଟେ ଆସିଲୁ । ସହରଟି ଛୋଟ । ଭ୍ରମଣକାରୀଙ୍କ ଯୋଗୁଁ ଖୁବ୍ କାରବାର ବଢ଼ି ଯାଇଛି । ଶୀତ ଦିନେ ପ୍ରାୟ ଖାଲି ହୋଇଯାଏ । ସହରର ମଧ୍ୟ ଭାଗରେ ଗୋଟିଏ ବିରାଟ ସ୍ତମ୍ଭ,

ଓ୍ୱିସକନ୍‌ସିନ୍ ଉପତ୍ୟକାର ଦୃଶ୍ୟ ଦେଖିବା ଲାଗି ଲୋକେ ଏଲିଭେଟର୍‌ରେ ଏହା ଉପର୍‌କୁ ଉଠୁଥାନ୍ତି ।

ଆମେ ଯାଇ ଥଣ୍ଡରବାର୍ଡ ମୋଟେଲରେ ପହଞ୍ଚିଲୁ; ସେତେ-ବେଳକୁ ଉଇସ୍‌କନ୍‌ସିନ୍ ହ୍ରଦ ଆଡୁ ମେଘ ଉଠେଇ ଆସୁଥାଏ । ଆମେ ପହଞ୍ଚିବା ମାତ୍ରେ ହେଲା ବର୍ଷା । ବରକୋଳିଆ ଟୋପା ସଙ୍ଗେ ପଡ଼ିଲା କୁଆପଥର-ହ୍ରଦ କୂଳରେ ପାର୍କ କରିଥିବା ମଟର ଉପରେ କୁଆପଥର ଠାଇଁ ଠାଇଁ ପଡ଼ୁଥାଏ—ଦେଖୁ ଦେଖୁ ଭୂଇଁଅଡ଼ ଧଳା ହୋଇଗଲା । ଛୁଆସବୁ ଗୋଟେଇ ଖାଉଥାନ୍ତି । ଏତେ ବଡ଼ ବର୍ଷାରେ ବି ଜଣେ ସାହେବାଣୀ ମଟର କାଚ ବନ୍ଦ କରି ଶୋଇଛନ୍ତି; ଘଡ଼ଘଡ଼; ଚଡ଼ଚଡ଼, କୁଆପଥର ମାଡ଼ରେ ତାର ନିଦ ଭାଙ୍ଗୁନାହିଁ । ଘଣ୍ଟାକ ପରେ ସେ ମଟର ଫିଟାଇ ପଦାକୁ ବାହାରିଲା ବେଳେ ହାସ୍ୟରୋଳ ସୃଷ୍ଟି କରିଥିଲା । ନୌକାଟିଏ ଢେଉରେ ଯେତେ ନ ଆକେଟା ହୋଇ କୂଳକୁ ଦୌଡ଼ୁଥାଏ— ପାତିହଂସ ପରି ତାର ଗଢ଼ଣି, ସ୍ଥଳରେ ମଟର, ଜଳରେ ନୌକା, ଚିତ୍ତାକର୍ଷକ ।

## ଟ୍ରାଉଟ୍ ବ୍ୟାଙ୍କ୍

ଟ୍ରାଉଟ୍ ଆମେରିକାର ସ୍ୱାଦୁତମ ମିଷ୍ଟଜଳ ମତ୍ସ୍ୟ । ଭାରତର ରୋହି ସଙ୍ଗେ ଏହା ତୁଳନୀୟ । ଓ୍ୱିସ୍‌କନ୍‌ସିନ୍‌ର ଜଣେ ବ୍ୟବସାୟୀ ଗୋଟିଏ ଟ୍ରାଉଟ୍ ବ୍ୟାଙ୍କ୍ ଗଢ଼ିଛନ୍ତି । ବଡ଼ ବଡ଼ ପୋଖରୀ କମ୍ବା ନଦୀରୁ ଧରି ଆଣି ଗୋଟିଏ ଗ୍ରେଟ ପୋଖରୀରେ ସେମାନଙ୍କୁ ଜମା କରି ରଖିଛନ୍ତି । କେହାରଗୌଷ୍ଠ ପରି ଏଥିରେ ମତ୍ସ୍ୟ ଭେଳା ଭେଳା । ଯାତ୍ରୀ ଆହାର ପକାଇବା ମାତ୍ରେ କୂଳକୁ ଆସି ଖେଳନ୍ତି, ଡେଇଁନ୍ତି, କାମୁଡ଼ା କାମୁଡ଼ି ହୁଅନ୍ତି । ଆହାର ଦେଇ ମତ୍ସ୍ୟମାନଙ୍କର କ୍ରୀଡ଼ା ଦେଖିବାରେ ବହୁ ଯାତ୍ରୀଙ୍କ ଆନନ୍ଦ; ତେଣୁ ପୋଖରୀ କୂଳରେ ଗୋଟିଏ ମତ୍ସ୍ୟଖାଦ୍ୟ ଦୋକାନ କରାଯାଇଛି । ମତ୍ସ୍ୟଙ୍କ ଖାଦ୍ୟ ଲାଗି ବ୍ୟବସାୟୀ ମି: ହାର୍‌କଟ୍‌ଙ୍କୁ ଯତ୍‌ସାମାନ୍ୟ ବ୍ୟୟ କରିବାକୁ ପଡ଼ୁଥାଏ ।

ମତ୍ସ୍ୟ ଖାଦ୍ୟ ଦୋକାନକୁ ଲଗାଇ ହାର୍କଟ୍ ଗୋଟିଏ ଖୋପ ଦୋକାନ କରିଛନ୍ତି—ଆହାର ପଛେ ପଛେ ଗାହାରର ବ୍ୟବସ୍ଥା—ବ୍ୟବସାୟୀ ଏ ହାତରେ ପାଉଛନ୍ତି, ଆର ହାତରେ ମାରୁଛନ୍ତି । ଯାତ୍ରୀ ଜିଆନାଳ ବା ଅନ୍ୟ କିଛି ଖୋପ ଗୃହରେ ପକାନ୍ତି, ଫେଲ୍ ହେବାର ଶଙ୍କା ନାହିଁ । ପକାଇବାମାତ୍ରେ ବନଶି ଉଠାଇବାକୁ ହୁଏ । ଧରି ସାରିଲା ପରେ ମାଛର ଇଞ୍ଚମାପ ହୁଏ, ମୁଣ୍ଡକୁ ଛିଣ୍ଡ; କାରଣ ଏ ଦେଶରେ କେହି ମାଛ ମୁଣ୍ଡ ଖାନ୍ତି ନାହିଁ । ଅଥଚ ଭାରତରେ ମୁଣ୍ଡଟି ବାଛି ଘରର ଅଭିଭାବକଙ୍କୁ ଦିଆଯାଏ, ଗୁରୁତ୍ୱ ବା ବେଶୀର । ମାପ ପରେ ଶିକାରୀ ଦୋକାନୀକୁ ଇଞ୍ଚପ୍ରତି ଦଶ ସେଣ୍ଟ କରି ଦେଇଥାନ୍ତି । ବନଶି କଣ୍ଟାରୁ କାଢ଼ି ମାଛକୁ କୁଣ୍ଡରେ ଜୀଆଁଇ ରଖାହୁଏ । ଯାତ୍ରୀ ଯେଉଁଦିନ ଓ୍ୱିସ୍କନସିନ୍ ତ୍ୟାଗ କରେ, ଦୋକାନୀ ବରଫରେ ପ୍ୟାକ୍ କରି ମାଛତକ ତାକୁ ଦେଇଆସେ ।

## ପକ୍ଷୀଙ୍କ କାଳ

ସୁଦୃଶ୍ୟ ସ୍ଥାନମାନଙ୍କରେ ପକ୍ଷୀମାରଣ ନିଷେଧାଜ୍ଞା ଜାରି ହୋଇଅଛି । ପ୍ରାୟ ସମସ୍ତ ଓ୍ୱିସ୍କନ୍ସିନ୍ ଉପତ୍ୟକା ଶିକାରୀଙ୍କ ନିଷେଧ ଅଞ୍ଚଳ । ତାକୁ ସନ୍ତୁଷ୍ଟ କରିବା ଲାଗି ଅଳ୍ପ କେତେ ଏକର ଜାଗା ଛାଡ଼ି ଦିଆ ଯାଇଛି । ଏହା ପକ୍ଷୀଙ୍କ ନିଷେଧ ଇଲାକା, କାଳ ଯମ ପରି ଶିକାରୀ ଯେଉଁ ବନ୍ଧୁକ ଧରି ବସିଥାଏ । ପକ୍ଷୀ ସେ ବାଟେ ଉଡ଼ିଗଲେ 'ଠୋ' । ଆହା, ପକ୍ଷୀଙ୍କର ସୀମାଜ୍ଞାନ କାହିଁ ଯେ ସେ ମଣିଷର ଏ ଫନ୍ଦିର ବୁଝିବ !.ଆଧାର ଖୋଜି ଆସି ଅନେକ ପକ୍ଷୀ ମରି ପଡ଼ନ୍ତି । ଅନେକ ଯାଯାବର ଦୂରଯାତ୍ରୀ ରାଜହଂସ ମଧ୍ୟ ଏହି ଦୁର୍ଭାଗ୍ୟର ଶିକାର ହୁଅନ୍ତି ।

## ସ୍କିଙ୍ଗ୍

ଡେଲ୍ଟନ୍ ଲେକ୍ କୂଳରେ ରଙ୍ଗମଞ୍ଚ । ହ୍ରଦ ତୀରରୁ ପାହାଡ଼ ଉପରକୁ ଦର୍ଶକଙ୍କ ଆସନ । ହ୍ରଦ ମଧ୍ୟରେ ଏକ ଆଡ଼କୁ କ୍ରମନିମ୍ନ ହୋଇ ଗୋଟିଏ ପୀଠ ନିର୍ମିତ; ଏହାର ଚତୁର୍ଦ୍ଦିଗରେ ମଟରବୋଟ୍ ପ୍ରତିଯୋଗିତା ହେଲା । ଘୋର ଗର୍ଜନ, ଦ୍ରୁତତମ ଗତିରେ ମଟରବୋଟ୍ ଛୁଟି ଆନ୍ତି ।

ଉତ୍ତାଳ ତରଙ୍ଗମାଳା ଉଠୁଥାଏ । ବୋଟ୍ ଚାଳନ କୌଶଳର ଏହା ଉତ୍କୃଷ୍ଟ ପରୀକ୍ଷା ।

ମଟରବୋଟ୍‌ରେ ଦୌଡ଼ ବନ୍ଧା; ତାକୁ ଧରି 'ସ୍କି' ପଟା ଉପରେ ଛିଡ଼ା ହୋଇ ଯୁବକଯୁବତୀ ପାଣିର ଚମ୍ପାବାଣ ଉଠାଉଥାନ୍ତି । ନାନା ବର୍ଣ୍ଣର ଅନେକ ଫୋକସ୍‌ରେ ଏହା ରଙ୍ଗୀନ୍ ସ୍ୱପ୍ନଲୋକ ସୃଷ୍ଟି କରୁଥାଏ । ଦ୍ରୁତତମ 'ସ୍କି' ଦୌଡ଼ ବେଳେ ଯୁବକମାନଙ୍କ କାନ୍ଧରେ ହଠାତ୍ ଯୁବତୀମାନେ ଛିଡ଼ା ହୋଇ ସ୍ପାଇଟ୍ ପିରାମିଡ୍ ତିଆରି କରୁଥାନ୍ତି । କେତେବେଳେ ଗୋଟିଏ ଗୋଡ଼ରେ ଛିଡ଼ା ହୋଇ କେତେବେଳେ ଚକା ଭଉଁରି ଖେଳି ଖେଳି ଦ୍ରୁତତମ ମଟରବୋଟ୍ ସଙ୍ଗେ ଦୌଡ଼ୁଥାନ୍ତି । କେତେବେଳେ ଜଳ ଆଡ଼କୁ ଗଡ଼ାଣିଆ ସେଇ ପିଟକୁ ଡେଇଁ ଆର ପାଖେ ପଡ଼ୁଥାନ୍ତି ଓ 'ସ୍କି'ରେ ଛିଡ଼ା ହୋଇ ମଟରବୋଟ୍ ପଛେ ପୁଣି ଦୌଡ଼ୁଥାନ୍ତି । ଜଣେ ଯୁବତୀ 'ସ୍କି'ରେ ପାଦ ଦେଇ ଦୌଡ଼ୁ ଦୌଡ଼ୁ ଚତୁଷ୍କୋଣାକାର ଛତା ଧରି ଆକାଶରେ ଅନେକ ଉଚ୍ଚକୁ ଉଠିଗଲା, ସେଠୁ ବାଣ ବୃଷ୍ଟି କରିଥିଲା, ବର୍ଣ୍ଣାଢ୍ୟ ଅଗ୍ନିବର୍ଷ ତରଙ୍ଗିତ ହ୍ରଦରେ ପ୍ରତିଫଳିତ ହୋଇ ଅପୂର୍ବ ଶ୍ରୀ ସୃଷ୍ଟି କରିଥିଲା । ଆଉ ଜଣେ ଯୁବତୀ ସ୍କିରେ ଦୌଡ଼ୁ ଦୌଡ଼ୁ ଆକାଶଛତା ଧରି ପ୍ରାୟ ଦୁଇଶ ଫୁଟ ଆକାଶକୁ ଉଠିଥିଲା । ଏହା ସବୁଠାରୁ ବିସ୍ମୟକର । ମଟରରଶିକୁ ଧରି 'ସ୍କି'ରେ ଦୌଡ଼ୁ ଦୌଡ଼ୁ ସ୍କିକୁ ଛାଡ଼ି ଦେଇ କେତେକ ଖାଲି ପାଦରେ ବି ଦୌଡ଼ୁଥାନ୍ତି । କୌଶଳ ଦେଖାଇସାରି ଗର୍ବୋତ୍ଫୁଲ୍ଲ ମୁଖ, ନାଟକୀୟ ଭଙ୍ଗୀ ଓ ତେଜୋଦୃପ୍ତ ପୂର୍ତ୍ତିରେ ଆସି ରଙ୍ଗମଞ୍ଚରେ ଛିଡ଼ା ହେଉଥାନ୍ତି । ସେମାନଙ୍କୁ ଉତ୍ସାହିତ କରିବା ଲାଗି ଅଗଣିତ ଉତ୍ତାଳ ତରଙ୍ଗ ତାଳ ସଙ୍ଗେ ଦର୍ଶକଙ୍କ କରତାଳି ଅଜାଡି ହୋଇ ପଡୁଥାଏ । ଅମେରିକାନ୍ ଜାତୀୟ ବୀରତ୍ୱର ଏହା ଏକ ଉତ୍କୃଷ୍ଟ ପ୍ରଦର୍ଶନୀ । ସେଇସବୁ ବିପୁଳ ଉଲ୍ଲମ୍ଫନ, ଜଳୋଚ୍ଛ୍ୱାସ ସଙ୍ଗେ କଳୋଚ୍ଛ୍ୱାସ କରୁଣ ରେଖାଟିଏ ମନରେ ମୋର ଅଙ୍କନ କରି ଦେଇଥିଲା—ଚିଲିକାରେ, ଅଂଶୁପାରେ କେବେ ଏପରି ହେବ ? ସୌନ୍ଦର୍ଯ୍ୟ ଶକ୍ତି ସମନ୍ୱିତ ହୋଇ କେବେ ଆମର ଜାତୀୟ ଚରିତ୍ର ଗଠନ କରିବ ?

## ଜଳନୃତ୍ୟ

ରଙ୍ଗମଞ୍ଚକୁ ଲାଗି ହ୍ରଦ କୂଳେ କୂଳେ ଜଳନୃତ୍ୟ ପ୍ରଦର୍ଶିତ ହେଲା । ଏହା ସ୍ଥୂଳଦୃଷ୍ଟିରେ ଦେଖିଲେ ନର୍ମବାଣ ପରି, କିନ୍ତୁ ଅପରୂପ ତାର ରଙ୍ଗୀନ୍ ଆଭା—କେତେବେଳେ ସ୍ୱଚ୍ଛ ନୀଳ, କେତେବେଳେ ସ୍ୱଚ୍ଛ ଶ୍ୱେତ ସ୍ୱଚ୍ଛ, କେତେବେଳେ ହଳଦିଆ ରଞ୍ଜିତ, କେତେବେଳେ ଲୋହିତ, କେତେବେଳେ ତ୍ରିରଙ୍ଗଯୁକ୍ତ—ରକ୍ତ ପୀତ ଲୋହିତ, କେତେବେଳେ ମୟୂର ଚନ୍ଦ୍ରିକା ବା ଚନ୍ଦ୍ରାତପର ବର୍ଣ୍ଣାଢ୍ୟ ମାଧୁରୀ, କେତେବେଳେ ରଙ୍ଗୀନ୍ ଶସ୍ୟଶିଷା ବା ଗୋଲାପୀ ବାଷ୍ପ—ଜଳର ଏଇସବୁ କଲୋଚ୍ଛ୍ୱସିତ ପ୍ରବାହ ସଙ୍ଗୀତ ଓ ବାଦ୍ୟର ତାଳେ ତାଳେ ଉଠୁଥାଏ, ପଡୁଥାଏ; ସାନ୍ଧ୍ୟ ସ୍ୱାନ୍ତରେ ଜଳନୃତ୍ୟ ନିୟନ୍ତ୍ରିତ ହେଉଥାଏ—ହ୍ରଦ ରଙ୍ଗୀନ ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଥିଲା, ମନ ଶତ ଶତ ଇନ୍ଦ୍ରଧନୁରେ ତରଙ୍ଗିତ ହୋଇ ଉଠିଥିଲା ସତେ !

## ଲିମ୍ବୋ ଓ ଅଗ୍ନିନୃତ୍ୟ

ସାମୋଆ ଦ୍ୱୀପର ଯୁବକମାନେ ପ୍ରଥମେ ଏକ ନୃତ୍ୟ ଦେଖାଇଲେ; ଏହାର ନାଁ କଣ ମନେ ନାହିଁ । ସେମାନେ ନାଚୁଥିଲେ ଓ ମସ୍ତକରେ ଘାସର ସଦୃଶ କିଛି ପରିଧାନ କରିଥିଲେ । ସେମାନଙ୍କ ପଦ ଆବର୍ତ୍ତୀ ସଞ୍ଚାଳିତ ହେଉ ନଥିଲା । ନାଭିଠାରୁ ପଦ ପର୍ଯ୍ୟନ୍ତ ଶରୀରାଂଶ କମ୍ପିତ ହେଉଥିଲା ।

'ଲିମ୍ବୋ' ନୃତ୍ୟ ଏକକ, ବଡ଼ କଷ୍ଟକର । ଏଥିରେ ନୃତ୍ୟର ଲାଳିତ୍ୟ ବା ମାଧୁର୍ଯ୍ୟ ନାହିଁ, କସରତର କଠିନ କୃଚ୍ଛ୍ରତା ବିଦ୍ୟମାନ । ଜଣେ ଯୁବକ ପୃଷ୍ଠ ଭାଙ୍ଗି ପୋତା ହୋଇଥିବା ଦୁଇଟି ସ୍ତମ୍ଭ ଓ କ୍ରମେ ତଳକୁ ତଳ ନିଆ ହେଉଥିବା ଖଣ୍ଡିଏ ବାଉଁଶ ଏ ପାଖରୁ ସେ ପାଖ ଅତିକ୍ରମ କରୁଥାଏ । ଅଗ୍ନିନୃତ୍ୟ ଆମ ବନାଟି ବୁଲାଇବା ପରି । କେତେ-ବେଳେ ପୁଞ୍ଜା ଛଳେ, କେତେବେଳେ ମୁଣ୍ଡ ଉପରେ, କେତେବେଳେ ବସି, କେତେବେଳେ ଶୋଇ ନର୍ତ୍ତକ ନିଆଁ ହୁଳା ଦୁଇଟି ବୁଲଉଥାଏ ।

ସାତେ ଦୁଇ ଉଜଳରେ ଟିକେଟ୍ କରି ଯାଇଥିଲି ଏସବୁ ନୃତ୍ୟ ଦେଖି । ଫେରିଲି ବେଳକୁ ରାତି ପ୍ରାୟ ଏଗାରଟା ! ସେତେବେଳକୁ ଉଚ୍ଚ ଉଚ୍ଚ ପାହାଡ଼ର ଛାୟା ଓେଲ୍‌ଟନ୍ ହ୍ରଦ ଉପରେ ବସ୍ତୃତତର ହୋଇ ଆସୁଥିଲା ।

ଅଗଷ୍ଟ ପନ୍ଦର, ଆଜି ଆମ ସ୍ୱାଧୀନତା ଦିବସ । ସାରାଦିନ ମୋର କଟିଥିଲା ନାନା ଦୃଶ୍ୟ ଦେଖି; ଆମେରିକାନ୍ ସ୍ୱାଧୀନତାର ସ୍ୱାଦ ଉପଭୋଗ ଅବଶ୍ୟ ମୋ ଭାଗ୍ୟରେ କିଛି ମିଳୁଛି—ଏବେ ଏହା ଆମର ଲକ୍ଷ୍ୟ; ଆମ ସଂଗ୍ରାମ ଦିନୁଁଦିନ ଖରତର ହେଉଛି, ମଧୁର ସାଧନା ଅପେକ୍ଷା ମଧୁମକ୍ଷିର ଦଂଶନ ହିଁ ଏତ ମିଳୁଛି ବେଶୀ; କେବେ ପ୍ରାଚୁର୍ଯ୍ୟ ଓ ସୌନ୍ଦର୍ଯ୍ୟର ସେହି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବୁ କେଜାଣି ?

୧୬ । ୮ । ୭୭; ବଫାଲୋର ଶେଷ ଦୃଷ୍ଟି ପକାଇଲି ପାଇନ୍ ଶାଖା-ଶ୍ୟାମଳ ଅଗଣିତ ମୁକ୍ତାମାଳା ଉପରେ, କହୁ ଦୀପିତ, ଗୋଲାପୀ କୁହେଳି ଯୁକ୍ତ ହ୍ରଦ ଉପରେ; ରଙ୍ଗୀନ ମଣ୍ଡିମଣ୍ଡିତ ପାହାଡ ଉପରେ; ନୌକା ସଜ୍ଜିତ ହେଉଥାଏ ଯାତ୍ରୀଙ୍କ ଲାଗି, କେତୋଟି ପିଲା ଉଇସ୍‌କନ୍‌ସିନ୍ ନଦୀ କୂଳରେ ଦୋଳି ଖେଳୁଥାନ୍ତି । ଆମେ ଅଣ୍ଡରବାଉଁରୁ ବଫାଲୋନେଲୁ ।

କେତେବେଳେ ପାହାଡ଼ୀ କାନ୍ଥ ମଧ୍ୟରେ, କେତେବେଳେ ହ୍ରଦ ତୀରେ ତୀରେ ବନାନୀ ମଧ୍ୟରେ ଯାଇ ଆମେ 'ମନ୍ରୋ' ସହରରେ ପହଞ୍ଚିଲୁ । ୧୮୫୨ ଖ୍ରୀଷ୍ଟାବ୍ଦରେ ଏହି ସହର ସ୍ଥାପିତ ହେଲା—ଏବେ ଏହା ଶିଳ୍ପ ସମୃଦ୍ଧ ନଗର ଭାବରେ ଯୁକ୍ତରାଷ୍ଟ୍ରରେ ସୁପରିଚିତ, ଏଠି ଦୁଇଶ ଗୋଟି କାରଖାନା ଅଛି; ଛେନା ଉତ୍ପାଦନ ଲାଗି ଏହା ପ୍ରସିଦ୍ଧ । ପ୍ରାୟ ଏକଶତ ପ୍ରକାର ଦୁଗ୍ଧ ଛେନା ଏଠା କାରଖାନାରେ ପ୍ରସ୍ତୁତ ହୋଇଥାଏ । ଏଠି ଡାକ୍ତର ବର୍ଷ୍ଟଙ୍କ ନିକଟକୁ ଆମେ ଗୋଟିଏ ଛେନା ପାର୍ଶଲ ପଠାଇଲୁ । ଦୋକାନୀ ପାର୍ଶଲ ପଠାଇବାର ସମସ୍ତ ଦାୟିତ୍ୱ ନେଲେ । ଏହା ଗୋଟିଏ ଖାଦ୍ୟ ଓ ପାନୀୟ ଦୋକାନ; ଖାଦ୍ୟ ମଧ୍ୟରେ ଛେନା, ପାନୀୟ ମଧ୍ୟରେ ସାମ୍ପେ, ଜିନ୍, ହୁଇସ୍କି, ଭୋଡ୍‌କା ଆଦି ମଦ୍ୟ ପ୍ରଧାନ ।

ତାପରେ ମିସିସିପି ନଦୀର କୂଳେ କୂଳେ ଗ୍ରେଟରିଭର ରୋଡରେ ଆମେ ଯାତ୍ରା କଲୁ । ମିସିସିପି ଉଇସ୍‌କନ୍‌ସିନ୍ ଓ ମିନେସୋଟା ଏଇ ଦୁଇରାଜ୍ୟର ସୀମା । ଲକ୍ରସ୍ ଓ ଲକ୍ଷୋସାଣ୍ଡ ମିନେସୋଟାରେ; ଦ୍ୱିତୀୟ ନଗରଟି ଯୁକ୍ତରାଷ୍ଟ୍ରର 'ଆପଲ୍ ରାଜଧାନୀ' ।

ବ୍ଲାକ୍, ଲକ୍ରସ୍ ଓ ମିସିସିପି ନଦୀର ସଙ୍ଗମ, ଆମ ଗଙ୍ଗା ଯମୁନା ସରସ୍ୱତୀ ପରି, ଦୂରରୁ ସମୁଦ୍ର ପରି ଦିଶେ; ବହୁ ଧାରରେ ଜଳସ୍ରୋତ ପ୍ରବାହିତ, ମଧ୍ୟେ ମଧ୍ୟେ ଦ୍ୱୀପ, ପର୍ବତମୟ, ଅରଣ୍ୟସଙ୍କୁଳ' ସ୍ଥାନେ ସ୍ଥାନେ କଳକାରଖାନା; ମନରେ ସନ୍ଦେହ ଉଠାଇ ବସିଲି—ଏଇ ଦୃଶ୍ୟଟିକୁ—ପୁଷ୍ପିତ ତୀର—ପ୍ରଖରସ୍ରୋତ, ଲମ୍ବିତ ଦ୍ୱୀପମାଳା, ଧ୍ୱନସ୍ଥ ଜଳସ୍ରୋତ, ପର୍ବତ, ଉଚ୍ଚତଟ, ରୌଦ୍ରସ୍ନାତ; ବସନ୍ତ ବନକୁ ବହୁପୁଷ୍ପିତ କଲାପରି ଏହି ଦୃଶ୍ୟ ମୋର ମନକୁ ନାନା ସ୍ୱପ୍ନରେ ରଙ୍ଗୀନ୍ କରିଦେଲା ।

## ରଚେଷ୍ଟର

ରଚେଷ୍ଟର ଗୋଟିଏ ମଧ୍ୟମ ଧରଣର ସହର; ଔଷଧ ଗବେଷଣା କେନ୍ଦ୍ର ଓ ଚିକିତ୍ସାଳୟ ଲାଗି ଏହା ଏବେ ଜଗତ୍‌ବିଖ୍ୟାତ । ଡାକ୍ତର ଚିହ୍ନି ନ ପାରିଲେ ଏଠା ବିଶେଷଜ୍ଞମାନେ ଗବେଷଣା କରି ରୋଗର ମୂଳ ନିର୍ଣ୍ଣୟ କରିଥାନ୍ତି; ତାପରେ ଚିକିତ୍ସାର ବ୍ୟବସ୍ଥା ହୋଇଥାଏ । ସେ ସମ୍ପର୍କୀୟ ଯାବତୀୟ ବ୍ୟୟ ରୋଗୀ ବା ତାର ପରିବାର ବହନ କରିଥାନ୍ତି । ଏଠା ଦୁଗ୍ଧକେନ୍ଦ୍ର ଆମେରିକାରେ ବୃହତ୍ତମ, ପ୍ରାୟ ଦୁଇ ହଜାର ଡାୟାରୀ ଫାର୍ମ ଏହି କେନ୍ଦ୍ରକୁ ଦୁଗ୍ଧ ଯୋଗାଇଥାନ୍ତି । ଦୁଗ୍ଧଗୁଣ୍ଡ, ଦୁଗ୍ଧରେ ପ୍ରସ୍ତୁତ ଯାବତୀୟ ଖାଦ୍ୟ ରଚେଷ୍ଟର ବିଦେଶକୁ ପଠାଇଥାଏ ।

ମିନ୍ନେସୋଟା ଗୋଟିଏ ହ୍ରଦରାଜ୍ୟ, କ୍ଷୁଦ୍ର ବୃହତ୍ ଚଉଦ ହଜାର ହ୍ରଦ ଏହି ରାଜ୍ୟରେ ରହିଅଛି । ହ୍ରଦ ତୀରରେ ତୀରରେ ଅରଣ୍ୟ; ପ୍ରତିଫଳିତ ସବୁଜ ଶ୍ରୀ ମନକୁ ମୋହାଚ୍ଛନ୍ନ କରିଦିଏ; ଚିର ଯୌବନର ଏକ ସ୍ୱପ୍ନରେ । ଏହି ରାଜ୍ୟ ମତ୍ସ୍ୟଶିକାରୀ, 'ସ୍କି' ଖେଳାଳୀ, ନୌକାଯାତ୍ରୀ, ସନ୍ତରଣକାରୀମାନଙ୍କୁ ଅବସରବିନୋଦନରେ ଆକର୍ଷଣ କରି

ଆଣିଥାଏ । ମି-ନି-ସୋ ଟା ଏକ ଲୋହିତଭାରତୀୟ ନାମ—ଏହାର ଅର୍ଥ ଆକାଶ ପ୍ରତିଫଳିତ ଜଳରାଶି— ସ୍ଥାନୀୟ ହ୍ରଦ ପ୍ରକୃତିକୁ ଏହା ଯଥାର୍ଥ-ଭାବେ ରୂପାୟିତ କରିଛି ।

ମିନେସୋଟାର ଭୂମି ସମତଳ । ଦିଗ୍‌ବଳୟବ୍ୟାପୀ ଫସଲଖେତ, ଲକ୍ଷ୍ମୀ ହସୁଛନ୍ତି ଚତୁର୍ଦ୍ଦିଗରେ । ହେମନ୍ତ କାଳରେ ଆମ ଗାଁର ବିଲ ଏହିପରି ଦିଶେ । ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ଘର, ଇସ୍ପାତ ତିଆରି କୋଠିସବୁ ଲମ୍ବିଛି—ପ୍ଲାଷ୍ଟିକ୍-କୋଠିରୁ ସୁବର୍ଣ୍ଣ ମକ୍କାର ଟେହେର ଫୁଟି ଦିଶୁଛି । ହ୍ରଦ ପାଖରେ ପାଖରେ ଓକ୍, ଉଇଲୋ, ପପଲର୍—ମାଟିକଳା; ଅଳୁ, ଗହମ, ମକ୍କା ପ୍ରଭୃତି ଫସଲ ହୁଏ । ପ୍ଲାଷ୍ଟିକ୍ କାଗଜ, କ୍ରୀଡ଼ା ଦ୍ରବ୍ୟ, କୃଷିଶିଳ୍ପ ଦିଗରୁ ମଧ୍ୟ ଏହି ରାଜ୍ୟ କ୍ରମେ ମୁଖ୍ୟ ସ୍ଥାନ ଅଧିକାର କରୁଅଛି ।

ମିନେସୋଟା ଦୀର୍ଘକାଳ ଲୋହିତଭାରତୀୟଙ୍କ ଅଧିକାରରେ ଥିଲା । ୧୮୬୨ ଖ୍ରୀଷ୍ଟାବ୍ଦରେ ଲୋହିତଭାରତୀୟମାନେ ପାଞ୍ଚଶତ ଉପନିବେଶକାରୀଙ୍କୁ ବିନାଶ କରିଥିଲେ । ୧୮୭୩ରେ ଉଡ୍‌ଲେକ୍ ଯୁଦ୍ଧରେ ଲୋହିତଭାରତୀୟମାନେ ସମ୍ପୂର୍ଣ୍ଣ ରୂପେ ପରାଭୂତ ହେଲେ ଓ ଏହି ରାଜ୍ୟରେ ପରିପୂର୍ଣ୍ଣ ଯୁକ୍ତରାଷ୍ଟ୍ରର କର୍ତ୍ତୃତ୍ୱ ଜାରି ହୋଇଥିଲା ।

ପୃଥିବୀର ବୃହତ୍ତମ ନଦୀ 'ମିସିସିପି' ଏହି ରାଜ୍ୟର ଇଟାସ୍କା ହ୍ରଦରୁ ବାହାରି ଅଛି । ଏହାର ଉତ୍ପତ୍ତିସ୍ଥଳ ଇଟାସ୍କା ଷ୍ଟେଟ୍ ପାର୍କରେ ସଂରକ୍ଷିତ । ୧୮୩୨ ଖ୍ରୀଷ୍ଟାବ୍ଦରେ ହେନେରୀ ଆର୍ ସ୍କୁଲକ୍ରାଫ୍ଟ ଏହି ନଦୀର 'ମୁଣ୍ଡ' ଇଟାସ୍କା ହ୍ରଦରେ ଆବିଷ୍କାର କରିଥିଲେ ।

'କେଉଁଠି ଲଞ୍ଚ୍ ଖାଇବୁ' ସ୍ଥିର କରି ନ ପାରି ଆମେ ପ୍ରାୟ କୋଡ଼ିଏ ମାଇଲ୍ ଡ୍ରାଇଭ କରି ଯାଇ ଗୋଟିଏ ହ୍ରଦ କୂଳରେ ପହଞ୍ଚିଲୁ ।

ଖରା ଆମ ଅଡ଼ ହେମନ୍ତର ଖରାପରି ମଧୁର; ଶୀତଳ ପବନ ଆଦରରେ ଆଉଁସି ଦେଉଥାଏ ଯେପରି । କେତୋଟି ଗୋରା ପିଲା ଲାଲ୍ ସ୍ୱିମିଂ ଡ୍ରେସ୍ ପିନ୍ଧି ହ୍ରଦରେ ପହଁରିବାକୁ ଯାଉଥାନ୍ତି । ପାର୍କ ଆର

ପାଖରୁ ଗୃହସ୍ଥି ଝିଅ ସାଇକେଲ୍ ଚଢ଼ି ମଉଜରେ ଗପ କରି ଚାଲିଛନ୍ତି । କେତେ ଜଣ ବୁଢ଼ାସବୁ—ପାଳଙ୍ଗପତ୍ର ପରି, ସୋରିଷପତ୍ର ପରି, ସୁନୁସୁନିଆପତ୍ର ପରି ପତ୍ର, ସେବତୀ ଫୁଲ ପରି ଫୁଲ, ଉଡ଼ୁଛନ୍ତି ଦଳ ଦଳ ପ୍ରଜାପତି; ଗୀତା, ମୀରା, ନୀଳ ଗୋଡ଼ାଇ ଗୋଡ଼ାଇ ଧରୁଛନ୍ତି । ଦୁଇ ଦ୍ୱାର ମଝି ଘାସ ପଡ଼ିଆରେ କେତେକ ଚୌକି, ଟେବୁଲ୍ ପଡ଼ିଛି । ସ୍ଥାନେ ସ୍ଥାନେ ଦୁର୍ବାଦଳ—ଟିପିଟିପି ଝରା ଫୁଲ—ଘାସକଟା ଯନ୍ତ୍ର ଚାଲିଛି ଖଟ୍ ଖଟ୍ କତାଳି ଆମକୁ ଅଭିନନ୍ଦନ ଜଣାଉଛି; ଝିଙ୍କାରି ମଧ୍ୟାହ୍ନର ନିର୍ଜନତାକୁ ଧାର ଦେଉଛି, କରୁଣତା ତନ୍ତ୍ରୀରେ ଅଧିକ, ଡାମରା କୁଆ ବେଳେ ବେଳେ ତାର ମାଧୁରୀକୁ ମାଟି କରିଦେଉଛି । ସଙ୍ଗରେ ଘେନି ଆସିଥିବା ଖାଦ୍ୟ ଏଇଠି ବସି ଆମେ ଖାଇଲୁ ।

ବର୍ଷାଧୁଆ ଚୋଟା, ପାର୍କ, ପଡ଼ିଆ ଖରାକୁ ବଡ଼ ଆଦରରେ ଗ୍ରହଣ କରୁଛି । ବିଜନତାର ମୁଖ ପ୍ରଫୁଲ୍ଲ ହୋଇ ଉଠିଛି ସ୍ଥାନେ ସ୍ଥାନେ ପୁଷ୍ପମୁକୁଳରେ । ଆମେ ଆଲବର୍ଟ ସହରରେ ପହଞ୍ଚିଲୁ—ପୋଲ ତଳେ ରେଲ୍ ରାସ୍ତାସବୁ—ପୁଷ୍ପମୟ ସମାଧି ପ୍ରାନ୍ତର ଆଖି ଆଗରେ ନାଚିଗଲା ମୁହୂର୍ତ୍ତେ; କଣ୍ଟାଗଛଭଳି, କଳା, କଳାଛଇଳା ଗାଈସବୁ ପାକୁଳି କରୁଛନ୍ତି ଶୋଇ ଶୋଇ । ବାଟରେ 'ବ୍ଲୁ ଆର୍ଥ' ସହର ପଡ଼ିଲା—କଳା ମାଟି, ଲେସ୍ୱେର୍ ନାମକ ଜଣେ ଫରାସୀ ଏହି କଳା ମୃତ୍ତିକାରେ ତମ୍ବା ଅଛି ବୋଲି ବିଶ୍ୱାସ କରି ଏଥିରୁ ବହୁ ଟନ୍ ଫ୍ରାନ୍ସ ଦେଶକୁ ପ୍ରେରଣ କରିଥିଲେ । ପରୀକ୍ଷାରୁ ଜଣାଗଲା ଯେ ସେଥିରେ ତମ୍ବା ନାହିଁ । ନୈରାଶ୍ୟରେ ସ୍ୱେର୍ ଭାଙ୍ଗି ପଡ଼ିଥିଲେ । କିନ୍ତୁ ସ୍ୱେରଙ୍କ ଆବିଷ୍କାର ବୃଥା ହୋଇନାହିଁ । ଏହା ଏବେ ପୃଥିବୀର ଏକ ଅତି ଉର୍ବର ଅଞ୍ଚଳ ।

ଡେସ୍ ମଇନ୍ସ୍ ନଦୀ କୂଳରେ ଜାକ୍ସନ୍ ସହର, ୧୮୫୬ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ; ଦୁଇ ମିନିଟ୍ ମଧ୍ୟରେ ଆମେ ଏ ସହର ପାରିହୋଇ ଗଲୁ; ଡାଇରେକ୍ସନ୍, ପାର୍କଭ୍ୟୁ ମୋଟେଲ୍, କେତେ କୃଷି, ଶିଳ୍ପ ଅନୁଷ୍ଠାନ, ସ୍କୁଲ୍ କଲେଜ୍ ଆଖିରେ ମୁହୂର୍ତ୍ତେ ମାତ୍ର ନାଚିଉଠି ଚାଲିଗଲା—ବର୍ତ୍ତମାନର ଗୁରୁତ୍ୱ ଅନୁଭବ ନକରୁଣୁ ସେ ଅତୀତ ହୋଇଗଲା । ଗାଡ଼ିରେ

ଫସଲ ଖେତ ଲମ୍ବିଛି ତ ଲମ୍ବିଛି, ହଡବାଡ଼ର ସଂକେତ ନାହିଁ—ଫସଲର ଜୁଆର ତରଙ୍ଗ ଉଠୁଛି ଦିଗ୍‌ବଳୟ ପ୍ରାନ୍ତ ପର୍ଯ୍ୟନ୍ତ, କେଉଁଠି ବା ବାଉବାଟି ପଡ଼ିଆ ପଡ଼ିଛି, ବନ୍ୟ ଗୁଳ୍ମ ଅମୃତପ୍ରସାରର ସୁଯୋଗ ପାଇଛନ୍ତି ଏଠି ।

ବସ୍ତ ଗସ୍ତାଟିଏ କେତେଦିନ ପରେ ଆଖିରେ ପଡ଼ିଲା, କୋଉ ଗୃହୀ ଘରକୁ ଲମ୍ବିଛି । କେତେ ଘର ତାର ! ଚାକର ଘର, କୁକୁଡ଼ା ଘର, କୁକୁର ଘର; ଗାଈ ଘୋଡ଼ା ପୁଷ୍ଟଙ୍କ ଗୁହାଳ, ଗାଈ ଘୋଡ଼ାଙ୍କ ଖାଦ୍ୟ ରଖିବା ଘର, ଟ୍ରାକ୍ଟର, ଫସଲକଟା କଳଘର, ଗ୍ୟାରେଜ୍—ପଚଣି, ପଚୁଣ ବା ଶଦେ ଇଷ୍ଟାତ୍ର କୋଠି । କଶୋର କଶୋରୀମାନେ ଘୋଡ଼ା ଚଢ଼ି ବୁଲୁଛନ୍ତି । ଆହାଃ, ହାଉଟି କେଡ଼େ ସୁନ୍ଦର ସଜାଇଛି, ମାଣିକ ବୃନ୍ଦ ଗେଣ୍ଡୁ ଆଉ ସୂର୍ଯ୍ୟମୁଖୀରେ ।

ଜାଳାଟ୍ରକ ଟିଏ, ପୁଷ୍ଟର ଭର୍ତ୍ତି, କେଉଁ ଦୂରବର୍ତ୍ତୀ ସହରକୁ ହେଡା ବୋହି ନେଉଛି ବୋଧହୁଏ । ସେହିପରି କେତୋଟି ମେଣ୍ଢା ବୋହିନେଉଥିବା ଟ୍ରକ୍ ମଧ୍ୟ ଦେଖିଲି । କିନ୍ତୁ ଛେଳିଟିଏ ମୋ ଆଖିରେ ପଡ଼ନାହିଁ, ଏଠି କେହି ଛେଳି ପୋଷନ୍ତି ନାହିଁ, ଛେଳି ମାଂସ ଖାନ୍ତି ନାହିଁ । ସେ ଦିନ ଜଣେ ସାହେବାଣୀ ମୁଁ 'ବିଫ୍' ନ ଖାଉଥିବା ଦେଖି କହିଲା—ଭାରତୀୟମାନେ ଛେଳି ମାଂସ ଖାନ୍ତି ? ଛିଃ ! ବିଫଠାରୁ କଣ ଛେଳିମାଂସ ଭଲ ?

ତାପରେ ଆମେ ପାର ହେଲୁ ମାଙ୍କୋଲଆ, ଲୁଭର୍ଣ୍ଣ, ବଭର୍ ସହର; କୃଷିଯନ୍ତ୍ରପାତି କାରଖାନା; ଡ଼ାଇରି ଫାର୍ମ ଲାଗି ଏ ସବୁ ସହର ଖ୍ୟାତ ହୋଇ ଉଠିଛନ୍ତି । ମିନେସୋଟାର ଏକ ତୃତୀୟାଂଶ ଜମି ବନାବୃତ; ବନପରେ ହ୍ରଦ, ନଇଲେ କୃଷିକ୍ଷେତ୍ର । ମିସିସିପି ଯୁକ୍ତରାଷ୍ଟ୍ରର ଦଶୋଟି ରାଜ୍ୟ ମଧ୍ୟରେ ପ୍ରବାହିତ । ଏ ସମସ୍ତ ରାଜ୍ୟ ଏଇ ବିଶାଳ ନଦୀର ଦୁଇ ତୀରକୁ ପ୍ରାକୃତିକ ଭୂଷିତ କରିଛନ୍ତି—ଭ୍ରମଣକାରୀର ରୂପପାସ୍ତୀ ଚକ୍ଷୁ, ରସଶୋଷୀ ମନ କେଉଁଠି ନିରାଶ ହୋଇ ଫେରିଆସିବ ନାହିଁ; ବରଂ ଆଣିବ ଭଲ ରୁକ୍ଷତା ବା ଶୁଷ୍କତା କେଉଁଠି କାହିଁ ?

ଅଶୀ ମାଇଲ୍ ଗତିରେ ଆମ ଗାଡ଼ି ଚାଲିଛି; ଖାଁଟ ମଡେଲ୍‌ ମଟର ଆଗକାଚରେ ଛେଚିହୋଇ ଯାଉଛନ୍ତି—ଏକାଥରକେ ନାସ୍ତାନାବୁଦ । କାଚଯାକ ରକ୍ତଛିଟା ।

## କର୍‌ନ୍ ପାଲେସ୍ (୧୭. ୮. ୭୭)

ଦିନ ଘଣ୍ଟା ବେଳେ ଆମେ ମିଚେଲ୍ ସହରରେ ପହଞ୍ଚିଲୁ । ମିଚେଲ୍ ଜେମ୍‌ସ୍ ନଦୀ ଉପତ୍ୟକାରେ ଅବସ୍ଥିତ; କ୍ଷେତ୍ର ଉର୍ବର, ସୋୟାବିନ୍, ବାର୍ଲି, ମକ୍‌କା, ଗହମ, ରୁଟ, ଅଲଫାଲ୍‌ଫା ପ୍ରଭୃତି ଫସଲ ହୁଏ । ମିଚେଲ୍ ଏହି ଅଞ୍ଚଳର ଶିଳ୍ପ ବାଣିଜ୍ୟ କେନ୍ଦ୍ର । ଗୋଶ୍‌କର ଫାର୍ମ ଲାଗି ପ୍ରସିଦ୍ଧ । କର୍‌ନ୍ ପାଲେସ୍ ଏହି ନଗରର ସର୍ବଶ୍ରେଷ୍ଠ ଆକର୍ଷଣ ।

ଦାଣ୍ଡରେ କବାଟରେ ଆମେ ଧାନର କେଣ୍ଟି ଆଙ୍କୁ, ଦୁଆର ମୁହଁରେ ବା କୋଠିଘରେ ଧାନର ମେଣ୍ଢା ଝୁଲାଉ । ମାର୍ଗଶିର ଗୁରୁବାର ଦିନ ଧାନମେଣ୍ଢା ଲକ୍ଷ୍ମୀଠାକୁରାଣୀଙ୍କ ପ୍ରତୀକ ହୋଇ ବସେ । ମେଣ୍ଢାରେ ଆଟୁ, କୋଠି ବା ଦାଣ୍ଡଘର ସଜେଇବା ଗୋଟିଏ ବୁନିଆଦି ଘରର ପ୍ରାଚୀନ ପ୍ରଥା—ରଜା ସାମନ୍ତ ସାହୁକାର ଗୃହରେ ଧାନ ମେଣ୍ଢା ନିର୍ମାଣ କଳା ଅତି ଚିତ୍ତାକର୍ଷକ ଥିଲା । କିନ୍ତୁ ଏହି କର୍‌ନ୍ ପାଲେସ୍ ଭଳି କିଛି କେଉଁଠି ଦେଖିବା କଥା ମୋର ମନେ ପଡ଼ୁ ନାହିଁ ।

ବହୁ ଟାୱାର୍ ଯୁକ୍ତ ଗୋଟିଏ ପ୍ରାସାଦ—ତା ଉପରେ ନାନା ଶସ୍ୟ ବିଶେଷତଃ ମକ୍‌କା, ବାଜରା ଓ ସେ ସବୁର ନଡ଼ା ଓ ଚମ୍ପର ଖଞ୍ଜା ଯାଇଛି, ଶ୍ୱେତ, ରକ୍ତ ଓ ପୀତ ରଙ୍ଗରେ ରଙ୍ଗୀନ୍ କରା ହୋଇଛି । ସମସ୍ତ ପ୍ରାସାଦଟି ଶସ୍ୟରେ ସୁସଜ୍ଜିତ—ବହୁ ଶସ୍ୟମୟୀ ଲକ୍ଷ୍ମୀଦେବୀଙ୍କର ପ୍ରକୃତ ନିକେତନ ଏ; ଏଠି ପଦ୍ମବନ ନାହିଁ, ଲକ୍ଷ୍ମୀ ପଦ୍ମବାସିନୀ ନୁହନ୍ତି; 'ଚଞ୍ଚଳା' ନାମ ଦୁର୍ବୋଧ । ଗୃହେ ଗୃହେ କ୍ଷେତ୍ରେ କ୍ଷେତ୍ରେ ଅରଣ୍ୟ ପ୍ରାନ୍ତରେ ତାଙ୍କର ବାସ—ଶ୍ରୀରେ ସମ୍ପଦରେ, । ସମଗ୍ର ଦେଶ ଶ୍ରୀପୂର୍ଣ୍ଣ, ସମ୍ପଦଭରା ।

୧୮୯୨ ଖ୍ରୀଷ୍ଟାବ୍ଦରେ ଏହି ପ୍ରାସାଦ ପ୍ରଥମେ ଏପରି ସଜ୍ଜିତ ହୋଇଥିଲା, ପ୍ରତି ସେପ୍‌ଟେମ୍ବରରେ ଭଗବାନଙ୍କୁ ଧନ୍ୟବାଦ ଦେବା ଉତ୍ସବ ସେହି କାଳରୁ ଏ ପ୍ରାସାଦରେ ପାଳିତ ହୋଇ ଆସୁଅଛି । ଭଗବାନଙ୍କ ନିକଟରେ ମନୁଷ୍ୟ ନାନା ଭାବେ ଋଣୀ, ଗର୍ବ ଦମ୍ଭରେ ମତ୍ତ ହୋଇ ମନୁଷ୍ୟ ତାହା କେବେ କେବେ ଭୁଲିଯାଏ । ଶସ୍ୟଶିଳ୍ପରେ ତାର ଜୀବନ ଗୁନ୍ଥା—ଶସ୍ୟ ବିନା ସେ ବଞ୍ଚିପାରିବ ନାହିଁ । ଶ୍ରମସ୍ୱେଦରେ ବର୍ଦ୍ଧିତ ହେଲେ ମଧ୍ୟ ଏହା ଭଗବାନ୍‌ଙ୍କର ଦାନ, ତାଙ୍କର କରୁଣା ଓ କଲ୍ୟାଣରେ ଉଦ୍‌ଜୀବିତ । ତେଣୁ ଏହି କୃଷି ଉତ୍ସବରେ ମନୁଷ୍ୟ ତାଙ୍କୁ ନିତ ନମସ୍କାର କରେ, କୃତଜ୍ଞତାରେ—'ହେ ପ୍ରଭୁ, ସଂଅସ୍ଥ ଉତ୍ପାଦନ ଲାଗି ମୋତେ ଶକ୍ତି ପ୍ରଦାନ କର, ପ୍ରାଚୁର୍ଯ୍ୟ ମଧ୍ୟରେ ରହି ପ୍ରତିଦିନ ମୋ ଗୃହରେ ତୁମକୁ ଧନ୍ୟବାଦ ଦେବା ଉତ୍ସବ ଅନୁଷ୍ଠାନ କରେ ।'

ଏହି ପ୍ରାସାଦ ସଜ୍ଜୀକରଣରେ ବର୍ଷକୁ ପନ୍ଦର ହଜାର ଡଲାର୍ ଖର୍ଚ୍ଚ ହୁଏ—ମିଚେଲ୍ ନଗରର ବଣିକସମ୍ପ୍ରଦାୟ ମହାନନ୍ଦରେ ଏହି ବ୍ୟୟଭାର ବହନ କରିଥାନ୍ତି—ପ୍ରତିବର୍ଷ ଶସ୍ୟ ବଦଳି ହୁଏ; ନୂଆ ଡିଜାଇନ୍‌ରେ ନାନା ଜାତିସ୍ଥ ଗୁଣସମ୍ପନ୍ନ ନାନା ରଙ୍ଗରେ ରଙ୍ଗା ହୋଇଥିବା ଶସ୍ୟ ସଜାଯାଏ ।

ଶସ୍ୟ ପ୍ରାସାଦରେ କେତୋଟି ବଡ଼ ବଡ଼ ହଲ୍ ଅଛି । ଗୋଟିକରେ ଯୁକ୍ତରାଷ୍ଟ୍ରରେ ଉତ୍ପାଦିତ ନାନା ଶସ୍ୟର ଚିତ୍ତାକର୍ଷକ ପ୍ରଦର୍ଶନୀ; ଦେଶର ବିଶିଷ୍ଟ କୃଷକମାନଙ୍କର ଫଟୋ, ଛପା ସଂକ୍ଷିପ୍ତ ଜୀବନଚରିତ ଟଙ୍ଗା ଯାଇଛି । କୃଷିକୁ ଉତ୍ସାହିତ କରିବାର ଏ ଉଦ୍ୟମକୁ ପ୍ରଶଂସା ନ କରି ରହି ପାରିଲି ନାହିଁ । ସେହି ଗୃହରେ ଗୋଟିଏ ଗିଫ୍‌ଟସପ୍ ଓ ଖେଳଣା ପ୍ରଦର୍ଶନୀ ମଧ୍ୟ ବୁଲି ଦେଖିଲି । ପରବର୍ତ୍ତୀ ହଲରେ ଗୋଟିଏ ରଙ୍ଗମଞ୍ଚ—ରଙ୍ଗମଞ୍ଚ ନିକଟରେ ମକ୍‌କା ଚଅଁର ଗଦା ହୋଇଛି, ନିକଟରେ ଗୁଡ଼ ସଜ୍ଜା ହେବ ବୋଲି ।

ମୋଟେଲ୍‌ରେ ରାତିଟି ସୁରୁଖୁରୁରେ କଟିଲା—ଶୀତ ନାହିଁ, ସାମାନ୍ୟ ନାଳି କୁହୁଡ଼ି, ବରିଲ ଚଛଲତା ମଧ୍ୟରେ ଲାଲ୍ ସୂର୍ଯ୍ୟ,

ସ୍ନେହାକୁ ଆମ୍ଭୀପ୍ସଙ୍କ ପରି ବୋଧ ହେଲେ । ହଜାର ହଜାର ପକ୍ଷୀ ଉଡ଼ି ଆସୁଥାନ୍ତି ସତେ କି ସୂର୍ଯ୍ୟୋଦୟ ଦେଶରୁ, ସ୍ୱିମିଂ ପୁଲ୍‌ର ପଚ୍ଲାରି ଧାଡ଼ି ଆଡ଼େ, ବାଦ୍, ବାଦ୍, ଅନ୍ଧକାର ପରି, ରକ୍ତ ମେଘ ଚଳେ ଚଳେ, ସକାଳଟିକୁ ସୁଶ୍ରାବ୍ୟ ଓ ସୁନ୍ଦର କରି ।

ଆମେ ବାହାରିଲୁ । ସାଉଥଡାକୋଟା ଏକ କୃଷି ରାଜ୍ୟ; ଏହାର ମଧ୍ୟ ଭାଗରେ ମିସୌରୀ ନଦୀ ପ୍ରବାହିତ । ମିସୌରୀ ଓ ଜେମସ୍ ନଦୀର ଉପତ୍ୟକା ଅତି ଉର୍ବର । ଗମ୍ଭୀର ସାକ ଗହମ ନଡ଼ା ଗଦା ମଣ୍ଡିତ । କିଛି ଦୂର ଗଲା ପରେ ବୃକ୍ଷ ବିରଳତର ହୋଇ ଆସିଲା—ଆବୁଆବୁଆ ମାଟିର ପାହାଡ଼ସବୁ ଏକଦମ୍ ଲଣ୍ଡା; କଚ୍ଛ କଚ୍ଛ ଶୁଖିଲା ଘାସ; କେଉଁଠି କାହିଁ ଗୋଟାଏ ଗୋଟାଏ ଗଛ; ଏଇ ଆବୁ ଆବୁଆ ଭୂଇଁରେ ମିସୌରୀ ବୋହି ଯାଇଛି, ଧାର କ୍ଷୀଣ । ଚେମ୍ବରଲେନ୍ ସହର ନିକଟରେ ଆମେ ଏହି ନଦୀ ଅତିକ୍ରମ କଲୁ ।

ମାଣ୍ଡିଆ କ୍ଷେତ, ଗଛ ଗ୍ରେଟ ଗ୍ରେଟ, କେଣ୍ଡା ବଡ଼ ବଡ଼ । ତାପରେ ଧୂସର ତୃଣଭୂମି ପଡ଼ିଲା—ଖରା ଖେଳେଇ ହୋଇ ପଡ଼ିଛି ବିସ୍ତୃତ କ୍ଷେତ୍ରରେ; ଉଜ୍ଜ୍ୱଳତା ଅଛି, ପ୍ରଖରତା ନାହିଁ ତାର । କେତେବେଳେ ଚଲି ମେଘ ଆଖି ବୁଜିଦିଏ । ମିଞ୍ଜି ମିଞ୍ଜି କରି ବୃଷ୍ଟି, ସୂର୍ଯ୍ୟ କେବେ ପାହା ଉପରେ ଥାଏ । ଗୋଟିଏ ବୃଷ୍ଟିର ଢେଉ, ଶସ୍ୟର ଭଣ୍ଡାରସବୁ ଖରାରେ ଚକ୍ ଚକ୍ କରେ । ଟ୍ରାକ୍‌ଟର ଚାଲିଛି, ଉତ୍ପାଟିତ କଟା ଶସ୍ୟ ମୂଳସବୁ ସ୍ଥାନେ ସ୍ଥାନେ ଆଖିପୁରୁଛି । ମେଘଗୁଡ଼ା ଖରା ମଧ୍ୟରେ ବେଳେ ପୁଷ୍କରିଣୀ ପରି ଦିଶୁଛି । ଲଣ୍ଡା ଗମ୍ଭୀର, ଦୃଷ୍ଟି ନିରର୍ଗଳ, ଦିଗ୍‌ବଳୟ ପର୍ଯ୍ୟନ୍ତ ଧାଇଁଯାଏ ଅର୍ଦ୍ଧ ନିଃଶ୍ୱାସରେ । ଗ୍ରୀଷ୍ମମଣ୍ଡଳରୁ ଶିଖିଥିବା ନୃତ୍ୟ ଅଭ୍ୟାସ କରୁଛି ମଶାଚାକ । ଝଡ଼ ହେଲେ ଏ ଗମ୍ଭୀରରେ ଧୂଳି ଉଡ଼ୁଥିବ, ବେଳେ ବେଳେ ଝଣ୍ଟିଆ ଭୂତ ନାଚୁଥିବ । ଯୁକ୍ତରାଷ୍ଟ୍ରର ଅନ୍ୟ ଅଞ୍ଚଳରୁ ଏହା ଭିନ୍ନ, ମରୁ ପ୍ରାନ୍ତର ପରି ଦିଶୁଛି ।

ସତେ ଅବା ଗୋଟିଏ ରାଜ୍ୟରୁ ଜଳବାୟୁ ଦିଗରୁ ଏକଦମ୍ ପୃଥକ୍ ଅନ୍ୟ ଏକ ରାଜ୍ୟରେ ଆମେ ଆସି ପହଞ୍ଚିଛୁ ! ଫସଲ କ୍ଷେତ ଆଉ ନାହିଁ, ରକ୍ତାଭ ଧୂସର ତୃଣ, ମଝେ ମଝେ କାକ୍‌ଟସ୍ ଟିକେ । ଏହି ଗୁଡ଼ା ସବୁକାର

ଏଠି ମାଗଣା ଯୋଗାଇ ଥାନ୍ତି । ଏଠା ଜୀବଜନ୍ତୁଙ୍କ ମଧ୍ୟରେ ପ୍ୟାରି କୁକୁର ଦୃଷ୍ଟି ଆକର୍ଷଣ କରେ । ଏହା ଦେଖିବାକୁ ମୂଷିକ ପରି, କିନ୍ତୁ ମୂଷିକ ଅପେକ୍ଷା ଆକାରରେ ବହୁଗୁଣ ବଡ଼, ଗର୍ତ୍ତରେ ବାସକରେ, କୁକୁର ପରି ବୋବାଏ ।

ଏଠି ମଇଁଷି ନାହାନ୍ତି, ବାଇସନ୍ ବହୁ ସଂଖ୍ୟାରେ ଅଛନ୍ତି । ଏମାନେ ଆମ ଅଞ୍ଚଳ ମଇଁଷିଙ୍କ ପରି ଭୟଙ୍କର । ବାହାରିଥିବା ଦାନ୍ତ ପରି ଶିଙ୍ଘ, ଗଳଦେଶ, ମସ୍ତକ ଓ ପୃଷ୍ଠରେ ସେମାନଙ୍କର ଘନ କେଶ, ମେଷ ଲାଙ୍ଗୁଳ ପରି ଲାଙ୍ଗୁଳ । ଏଠା 'ଡିଅରମାନଙ୍କ' ପିଠିରେ ଗାର ଅଛି । ଦେଖିବାକୁ ଆମ ଗୁଣ୍ଡୁଚି ମୂଷାଙ୍କ ପରି, ତେବେ ଆକାରରେ ଶ୍ରେଷ୍ଠ । ଏଠା ଏଲକ ଆମ ସମ୍ବରଙ୍କ ପରି । କୃଷ୍ଣସାର ମୃଗଙ୍କ ବିହାର ଭୂମି ଏ । ଉଚ୍ଚ ଭୂମିରେ ଭୂଇଁକୁ ଭୂଇଁ ଲହରୀ ଉଠୁଛି—ଧୂସର ସବୁଜ । ରାସ୍ତା ଧାରର ଘାସ ଉପରେ ସତରଞ୍ଜି ପକାଇ ଶୋଇ ଜଣେ ଯୁବକ ଭୂମି ତରଙ୍ଗର ସଙ୍ଗୀତ ଶୁଣୁଛି, ପ୍ରକୃତ ରସିକ ସେ ।

ଆମେରିକାର ଭୂମିବୃକ୍ଷ କାଳ ପରେ ନଦୀରେ ଚେନାଏ ଚେନାଏ ଜାଗା ଛାଡ଼ି ଯାଇଛି—କିଏ ଅଳ୍ପ, କିଏ ବେଶି ଦେଖାଇବା ଲାଗି—ଆମ ରାସ୍ତା ମୂଲିଆ ଯେପରି କରିଥା'ନ୍ତି । ବାଉଁଶର ବନ ବାରିକ ଯେପରି ମୁଣ୍ଡକୁ କୁଣ୍ଡିଆ ପରି କରି ତାଳୁରେ ଟିକିଏ ବାଳ ଛାଡ଼ି ଦେଇ ଯାଇଥାଏ । କିଏ ମନ ହେଲା କେଜାଣି, ଉଦପ୍ତିକୁ ପଗୁରିଲି—ଆମେରିକାରେ କଣ ଝଡ଼ ହୁଏ ?

ଉଦପ୍ତି କହିଲି – ପଲ୍ଲବଚ୍ଛନ୍ନର ଉତ୍ତରାଂଶରେ ବରଫ ଝଡ଼ ହୁଏ, ଶୀତ ଦିନରେ; ଏଥିରେ ପବନ ଅଳ୍ପ, ବରଫବୃଷ୍ଟି ବେଶୀ, ବେଳେ ବେଳେ ଏଠି ବରଫପାତ ସଙ୍ଗେ ବର୍ଷା ହୁଏ—ବର୍ଷା, ବରଫ, ପବନ ମାରାତ୍ମକ ଅବସ୍ଥା ସୃଷ୍ଟି କରିଥାନ୍ତି । ଖରାଦିନେ ପ୍ରାୟ ଝଡ଼ ହୁଏ ନାହିଁ । ସେଣ୍ଟଲୁଇସ୍‌ରେ ଦଶବାର ବର୍ଷ ମଧ୍ୟରେ ଥରେ ଗୋଟାଏ ବଡ଼ ବତାସ ହୋଇଥିଲା—ସେଥିରେ ବହୁ କୋଠାବାଡ଼ି ଅଜାଡ଼ି ହୋଇ ପଡ଼ିଥିଲା, ଗଛବୃଛ ଭାଙ୍ଗି ପଡ଼ିଥିଲା । କିନ୍ତୁ ଶୀତାତପ ନିୟନ୍ତ୍ରିତ ଗୃହରେ ଶୋଇ

ତାର ସାମାନ୍ୟ ସଙ୍କେତ ମଧ୍ୟ ଚାଇ ନ ଥିଲୁ, ସକାଳୁ ଉଠି ଦେଖୁ—ପ୍ରଳୟ କାଣ୍ଡ !

ଚପଳର ଚତୁର୍ଦ୍ଦିଗରେ ଦେଖୁଛୁ, ଗୋଟିଏ ପୁଷ୍କରିଣୀ; ତା'ର ପାଖରେ ଗୋଟାଏ 'ହ୍ରଲ୍' ଧ୍ୱଂସ ପାଇ ଯାଉଛି । ଖଣ୍ଡ ଖଣ୍ଡ ହୋଇ ଦେଖୁଛୁ ସେଇ ଚଳନ୍ତା ଘରର ଅଂଶସବୁ । ପାନ୍ଥୀଙ୍କ ଅବସ୍ଥା ଅନୁମାନ୍ୟ—ଅନ୍ତତଃ କେହି ଖଣ୍ଡିଆଖାବରୀ ହୋଇ ରହି ନ ଥିବେ । ସିଧାସଳଖ ସ୍ୱର୍ଗକୁ ଟିକେଟ୍ !

ଅନୁର୍ବର ଜମି, ଖସୁ ଯୋଗୁଁ ମାଟିରୁ ଲଦା ମରିଯାଉଛି । ଗୋଡଆ ଭୂଇଁରେ ଅଳ୍ପ ଅଳ୍ପ ଘାସ, ସବୁ ଶୁଖି ଯାଇଛି । ମେଷ-ଚାରଣ ପ୍ରଧାନ ବୃତ୍ତି । ଏଠି ସିଓକ୍ସ ଜାତିପୁ ଲୋକମାନେ ଏବେ ବି ବହୁସଂଖ୍ୟାରେ ରହୁଛନ୍ତି । ସେମାନେ ଯାତ୍ରୀଙ୍କୁ ଦେଖିଲେ କହନ୍ତି—ହାଉ କୋଲା—ସ୍ୱାଗତ, ବନ୍ଧୁ । ଡେଗ୍ରେକ, ଓ୍ୱିସ୍‌କନ୍‌ସିନ୍ ପରି ଏଠା ମ୍ୟୁଜିଅମ୍‌ରେ ସେମାନଙ୍କ ବ୍ୟବହାର୍ଯ୍ୟ ନାନା ଦ୍ରବ୍ୟସମ୍ଭାର ସଂଗୃହୀତ ହୋଇ ରହିଅଛି । ଏଠି ଥିଏଟର ପେଣ୍ଡାଲ ମଧ୍ୟ ଅଛି ।

## ବାଡ୍ ବ୍ୟାଡ୍ ଲ୍ୟାଣ୍ଡ୍‌ସ୍

'ବାଡ୍', କାରଣ ବହୁଦୂର ବ୍ୟାପୀ; ପ୍ରାୟ ଏକ ଶତ ମାଇଲ୍ ପର୍ଯ୍ୟନ୍ତ ଲମ୍ବିଛି, ବ୍ୟାଡ୍, ଯେହେତୁ କୃଷି କର୍ଷଣ ନାହିଁ । ନିତାନ୍ତ ହତଶ୍ରୀ; ଲକ୍ଷ୍ମୀଛଡ଼ା ମରୁପ୍ରାନ୍ତର । ମାଟିର ଡେଙ୍ଗଲସବୁ ଉଠିଛି, ମାଟିର ପିରାମିଡ୍; ଦୁଇ ପିରାମିଡ ମଧ୍ୟରେ ଗଭୀର ଗର୍ତ୍ତ, ପ୍ରବାହିତ ହେଉଛି ପଙ୍କିଳ ନଦୀ । ପଞ୍ଚବିଂଶ ନିଯୁତ ବର୍ଷ ତଳେ ଏଇ ଉଚ୍ଚାବଚ ଭୂମିସବୁ ଗଠିତ ହୋଇଥିଲା; କୋମଳ ଏହାର ମୃତ୍ତିକା—ଅଧିକାଂଶରେ ଗୁଳ୍ମ ତୃଣହୀନ; ବୃଷ୍ଟିପାତ, ବରଫପାତ, ନଦୀର ପ୍ରବାହ, ଧୂଳି ଝଡ଼; ତୁଷାର ଝଡ଼ ଏହାର ମୃତ୍ତିକାକ୍ଷୟର ମୁଖ୍ୟ କାରଣ । ପ୍ରାଗୈତିହାସିକ କୀର୍ତ୍ତି ଏ ସବୁ ; ଏ ବର୍ଷର ପ୍ରାକୃତିକ ଶ୍ରୀ ଅର ବର୍ଷ ରହେ ନାହିଁ । ଟୋପାକ ବର୍ଷା ପାଣି ସାତ ଟୋପା ହୁଏ ଏଠି, ଭଙ୍ଗା ଗଡ଼ା ବରାବର ପରିମାଣରେ ଚାଲିଛି ଯୁଗ ଯୁଗ ଧରି । ପରିବର୍ତ୍ତନ—ଭୂପୃଷ୍ଠର ଅହରହ

ପରିବର୍ତ୍ତନ, ଏହି ଶ୍ମଶାନରେ ଫୁଟି ଦିଶୁନ୍ତି ପଳାଶ ପଳାଶ ଢୋଲ, ଚକଟ, ଭାଲୁଙ୍କର; ସେହି ଅଗ୍ନି ଓ ଫାମିଲ୍ ଜୀବନର ଶୋଭାବନ୍ତ ଏ ସହର ଗାବଜେଲ୍ ।

ଗ୍ରୀଷ୍ମ ଏଠି ଅଳ୍ପକାଳସ୍ଥାୟୀ, ଅତ୍ୟୁଷ୍ଣ; ଉତ୍ତାପ ଏକଶତ ଡିଗ୍ରୀ ପର୍ଯ୍ୟନ୍ତ ଉଠେ । ଶୀତ ଅତି ଶୀତଳ, ବର୍ଷା ବର୍ଷକୁ ପ୍ରାୟ ସତରଇଞ୍ଚ ହୋଇଥାଏ, ମୃତ୍ତିକାକ୍ଷୟ ଲାଗି ଏହା ଯଥେଷ୍ଟ । ସମୟେ ସମୟେ ଘୋର ଅନାବୃଷ୍ଟି ହୁଏ, ମାଇଲ ମାଇଲ ଭୂମିରେ ତୃଣର ସଙ୍କେତ ଦିଶେ ନାହିଁ । ଏଠା ସେଠା କେଉଁଠି ଗୋଟାଏ ରକି ମାଉଣ୍ଟେନ୍ ଜୁନିପର୍ କମ୍ବା ପ୍ଲେନ୍ କଟନ୍ ଉଡ୍; ଖାଲି ହେଲେ ଦୁଇ ତିନିଫୁଟ ଉଚ୍ଚ ଗୁଳ୍ମ ଏସବୁ; 'ହ୍ୱାଇଟ୍' ନଦୀ କୂଳରେ ଅଳ୍ପ କେତୋଟି ଏଲମ୍ କମ୍ବା ଚୋକ୍ ଚେରି । କୋକଣିଆଳ, ବବ୍‌କ୍ୟାଟ୍', କୋୟୋଟ୍, ପ୍ୟାରଡଗ୍ ଏହାର ଫଳ ଆହାର କରନ୍ତି ।

ଜୁନ ଅଗଷ୍ଟରେ ଏହିସବୁ ପାହାଡ଼ ଆଶ୍ଚର୍ଯ୍ୟଭାବେ ପୁଷ୍ପିତ ହୁଏ; ଶୁଷ୍କ ଧୂସର ଘାସ ମଧ୍ୟରେ ଫୁଟିଉଠେ କାକ୍‌ଟସ୍, ପ୍ରେରୀ ସ୍ୱିଟ୍‌କ୍ଲୋଭର, ଓ୍ୱାଲ୍‌ଫ୍ଲାଓ୍ୱାର୍, ସେଣ୍ଟ ଅଫ୍ ଦ ମାଉଣ୍ଟେନ୍, ସୁନ୍‌ଫ୍ଲାଓ୍ୱାର୍, ପୁଣି ସାଲଥଡ଼ାକୋଠାର ଜାଣ୍ଡିଆ ପୁଷ୍ପ ଲୋକସ୍ । ହେଲେ ପ୍ରକୃତିର ଦୁଃସହ ଲଜ୍ଜା ଢାଙ୍କି ହୋଇଯାଏ କେତେ ଦିନ ଲାଗି—ବନ୍ଧୁର ରୁକ୍ଷତା ମଧ୍ୟରେ ଲାବଣ୍ୟର ଅପୂର୍ବ ଲୀଳା ଖେଳଯାଏ; ଗାଇଉଠେ ଗୋଲ୍‌ଡ଼ଫିଞ୍ଚ୍, ହଳଦିଆ ରଙ୍ଗର ପକ୍ଷୀ, ମୁଣ୍ଡରେ ଓ ଲାଞ୍ଜ ଜରେ ଛାଇ କଳା ଟିପା; ଲାର୍କ ବଣ୍ଟିଂ, କଳା ଡେଣାରେ ଧଳା ଚିହ୍ନ ଛାଉ, ସୁଗାୟକ, ଆମର ଖଞ୍ଜନ ବିହଙ୍ଗୀ ପରି; ଟକେଡ଼—ଯାଯାବର ନୁହେଁ, ବ୍ୟାଡ଼୍‌ଲାଣ୍ଡ୍‌ସ୍‌ର ସ୍ଥାୟୀ ବାସିନ୍ଦା, ଜୁନିପର୍ ଗଛରେ ବସା ବାନ୍ଧେ, ବୋବାଏ—ଟିକା-ଡ଼ି-ଡ଼ି-ଡି ।

ରବିନ୍, ବସନ୍ତର ଆଗମନୀ ସେ ଗାଏ, ଲାଲ୍ ଛାତି, ଧୂସର ପିଠି ଛାଉ । ହର୍‌ନଡ୍ ଲାର୍କ ଈଷତ୍ ଲାଲ୍, ଛାତିରେ କଳା ଦାଗ, ଶ୍ରେଷ୍ଠ ଶ୍ରେଷ୍ଠ ଦାଢ଼ି, ମୁଣ୍ଡରେ ଶିଙ୍ଗ, ଏ ଏକ ପ୍ରକାର ଭରତିଆ, ଶରତର ବୈତାଳିକ ।

କିନ୍ତୁ ଏ ଉପତ୍ୟକାର ସ୍ଥାନର ପ୍ରକୃତ ପ୍ରତିନିଧିତ୍ୱ କରନ୍ତି, ଟର୍କି ଶାଗୁଣା, ମରୁ ପାହାଡ଼ ଆକାଶରେ ଚକ୍କର ଦେଲାବେଳେ; ଛଞ୍ଚାଣ, ଗ୍ରେଟ ଗ୍ରେ ପକ୍ଷୀଙ୍କି ଝାମ୍ପ ମାରିନେଲା ବେଳେ; ମୃତ୍ୟୁର କବଳ ଦୂତ ପରି ଘୂରି ବୁଲୁଥାଏ ବିଷାକ୍ତ ରାଟଲ ସ୍ନେକ୍ । ପୃଥିବୀର ହୁଙ୍କାସବୁ ଏକାଠି ଠୁଳ ହୋଇଛନ୍ତି ଯେପରି ଏହି ଅଞ୍ଚଳରେ, ହୁଙ୍କାସବୁ ହଜାର ହଜାର ଗୁଣ ନିର୍ବାଧରେ ବଢ଼ିଛନ୍ତି, ଗର୍ବିମସ୍ତ । ବୁଲୁଛନ୍ତି ନିର୍ବିଷ ବୁଲ୍‌ସ୍ନେକ୍, କମଳା ରଙ୍ଗପରି ରଙ୍ଗ ତାର, କ୍ଳୁରେସର୍, କୃଷ୍ଣସର୍ପ; ଦ୍ରୁତ ତାର ଗତି, ଘୁଷୁରିନାକା, ବଦ୍ଧ୍ୟାରମ୍ଭ; କିନ୍ତୁ ଲଘୁହିଂସ୍ରା ତାର, ବାଟମ୍ବାର ଭେଷ୍ଟ ମାରେ, କିନ୍ତୁ କାମୁଡ଼େ ନାହିଁ ।

ଅନ୍ୟାନ୍ୟ ଜୀବଜନ୍ତୁଙ୍କ ମଧ୍ୟରେ ବିଗ୍‌ହର୍ନ; ମୁଲ୍‌ଡିଅର୍; ଜାକ୍‌ରାବିଟ୍, (ଘଣ୍ଟାକେ ତିରିଶ ମାଇଲ ଦୌଡ଼ିପାରେ); ପ୍ୟାରିଡ଼ଗ୍, ଦଶ ପନ୍ଦର ଫୁଟ୍ ଗଭୀର ଗର୍ତ୍ତରେ ରହେ; ଗ୍ରୀଷ୍ମରେ ସବୁଜ ଘାସ ଖାଏ, ଶୀତରେ ନିରାହାରୀ, ଶୀତ ମୁହଁରେ ଜଗୁଆଳି ଥାନ୍ତି, ଶତ୍ରୁ ଆଗମନର ସମ୍ବାଦ ଦେବା ଲାଗି । ଝରଣା ତୀରବର୍ତ୍ତୀ ପାଇନ୍‌ବନରେ ମିଙ୍କ ରହନ୍ତି । ବାଇସନ୍ ଓ ବିଗ୍‌ହର୍ଣ୍ଣଙ୍କୁ ଲୋକେ ମାରି ଲୋପ କରି ସାରିଲେଣି ।

ବିଦୀର୍ଣ୍ଣ, ଜରାଜୀର୍ଣ୍ଣ, ତୀକ୍ଷ୍ଣ ଶୃଙ୍ଗ, ଆକାଶ ଭେଦ କରିଛି, ଦିଗ୍‌ବଳୟକୁ ଲମ୍ବିଛି, ତା ଉପରେ ବୁଦାଏ ବୁଦାଏ ସଂଗ୍ରାମଶୀଳ ତୃଣ; ବରଫରେ ଲୁଚିଥିଲା, ଗ୍ରୀଷ୍ମରେ ହସିଥିଲା, ବର୍ଷାରେ ଉପୁଡ଼ି ପଡ଼ୁଛି । କାହାର ସ୍ଥିତି ଏଠି ସ୍ଥିର ନାହିଁ; ମୃତ୍ତିକା ଖସି ଯାଉଛି, ଭାସି ଯାଉଛି ବା ଉଡ଼ିଯାଉଛି । ନାନା ଧାତୁର ରଙ୍ଗ ମଣ୍ଡିଣି, ଝାଲର, ବିବିଧ ବିଶାଳ ଶିମାନଙ୍କୁ ମଣ୍ଡନ କରିଛି, ଲାଲ୍, ବାଇଗଣୀ ଫିତାସବୁ ଶୃଙ୍ଗରେ ଗୁଡ଼ା ହେଲା ପରି ଦିଶୁଛି, ମନେହୁଏ ଏ ରୁକ୍ଷତା ଶିଳ୍ପୀ ଭଗବାନଙ୍କୁ ଦୃଷ୍ଟିକଟୁ ବୋଧ ହୋଇଛି, ସେ ତୂଳି ବୁଲାଇ ଯାଇଛନ୍ତି ଶୃଙ୍ଗେ ଶୃଙ୍ଗେ; ପାଶବ କର୍କଶତା ଉପରେ ଲିପି ହୋଇଯାଇଛି ମୟୂର ଚନ୍ଦ୍ରିକାର ରଙ୍ଗ, ତରଙ୍ଗ ତରଙ୍ଗ ହୋଇ, ଫୁଟିଛି ଇନ୍ଦ୍ରଧନୁ, ଦିଗ୍‌ବଳୟ ପର୍ଯ୍ୟନ୍ତ । ହେ ଭଗବାନ୍; ଏତେ ରୁକ୍ଷତା ମଧ୍ୟରେ ତୁମକୁ ମୁଁ ସ୍ୱୀକାର କରିପାରେ ନାହିଁ, କିନ୍ତୁ

ଏଇ ନିଷ୍ଠୁର ସତ୍ୟ ଭିତରେ ତୁମେ ଅଛ ସୁନ୍ଦର ରୂପରେ; ତୁମର ଚରଣ ସଂକେତ ସ୍ଥାନେ ସ୍ଥାନେ ଦିଶେ ।

ଏଇ ଲମ୍ବା ପାହାଡ଼ ରାଜ୍ୟର ନିକଟରେ ଆଲେକ୍‌ଜାଣ୍ଡ୍ରିଆ; କାଏରୋ—ସେଇ ନାମରେ ନୂଆ ସହରର ପରିକଳ୍ପନା କରାଯାଇଛି, ଗ୍ରିକ୍‌ସ୍‌ର ଅନୁକରଣରେ ମାଉଣ୍ଟ୍ ରସ୍‌ମୋର୍‌ରେ ଯୁକ୍ତରାଷ୍ଟ୍ରର ମୁଖ୍ୟ ଚାରି ସଭାପତିଙ୍କ ମୂର୍ତ୍ତି ନିର୍ମାଣ କରାଯାଇଛି ।

ସ୍ତର ପରେ ସ୍ତର ବ୍ୟାପ୍ତ ଏଇ ଗମ୍ଭୀର ପାହାଡ଼ ମାଳାରେ ଗାଡ଼ି ଚଳକୁ ଗଡ଼ାଇ ନେଲା ବେଳେ ଉଦପୁ କହିଲ—ନିଜପୂର୍ବରେ କୃତ୍ରିମ ତୁଙ୍ଗତା, ଏଠି କିନ୍ତୁ ସବୁ ପ୍ରାକୃତିକ. ଉଠିଛି ବୋଇଲେ ବହୁ ଉଚ୍ଚକୁ ଉଠିଛି, ଅଗଣିତ ଶୃଙ୍ଗ; ଏସବୁ କ୍ଷୟିତ ହୋଇ କ୍ରମେ ଭୂଇଁରେ ମିଶିଯିବ, କେତେ ଶତାବ୍ଦୀ ପରେ କିଏ ଜାଣେ ।

ପ୍ରାୟ ତିରିଶ ମାଇଲ୍ ଏହି ମାଟି ପାହାଡ଼ର ଅପରୂପ ଗମ୍ଭୀରରେ ଗଲାପରେ ଆମେ ଓ୍ୱାଲ୍ ସହରରେ ପହଞ୍ଚିଲୁ । ସେଠି ଗୋଟିଏ ଡ଼ିନୋସର୍‌ର ମୂର୍ତ୍ତି ଦେଖିଲୁ; ତାପରେ ଆମେ ରକ୍‌ଭିଲ ସହରରେ ପହଞ୍ଚିଲୁ । ଦିନେ ସୁନାଖଣି ମଣିଷକୁ ଏ ସ୍ଥାନକୁ ଆକର୍ଷଣ କରି ଆଣିଥିଲା । ସେମାନେ ଏକ୍‌ଜୁଟ୍ ହୋଇ ସହର ଗଢ଼ିଥିଲେ, ବ୍ୟାଙ୍କ ଚଳାଇଥିଲେ, ଖବର କାଗଜ ବାହାର କରିଥିଲେ;ସାଲୁନ୍ ଲଣ୍ଡ୍ରି; ଦୋକାନ ବଜାରସବୁ ଏଠି ଥିଲା । ଜଳାଭାବ ହେବାରୁ ସେମାନେ ଗୋଟିଏ ନଦୀର ଗତିପଥ ବଦଳାଇ ନିଜ ସହର ଆଡ଼କୁ ବୁହାଇ ଆଣିଥିଲେ । ସେମାନଙ୍କ ଶୋଷ ଦୂର ହେଲା, କିନ୍ତୁ ଲୋଭ ବଢ଼ିଲା, ନଦୀ ସମସ୍ତ ଉର୍ବର ମାଟି ଧୋଇ ନେଇ ଲୁଚିଗଲା—ପଡ଼ି ରହିଲା ଖାଲି ଗୋଡ଼ି, ବାଲିଚିରଡ଼ା । ଶେଷ ଉପାସରେ ରକ୍‌ଭିଲେ ସହରର ସମସ୍ତେ ମରିଗଲେ; ଏବେ ଗୋଟିଏ ମାତ୍ର ଘର ସେହି ଖଣି ସହରର ମୂକ ସାକ୍ଷୀ ରୂପେ ରହିଅଛି ।

## ଡେଭିଲ୍‌ସ୍‌ ଟାୱାର

ଗୋଟିଏ ପାହାଡ଼ ସଙ୍ଗେ ଅବା ଶାଖାଗ୍ର ଏକ ବୃକ୍ଷର ଗଣ୍ଡି, ସଳଖ ହୋଇ ଉଠିଯାଇଛି ୮୬୫ ଫୁଟ୍, ବେଲ୍‌ଫୋର୍ଚ୍ଚ ନଦୀ କୂଳେ କୂଳେ । ମୂଳ ଏକ ହଜାର ଫୁଟ ଓସାର, ଅଗ୍ରଭାଗରେ ଦେଢ଼ ଏକର ଭୂମି ଅଛି, ତୃଣାଚ୍ଛାଦିତ, ଏଥିରେ ଛଞ୍ଚାଣମାନେ ରହନ୍ତି ।

## ଗୋଟିଏ ଲୋହିତଭାରତୀୟ ଗଳ୍ପ

ଏହି ପାହାଡ଼କୁ କେନ୍ଦ୍ର କରି ଗୋଟିଏ ଲୋହିତଭାରତୀୟ ଗଳ୍ପ ପ୍ରଚଳିତ ।

ସାତ ଭାଇ, ବଡ଼ଭାଇର ସ୍ତ୍ରୀକୁ ଗୋଟିଏ ଭାଲୁ ହରଣ କରି ନେଇ ଗୋଟିଏ ଗୁମ୍ଫାରେ ରଖିଲା, ତା ଜଙ୍ଘରେ ମୁଣ୍ଡ ଦେଇ ଶୋଇଲା । ସବା ସାନଭାଇ ଖୁବ୍‌ ସାହସୀ । ସେ ଭାଲୁକୁ ମାରି ଭାଉଜକୁ ଉଦ୍ଧାର କରିବା-ଲାଗି ନାନା ଉପାୟ ପାଞ୍ଚିଲା । କିନ୍ତୁ ମାରି ପାରିଲା ନାହିଁ । ଶେଷକୁ ନିଜ ଘରୁ ଭାଲୁର ଗୁମ୍ଫା ପର୍ଯ୍ୟନ୍ତ ଗୋଟିଏ ସୁଡ଼ଙ୍ଗ ଖୋଳିଲା । ସେ ବାଟେ ଚଳାଇ ଆସିବା ଲାଗି ଭାଉଜକୁ ପ୍ରବର୍ତ୍ତାଇଲା, ଭାଉଜ ଭାଲୁ ମୁଣ୍ଡ ତଳେ ଗୋଟିଏ କମ୍ବଳ ରଖି ଦେଇ ଘରକୁ ଚାଲିଆସିଲା । ଭାଲୁ ଉଠି ତାର ନେଣିଷ ସ୍ତ୍ରୀକୁ ଖୋଜି ନ ପାଇ କ୍ରୋଧରେ ଥରିବାକୁ ଲାଗିଲା । ବଡ଼ ଭାଇ କହିଲା—ଭାଲୁ ଦେହରେ ଶର ଭେଦିବ ନାହିଁ, ଖଣ୍ଡା ଭୁକିବ ନାହିଁ, ପଳାଅ, ନଇଲେ ସେ ଆମ ସମସ୍ତଙ୍କୁ ଖାଇଯିବ । ସାତ ଭାଇଯାକ ପ୍ରାଣ ବିକଳରେ ଏଇ ଡେଭିଲ୍‌ସ୍‌ ଟାୱାର ପାହାଡ଼ ଉପରକୁ ଉଠିଗଲେ ।

ଭାଲୁ ସଦଳବଳେ ଏଇ ଭାଇମାନଙ୍କୁ ଆକ୍ରମଣ କଲା, ଝାମ୍ପମାରି ପାହାଡ଼ ଉପରକୁ ଉଠିବାବେଳେ ସାନଭାଇ ତା ପାଟିକି ଲକ୍ଷ୍ୟ କରି ଇଗଲ ଶର ପ୍ରହାର କଲା । ସେଥିରେ ଭାଲୁ ମଲା; ତାକୁ ନେଇ ପୋଡ଼ିବା ବେଳେ ତା ପାଟିରୁ ଗୁଡ଼ାଏ ଇଗଲ ବାହାରିଲେ । ସେମାନଙ୍କୁ ନ ପୋଡ଼ିଲେ ଭାଲୁ ଜୀଇଁ ଉଠିବ ବୋଲି ଶୂନ୍ୟବାଣୀ ହେବାରୁ ଭାଇମାନେ ସେମାନଙ୍କୁ ଧରି ପୋଡ଼ି ଦେଲେ । ତାପରେ ଭାଲୁ ପାଟିରୁ ଗୁଡ଼ାଏ ମାଳି ଛିଟିକି ଚାରିଆଡ଼େ ପଡ଼ିଲା । ଭାଲୁ ଜୀଇଁ ଉଠିବ ବୋଲି

ସାନଭାଇ କହିବାରୁ ଅନ୍ୟ ଭାଇମାନେ ସେସବୁ ଗୋଟାଇ ନିଆଁରେ ପକାଇ ଦେଲେ । ଏହାପରେ ଭାଲୁ ପୋଡ଼ ଜଳି ପାଉଁଶ ହୋଇଗଲା । ତା ପରେ ଅନ୍ୟ ଭାଲୁମାନେ ଭାଇମାନଙ୍କୁ ମାରିବାକୁ ଆସିଲେ । ସେମାନେ ମ୍ୟାଣ୍ଡ-ଅଣ୍ଡିର ଦୁଇଟିକ ଘୁଡ଼ ସବୁ ଭାଲୁଙ୍କୁ ମାରଦେଲେ । ସେ ଦୁଇଟିଙ୍କର ମଧ୍ୟ କାନ, ଲାଙ୍ଗୁଡ଼ କାଟି ଦେଲେ । ସେଇ କାଳରୁ ଭାଲୁଙ୍କର କାନ, ଲାଙ୍ଗୁଡ଼ ଛୋଟ ହୋଇଯାଇଛି; କୁହାଯାଏ ।

## 'ରାପିଡ୍' ସିଟି

ସାଉଥଡ଼ାକୋଟାର ଗୋଟିଏ ବଡ଼ ସହର; ଏଇ ସହର ପାରି ହୋଇ ଆମେ ପାହାଡ଼ ଉପରକୁ ଉଠିଲୁ, ପାଇନ ବନେ ବନେ, ଜଙ୍ଗଲୀ ଗଛ ପରି ଏସବୁ ଶତସଂଖ୍ୟାରେ ମୋଡ଼ି ହୋଇ ପଡ଼ିଛି କାହିଁକ ? କେତେକ ଭାଙ୍ଗି ନାହିଁ; ଏକମୁହାଁ ଶୋଇ ପଡ଼ିଛି, କାହିଁକ ? ବନର ଗୋଟିଏ ପାଖ ଏପରି, ଅନ୍ୟ ପାଖର ବୃକ୍ଷ ଅକ୍ଷତ,ସ୍ଥିର ବୁଝୁ ବୁଝୁ ଗୋଟାଏ ଘୂର୍ଣ୍ଣିବାୟୁର କୀର୍ତ୍ତି ଏ । ସୁଅାଡ଼େ ଯାଉଛି, ଗଛବୃଛ ଶୁଆଇ ଦେଇ ଯାଉଛି ।

ତାପରେ ଆମେ ପାହାଡ଼ୀ ସହର 'କଷ୍ଟୋନ୍ 'ରେ ପହଞ୍ଚିଲୁ । ଝଣ୍ଡିସାରିଆ ରେଲ ଲାଇନ୍ ଯାଇଛି । ଏ ଅରଣ୍ୟରେ ନିଆଁ ଲାଗେ, ସ୍ଥାନେ ସ୍ଥାନେ ଲେଖା ହୋଇଛି— 'Help Forest Fires' । ପାଇନ ବନରେ ଗୋଟାଳିଆ ପଥରସବୁ ଲମ୍ବିଛି, ଛୁଞ୍ଚମୁନା ଶୃଙ୍ଗସବୁ ଉଠିଛି । ଗୋଡ଼ରେ ଅଭ୍ରଖଣ୍ଡସବୁ ଚକ୍ ଚକ୍ କରୁଛି । ଆମେ 'ନିଡଲ୍ସ' ପାହାଡ଼ ପାରି ହୋଇ ବ୍ଲାକ ହିଲସ୍‌ରେ ପହଞ୍ଚିଲୁ । ଏଇ ପାହାଡ଼ ସୁନା-ଖଣି ଲାଗି ପ୍ରସିଦ୍ଧ । ଯୁକ୍ତରାଷ୍ଟ୍ରର ଆଠ ଭାଗରୁ ଏକଭାଗ ସ୍ୱର୍ଣ୍ଣ ଏଠାରୁ ଆମଦାନୀ ହୁଏ । 'ଡେଡ୍‌ଉଡ଼୍' ସ୍ୱର୍ଣ୍ଣ ଖଣି ସହର; ନାନା ବ୍ୟବସାୟ ଯୋଗୁଁ ଏବେ ବଢ଼ି ଚାଲିଛି । ୧୮୮୦ ଖ୍ରୀଷ୍ଟାବ୍ଦର ପ୍ରାଚୀନ ରେଳଗାଡ଼ି ଏଠି ପ୍ରଦର୍ଶିତ ହୋଇଅଛି ।

## 'ରସ୍‌ମୋର୍' ଶୃଙ୍ଗ

ଶତାଧିକ ଫୁଟ ଉଚ୍ଚ ପାଇନ, କଳା ଝେଣ୍ଟଲ, ଘନଘଞ୍ଚ, ଲମ୍ବି-ଯାଇଛି ଉପତ୍ୟକା ତଳକୁ, ପୁଣି ଉଠିଛି ଶୃଙ୍ଗ ଉପରକୁ; ଶୃଙ୍ଗପରେ ଶୃଙ୍ଗ; ବହୁ ଶୃଙ୍ଗ, ମଧ୍ୟେ ମଧ୍ୟେ ଦିଶି ଯାଉଥାଏ ମୃତ ପାହାଡ଼ର ସେଇ ଗହ୍ୱରସବୁ, ଆମେ ଯାଇ 'ରସମୋର୍' ପାହାଡ଼ ପାଖେ ପହଞ୍ଚିଲୁ । ଏହି ଶୃଙ୍ଗ ଛ' ହଜାର ଫୁଟ ଉଚ୍ଚ, କଳା ମୁଗୁନିର ଗୋଟାକଆ ପଥର, ଏଥିରେ ଯୁକ୍ତରାଷ୍ଟ୍ରର ଚାରିଜଣ ବରିଷ୍ଠ ସଭାପତିଙ୍କ ମୂର୍ତ୍ତି ଖୋଦିତ ହୋଇଅଛି । ପ୍ରତ୍ୟେକଙ୍କ ମସ୍ତକର ଉଚ୍ଚତା ଷାଠିଏ ଫୁଟ୍, ଏହା ପ୍ରାୟ ସ୍ଫିଙ୍କ୍‌ସର ଦୁଇ ଗୁଣା ହେବ । ଏଇ ମୂର୍ତ୍ତି ସବୁ ଲକ୍ଷେ ବର୍ଷ ଅକ୍ଷୁଣ୍ଣ ରହିବ ବୋଲି ଭୂତତ୍ତ୍ୱବିତ୍‌ମାନେ କହିଥାନ୍ତି ।

ଯୁକ୍ତରାଷ୍ଟ୍ରର ପିଲାମାନେ ପେନି, ନିକେଲ୍, ଡାଇମ୍, ଯେ ଯାହା ହେଲେ ଚନ୍ଦା ସଂଗ୍ରହ କରିଥିଲେ । ଆମେରିକାର ବଣିକ ସମ୍ପ୍ରଦାୟ କିଛି କିଛି ଦାନ ଦେଇଥିଲେ । କିନ୍ତୁ ଅଧିକାଂଶ ବ୍ୟୟଭାର ବହନ କରିଥିଲେ ଯୁକ୍ତରାଷ୍ଟ୍ରର ସରକାର । ଏଥିରେ ମୋଟରେ ଦଶଲକ୍ଷ ଡଲାର୍ ବ୍ୟୟିତ ହୋଇଥିଲା । ୧୯୪୧ ଖ୍ରୀଷ୍ଟାବ୍ଦରେ ଏହାର ନିର୍ମାଣକାର୍ଯ୍ୟ ଶେଷ ହେଲା ।

## ଚତୁର୍ଦ୍ଧା ମୂର୍ତ୍ତି

ଚାରିଜଣ ସଭାପତି ଯେପରି ମହତ୍, ସେମାନଙ୍କ ମୂର୍ତ୍ତି ସେହିପରି ବୃହତ୍ ହେବା ଉଚିତ; ସେମାନଙ୍କୁ ଦେଖିବା ମାତ୍ରେ ବୃହତ୍ତ୍ୱ ଓ ମହତ୍ତ୍ୱର ଅନୁଭବ ଆସିବା ଉଚିତ । ଯେଉଁ ସ୍ଥାନରେ ସେମାନଙ୍କ ଶ୍ରୀମୁଖ ଖୋଦିତ ହେବ, ସେ ସ୍ଥାନର ସେହିପରି ପ୍ରାକୃତିକ ମାହାତ୍ମ୍ୟ ଥିବା ଆବଶ୍ୟକ । ପରିବେଶର ଅନୁଭବ କରି ନ ପାରିଲେ ସେହି ମହାତ୍ମାମାନଙ୍କ ବ୍ୟକ୍ତିତ୍ୱ ହୃଦୟଙ୍ଗମ କରିବା ସମ୍ଭବ ନୁହେ । ତେଣୁ ବହୁ ପର୍ବତ ମଧ୍ୟରେ ରସେମୁର୍‌କୁ ପ୍ରସିଦ୍ଧ ଐତିହାସିକ ଡୋନ୍ ରବିନ୍‌ସନ୍ ବାଛିଲେ । ରସେମୁର୍ କ୍ରୋଶ କ୍ରୋଶ ବ୍ୟାପୀ ପର୍ବତମାଳା, ଘନ ପାଇନ୍ ବନରେ ଆଚ୍ଛନ୍ନ, ଏହାର ଊର୍ଦ୍ଧ୍ୱଦେଶ ଲଣ୍ଡିତ, ସୂର୍ଯ୍ୟରଶ୍ମିରେ ଆଲୋକିତ ।

ବୋରଗ୍ଲମ୍ ନାମକ ଶିଳ୍ପୀ ଏହି ଚତୁର୍ଦ୍ଧା ମୂର୍ତ୍ତିର ନିର୍ମାତା । କଳା ତାଙ୍କ ଜୀବନର ଏକ ଖିଆଲ୍ ଥିଲା । କଳା ଶିକ୍ଷା ଲାଗି ସେ ଘର ଛାଡ଼ି ପଳାଇ ଯାଇଥିଲେ । ୧୯ ବର୍ଷ ବୟସରେ ନିଉୟର୍କରେ ସେ ଗୋଟିଏ ଷ୍ଟୁଡ଼ିଓ ନିର୍ମାଣ କଲେ । ଏହି ମୂର୍ତ୍ତି ନିର୍ମାଣ କଲା ବେଳକୁ ଶିଳ୍ପୀ ହିସାବରେ ତାଙ୍କ ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପି ଯାଇଥିଲା । ଇଟାଲୀୟ ଶିଳ୍ପୀ ଭିଞ୍ଚିଙ୍କ ପରି ସେ ଏକାଧାରରେ କବି, ସ୍ଥପତି, ଶିଳ୍ପୀ, ନେତା, ବକ୍ତା, ଉଦ୍ଭାବକ ଓ ଇଞ୍ଜିନିଅର୍ ଥିଲେ । ୧୯୨୭ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇ ଏହି କାର୍ଯ୍ୟ ୧୯୪୧ରେ ଶେଷ ହୋଇଥିଲା । କାର୍ଯ୍ୟ ଶେଷ ହେବାର ସାତ ମାସ ଆଗରୁ ଶିଳ୍ପୀଙ୍କ ଦେହାନ୍ତ ହୋଇଥିଲା । ତାଙ୍କର ଯୋଗ୍ୟ ପୁତ୍ର ଲିଙ୍କନ, ଏହି କାର୍ଯ୍ୟ ଶେଷ କରିଥିଲେ ।

ଜର୍ଜ ଓ୍ୱାଶିଂଟନ୍ ଦେଶକୁ ସ୍ୱାଧୀନ କରିଥିଲେ । ସେ ଯୁକ୍ତରାଷ୍ଟ୍ରର ପ୍ରଥମ ସଭାପତି; ଜାତିର ପିତା । ୧୭୮୭ ଖ୍ରୀଷ୍ଟାବ୍ଦରେ ତାଙ୍କ ସଭାପତିତ୍ୱରେ ଆମେରିକାର ସମ୍ବିଧାନ ଗୃହୀତ ହୋଇଥିଲା । ତାଙ୍କର କ୍ରିୟାଶୀଳ ବ୍ୟକ୍ତିତ୍ୱ, ସାଧୁତା ଓ କର୍ମନିପୁଣତା ସଭାପତି ଆସନକୁ ସର୍ବଶ୍ରେଷ୍ଠ ମର୍ଯ୍ୟାଦା ପ୍ରଦାନ କରିଥିଲା ।

ଥୋମାସ୍ ଜେଫରସନ୍ ଆମେରିକାକୁ ଧର୍ମାତ୍ମକ ସ୍ୱାଧୀନତା ଦେଇଥିଲେ, ସେ ଭର୍ଜିନିଆ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ, ଲୁଇସିଆନା ପ୍ରଦେଶ କ୍ରୟ କରିଥିଲେ; ପରେ ଏହା ତେରୋଟି ପ୍ରଦେଶରେ ବିଭକ୍ତ ହୋଇଥିଲା । ଏହାଙ୍କ ସମୟରେ ଆମେରିକା ବିଶାଳ ଆକାର ଧାରଣ କରିଥିଲା । ସେ ଆଧୁନିକ ଆମେରିକାନ୍ କଳା ଓ ସ୍ଥାପତ୍ୟର ମୁଖ୍ୟ ମନ୍ତ୍ରଦାତା ଥିଲେ ।

ଅବ୍ରାହାମ୍ ଲିଙ୍କନ ଆତ୍ମନିର୍ଭରଶୀଳ, ସ୍ୱଭାଗ୍ୟନିର୍ମାତା; ବିପଦରେ ନିର୍ଭୀକ, ଦୃଢ଼ କର୍ତ୍ତବ୍ୟନିଷ୍ଠ; ସେ ଯୁକ୍ତରାଷ୍ଟ୍ରର ଉତ୍ତର ଓ ଦକ୍ଷିଣାଂଶ ମଧ୍ୟରେ ଐକ୍ୟ ଆଣିଥିଲେ; ସେ ନିଗ୍ରୋଙ୍କ ମୁକ୍ତିଦାତା ।

ବିଂଶ ଶତାବ୍ଦୀରେ ଆମେରିକାର ସର୍ବାଙ୍ଗୀଣ ଉନ୍ନତି ମୂଳରେ ଥିଓଡର ରୁଜ୍‌ଭେଲ୍‌ଟଙ୍କ କ୍ରିୟାଶୀଳ ବ୍ୟକ୍ତିତ୍ୱ ବିଦ୍ୟମାନ । ସେ

ଅହଙ୍କାରକ, କଣ୍ଟକାରକ, ଦୃଢ଼ ଶାସକ । 'ପୃଥିବୀ ଆମେରିକାବାସୀଙ୍କ ଉପରେ ଭରସା ରଖିଛି, ସେ ଭରସା ଆମେ ବୁଡ଼ାଇବୁ ନାହିଁ । ଆଗାମୀ ବର୍ଷମାନଙ୍କର ଭାଗ୍ୟର ଗୁହା ଆମ ହାତରେ ରହିଛି; ଆମେ ସେ ଦାୟିତ୍ୱ ତୁଲାଇ ନ ପାରିଲେ ନିନ୍ଦିତ ଓ ଲଜ୍ଜିତ ହେବୁ ।" ଏ ତାଙ୍କର ବାଣୀ ।

ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ଲାଗି ଏଠାକୁ ହଜାର ହଜାର ଯାତ୍ରୀ ଆସୁଛନ୍ତି, ଗ୍ରୀଷ୍ମ ଶରତରେ ମେଳା ଲାଗି ରହିଛି । ନାନା ଦୋକାନପସର ଖୋଲିଛି, ସରକାର କପଟ ଦେଶାତ୍ମବୋଧର ପ୍ରଦୀପ ଶିଖା ଅନ୍ତରେ ଅନ୍ତରେ ଜାଳି ରଖୁଛନ୍ତି, ତାହା ଦେଖିବାର କଥା । ବ୍ଲାକ୍ ହିଲ୍ସ୍ ସଂରକ୍ଷିତ ଜାତୀୟ ଅରଣ୍ୟ; ଭ୍ରମଣକାରୀଙ୍କର ଏକ ଆନନ୍ଦ ଧାମ । ଜୀବନ ଜୀବନର ଶତାବ୍ଦୀ ଉପରେ ଅଶ୍ରୁର ଅର୍ଘ୍ୟ ଢାଳି ଦେଇ ଯାଉଛି, ଜୀବନ ଜୀବନେ ଜୀବନେ ଲଗାଇ ଦେଉଛି ମହତ୍ତ୍ୱର ନିଶା । ସେଇ ମହତ୍ତ୍ୱରେ ମାନମର୍ଯ୍ୟାଦା ହଜାଇ ଅସୁଥିଲେ ଶୃଙ୍ଗର ସୋପାନେ ସୋପାନେ, ଅରଣ୍ୟର ଆଶ୍ରମରେ ଶାନ୍ତ ମାଧୁରୀ । ଆମେ ସେଠାରୁ ଷାଠିଏ ମାଇଲ ଡ୍ରାଇଭ୍ କରି ଯାଇ ରହିଲୁ 'କୁଷ୍ଟର' ସହରର 'ରକେଟ୍' ମୋଟେଲରେ ।

## କୁଷ୍ଟର୍

କୁଷ୍ଟର୍ ଏକ ପାହାଡ଼ୀ ସହର, ବନବେଷ୍ଟିତ । କିନ୍ତୁ ପାହାଡ଼ ଗୁଡ଼ିକ ଲଣ୍ଡା । ରକେଟ୍ ମୋଟେଲର ମ୍ୟାନେଜର୍ ଜଣେ ନାରୀ; ଅପରିଚ୍ଛନ୍ନ ମୋଟେଲ୍ ଡାକେ ବାଟ । ଶ୍ରୀମତୀ ଜଣିକଆ ମଟର ଚଳାଇ ମୋଟେଲ୍‌କୁ ଗଲେ, ସମସ୍ତଙ୍କ ଲାଗି ଶଯ୍ୟା ବ୍ୟବସ୍ଥା କରି ଫେରି ଅଇଲେ । ଗ୍ଲେଟ ଦୁଇଟି ବଟେର ଲାଗି ଆମକୁ କୋଡ଼ିଏ ଡଲାର ପରିଶ ଦେଣ ହେଲା । ଲାଲ୍ ଶୀତଳ ଖରା ପାହାଡ଼କୁ ସଜାଉଥିବା ବେଳେ ଆମେ ବାହାରିଲୁ । ଜନିଷପଥ କାଡ଼ିବା, ବାନ୍ଧିବା, ନନ୍ଦିବା ଗୋଟିଏ ହୁଡ଼ମେତ ହେଙ୍ଗାମ୍ । ଇଗର ବେକରେ ଚକ୍କା ପଡ଼ିଛି, କିନ୍ତୁ ତା'ର ଭିତରେ କାମ କରିବାକୁ ହେବ, ଉପାୟ ନାହିଁ । ପିଲାମାନେ ସେ ବେଦନା ବୁଝିବେ କଣ ? ମାଆ ହାଙ୍ଗେ ଲାଗେଇଥାନ୍ତି, ଡାଡ଼ଇଥାଏ

ବେଶୀ ନୀର; ମାଆଙ୍କ ଧୈର୍ଯ୍ୟ ଇସ୍ପାତରେ ଗଢ଼ା, କିଛି କହୁ ନ ଥାଏ ସେ । ବାଟଯାକ ହେଁ ହାଁ ହୁଁ, କେତେ ପ୍ରକାର ଶବ୍ଦ ହେଉଥାଏ, କେତେ ଛଟା ଗଳୁଥାଏ; ଶେଷକୁ ଇଞ୍ଜିନ ଟିକିଏ ହାତ ଢିଲେଇ ଦେଲା, ସେତିକିରେ ମୀଟର ଅପସରି ଲୁହ ବୋହିଗଲା, ସ୍ୱର କର୍କଶତମ ସ୍ତରକୁ ଉଠିଲା, କିନ୍ତୁ କ୍ରମେ ଝିମେଇଗଲା; କେତେ ଘଣ୍ଟା ଲାଗି ଅବସ୍ଥା ଶାନ୍ତ ପଡ଼ିଲା ।

ତାପରେ ପୁଣି ଆମେ ଚଢ଼ିଲୁ—ପାହାଡ଼ ପରେ ପାହାଡ଼— । ପବନ ତରୁଣ ପାଇନ୍ ଶାଖାକୁ ଚଞ୍ଚଳିତ କରୁଥାଏ । ବନପଥ କ୍ରମେ କ୍ଷୀଣତର ହେବାକୁ ଲାଗିଲା । ତଥାପି ଆମର ଗତି କ୍ଷିପ୍ର; ଅଟକିବାର ଅବସର ନାହିଁ । କେବଳ ଦୌଡ଼ । ତେଣୁ ଏଥିରୁ ଆଖିବୁଲାଇଟି ଯେତେ ପାରେ ମନରେ ସଞ୍ଚୟ କରି ନେଉଥାଏ । ସେଥିରୁ କେତେ ମଧୁ, କେତେ ଘୃଣା, କହିବା କଷ୍ଟ । ସ୍ୱାଗଫାଉଣ୍ଡ ମୋର ଲକ୍ଷ୍ୟ । କିନ୍ତୁ ତା ସଙ୍ଗେ କେତେ ରଙ୍ଗୀନ୍ ବାଲିଗିରଢ଼ା, ଅକର୍ମଶୀଳା ଯେ ଉଠି ଆସୁଥିବ, କିଏ କହିବ ? ଆଖିରେ ଚମକ ନ ଲଗାଇଲେ ଏ ଦୃଶ୍ୟ ମଧ୍ୟରେ ବିଚିତ୍ରକର କିଛି ନାହିଁ—ଜୁନିପର ବାଡ଼, ଝୟମାସ୍ କୁଞ୍ଜ ବା ଧୂସର ଘାସ, ମୃତ ନଦୀର ବାଲୁକା ବା ସୁଦୂର ଅଞ୍ଚଳର ଆଗ୍ନେୟ ଗିରିର ଭସ୍ମ—ସବୁ ସୁନ୍ଦର, ଯେହେତୁ ଆଖି ପ୍ରଥମେ ଦେଖୁଛି, ମନ ପାଉଛି ତାର ପ୍ରଥମ ସ୍ୱାଦ ।

ସାଉଥ୍ ଡାକୋଟାରୁ ଆମେ 'ଓ୍ୱାଇଓମିଙ୍ଗ୍ ପ୍ରଦେଶରେ ପ୍ରବେଶ କଲୁ । ଯୋଡ଼ାମାଟି, ଚୂନମାଟି, ମଳି ଘାସ, ତେଜ ତେଜିକା କୁନ୍ଦ, ଅପନ୍ତରା ଗହ୍ୱର, ଜନ ମାନବ ଶୂନ୍ୟ, ତରୁ ଗୁଳ୍ମହୀନ, ଅଭିଶପ୍ତ ଅଞ୍ଚଳ; ତା ମଧ୍ୟରେ 'ନାଇଜାସଲ୍' ସହର—କେବଳ ଭ୍ରମଣକାରୀଙ୍କ ଯୋଗୁଁ ଗଢ଼ି ଉଠିଛି । ଗୋଟାକେତେ କାରଖାନା ଏଠି ସେଠି ବସୁଛି, ରେଲ୍‌ଲାଇନ୍ ପଡୁଛି । ତାପରେ ପଡ଼ିଲା 'ଓସେଜ୍' ସହର; ଗହ୍ୱରରେ କାଁ ଭାଁ ଗୋଟାଏ ଗୋଟାଏ ବେଣାବୁଦା, ଶୁଖିଲା ଘାସ; ମୃଗ ଚରୁଛନ୍ତି, କୋଉଠି ଗୋଟାଳିଆ ପଥରଭୂଇଁ, ଆବଖାବଡ଼ିଆ, ଖାଲଢିପ । ସ୍ଥାନେ ସ୍ଥାନେ ଏ ଗହ୍ୱରରେ ବନ୍ଧ ପକାଇ ପାଣି ଜମେଇ ରଖା ହୋଇଛି; ସ୍ଥାନୋପଯୋଗୀ ବୃକ୍ଷ ରୋପଣ କରା ଯାଉଛି, ମୃତ୍ତିକା କ୍ଷୟରୁ ରକ୍ଷା କରିବା ଲାଗି । ପରେ ହୁଏତ ଗୃହ ବ୍ୟବସ୍ଥା ହେବ ।

ଆଗ୍ନେୟଗିରିର ସେହି ଭସ୍ମମାଟି, କାଳ ତାକୁ ଏବେ ବି ଲିଭାଇ ପାରିନାହିଁ—ରଙ୍ଗ ହୁଏତ କିଛି ଫିକା ପଡ଼ି ଯାଇଛି । 'ଅପ୍‌ଟନ', ତାପରେ 'ମୁର୍‌କ୍ରାଫ୍ଟ' ସହର ପଡ଼ିଲା—ବର୍ଷା କାଳରେ ଜଳଧାରାର ଚିହ୍ନ ଇତସ୍ତତ ଅକ୍ଷୁଣ୍ଣ ରହିଛି, ଗୋଟି ଗୋଟିକିଆ ଗଛ ମାଟିକୁଢ ଉପରେ; ନୂଆ କାରଖାନା ଗଢ଼ି ଉଠୁଛି, ଘୋର ଅପନ୍ତରାରେ । ଦୃଷ୍ଟି ବୁଲାଇ ନେଇ ନେଇ ସହରଟି ଅତିକ୍ରମ କରିଗଲୁ । ଏଠି ଡ୍ରିଲିଂ ଚାଲିଛି, କେତେକ ତୈଳକୂପର ସନ୍ଧାନ ମିଳିଛି ବୋଲି । ପାଇପ୍ ବସୁଛି; ତରଳ ସୁବର୍ଣ୍ଣ ଯୋଗୁଁ ଏଇ ମରୁଭୂମି କ୍ରମେ ଜନ ବହୁଳ ହୋଇ ଉଠୁଛି । ଏଠି କୋଇଲା ଖଣିର ସନ୍ଧାନ ମଧ୍ୟ ମିଳିଛି । ମାଟି ଧୋଇ ହୋଇ ଯେଉଁଠି ଖାଲ ମାନଙ୍କରେ ଜମୁଛି, ସେଠି କିଛି କିଛି ଚାଷର ବ୍ୟବସ୍ଥା ମଧ୍ୟ ହେଉଛି ।

'ଜିଲେଟ୍' ପୂରାପୂରି ଏକ ତୈଳ ସହର । ଏଠି ବସ୍ତୁର ତୈଳ ଆମଦାନୀ ଓ ରପ୍ତାନୀ ଚାଲିଛି । ଏଠି ବହୁ ଅଶ୍ୱାରୋହୀ ଓ ଅଶ୍ୱାରୋହିଣୀ ଆସି ପହଞ୍ଚିଛନ୍ତି । 'ରୋଡିଓ' ପ୍ରତିଯୋଗିତା ହେବ । ଚାରଣ ଭୂମି ପ୍ରଚୁର ଥିବାରୁ ଅଶ୍ୱପାଳନ ସହଜ; ଅଶ୍ୱାରୋହଣ କୌଶଳ ଶିକ୍ଷା ଦେବା ଲାଗି ବହୁ ବିଶେଷଜ୍ଞ ରହିଛନ୍ତି ।

ଏକା ଦୃଶ୍ୟର ପୁନରୁକ୍ତି—ପୁଣି ସେଇ ନାନା ଧାତୁ ରଞ୍ଜିତ ଶୁଷ୍କରୁକ୍ଷ ପାହାଡ଼ମାଳା, ମରୁ ପ୍ରାନ୍ତର । ଦୃଶ୍ୟ ପଟ ବଦଳିଲା, ଆମେ ଯେତେବେଳେ 'ବଫଲୋ' ସହରରେ ପହଞ୍ଚିଲୁ, ଏହାର ଭୂମି ଶ୍ୟାମଳ ତୃଣାଚ୍ଛନ୍ନ; ଚତୁର୍ଦ୍ଦିଗର ଶୃଷ୍ଟ ପରିପ୍ରେକ୍ଷୀରେ ଘନନୀଳ ପର୍ବତ ମାଳା, ଇତସ୍ତତଃ ରୋପିତ ବୃକ୍ଷପୁଞ୍ଜ । ଏଇ ବଫଲୋ ନାଏଗ୍ରା 'ବଫ୍‌ଲୋ'ଠୁ ଭିନ୍ନ, 'କ୍ଲାଉଡ୍‌ପିକ୍' ପର୍ବତ (୧୩, ୧୭୫ ଫୁଟ ଉଚ୍ଚ) ମୂଳରେ ଅବସ୍ଥିତ; ନିକଟରେ ପାଉଡ଼ର ନଦୀ ପ୍ରବାହିତ । ଏହି ନଦୀ କୂଳରେ ଶ୍ୱେତାଙ୍ଗ ଅଶ୍ୱାରୋହୀ ବାହିନୀ ସହିତ ଲୋହିତଭାରତୀୟମାନଙ୍କର ଘୋର ଯୁଦ୍ଧ ହୋଇଥିଲା; ଲୋହିତଭାରତୀୟମାନେ ସମ୍ପୂର୍ଣ୍ଣ ରୂପେ ପରାସ୍ତ ହୋଇଥିଲେ । ଶ୍ୱେତାଙ୍ଗ ସେନାପତିଙ୍କ ନାମାନୁସାରେ ଏହି ରଣକ୍ଷେତ୍ରର ନାମ 'ଡଲ୍ ନାଇଫ୍' ନାମିତ ହୋଇଅଛି ।

ଏଇ ସହରର ଲୋକସଂଖ୍ୟା ମାତ୍ର ତିନିହଜାର । ସୋରିଷଫୁଲ ପଣ୍ଡ କ ଫୁଲସବୁ ଫୁଟିଛି; ଗୋଟିଏ ଗୋଟିଏ ତରଙ୍ଗ ଉଠୁଛି ତୃଣ ପ୍ରାନ୍ତରରେ, ମାଉଣ୍ଟେନ୍‌ର ନଗ୍ନ ହାଓ୍ୱାରେ ଉଲ୍ଲସିତ; ମରୁଶ୍ରାନ୍ତ ବସ୍ ଟିକିଏ ବିଶ୍ରାମ କଲା । ମିନିଟିକ ମଧ୍ୟରେ ଏହି ସହର ଅତିକ୍ରମ କରି ଆମେ 'ବିଗ୍‌ହର୍ନ' ପର୍ବତମାଳାର ପାଦଦେଶରେ ଆସି ପହଞ୍ଚିଲୁ—ବିଗ୍‌ହର୍ନ ଅଞ୍ଚଳ ଦଶଲକ୍ଷ ଏକରରୁ ଅଧିକ, ସଂରକ୍ଷିତ । ବହୁ ଯତ୍ନରେ ବୃକ୍ଷ ରୋପଣ କରାଯାଇ ଏହି ରୁକ୍ଷ ପର୍ବତକୁ ଶ୍ୟାମଳ କରାଯାଉଛି । ଅଧିକାଂଶ ଲଣ୍ଡିତ, ବିପୁଳ ପ୍ରସ୍ତରମୟ ବିକଟ ସଙ୍କଟ, ମଧ୍ୟାହ୍ନ ରୌଦ୍ରରେ ଭୟଙ୍କର । ଏଇ ରୁକ୍ଷତାରେ ଶ୍ରୀ ଅଛି; ତାକୁ ଉପଭୋଗ କରିବା ଲାଗି ରସିକମାନେ ଆସନ୍ତି । ନଦୀ ବା ପ୍ରପାତ ନିକଟବର୍ତ୍ତୀ ନିକୁଞ୍ଜ ମଧ୍ୟରେ ନିର୍ମିତ ହୋଇଛି ମୋଟେଲ୍; ପାହାଡର ମରୁଭୂମିରେ ପ୍ରସ୍ତରିତ ନିର୍ଜନତା, ଗହ୍ୱରକୁ ଅନାଇଲେ ଭୁଙ୍ଗ ଭୁଙ୍ଗ ତରଙ୍ଗ ଧବୁ ଧଡ଼ିଶ, କଙ୍କର, ଉପଲ-ମୟ ପାଂଶୁଳ ଧଙ୍ଗଳ ମୃତ୍ତିକାର; ଏ ଏକ ଅଦ୍ଭୁତ ସ୍ୱାଦ, ଶୂନ୍ୟତାର ଶୁଷ୍କତାର, ଅତି ରୁକ୍ଷ ବିପୁଳତାର, ରସିକ ମନ ଖୋଜିବାକୁ ଚାହେଁ; ବୈରାଗ୍ୟର, ନିଃସଙ୍ଗତାର, କଠୋର ତପସ୍ୟାର ଏ ଅନୁଭବ ଅନ୍ୟତ୍ର ମିଳିବ କାହିଁ ?

ଏଇ ପର୍ବତର ଅନ୍ୟ ଏକ ଶାଖା ଶୃଙ୍ଗ ତୁଷାରରେ ଶୁଭ୍ର ଦିଶୁଛି, ମଧ୍ୟ ଭାଗରେ ତାର ଶୋଭିତ ଉଦ୍ୟାନ, ତୃଣଭୂମି, କ୍ଷୁଦ୍ର ପ୍ରପାତଟିଏ, ପାଖରେ ତାର କ୍ରିସ୍‌ମାସ୍, ପାଇନ୍ ନିକୁଞ୍ଜ, ଝରଣାଟି ଝର ଝର ଯାଉଛି, ଏଇ ରୁକ୍ଷତାକୁ ସଙ୍ଗୀତରେ ସରସ କରି । ଶୁଷ୍କ ବୃକ୍ଷସବୁ ଜାଳି ଦିଆ ହେଉଛି । ସ୍ଥାନକୁ ଉର୍ବରତର କରିବା ଲାଗି । ପାଇନ୍ କାଠର ବେଞ୍ଚରେ ବସି ଡେସ୍କ ଉପରେ ଆମେ ଲଞ୍ଚ ଖାଇଲୁ—ସାଣ୍ଡୱିଚ୍, ସାଲାଡ୍, ଦୁଧ । ଗୁଣ୍ଡୁଚିମୂଷାଟିଏ କୋଉଠି ଥିଲା, ଆସି ଆମ ସାଥିରେ ବେଞ୍ଚରେ ବସିଲା । କେତେ ଲୋକଙ୍କ ସଙ୍ଗେ ଲଞ୍ଚରେ ସେ ଅଂଶ ଗ୍ରହଣ କରି ଆସିଛି । ଡରଭୟ ତାର ନାହିଁ । ସ୍ନେହସୋହାଗରେ ଲାଳିତ । ଖଣ୍ଡିଏ ପାଉଁରୁଟି ଦେଲାରୁ ସେ ତାକୁ କାମୁଡ଼ି ଦେଇ ଚାଲିଗଲା । ଶୁଖିଲା ପାଇନ୍ ପତରର ଗଦା ଉପରେ ଗୁଲୁ ବୁଲୁ ଦେଖିଲି—ଦଳେ ପ୍ରଜାପତି

ଉଡ଼ ଯାଉଛନ୍ତି । 'ବଗ୍‌ଦନ' ବୋଲି ଜଣେ ରୁଷ ସହିତ । ଗୋଟିଏ ଝିଣ୍ଟିକା ଉଡ଼ିଲା ବେଳେ ଶବ୍ଦ କରୁଛି—ଟିଙ୍—ଟିଙ୍—ଟିଙ୍ ।

ମାଟିଆ ମେଘସବୁ ବସୁଥାଏ, ଆବୁଆବୁଆ ପାହାଡ଼ ଉପରେ ମୁଣ୍ଡ ପଥର ନଦୀ ହୋଇ ପଡ଼ । କଅଁଳା ବାଛୁରୀ ଦୁଧ ପିଉଛି ଲାଙ୍ଗୁଳ ଘୁଞ୍ଚି ଘୁଞ୍ଚି, ଗାଈ ତାକୁ ଚାଟୁଛି, ଠିକ୍ ଆମ ଆଡ଼ ପରି । ସ୍ନେହବଞ୍ଚିତ, ହତଭାଗ୍ୟ ହାଁଣ ମୁହଁକୁ ପଠା ହୋଇଥିବା ବଳଦ ବସ୍ତରଙ୍କ ଛଳ ଆଖି ଆଗରେ ନାଚିଗଲା ମୋର ।

ପିଲାମାନେ ପଢ଼ାପଢ଼ି ବିପ୍ଳବ କଲେ—ଝଗଡ଼ାରେ ଆରମ୍ଭ ତାର । ସୁଇନ୍ ପ୍ରଥମ କାକୁଆଲିଟି ମିଗ୍; ତାର ଆକ୍ରମଣ ନାହିଁ କି ଆତ୍ମରକ୍ଷା ପ୍ରୟାସ ନାହିଁ । କେବଳ ସାହାଯ୍ୟଭିକ୍ଷା—ପିତାମାତାଙ୍କୁ ଆପିଲ୍— ରକ୍ଷାକର, ନଇଲେ ମୋ କଥା ସଇଲା । ଆପିଲ ନ ଶୁଣିଲେ କ୍ରନ୍ଦନ କର୍ଣ୍ଣଭେଦୀ ରୂପ ଧାରଣ କରେ, ଶୁଣିବାକୁ ବାଧ୍ୟ । ମଟରର ଡ୍ରଷ୍ଟକୁ କୋଠରୀଟି ହୋଇଥାଏ ରଣରଙ୍ଗ—ଯୁଦ୍ଧ ଶାନ୍ତି, ଶାନ୍ତି ଯୁଦ୍ଧ । ଯୁଦ୍ଧ କରୁ କରୁ ବେଳେ ବେଳେ ମୋ ପିଠିରେ ଆସି ପଡ଼ନ୍ତି । ମୋର ପ୍ରକୃତି ଧ୍ୟାନ ଭାଙ୍ଗିଯାଏ । ବେଳେ ବେଳେ ପିଲାଙ୍କ ପ୍ରତି ମନ ସମବେଦନାରେ ପୂରିଉଠେ—ପାହାଡ଼ ପର୍ବତ କେବେ ସେମାନେ ଦେଖିବେ ? ସେଇସବୁ ପରିଚିତ ଖେଳଣା ସେମାନେ କେବେ ବା ଖେଳିବେ ? ହେଇ ଦେଖ ମୁଜ୍, ହେଇ ଦେଖ ବାଇସନ୍, ହେଇ ଦେଖ ଏଲ୍‌କ, ହେଇ ଦେଖ ପ୍ୟାରି-କୁକୁର, ଏବେ ଦେଖାଇଲେ ସେମାନେ ଦେଖୁନାହାନ୍ତି । ମୋ ଲାଗି ସେମାନେ ଆସିଛନ୍ତି, ମୋ ଦେଖା ଯୋଗ୍ୟ ଦୃଶ୍ୟ ଦେଖୁଛନ୍ତି; ସବୁଠି ଖେଳଆଖାନା, ପୋଖରୀ ବା ସ୍ୱିମିଂ ପୁଲ୍ ନାହିଁ । ଚଳନ୍ତି ଗାଡ଼ିରେ ସେମାନେ ଦିନକୁ ପାଞ୍ଚଶ ଛ'ଶ ମାଇଲ ଯାଉଛନ୍ତି । ମୋଟେଲରେ ରାତି ଯାପନ କରୁଛନ୍ତି, ସବୁଠି ସ୍ୱତନ୍ତ୍ର ଶଯ୍ୟା ନାହିଁ । ଗୃହର ସ୍ୱାଚ୍ଛନ୍ଦ୍ୟ ଦୁର୍ଲଭ । ତେବେ ଆମେରିକା ଜୀବନ ତ ଏଇଆ । କର୍ଣ୍ଣିକଥା ଛୁଆକୁ ସୁଦ୍ଧା ମାଆମାନେ ନେଇଥାନ୍ତି । କେଉଁଠି କେଉଁ ଜିନିଷର ଅଭାବ ନାହିଁ । ସୁଖ ସ୍ୱାଚ୍ଛନ୍ଦ୍ୟର ବ୍ୟବସ୍ଥା ସର୍ବତ୍ର । ଭ୍ରମଣ ସ୍ୱାସ୍ଥ୍ୟଦାୟୀ, ଶାନ୍ତିଦାୟୀ । ପ୍ରାୟ ସବୁ ଶ୍ୱେତାଙ୍ଗ ପରିବାର ଭ୍ରମଣରେ ଯାନ୍ତି ।

ପିଲାଏ ମଝିରେ ଗୋଟିଏ ଗୋଟିଏ ଇଂରେଜୀ ଗୀତ ଆବୃତ୍ତି କରୁଥାନ୍ତି, ଇବା ମଧ୍ୟ ଶୁଣାଉଥାଏ—

Bless my little kitchen Lord,
I love its every nook
And bless me as I do my work
Wash pots, pans & cook
May the meals that I prepare
Be seasoned from above
With the blessing of Thy grace
But most of all, Thy love.

କଣ୍ଠୁ ଗୀତ ନ ଫୁଟିଲେ ପିଲାମାନେ 'ମମି', 'ମମି', ଗାଇ ବୁଲୁଥାନ୍ତି—ମାଆ,ମାଆ, ଅଦ୍ଭୁତ ସେ ଡାକର ସ୍ୱାଦ, ଚିର ନୂତନ, ଚିର ଶାନ୍ତିପ୍ରଦ ।

ନଣ୍ଡା ନଣ୍ଡା ବୃକ୍ଷର ଅସରନ୍ତି ପ୍ରବାହ; ତା ଉପରେ ଚଞ୍ଚାଣ ଚକ୍କର ଦେଲେ, ବୃକ୍ଷ ଉପରେ ପେଚକ ବସିଲେ କିପରି ଦିଶନ୍ତା ? ଘୂର୍ଣ୍ଣି ବୁଲିଲେ ମଶାଣଚଢ଼ା ନୃତ୍ୟ କଲେ କିପରି ଦେଖାଯାନ୍ତା ? ଏଇ ଦୃଶ୍ୟ ଦିଶନ୍ତା ଚୂଡ଼ାନ୍ତ ଭାବେ କର୍କଶ, କଠୋର ।

ଏଇ ରୁକ୍ଷ ପରିବେଶ ମଧ୍ୟରେ ଗୋଟିଏ ହ୍ରଦ, ଆମ ରାସ୍ତାର ଅନେକ ତଳେ, ଭ୍ରମଣକାରୀଦଳ ନୌକାଯାତ୍ରା କରୁଛନ୍ତି, କୂଳପାଖେ ପାଇନ୍ ବନ, ହ୍ରଦକୁ ଦେଇଛି ଏକ ମୂର୍ତ୍ତ ରସ ରୂପ । ହୃଦୟ ନାଚି ନାଚି ଯାଉଛି ତରଙ୍ଗର ତାଳେ ତାଳେ; ପାଇନ୍ ବୃକ୍ଷେଲେ ଗୋଟିଏ ମୁହୂର୍ତ୍ତ ମାତ୍ର ।

କେତେକ ବନ୍ଶୀ ପକାଉଛନ୍ତି । ପାହାଡ଼ୀ 'ଟ୍ରାଉଟ୍', 'ଗ୍ରେଲିଂ' 'ସ୍ନାପି', 'ବ୍ଲୁଗିଲ', 'ପାଇକ୍ ପର୍ଚ' ମାଛ ଧରିବା ଲାଗି । ଫମ୍ପ ଫମ୍ପ ମେଘ ଚରୁଛନ୍ତି । ମଝେ ମଝେ ଦିଶି ଯାଉଛନ୍ତି କଣଶା, ଛଇଲି ଗାଈସବୁ ।

ଗାଡ଼ିଟା ଗଡ଼ି ଚଢ଼ି ଯାଉଛି, କେତେ ବନ ଦେଖୁ ଏଇ ପାହାଡ଼େ ପାହାଡ଼େ, ସେମାନଙ୍କ ସବୁଜ ସ୍ପର୍ଶ, ମଧୁର ମର୍ମର ବେଳେ ବେଳେ ମନକୁ ଭାବ ବିହ୍ୱଳ କରେ; ପାହାଡ଼ୀ ପାଇନ୍ ବନର, ପାହାଡ଼ୀ ହ୍ରଦର ଏଇ ମୁହୂର୍ତ୍ତର ମନ ମୋର ନିଜକୁ ଧନ୍ୟ ମଣେ, କେବେ କେବେ ଶିଳା ସଂଘର୍ଷ, ତୁଷାର ଓ ପ୍ରସ୍ତର ସଂଘାତ, ଜ୍ୱଳନ୍ତ ଦାବାଗ୍ନି ଦାହ କଳ୍ପନାରେ ଆସି ମୋତେ ଆଘାତ କରେ; ଜୀବନ ସଂଗ୍ରାମ ବ୍ୟସ୍ତ ଅର୍ଦ୍ଧ ଶୁଷ୍କ ତୃଣ ମୋତେ ଉଦ୍ଦୀପ୍ତ କରେ ଆଶାର ବାଣୀରେ ।

ପାହାଡ଼ର ଉପର ଓ ତଳ ସ୍ତରରେ ବନ, ମଧ୍ୟରେ ଖଣ୍ଡ ଖଣ୍ଡ ଶିଳା, ଅଖଣ୍ଡ ଶୈଳ, କଙ୍କଣିତ, ଉପଳ ଉର୍ଙ୍ଗିଳ, ତୃଣ ଶ୍ୟାମଳ, ଗୁଳ୍ମ ଜଟିଳ, ଢଗେ ଢଗେ ଦିଶେ ମୋର ସର୍ପିଳ ପର୍ବତ । ପ୍ରସ୍ତର ମନ୍ଦିର, ପ୍ରସ୍ତର ଦୁର୍ଗ, ପ୍ରସ୍ତର ଅରଣ୍ୟ, କେଉଁଠି ତରୁକୁଞ୍ଜିତ ଗମ୍ଭୀର ଉପତ୍ୟକା, ଝରଝଙ୍କୃତ, ବହୁ ତଳେ ଉପଳେ ଉପଳେ ପ୍ରପାତର ଫେନିଳ ସ୍ରୋତ ଦିଶେ ।

କେଉଁଠି ଟଙ୍କିଳ ପର୍ବତ ଗୁଳ୍ମମୁକୁଳିତ, ଏକରୁ ଅନ୍ୟ, ପରବର୍ତ୍ତୀରୁ ତତ୍‌ପରବର୍ତ୍ତୀ ବିପୁଳତର, ଅଧିକ ଭୟଙ୍କର; କେଉଁଠି ବା ପ୍ରକୃତିର ଦୁର୍ଗାନ୍ୱିତ, ବହୁ ବ୍ୟୂହାନ୍ୱିତ ବୋର୍‌ବୁଦର୍ ! ବହୁ ସ୍ତରିତ, ବହୁ ପାର୍ଶ୍ୱାନ୍ୱିତ, ବହୁ ମସ୍ତକଯୁକ୍ତ, ପାର୍ଶ୍ୱବାହୁ ସମ୍ବଳିତ, ବହୁ କନ୍ଦରିତ, ସୃଷ୍ଟି ଯାବତୀୟ ଆକାରର ବହୁଭୂଜ ପାହାଡ଼ସବୁ, କେଉଁଠି ଉଦ୍ଭିଦଶୂନ୍ୟ ଉତ୍‌ଥିତ, କେଉଁଠି ହଠାତ୍ ନିମ୍ନଗାମୀ—ଶିଳାର ଘୋର ଅସଙ୍ଗତି ମଧ୍ୟରେ କେଉଁ ଏକ ଅଦ୍ଭୁତ ସଙ୍ଗୀତର ମୂର୍ଚ୍ଛନା ଶୁଣାଯାଏ—ହୁଏତ ଏହା ବିଜନତାର ମର୍ମବାଣୀ । ଶୁଣି ଶୁଣି ଯାହାଙ୍କ ମର୍ମ ବଣା ହୋଇ ଯାଇଛି, ଏସବୁ ତାଙ୍କ କାନରେ ହିଁ ବାଜେ ।

'ବରଗ୍ହନ' ପାହାଡ଼ମାଳା ମଧ୍ୟରେ ଅଷ୍ଟାବାଙ୍କରେ ଯାଇ ଯାଇ ଶେଷକୁ ଆମେ ତଳକୁ ଖସିଲୁ, ଗହଳ ଲତାକୁଞ୍ଜ, ଅଗଣିତ ପୁଷ୍ପରେ ତାରକିତ । ତାପରେ ବଡ଼ ବଡ଼ ହ୍ରଦ ପଡ଼ିଲା, ଆଗ୍ନେୟ ଗିରିର ଭସ୍ମର; ପ୍ରବଳ ପବନ ଯୋଗୁଁ କୁହୁଡ଼ିର ଏକ ପାତଳ ଆସ୍ତରଣ ଗହ୍ୱରକୁ ଢାଙ୍କି

ଥାଏ । ପ୍ରଳୟ ସ୍ପର୍ଶରେ ଭଙ୍ଗାରୁଜା ଗୋଡ଼, ଯୋଡ଼ାମାଟି, ପାଉଁଶ ଆଉ ଧୂଳି; ସେ କାଳର ଛାଆଁ ସହେଜ ଛାଡ଼େ ନାହିଁ, ଏବେ ବି ଲେହନ କରି-ଯାଉଛି ଯାହା କିଛି ସବୁଜ, ସୁନ୍ଦର । ଏଇ ସବୁ ଭୂମି ବାହାରେ ଅଭିଶପ୍ତ କିନ୍ତୁ ବାହାରେ ଆଶୀର୍ବାଦିତ । ଅନ୍ତରରେ ତରଳ ସୁନାର ଝରଣା, ସେ ଦିନର ଯଳାତକର ବଂଶଧରଙ୍କୁ ଧଇଥାନ କରୁଛି ।

ଆକାଶରେ ଧୂଳିଆ ମେଘ; ଭୂତଳ ମଧ୍ୟ ଧୂଳି ଧୂସର । କଳା ମୁଣ୍ଡ, ଧଳା ଲୋମ, ମେଣ୍ଢାପଲ ଚରୁଛନ୍ତି, ମଲା ଘାସ ଖୁଣ୍ଟି ଖୁଣ୍ଟି । ଜୀବନ ଯାହାର ଯାଉଛି, ଆସୁଛି; ସେଇ ପୁଣି ଜୀବନ ବଞ୍ଚାଉଛି ଏଠି ।

## ଓର୍‌ଲ୍ୟାଣ୍ଡ

ଚେଷ୍ଟା ଗଛରେ ଫଳ ନାହିଁ ହୋଇଛି, ଗହମ ଆଉ ମକ୍‌କା ନଡ଼ାର ଗଦା, ଖରାରେ ଆଜଣା ତଳା ସୁନା ପରି ଝଟକୁଛି । ବାଁ ପଟେ ରେଳଲାଇନ୍‌, ଡାହାଣ ପଟେ ସବୁଜ କ୍ଷେତ; ବ୍ୟାପ୍‌ଟିଷ୍ଟ ଚର୍ଚ୍ଚ, ରେଷ୍ଟୁରାଣ୍ଟ, କାଫେ, ଡେଭରଲେଟ୍ ଗାଡ଼ି ବଦଳ ଦୋକାନ; କେତୋଟି ମଧ୍ୟମ ଧରଣର ସୌଧ, ଏଇ ହେଉଛି ଓର୍‌ଲ୍ୟାଣ୍ଡ ସହର; ପାହାଡ଼ୀ ନଦୀଟିଏ ଜମିକୁ ରଖିଛି ଉର୍ବର, ଶ୍ୟାମଳ, ଭୂମି ତଳେ କାଗସିମା, ପ୍ରଚୁର ଗନ୍ଧକ ମଧ୍ୟ ଆମଦାନୀ ହୁଏ । ଏଇ ସହରର ଏକ ମାଇଲ ସବୁଜ କ୍ଷେତ ଗୋଟିଏ ହ୍ରଦ ପରି ରହିଛି, ଜଙ୍ଗଲ ମରୁଭୂମିରେ ।

ଏହି ପେଟ୍ରୋଲ ସହର ଅତିକ୍ରମ କଲାପରେ ପୁଣି ସେଇ ଗୋଡ଼ ମାଟି ମିଶା ପାହାଡ଼ ପଡ଼ିଲା, ଶୃଙ୍ଗ ତାର ଫଗୁଳି; ରୌଦ୍ରରେ ଉଜ୍ଜ୍ୱଳ, କାହିଁ ବା ଛାୟାରେ ମେଦୁର, ତାର ପୃଷ୍ଠ ପଟରେ ଆକାଶସ୍ପର୍ଶୀ ପର୍ବତ ଶ୍ରେଣୀ, ବନ ଶ୍ୟାମ, ପୁଣି ଘନ ନୀଳ ।

'ଗ୍ରେବୁଲ୍' ସହର, ଗ୍ରେଟ ନଦୀଟି ଯୋଗୁଁ ବଢ଼ି ଉଠିଛି । ଚତୁର୍ଦ୍ଦିଗରେ କୃଷିକ୍ଷେତ୍ର । 'ବେସିନ୍' ସହର, ଯେଉଁଠି ଜୁନ୍ ଜୁଲାଇରେ ପ୍ରଚୁର ଲାଇଲାକ୍ ଫୁଲ ଫୁଟେ, ଏବେ କିଛି କିଛି ଅବଶେଷ ରହିଛି । ତା ପରେ ଆମେ ଏମ୍‌ବ୍ଲେମ୍ ବୋଲି ଗୋଟିଏ ଗ୍ରାମରେ ପହଞ୍ଚିଲୁ । ତାର

ଗୋଟିଏ ପାଖରେ ସବୁଜ ଖେତ, ଅନ୍ୟ ପଟେ ଘୋର ମରୁ ପ୍ରାନ୍ତର; ଏହି ଗ୍ରାମରେ ଦୁଇଟି ଘର, ମୋଟ ଲୋକ ସଂଖ୍ୟା ପାଞ୍ଚ । ତଥାପି ଡ଼ାକଘରଟିଏ ଅଛି ।

ଦେଖୁ ଦେଖୁ ସବୁଜ ପାହାଡ଼ସବୁ ପାଖେଇ ଆସିଲା । ସେଇ ପାହାଡ଼ରୁ ଉଡ଼ି ଆସିଲା ମେଘ, ଭୀମ ବଜ୍ରନାଦରେ, ଆସି ଲାଗି ବରଷିଲା । ସେ ମରୁପ୍ରାନ୍ତର ଖାଲି ରହିଛି, ତୃଷାର୍ତ୍ତ; ପାଟି ପିନା ଫିଟୁ ନାହିଁ, ଗଛବୃଛ ମାଗୁଥିବେ ବଜଳ ହୋଇ ମନେ ମନେ, ମେଘ ସେ ପର୍ଯ୍ୟନ୍ତ ଗଲା, ପାହାଡ଼ର ମଣ୍ଡନ ହୋଇ ରହିଲା । କିନ୍ତୁ ଟୋପାଟିଏ ପାଣି ଭୂମିରେ ପଡ଼ିଲା ନାହିଁ । ବରଂ ଝଡ଼ର ଧୂଳିରେ ତାର ଓଠ ଆହୁରି ଶୁଖିଲା ହୋଇଗଲା—ମୂର୍ଦ୍ଧାର ଉପରେ ପାଉଁଶ ଘୋଟିଗଲା । ବୁଜି ହୋଇଗଲା ଆମର ଆଖି ।

## କୋଡ଼ି

'କୋଡ଼ି' ସହରରେ ପହଞ୍ଚିଲା ବେଳକୁ ପ୍ରବଳ ବର୍ଷା । ରୋଡ଼ିଓ ପ୍ରତିଯୋଗିତା ଦେଖିବା ଲାଗି ଏ ସହରକୁ ଆସିବା କଥା । କିନ୍ତୁ ବର୍ଷା ଏମିତି ରହିଲେ ପ୍ରତିଯୋଗିତା ବନ୍ଦ ହୋଇଯିବ । ମନରେ ଶଙ୍କା ଘେନି 'ସୋସୋନ୍' ନଦୀ କୂଳେ କୂଳେ ଆମେ ରହିଲୁ । ଗଭୀର ଗର୍ଭ ମଧ୍ୟରେ ନଦୀଟି ବହି ଚାଲିଛି, ଅତି ବେଗୀ, କିନ୍ତୁ କ୍ଷୀଣସ୍ରୋତା ଏଇ ନଦୀରେ 'ବଫାଲୋ ବିଲ୍' ବନ୍ଧ ବନ୍ଧାଯାଇଛି । ଗୋଟିଏ ପାଖରେ 'ରାଟଲ୍ ସ୍ନେକ୍', ଅନ୍ୟ ପାଖରେ 'ସେଡ଼ାର୍' ପର୍ବତମାଳା; ସୋସୋନ୍ ଅତି ଗଭୀର ତଳେ ପ୍ରପାତ ସୃଷ୍ଟି କରିଛି । ବନ୍ଧର ଏପାଖେ ପ୍ରପାତ, ସେପାଖେ ଗାଢ଼ ନୀଳ ଜଳର ହ୍ରଦ । ଗୋଧୂଳିର କିରଣ ଖେଳୁଛି ଏ ନାଲି ପଲଶ ପରି ପଡ଼ୁଛି ହ୍ରଦ କୂଳର ପାହାଡ଼ ଶ୍ରେଣୀ ଉପରେ; ଯେ ନୀଳ ସେ ହୋଇଛି ନୀଳ ଲୋହିତ । ବିଶାଳ ନୀଳ ଲୋହିତ ମୂର୍ତ୍ତି—ଦୂର ପାହାଡ଼ ଉପରେ । ପାଦ ରଖି ଛିଡ଼ା ହୋଇଛନ୍ତି ଯେପରି ! ଲମ୍ବିଛି ତାଙ୍କର ବ୍ୟୋମକେଶ ଦିଗ୍‌ବଳୟବ୍ୟାପୀ, ଉତ୍ତୁଙ୍ଗ, ଉଜ୍ଜ୍ୱଳ, ଶ୍ୟାମଳ, କେତେ କି ରୂପ, କେତେ କି ରଙ୍ଗ, କେତେ କି ମଧୁର ସ୍ୱର । ରୂପ ଯେପରି

ନିବିଡ଼, ରଙ୍ଗ ଯେଉଁପରି ଗମ୍ଭୀର, ସ୍ୱର ସେତିକିପରି ଚଞ୍ଚଳ । ଦେବତର ଏଇ ନଗର; ସନ୍ଧ୍ୟାର ଏଇ ହ୍ରଦ, ଗଭୀର ଏଇ ନଦୀ; ବର୍ଷା ଆଜ କୁଙ୍କୁମିତ କରିଣ ସବୁ ଗାଇଁ ରହିଲା ଏଇ ମନରେ । ଗୋଟିଏ ମୁହୂର୍ତ୍ତର ପ୍ରକୃତିକୁ ମନରେ ଘେନି ଆମେ ଚାଲିଲୁ ‘ଓ୍ୱାପିଟ୍’ ।

## ଓ୍ୱାପିଟ୍ ଲଜ୍

ନ’ ଡଲାର୍ ଅଗ୍ରୀମ ଦିଆ ହୋଇ ରିଜର୍ଭ କରା ହୋଇଥିଲା, ସୋସୋନ୍ ନଦୀ କୂଳେ ଭ୍ରମଣକାରୀଙ୍କ ଲାଗି ବହୁ ହୋଟେଲ୍, ମୋଟେଲ୍, ରେଷ୍ଟୁରାଣ୍ଟ ଗଢ଼ି ଉଠିଛି । ଏଠି ମୁଖ୍ୟତଃ ଦୁଇଟି ଆକର୍ଷଣ—ଗୋଟିଏ ସୋସୋନ୍ କାନିଅନ୍, ଅନ୍ୟଟି ରୋଡ଼ିଓ । ଏହା ଦେଖିବା ଲାଗି ବହୁ ଯାତ୍ରୀ ସମାଗମ ହୋଇଥାଏ ।

ଓ୍ୱାପିଟ୍‌ଲଜ୍‌ରେ ମୋଟରେ ଦୁଇ ବଖୁରିଆ ପାଞ୍ଚ ଗୋଟି ଘର ଅଛି । ଏକାବେଳକେ ପାଞ୍ଚଗୋଟି ପରିବାର ରହି ପାରିବେ । ଘରଗୁଡ଼ିକ ଅନୁଚ୍ଚ, ବାକ୍ସ ପରି ଦିଶେ, କାନ୍ଥରେ ରୋଡ଼ିଓର ଚିତ୍ର ଅଙ୍କିତ, ନାନା ବିବରଣୀ ପ୍ରଦତ୍ତ । କାନ୍ଥ ପାଖେ ପାଖେ ପେଟୁନିଆ, ଗେଣ୍ଡୁ, ସୂର୍ଯ୍ୟମୁଖୀ, ଆଗରେ ସବୁଜ ପଡ଼ିଆ । ଏହି ଲଜ୍‌ର ପୃଷ୍ଠପଟେ ଶୈଳ-ମାଳା, ଗ୍ରାମ, ଗୁଳ୍ମହୀନ ଗହ୍ୱର, ସୋସୋନ ନଦୀର କ୍ଷୀଣ ଧାରା । ଗୋଟିଏ ‘କଟେଜ୍‌ଟି’,—ତା ଦ୍ୱାର ପଟେ ହରିଣ ଶିଙ୍ଘର ବାଡ଼ କରା ହୋଇଛି । କେତୋଟି ହରିଣ ମୁଖ ସଜା ହୋଇଛି କାନ୍ଥରେ, ବୈଠକ ଗୃହରେ ଦାମୀ କାର୍ପେଟ୍, ସଜ୍ଜିତ ଟେବୁଲ୍, ପ୍ଲାଷ୍ଟିକ୍ ଫୁଲସବୁ; ଟେବୁଲ୍ ଉପରେ ଓ୍ୱାପିଟ୍ ପରିବାରର ଫଟୋ ଆଲ୍‌ବମ୍; ନାନା ପତ୍ରିକା ଓ ପୁସ୍ତକାବଳୀର ଏକ ଲାଇବ୍ରେରୀ ଅଛି । ଯାତ୍ରୀମାନଙ୍କୁ ଏଠି ପଠନର ସୁଯୋଗ ମିଳେ ।

ଏ ଗୋଟିଏ ପାରିବାରିକ ମୋଟେଲ୍ । ଏଥିରେ ‘ବୟ୍’ ନାହାନ୍ତି, ଗାର୍ଲ୍ । ମୋଟେଲ୍ ମାଲିକ ମି. କର୍ଟିସ୍‌ଙ୍କ ସୁନ୍ଦରୀ ନାତୁଣୀସବୁ ସେମାନେ ରନ୍ଧାବଢ଼ା, ପରିବେଷଣ ସବୁ କରନ୍ତି । ପାରିବାରିକ ଶ୍ରଦ୍ଧା ଦେବା ଲାଗି ଏହି ମୋଟେଲ୍‌ଟି ଉଦ୍ଦିଷ୍ଟ । ସବୁ ଏଠି ଘରୋଇ, ଶ୍ରଦ୍ଧାର, ସ୍ନେହର,

ଆନନ୍ଦର । କିନ୍ତୁ ଘର କଲେ ତ ଅସୁବିଧା ଲାଗି ରହିଛି । ତାର ଦଂଶନ ଆମେ ପାଇଲୁ—ଦୀର୍ଘ ଅପେକ୍ଷା ବିରକ୍ତିକର; 'ଭେଣ୍ଡର୍' ଲାପତା ଥିବାରୁ ସ୍ୱଳ୍ପକାଳ ଦୀର୍ଘତର ବୋଧ ହେଉଥିଲା । ଶେଷକୁ ଡାହାଣ ହାତ କାଉଣ୍ଟରରେ ଡାକିଲେ ଓ ସେନାର ମାଳ ଝଟ୍‌ଝଟ୍ କରି ଶ୍ରୀମତୀ ପରଷି ଦେଲେ; ନିରାମିଷ ଖାଇବାକୁ ବାଧ୍ୟ ମୁଁ, ଗୋମାଂସ ବ୍ୟତୀତ ଅନ୍ୟ କିଛି ନାହିଁ । ମୋ ଭାଗ୍ୟକୁ ମିଳିଲା—ଗୋଟିଏ ବଡ ଅଣ୍ଡାସିଝା, ଟିକିଏ ଶାଗ, ସ୍ୱତନ୍ତ୍ର ବଗଦରେ ଗିଲାସେ ଗରମ ଦୁଧ । ଏଥିଲାଗି ମୋତେ ଗଣିବାକୁ ହେଲା ଦେଢ଼ ଡଲାର୍ । ଅବଶ୍ୟ ପାରିବାରିକ ଶ୍ରଦ୍ଧାର ମୂଲ୍ୟ ଅଛି । ତାହା ଏହି ଦାମ୍‌ର ଅନ୍ତର୍ଭୁକ୍ତ ହୋଇଥିବ । ଅଧା ଖିଆ ପେଟକୁ କାଞ୍ଜିର୍ ଯେଉଁ ରୂପସୀର ହାସ୍ୟରେ ପୂରଲ୍ ଆମେ ଆସିଲୁ । ସେହି ହାସ୍ୟର ଲୋଭ ଥିଲେ ବି ବ୍ରେକ୍‌ଫାଷ୍ଟ ଲାଗି ଆଉ ସେଠିକି ଯାଇନାହୁଁ ।

## ରୋଡିଓ

ବର୍ଷା ଛାଡିଗଲା । 'କୋଡ଼ି' ସହରର ବହୁ ବିଜ୍ଞାପିତ 'ରୋଡ଼ିଓ' ଦେଖି ବାହାରିଲି, କ୍ଷୀଣ ବଙ୍କ ବିପଦ ସଙ୍କୁଳ ପଥରେ । ଗୋଟିଏ ଲମ୍ବା ବାଡ଼ ଘେରା ପ୍ରାଙ୍ଗଣ; ତାର ପୂର୍ବ ଓ ପଶ୍ଚିମ ଉଭୟ ପଟେ ପାଞ୍ଚହଜାର ଦର୍ଶକ ଦର୍ଶିକାଙ୍କ ବସିବା ବ୍ୟବସ୍ଥା ହୋଇଛି । ଜଜ୍ ଓ ଫଳାଫଳ-ଘୋଷଣାକାରୀ ବସିଛନ୍ତି ପଶ୍ଚିମ ଦିଗରେ । ଖେଳ-ବ୍ୟବସାୟୀର ମାଲିକ ବୁଲୁଛନ୍ତି ଏକ ସ୍ୱତନ୍ତ୍ର ଅଶ୍ୱରେ । ଯୁକ୍ତରାଷ୍ଟ୍ରର ବିଭିନ୍ନ ପ୍ରାନ୍ତରୁ ଯୁବକ ଯୁବତୀମାନେ ଏହି ଖେଳରେ ଅଂଶ ଗ୍ରହଣ କରିବା ଲାଗି ଆସିଛନ୍ତି । ସେମାନେ ଗୋବାଳକ ଓ ଗୋବାଳିକା ନାମରେ ପରିଚିତ । ସେମାନେ ଶତ ବର୍ଷ ଆଗେ ବ୍ୟବହୃତ ମାଳ ବସ୍ତ୍ର ଓ ମାଳ ଶିରସ୍ତ୍ରାଣ ପରିଧାନ କରିଛନ୍ତି ।

ପ୍ରତିଯୋଗୀ ଓ ପ୍ରତିଯୋଗିନୀମାନଙ୍କୁ ପ୍ରବେଶିକା ଫି ଦେବାକୁ ପଡ଼େ । ବର୍ଷକେ ଜଣେ ଜଣେ ହଜାର ହଜାର ଡଲାର୍ ପ୍ରବେଶିକା ଫି ଦେବାର ଦୃଷ୍ଟାନ୍ତ ରହିଅଛି । ଯୁବକଯୁବତୀମାନେ ନିଜ ନିଜର ଯାତାୟାତ ଖର୍ଚ୍ଚ ବହନ କରିଥାନ୍ତି । ବ୍ୟବସାୟୀ ଖେଳାଳୀ ଓ ଦର୍ଶକ ଦର୍ଶିକା ଉଭୟଙ୍କ ଆଡ଼ୁ ଆୟ କରିଥାନ୍ତି ।

ପରେ ଖେଳାଳୀମାନେ ଅଶ୍ୱାରୋହଣ କରି ଆସି ପ୍ରାଙ୍ଗଣ ମଧ୍ୟରେ ଛିଡ଼ା ହେଲେ । ଯୁକ୍ତରାଷ୍ଟ୍ରର ପଞ୍ଚାଶତ ନକ୍ଷତ୍ର ଚିହ୍ନିତ ତିରଙ୍ଗା ପତାକା ଧରି ଦୁଇଜଣ ଦୁଇ ଦିଗରୁ ଆସିଲେ; ବାଦ୍ୟ ଯନ୍ତ୍ରର ସ୍ୱରରେ ଜାତୀୟ ସଙ୍ଗୀତ ଝଙ୍କୃତ ହେଲା । ଦର୍ଶକ ଦର୍ଶିକା ଗୌରବରେ ଛିଡ଼ା ହୋଇ ପତାକା ପ୍ରତି ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନ କଲେ ।

ଦୁଷ୍ଟ ଅଶ୍ୱକୁ ବାଧ୍ୟ କରିବା ଥିଲା ଜଗତର ଗୋଟିଏ ପ୍ରାଚୀନ ବିନୋଦନ; ଯେ ବାଧ୍ୟ କରୁଥିଲା, ସେ ଆଗେ ରାଜରାଜୁଡ଼ାଙ୍କଠାରୁ ପୁରସ୍କାର ଲାଭ କରୁଥିଲା । ଯୁକ୍ତରାଷ୍ଟ୍ରର ବିଭିନ୍ନ ପ୍ରଦେଶରୁ ଆଠଗୋଟି ଦୁଷ୍ଟ ଅଶ୍ୱ ବାଛି ବାଛି ଅଣା ଯାଇଛି । ତାର ଖାଲି ପିଠିରେ ଗୋଟିଏ ହାତରେ ଲଗାମ୍ ଧରି ଯେ ଏକାଦିକ୍ରମେ ଆଠ ମିନିଟ୍ ରହି ପାରିବ ସେ ପୁରସ୍କାର ପାଇବାକୁ ହକ୍‌ଦାର ।

ତୋରଣ ଖୋଲିଦେବା ମାତ୍ରେ ଜଣେ ଛୁଟି ଆସିଲା ଗୋଟିଏ କୃଷ୍ଣ ଅଶ୍ୱରେ । ପ୍ରାଙ୍ଗଣକୁ ଆସିବା ମାତ୍ରେ ଅଶ୍ୱ ଝାମ୍ପଟିଲା, ପଛ ଦୁଇ ଗୋଡ଼କୁ ପଛକୁ ଛାଟିଲା, ପିଠି ଥରାଇଲା, ତାପରେ ବିଦ୍ୟୁତ୍ ଗତିରେ ରବ ମାଇଲା । ଚଢ଼ାଳି ଗୋଟିଏ ମୁହୂର୍ତ୍ତ ମାତ୍ର ଅଶ୍ୱପୃଷ୍ଠରେ ରହି ତଳେ କଚାଡ଼ି ହୋଇ ପଡ଼ିଲା ।

ତା ପଛକୁ ଆଉ ଜଣେ ଏକ ଶୁକ୍ଳ ଅଶ୍ୱରେ ଚମକି ଆସିଲା । ସେ ଖୁବ୍ ହେଲେ ଏକ ମିନିଟ ବସିଥିବ । ତା ବୁଟ୍ ଜୋତା ଖସିଗଲା, ସେ ତଳେ କଚାଡ଼ି ହୋଇ ପଡ଼ିଲା । ଏହିପରି ଜଣକ ପରେ ଜଣେ ବିଫଳ ହେଲେ । ଶେଷକୁ ଜଣେ କୃତକାର୍ଯ୍ୟ ହେଲା । ଘୋଡ଼ାସବୁ ଏକାବେଳକେ ଗୃହ ଖୁରା ଉଠାଇ ଥାନ୍ତି । ପ୍ରକୃତରେ ବାଜୁଙ୍ଗା । ଏଠି ଦୁଷ୍ଟ ଘୋଡ଼ାର ବେଶ୍ ଗୋଟାଏ ମୂଲ୍ୟ ଅଛି । ଯେତିକି ବେଶୀ ଦୁଷ୍ଟ, ସେତିକି ଦାମ୍ ଅଧିକ । ଶିଷ୍ଟର ମୂଲ୍ୟମାନ ଅଛି । କିନ୍ତୁ ଦୁଷ୍ଟର ଦାମ୍ ବେଳେ ବେଳେ କଳନାର ସୀମା ଅତିକ୍ରମ କରିଯାଏ ।

ତାପରେ ଗୋବାଳକ ଓ ଗୋବାଳକାଙ୍କ ମଧ୍ୟରେ ବତ୍ସଚର୍ମ ବନ୍ଧନ ପ୍ରତିଯୋଗିତା ହେଲା । ଏହା ଏକ ପ୍ରାଚୀନ କୌଶଳ;

ଗୋବାଳକମାନେ ଏହି ଉପାୟରେ ଆଗେ ପଳାତକ ବତ୍ସତରମାନଙ୍କୁ ଅଟକାଇ ରଖୁଥିଲେ, ସେମାନଙ୍କୁ ଡାକୁ କବଳରେ ପଡ଼ିବାକୁ ଦେଉ ନ ଥିଲେ ।

ଅଶ୍ୱ ଛୁଟାଉ ଛୁଟାଉ ଯେ ପଳାଉଥିବା 'ଛଡ଼ା' ବେକରେ ଫାଶ ଲଗାଇ ତାର ଚତୁଷ୍ପଦ ଅତି ଅଳ୍ପ ସମୟ ମଧ୍ୟରେ ବନ୍ଧନ କରି ପାରିବ, ସେ ପୁରସ୍କାର ପାଇବାକୁ ଯୋଗ୍ୟ । ବାଛୁରି ମଠର ଆଗରେ ପଡ଼ିବାର ଶଙ୍କା ହେଲେ ଗୋବାଳକ ଅଶ୍ୱ ଛୁଟାଇ ଏବେ ଏହିପରି ବନ୍ଧନ କରେ ।

ତାପରେ ଦୁଇ ଦୁଇ ଜଣ ଅଶ୍ୱାରୋହୀ ଗୋଟିଏ ଗୋଟିଏ ଗୋଷ୍ଠୀ କଲେ; ଅଶ୍ୱ ଛୁଟାଇ ଏକାବେଳକେ ଜଣେ ଗ୍ରୀବା ଓ ଅନ୍ୟ ଜଣକ ପୃଷ୍ଠ ପଦଦ୍ୱୟ ବନ୍ଧନ କଲେ । ଗ୍ରୀବା ବନ୍ଧନ ବେଳେ ଦାମୁଡ଼ି ସ୍ଥିର ହୋଇ ରହେନାହିଁ । ସେ ଝଟପଟ ଥାଏ । ହଠାତ୍ ଦୌଡ଼ନ୍ତା ଘୋଡ଼ା ପିଠିରୁ ଡେଇଁ ଦାମୁଡ଼ିକୁ ବାନ୍ଧିବା ବେଳେ ଗୁଡ଼ିରେ ଶିଙ୍ଘ ପଶି ଯିବାର ଶଙ୍କା ଥାଏ । ଏଥିରେ ଦୁଇଟି ଗୋଷ୍ଠୀ ସାଫଲ୍ୟ ଲାଭ କଲେ ।

ତାପରେ ବୃଷଭବନ୍ଧନ ପର୍ବ । ଏହା ସବୁଠାରୁ ବିପଦ୍‌ଜନକ । ଅଶ୍ୱ ଛୁଟାଉ ଛୁଟାଉ ହଠାତ୍ ଲମ୍ଫ ଦେଇ ବୃଷଭର ଶୃଙ୍ଗ ଧାରଣ କରି ତଳେ ପକେଇଦେବାକୁ ହୁଏ । ଅବଶ୍ୟ ବୃଷଭଗୁଡ଼ିକ କ୍ଷୁଦ୍ର । ହସ୍ତୀନ୍ତ ମାରଣା ଜନ୍ତୁର ସ୍ଥାନ ଏଠି ନାହିଁ । ଏହି ପ୍ରତିଯୋଗିତାରେ ଜଣେ ଯଶସ୍ୱୀ ହେଲେ ।

ଆମର ଲଉଡ଼ି ଖେଳ ଏବେ ହଜି ଯାଇଥିବା ବେଳେ ଆମେରିକାର ଗୋପାଳବାଳକଙ୍କ ଖେଳ ଏବେ ଜାତୀୟ ସମ୍ମାନ ଲାଭ କରିଅଛି । ସ୍କୁଲ କଲେଜମାନଙ୍କରେ ଏବେ 'ରୋଡ଼ିଓଟିମ୍' ଗଢ଼ା ଗଲଣି । ଅଶ୍ୱାରୋହଣ ଏବେ ମୁଖ୍ୟ କସରତ ମଧ୍ୟରେ ପରିଗଣିତ ହେଉଛି । ଏହିପରି ଗୋ ଓ ଅଶ୍ୱସମ୍ପର୍କୀୟ ନାନା କ୍ରୀଡ଼ା ପ୍ରତିଯୋଗିତା ହେଉଥିବା ବେଳେ ମୋର ମନେ ପଡ଼ୁଥିଲା—ଓଡ଼ିଆ ଅଶ୍ୱାରୋହୀ ସୈନ୍ୟଙ୍କ ଗୌରବପୂର୍ଣ୍ଣ କାହାଣୀ, ପୁଣି ପୁରୀ କଟକର ମୁମୂର୍ଷୁ ଅଶ୍ୱ କଥା; ମୋ ବଡ଼ବାପା ଅଶ୍ୱାରୋହଣ କରୁଥିଲେ । ଘୋଡ଼ା ଚଢ଼ାଠାରୁ ସମ୍ପତ୍ତି ନାହିଁ—ସେ

ଥିଲେ ତାର ପ୍ରଶଂସକ । ମୁଁ କିନ୍ତୁ ପ୍ରଥମ ଘୋଡ଼ାଚଢ଼ାରେ ଭାଙ୍ଗିଥିଲି ମୋର ହାତଟି । ହାତଭଙ୍ଗା କଥା ମନେ ପଡ଼ିବାରୁ ମୋର ହୃଦୟ କରୁଣ ଭାବରେ ଆର୍ଦ୍ର ହୋଇ ଉଠୁଥିଲା । ପ୍ରଚଣ୍ଡ ଶୀତରେ ଥରୁଥିଲା ଦେହ । ସେଇ ରୁଦ୍ର ଶୈଳ, ହିମ ପ୍ରପାତ ପଥରେ ଆମେ ଫେରିଲୁ, ମୋଟେଲ୍‌ରେ ସବୁ ଲୁଚି ଯାଇଥିଲା, ମେଘ ଆଉ ରାତିର ଅନ୍ଧକାର ମଧ୍ୟରେ । କେବଳ ଶୁଣା ଯାଉଥିଲା ଅଗଣିତ ଧାରାର ହାମ୍ମୁଖିକ ମୂର୍ଚ୍ଛନା, ପାଇନ୍ ମର୍ମର ସଙ୍ଗେ ।

## ଏଲୋଷ୍ଟୋନ୍ ପଥେ (୧୯ । ୮ । ୭୭)

କାର୍‌ରେ ବସିବା ପୂର୍ବରୁ ୟୋୟୋନ୍ ନଦୀ କୂଳକୁ ଯାଇ ତାର ଅଗଣିତ ବର୍ତ୍ତୁଳ ଉପଳ ଉପରେ ଛିଡ଼ା ହେଲି । ମେଘ ନଦ ହୋଇଥାଏ ଆକାଶରେ; ତାକୁ ଫଟାଇ ସକାଳ ସୂର୍ଯ୍ୟ ଶିଳା ମନ୍ଦିରମୟ ଗୋଟିଏ ଶୈଳକୁ କରୁଥାଏ ସୁବର୍ଣ୍ଣରେ ଅଭିଷିକ୍ତ, ରାଜାର ଯୁଗ ଏ ନୁହେଁ; ଧର୍ମ-ଦେବତାଙ୍କର ଏ ପକ୍ଷପାତ ପସନ୍ଦ କରି ପାରିଲି ନାହିଁ । ତୀର ବୃକ୍ଷରେ ଗାଉଥାଏ ଚିପ ଆକାରର ଗୋଟିଏ ପକ୍ଷୀ; ପାହାଡ଼ୀ ଉଷା ଯେତେ ସମ୍ଭ୍ରାନ୍ତ ହେଲେ ବି ତାର ଅଭିନନ୍ଦନକୁ ଅବହେଳା କରିପାରୁ ନଥିବ । କାରଣ ସେ ଏକମାତ୍ର ବୈତାଳିକ ଏଠି । ତାର ସ୍ୱର ଚତୁର୍ଗୁଣରେ କୋମଳ ମାଧୁର୍ଯ୍ୟ ବୋଳି ଦେଉଛି । ହିଗ୍‌ବଲସ୍ପୁର ପାହାଡ଼ ଓ ସୁଦୂର ଆକାଶରେ ହୁଏତ ତାର ସ୍ୱର ପହଞ୍ଚି ପାରୁନାହିଁ । ସେଥିଲାଗି ବ୍ୟଥିତ ହେବାର ନାହିଁ । କିନ୍ତୁ ତାର ସଙ୍ଗୀତ ସାର୍ଥକ ହୋଇଛି ମୋ ନିକଟରେ; ଗୋଟିଏ କ୍ଷଣରେ ତାର କ୍ଷୀଣତର ସଙ୍ଗୀତରେ, ୟୋୟୋନର ତୀରବର୍ତ୍ତୀ ପ୍ରଭାତ ମାଧୁର୍ଯ୍ୟକୁ ମୁଁ ପାଇଛି ସମ୍ପୂର୍ଣ୍ଣ ଭାବେ ।

ସେହି ନଦୀର ତୀରେ ତୀରେ ପାହାଡ଼ ମେଳାର ପ୍ରଭାତ ପ୍ରଦର୍ଶନୀ ମଧ୍ୟରେ ଆମେ ପୁଣି ଯାତ୍ରା କଲୁ; ବନ୍ଧନଦୀ; ବନ୍ଧୁରିତ, ଢଳାଣ୍ଡି, ଗଗନ-ସ୍ପର୍ଶୀ ପର୍ବତସବୁ, ସଚଳ ଦୃଷ୍ଟିକୁ ହଠାତ୍ ବନ୍ଦୀ କଲାଭଳି ଶ୍ରୀ ଥିବା ପୁଷ୍ପମଞ୍ଜରୀ ସବୁ, କୁହୁଡ଼ ଝାପ୍‌ସା ପାଇନ୍ ବନସବୁ ଅତିକ୍ରମ କରି ଆମେ କଫି ଲାଗି—'ପାହାସ୍‌କାଟିପି'ରେ ଓହ୍ଲାଇଲୁ । କ୍ଷୀଣ, ପାହାଡ଼ୀ

ଜମଚ୍ୟକା ମଝିରେ ଏକ ରେଷ୍ଟୁରାଣ୍ଟ, ତା ପାଖକୁ ଗ୍ୟାସ୍ ଷ୍ଟେସନଟିଏ; ଟିପି ଟିପି ବର୍ଷା, ମେଘ ଆଉ କୁହୁଡ଼ି ପାହାଡ଼ ଅଗରେ ହାତ ମିଳାଇ ଥାନ୍ତି । ଆମେ ରେଷ୍ଟୁରାଣ୍ଟରେ ପଶିଲୁ । ଗଣ୍ଡ ମରେ ଗଣ୍ଡ ନଦା ହୋଇ କାଠର ଘର ହୋଇଛି । ଘୋଡ଼ାଗାଡ଼ିର ଚକସବୁ ଗୁଡରେ ଲଗାହୋଇଛି, ସେଥିରେ ଝଜ୍ନଲବର୍ତ୍ତି ଖଞ୍ଜା ହୋଇଛି । ସୋସୋନ୍ ସ୍ରୋତରୁ ସଂଗୃହୀତ ଉପଳରେ ହାର ସଜ୍ଜିତ, ନାନା ଶିଳ୍ପ ଦ୍ରବ୍ୟ, ଦୃଶ୍ୟକାର୍ଡ ଓ ପାମ୍ଫଲେଟ ଏଠି ବିକ୍ରୀ ହେଉଛି । ମେଘର ବାଷ୍ପ ଶ୍ୱେତ ଧୂମାକାରେ ଭାସି ଯାଉଛି ଗିରି ଅର୍ଦ୍ଧ ଭାଗର ପାଇନ୍ ବନେ ବନେ । ଗୋଟିଏ ଦୃଶ୍ୟ ଭାବରୂପ ନେବା ଆଗରୁ ଆଉ ଗୋଟିଏ ଦୃଶ୍ୟ ଆସି ଆଖି ଆଗରେ ଛିଡ଼ା ହେଉଛି —ତୁଷାର ଶିଖର, ବର୍ଷାସିକ୍ତ, ବନ ଶ୍ୟାମଳ, ଧୂମାକାରେ ଉତ୍‌ଥିତ । ସ୍ପଷ୍ଟ ଅଚଞ୍ଚିତ ପର୍ବତସବୁ; କେଉଁ ଶୃଙ୍ଗ ତୁଷାର ତାରକିତ; କେଉଁ ଶୃଙ୍ଗ ମେଘବାଷ୍ପାପ୍ଲୁତ, କେଉଁ ଶୃଙ୍ଗ ଝରଝଙ୍କୃତ—ହ୍ରଦରେ ପ୍ରତିଫଳିତ. କେଉଁ ନିକୁଞ୍ଜିତ ଶୃଙ୍ଗ, ହେ ଭଗବାନ, ଏ ସବୁ ବନ ଦୃଶ୍ୟକୁ ମନରେ ଅଙ୍କି-ନେବାକୁ ଲୋଭ ହୁଏ । କିନ୍ତୁ କାହିଁ ସ୍ଥାନ ? ତଥାପି ଗାରେ ଗାରେ ଫ୍ରେସ୍କୋ ଆଙ୍କୁଛି କେଉଁ ଶିଳ୍ପୀ, ନିଜ ଅପାରଗତାରେ ତୂଳୀ ଫିଙ୍ଗିଦେଲେ ବି; ଏ ସବୁ ଆଙ୍କିବାର ନୁହେଁ, ଖୋଦନ କରିବାର; ଖୋଦନର ନୁହେଁ, ଲିଖନର; ସେସବୁ କହୁର ନୁହେଁ, କେବଳ ଭାବିବାର —ଭାବିବାର; ଭାବ ଭାବ ତା ସହିତ ମନକୁ ଏକାକାର କରିବାର । ବନରୁ ଗିରି, ଗିରିରୁ ଗଗନ ଉଡ଼ି ବୁଲୁଥାଏ ମନ; ବୃକ୍ଷମଣ୍ଡଳିତ, ହିଲ୍ଲୋଳିତ ହ୍ରଦ ସହିତ ମନର ଯୋଗ ସ୍ଥାପନ କରୁ କରୁ ଏହା ଅନ୍ତର୍ହିତ ହୋଇ ଯାଉଛି, ଫିଟି ଯାଉଛି ନୂଆ ନୂଆ ଦୃଶ୍ୟ, ନୂଆ ପରିବେଶରେ, ସିନେମାର ରିଲ୍ ପରି ଲାଗୁଛି କେଉଁଠୁ କେଉଁପାଏ ।

## ଓଲ୍ଡ ଫେଥ୍‌ଫୁଲ

ୟେଲୋଷ୍ଟୋନ୍ ଜାତୀୟ ଉଦ୍ୟାନ ମଧ୍ୟରେ ଏ ଗୋଟିଏ ଗ୍ରାମ, ଆଗ୍ନେୟଗିରି, ଉଷ୍ଣପ୍ରସ୍ରବଣ ଯୋଗୁଁ ଗଢ଼ି ଉଠିଛି; ଗୋଟିଏ ପୋଷ୍ଟଅଫିସ୍ ରେଷ୍ଟୁରାଣ୍ଟ, ଓ କେତୋଟି ଦୋକାନ ଅଛି । ଓଲ୍ଡ ଫେଥ୍‌ଫୁଲ୍ ଗୋଟିଏ ଆଗ୍ନେୟଗିରିର ନାମ, ଏହାର ଗହ୍ବର ଜଳପୂର୍ଣ୍ଣ; ଧୂମ ନିର୍ଗତ ହେଉଛି,

ପାଣି ଟକ ଟକ୍ ହୋଇ ଫୁଟୁଛି । ପ୍ରତି ଘଣ୍ଟାକେ ଥରେ ଏହାର ଜଳ ପ୍ରାୟ ଶହେ ପଚାଶ ଫୁଟ୍ ଉପରକୁ ଉଠୁଛି, ଠିକ୍ ଭୂମ୍ବାଣ ପରି; ତିନି ମିନିଟ ପରେ ଏହି ଜଳୋଦ୍‌ଗୀରଣ ଭୂମିରୁ ଚମ୍ପା, ତାପରେ ଘଡ଼ଘାଣ ହୋଇ ଗହ୍ୱରରେ ଲୀନ ହୋଇ ଯାଉଛି । ଉତ୍ତପ୍ତ ଜଳଧାରା ନେଇକ ନାନା ମାର୍ଗରେ ବୋହିଯାଇ ଯୋସେମାନ୍ ନଦୀରେ ମିଶୁଛି । ନିୟମିତ ଏଇ ଉତ୍ଥାନ, ନିୟମିତ ଏଇ ପତନ । ଅଗ୍ନି ମଞ୍ଚରେ ଏଇ ଜଳ ତାଣ୍ଡବ ଦେଖିବା ଲାଗି ବହୁ ଯାତ୍ରୀ ଆସିଥାନ୍ତି ।

ଏ ଅଞ୍ଚଳରେ ଦଶହଜାର 'ଗାଇଜର୍' ଅଛି । ଯୋସୋନ୍ ନଦୀ କୂଳେ କୂଳେ ଅଗଣିତ ମୁଖ ଉନ୍ମୁକ୍ତ – ପ୍ରସ୍ତରର ମୁଖସବୁ, କାହିଁରୁ ଧୂମ ଉତ୍‌ଥିତ, ଜଳ ଉତ୍କ୍ଷିପ୍ତ । ଚତୁର୍ଦ୍ଦିଗରେ ଉଷ୍ଣ ଜଳସ୍ରୋତ ପ୍ରବାହିତ ହେଉଛି, ବାଷ୍ପ ନିର୍ଗତ ହେଉଛି । ସ୍ରୋତପଥ ହରତାଳ ରଙ୍ଗରେ ରଙ୍ଗୀନ୍ । କେଉଁ ଅଗ୍ନିଗିରିର ମୁଖ ବନ୍ଧ; ତହିଁରେ ଗୋଟିଏ ହ୍ରଦ, ପ୍ରଥମ ସ୍ତରରେ ହରତାଳ ରଙ୍ଗ ବସି ଯାଇଛି; ହରିତ୍ ସ୍ତର ଗାଢ଼ ନୀଳ; ସ୍ୱଚ୍ଛ ଆକାଶ ପ୍ରତିଫଳିତ; ଖରା ପାଇକ୍ ନେଇର ଗ୍ରୁପ୍ ଧନ୍ଦ୍ରିଜ ଗମ୍ବୁଜ ପରି ସୁନ୍ଦର ଦିଶୁଛି । ଉଷ୍ମ ପଥରେ, ଲମ୍ବ ପଥରେ ଆମେ ବୁଲିଲୁ, ଉତ୍ତପ୍ତ ସ୍ରୋତରେ ସେ ବନର ଶ୍ୟାମଳ ଅରଣ୍ୟ ଅନେକ ମୁମୂର୍ଷୁ, ମୃତ । କେବଳ ଝାଟି ଛିଡ଼ା ହୋଇଛି । ପାଖେ ପାଖେ ଫୁଲ ଫୁଟିଛି, ଅତି ନିର୍ଲଜ୍ଜ ଭାବେ । ମୃତ୍ୟୁର ହାସ୍ୟ ନୁହେ ତ, ଜୀବନକୁ ପ୍ରଲୋଭିତ କରିବା ଲାଗି !

•

ମାଇଲ୍ ମାଇଲ୍ ଧରି ବିସ୍ତୃତ ମୃତ୍ୟୁର ମୁଖ, ପର୍ବତ ପରି ଉଠୁଚି ଧୂମ ପାଇନ୍ ବନର ଶିଖେ ଶିଖେ; ଗାଢ଼ ନୀଳ ଜଳ ଗୋଟିଏ ପ୍ରପାତ ସୃଷ୍ଟି କରିଛି । ଉଷ୍ଣ ଜଳର ଏଇ ପ୍ରଥମ ପ୍ରପାତ ଦେଖିଲି, ପଥ ତାର ହରତାଳ ବର୍ଣ୍ଣଳମୟ, ପଡ଼ୁଛି ଯୋସୋନ୍‌ର ଘନ ଶ୍ୟାମଳ ଶିଉଳିର ଆସ୍ତରଣରେ ! ଯେଉଁ ପ୍ରସ୍ତର ଉପରେ ଛିଡ଼ା ହୋଇଛୁ ତାର ମୂଳ କୋର ହୋଇ ଯାଇଛି । କାଷ୍ଠ ପଥ ଲମ୍ବିଛି, ଭେଦିକ ପ୍ରସ୍ରବଣ ଅଗ୍ନି ଗିରି ଗହ୍ୱର ଓ ଉତ୍ତପ୍ତ ହ୍ରଦକୁ । ଅଗରେ ମୋର ପାଇନ୍ ଧାଡ଼, ତାର ପୃଷ୍ଠ ପଟେ ନୀଳ ପର୍ବତମାଳା, କୃଷ୍ଣ ମେଘରେ ଅଚ୍ଛନ୍ନ; ଗୋଟିଏ ପାହାଡ଼

ଉପରେ ଖବର ଫ୍ଲାସ୍ ଲାଇଟ୍ ପଡ଼ୁଛି । ପାଚିଲ ମୃତ୍ତିକା, ଗଳି ପଡ଼ିବେ ବୋଲି ନିର୍ଦ୍ଦିଷ୍ଟ ନିର୍ମିତ ପଥ ଛଡ଼ା ଅନ୍ୟତ୍ର ଯାତ୍ରୀଙ୍କୁ ଛଡ଼ା ଯାଉନାହିଁ ।

ଅଗ୍ନିଗିରି ହିଁ ଏ ଇଲାକାର ପ୍ରାଚୀନ ଶିଳ୍ପକାର । ଭାଙ୍ଗିବା ଗଢ଼ିବା ତାର କାମ, ଶିଳ୍ପୀ ଅମର, ଶିଳ୍ପ କିନ୍ତୁ ଚିରସ୍ଥାୟୀ ନୁହେ । ଆଜି ଯାହା ଅଛି କାଲି ତାହା ନାହିଁ, ସେ ଶିଳ୍ପୀ ଅଦ୍ଭୁତ ଭାବେ ଖିଆଲି; ତାର ଶିଳ୍ପ ଯୋଜନା କେତେବେଳେ ବଦଳିଯିବ କେହି କହି ପାରିବ ନାହିଁ । ମନର ବିପ୍ଳବରେ ସେ ପୃଥିବୀକୁ କ୍ଷଣକେ ଓଲଟାଇ ପକାଇବ—ଜୀବଜନ୍ତୁ ସବୁ ମାଟି ତଳେ ରହିଯିବେ—କେହି ମୃତ୍ତିକାରେ ପରିଣତ ହେବେ, କେହି ରହିଯିବେ ଫସିଲ ହୋଇ । ଭବିଷ୍ୟତର ପୁରାତତ୍ତ୍ୱବିତ୍ ଆବିଷ୍କାର କରି କହିବେ—ଦିନେ ଏଠି ମଣିଷ ଥିଲା, ସଭ୍ୟତାର ସ୍ୱପ୍ନ ଦେଖିଥିଲା, ସଂସ୍କୃତି ତାର ଉନ୍ନତ ଥିଲା ।

ମୃତ୍ୟୁର ଲାଲ ଲାଲ ମୁଣ୍ଡସବୁ ଚାରିଆଡ଼େ ମେଲା ହୋଇଛି, ତାର ଚାରିପଟେ ଲାଲ ଲାଲ ବିଷାକ୍ତ ଫୁଲ, ମରଣର ତୀକ୍ଷ୍ଣ ଦୃଷ୍ଟି ପରି ଆହ୍ୱାନ କରେ ମୋତେ । ଜଳର କୃତ୍ରିମ ନୃତ୍ୟ ଦେଖିଥିଲି, ଏବେ ଦେଖିଲି ତାର ପ୍ରାକୃତିକ ତାଣ୍ଡବ । ମୃତ୍ୟୁ ମୁଖରେ ବରୁଣ ରାଜାର ନୃତ୍ୟ । ଅଗ୍ନି ନାଚୁଛି ଏଠି ଜଳକୁ, ଶୋଧ ସାଧିବା ଲାଗି, ଅତି ପ୍ରାଚୀନ ଶତ୍ରୁତାର ।

ମୃତ୍ୟୁର ଯେଉଁ ପ୍ରଚଣ୍ଡ ଭୀମ ତାଣ୍ଡବ ହୋଇଥିଲା, ଜଳର ନର୍ତ୍ତନରେ ଆଜି ତାର କ୍ଷୀଣ ଆଭାସ ମିଳୁଛି, ପଦତଳେ ମୋର ଅସଂଖ୍ୟ ଜୀବଜନ୍ତୁଙ୍କ କବର; ତାର ଉପରେ ଉଷ୍ଣ ପ୍ରସ୍ରବଣରେ ଝରି ପଡ଼ିଲା ମୋର ଦୁଇବିନ୍ଦୁ ଅଶ୍ରୁ । ଜଳର କଳରବରେ ଯେତେ କି ସେଇମାନଙ୍କ ଶେଷ କରୁଣ ଚିତ୍କାର ଶୁଣାଯାଉଛି—'ରକ୍ଷା କର ।' ଧୂମ ପଥ ଅନୁସରି ପାତାଳକୁ ନାମିଯାଉଛି ମୋର ମନ, ଗନ୍ଧକ ପଥରେ ଯାଉ ଯାଉ ଦ୍ରଳପୁର ଗର୍ଜନ ଶୁଣୁଛି । ମୃତ୍ୟୁର କେତୋଟି ମୁଖ ବନ୍ଦ ହୋଇଯାଇଛି, ପୁଣି ଖୋଲୁଛି କେତୋଟି ନୂଆ ମୁଖ, ଜହ୍ୱାଗ୍ନେନ, କୁମ୍ଭୀରର ମୁଖ ସମ ଭୟଙ୍କର. ତିମି ମୁଖର ଗହ୍ୱର ପରି ବିସ୍ତୃତ,

ଶୁଷ୍କ, ରୁକ୍ଷ, ଧୂମାଚ୍ଛନ୍ନ ଅସଂଖ୍ୟ ମୃତ୍ୟୁର ମୁଖ ଆଉ କେଉଁଠି କଳ୍ପନା କରି ହେବ ?

ଏଇ ଏକ ଶ୍ମଶାନ ଲମ୍ବିଛି, କେତେ ମାଇଲ୍-ବ୍ୟାପୀ । ଅଗ୍ନି ଧୂମ ଏବେ ବି ଉଠୁଛି—ଉଠୁଚି, ପାଇନ୍ ବନକୁ ଘେରି ମେଘାଚ୍ଛନ୍ନ କରି । ମୃତ୍ୟୁ ଉପତ୍ୟକାରେ ଗୁଳିଲ ବେଳେ ଘୃତ ଦୁଇକ ଉଠେ । କ ଅଦ୍ଭୁତ କୋଣରେ । ଶ୍ମଶାନ ଉପରେ ପୁଣି ଉଠୁଛି ସୌଧ । ଜୀବନ ଆଉ ମୃତ୍ୟୁର ଏପରି ଆଲିଙ୍ଗନ ଆଉ କେଉଁଠି ଦେଖିଛ ? ଶ୍ମଶାନ ଅଉ ଉଦ୍ୟାନର; ଭସ୍ମ ଆଉ ମୃତ୍ତିକାର, ଫସଲ ଆଉ ପସଲର ଅପୂର୍ବ ମିଳାମିଶା । ଜୀବନ ଆଉ ମୃତ୍ୟୁର ଏଇ ସଙ୍ଗମସ୍ଥଳରେ ଆସି ପହଞ୍ଚିଛି, ହେଉ ପଛେ କ୍ଷଣକାଳ ଲାଗି, ଛିଡା ହୋଇଛି ମୃତ୍ୟୁ ମୁଖରେ, ଆପାତ ଉଷ୍ଣତା ତଳେ ଭିତରର ପ୍ରଚଣ୍ଡ ଅଗ୍ନିଦାହ ଭୁଲି ।

ଯୋସୋନ୍ ନଦୀର ନାମ ଏଠି ବଦଳି ହୋଇଛି—ଅଗ୍ନିଗହ୍ୱର (Fire Hole) ସାର୍ଥକ । ପ୍ରପାତର ନାମ ମଧ୍ୟ ସେଇଆ । ଲମ୍ବା ପାହାଡ଼ର ଗୋଟିଏ ଗଛରେ ଚେରି ସବୁ ଝୁଲୁଛି, ଚନ୍ଦା ମୁଣ୍ଡରେ ନୂଆ ବାଳ ଉଠିଲା ପରି । ସେଇ ପ୍ରପାତ ପାଖରେ ଖେଳୁଛି ଦୃଢ଼ପଦ 'ଚିପ୍ମଙ୍କ୍' ନିଃଶଙ୍କ ମନରେ, ପାହାଡ଼ର ଆକାଶସ୍ପର୍ଶୀ କାନ୍ଥକୁ ଦେଖି ମୋ ଦେହ ଶୀତେଇ-ଗଲାବେଳେ ।

୧

ଦୃଶ୍ୟରେ ବୁଢ଼ିରହିଲା ବେଳେ ଗୀତା କହୁଥିଲା, ମାଆ, ଭୋକ ! ମୋ ବୋଉ ପାଖରେ ଥିଲେ ବୟସର ସଙ୍କୋଚ ନ ଥିଲେ ମୁଁ ବି ସେଇଆ କହୁଥାନ୍ତି । ତାପରେ ଦେଖିଲି ପାହାଡ଼, ପ୍ରପାତ, ଅରଣ୍ୟ ସବୁ ଜୁଳୁଜୁଳିଆରେ ଅଗ୍ନିବର୍ଣ୍ଣ, ମୋ ଆଖିରୁ ଗୁଇଁଜୁଳୁକ ବାହାରି ଚତୁର୍ଦ୍ଦିଗ ଅଚ୍ଛନ୍ନ କରିଛନ୍ତି । ରେଷ୍ଟୁରାଣ୍ଟ ପାଖକୁ ଯାଇ ଦେଖିଲୁ—'କ୍ୟୁ' ଲମ୍ବିଛି ଅଧମାଇଲଏ ପର୍ଯ୍ୟନ୍ତ । ଘଣ୍ଟାଏ ଛିଡ଼ା ହେଲା ପରେ ମିଳିଲା—ମାକ୍‌ରୋନି, ଛେନା, ପାଉଁରୁଟି, ସାଲଡ୍ । ଖାଇଲା ପରେ ପଡ଼ିଆରେ ଟିକିଏ ଛୁଡ଼ା ହେଲ ପିଲାଙ୍କୁ ଘୋଡ଼ା ଦେଖାଇବା ଲାଗି, ଗୋବାଳକମାନେ ଯାତ୍ରୀଙ୍କୁ ଘୋଡ଼ା ପିଠିରେ ବସେଇ ବୁଲଉଥାନ୍ତି, ଏଥିରେ ସେମାନଙ୍କର କିଛି ଆୟ ହୁଏ ।

ଯ୍ୱାଟି କାର୍ ଭିତରେ ରହିଛି । ଏଣେ ବାହାରୁ ବନ୍ଦ । ବହୁ ଚେଷ୍ଟା କରି ଖୋଲି ପାରିଲୁ ନାହିଁ । ଶେଷକୁ ଜଣେ କଳକବ୍‌ଜାବାଲା ଆସିଲା—ମିନିଟିକ ମଧ୍ୟରେ ଯ୍ୱାଟି ଖୋଲିଦେଲା; ଆମଠାରୁ ସେ ବାବଦକୁ ଅଢ଼େଇ ଡଲାର୍ ପାରିଶ୍ରମିକ ନେଲା ।

## ଲେକ୍ ମୋଟେଲ୍ (ଯେଲୋଷ୍ଟୋନ୍, ୧୯. ୮. ୬୭)

ମୋଟେଲ୍‌ରେ ଦୁଇଟି ବଡ ବଡ କୋଠରୀ, କିନ୍ତୁ କାର୍‌ପେଟ୍ ନାହିଁ; ସମୁଦ୍ର ପତ୍ତନରୁ ଦଶ ହଜାର ଫୁଟ୍ ଉପରେ ଆମେ ଅଛୁ; ପ୍ରଚଣ୍ଡ ଶୀତ, ଚଟାଣରେ ଖାଲି ପାଦରେ ଚାଲିବା ଅସମ୍ଭବ । ନିଜ ପାଦରୁ ଜୋତା ଖସିଗଲା, ସେ କାନ୍ଦିଲା । ତାକୁ ବୁଝାଇ ବୁଝାଇ କ୍ଷଦସ୍ମ କହିଲା —"ତୁଃ, କାନ୍ଦୁଚୁ ? ତୋ ବଦେଇ ଜୋତା ପିନ୍ଧିଥିଲେ ପଚିଶବର୍ଷ ବୟସରେ ଏମ୍. ଏ. ପାସ୍ କଲାପରେ, ମୁଁ ଚଟି ପିନ୍ଧିଲି ପନ୍ଦର ବର୍ଷରେ; ତାଙ୍କୁ ହନେ କୋଉଠି ଗୁଡ଼ ଅଣିଲି । ଫେର୍ କେବେ ଜୋତା ପିନ୍ଧିଲି, ଏବେ ମନେ ପଡ଼ୁନାହିଁ, ଜୋତା ଟିକିଏ ଖସିଗଲା ବୋଲି ତୁ କାନ୍ଦୁଚୁ ?"

କହିଲି—ତୁ ଯାହାର ପୁଅ, ସେ ଜୀବନରେ ଜୋତା ମାଡ଼ି ନ ଥିଲେ । ସେ ତୋର ପୁଅ, ଜନ୍ମରୁ ଗୋଡ଼ରେ ଜୋତା ଲାଗିଛି । କଷ୍ଟ ସହିବା ଅଭ୍ୟାସ ତାର ହେଲା କେବେ ? କାହିଁକି ବା ସମ୍ଭବ ?

ଶୀତାତପନିୟନ୍ତ୍ରଣର ବ୍ୟବସ୍ଥା ନାହିଁ, ଗୃହର ଭିତର ବରଫ-ଶୀତଳ । ଶୀତରୁ ରକ୍ଷା କରିବା ପାଇଁ ଦୁଇଟି ପୁରୁଣା ଧରଣର ଲୁହା ଚୁଲୀ ରହିଛି; ଚିମ୍ନି ଛାତ ଭେଦ କରି ଉଠିଛି । ଜଣେ ମୋଟେଲ୍ କର୍ମଚାରୀ କାଠଗୁଣ୍ଡି ପୁଡ଼ିଆ ଆଣି ଆମକୁ ଦେଇଗଲେ, ତାପରେ ଦୁଇବସ୍ତା କାଠ ଆଣି ଥୋଇଲେ । ଦିଆସିଲି ମାରି ଗୁଣ୍ଡରେ ଲଗାଇଲେ, ତାପରେ ଶୁଖିଲା ହାଲୁକା କାଠ ଜଳାଇଲେ । କାଠଗୁଡ଼ାକ ପୁର୍ ପୁର୍ ହୋଇ ଜଳିଗଲା । ପୁଣି କାଠ ପକାଇଲୁ, ଲୁହା ତାତିଲା; ଘର ଉଷୁମ ହେଲା । ନିଆଁ ଲିଭିଯାଏ, ଶୀତରେ ମଞ୍ଜ ଥରେ, ନିଦ ଭାଙ୍ଗେ, ରାତିରେ ଉଠି ଆମେ ବାରମ୍ବାର ଚୁଲି ଲଗାଉ ଆଉ ।

ଇଲେକ୍ଟ୍ରିକ୍ ଷ୍ଟୋଭରେ ମେଡାନ ଇରା ଖେଚୁଡ଼ି ରାନ୍ଧିଲା; ଟମାଟୋ ସାଲାଡ୍; ପଟାଟୋ ଚପ୍ସ୍, ଲଙ୍କା, ଖଟା ଦେଇ ଆମେ ଖାଇଲୁ; ସୁଟ୍‌କେସ୍ ହେଲା ଟେବୁଲ, କାଗଜ ଥାଳରେ ଖିଆ ହେଲା, ମେଘୁଆ-ପାଗ; ପାଟିକି ଖେଚୁଡ଼ି ବଡ଼ ଭଲ ଲାଗୁଥିଲା ।

ସକାଳୁ ବର୍ଷା, ପଦାକୁ ବାହାରି ପାରିଲୁ ନାହିଁ । ଗୀତା ଆଙ୍କୁଚି ପିଅର୍ ଫଳ । ମୀରା ଆଙ୍କୁଚି 'ପଟାଟୋଫେସ୍', ନୀନା ଚଳାଉଛି ରେଳଗାଡ଼ି; ଘରେ ଖୁବ୍ ଶୀତ । ମୁଁ ଗୋଟିଏ ଘାଗୁଡ଼ିଲଗା ଖେଳଣା ଖଞ୍ଜଣିରେ ଟିପ ଚଳାଉଥିବା ବେଳେ ମନେ ମନେ ଗାଇଲି—

ଶୀବ ପରମ ଦୁର୍ବିନ୍ଦର ଈଶ୍ୱର
ଶୁଲ ଏ ଘରୁ ହୋଇଯିବା ବାହାର ।

ସ୍ପେନ୍ଲୋଷ୍ଟୋନ୍ ହ୍ରଦ ଧୂମାଚ୍ଛନ୍ନ; ପ୍ରସ୍ରବଣର ଧୂମ ପାଳଶୈଳ ଉପରକୁ ଅଳସ ଗତିରେ ଉଠୁଥାଏ । ବର୍ଷା, ହାଓ ଅଗ୍ର ଶୀତ । ସ୍ୱିତର ଡିନାର ପର ବ୍ରେକଫାଷ୍ଟ ଘରେ ଘରେ ହୋଇଗଲା; ଇରାର ମାଆ ସଙ୍ଗରେ ଦେଇଥିଲା—ସେଉ, ନଡ଼ିଆ କୋରା, କଫି; ସେଉ ଖାଉ ଖାଉ ମୀରା ବୁଣିଲା ।

ଇରା କହିଲା—'ଶୀଘ୍ର ଗୋଟା'
ମୀରା—'ଗୁଞ୍ଜୁରି ଆଣିନାହିଁ ।"

ଇରା—ହାତରେ ଗୋଟା, କାଗଜରେ ରଖ, ଅଳଆ ଟୋକେଇକି ଫିଙ୍ଗ । ମୀରା କାନ୍ଦୁ କାନ୍ଦୁ ଗୋଟେଇବାକୁ ଲାଗିଲା । ଅନ୍ୟ ଅନେକ ଦୁଷ୍ଟାମି କ୍ଷମା କରିଯାଇ ପାରେ, କିନ୍ତୁ ଅପରିଚ୍ଛନ୍ନତା ନୁହେଁ ।

## ବ୍ଲାକ୍ ଡ୍ରାଗନସ୍ କାଲ୍‌ଡ୍ରନ୍—

ଦିନ ବାରଟା ବେଳେ ବର୍ଷା ଟିକିଏ ଛାଡ଼ିଲା । ଆମେ ସ୍ପେନ୍ଲୋଷ୍ଟୋନ୍‌ନଦୀ କୂଳେ କୂଳେ ଚାଲିଲୁ; ବର୍ଷଣୋନ୍ମୁଖ ମେଘ ଜୁଆର ପରେ

କୁଆର ପରି ପାହାଡ଼ୀ ପାଇନ୍‌ର ଶିଖେ ଶିଖେ ଉଠି ଯାଉଥାଏ । ଦେଖି ଚାଲିଲୁ ଆମେ—ଧୂମ ପୂତ୍‌କାରୁଥିବା ପୋଖରୀ ଆକାରର ପଥୁରିଆ ମୁହଁସବୁ । ତାହାଁରୁ ଉଠୁଚି ପ୍ରଚଣ୍ଡ ବୁଦବୁଦ, କାହାଁରୁ ଜଳସ୍ତମ୍ଭ, କଏ ବା କାଦୁଅ ଛୁଞ୍ଚାଉଛୁ—ତାତଲା କାଦୁଅ ଛୁଟା, ବ୍ରୁଷ ସଇତାନ ପରି । ତା ନିକଟରେ ଗୋଟିଏ ବୃହତ୍ ପୁଷ୍କରିଣୀ, ସ୍ଥିର ନୀଳରଙ୍ଗ ଜଳ, ମଧ୍ୟେ ମଧ୍ୟେ ବୁଦ୍‌ବୁଦ ଉଠୁଚି । ପୋଖରୀ କୂଳର ଗଛସବୁ ମରି ଛୁଡ଼ା ହୋଇଛନ୍ତି,—ମୃତ ଭୂମି, ଉସ୍ମବନ୍ଧ, ଶ୍ମଶାନର ନିର୍ଜନତା ସର୍ବତ୍ର; କେଉଁଠି ଦୁର୍ବାଦଳ ବା ବନ୍ୟ ଗୁଳ୍ମଟିଏ ଉଠିନାହିଁ । ଉଷ୍ଣ ମାଟ୍ଟି କୂଳରେ ତାର ଚାଲିବାକୁ । ମାଡ଼ ମାଡ଼ ପଡ଼ିଚି ଚତୁର୍ଦ୍ଦିଗ । ମୃତ୍ୟୁର ଭୟାବହତା ଅନ୍ତରରେ ଘେନି ଆମେ ଥୁଣ୍ଟାଗଛ ପାଖେ ପାଖେ ଯାଇ 'ବ୍ଲାକ୍ ଡ୍ରାଗନ୍‌ସ୍ କାଲଡ୍ରନ'ରେ ପହଞ୍ଚିଲୁ । ପାହାଡ଼ ଗହ୍ୱରର କଳା କାଦୁଅ ମାଟି ଭିତରେ ଲୁଚି, ଡ୍ରାଗନ୍ ସତେ କି ଫଣା ଫୁତ୍ କରୁଛି, କଜ୍ଜଳ ଜଳର ଉତ୍ସ ଉଠୁଛି, ଅତି ଭୟଙ୍କର; ମନେହେଲା ଏ ଗୋଟାଏ କାଳନ୍ଦୀ; ଯା ଭିତରେ ଅଛି କାଳୀୟ । ତାର ବିଷରେ ବିଷାକ୍ତ ଚତୁର୍ଦ୍ଦିଗ, ପାଖକୁ ଯିବାର ସାହସ ନାହିଁ କାହାର ।

ଧିମେ ଧିମେ ଗନ୍ଧକ ଆଘ୍ରାଣ କରି ଆମେ ଡ୍ରାଗନ୍ ମାଉଥ୍ ସ୍ପ୍ରିଂରେ ପହଞ୍ଚିଲୁ; ଟିପ୍ ଟିପ୍ ବର୍ଷା, ରାସ୍ତା ଖସଡ଼ା । ଏ ଗୋଟିଏ ସବୁଜ ରଙ୍ଗର ପୋଖରୀ । ମଧ୍ୟେ ମଧ୍ୟେ ତୀବ୍ର ଆଲୋଡ଼ନ ସୃଷ୍ଟି ହେଉଛି ତହିଁରେ; କେଉଁ ଏକ ତୀବ୍ର ଯନ୍ତ୍ରଣାର; ଶାନ୍ତ ମୁଖରେ ହଠାତ୍ ଏକ ଉଦ୍‌ବେଳନ, ଡ୍ରାଗନ୍‌ର ଜିହ୍ୱା ପରି ଦୋହଲି ଯାଉଛି ଅଗ୍ନିଗର ମୁଖର ତରଙ୍ଗସବୁ ।

## ଗ୍ରାଣ୍ଡ୍ କାନିୟନ୍—

ୟେଲୋଷ୍ଟୋନ୍ ନଦୀ ମୁଖ୍ୟତଃ ଦୁଇଟି ବୃହତ୍ ପ୍ରପାତ ସୃଷ୍ଟି କରିଅଛି—ତଳ ପ୍ରପାତ, ଉପର ପ୍ରପାତ । କାନିୟନ୍ କାନ୍ଥର ଉଚ୍ଚତା ୮୦୦ରୁ ୧୨୦୦ ଫୁଟ୍ । ଇନ୍ଦ୍ରଧନୁର ଫ୍ରେସ୍‌କୋ ପରି ପାହାଡ଼ସବୁ ନାନା ରଙ୍ଗରେ ରଙ୍ଗୀନ୍; ପ୍ରପାତର ଧାରେ ଧାରେ ଓ ତଳେ ଗାଢ଼ ସବୁଜ

ଶିଉଳିର ଆସ୍ତରଣ, ତା ଉପରେ ଫିକା ହଳଦିଆ, ଗାଢ଼ ନାଲ୍ ଓ କମଳା ଲେମ୍ବୁର ରଙ୍ଗ, ପାହାଡ଼ କାନ୍ଥିରେ; ମୃତ୍ତିକାହଳଦିଆ ହେଲା ପରି ଦିଶୁଛି । ବର୍ଷା ପରେ ଖରାରେ ଏ ରଙ୍ଗ ଆହୁରି ଚକ୍ ଚକ୍ ଦିଶେ । ରଙ୍ଗର ମଧ୍ୟେ ମଧ୍ୟେ ତୃଣ ଓ ବୃକ୍ଷ ଲତାର ଶ୍ୟାମଳ ଶ୍ରୀ, ପୁଷ୍ପ ବିଚିତ୍ରିତ । ଗନ୍ଧର୍ବ-ତମ ଗିରିଗର୍ଭ ମଧ୍ୟରେ ପ୍ରପାତର ଇନ୍ଦ୍ରଧନୁ ଉପରେ ଦୃଷ୍ଟି ରଖି ଭାବୁଥିଲି—କେମିତି ଚଞ୍ଚଳ ପରସ୍ତ ଗିରି କନ୍ଦି ଏତେ ତଳକୁ ଆସିଲି । ସୌନ୍ଦର୍ଯ୍ୟ ଗୋଟାଏ ନିଶା, ସେ ନିଶା ଲାଗିଲେ କ୍ଳାନ୍ତି ବାଧେ ନାହିଁ, କ୍ଷୁଧା ଲାଗେ ନାହିଁ ।

ପର୍ବତର ବାଙ୍କେ ବାଙ୍କେ ନଦୀର ଗୁରୁଗର୍ଜିତ ପଥ, ବନ୍ଧ ପଥେ-ପଥେ ରୌଦ୍ର ରଞ୍ଜିତ ସ୍ରୋତ, କହୁ ପ୍ରପାତିତ; ଭଗ୍ନ ଭଙ୍ଗୁର ଶୈଳ, ସ୍ଥାନେ ସ୍ଥାନେ କୁଞ୍ଚିତ; ସ୍ଥାନେ ସ୍ଥାନେ ଗୁଳ୍ମିତ, ଲୁତା ବୃକ୍ଷ ଭାବେ ପ୍ରସାରିତ ପର୍ବତ ଉପରେ ସୌନ୍ଦର୍ଯ୍ୟ ସୁପ୍ତ, ଗିରିକନ୍ଦରରେ ଚଞ୍ଚଳ, ଅରଣ୍ୟେ ଅରଣ୍ୟେ ଗମ୍ଭୀର; ଚକ୍ଷୁ କେତେବେଳେ ବୁଲୁଥାଏ ଉଷ୍ଣ ପ୍ରସ୍ରବଣ ଧୂମେ ମେଘାବୃତ ନଦୀ ସ୍ରୋତ ଗଭୀର ଗର୍ଭରେ; ତରୁ ଶ୍ୟାମଳ, ଧାତୁରଞ୍ଜିତ ଶୈଳ ଉପରେ, ହଂସ ସନ୍ତରିତ ଗାଢ ନୀଳ ଜଳରେ, ମରୁଭୂମି ପରି ପିଇ ଯାଉଥାଏ ସବୁ । ସେ ତୃଷା ତାର ମେଣ୍ଟିବାର ନୁହେଁ; ଶିଶୁ କୌତୂହଳରେ କେବେ ଡେଇଁଥାଏ ପ୍ରପାତ ସଙ୍ଗରେ, ଧାଉଁଥାଏ ଝରଣା ସ୍ରୋତରେ, ଅତଟ ଭୂମିରେ ବୃକ୍ଷଟିଏ ପରି ସ୍ତମ୍ଭିତ ହୋଇ ଛିଡ଼ା ହୋଇ ଯାଏ, ଭଙ୍ଗୁର ଉପଳ ସଙ୍ଗେ ସ୍ରୋତ ପରି ଜଳ୍ପନାଶୀଳ ହୁଏ, ରଙ୍ଗୀନ୍ ପ୍ରସ୍ତର ଖଣ୍ଡେ ହୋଇ ପ୍ରପାତ ଆବର୍ତ୍ତେ ବୁଲୁଥାଏ । ଟିକିଏ ଆକାଶ ହୋଇ ଜଳରେ ପ୍ରତିଫଳିତ ହୁଏ, ପ୍ରସ୍ତର ସନ୍ଧିରେ ତୃଣଟିଏ ହୋଇ ନାଲି ନାଲି ଫୁଲ ଫୁଟାଏ, ବିନ୍ଦୁଟିଏ କିରଣ ହୋଇ ରଙ୍ଗୀନ୍ ଉପଳ ଉପରେ ଜଳେ —ଅନଳର ଶିଖା ଭଳି, ଫେନରେ ବୁଦ୍‌ବୁଦ ହୋଇ ନଗାଧୂଳି ଅନେକେ ବୁଲୁଥାଏ, ଉଚ୍ଚତମ ଶିଖର ଉପରେ ଅଥବା ଧ୍ୟାନସ୍ଥ ହୁଏ । ମନର ଲୀଳାଖେଳା ଲାଗିଥାଏ ପ୍ରକୃତି ସଙ୍ଗେ । ମୂର୍ତ୍ତିର ଇନ୍ଦ୍ରଧନୁ ଅନ୍ୟ ମନରେ ଅଙ୍କନ କରିବାରେ ହିଁ ଜୀବନର ସାର୍ଥକତା, ଭାବେ ମୋର ଚିତ୍ରୀ ମନ ।

ଇଗଲ୍କୁ ପଚ୍ଚରିଲି—ପ୍ରପାତ ଦେଖିଲ ?

'ନାକର !'

'ଇନ୍ଦ୍ରଧନୁମସ୍ତ' ?

'ମାଆ ମୁଁ, ନାକର ଓଠରୁ ରକ୍ତ ବୋହୁଚି, ମୁହଁ ମାଡ ପଡ଼ଗଲା !'

ଦେଖିଲି ଏ ଆଉ ଏକ ପ୍ରପାତ, ସେ ଇଗ ଆଖିର ।

ପ୍ରସ୍ତରୀଭୂତ ବୃକ୍ଷ—ଆଗ୍ନେୟଗିରିର ଭସ୍ମ ଓ ଲାଭାରେ ଜୀବନ୍ତ ଜଙ୍ଗଲ ସବୁ ପୋତି ହୋଇ ପଡ଼ିଥିଲା । ୟେଲୋଷ୍ଟୋନ୍ ପାର୍କରୁ ଫସିଲ ଜଙ୍ଗଲ ବାହାରିଛି, ଦଶ ନିୟୁତ ବର୍ଷ ତଳର ଗୋଟିଏ ବନସ୍ପତିର ବୃହତ୍ ଫସିଲ୍ ସଂଗୃହୀତ ହୋଇ ପାହାଡ଼ର ଅର୍ଦ୍ଧ ଭାଗରେ ରଖାଯାଇଛି । ଦର୍ଶକ ଏହାକୁ ଭାଙ୍ଗି ନମୁନା ସଂଗ୍ରହ କରି ନେଇ ଥିବାରୁ ଏବେ ତାର ଚାରି ପଟେ ଲୁହାର ବାଡ଼ ଦିଆଯାଇଛି ।

## ମାମଥ ସ୍ପ୍ରିଙ୍ଗ

ରଙ୍ଗମଞ୍ଚରେ ଆଲୋକ ପୋଇବା ଭାର ଆଂକର ଅଭିଜ୍ଞତା ଉପରେ ପଡ଼ିଛି । କାହା ଉପରେ କେଉଁ ରଙ୍ଗ ପକାଇଲେ ସୁନ୍ଦର ଦିଶିବ, ସେ ସେତିକି କ ଜାଣେ । କେତେବେଳେ କେଉଁ ପାହାଡ଼ ଉପରେ କେଉଁ ଅଲୋକ, ଛାୟା ବା ଛାୟା ମିଶା ଆଲୋକ ପକାଉଛି, ତାକୁ ଏ କାର୍ଯ୍ୟରେ ସାହାଯ୍ୟ କରୁଛି ଗ୍ରୀଷ୍ମ ବର୍ଷା ମିଶା ଋତୁ । କେଉଁ ଗଛ ଉପତ୍ୟକା ସେଜ ବ୍ରସ୍ ରେ ପାଂଶୁଳ, 'ଅମ୍ବେଲା ପ୍ଲାଣ୍ଟ'ରେ ସବୁଜ, କେଉଁଠି ମେଣ୍ଟାଲିଆ—ଫିକା ହଳଦିଆ ଫେଇ ଫୁଲ, ସନ୍ଧ୍ୟାରେ ଫୁଟେ, ସକାଳେ ଖରା ପଡ଼ିଲେ ମଉଳେ, ଆମ ଜହ୍ନି ଫୁଲ ପରି । କେଉଁଠି ଫୁଟିଛି ବଟର-କପ୍; ଫର୍‌ଗେଟ୍-ମି-ନଟ୍ ଜାମ୍ବା ସୁଟିଂ ଷ୍ଟାର୍, କଲମ୍ବାଇନ୍ ଜାମ୍ବା ଗେଣ୍ଟିୟର ଲିଲି, ପ୍ରସ୍ରବଣ ନିକଟରେ ଫୁଟିଛି ୱେଲ୍ ଫିଲପ୍ସମ୍,ବଷାକ୍ତ, ମୃତ୍ୟୁର କୃଷ୍ଣ ଚକ୍ଷୁ ପରି ଦିଶୁଛି । ଏ ଶୃଙ୍ଗରୁ ସେ ଶୃଙ୍ଗକୁ ଉଡ଼ି ଯାଉଛନ୍ତି 'ଅସ୍‌ପ୍ରେ' ପକ୍ଷୀ, ଠିକ୍ ମାଛିଆ ଚିଲ ପରି । ପାହାଡ଼ ଶୃଙ୍ଗରେ

ବୁଲନ୍ତ 'ଷ୍ଟଗ୍‌ହର୍ନ'—ସାର୍ଦ୍ଧ ଶୃଙ୍ଗ, ଅଟଡ଼ୀ ପାହାଡ଼ରେ ଏମାନଙ୍କ ବାସ, ଧୂସର, ରକ୍ତାଭ । ଇଗଲ ପକ୍ଷୀ, ତାର ଛୁଆ ଝାମ୍ପି ନିଏ । ଷ୍ଟଗ୍‌ହର୍ନକୁ ବନ୍ୟ ମେଷ କୁହାଯାଇ ପାରେ । ଆମେ ଗନ୍ଧକ ପାହାଡ଼ ମାଳାରେ ପହଞ୍ଚିଲୁ—ଚୂନ ବୋଳାହେଲ ପରି ଢେଶେ, ଲଣ୍ଡିତ । 'ମାମଥ୍‌ସ୍ପ୍ରିଙ୍ଗ୍' ବହୁ ଶାଖାରେ ବିଭକ୍ତ ହୋଇ ପ୍ରବାହିତ ହେଉଛି ।

ପଥ ତାର ହଳଦିଆ ରଙ୍ଗ ରଞ୍ଜିତ, ମୃତ ବୃକ୍ଷ ସବୁ ଛିଡ଼ା ହୋଇ ଛନ୍ତି । ଏଇ ଉଷ୍ଣ ସ୍ରୋତରେ ଗୋଟିଏ ଗୋଟିଏ ଗୁଳ୍ମ ବଞ୍ଚିଛି, ଫୁଲ ଫୁଟିଛି, ଆଶ୍ଚର୍ଯ୍ୟ । ମୀରା ଗୋଟିଏ ଫୁଲ ତୋଳି ମାଆକୁ ଦେଲା—ଅଗ୍ନିର ଫୁଲ, ଲାଭାରୁ ସାର ନେଇ ବଢ଼ିଛି, ଗନ୍ଧକଜଳକ ପାନକରି ଫୁଟିଛି । ମୁଁ ଗୋଟିଏ ଫୁଲ ତୋଳୁ ତୋଳୁ ହାତରେ କଣ୍ଟା ଗଳିଗଲା । ଅତି ଶକ୍ତ ବୃନ୍ତ ତାର, କିନ୍ତୁ କି ସୁନ୍ଦର !

ଏଠି ଧୂମ, ସେଠି ଧୂମ, ଧୂମ ପର୍ବତ; ତଳା ପାହାଡ଼କୁ ବ୍ୟୋମକେଶ କରୁଛି । ଚୂର୍ଣ୍ଣ ଗନ୍ଧକର ମାମଥ୍, ପୃଷ୍ଠ ପଟେ ତାର ଘନ ନୀଳ ପାହାଡ଼, ସମାଧି ମଣ୍ଡପ ପରି ଗୋଟି ଗୋଟି ଗୋଲାକିଆ ପଥର ଉଠିଛି । ଦୂରବର୍ତ୍ତୀ ଶୈଳରେ ଗୋଧୂଳିର ଯାବକଦ୍ରବ ରଙ୍ଗ କଷା ହେଉଥିବା ବେଳେ ଆମେ ଫେରିଲାଇ 'ମାମଥ୍ ସପ୍'ରେ ପହଞ୍ଚିଲୁ । ଗୋଟିଏ ପଟେ ଗିଫ୍‌ଟସପ, ଅନ୍ୟ ପଟେ ରେଷ୍ଟୁରାଣ୍ଟ । ଟମାଟୋ ଓ 'ଟୁନା' ମାଛ ଖାଉ ଖାଉ ସାମ୍ନାରେ ପଢ଼ିଲି—

'ଦୁନିଆରେ ଦୁଇଟି ବିଷୟରେ ଭାବିବାର ଅଛି
ଭଲ ଅଛ
ଭଲ ନାହଁ ।
ଯଦି ଭଲ ଅଛ; ଭାବିବାର ନାହିଁ

ଯଦି ଭଲ ନାହଁ, ଦୁଇଟି ବିଷୟରେ ଭାବିବାର ଅଛି
ବଞ୍ଚିବ
ଜମ୍ବା

ମରବ
ଯଦି ଭଲ ହୋଇଗଲ, ଘାବିବାର ନାହିଁ ।
ଯଦି ମଲ, ଦୁଇଟି ବିଷୟରେ ଘାବିବାର ଅଛି ।
ସ୍ୱର୍ଗକୁ ଯିବ
କମ୍ବା
ନରକକୁ ଯିବ
ଯଦି ସ୍ୱର୍ଗକୁ ଗଲ, ଘାବିବାର ନାହିଁ
ଯଦି ନରକକୁ ଯାଅ, ଏତେ ବନ୍ଧୁଙ୍କୁ ଭେଟିବ ଯେ
ତୁମକୁ ଆଉ ଘାବିବାକୁ ବେଳ ମିଳିବ ନାହିଁ ।
ଅତଏବ ବନ୍ଧୁ କର
ବନ୍ଧୁତା ଜମାଅ;
ବନ୍ଧୁତା ଜମାଇବା ଲାଗି
ଆମ ଦୋକାନରୁ ଉପହାର କିଣି ନିଅ' ।

ବିଜ୍ଞାପନରେ କାବ୍ୟର କଳ୍ପନା ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ମୋର ଧ୍ୟାନ ଭଙ୍ଗ ହେଲା ମୀରାର କ୍ରନ୍ଦନରେ । ଯେତେ ପ୍ରକାର ବୁଝାଇଲୁ ନ ହେଲା; କାହିଁକି କାନ୍ଦୁଚୁ ? ନିରୁତ୍ତର, କେବଳ କ୍ରନ୍ଦନ; ଭ୍ରମଣ ବରଖାସ୍ତ କରି ଦେଉଛୁ ନିଶ୍ଚେ । କିନ୍ତୁ ଏତେ ଲୋକଙ୍କ ଟଙ୍କାରେ ବରଖାସ୍ତ କରିବାର କ ଅଧିକାର ଅଛି ଆମର ? ଇଏ ପରୀକ୍ଷା କଣ କରିବା ?

କହିଲି—ଏ ଗୋଟାଏ ରୋଗ !
'ପ୍ରତିକାର ?'
'ଡାକ୍ତର ହୋଇ ମତେ ପଚାରୁଛ ?'
ସ୍ତବ୍ଧ—ମାନେ ମଜା !

ଇଏ ମୋ ପରାମର୍ଶ ଗ୍ରହଣ କଲାନାହିଁ । ଅଧିକ ଟଙ୍କାର ଭୟରେ ସେ ମୀରାକୁ ନାନା ପ୍ରକାର ଧମକ ଦେଲା; କିଛି ଫଳ ନ ହେବାରୁ

ଦୁଇ ତିନି ଡଲାର୍‌ର ଖେଳଣା ଉପହାର ଦେଲି । ଦେଖି ଦେଖି ମୀର କାନ୍ଦ ଭୁଲିଗଲା ।

ବାଟରେ ଫେରୁ ଫେରୁ ଆମେ 'ଲିବର୍ଟିକ୍ୟାପ' ପାହାଡ଼ ସ୍ତମ୍ଭ ଦେଖିଲୁ—୩୭ ଫୁଟ୍ ଉଚ୍ଚ; ଜଳପ୍ରସ୍ରବଣ ଏହାକୁ ବର୍ତ୍ତୁଳ କରିଛି, ବର୍ଷା, ବରଫ ଏହାକୁ ଗୋଟାଳିଆ କରିଛି – ବହୁ ଯୁଗର ପ୍ରାକୃତିକ ବିପ୍ଳବରେ ଗୋଟିଏ ମେରୁଦଣ୍ଡ ପରି ଛିଡ଼ା ହୋଇଛି ।

'ନରିସ୍' ଗାଇଜର ବେସିନରେ ବହୁ ମୃତ ତରୁର କଙ୍କାଳ ମଧ୍ୟରେ ଅସଂଖ୍ୟ ଶାଖାରେ ଧୂମ ବିଚରଣ କରୁଛି । ଆଗ୍ନେୟଗିରିର ଶିରପ୍ରଶିରା ଚତୁର୍ଦ୍ଦିଗରେ ବ୍ୟାପ୍ତ । ମୃତ ଅରଣ୍ୟ ପଥରେ ପାଖୁଁ ପାଖୁଁ ତିନି-ଗୋଟି ଶୃଙ୍ଗ ସନ୍ଧ୍ୟାର ଶେଷ ଆଶୀର୍ବାଦ ଲାଭ କରିବାର ଦେଖିଲୁ, ସ୍ୱର୍ଣ୍ଣ ଜଳରେ ସ୍ନାତ । ଚରୁଥାନ୍ତି ମୁଜ୍, ଏଲକ୍, କୃଷ୍ଣସାର, ବାଇସନ୍; ଉଡ଼ୁଥାନ୍ତି ମାଳବକ, ଛଞ୍ଚାଣ, ସ୍ନାଇପ୍, ହଂସ, ଅସ୍‌ପ୍ରେ ।

ଶରତର ବଙ୍କିମ ଚନ୍ଦ୍ର ପାଇନ ବନ ଉପରେ, ସନ୍ଧ୍ୟାର ଈଷତ୍ ଲୋହିତ ଆଭା ଉପରେ ରୌପ୍ୟର ଆଭାସ, ସ୍ୱଦେଶ ଓ ସ୍ୱଗ୍ରାମକୁ ମନକୁ ଉଡ଼ାଇ ନେଲା । ନରିସ୍ ବେସିନ୍‌ରେ ବାଟ ବାଉଳା ହେଲୁ; ତିରିଶ ଚାଳିଶ ମାଇଲ୍ ଏଣେତେଣେ ବୁଲିଲା ପରେ ଆମେ ଜାକ୍‌ସନ୍ କ୍ୟାମ୍ପରେ ପହଞ୍ଚିଲୁ—ପେଟ୍ରୋଲ ସରି ଆସୁଛି, ରାତି ସାଢ଼େ ନ'ଟା; ଘରକୁ ଫେରିବୁ କିପରି ? ଫରେଷ୍ଟରେଞ୍ଜର୍‌ଙ୍କୁ ସମ୍ବାଦ ଦେବାରୁ ସେ କହିଲେ – ଆମର ଏଠି ଏମର୍ଜେନ୍‌ସି ପେଟ୍ରୋଲ ଗଚ୍ଛିତ ଅଛି, ଏକଦମ୍ ଶେଷ ନ ହେବା ପର୍ଯ୍ୟନ୍ତ କାହାକୁ ଦିଆ ହୁଏ ନାହିଁ । ଭ୍ରମର ଅଛି । ଯୋଉଠି ସରିବ, ସେଠି ଗାଡ଼ି ରଖି ଖବର ପଠାଇଲେ ଆମ ଗାଡ଼ି ପେଟ୍ରୋଲ ନେଇ ଦେଇ ଆସିବ । ଏ ମହାନ୍ ଅଭୁଆ ପାଠ । ଭଗବାନଙ୍କୁ ଡାକି ଉଦ ଗାଡ଼ି ଚଳାଇଲି । ଭାଗ୍ୟକୁ ଥିବା ପେଟ୍ରୋଲରେ ସେ ଷୋଳ ମାଇଲ୍ ଯାଇ 'ଓଲ୍‌ଡଫେଥ୍‌ଫୁଲ୍'ରେ ପହଞ୍ଚିଲି; ଗାଇଜର୍ ଧୂମ ଅନ୍ଧକାରରେ ଆଦୌ ଦିଶୁ ନ ଥାଏ ।

## ୟେଲୋଷ୍ଟୋନ୍ (ତା ୨୧ । ୮ । ୭୭)

ଏହା ଯୁକ୍ତରାଷ୍ଟ୍ରର ବୃହତ୍ତମ ଜାତୀୟ ପାର୍କ, ୧୮୭୨ ଖ୍ରୀଷ୍ଟାବ୍ଦରେ ସ୍ଥାପିତ, ଅରଣ୍ୟସଙ୍କୁଳ । ଏଇ ଅରଣ୍ୟରେ ୮୧୯ ବାଇସନ୍, ୧୩ହଜାର ଏଲ୍‌କ, ୩୫୦ଟି ଝୁମ୍ପୁସାଉ, ୫୦୦ କଳା ଭାଲୁ, ୨୦୦ ଭଇଁସା ଭାଲୁ, ବହୁ ଲାଲ୍ କୋକଶିଆଳୀ, ମୃଗ୍ ଅଛନ୍ତି । ଓଧସବୁ ନଦୀ କୂଳ ବୃକ୍ଷ କୋଟରରେ ବାସ କରନ୍ତି । ଏମାନଙ୍କ ଶରୀର ଦୀର୍ଘ, ପଦ କ୍ଷୁଦ୍ର । ଏମାନେ ନିଜ ଆକୃତିର ଦଶଗୁଣ ବୃହତ୍ ଜୀବଜନ୍ତୁ ମାରି ଖାନ୍ତି । ଗ୍ରୀଷ୍ମରେ ଏମାନେ ଲାଲ୍‌ଭ ଧୂସର, ଶୀତରେ ଶ୍ୱେତ ।

'ମସ୍' ହ୍ୟାଟ୍‌ର ଲାଞ୍ଜ ଲମ୍ବ, ସେ ପୋଖରୀ କୂଳ ଗାତରେ ରହେ, ପାଣିରେ ପଶି ମାଛ ମାରି ଖାଏ । ବ୍ୟାଜେର ଦେଖିବାକୁ ନେଉଳ ପରି, ପାଦ ଖ୍ଲେଟ; ଧଳା ଓ କଳା ରଙ୍ଗରେ ମୁଖଟି ଚର୍ଚ୍ଚିତ, ଏହାର ପ୍ରଧାନ ଆହାର ଗୁଣ୍ଡୁଚିମୂଷା । 'ମର ମଟ୍'ର ମୁହଁ ଗୁଣ୍ଡୁଚିମୁଷାର ମୁହଁ ପରି । ସେ ଶୀତକାଳରେ ଛ'ମାସ ଶୋଇ ରହେ । ୩୦୭୧ ବର୍ଗମାଇଲ ବ୍ୟାପୀ ଏଇ ପାର୍କ ଅତିକ୍ରମ କଲାବେଳେ ବହୁ ସମୟରେ ଭାଲୁ ଆସି ସାମ୍ନାରେ ବସି ରହେ । ପାଉଁରୁଟି ଦେଲେ ଖାଏ । ଯାତ୍ରୀମାନେ ଗାଡ଼ି ଛୁଡ଼ା କରି ଫଟୋ ନେଇଥାନ୍ତି । ଭାଲୁ ଓ ଅନ୍ୟ ଜୀବଜନ୍ତୁଙ୍କ କାନରେ ଗୋଟିଏ ଗୋଟିଏ ନମ୍ବର ଝୁଲା ହୋଇଛି, ସେନ୍‌ସସ୍ ସମୟର ।

ୟେଲୋଷ୍ଟୋନ୍‌ର ସର୍ବୋଚ୍ଚ ପର୍ବତ ଇଗଲ୍‌ପିକ୍‌ର ଉଚ୍ଚତା ୧୧୩୫୮ ଫୁଟ୍ । ଏହାକୁ ଘୁଡ଼ ଇଲେକ୍‌ଟ୍ରିକ୍ ପିକ୍, ସେପଲଚର ପିକ୍ ଆଦି ବହୁ ଉଚ୍ଚ ଶୃଙ୍ଗମାନ ରହିଅଛି । ମାଉଣ୍ଟ ଏଭରେଷ୍ଟରେ ସାମୁଦ୍ରିକ ଫସିଲ୍ ପ୍ରଚୁର ପରିମାଣରେ ଲୁକ୍‌କାୟିତ ହୋଇ ରହିଛି ।

ୟେଲୋଷ୍ଟୋନ୍ ହ୍ରଦ କୂଳରେ ଆମର ମୋଟେଲ । ହ୍ରଦର ଲମ୍ବ କୋଡ଼ିଏ ମାଇଲ୍, ଗଭୀରତା ତିରିଶ ଫୁଟ୍, କୂଳ ଭୂମିର ପରିମାଣ ପ୍ରାୟ ୩୦୦ ମାଇଲ୍ ।

ଖରା ପାଗ । ପାଇନ୍‌ର ଟାଓ୍ୱାରରେ ଅଧା ଖରା ଅଧା ଛାଇ; ମୂଳେ ମୂଳେ ଚାରି ହଳଦିଆ ଫୁଲ; ଗୁଣ୍ଡୁଚି ମୂଷା ଗଛ ଉପରକୁ

ଉଠୁଚ, ପୁଣି ଆହାର ଖୋଜିବା ଲାଗି ତଳକୁ ଖସୁଚ । ବର୍ଷାଧୂଆ ବନର ଶାଖାରେ ଶାଖାରେ ଫିକା ସୁନା ପତ୍ର ଗବ୍ଭ, ଗଛଲତା କଣ୍ଟି ନୂତନ ଆସ୍ୱାଦ ଅନୁଭବ କରୁଥିଲା ପରି ପ୍ରଫୁଲ୍ଲ ଦିଶୁଥିଲେ । ବାମପଟେ ପାଟେଲ ହଳଦିଆ ଘାସ, ଡାହାଣ ପଟେ ସ୍ୱେଲ୍ଲୋଷ୍ଟୋନ୍ ହ୍ରଦର ନୀଳ ଜଳ, ତା ମଧ୍ୟରେ ଦ୍ୱୀପ ଓ ପୃଷ୍ଠ ପଟେ ପର୍ବତମାଳା । ଖାଇ ତାର ଅଚ୍ଛନ୍ନ ପ୍ରସ୍ରବଣ, ଧୂମରେ; ପର୍ବତ ଶିଖରକୁ ଗୃହିଁ ହେଉ ନ ଥିଲା, ଦର୍ପଣ ଉପରେ ରୌଦ୍ର ପରି ଚକ୍ ଚକ୍ କରୁଥିଲା ତୁଷାର, ଚକ୍ ଚକ୍ ତେଜ ଧାଉଁଥିଲେ ଆମ ଆଡ଼େ । ଆମେ ସ୍ୱେଲ୍ଲୋଷ୍ଟୋନ୍ ଗ୍ରାଡ଼ିଲୁ ।

ଡାହାଣ ପଟେ ଲେଉଇସ୍ ନଦୀ, ଲେଉଇସ୍ ହ୍ରଦ; ଲେଉଇସ୍ ନଦୀ ପ୍ରପାତ ସୃଷ୍ଟି କରି ଦୁଇ ପାହାଡ଼ ମଧ୍ୟବର୍ତ୍ତୀ ଗଭୀରତମ ଗର୍ଭରେ ବୁହିଲାଣି ।

## ଗ୍ରାଣ୍ଡ୍ ଟେଟନ ନ୍ୟାସନାଲ ପାର୍କ

ଏହି ପାର୍କଟି ୧୯୨୯ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ; ଏଥିରେ ବନ ଅଳ୍ପ, ପ୍ରାନ୍ତର ଅଧିକ; ତିରିଶ ମାଇଲ ପର୍ଯ୍ୟନ୍ତ ପର୍ବତମାଳା ଲମ୍ବିଛି; ଗ୍ରାଣ୍ଡ୍ ଟେଟନ୍ ପର୍ବତ ବୃହତ୍ତମ; ଏହାର ଉଚ୍ଚତା ୧୩,୭୬୬ ଫୁଟ୍ । ପର୍ବତରେ ଧାରେ ଧାରେ ହ୍ରଦ; ସେଥି ମଧ୍ୟରେ ଜାକ୍ସନ୍ ହ୍ରଦ ବୃହତ୍ତମ । ବାଟରେ ହକଲ୍‌ବେରି ଉଷ୍ଣ ପ୍ରସ୍ରବଣ । ଗ୍ରାଣ୍ଡ ଟେଟନ୍ ନ୍ୟାସ୍‌ନାଲ୍ ପାର୍କ ଭିତରେ ପଶି ଆମେ ଗ୍ରାଣ୍ଡ୍ ଟେଟନ୍ ପର୍ବତ ଧାରରେ ଆସି ପହଞ୍ଚିଲୁ । ନିକଟରେ ତାର 'ଗ୍ରାଣ୍ଡ୍ ଟେଟନ୍' ହ୍ରଦ, ପର୍ବତର ଉଚ୍ଚ ଉଚ୍ଚ ଶୃଙ୍ଗଗୁଡ଼ିକ ତୁଷାର ମଣ୍ଡିତ, ତୁଷାର ସ୍ରୋତର ଘର୍ଷିତ ପଥ ପର୍ବତ ଗାତ୍ରରେ ସ୍ପଷ୍ଟ ଦିଶେ, ତୃଣ ସବୁଜ ଧୂମର । ଅପ୍ରଶସ୍ତ ହ୍ରଦର ଗୋଟିଏ ଧାର ତରୁମଣ୍ଡିତ, ଅନ୍ୟ ଧାରେ ପର୍ବତମାଳା, ଗ୍ଲୁପ୍ସ ତାର ହ୍ରଦର ତରଙ୍ଗରେ ନୃତ୍ୟ କରେ ।

ଟେଟନର ମୁଣ୍ଡ ଟାଙ୍ଗରା, ଦେହ ଫୁଙ୍ଗୁଳା, ଇତସ୍ତତଃ ତୁଷାର ଚର୍ଚ୍ଚିତ । ଏ ପର୍ବତରେ ଲୁକ୍କାୟିତ ରହସ୍ୟ ବୋଲି କିଛି ନାହିଁ, ସବୁ ଉନ୍ମୁକ୍ତ, ମହାତ୍ମାଙ୍କ ବେଶ ଓ ମନ ପରି ସବୁ ସରଳ ଦିଶେ । ତାର ମହତ୍ତ୍ୱ ମୋହିତ କରେ, ତାର ମାହାତ୍ମ୍ୟ ଅବନତ କରେ, ତାର ବ୍ୟକ୍ତିତ୍ୱ

ଊର୍ଦ୍ଧ୍ୱମୁଖୀ କରେ—କି ଏକ ଅଦ୍ଭୁତ ଆଧ୍ୟାତ୍ମିକତା ଅନ୍ତରକୁ ରଞ୍ଜିତ କରେ—ଡାକିବାକୁ ମନ ହୁଏ—ହେ ଭଗବାନ୍, ହେ ଶଙ୍କର, ଝଟିକା ବର୍ଷା ତୁଷାର ରୌଦ୍ରରେ ଭଙ୍ଗେ ନାହିଁ ଯେଉଁ ଧ୍ୟାନ, ତହିଁରେ ମୋତେ ଧ୍ୟାନସ୍ଥ କର, ହେ ବଶିଷ୍ଠ, ମୋତେ ଯୋଗନିଷ୍ଠ କର, ହେ ବାଲ୍ମୀକି, ମୋତେ ଆତ୍ମସାଧନାରେ ବଲ୍ମୀକ କରି ଦିଅ ।

ଜାକ୍‌ସନ୍ ହ୍ରଦରୁ 'ସ୍ନେକ୍' ନଦୀ ବାହାରିବାର ଦେଖିଲୁ, ସର୍ପ ପରି ବଙ୍କା, କିନ୍ତୁ ଗତି କ୍ଷିପ୍ର ନୁହେ । ତାପରେ ଆମେ 'ଜାକ୍‌ସନ୍ ହୋଲ୍' ଉପରକୁ ଉଠିଲୁ । ଏହା ଏକ ଦୁଇଶତ ଫୁଟ ଉଚ୍ଚ ପାହାଡ଼, ଶୋଭିତ ପାଇନ୍, ପପ୍‌ଲର୍ ଓ ଓକ୍‌ତରୁ, ମଧ୍ୟେ ମଧ୍ୟେ—ତୃଣ ପ୍ରାନ୍ତର ପୁଷ୍ପୋଦ୍ୟାନ । ଏ ପାହାଡ଼ ଗୋଟିଏ ଦର୍ଶନ-ମଣ୍ଡପ । ଏଠୁ ଟେଟନର ସମୂହ ଦୃଶ୍ୟ ଉପଭୋଗ କରିହୁଏ—ପର୍ବତ, ଝରଣା, ପୁଣି ପର୍ବତ, ଦୁଇ ପର୍ବତ ମଧ୍ୟସ୍ଥ କ୍ଷୀଣ ଉପତ୍ୟକା, ଅପରାଜିତାଭ ନୀଳିମା, ଜାକ୍‌ସନ୍ ହ୍ରଦର ଦ୍ୱୀପ, ତୃଣ ପ୍ରାନ୍ତରର ପକ୍ୱ ତୃଣ ।

ସେ ଯୁଗର ତୁଷାରସ୍ରୋତ ପର୍ବତର ମୃତ୍ତିକା ବୋହି ଆଣି ରଖିଛି କେବଳ ପାଷାଣର କଙ୍କାଳ । ସେଇ ସ୍ରୋତ ତରଳ କରିଛି ପର୍ବତର ମୂଳେ ମୂଳେ ବହୁ ହ୍ରଦ ସୃଷ୍ଟି—ପର୍ବତର ରୌପ୍ୟ ମୁକୁର ପରି ଦିଶେ, ମଧ୍ୟାହ୍ନ ରୌଦ୍ରରେ । ଏ ସବୁ ସ୍ୱପ୍ନଲୋକର କହିଲେ ବର୍ଣ୍ଣନା ଏଡ଼ି ଦିଆଯାଏ । ପୂର୍ବବର୍ତ୍ତୀ ପର୍ବତରୁ ସ୍ୱାତନ୍ତ୍ର୍ୟ ଚିହ୍ନିତ କରିବା ଲାଗି ଭାଷା ପାଏ ନାହିଁ । କେବଳ ମନକୁ ଆସେ—ମହତ୍, ସୁନ୍ଦର ।

'ମାଉଣ୍ଟ ମର୍‌ଟନ୍' ମଧ୍ୟ ଗ୍ରାଣ୍ଡ୍‌ଟେଟନ୍ ପରି ଉତ୍ତୁଙ୍ଗ, ତୁଷାର ମୁକୁଟିତ; ତୁଷାର ସ୍ରୋତର ଗଭୀର ପଥ ପାହାଡ଼େ ପାହାଡ଼େ ଚିହ୍ନିତ, ମୂଳେ ମୂଳେ ତାର 'ଜେନି' ହ୍ରଦ, କୂଳ ତାର ଗୁଳ୍ମିତ, ସ୍ଥାନେ ସ୍ଥାନେ ତୃଣାବୃତ, ବନାଚ୍ଛନ୍ନ, ଗଭୀର ଗହ୍ୱର ମଧ୍ୟରେ ପାହାଡ଼ୀ ନଦୀ, 'ଜେନି' କୂଳେ କୂଳେ ଯାଇ ଆମେ ତୁଷାର ସ୍ରୋତରୁ ଉଦ୍ଭୂତ 'ସ୍ଟ୍ରିଙ୍ଗ୍‌ଲେକ୍' କୂଳରେ ପହଞ୍ଚିଲୁ, ଅପ୍ରଶସ୍ତ, ଦୀର୍ଘ, ଗାଢ଼ନୀଳ । ଯୁଗେ ଯୁଗେ ବରଫର ମାର ସହି ସହି ଭଗ୍ନଗ୍ରୀବ, ଚୂର୍ଣ୍ଣମସ୍ତକ ଗିରି ୧ବୁ, ତୁଷାର ଝଟିକାରେ

ବର୍ଷଣ୍ଡି ବନ୍ଧୁର, କନ୍ୟାକାଳର ଅକୃତ କାହାର ନାହିଁ; କାଳକ୍ରମେ ବଦଳି ଯାଇଛି ।

ଷ୍ଟିଙ୍ଗହ୍ରଦ ପ୍ରାୟ ସାତ ହଜାର ଫୁଟ୍ ପାହାଡ ଉପରେ ଅଛି, କୂଳରେ ତାର ଗମ୍ଭୀର ପାଇନ୍ ବନ, ଘନ ଗୁମ୍ଫାରେ ବସି ଲଞ୍ଚ ଖାଇଲୁ ।

ରାସ୍ତା ଦୁଇ ପାଖରେ ପର୍ବତମାଳା, ଆମେ ଯାଇ ଜାକ୍‌ସନ୍ ସହରରେ ପହଞ୍ଚିଲୁ, ଏହାର ଲୋକସଂଖ୍ୟା ଚଉଦ ହଜାର । ସହର ମଧ୍ୟରେ ଗୋଟିଏ ପାର୍କ, ସେଥିରେ ପ୍ରବେଶ କରିବା ଲାଗି ହରିଣ ଶିଙ୍ଗର ଗୋଟିଏ ତୋରଣ ହୋଇଛି । ହରିଣ ଶିଙ୍ଗ ଏତେ ଶକ୍ତ, ଅଥଚ କୌଣସି କାର୍ଯ୍ୟରେ ଲାଗେ ନାହିଁ । ନଗରବାସୀ ବିଭିନ୍ନ ସୁଦୃଶ୍ୟ ସ୍ଥାନରେ ହରିଣ ଶିଙ୍ଗର ତୋରଣସବୁ ନିର୍ମାଣ କରିଛନ୍ତି ।

ତାପରେ ସଲଟ୍ ନଦୀ କୂଳେ କୂଳେ ଯାଇ ଗହ୍ମାର ମଝିରେ ପହଞ୍ଚିଲୁ—ଫକ୍‌କା ନଡ଼ା ଗଦା ମଗ ହୋଇଛି, ନଦୀ କାଣ୍ଡିଆରେ କେତେ କଣ ଫସଲ; ମି. ବାର୍ନେଲ୍ ଗାଡ଼ିରେ 'ଗ୍ୟାସ୍' ଭର୍ତ୍ତି କରୁ-କରୁ ଆମେ ତାଙ୍କ ଦୋକାନରେ ବସି ଆଇସ୍‌କ୍ରିମ ଖାଇଲୁ । ବାରନେଲ ଅମ୍ବରେଲ୍ପୁ ଦେବାକୁ ଯାଇ କହିଲେ—ଆମେ ଗୋଟିଏ ସ୍ୱିସ୍ ପରିବାର । ଏବେ ଆମେରିକାବାସୀ; ଛ'ବର୍ଷ ତଳେ ଏଠିକି ଆସିଥିଲୁ, ସ୍ୱାସ୍ଥ୍ୟ ପରିବର୍ତ୍ତନ ଲାଗି । ମିସେସ୍‌ଙ୍କ ଦେହ ସହରରେ ମୋଟେ ଭଲ ରହୁଲ ନାହିଁ । ଡାକ୍ତରଙ୍କୁ ପଇସା ଗଣି ଗଣି ଥକିଲୁ । ତାପରେ କେତେକ ବନ୍ଧୁଙ୍କ ପରାମର୍ଶରେ ଏଠିକି ଆସି ସ୍ୱାସ୍ଥ୍ୟର ଅଦ୍ଭୁତ ପରିବର୍ତ୍ତନ ଘଟିଲା । ଏଇ ପାହାଡ ଅଞ୍ଚଳ ସଲଟ ନଦୀ କୂଳ ହାଓ୍ୱା ବଡ଼ ସ୍ୱାସ୍ଥ୍ୟକର । ଏଠି ରହୁ ରହୁ ଆମେ ରହିଗଲୁ । ନିଜ ଚଳାଚଳ ପାଇଁ ଗୋଟିଏ ଦୋକାନ ଖୋଲିଲୁ । ଏବେ ଆମର କିଛି ଅଭାବ ନାହିଁ । ମାଟେଣ୍ଟି ମିଳୁ । କଥାଭାଷା ହେଉଛି । ଏତିକିବେଳେ ବାରନେଲଙ୍କ ବଡ଼ପୁଅ ସଲ୍‌ଟ ନଦୀରୁ ବନଶିରେ ଗୋଟିଏ ରେନ୍‌ବୋ ଓ ଟ୍ରାଉଟ୍ ମାଛ ମାରି-ଆଣିଲା, ଓଜନରେ ପ୍ରାୟ ଦେଢ଼ କିଲୋ ହେବ । ଉଦୟ ତ ଜଣେ ବନିଶିଆ, ଧରିବାକୁ ଓ ମାଛକୁ ପ୍ରଶଂସା କରି ଲାଗିଲା । ମୁଁ କହିଲି—

ଏତେ ପ୍ରଶଂସା କରନ୍ତି; ଯଦି ଆଇଁବିଭୁଆଁଣା କହେ ? ଯଦି କହେ—ମାଛଟା ଭିତରେ ପଶିଗଲା; ତେଣୁ ସ୍ୱାଦ ଲାଗିଲା ନାହିଁ ।

ଉଦୟ କହିଲା—ଏଠି ଖାଦ୍ୟ ପ୍ରଚୁର; ତେଣୁ ଭୁଆଁଣା ନାହାନ୍ତି, ବରଂ ଚସଦକୁ ବେଶୀ ପସନ୍ଦ କରନ୍ତି ।

ବଡ଼ୀ ଟେବୁଲ ଉପରେ 'Cheese' ବହିଟିଏ ପଡ଼ିଥିଲା; ପାଞ୍ଚଶ ପୃଷ୍ଠାର । ସାରା ପୃଥିବୀରେ କେଉଁଠି କି ପ୍ରକାର ଛେନା ପ୍ରସ୍ତୁତ ହେଉଛି, ତାର ପ୍ରଣାଳୀ ଏଥିରେ ବର୍ଣ୍ଣିତ । ଛେଳି, ମେଣ୍ଢା, ଓଟଙ୍କ ଦୁଧର ଛେନା । ବହିଟି ଥରେ ଗଡ଼ାଇଗଲି । ମି. ବାରନେଲ ପଚାରିଲେ—କଣ ପଢ଼ୁଛନ୍ତି ?

କହିଲି—'ଛେନା' ବହିରୁ କିଛି ଖାଇଟାମିନ୍ ସଂଗ୍ରହ କରୁଛି, ମୋ ଦେଶବାସୀଙ୍କ ପାଇଁ । କେଜାଣି କାହା ମନ ହେବ—ଏଇ ଛେନା ବ୍ୟବସାୟ କରିବା ଲାଗି ।

ଛେନା ତ ଆମର ଏଠି ଭୁଲ୍ଲାଭିଭୁଲ୍ଲ ଭାବରେ ବ୍ୟବହୃତ—'ଛେନାଟା' କହୁଛି ! ଶୈଶବରେ ଦହି ଛେନା ସହିତ ପରିଚିତ ଥିଲି । ଦୁଧ ଛିଣ୍ଡିଗଲେ କେତେବେଳେ କେମିତି ଦୁଧ ଛେନାଟିକିଏ ଭାଗ୍ୟରେ ଜୁଟୁଥିଲା । ଏ ଦେଶକୁ ଆସି ସ୍ୱିସ୍‌ରୁ ଫରାସୀ, ଇଟାଲୀରୁ ଆମେରିକାନ୍—କେତେ ପ୍ରକାର ଛେନା ଖାଇଲିଣି । କିନ୍ତୁ ଏକରୁ ଅନ୍ୟର ସ୍ୱାତନ୍ତ୍ର୍ୟ କାରିପାରେ ନାହିଁ, ଏକରୁ ଅନ୍ୟର ତାରତମ୍ୟ ଏତେ ଅଳ୍ପ ଯେ ତାହା ବର୍ଣ୍ଣନା କରିବା ମୋ ପକ୍ଷେ ଅସମ୍ଭବ, ମୁଁ ଦେଖଣ୍ଟିଆ, ଚାଖଣ୍ଟିଆ ନୁହେଁ; ସ୍ୱାଦ ବାରିବାରେ ଜହ୍ୱାର ନିପୁଣତା ଆଦୌ ନାହିଁ ।

'ଛେନା' ବହି ପଢ଼ି ମନ ସେଆଡ଼କୁ ଧାଇଁଲା । ଆପ୍‌ଟନ୍ ସହରରେ 'ଷ୍ଟାର୍‌ଭିଲ' ଛେନା କାରଖାନା । ବାହାର ଲୋକର ସାତ-ପ୍ରକାର ଛେନା ଚାଖିବା ଲାଗି ନମୁନା ସ୍ୱରୂପ ରଖାଯାଇଛି । ଛେନାଖିଆ ଲୋକ ବେଶ୍ ଭିଡ଼ ଜମେଇଥାନ୍ତି । ମୁଁ ଦି ଦି ଖଣ୍ଡ ସବୁ ଛେନାରୁ ଚାଖିଲି; ଗୋଟିଏ ସ୍ୱିସ୍ ଛେନା କିଣିନେଲି । ଏ ମଧ୍ୟରୁ କୌଣସି ଗୋଟିଏ ଆମ

ଦୁଧ ଛେନା ସଙ୍ଗେ ସ୍ୱାଦରେ ତୁଳିତ ହୋଇ ନ ପାରେ । କିନ୍ତୁ ଆମ ଛେନା କେତେ ଦିନ ଅବିକୃତ ରଖାଯାଇ ପାରିବ ? ବୈଜ୍ଞାନିକ ଶକ୍ତିରେ ଓ ବ୍ୟବସାୟ ବୁଦ୍ଧିରେ ସେଥିଲାଗି ବିବିଧ ପ୍ରକାର ଛେନା ପ୍ରସ୍ତୁତ ହେଉଅଛି ।

ଆପ୍‌ଟନ୍‌ର ସ୍କଟ୍‌ଗ୍ରିଟି ମଟରଗାଡ଼ି ଯିବା ଭଳି ପ୍ରଶସ୍ତ ରାଜପଥରେ ଏଲ୍‌କ ଶିଙ୍ଗର ଗୋଟିଏ ବିରାଟ ତୋରଣ; ନଡ଼ାଗଦା ଉପରେ ସ୍ଥିତ ହୋଇଛି, ଉଦ୍ୟାନରେ ଗୋଲାପ ଆଉ ଗେଣ୍ଡୁ ଫୁଟିଛି । ସ୍ୱିସ୍ ଛେନା ଧରି ମଟରରେ ବସିବାକୁ ଗଲାବେଳେ ଦଳେ ପାରିଉଡ଼ିଗଲେ, ସେତେବେଳେ ଚପେ ଲିଲିଙ୍କା ଗାଇଲା—

ଆସ ଆସ ପାରିଗୁଡ଼ିକ
ମଟର ଛାତରେ ବସ
ଖାଇବାକୁ ଦେବି ତୁମକୁ
ସ୍ୱିସ୍ ଛେନା ରସ ।

ଗାଡ଼ି ପଛ ପଟେ ଇଭା ବସି ପିଲାଙ୍କୁ ଗୋଟିଏ ଇଂରେଜୀ ଗୀତ ଶିଖାଉଛି—ସାଇମନ୍ ଭାରି ଗରିବ, ତାର ଗୁଡ଼ାଏ ପିଲା, ଦୁଧ ରୁଟି ଛଡ଼ା ସେ ସେମାନଙ୍କୁ ଆଉ କିଛି ଖାଇବାକୁ ଦେଇପାରେ ନାହିଁ ।

ଏ ଦାରିଦ୍ର୍ୟ ଓ ଆମ ଦାରିଦ୍ର୍ୟ ବର୍ଣ୍ଣନା ମଧ୍ୟରେ କି ତାରତମ୍ୟ ! ଆମ ଓଡ଼ିଶାର ଦାରିଦ୍ର୍ୟ ବର୍ଣ୍ଣନା କରିବାକୁ ହେଲେ ମୁଁ ଲେଖିଥାନ୍ତି— ତିନି ଓଳିରେ ଓଳିଏ ଚୁଲ୍ଲୀ ଜଳେ ନାହିଁ; କି ପଖାଳକୁ ଲୁଣ ନାହିଁ, ହାଣ୍ଡି ମାଙ୍କଡ଼ଚିତ୍ ମାରୁଛି; କନ୍ଥା ଏକ୍ଷପରି କିଛି ।

ଗୋଟିକ ପରେ ଗୋଟିଏ ଜାଙ୍ଗପୂ ଅରଣ୍ୟ ଆମେ ଲଙ୍ଘନ କରି ଚାଲିଛୁ, ଇଭା ପିଲାଙ୍କୁ 'ବଚନ' ଶିଖାଉଛି—Fish ଏକ ବଚନ ଓ ବହୁ ବଚନ ଉଭୟ ହେବ । ମୁଁ ଟିକିଏ ଟିପ୍ପଣୀ ଯୋଗ କଲି—ବହୁତ ଛୋଟ ମାଛ ମିଶିଲେ ସୁଦ୍ଧା ସେ ହେବ ଏକ ବଚନ; ଗୋଟିଏ ବଡ଼ ମାଛ ହେଲେ

ସେ ହେବ ବନ୍ଧୁ ବଚନ ! ମୋର ଓଲଟା ପାଠର ମର୍ମ ବୁଝି ସମସ୍ତେ ହସି ଉଠିଲେ ।

ପିଲଙ୍କ ଭିତରେ ମଗମର, କାଦବୋବା, ଉପଦ୍ରବ ଅଶାନ୍ତ ଲଗି ରହିଥିଲ । ଇସ ଗୀତ ଆବୃତ୍ତି କରେଇଲ, କେତୋଟି ଗଳ୍ପ କହିଲ; ମଧୁର କଣ୍ଠସ୍ୱର ତାର, ଚମତ୍କାର ଉଚ୍ଚାରଣ । ଖେଳ ହୋଇ ଇଂରେଜ କବିତାସବୁ ଗାଇ ଯାଉଥିଲ ସେ, ଡାର୍ଲିଙ୍ଗଂ ପବ୍ଲିକ୍ ସ୍କୁଲରେ ପଢ଼ିଛି, ଦୀର୍ଘକାଳ ଆମେରିକାରେ ରହିଲଣି । ପିଲଙ୍କୁ ମୋହିତ କରି ରଖିବାର ଶକ୍ତି ଅର୍ଜନ କରିଛି ସେ । ଗାଳ ମାଡ଼ ନ ଦେଇ କାବ୍ୟ ଓ ସ୍ନେହରେ ସେ ଶାସନ କରିଥାଏ, ମଧୁର ସ୍ୱରରେ, ବଡ଼ ଭଲ ଲଗେ ।

ଦେଖି ଦେଖି 'ଆଇଡାହୋ' ରାଜ୍ୟରେ ଆମେ ପ୍ରବେଶ କଲୁ; ଏହାର ପ୍ରଶସ୍ତ ଗୋଚାରଣ ପ୍ରାନ୍ତର, ଜଳସେଚିତ କୃଷିକ୍ଷେତ୍ର, ଗଗନସ୍ପର୍ଶୀ ପର୍ବତମାଳା, ତୁଷାର ସ୍ରୋତ ନିର୍ମିତ ଜଳପ୍ରପାତ, ଗମ୍ଭୀର ଗର୍ଭ ମଧ୍ୟରେ ପ୍ରବାହିତ ସାଲ୍‌ମନ୍ ଓ ସ୍ନେକ୍ ନଦୀ, ଦୃଷ୍ଟି ଆକର୍ଷଣ କରେ; ଏହି ରାଜ୍ୟର ଏକ ତୃତୀୟାଂଶ ଅରଣ୍ୟାବୃତ—ବର୍ଗହର୍ନ, କଟାଶ, ମୁଜ୍ ମୁଖ୍ୟ ପଶୁ, ଫେଜାଣ୍ଟ ଓ ପଟ୍ରିଜ୍ ପ୍ରଧାନ ପକ୍ଷୀ ।

୧୮୬୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଏଠି ଲୋହିତଭାରତୀୟଙ୍କ ମଧ୍ୟରେ ଧର୍ମ ପ୍ରଚାର ଲଗି ପାଦ୍ରି ଓ କେତେକ ପଶୁଲୋମ ବ୍ୟବସାୟୀ ବାସ କରୁଥିଲେ । ୧୮୮୯ ରେ ଆଇଡାହୋ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲ, ଓ ସେହି ବର୍ଷ ଏହା ଏକ ସ୍ୱତନ୍ତ୍ର ରାଜ୍ୟ ଭାବେ ଗୃହୀତ ହେଲ । ସ୍ୱର୍ଣ୍ଣ ଆବିଷ୍କାର ପରେ ଏହାର ଜନସଂଖ୍ୟା ବୃଦ୍ଧି ଲଭ କରିବାକୁ ଲଗିଲ । ଲଭା ମୃତ୍ତିକା ଅତି ଉର୍ବର; ବରଫରେ ଜମାଟ କରି ଫଳ ଓ ପନିପରିବା ରପ୍ତାନି କରାଯାଏ ।

ଏହି ରାଜ୍ୟରେ ମୋଟରେ ୧୬ ଗୋଟି ଜାତୀୟ ଅରଣ୍ୟ ରହିଅଛି, ଅରଣ୍ୟରେ ଶ୍ୱେତ ପାଇନ୍ ଅଧିକ; 'ଆସ୍‌ପେନ୍' ନଦୀ ତୀର ଓ ସନ୍ତସନ୍ତିଆ ଭୂମିରେ କଟନ୍‌ଉଡ୍ ପ୍ରଚୁର ଜନ୍ମେ ।

'ବେସ୍ୱାର୍' ନଦୀ କୂଳେ କୂଳେ ଯାଇ ଆମେ ମଣ୍ଡପେଲପୁର ସହରରେ ପହଞ୍ଚିଲୁ, ଆଇଡ଼ାହୋର ପ୍ରାଚୀନତମ ନଗର, ଖ୍ରୀଷ୍ଟାବ୍ଦ ପ୍ରାୟ ୧୮୬୩ ଖ୍ରୀଷ୍ଟାବ୍ଦରେ ମରମନ୍‌ମାନେ ଆସି ଏଠି ବାସ କରିଥିଲେ । ଏହି ନଗର ପର୍ବତବେଷ୍ଟିତ । ପାହାଡ଼ ମୂଳ ପର୍ଯ୍ୟନ୍ତ ଲମ୍ବିଛି ଗହମ ଆଉ ମକକା କ୍ଷେତ, ପାହାଡ଼ର ଖାଲ ଦେହରେ ନାଳ କୁହୁଡ଼ର ଆବରଣ; ପଚ୍ଛେ, ଜଙ୍ଗଲ ମାଡ଼ି କାହିଁ ଉଡ଼ିଆସି ସତେ ବା ଆମକୁ ଅଭିନନ୍ଦନ ଜଣାଇଲେ, 'ମିଚେଲ୍' ନାମକ ମୋଟେଲ୍‌ରେ ରାତିଟି କଟିଲା ।

ତା ଆରଦିନ ଦଶଟା ବେଳେ ବାହାରିଲୁ ସଲ୍‌ଟଲେକ । ଗୋଟିଏ ସାଇକେଲରେ ବସି ଭାଇ ଭଉଣୀ ବୁଲୁଥାନ୍ତି, କେତୋଟି ପିଲା ଘାସ ଚଉଁରେ ବସି ଖେଳ ଖେଳୁଥାନ୍ତି, କନକନିଆ ପବନ, ଶୀତ । ରାସ୍ତା ଧାରରୁ ପକେଟରେ ଗୋଟିଏ ଫୁଲ, ପେନ୍ଥାଟିଏ ପିନ୍ଧିଙ୍କ ଦସ ମନରେ ଧେଇ ମୁଁ ଗାଡ଼ିରେ ବସିଲି ।

ରୋଷଣୀରେ କେତେକ ବନ୍ଧୁଙ୍କ ପହଁଚୁଥାନ୍ତି । ଆମେ 'ଓଭଡ଼୍' ଓ 'ପ୍ୟାରସ୍' ସହରରେ ଚହଞ୍ଚିଲୁ—ଗେଣ୍ଡୁଫୁଲର ବଗିଚା ମାର୍ଗଶୀରର ଲକ୍ଷ୍ମୀପୂଜା ଗୁରୁବାର, ସେଇଣସବୁ ଆଖି ଆଗରେ ମୁହୂର୍ତ୍ତେ ନଚ୍ଚାଇ ଦେଲା—ସେତେବେଳେ ବଡ଼ ବଡ଼ ମାଳା ଗୁନ୍ଥି ଲକ୍ଷ୍ମୀମଣ୍ଡାରେ, ଠାକୁରଙ୍କ ଚଉଦଳରେ ବାନ୍ଧୁଥିଲି । କେତେ ସ୍ମରଣୀୟ ସକାଳ ନାଚଗଲା 'ଈଶ୍ୱରକନ୍ଥା'କୁ ଦେଖି । ସୂର୍ଯ୍ୟମୁଖୀକ ଗୁହିଁଦେଇ କେତେ ସେହ୍ଵପର ସୁନ୍ଦର ମୁଖ ଦିଶିଗଲା, ଆଦ୍ୟ ଯୌବନର । ଅଖ୍ୟାତର ସ୍ମୃତିକନ୍ଦରକୁ ଏବେ ସେ ସବୁ ଅପ୍ରେକଚ କରି ରଖିଛି ।

ସୂର୍ଯ୍ୟମୁଖୀ ତ ଏଠି ଏକ ବନ୍ୟ ଫୁଲ-ଉଦ୍ୟାନରେ ରୋପିତ ହେଲେ ବି ସେ ଅଧିକ ଲଳନା ଲୋଡ଼େନାହିଁ, ଗୌରବମୟ ସ୍ଥାନପ୍ରାପ୍ତିରେ ହିଁ ସେ କୃତକୃତ୍ୟ । କିନ୍ତୁ ମୋ ଆଖିରେ ତା ସମୃଦ୍ଧଶ୍ରୀର ଗୋଟାଏ ସ୍ୱତନ୍ତ୍ର ଅଭିଜାତ୍ୟ ଅଛି—ତାର ସୌଖ୍ୟ ସୂର୍ଯ୍ୟଙ୍କ ସଙ୍ଗେ । ରୂପସୀ ତାର କେଶରେ ଲଗାଏ ନାହିଁ, ଦେବତାଙ୍କୁ ଅର୍ପିତ ହୁଏ ନାହିଁ, ଯୂଈ ହେନା ବା ମଲ୍ଲିକାର ସୁରଭି ନାହିଁ ତାର । ସେ କାବ୍ୟରେ ଉଚ୍ଚସ୍ଥାନ ଲଭ

କରନାହାନ୍ତି, କମ୍ପିନ୍ କାଳେ । ତଥାପି ଯୁକ୍ତରାଜ୍ୟରେ ତାର ଆଧିପତ୍ୟ କେହି ଅସ୍ୱୀକାର କରି ପାରିବ ନାହିଁ ।

ମେକ୍‌ବ୍ରାଇଡ୍‌ର ଧୂସର ପାହାଡ଼, ଧୂସର ପ୍ରାନ୍ତର, ଏଠି ଏରଣ୍ଡୋଽପି ଦ୍ରୁମାୟତେ, ଭୂଷାଇତ୍ୟୋଲ ନିର୍ମିତ ଗାଡ଼ି ଶାଳ 'ବେୟାର୍' ଲେକ୍ କୂଳରେ ଆମେ ପହଞ୍ଚିଲୁ, ପାହାଡ଼ ତଳେ ତଳେ ଏହି ହ୍ରଦ ୨୫ ମାଇଲ୍ ପର୍ଯ୍ୟନ୍ତ ଲମ୍ବିଛି, ଆଇଡାହୋ ଓ ଇଉଟା ଉଭୟ ରାଜ୍ୟର ଏହା ଅନ୍ତର୍ଭୁକ୍ତ । ଗୋଟିଏ ଗଜା ପାହାଡ଼ରେ ଛିଡ଼ାହୋଇ ହ୍ରଦର ତରଙ୍ଗିଳ ନୀଳିମା ଓ ବନ୍ୟ ଫୁଲର ବିବିଧ ରଙ୍ଗ ମନରେ ମାଖିନେଲି— ପ୍ରସନ୍ନ ତୃପ୍ତିରେ ମନ ଜୁଆର ଉଠୁଥାଏ ।

ସାମ୍ନାରେ ଗୋଟିଏ ଲେଖ ଦୃଷ୍ଟି ଆକର୍ଷଣ କଲା—ଯେ ରାସ୍ତା ମଇଳା କରିବ, ୨୯୯ ଡଲାର୍ ଜରିମାନା ଦେବ । ଏଇ କଡ଼ା ଆଇନ ଯୋଗୁଁ ପଥ, ପ୍ରାନ୍ତର କ୍ଷେତ୍ର ସମସ୍ତ ସୁନିର୍ମଳ । ଆଇନ ଯେ କରନ୍ତି, ମାନନ୍ତି ଏଠି । ସୁନିର୍ମଳ ରହିବା ଓ ରଖିବା ଏକ ଜାତୀୟ ଅଭ୍ୟାସ ।

ବାଟେ ବାଟେ ବିସ୍ତୃତ ବନ୍ଧ୍ୟ ପର୍ବତ, ସେଥିରେ ବହୁ ଦୁଃଖରେ ରୋପିତ ବୃକ୍ଷ, ବସ୍ତୁସ୍ଥ ହେଲେ ବି କାନ୍ତର ପରି ଦିଶୁଛି । ହଭର୍ ପର୍ବତ—ମାଳା ଅତିକ୍ରମ କଲୁ । 'ସ୍ୱାନ୍' ଲେକ ଆମ ବାମ ପଟରେ, ଡାହାଣ ପଟେ ଗୋଟିଏ ଝରଣା, ଯଠାରୁ ତଳକୁ ଖସି ଯାଇଛି, ଝରଣାର ଦୁଇ କୂଳ ବିସ୍ତୃତ ସବୁଜ ଗ୍ରନ୍ଥିତ । ପ୍ରପାତଟି ଦିଶୁଛି ବିଲମ୍ବିତ ଗୋଟିଏ ବୀଣା ପରି, ବିଜନତାପ୍ରେମୀ, ପାର୍ବତ୍ୟ ଶ୍ରୀ ଗୌରବଅନୁଭବୀ କେହି ଯେପରିକ ଅଦୃଶ୍ୟ ହସ୍ତରେ ଅହୋରାତ୍ର ବଜାଉଛି ! ପାହାଡ଼ ପର୍ବତ ଯେତେକ ସ୍ତମ୍ଭୀଭୂତ ଦର୍ଶକ, ଦେଖୁଛନ୍ତି ଏହି ନର୍ତ୍ତକୀର ବିରାଟ ନୃତ୍ୟ, କ୍ଳାନ୍ତି ନାହିଁ କାହାର ଆଖିରେ ।

•

ପାହାଡ଼ ଉପରେ ପାହାଡ଼ ଉପରେ ପାହାଡ଼; ବହୁ ତରଙ୍ଗିତ, ବହୁ ସ୍ତରାନ୍ୱିତ, ଦୁର୍ଗମୟ; ପିରାମିଡ୍ ଉପରେ ପିରାମିଡ୍ ପରି, ମନ୍ଦିର ଶୈଳୀରେ ନିର୍ମିତ ହୋଇଛି କେତେ, ଶ୍ରୀ ଏହାର ଦେବୀ । ଝିଙ୍କାରୀ ସ୍ୱରରେ ପୂଜା କରୁଛି ବିଜନତା ।

ରାସ୍ତା ଦୁଇ ପାଖର ବୃକ୍ଷ ପରସ୍ପର ସହିତ ଡାଳ ଛନ୍ଦାଛନ୍ଦି ହୋଇ ରହିଛନ୍ତି, ଆମ ମସ୍ତକ ଉପରେ । ଗୋଟିଏ ଗୋଟିଏ ଫୁଲ ଝଡ଼ି ପଡ଼ୁଛି—ଆଶୀର୍ବାଦ ପ୍ରକୃତିର, ସେପରି ଆଶୀର୍ବାଦ ନ ଥିଲେ ଏସବୁ ସ୍ଥାନ ଦେଖିବା କାହା ଭାଗ୍ୟରେ ଘଟେ ?

ମଧ୍ୟପଥ ଭାରରେ ପୁଷ୍ପବୃନ୍ତ ନଇଁ ପଡ଼ୁଛି, କି ଫୁଲ ଫେନ୍ଥା ଫେନ୍ଥା ହୋଇ ଫୁଟିଛି ! ଜୀବନର କଠୋର ସଂଗ୍ରାମକୁ ଭ୍ରୂକ୍ଷେପ ନ କରି କି ଲତା ସେ, ଲେଖାଇ ଦେଇଛି ଅନ୍ତରର ରଙ୍ଗୀନ୍ ଶ୍ରୀ, ସୂକ୍ଷ୍ମତମ କାରିଗରୀରେ, ସୁଖ ସ୍ୱପ୍ନ ପରି କେଉଁ ଏକ ଆଶାସ୍ପୀ ସକାଳର, ମନରେ ବୋଳି ହୋଇଗଲା ତାର ପରାଗ, ସକାଳ କିରଣ ପରି ।

ଭାଗ୍ୟବନ୍ତ ଆଖି ଦୁଇଟି ମୋର ମଧୁମକ୍ଷି ପରି ଉଡ଼ିବୁଲେ ବର୍ଣ୍ଣ ବିଚିତ୍ର ଅଗଣିତ ପୁଷ୍ପ ଉପରେ, ବିପୁଳ ବିଚିତ୍ର ସ୍ଥାପ୍ତ୍ୟାଳୟ, ହୋଟେଲ ଗିରିର ସ୍ତରେ ସ୍ତରେ; ଗୋଟିଏ ପାଖେ ସେଜବ୍ରସ୍, ଅନ୍ୟ ପାଖେ କ୍ରିସ୍ମାସ୍, ସାମ୍ନାରେ ମାପଲ୍, ପାଇନ୍ ମଝେ ମଝେ ଓକ୍, ସିକାମୋର—ତା ମଧ୍ୟରେ ମୋଟେଲ୍; ଭ୍ରମଣକାରୀଙ୍କ ବିଶ୍ରାମ ସ୍ଥଳ । ଆମେ 'ଇଡ଼ାହୋ' ରାଜ୍ୟରେ ପ୍ରବେଶ କଲୁ । ଦୁଇ ପର୍ବତମାଳା ମଧ୍ୟରେ ଇଡ଼ାହୋ ସହର; ଶସ୍ୟକ୍ଷେତ୍ରରୁ ଉଡ଼ି ଆସୁଥିବା ଦଳେ ବଳାକା ଆମକୁ ପାଛୋଟି ନେଲେ, କହିଲେ— ଯେପରି କି—ଜୀବନ ସୁନ୍ଦର, ଜୀବନ ପ୍ରୀତିକର ଏଇ ସମତଳ ଉପତ୍ୟକାରେ । ତାର ପ୍ରାନ୍ତର ଉଦ୍ୟାନ ସମନ୍ୱିତ ଗୃହ, ରାଜପଥରେ ରୋପିତ ସୁସ୍ଥ, ସୁପୁଷ୍ଟିତ ତରୁ, ବିପଣିରେ ସଜ୍ଜିତ ସଜ୍ଜାଳତ ପ୍ଲାଷ୍ଟିକ୍ ନାରୀ, ସ୍ୱାସ୍ଥ୍ୟବତୀ ଧେନୁ, ସୁସ୍ଥ ଶ୍ୱାନ, ସହରର ଶେଷ ଭାଗରେ ଗୁଚ୍ଛିତ ଭଗ୍ନ ମଟରଗାଡ଼ି, ବିଜ୍ଞାନୀ ସାଲୁନ୍, ବ୍ୟାଙ୍କ, ଶଟେଲ୍ଷ୍ଟୋର, ଦେଖୁ ଦେଖୁ ଆମେ ସହର ଅତିକ୍ରମ କଲୁ । ପୁଣି ପହଞ୍ଚିଲୁ ନିସ୍ତବ୍ଧ ତରୁ ପରି ପ୍ରସାରିତ 'ରକି' ପର୍ବତ ମୂଳରେ, ସଙ୍ଗୀତମୟୀ ସେଇ ଝରଣାକୁ କେଉଁଠି ଛାଡ଼ି ଆସିଲି ମନେ ନାହିଁ, ସେ ଆମକୁ ଭେଟିଲା ଅନେକ ଦୂରରେ, କିନ୍ତୁ କଣ୍ଠରେ ତାର କଳଧ୍ୱନି ନ ଥିଲା, ତାର ଶାନ୍ତ ସମତଳ ଶ୍ରୀ ଦେଖିବାକୁ ଲାଗିଲି ଯେପରି ନର୍ତ୍ତକୀକୁ ଦେଖନ୍ତି ନୃତ୍ୟ ପରେ ।

# ବ୍ରିଘାମ୍

'ବ୍ରିଘାମ୍ ୟଙ୍ଗ' ସଲ୍ଟଲେକ୍ ନଗରର ପ୍ରତିଷ୍ଠାତା । ସେ ମରମନ୍‌ଙ୍କ ନେତା ଥିଲେ, କୌଣସି ମରମନ୍ ଧର୍ମବିଦ୍ୱେଷୀଙ୍କ ଦ୍ୱାରା ନିହତ ହୋଇଥିଲେ । ତାଙ୍କ ସ୍ମୃତି ଏଇ ନଗରରେ ସୁରକ୍ଷିତ ।

ଏଠା ସ୍କୁଲରେ ଦୁଇ ହଜାରରୁ ଅଧିକ ନଭଜୋ ଇଣ୍ଡିଆନ୍-ଘରଣାର ଛାତ୍ର ଅଧ୍ୟୟନ କରନ୍ତି । ଆରିଜୋନା, ନିଉମେକ୍ସିକୋ, କଲୋରାଡୋ, ଇଉଟା ରାଜ୍ୟରୁ ସେମାନେ ଆସିଛନ୍ତି ।

ଏଠା କୃଷିକ୍ଷେତ୍ରରୁ ପ୍ରଚୁର ଗୋ ଅଶ୍ୱ ଖାଦ୍ୟ 'ଆଲଫାଲ୍‌ଫା' ଉତ୍ପାଦିତ ହୁଏ; ଆପ୍ରିକଟ୍, ପିଚ୍, ଚେରି, ଆପଲ୍‌ର ବହୁ ଫଳୋଦ୍ୟାନ ଅଛି ।

ଉଚ୍ଚ ପାହାଡ଼ ନିକଟବର୍ତ୍ତୀ ବେୟାର ନଦୀ, ହ୍ରଦ ଓ ଜଳସନ୍ତଆ ଭୂମିସବୁ ଯାଯାବର ପକ୍ଷୀଙ୍କ ବିଶ୍ରାମ ସ୍ଥଳ, ୬୦ ହଜାର ଏକର ପର୍ଯ୍ୟନ୍ତ ଜଳର ବିସ୍ତୃତି; ପ୍ରାୟ କୋଡ଼ିଏ ଲକ୍ଷ ବନ୍ୟ ହଂସ ଏଠି ଉଡ଼ି ଜମେଇ-ଥାନ୍ତି । ପକ୍ଷୀ କୋଳାହଳରେ ଚତୁର୍ଦ୍ଦିଗ ମୁଖରିତ ହୁଏ ।

ଆମେ 'ଲେଟନ୍' ସହରରେ ପହଞ୍ଚିଲୁ । ବାଆଁ ପଟେ ଉଚ୍ଚ, ତରୁହୀନ, ସ୍ଥାନେ ସ୍ଥାନେ ମୃତ ମୁମୂର୍ଷୁ ଘାସ୍‌ର ଧୂସର ଭୂମି; ଉପଳ-ମଞ୍ଜୁଳ, ରଙ୍ଗ ତରଙ୍ଗିତ 'ରକି' ପର୍ବତ ଦେଖୁ ଦେଖୁ କେତେବେଳେ ଡାହାଣ ପଟର ନୀଳାଭ ଗିରିମାଳା ଦୃଷ୍ଟି ଆକର୍ଷଣ କରନ୍ତିଏ । ଲେଟନ୍ ସହର ମୁଣ୍ଡରେ, ଏକ ଗଛମୂଳ ଘାସ ପଡ଼ିଆରେ ଲଞ୍ଚ୍ ଖାଇଲୁ-ମଟର ଫଳା ଖେଚୁଡ଼ି, ପଫ୍‌ଡ଼ ପିଜ୍ଜା, ସ୍ୱିସ୍‌ଚିଜ୍, ସ୍ୟାଣ୍ଡଓ୍ୱିଚ୍, ପେପ୍‌ସି । ଦେଉଁ ଦେଉଁ ଇରା ଆମକୁ ସବୁତକ ଦେଇଦେଲା । ତା ଲାଗି ଥିଲା କେବଳ ସ୍ୟାଣ୍ଡଓ୍ୱିଚ୍ । ମନେ ପଡ଼ିଲା ପିଲାଦିନେ ବୋଉ କଥା । କିଅଣ, ଉଚ୍ଚ କୋଉଦିନ ସେ ଖାଉଥିଲା ? ଶେଷକୁ ବାସି ପଖାଳ, ପୋଡ଼ୁ ପୋଡ଼ୁ କଣ ଟିକିଏ, ନଇଲେ ଆମ୍ବୁଲ !

ବାଁ ପାଖ ପାହାଡ଼ରେ ନାଲ୍ ପଥର, ହଳଦିଆ ପଥର ଗୁଣ୍ଡ ଗଦା ହୋଇଛି—ଏସବୁ ରଙ୍ଗଧନୁ—ଡାହାଣ ପାଖେ ସଲ୍ଟଲେକ୍ ଆମେରିକାନ୍ ଅଏଲ୍ କମ୍ପାନି, ଜଳୁଛି ଗୋଟିଏ ସ୍ତମ୍ଭରେ ଅଗ୍ନିଶିଖା, ଫୁଆରା ବସିଛି ପାର୍କରେ ଗୋଟିଏ କୁନ୍ଦ, ଏହାର ମୂଳରୁ ଚୂଳ ପର୍ଯ୍ୟନ୍ତ ନାନା ରଙ୍ଗର ଫୁଲ ଫୁଟିଛି, ଶ୍ୟାମଳ ତୃଣ ମଧ୍ୟରେ । ଆମେ ସଲ୍ଟଲେକ ସିଟିରେ ପହଞ୍ଚିଲୁ । ଉଦସ୍ପ ଗଲା ମୋଟେଲ ଖୋଜି, ଇରା ରହିଲା ପିଲାଙ୍କୁ ଜଗି । ମୁଁ ଫୁଟପାଥରେ ଲାଇଟପୋଷ୍ଟ ପାଖ ଗୋଲାପ ଗଛ ଅବାଟିକୁ ଗୁହିଁଛି, ନିଜ କେତେବେଳେ ଆସି ମୋ ପଛରେ ଛିଡ଼ା ହୋଇଛି, ମୁଁ ବ ଜାଣେ ନାହିଁ । ଇରା ସିଆଡ଼ୁ ଦୌଡ଼ି ଆସି ପଚାରିଲା—ନିଜ କାହିଁ ?

ତାର ଅସ୍ତବ୍ୟସ୍ତ ଭାବ, ବିକଳ ମନ ଦେଖି ବୁଝିଲି—ଯେତେ ଶିକ୍ଷିତା ହେଲେ ବି ସେ ମାଆ, ସବୁ ମାଆ ପରି—ଏକୋଇର ବାଳା ବଣିକେଶବନ; ଏକ ଅଖି ଆଖି ନୁହେ, ଏକ ସାକ୍ଷୀ ସାକ୍ଷୀ ନୁହେ ।

'ଏକ ପୁତ୍ରର ଜନନୀ ଙ୍କବନ ଜୀବନ ନୁହଇ ଆରେ
ଙ୍କୁଣ୍ଠି ନଉକା ସମ ଛୁଆ ଏ ଭୃଷ୍ଣ ନ୍ଦ୍ରେତକ ଧାରେ ।'

ନିଜକୁ ଦେଖି ତା ପିଣ୍ଡରେ ଯେପରି କି ପ୍ରାଣ ପଶିଲା !

ମୁଁ ଫୁଟ୍‌ପାଥ୍‌ରେ ଟହଲ ମାରୁଥିବା ଦେଖି ଜଣେ ଭଦ୍ର ଲୋକ ଗାଡ଼ି ରଖି ମୋତେ ବାଟ ପଚାରି ବସିଲେ ।

କହିଲି—ମୁଁ ତୁମ ପରି ନୂଆ, ଏଇ ସଦ୍ୟ ଆସିଛି । ଜଣେ ବାରଙ୍ଗଙ୍କ । 'ରବର୍ଟ ସାଲଜବର୍ଗ' ଆତ୍ମପରିଚୟ ଦେବାକୁ ଯାଇ କହିଲେ—ମୁଁ ଜଣେ ଜିଉ, ଜର୍ମାନୀରେ ମୋର ଜନ୍ମ । ହିଟ୍‌ଲାରଙ୍କ ସମୟରେ ଜିଉଙ୍କ ଉତ୍ପୀଡ଼ନ କଥା ଅବଶ୍ୟ କର୍ଣ୍ଣଗୋଚର ହୋଇଥିବ । ମୁଁ କୌଣସିମତେ ଜୀବନ ଘେନି ହଲାଣ୍ଡ ବାଟେ ପଳାଇ ଆସିଲି । ମୋ ସ୍ତ୍ରୀ ଓ ପୁତ୍ର ନିହତ ହେଲେ । ଏବେ କାଲିଫର୍ଣ୍ଣିଆରେ ବ୍ୟବସାୟ କରେ; ଆମେରିକାନ୍ ସ୍ତ୍ରୀ ବିଭା ହୋଇଛି, ମୋର ଦୁଇଟି ଝିଅ, ଗୋଟିଏ ପୁଅ ।

କମ୍ବଳ—ଆମ ନେତା ଗାନ୍ଧିଜୀ ଓ ନେହରୁଜୀ ହିଟ୍‌ଲରଙ୍କର ଏ କାର୍ଯ୍ୟକୁ ନାପସନ୍ଦ କରି ଆସିଛନ୍ତି; ଶରଣାର୍ଥୀମାନଙ୍କର ଜନ୍ଙ୍କ ପ୍ରତି ଗଭୀର ସହାନୁଭୂତି ରହିଛି । ସେମାନେ ବଳିଦାନ ଓ ସହିଷ୍ଣୁତାକୁ ମହାନ୍ ଦାନ ଦେଇ ଯାଇଛନ୍ତି, ସମଗ୍ର ଜଗତର ନମସ୍ୟ ।

ଗୋଟିଏ ସଂସାର ଭାଙ୍ଗିଲା; ଏ ପୁଣ୍ୟପୂର୍ଣ୍ଣ ନୂତନ ଜୀବନ । ଆଦ୍ୟ ଯୌବନ ଓ ଜୀବନର କରୁଣ ଅଧ୍ୟାୟ କେତେ କେତେ ବାଳକବର୍ଗଙ୍କ ଚକ୍ଷୁ ଆର୍ଦ୍ର ହୋଇ ଆସୁଥିଲା । ସେ, ତାଙ୍କ ସ୍ତ୍ରୀ ଓ ପିଲାମାନେ 'ବାଇ ବାଇ' କହି ବିଦାୟ ନେଲେ, ଅପରିଚିତ ହାସ୍ୟରେ; ଜୀବନ ଭାଙ୍ଗିଯାଏ, ଜୀବନ ପୁଣି ଗଢ଼ି ଉଠେ ନୂତନ ପରିବେଶରେ । ଭଗବାନ ଦେଇଛନ୍ତି ବିସ୍ମୃତି, ଅତୀତ ଉପରେ ପରଦା ପକାଇ ଦେବା ଲାଗି; କିନ୍ତୁ ନ ଘଟି ଥିଲା ପରି ମଣିଷ ଭୁଲୁଛି, ପରିବେଶ ସଙ୍ଗେ ମନକୁ ମିଳାଇ । ଏଇ ଖାପ ଖୋଇ ପାରିବାରେ ହିଁ ଜୀବନକୁ ବଞ୍ଚାଇ ରଖିବା ସମ୍ଭବ ହୋଇଛି । ବାଳକବର୍ଗ ମୋତେ ବେଶୀ କିଛି କହି ନାହାନ୍ତି, କିନ୍ତୁ ଏଇ ଗଳ୍ପ ଅନେକ ବେଶୀ-ଠାରୁ ବେଶୀ—ଜୀବନ ବଞ୍ଚିବାର ରହସ୍ୟ ଏ, ଅନେକ ଦୀର୍ଘ ଜୀବନରୁ ଦୀର୍ଘତର ।

## ସି-ଗଲ୍ ସ୍ମୃତି

ନୀଳ ରଙ୍ଗର ପୋଖରୀ, ଦାପଦଣ୍ଡିରେ ଗୋଟିଏ ପ୍ରସ୍ତର ସ୍ତମ୍ଭ, ତା ମୂଳରେ ନାନା ବର୍ଣ୍ଣର ପୁଷ୍ପ ବିକଶିତ । ସ୍ତମ୍ଭ ଉପରେ ଦୁଇଟି ସୁବର୍ଣ୍ଣ ସି-ଗଲ୍ । ବସନ୍ତ କାଳର ଜୀବନ ଘଟଣାକୁ କେନ୍ଦ୍ର କରି ଏହି ସ୍ମୃତିମନ୍ଦିର ନିର୍ମିତ ।

ମର୍‌ମନ୍‌ମାନେ ପୂର୍ବାଞ୍ଚଳରୁ ବିତାଡ଼ିତ ହୋଇ ସଲ୍‌ଟଲେକ୍‌ରେ ବସତି ସ୍ଥାପନ କଲେ, ଜୀବନ ବଞ୍ଚାଇବା ଲାଗି ଫସଲ କଲେ, କିନ୍ତୁ ପଙ୍ଗପାଳ ପଡ଼ି ସବୁ ଖାଇଗଲେ । ଲୋକେ ମାଇଲେ, ନିଆଁରେ ପୋଡ଼ିଲେ, କିନ୍ତୁ କାହିଁରେ ସେମାନେ ନିଃଶେଷ ହେଲେ ନାହିଁ । ଶେଷକୁ ଈଶ୍ବର ପ୍ରେରିତବତ୍ କାହୁଁ ଏଇ ସି ଗଲ୍‌ମାନେ ଆସିଲେ । ସକାଳୁ

ସନ୍ଧ୍ୟା ଯାଏ ଏମାନଙ୍କୁ ଗ୍ରାସ କରି ଲାଗିଲେ । ଈଶ୍ୱରଙ୍କ ଦୂତଗଣ ଠିକ୍ ସମୟରେ ନ ଆସିଥିଲେ ଲୋକେ ଅକାଳରେ ପଡ଼ି ଜୀବନ ହରେଇ ଥାନ୍ତେ । କୃତଜ୍ଞ ମର୍ମନମାନେ ତେଣୁ ଏହି ଉପକାରୀ ପକ୍ଷୀର ସ୍ମୃତିରକ୍ଷା କରିଛନ୍ତି ।

## ପ୍ରାର୍ଥନାମନ୍ଦିର ଓ ଯାଦୁଘର

ଏହି ଗୃହଟି ଗ୍ରାନେଟୋଇଡ଼ ସ୍ଟୋନ୍ ଗ୍ରାଣ୍ଟରେ ନିର୍ମିତ, ତଳ ଗୁମ୍ବଜଟି ନୀଳାକାଶ, ତହିଁରେ ଗ୍ରହ ନକ୍ଷତ୍ର ଅଙ୍କିତ । ଏହି ଅସୀମତା ମଧ୍ୟରେ ଯିଶୁଙ୍କ ସ୍ଥିତିର କଳ୍ପନା କରାଯାଇଛି, କାନ୍ଥମାନଙ୍କରେ ଯିଶୁଙ୍କ ଜୀବନର ନାନା ଘଟଣାର ଫ୍ରେସ୍କୋ ।

ଯାଦୁଘରେ ମର୍ମନ ଧର୍ମସମ୍ପର୍କୀୟ ପୁସ୍ତକ, ଧର୍ମପ୍ରଚାରକମାନଙ୍କ ଜୀବନୀ, ସେମାନଙ୍କ ବ୍ୟବହାର୍ଯ୍ୟ ଦ୍ରବ୍ୟ, ମୂର୍ତ୍ତି, ବସନ୍ତ କାଳରେ ଜୀବନ ସଂଗ୍ରାମର ନାନା ଚିତ୍ର ଓ ବିବରଣୀ ସଂରକ୍ଷିତ ହୋଇଅଛି । ଗାଇଡ୍ ଆମକୁ ଏଇ ଧର୍ମ ସମ୍ବନ୍ଧରେ ନାନା ତତ୍ତ୍ୱ ବୁଝାଇଲା ବେଳେ ପଚାରିଲି—

'ମାଛମାଂସ ଖାଅ କି ନାହିଁ ?'

'ଖାଉ ।'

'ବହୁ ବିବାହ ଏବେ କରୁଛ କି ନାହିଁ ?'

'ନା, ପ୍ରାଥମିକ ଅବସ୍ଥାରେ ଏ ପ୍ରଥା ଥିଲା । ଏବେ ଫେଡ଼େରାଲ୍ ସରକାରଙ୍କ ଆଇନ ମାନି ପୁରୁଷ ଗୋଟିଏ ମାତ୍ର ସ୍ତ୍ରୀ ବିଭା କରେ ।'

'ଅହିଂସାରେ ବିଶ୍ୱାସ କର କି ନାହିଁ ?'

'ହଁ, ପୁଣି ନାହିଁ, ସାଧାରଣ ଭାବେ ଆମେ ଅହିଂସ୍ର; କିନ୍ତୁ ସରକାରଙ୍କ ଆହ୍ୱାନ ଆସିଲେ ଆମେ ଯୁଦ୍ଧରେ ଅବଶ୍ୟ ଯୋଗ ଦେବୁ । ଆମ ଧର୍ମ ଜାତୀୟତାର ବିରୋଧୀ ନୁହେ ।'

ମିରା ଭାରି ଗୋଳମାଳ କଲା—ପଥର ଦେଖିଲେ ବି ଫାଟିଯିବ। ମାଆର ଧୈର୍ଯ୍ୟ କିନ୍ତୁ ତାଠାରୁ ଟାଣ। ସେ ସର୍ବଂସହା। ସବୁ ସହିଲେ ଶେଷକୁ ଏତିକି କହିଦେଲା—

Mira, you are very naughty.

ମିରା କହିଲା—ମୁଁ କାହିଁକି ଏକା ଦୁଷ୍ଟ ହେବି! ସମସ୍ତେ ଦୁଷ୍ଟ, ମାଆ, ବାପା, ସମସ୍ତେ ଦୁଷ୍ଟ, ବାପା ସମସ୍ତେ ଦୁଷ୍ଟ।

ଭାଇ କହିଲା—ସମସ୍ତେ ଭଲ, ତୁ ଏକା ଦୁଷ୍ଟ।

ମିରା ଏଥର ସ୍ୱର ଦେଇ ଗାଇବାକୁ ଲାଗିଲା—ମୁଁ ଏକା ଦୁଷ୍ଟ ନୁହେଁ, ମୁଁ ଏକା ଦୁଷ୍ଟ ନୁହେଁ।

ଏଇ ଧ୍ରୁବ ପଦରେ ପିତାର ଧୈର୍ଯ୍ୟ ଟଳିଲା। ସେ ଅଣ୍ଟମ୍ ବୋମା ପ୍ରୟୋଗ କଲେ—ସ୍ପାଙ୍କିଙ୍ଗ୍; ମିରାର ଏଇ ଶବ୍ଦଟିକୁ ବଡ଼ ଡର। ସଙ୍ଗେ ସଙ୍ଗେ ତା ପାଟି ବନ୍ଦ ହୋଇଗଲା।

## ମରମନ ଧର୍ମର ପ୍ରତିଷ୍ଠାତା

ଊନବିଂଶ ଶତାବ୍ଦୀର ପ୍ରଥମ ପାଦ। ସେତେବେଳେ ନାଜର୍ପର୍ଭରେ ନାନା ଧର୍ମଭେଦ ଓ ବାଦାନୁବାଦ ସୃଷ୍ଟି ହୋଇଥିଲା। ଚଉଦ ବର୍ଷର କୃଷକ କିଶୋର ଯୋସେଫ ସ୍ମିଥ୍ ଏଥିରେ ବିଶେଷ ବିଚଳିତ ହୋଇ ପଡ଼ିଥିଲେ। ନାନା ପ୍ରଶ୍ନ ତାଙ୍କ ମନରେ ଉଦିତ ହୋଇଥିଲା; ସେ ସମସ୍ତର ଉତ୍ତର ସେ ବାଇବଲ୍ ଖୋଜି ପାଇଥିଲେ; 'ମଣିଷ ଯାହା ଇଚ୍ଛା କରେ, ଭଗବାନ ତାହା ତାଙ୍କୁ ଦାନ କରନ୍ତି।'

୧୮୨୦ ଖ୍ରୀଷ୍ଟାବ୍ଦରେ ଗୋଟିଏ ନିର୍ଜନ ବୃକ୍ଷଲତା କୁଞ୍ଜକୁ ଯାଇ ସେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ; ପ୍ରାର୍ଥନା କରୁ କରୁ ତାଙ୍କ ସମକ୍ଷରେ ଅଦ୍ଭୁତ ଆଲୋକ ପ୍ରତିଭାତ ହେଲା—ସୂର୍ଯ୍ୟଙ୍କଠାରୁ ଉଜ୍ଜ୍ୱଳତର। ସେହି ଆଲୋକରୁ ଦୁଇ ଜଣ ଆବିର୍ଭୂତ ହେଲେ—ଦେବଦୂତ। ସେଥି

ମଧ୍ୟରୁ ଜଣେ ସ୍ମିଥ୍‌ଙ୍କୁ କହିଲେ—ଏ ମୋର ପ୍ରିୟ ସନ୍ତାନ; ତାଙ୍କ ନିର୍ଦ୍ଦେଶ ଶୁଣ ।

"କୌଣସି ଚର୍ଚ୍ଚରେ ଯୋଗ ଦେବ ନାହିଁ; ନିର୍ମଳ ଜୀବନ ଯାପନ କରିବ । ତେବେ ମହା ଶକ୍ତିର ଅଧିକାରୀ ହୋଇପାରିବ ।"

ଦେବତା ବା ଦେବଦୂତ ଭକ୍ତମାନଙ୍କୁ ଦେଖା ଦେଇ ଏହିପରି ନିର୍ଦ୍ଦେଶ ଦେଇଥାନ୍ତି । କିନ୍ତୁ ଏ ଗୋଟାଏ ମୂର୍ଖ କୃଷକ ପିଲା । ତା ପ୍ରତି ଭଗବାନ ପ୍ରସନ୍ନ ହୋଇଥିବେ, ଏହା ବିଶ୍ୱାସ କରାଯାଇ ନ ପାରେ । ଲୋକେ ତାଙ୍କୁ ପରିହାସ ଓ ନାନା ଭାବେ ଉତ୍ପୀଡ଼ନ କରିବାକୁ ଲାଗିଲେ ।

କିନ୍ତୁ ଏହି ନିପୀଡ଼ିତ ଆତ୍ମା ପ୍ରତି ଭଗବାନ ଥିଲେ ସଦୟ । ଖ୍ରୀ: ୧୮୨୩, ସେପ୍‌ଟେମ୍ବର ୨୧ ତାରିଖରେ ପୂର୍ଣ୍ଣ ଆଲୋକପ୍ରାପ୍ତ ହେଲେ । ତାଙ୍କ ଗୃହରେ ମୁକ୍ତ ଆତ୍ମା ମୋରୋନି ଦେଖା ଦେଇ ଗୁପ୍ତ ଧର୍ମ ଶାସ୍ତ୍ରର ସନ୍ଧାନ ଦେଲେ—କୌଣସି ପର୍ବତରେ ମର୍ମନଙ୍କ ସୁବର୍ଣ୍ଣ ଶାସ୍ତ୍ର ଗୋଟିଏ ବାକ୍‌ସରେ କେତେ ଶତାବ୍ଦୀ ଧରି ସଂରକ୍ଷିତ ହୋଇ ଆସୁଥିଲା । ସ୍ମିଥ ସେହି ଧର୍ମ ପୁସ୍ତକକୁ ଇଂରାଜୀରେ ଅନୁବାଦ କଲେ । ନୂତନ ଧର୍ମଶାସ୍ତ୍ର ହରଣ କରିନେବା ଲାଗି ଲୋକେ ତାଙ୍କ ଉପରେ ନାନା ଉପଦ୍ରବ କଲେ । କିନ୍ତୁ ସ୍ମିଥ୍ ବିଚଳିତ ହେଲେ ନାହିଁ ।

୧୯୨୯ ଖ୍ରୀଷ୍ଟାବ୍ଦରେ ସସ୍‌କୋହେନା ନଦୀ ତୀରରେ ଦେବଦୂତ ଜନ୍ ସ୍ମିଥ୍‌ଙ୍କୁ ନବ ଧର୍ମରେ ଦୀକ୍ଷିତ କରିଥିଲେ । ତାପରେ ତାଙ୍କର ସେବକ ବନ୍ଧୁ ତା ଅପେକ୍ଷା ବହୁ ଶତ୍ରୁ ବାହାରିଲେ । ଉତ୍ପୀଡ଼ିତ— ତାପରେ ସ୍ମିଥ୍ ତାଙ୍କ ଶିଷ୍ୟମାନେ ବିତାଡ଼ିତ ହେଲେ—ନିଉୟର୍କରୁ ଓହାଇଓ,ଓହାଇଓରୁ ମିସୌରି, ମିସୌରିରୁ ଇଲିନଏସ, ଇଲିନଏସରୁ ରକ ପର୍ବତମାଳା । ଶେଷକୁ ଜନଶୂନ୍ୟ ବନ୍ଧ୍ୟ ମରୁଭୂମିରେ ସେମାନେ ଆସି ପହଞ୍ଚିଲେ, ଶଗଡ଼ରେ ବା ଘୋଡ଼ାଗାଡ଼ିରେ ବସି କିମ୍ବା ଚାଲି ଚାଲି ।

୧୮୪୪, ଜୁନ୍ ୨୭ ତାରିଖ; ଜୋସେଫ ସ୍ମିଥ୍ ତାଙ୍କ ଭାଇଙ୍କ ସହିତ ଇଲିନଏସରେ ନିହତ ହେଲେ । ସେ ଶହୀଦ୍ ହେବା ପରେ

ମର୍ମନ ଧର୍ମ ବ୍ୟାପିବାକୁ ଲାଗିଲା । ଯେପରି ରାମକୃଷ୍ଣଙ୍କର ଶିଷ୍ୟ ବିବେକାନନ୍ଦ, ସେହିପରି ସ୍ମିଥ୍‌ଙ୍କ ଶିଷ୍ୟ ବ୍ରିଗ୍‌ହାମ୍‌ୟଙ୍ଗ୍ । ତାଙ୍କ ନେତୃତ୍ୱରେ 'ସଲ୍‌ଟଲେକ' ସହର, ମର୍ମନ ମନ୍ଦିର ନିର୍ମିତ ହେଲା, ଶିଳ୍ପର ସମୃଦ୍ଧି ଘଟିଲା । ମର୍ମନମାନଙ୍କ ବିଶ୍ୱାସ—ଜୋସେଫ ସ୍ମିଥ୍ ଖ୍ରୀଷ୍ଟଧର୍ମର ଶେଷ ପ୍ରତିନିଧି ।

ମର୍ମନମାନେ ଧୂମପାନ କରନ୍ତି ନାହିଁ । ମାଟ୍ରିକ ପାସ୍ କଲା ପରେ ପ୍ରତ୍ୟେକ ଦୁଇ ବର୍ଷ ନିଜକୁ ଧର୍ମପ୍ରଚାର କାର୍ଯ୍ୟରେ ନିୟୋଜିତ କରନ୍ତି । ଅଧିକାଂଶ ଅବସ୍ଥାପନ୍ନ । ମର୍ମନ ନିଜ ଆୟର ନିର୍ଦ୍ଦିଷ୍ଟ ଅଂଶ ଧର୍ମ ଲାଗି ଦାନ କରେ । ତାର ବସନଭୂଷଣ ସ୍ୱାତନ୍ତ୍ର୍ୟଚିହ୍ନିତ । ଗୃହ ଓ ମନ୍ଦିରରେ ମଧ୍ୟ କିଛି ବୈଶିଷ୍ଟ୍ୟ ଅଛି । ଆମେରିକାରେ ଏବେ ମର୍ମନଙ୍କ ସଂଖ୍ୟା ପନ୍ଦର ଲକ୍ଷରୁ ଅଧିକ । ମର୍ମନଙ୍କ ରିଲିଫ ସୋସାଇଟିର ଦୁଇଟି ଲକ୍ଷ୍ୟ—ନାରୀ ଶିକ୍ଷା, ଜନସେବା । ସେମାନେ ବ୍ୟାପକ ଭାବେ ସ୍କାଉଟିଂ ଶିକ୍ଷା ଦେଇଥାନ୍ତି, ନୃତ୍ୟ ଓ ଅଭିନୟକୁ ମଧ୍ୟ ଉତ୍ସାହ ପ୍ରଦାନ କରିଥାନ୍ତି ।

ମର୍ମନଙ୍କ ସଂଖ୍ୟା ବୃଦ୍ଧି ଲାଗି ବହୁବିବାହ ପ୍ରଥା ପ୍ରବର୍ତ୍ତିତ ହୋଇଥିଲା ବୋଲି କୁହାଯାଏ । ସେଇ ପ୍ରଥା ଦୂର ହେବା ପରେ ଉଟାକୁ ସ୍ୱତନ୍ତ୍ର ରାଜ୍ୟ ଭାବରେ ସ୍ୱୀକୃତି ଦିଆଗଲା । ୧୮୯୬ ଖ୍ରୀଷ୍ଟାବ୍ଦରେ ଖଣିପ୍ରଧାନ ଉଟା ଯୁକ୍ତରାଷ୍ଟ୍ରରେ ଯୋଗ ଦେଲା । 'ଉଟେ' ଗୋଟିଏ ରେଡ଼ଇଣ୍ଡିଆନ୍‌ଶବ୍ଦ । ଏହାର ଅର୍ଥ ପାହାଡ଼ିଆ ଲୋକ ।

## ଗ୍ଲାଡିସ୍ (ସଲ୍‌ଟଲେକ୍, ୨୬।୮।୭୭)

ଆମ ମୋଟେଲରୁ ତିରିଶ ମାଇଲ ଦୂରରେ ତାଙ୍କର ଘର, ସେ ଆମକୁ ଡିନରକୁ ନିମନ୍ତ୍ରଣ କରିଛନ୍ତି । ଆଜି ବିକାଳ ସଙ୍ଗେ ମହାଦେବଙ୍କ ଦେଖା—ସେହିପରି ଭୋଜନ ସଙ୍ଗେ ସଙ୍ଗେ ଆମର ସଲ୍‌ଟଲେକ୍ ଦେଖା ହେବ—ଏଇ କଳ୍ପନାରେ ଆମେ ବାହାରିଲୁ । ଯେଉଁଠି ଗାଡ଼ି ଘଣ୍ଟାକେ ଷାଠିଏ ସତୁରି ମାଇଲ୍ ଗତିରେ ଯାଏ, ସେଠି ତିରିଶ ମାଇଲ ଦୂରର ନିମନ୍ତ୍ରଣ ରକ୍ଷା ଏକ ସାଧାରଣ କଥା ।

ମିସ୍ ଗ୍ଲାଡିସ ସେଣ୍ଟଲୁଇସିରେ ଉଦୟପୁର ଡାକ୍ତରୀ ଅଫିସରେ ନର୍ସ ଥିଲେ, ଅପରେସନ ବେଳେ ପାଖେ ପାଖେ ରହନ୍ତି, ଅସ୍ତ୍ର ବଢ଼ାନ୍ତି, ବ୍ୟାଣ୍ଡେଜ ବାନ୍ଧନ୍ତି, ବା ଖୋଲନ୍ତି । ସେତେବେଳେ ସେଣ୍ଟଲୁଇସ ରେ 'ୱେଟଓ୍ୱାଇଲର୍' ଇଞ୍ଜିନିୟରିଂ ପଢ଼ୁଥିଲେ, ଆର୍ଥିକ ଅବସ୍ଥା ଶୋଚନୀୟ । ଅର୍ଥାଭାବରୁ ସେ ପଢ଼ା ଛାଡ଼ିଦେବେ, ବସିଥିଲେ । ଏହିକ ବେଳେ ମିସ୍‌ଙ୍କ ସହିତ ତାଙ୍କର ସାକ୍ଷାତ୍—ପ୍ରଥମ ଦୃଷ୍ଟିରେ ପ୍ରେମ; ଦ୍ୱିତୀୟ ଦୃଷ୍ଟିରେ ତାହା ବଢ଼ିବାକୁ ଲାଗିଲା, ବଢ଼ି ଚାଲିଲା । ମିସ୍ ନିଜ ଅର୍ଜନରେ ଓ୍ୱାଇଲର୍‌ଙ୍କୁ ପଢ଼ାଇବାକୁ ଲାଗିଲେ । ଇଞ୍ଜିନିଅର୍ ହେଲା ପରେ ଓ୍ୱାଇଲର୍ ତାଙ୍କ ପ୍ରଣୟିନୀଙ୍କୁ ବିଭା ହେଲେ । ଏବେ ଚାକରୀ ଛାଡ଼ି ସେ ହୋଇଛନ୍ତି ଗୃହିଣୀ, ରୋଗୀସେବା ଛାଡ଼ି ସ୍ୱାମୀସେବା କରୁଛନ୍ତି ସଲଟ୍‌ଲେକ ସହରରେ ।

ବାଟରେ ଗୋଟିଏ ଲେଭଲ କ୍ରସିଂ; ଟ୍ରେନ ଆସିବାର ଦୁଇ ମିନିଟ ଆଗରୁ ମନକୁ ମନ ଦୁଇ ପଟେ ଲାଲ ଆଲୋକଯୁକ୍ତ ଧାରଣା ପଡ଼ିଗଲା; ଗାଡ଼ି ଚାଲିଯିବା ପରେ ଆପେ ଆପେ ଖୋଲିଗଲା । ଏ ଦୃଶ୍ୟ ଦେଖି ମୋ ଆଖିରେ ଆଉ ଗୋଟିଏ ଦୃଶ୍ୟ ମୁହୂର୍ତ୍ତେ ନାଚିଗଲା—କଟକ ମାଲଗୋଦାମ ଲେଭଲ କ୍ରସିଂ !

ସୂର୍ଯ୍ୟ ମୁହଁକୁ ପଡ଼ୁଥାନ୍ତି, ମରୁଭୂମିର ସ୍ପର୍ଶ, ଅପ୍ରୀତିକର; ବାଁ ପଟେ ଆମର ମୃତ ତୃଣ, କେଉଁଠି କପରି ବୁଦାଏ ବୁଦାଏ ସେଜ୍‌ବ୍ରସ୍ । ବାଲି ଉପରେ ଲବଣ ବସିଯାଇଛି, ଯନ୍ତ୍ର ସାହାଯ୍ୟରେ ଆମଦାନୀ କରା ଯାଇଛି । ପ୍ରାନ୍ତରକୁ ଲୁଣ ପାଣି ବୋହି କମ୍ପା ହ୍ରଦର ତୀରବର୍ତ୍ତୀ ଅଂଶରେ ବନ୍ଧ ବାନ୍ଧି ଖଇରେ ପାଣି ଶୁଖିଗଲେ ଲବଣ ଆଦାୟ କରାଯାଏ ।

ସଲଟ୍‌ଲେକ ବଗଟ୍, ଏହାର ଦୈର୍ଘ୍ୟ ୭୩ ମାଇଲ , ପ୍ରସାର ୩୫ ମାଇଲ , ଗଭୀରତା ୨୦ରୁ୫୦ ଫୁଟ । ପୃଥିବୀରେ 'ଡେଡ୍‌ସି'ର ଜଳ ସବୁଠାରୁ ଲବଣାକ୍ତ । ଲବଣତାରେ ସଲଟ୍‌ଲେକ ଦ୍ୱିତୀୟ ସ୍ଥାନ ଅଧିକାର କରିଅଛି; ଏହାର ଜଳରେ ଶତକଡ଼ା ୨୭ ଭାଗ ଲବଣ ଅଛି । ବନିଶି ପଡ଼ିପାରେ ନାହିଁ । କାରଣ ସୂତା ବୁଡ଼େ ନାହିଁ । ମଣିଷ ଜଳ

ତରଙ୍ଗରେ ଶୋଇ ରହିବା ଦୃଶ୍ୟ ଅଦ୍ଭୁତ । ସୋଲ ପରି ସେ ଭାସେ; ଡୁବ ଦେଲେ ପୁଣି ଉପରକୁ ଉଠିଆସେ । ଏଥିରେ ଶ୍ରେଷ୍ଠ ଶ୍ରେଷ୍ଠ ଶଙ୍କୁ ଛଡ଼ା ଅନ୍ୟ କୌଣସି ମାଛ ରହି ପାରନ୍ତି ନାହିଁ ।

ରକର ଧାରେ ଧାରେ କାରଖାନା ବସିଛି, ଧୂଆଁ ଉଡୁଛି, ଧୂସର ତୃଣହୀନ ଗିରି ଗୈରିକ ହୋଇ ଉଠିଛି ସନ୍ଧ୍ୟା ରାଗରେ । ସୂର୍ଯ୍ୟାଭ ହ୍ରଦରେ ସ୍ୱପ୍ନ ମୂର୍ଚ୍ଛିତ ହୋଇ ପଡୁଛି । ଗୋଟିଏ ପଲକ ପକାଇ ଦୃଷ୍ଟି ଫେରାଇଲୁ । ଛେଣିକ ରାସ୍ତା ନାହିଁ । ପଥହରା ହେଲୁ ଆମେ ଅପନ୍ତରା ମରୁଭୂମିରେ । ଉଦରରେ କ୍ଷୁଧା, ଢନଯାକର ବାଧା ତାକୁ ଶାଣିତ କରିବାକୁ ଲଗିଲା, ଯେତେବେଳେ ଜାଣିପାରିଲୁ ନିଜର ଅବସ୍ଥା । କ୍ଳାନ୍ତ ଦୃଷ୍ଟି ପଥରୁ ସନ୍ଧ୍ୟା ଅପସରି ଗଲା ।

ଅଧଘଣ୍ଟାଏ ବୁଲିଲା ପରେ ଠିକ୍ ବାଟରେ ପହଞ୍ଚିଲୁ, ସଲ୍ଟଲେକ୍ କୂଳେ । ସେତେବେଳକୁ ସନ୍ଧ୍ୟା 'ରକ' ଉପରକୁ ଉଠିଥାଏ; ଜଣେ ଶିଳ୍ପୀ ପରି ଦୂରଦୃଷ୍ଟି ପକାଇ ଦେଖୁଥାଏ, ହ୍ରଦ ଜଳରେ କେଉଁଠି ତୂଳୀ ଗଭୀରଭାବେ ବୁଲାଇବ, କେଉଁଠି ଲଘୁଭାବେ, କେଉଁଠି କେଉଁ ରଙ୍ଗର ମାତ୍ରା କେତେ ହେବ ।

ମୋ ଦୃଷ୍ଟି ସେ ଦୃଶ୍ୟକୁ ନ ପାଉଥିଲେ ବି ମୁଁ ଲମ୍ବାଉଥିଲି, ଏ ନିଖୁଣ ଛବିକ ପୂର୍ଣ୍ଣାଙ୍ଗଭାବେ ମନରେ ନ ଆଙ୍କିଲେ ଅପରାଧ ହେବ ବୋଲି ।

ଗ୍ଲାଡସ୍ କାନ୍ଥରେ ଅଙ୍ଗୁର ସଜାଇଛି—ଲାଲ୍, କଳା, ଶାଗୁଆ ରଙ୍ଗର ପ୍ଲାଷ୍ଟିକ ଅଙ୍ଗୁର; କେତୋଟି ଛବି ଟାଙ୍ଗିଛି—ଇଗଲ୍, ଟର୍କିସ୍, ଫେଜାଣ୍ଟ, ଶୁଆ, କାର୍ଡିନେଲ୍ ପକ୍ଷୀର ଛବି, ତା ନିଜର ଅଙ୍କନ । ଗୋଟିଏ ଦରଜାରେ ମକ୍କାର ଚଅଁର ଝୁଲାଇଛି । ଗୋଟିଏ ବୋତଲରେ 'ପେନ' ଭର୍ତ୍ତି ହୋଇ ରହିଛି; ଏ ତାର ଗୋଟିଏ ସ୍ୱଳ୍ପ-ସଞ୍ଚୟଯୋଜନା । ଗାଉଁଲି ସବୁ ଗାତରେ ପଇସାଏ ଲେଖାଁଏ ଗଳାଇଲା ପରି ସେ ପକାଇ ଚାଲିଛି ।

ଘର ପଛଆଡ଼େ ଗୋଟିଏ ଗ୍ରୀନ୍ ବଗିଚ୍ଚ, ଚେନାଏ ପଡ଼ିଆରେ ପୁଲାଏ ସବୁଜ, ଏାଲ ରଙ୍ଗର ପେଟୋନିଆ ଫୁଟିଚ୍ଛ, ଗୋଟିଏ ଗଛରେ ନବ ହୋଇଚ ପିଚ୍ ଫଳ, ଦୁଇରୁ ଆପଲ ପର ଦଶେ, ଆଉ ଗୋଟିଏ ଗଛ ଚେର ଫଳ ଭର୍ଗ; ଟମାଟୋ, ବଟ୍, ଗାଜର କେତେ ଗଛ ହୋଇଚ୍ଛ । ପିପର କେତୋଟି ଫଳିଚ୍ଛ, ଆମ ଆଡ଼ର ବଣି ଲଙ୍କା ପର ଦଶେ, ରାଗ ନାହିଁ । ସାଲାଡ଼ ସଙ୍ଗେ ଖିଆଯାଏ ।

ବଗିଚ୍ଚ ବଗ୍ରାରେ ଇକ ପାହାଡ଼ ମୂଳର ବାଲିଗିରଡ଼ା ପକାଯାଇଚ୍ଛ । ନିଯୁତ ବର୍ଷ ତଳେ ଏଠି ଗୋଟିଏ ହ୍ରଦ ଥିଲା, ଭୂତତ୍ତ୍ୱ-ବତ୍ତ୍ୱମାନେ କହନ୍ତି । ଏବେ ଜଳ ନାହିଁ, କେବଳ ବର୍ତ୍ତୁଳ ଉପଳମୟ ଶଯ୍ୟା—ସେଇ ମୃତ ହ୍ରଦର ସ୍ମୃତି ବେଦନା ପଡ଼ିରହିଚ୍ଛ ।

ଗ୍ଲାଡ଼ିସ୍‌ର ତିନୋଟି ପିଲା । ବଡ଼ ଝିଅର ନାଆଁ ଲେସ୍ଲି, ସାନ ଝିଅର ନାଆଁ ଯୋଆନ୍; ପୋଷିଆଁ ପୁଅ, ନାଆଁ ଜର୍ଜ, ଜଣେ ସ୍ପାନିସ୍ ଠାରୁ ପୁଅ କରି ଆଣିଚ୍ଛ, ସେ ପୋଷିବ ନାହିଁ, ମୁଖାଗ୍ନି ଦେବ ନାହିଁ; ପୁଅ ବିନା ଏ ସଂସାରରେ କଣ ଅଚଳ ହେଉଥିଲା ? ଗ୍ଲାଡ଼ିସ୍ କାହିଁକି ପୁଅଟିଏ କଲା ? ଏତେ ଆଧୁନିକା ହେଲେ ବି ଏ ଦେଶର ନାରୀ ସେଇ ପାରମ୍ପରିକ ଦୁର୍ବଳତା ଦୂର କରି ପାରିନାହିଁ । ଝିଅରେ ସେ ଭୂଷ୍ଟା ଲୁହେ, ପୁଅ ଲେଉଡ଼ା, ଠିକଏ ଅଧିକ ଗେହ୍ଲା ହୁଏ ସେ, ଅଧିକ ଅମାନିଆଁ ।

ଜର୍ଜକୁ ପଚାରିଲି ତାର ପଢ଼ା କଥା । ସେ କହିଲା—ଆମ ହାଇସ୍କୁଲରେ ମାଷ୍ଟର ମାଷ୍ଟରାଣୀ ଉଭୟ ଅଛନ୍ତି । ମାଷ୍ଟରାଣୀଙ୍କ ପଢ଼ାକୁ ସେ ପସନ୍ଦ କରେ ନାହିଁ । କାହିଁକି, ସେ ବୁଝାଇ ପାରିଲା ନାହିଁ, ଓଲଟି ପଚାରିଲା—

'ତୁମେ କାହା ପଢ଼ାକୁ ପସନ୍ଦ କର ?'

'ମୁଁ ମାଷ୍ଟରାଣୀଙ୍କ ପାଖେ ପଢ଼ିନାହିଁ, କହି ପାରିବି ନାହିଁ;

'ତୁମେ କି ଖେଳସବୁ ଖେଳ ?'

'ଆର୍ମି' ଖେଳ; କପରି ଆକ୍ରମଣ କରିବାକୁ ହେବ, ପୁଣି ଶତ୍ରୁ ଆକ୍ରମଣ କଲେ ଆତ୍ମରକ୍ଷା କରିବାକୁ ହେବ, ସେ ସମ୍ପର୍କରେ ଗୋଟାଏ ସ୍ଥୂଳ ଧାରଣା ଜର୍ଜ ମୋତେ ଦେଲା । ମୂଳରୁ ଏମାନେ ସାହସୀ, ନିର୍ଭୀକ ହେବାର ପ୍ରେରଣା ପାଇଥାନ୍ତି । ତେଣୁ ଯୁଦ୍ଧ ନାମରେ ଆତଙ୍କ ସୃଷ୍ଟି ହୁଏ ନାହିଁ ।

ମୁଁ ଶିକ୍ଷକ, ଅତଏବ ମନୋବିଜ୍ଞାନବିତ୍ ହୋଇଥିବି—ଏଇ ଧାରଣାରେ ଗ୍ଲାଡ଼ିସ୍ ପିଲାଙ୍କ ପଢ଼ା ଓ ବିନୋଦନ ସମ୍ପର୍କରେ ମୋତେ ନାନା ପ୍ରଶ୍ନ ପଚାରିଲା । ମୋତେ ଯାହା ଦିଶିଲା ଉତ୍ତର ଦେଲି । ମନୋ-ବିଜ୍ଞାନବିତ୍ ମୋର ଏ ମତ ପ୍ରକାଶକୁ ଅନଧିକାର ଚର୍ଚ୍ଚା ମନେ କରି ପାରନ୍ତି । କିନ୍ତୁ ନିରୁତ୍ତର ରହିଥିଲେ କଣ ହୋଇଥାନ୍ତା ? ଗ୍ଲାଡ଼ିସ୍ ହୁଏତ ବିଚାରିଥାନ୍ତା—ଏ କି ଶିକ୍ଷକ ? ପିଲାଙ୍କ ମନ ବୁଝେ ନାହିଁ, ପାଠ ପଢ଼ାଏ କେମିତି ?

ତାର ପ୍ରଥମ ପ୍ରଶ୍ନ—ପିଲାର ପ୍ରତିଭା ଅଛି, ଅଥଚ ସେ ପରିଶ୍ରମ କରୁନାହିଁ, କଣ କରିବାକୁ ହେବ ?

'କେତେକ ଲାଲ୍ ଆଖି ଦେଖାନ୍ତି, ମାରନ୍ତି; କିନ୍ତୁ ଫଳ ହୁଏ ବିପରୀତ । ପିଲା ପାଠଘରୁ ହୋଇଥାଏ । ସେ ଲୁଚି ନଇଲେ ପଳାଏ । ଏ ବିଗରେ ଅଧୀର ନ ହୋଇ ଧୈର୍ଯ୍ୟ ଅବଲମ୍ବନ କରିବାକୁ ହେବ । କି କି ବିଷୟ ପ୍ରତି ତାର ଆଗ୍ରହ ଅଛି, ବୁଝିବାକୁ ହେବ, କଣ ଅସୁବିଧା ହେବାରୁ ସେ ପଢ଼ୁନାହିଁ, ଜାଣିବାକୁ ହେବ । ପଢ଼ା ଯେ ଗୋଟାଏ ଅସାଧାରଣ ଗୁରୁତ୍ୱପୂର୍ଣ୍ଣ ବିଷୟ ପିଲା ମନରୁ ଏ ଧାରଣା ଦୂର କରିବାକୁ ହେବ—ଲୋଡ଼ା ହେଲେ ତା ସହିତ ଖେଳିବାକୁ ହେବ, ଗୀତ ବୋଲି ବା ଗଳ୍ପ କହି ତାର ମନୋରଞ୍ଜନ କରିବାକୁ ହେବ; ସେ ଯେପରି ବୁଝିବ—ପଢ଼ା ଏକ ବିନୋଦନ ।'

'ପ୍ରଥମେ ଜର୍ଜକୁ ପିଆନୋ ଶିଖାଇଲି, ଏବେ କଗେନେଟ୍ ଶିଖାଉଛି । ସେ ଶୀଘ୍ର ଶୀଘ୍ର ଶିଖିଯାଉଛି, ଭଲ ମଧ୍ୟ ବଜାଉଛି; ମନେ

ହୁଏ, ଏ ଦିଗରେ ତାର ପ୍ରତିଭା ଅଛି । କିନ୍ତୁ ଅଭ୍ୟାସ କରୁନାହିଁ । କଣ କରାଯିବ ?'

'ପିଆନୋ ବା କନ୍ସେର୍ଟ ବଜାଇବା ଗୋଟିଏ ବିନୋଦନ, ତା ଜୀବନର ଲକ୍ଷ୍ୟ ନୁହେଁ, ସେ ଯଦି ସେଥିରୁ ପ୍ରକୃତ ଆନନ୍ଦ ପାଏ, ବଜାଇବ । ଇଚ୍ଛା ନ ଥିଲେ ଉପରୁ ଚାପ ଦେଲେ ତା ମନ ଛୋଟ ହୋଇଯିବ । ତେଣୁ ଉତ୍ସାହ ଦେବେ, ଚାପ ଦେବେ ନାହିଁ ।'

'ଜର୍ଜ ଓ ଲେସ୍ଲି ମଧ୍ୟରେ ବିବାଦ ଲାଗୁଛି, ବେଳେ ବେଳେ ଉତ୍କଟ, ଉଭୟଙ୍କର ହେଉଛି, ଗୋଟିଏ ପୋଷ୍ୟ, ଅନ୍ୟଟି ରକ୍ତସମ୍ପର୍କୀୟ । ଲେସ୍ଲିକୁ ଆମେ ଆଦର କରୁ, ଜର୍ଜକୁ କିଛି କହୁନାହିଁ—ପର ପିଲା, କାଳେ ମନ କଷ୍ଟ କରିବ ! କେଉଁ ଉପାୟରେ ଏଇ ଭାଇଭଉଣୀଙ୍କ ମଧ୍ୟରେ ସଦ୍‌ଭାବ ଅଣାଯାଇ ପାରିବ ?'

ଦୁହେଁ ପ୍ରାୟ ବୟସରେ ସମାନ; ଚତୁରତାର ସହିତ ଉଭୟଙ୍କ ମଧ୍ୟରେ ପ୍ରତିଯୋଗିତା ଲଗାଇ ଦେବାକୁ ହେବ—ଗୀତର ଆବୃତ୍ତି, ପ୍ରବନ୍ଧ ଲେଖା, ଛବିଅଙ୍କା, ଖେଳ, ବଗିଚାକାମ । ସଦ୍‌ଗୁଣ ହାସଲ ଲାଗି ଆଗ୍ରହ ଜନ୍ମିଲେ ଈର୍ଷା, ହିଂସା ଦୂର ହୋଇଯିବ ।

ଦୁହିଙ୍କୁ କିଛିଦିନ ଲାଗି ଅଲଗା ରଖିପାରନ୍ତି । ତା ଫଳରେ ଆକର୍ଷଣ ବଢ଼ିପାରେ ।

ଲେସ୍ଲି ଆଗରେ ଜର୍ଜ ପ୍ରତି ଅଧିକ ସ୍ନେହ ଦେଖାଇବେ ନାହିଁ । ଘରର ଝିଅ, ସେ ହୁଏତ ବିଚାରୁଛି—ଜର୍ଜ କାହୁଁ ଆଇଲା; ସେ କାହିଁକି ପିତାମାତାଙ୍କ ସ୍ନେହର ଅଧିକାରୀ ହେବ ? ପୁଣି ଅଧିକ ଭାବରେ!

ଗ୍ଲାଡିସ୍ ଆଉ ଇଭ୍ ମଧ୍ୟରେ ଆଳାପ ଜମିଲା । କଥା ପ୍ରସଙ୍ଗରେ ଗ୍ଲାଡିସ୍ କହିଲା—ଭଲ ପଡ଼ୋଶୀ ପାଇବା ସୌଭାଗ୍ୟର କଥା, ଈର୍ଷା, ହିଂସା ଆସେ, ବେଳେ ବେଳେ କଳି ବି ଲାଗିଯାଏ, ଅତି ଛୋଟ ଛୋଟ କଥାରୁ । ପଡ଼ୋଶୀକି ଭଲ ପାଇବା ସହଜ କଥା ନୁହେଁ । ଆମେ

ଘରଣୀମାନେ ମିଳି ଏଠି ଗୋଟିଏ କ୍ଲବ୍ ଗଢ଼ିଛନ୍ତି । କଥା ହେଲା—ସପ୍ତାହରେ ଥରେ ଜଣଙ୍କ ଘରେ ବ୍ରିଜ୍ ଖେଳ ହେବ । ମେସନ ମି: ଫ୍ରାଇଲର୍ କୁଆଡ଼େ ଯିବାର ଥାଏ । ମୁଁ ଘର ଛାଡ଼ି ଯାଇପାରିଲି ନାହିଁ । ଅନ୍ୟ ଖେଳାଳୀମାନେ କହିଲେ—ତୁମେ ଜଣେ ବଦଳଆ ଦିଅ । କହିଲି—ଏ ଝିଅମାନଙ୍କ କାମ କରିପାରିବ ନାହିଁ । ମତେ ବଦାସ୍ତ ଦିଅ; ଆଉ ଏ କ୍ଲବ୍‌କୁ ଆସିବି ନାହିଁ ।

ଏଠି ଖାଲି ଆଜବ ଗପ—କାହା ସ୍ୱାମୀ କେମିତି, କାହା ଘରକରଣା କପରି ଇତ୍ୟାଦି । ଅତି ଗ୍ରେଟ୍ ଗ୍ରେଟ୍ କଥାରୁ ବେଳେ ବେଳେ ଝଗଡ଼ା ହୋଇଯାଏ । ସେଇ ଦିନଠୁ ମୁଁ କାହା ଘରକୁ ଯାଏନାହିଁ, କି ମୋ ଘରକୁ କେହି ପଡ଼ୋଶୀ ଆସନ୍ତି ନାହିଁ ।

ଇଗ କହିଲା—ତୁମ କଥା ସତ । ଏହା କାରଣରୁ ବେଳେ ବେଳେ ସର୍ବନାଶ ହୁଏ । ଜଣେ ପାକିସ୍ଥାନୀ ଉଦ୍‌ବାସ୍ତୁ ସେଣ୍ଟଲୁଇସ୍‌ରେ ଘରକଣା କରେଇ ଦେଇଥିଲେ । ତାଙ୍କ ଦୁହିଙ୍କ ମଧ୍ୟରେ କୌଣସି ମେଳ ବା ଅମେଳ ନାହିଁ । କେଉଁ କାହିଁ ? ସେ ଯାହା କାର୍ଯ୍ୟରେ ବ୍ୟସ୍ତ । ତାଙ୍କ ସ୍ତ୍ରୀ ଓ ମୁଁ ଦୁହେଁ ଏକାତ୍ମ ହୋଇ ଚଳୁଥାଉ; ଭାରତ, ପାକିସ୍ଥାନ—ଏକା ନାହିଁ ବି ଖଣ୍ଡ ତ !

କିନ୍ତୁ ଦିନେ ହଠାତ୍ ତା ମନ କଣ ହେଲା, ଆସି କହିଲା— 'ତୁମେ ଭାରତୀୟ ଗୋରୁ ହାଣ ନାହିଁ, ମଣିଷ ହାଣି ଜାଣ । ଡାକ୍ତରଖାନା ମସ୍‌ଜିଦ୍, ଅନାଥାଶ୍ରମ ଉପରେ ବୋମା ପକାଉଛ !'

ସେତେବେଳେ ଭାରତ ପାକିସ୍ଥାନ ମଧ୍ୟରେ ଯୁଦ୍ଧ ଲାଗିଥାଏ । "ଆମେ ଏଠି ବୃଥା ଝଗଡ଼ା କରି କି ଫଳ ? ମାନସିକ ଶାନ୍ତିନାଶ ବ୍ୟତୀତ ଆଉ କି ଲାଭ ହେବ ?"—ଏତିକି କହି ମୁଁ ଚାଲିଆସିଲି । ପରେ ସେ ଅବଶ୍ୟ ତାର ଭୁଲ୍ ବୁଝିଲା, ଦୁଃଖ ପ୍ରକାଶ କଲା ।

ଗ୍ଲାଡ଼ିସ୍ କେଶ ସଜାଇଛୁ ଅତି ଆଧୁନିକା ପରି; 'ଗ୍ଲାମୋର୍' ନାମକ ଫେସନ ପୁସ୍ତକଟିଏ ରଖିଛୁ, ବେଶ ଭୂଷଣ ଓ କେଶସଜ୍ଜାକୁ

ସୁଗୋପଯୋଗୀ କରିବା ଲାଗି । ବୃଦ୍ଧି, ବୁଦ୍ଧିମାନୀ, କଥନଭଙ୍ଗୀ ନାଟକୀୟ; କଥା କହିଲେ ଯୁଆ ଫୁଟେ; ସତେ ବା କିଛି ପାର୍ଟ ମୁଖସ୍ଥ କରି କହୁଛି; କିନ୍ତୁ ସେହି ଘୋଷିବନ୍ତର ଅପ୍ରାକୃତିକତା ଗ୍ଲାଡିସ୍ କଥନରେ ନ ଥାଏ; ତାର ମଧୁରତା ମୋହାଚ୍ଛନ୍ନ କରେ ।

ଉତ୍ତପଣ ଦେଉଦ, ଉତ୍ତର ପର ବର୍ତ୍ତିତ୍ୟ; କଥା କହିତାର ସ୍ତରକୁ ଉତ୍ତୀର୍ଣ୍ଣ ହୁଏ, ଆତ୍ମବିସ୍ମୃତିରେ । ମଝେ ମଝେ ପଦେ ଅଧେ ଯୋଡ଼ିଦିଏ, ଗ୍ଲାଡିସ୍‌କୁ ପ୍ରେରଣା ଦେବା ଲାଗି, ଅଧର ତାର ଶାଣିତ ହୋଇ ଉଠେ। କଥା ହୁଏ ଓଷ୍ଠରେ ।

ବରଂ ସ୍ୱାମୀଟି ତାର ନୀରବ ହୋଇ ବସିଥାଏ । କଥାଂ କୃପଣ; ଏ ସିନେମାନକ୍ଷତ୍ରଟି କଥାରେ କର୍ମରେ ଗୃହକୁ ଉଜ୍ଜ୍ୱଳ କରି ରଖିଛି । ସ୍ୱାମୀର ସେ ଭଳି ରୁଚି ନାହିଁ, ପ୍ରୟାସ ବି ନାହିଁ ।

ସେ ସାଧାରଣ, ଯାହା ଦେଲେ ଖାଇବେ, ଯାହା କହିଲେ ସହିବେ । ଏକାନ୍ତ ପୋଷ୍ୟ, ସ୍ତ୍ରୀ ତାଙ୍କୁ ମଣିଷ କରିଛି; ପରିବର୍ତ୍ତନର ପକ୍ଷପାତୀ ସେ ନୁହନ୍ତି । ଏକ ସ୍ଥାୟୀ ସ୍ୱାମୀ, ସ୍ତ୍ରୀର ବଶ୍ୟ ।

'କେଉଁ ଡାକ୍ତରଖାନାରେ କାମ କରିବାକୁ ଇଚ୍ଛା ହୁଏନାହିଁ ?' ପଚାରିଲି ।

'ଲୋକ ସମ୍ପର୍କ ମୋତେ ଭଲ ଲାଗେ । କିନ୍ତୁ ଏ ପିଲାଙ୍କୁ କେଉଁଠି ରଖିବି ? ପଡ଼ୋଶୀଙ୍କ କଥା ତ ଶୁଣିଲେ ।'

'ତାହେଲେ ପିଲାମାନେ ବଡ଼ ହୋଇଗଲେ ଆପଣ ଚାକିରି କରିବେ !'

'ସ୍ୱାମୀ ? ତାଙ୍କ ସେବା ତ କାହାଣେ !'

'ଅର୍ଥାଭାବ ହେଲେ ଲୋକେ ଚାକିରି କରନ୍ତି, ଆପଣଙ୍କର ତ···'

'ଅଭାବ ଯଥେଷ୍ଟ, ତାର ସୀମା ନାହିଁ; ଜୀବନର ମାନ ବଢ଼ାଇବା ଲାଗି ବହୁତ ଅର୍ଥ ଦରକାର ।'

'ମାନର କଣ ସୀମା ଅଛି ? ଯେତେ ବଢ଼ାଇଲେ ବି ଆହୁରି କିଛି ରହିଯିବ । ଅଭାବ-ଅଭାବ; ଘରଣୀଙ୍କୁ ତାକୁ ପୂରଣ କରିବାକୁ ହେବ । ବଜେଟ୍ ତ ଆପଣଙ୍କ ହାତର କଥା !'

'ପ୍ରକୃତରେ ଆମେ ଯେପରି ବର୍ତ୍ତିବାକୁ ଚାହୁଁ, କଏ କେମିତି ଚାହୁଁଛି ବୁଝିଲେ ଚଳିବ ନାହିଁ । ଘରଣୀପୁ ନାଶ କଣ କରନ୍ତି ?"

'ବେଶୀଭାଗ ସମସ୍ତ ସ୍ୱାମୀ ଓ ସନ୍ତାନ ସେବାରେ ଯାଏ । ଆପଣଙ୍କ ନର୍ସ, ବୈଜ୍ଞାନିକ ସ୍ୱଭାବରେ ସ୍ନେହ ଓ ଶ୍ରଦ୍ଧା ମିଶିଲେ ଅପୂର୍ବ ହୋଇ ଉଠିବ, ସଂସାର ଉଜ୍ଜ୍ୱଳ ଓ ମହଣୀୟ ହୋଇଯିବ ।"

ପଲାସୁମାନ ଚଞ୍ଚଳ ଆନନ୍ଦକୁ ସେ ନିଜ ସଂସାରରେ ଯେପରି ବାନ୍ଧି ରଖିଛି, ଦେଖି ଖୁସି ଲାଗିଲା । ତାପରେ ଆମେ ଗ୍ଲାଡ଼ସ୍ ଓ୍ୱାଇଲ୍ଡରଙ୍କଠାରୁ ବିଦାୟ ନେଇ ଆସିଲୁ । ଇଭା "Day and Night" ଦୋକାନରୁ ପ୍ରାତଃରାଶ ଲାଗି କିଛି ସଉଦା କଲା ।

ପ୍ରାୟ ରାତି ଏଗାରଟାବେଳେ ଶୋଇବାକୁ ଗଲୁ । କିନ୍ତୁ ଇଭା ଶୋଇଲା ନାହିଁ, ପିଲାଙ୍କ ଲୁଗାପଟା ଇସ୍ତ୍ରି କରିବାକୁ ଲାଗିଲା; ପିଲାଙ୍କ କାମ ତ କରିବାକୁ ହେବ । କିନ୍ତୁ ଢୁଳ୍ଳ ପଡ଼ିଲେ ମୋ ନିଦ ଭାଙ୍ଗେ; ଭାଙ୍ଗିଲେ ଆଉ ନିଦ ମାଡେ ନାହିଁ । ମୋ ପାଖରେ ଶୋଇଥାଏ ମିରା, କାଶ-ରୋଗିଣୀ । ଦୁଇ ଡାକ୍ତର ମିଶି ତାକୁ ଭଲ କରିପାରି ନାହାନ୍ତି । ସର୍ଦ୍ଦି ଲାଗି କୁଆଡ଼େ କିଛି ଔଷଧ ବାହାରି ନାହିଁ ।

ସେ ଘଡ଼କ ଘଡ଼ କାଶୁଥାଏ; ପୁଣି ତାର ଶେଯରେ ଗଡ଼ିବା ସ୍ୱଭାବ । ଘରେ ଗୋଟିଏ ପ୍ରଶସ୍ତ ଶେଯରେ ଗଡ଼ ଆସିଛନ୍ତି, ଏଠି ସଙ୍କୋଚ ଅସହ୍ୟ । ତେଣୁ ସେ ଠେଲି ମାରୁଥାଏ, ଶେଯରେ ଉଠି ଗଡ଼ ଉଠିଲି ଆଠଟାବେଳେ ।

## ଓ୍ୱାଲ୍ଟର୍ ଲାର୍ସନ୍ ଫୋର୍ଡ କମ୍ପାନୀ

ଆମ ମଟରଗାଡ଼ିର ନାମ 'କଣ୍ଟ୍ରିସ୍କୋୟାର'; ଆମକୁ ବୁଲେଇ ନେବା ଉଦ୍ଦେଶ୍ୟରେ କଣା ହୋଇଥିଲା । ଏ ମଧ୍ୟରେ ଛ' ହଜାର ମାଇଲ୍

ବୁଲିଲୁଣି । ଗାଡ଼ିଟା ଟିକିଏ ପରୀକ୍ଷା କରେଇନେବା ଦରକାର । ଫୋର୍ଡ଼ ଗାଡ଼ି, ତେଣୁ ଏଇ ଫୋର୍ଡ଼ କମ୍ପାନୀରେ ପହଞ୍ଚିଲୁ । ଉଦ ରହିଲା ଏଠି । ମୁଁ ଇଗ ସଙ୍ଗରେ ଲଣ୍ଡ୍ରୀକି ଗଲି । ଧାଡ଼ି ହୋଇ ଲୁଗାସଫା କଳସବୁ ରହିଛି । ଲୁଗାପଟା ଭର୍ତ୍ତି ହେଲା; ପଇସା ଗଳେଇ ଦିଆ ହେଲା । ତାପରେ ସେସବୁ ଆପେ ଆପେ ସଫା ହୋଇ ଶୁଖି ପଦାକୁ ବାହାରିଲା ।

ତାପରେ କାରଖାନାକୁ ଆସିଲି । ଏଠି ବର୍ଷକୁ ପ୍ରାୟ ପାଞ୍ଚହଜାର ଗାଡ଼ି ତିଆରି ହୋଇଥାଏ । ଗାଡ଼ି ପରୀକ୍ଷା, ରଙ୍ଗଦିଆ ଓ ମରାମତି ବ୍ୟବସ୍ଥା ଅଛି । କର୍ମୀମାନଙ୍କ ପିଠିରେ କାରଖାନାର ନାମ ଓ ତାଙ୍କ ନିଜ ନାମ ଛପା ହୋଇଛି । ଗାଡ଼ି ସବୁ ଉପରକୁ ଟେକା ହୋଇ ମରାମତି ଚାଲିଛି ।

ଜଣେ ସ୍ତ୍ରୀଲୋକ ଏହାର ମ୍ୟାନେଜର, ବୟସ୍କା; ଭୂତପରି ବାଳ ଉଠିଛି, ଓଠରେ ଲାଲ, ବାମ ହସ୍ତରେ ବହୁ ମୂଲ୍ୟବାନ୍ ପ୍ରସ୍ତର ଖଚିତ ମୁଦି, ଡାହାଣ ହାତରେ ଘଡ଼ି । ପରୀକ୍ଷା ବାବଦକୁ ୩୧ ଡଲାର୍ ବିଲ୍ ହେଲା । ଉଦୟ କ୍ରେଡ଼ିଟ୍ କାର୍ଡ଼ ଦେଲା । ମ୍ୟାନେଜର ଗ୍ରହଣ କଲା ନାହିଁ; ତାପରେ ଉଦ କହିଲା—ମୋ ସଙ୍ଗେ ଜଣେ ଲୋକ ପଠାଅ; ଡଲାର ଦେଇ ଦେବି । କିନ୍ତୁ ସେଇ ଲୋକ ପଛ ନ ଛାଏ । ଗରାହକ ପଛ ନ ଦେଇ ପଳାଇପାଏ ! ଏତେ ଅବିଶ୍ୱାସ ! ଶେଷକୁ ଇଗ ଟ୍ରାଭେଲରସ୍ ଚେକ୍ ଦେବାରୁ ଅଡୁଆ ଛିଡ଼ିଲା ।

ମୁଁ ଗୋଟିଏ ଘଣ୍ଟା କମ୍ପାନୀ ଅଫିସରେ କଟାଇଲି, 'Better Homes' ବୋଲି ଖଣ୍ଡିଏ ମାଗାଜିନ୍ ପଢ଼ି । କିପରି ସୁକ୍ତବସ୍ତ୍ରର ଗାର୍ହସ୍ଥ୍ୟ ଜୀବନକୁ ଉନ୍ନତତର କରିବାକୁ ହେବ ?

କେତେ ଅଳ୍ପରେ ଘରର କି ପ୍ରକାର ବଜେଟ୍ ତିଆରି କରିବାକୁ ହେବ ବୁଝାଇ ଦିଆ ହୋଇଛି । ନୂତନ ଲୁଗାଧୁଆ କଳ, ବାସନ ଧୁଆ କଳ, ଘାସ କଟା କଳ, ବରଫ କାଟିବା କଳ, ଶୀତାତପନିୟନ୍ତ୍ରଣଯନ୍ତ୍ରର ବ୍ୟବହାର ସମ୍ପର୍କରେ ବିବରଣୀ ଦିଆହୋଇଛି । ନୂତନ ଖାଦ୍ୟ, ନୂତନ ଫେସନର ପୋଷାକ, ଅଳଙ୍କାର ପତ୍ର, ପ୍ରସାଧନ, ଶିଶୁ ପାଳନ, ଶରୀରର ଚର୍ବି ଦୂରୀକରଣ, ଗୃହନିର୍ମଳୀକରଣ, ବ୍ରିଜ୍ ଖେଳ, ଅନେକ-

ସଜ୍ଜା, କେଶ ସଜ୍ଜା, ଗୃହଖର୍ଚ୍ଚ, ପୁଷ୍ପୋଦ୍ୟାନର ସନ୍ଧପାତ, ମଞ୍ଜି ଓ ଗଛ ସମ୍ପର୍କରେ ନାନା ତଥ୍ୟ, ନାନା ବିଜ୍ଞାପନ ଏଥିରେ ପ୍ରକାଶିତ । ଗୃହକୁ ଆଜ ଅପେକ୍ଷା କାଲି କିପରି ବୈଜ୍ଞାନିକ ଓ କଳାତ୍ମକ ରୁଚିରେ ସୁନ୍ଦରତର କରିବାକୁ ହେବ, ତାହା ଏହି ମାଗାଜିନ୍‌ରେ ବର୍ଣ୍ଣିତ ହୋଇଅଛି । ଆଧୁନିକ ଗୃହ ପ୍ରକୃତରେ ଗୋଟିଏ କାରଖାନା—ବୋତାମ ଟିପିଲେ ବହୁ କାର୍ଯ୍ୟ ଚାଲେ, ତଥାପି ଗୃହସଜ୍ଜା ଆପଣା ରୁଚିରେ ହିଁ କରିବାକୁ ହୋଇଥାଏ । ଯାହାକୁ ଯାହା ପସନ୍ଦ, ବାଛି ନେବାକୁ ହେବ, ଚିନ୍ତା କରିବାକୁ ହେବ ନାହିଁ । ଚିନ୍ତା କରିବାକୁ ଲୋକ ଅଛନ୍ତି, ଘରେ ଆସବାବ ପତ୍ର ସଜାଇ ଦେଇ ଯିବାକୁ କମ୍ପାନୀ ଅଛି ।

ଏହି ପତ୍ରିକାଟି ଗଳେଇ ଦେଇ ଯିବା ପରେ ଗୋଟିଏ ପୁରୁଣା ସମ୍ବାଦ ପତ୍ରରେ ଆଖି ବୁଲାଇଲି—ବ୍ୟାଙ୍କ୍ ଡକାୟତି ଗୋଟିଏ ମୁଖ୍ୟ-ସମ୍ବାଦ । ଜଣେ ଘଣ୍ଟାକୁ ୧୫୦ ମାଇଲ ଗତିରେ ମଟର ଚଳାଇବାରେ ଗାଡ଼ିଟି କିପରି ଜଳି ଉଠିଛି, ଚାଳକ କିପରି ମୃତ୍ୟୁ ମୁଖରେ ପଡ଼ିଛି ତାହା ବର୍ଣ୍ଣିତ ହୋଇଅଛି । କିଶୋର କିଶୋରୀଙ୍କ ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ବାହାରିଛି—ତାର ମର୍ମ—ଏମାନେ ଗତାନୁଗତିକତାର ବିରୋଧୀ, ଭବିଷ୍ୟତର ଉଦ୍‌ଘୋଷକ, ନିର୍ମାତା, ନାନା ଭାବେ ବିପ୍ଳବୀ, ସେମାନଙ୍କୁ ଗୌଣ ମନେ କରିବା ଉଚିତ ନୁହେଁ ।

## କେନେକଟ୍ ବନ୍‌ଡାମ୍ ତାମ୍ରଖଣି (ଇଉଟା, ୨୩।୮।୬୭)

ଦିନ ବାରଟା । ମଧ୍ୟାହ୍ନ ରୌଦ୍ରରେ 'ଉକ'ର ଇକ୍ୱିର ପର୍ବତ-ମାଳା ବଡ଼ ରୁକ୍ଷ ଦିଶୁଥାଏ । କେଉଁଠି ବୁଦାଏ ଘାସ, ଗୋଟାଏ ଗୁଳ୍ମ । ଦର୍ଶନ ମଣ୍ଡପରେ ଠିଆ ହୋଇ ଅନାଇଲୁ ପୃଥିବୀର ବୃହତ୍ତମ ଏହି ତାମ୍ରଖଣିକୁ, ଦୁଇ ମାଇଲ୍ ଲମ୍ବ, ଅଧମାଇଲ ଏ ଗଭୀର । ଆମ୍ଫିଥିଏ-ଟରର ଦର୍ଶକ ଆସନ ବେଞ୍ଚ ପରି ସ୍ତର ପରେ ସ୍ତର ହୋଇ ତଳକୁ ଯାଇଛି । ଭିତରେ ଗୋଟିଏ ଟନେଲ୍; ତା ମଧ୍ୟରେ ରେଲ୍‌ଗାଡ଼ି ଚାଲିଛି । ଖଣିର ସର୍ବୋଚ୍ଚ ସ୍ଥାନରୁ ତମ୍ବାପଥର ବୋହି ଆଣୁଛି, ତା ସଙ୍ଗେ ଅଦରକାରୀ ପଥର ମଧ୍ୟ ଖଣି ବାହାରକୁ ବୁହା ହୋଇ ଯାଉଛି,

ଏଠି ଭିନ ସିଫ୍ଟରେ ଦୁଇ ହଜାର ସାତ ଶହ ଲୋକ କାର୍ଯ୍ୟ କରୁଛନ୍ତି; ଅହୋରାତ୍ର କାର୍ଯ୍ୟ ଚାଲିଛି ।

ଏହା ପୃଥିବୀର ପୁରାତନତମ ତାମ୍ରଖଣି, ୧୯୦୭ ଖ୍ରୀଷ୍ଟାବ୍ଦରେ ଖୋଦନ କାର୍ଯ୍ୟ ଆରମ୍ଭ ହେଲା । ଏ ପର୍ଯ୍ୟନ୍ତ ଏହି ଖଣିରୁ କୋଡ଼ିଏ ନିୟୁତ ଟନ ତମ୍ବା ପଥର ବାହାହୋଇ ସାଇଛି । ଟନ୍‌ଟିଏ ତମ୍ବା ପଥର ଲାଗି ଅଢ଼େଇ ଟନ୍ ବାଜେ ପଥର ବୋହି ନେବାକୁ ହୁଏ । ତମ୍ବା ବ୍ୟତୀତ ଏହି ଖଣିରୁ ସ୍ୱର୍ଣ୍ଣ, ରୌପ୍ୟାଦି ଆମଦାନୀ ହୋଇଥାଏ । ଖୋଦିତ ସ୍ଥାନର ପରିମାଣ ତିନିଦଶହ ଏକର; ଖୋଦନରେ ଆଧୁନିକତମ ଉପାୟ ଅବଲମ୍ବିତ ହୋଇଅଛି । ବିଦ୍ୟୁତ୍ ଚାଳିତ ଡ୍ରିଲିଂ ଯନ୍ତ୍ର, ଶହେ ଟନର ରେଲ୍‌ରୋଡ୍‌କାର୍, ଡିଜେଲ୍ ଇଲେକ୍‌ଟ୍ରିକ୍ ହାଓଲେଜ୍ ଟ୍ରକ୍ ଓ ବୁଲ୍‌ଡୋଜର ବ୍ୟବହୃତ ହେଉଅଛି ।

ଉପରିଭାଗରେ ଖଣି ଦେଖିବା ଲାଗି ଦର୍ଶନ ମଣ୍ଡପରେ ବାଇନା-କୁଲର୍ ଓ ଖଣିର ଇତିହାସ ଜାଣିବା ଲାଗି ଗ୍ରାମ୍‌ଫୋନ୍ ଚାଲୁ କରା ହୋଇଅଛି ।

କୋକାକୋଲା ପାନ ପରେ ଆମେ ଫେରିଲୁ । ବାଟରେ ଜଣେ ମୂଲିଆ ସଙ୍ଗେ ସାକ୍ଷାତ୍ ହେଲା । କେଳି ପାଇଜାମା ପିନ୍ଧିଛି, ଖଣି ପାଖ ରାସ୍ତା ଧାରେ ଚାଲୁଛି, ଗୋଟାଏ ଶାବଳରେ । ଆମକୁ ଦେଖି ସେ ଅଭି-ବାଦନ ଜଣାଇଲା । ପଚାରିଲି—

'ଗରମ, ନା ?'

'ଖୁବ୍ ଗରମ୍ ।'

'କାହିଁକି ଏ ପଥୁରିଆ ଭୂଇଁ ଚାଳୁଛ ?'

'ଗଛ ଲଗା ହେବ—ପାଇନ୍, ମରୁଭୂମି ପରି ଏଠି ଖୁବ୍ ଗରମ ହୁଏ । ରୁକ୍ଷତା ଓ ରୌଦ୍ର ଚକ୍ଷୁପୀଡ଼କ ।'

ସେ ମୋତେ ଖଣ୍ଡିଏ ଲୁହା ପଥର ଉପହାର ଦେଲା । ଧନ୍ୟବାଦ ଦେଲି । ଫେରିଲା ବେଳେ ଖଣି ଓ ଉକର କର୍କଶତାକୁ ରୂପ ଦେଉଥିଲା—ଗୋଟିଏ ଚମ୍ପାରଙ୍ଗର ଝିଣ୍ଟିକା; ଉଡ଼ିଲାବେଳେ ଖଟ୍ ଖଟ୍ ଶବ୍ଦ କରେ । ଖଣି ମୁଖରେ ମଧ୍ୟାହ୍ନ ରୌଦ୍ରର ନୃତ୍ୟ ଲାଗି ବାଦ୍ୟ ଏ ।

ବେସ୍‌ବଲ୍ ପଡ଼ିଆର ଦର୍ଶକ ବେଞ୍ଚରେ ବସି ଆମେ ଲଞ୍ଚ ଖାଇଲୁ—ଟର୍କି ପକ୍ଷୀର ମାଂସ, ଡିମ୍ବ, ଟମାଟୋ, ଓ ଆପଲ୍‌ସସ୍ । ଭାବଥିଲୁ—ଜାଗାଟା ପ୍ରାଣୀଶୂନ୍ୟ କୋଳ; କିନ୍ତୁ ଆମକୁ ଚମକେଇ ଦେଇ ଗଳିଲାବାହ୍ମଣ ମାଡ଼ି ଆସିଲେ—ମର୍ଷ, ଅନଭ୍ୟସ୍ତା ମୀରା ବ୍ୟସ୍ତବ୍ୟସ୍ତ ହୋଇ ଚିତ୍କାର କଲା—

ମମି, ଯ୍ୱାଙ୍କୁସବୁ ଗୁଳି କରି ମାରୁନ କାହିଁକି ?
ପଗ୍ଶଲି—ବନ୍ଧୁକ ନା ମେସିନ୍ ଗନ୍‌ରେ ?

'ରେନ୍‌ବାଓ' ବ୍ରିଜ୍ ଇଉଟାର ଗୋଟିଏ ପ୍ରଧାନ ଆକର୍ଷଣ । ଏହା ପର୍ବତ ମଧ୍ୟସ୍ଥ ଗୋଟିଏ ପ୍ରାକୃତିକ ସେତୁ, ୩୦୯ ଫୁଟ ଉଚ୍ଚ । 'ଗବ୍‌ଲନ୍'ଉପତ୍ୟକା ଓ 'ଇଉଟା' ହ୍ରଦରେ ମଧ୍ୟାହ୍ନ ମଗ୍ଧଚକା ଦେଖି ଦେଖି ଆମେ ଶୁଷ୍କ ତୃଣମସ୍ତ ପ୍ରାନ୍ତରରେ ପହଞ୍ଚିଲୁ । ଅନୁର୍ବର ପାହାଡ଼, ବାଲୁକା ମଧ୍ୟରେ 'ସ୍ପାନିସ୍‌ଫୋର୍କ'; 'ବଭର୍', 'ପାର୍ଓ୍ୱାନ୍ ସହର ଅତିକ୍ରମ କଲୁ । ଆମେରିକାର ସମୃଦ୍ଧ ଅଞ୍ଚଳ ସଙ୍ଗେ ଏ ସବୁ ତୁଳନୀୟ ହୋଇପାରେ ନା । ବୃକ୍ଷ ଦୁର୍ଲଭ, ସେହିପରି ନଦୀ ବା ହ୍ରଦ ନାହିଁ । ଅପଚିତ୍ର କାଳରେ ବୁଦାଏ ବୁଦାଏ ବେଣା ପରି ଗୋଟାଏ ଗୋଟାଏ ସେଜ୍‌ବ୍ରସ୍ । ସେଜ୍‌ବ୍ରସମସ୍ତ ପ୍ରାନ୍ତର, ମଧ୍ୟେ ମଧ୍ୟେ ଅନୁଚ୍ଚ ଶୈଳ; ସୂର୍ଯ୍ୟ ଅସ୍ତପଥେ । ଧୂସର ଶୈଳରୁ ଲମ୍ବି ଆସିଥାଏ, ତାଙ୍କ ରଶ୍ମିର ଗୋଟିଏ ସୁବର୍ଣ୍ଣ ରେଖା ମୋ ମୁଖ ଉପରକୁ, ସେ ହରେ ମୋତେ ପୁଲକିତ କରି; ଏ ସେଇ ସ୍ନେହ, ଯାହା ମୁଁ ପାଇଥିଲି, ଶୈଶବରେ ମୋର ଗ୍ରାମରେ ।

'ତୃଷାର୍ତ୍ତ ।' କୋକାକୋଲା ପିଅ, କ୍ଷୁଧା ? 'ହାମ୍‌ବର୍‌ଗର୍'; 'ହଟ୍‌ଡଗ୍' ଖାଅ, 'ରଜନୀ ଆଗମରେ ?' 'ଅଣ୍ଡର୍‌ବାର୍ଡ ବା ହଲିଡେ ଇନ୍'କୁ ଯାଅ । ପଥେ ପଥେ ଏହିପରି ବିଜ୍ଞାପନ ।

ସାମ୍ନାରେ ଲେଖା—'ସେଡାର୍' ସହର ଆପଣଙ୍କୁ ଅଭିନନ୍ଦନ ଜଣାଉଛି ।' 'ଜଅନ୍ସ୍' ମୋଟେଲ୍‌ରେ ଆମେ ଅଟକିଲୁ । ଝରକାରୁ ବିଦ୍ୟୁତ୍ର କାଠି ସବୁ ଜଳୁଛି, ସ୍ପ୍ରିଂ ଫୁଲ ଗାଛ ହିସ୍‌ମାସରେ ଖଞ୍ଜା ହୋଇଛି . ଲାଲ୍ ଆଉ ସବୁଜ ବର୍ଣ୍ଣ ।

ଶୀତାତପନିୟନ୍ତ୍ରିତ ଗୃହ, ଈଷଦୁଷ୍ମ ପୁଷ୍କରିଣୀ, ରଙ୍ଗୀନ୍ ଟେଲି' କଫି ମାଗଣା ମିଳେ ଏଠି । ଆଧୁନିକ ଧରଣର ରନ୍ଧନଗୃହ । ପ୍ରତ୍ୟେକଙ୍କ ଲାଗି ଗୋଟିଏ ଲେଖାଏଁ କୋଠରି ମିଳିଛି । ସହରରେ ଟିକିଏ ବୁଲି ଆସିବାକୁ ମନ ହେଲା ।

ଦାଉଁ ଦାଉଁ ପଡ଼ୁଛି ରଙ୍ଗୀପମା ବର୍ଣ୍ଣ, ସ୍ପନ୍ଦର ଦୁକୁଦୁକ ପରି, କେଉଁଠି ବିଦ୍ୟୁତ୍‌ର ରଙ୍ଗୀନ୍ ଜୁଆର ଛୁଟିଛି, ଜଳୁଛି ଲିଭୁଛି କେତେ ପ୍ରକାର ହୋଇ, ଭୂମିଲଗ୍ନ ଆକାଶର କସ୍ତୁଦଂଶ ଈଷତ୍ ଲାଲ୍—ତା ମଧ୍ୟରେ ଚାରୁଡ଼ାଏ କଳାମେଘ, ଦଶମୀ ଚନ୍ଦ୍ର, ସେଇ ଉତ୍କ୍ରମ ଆଶ୍ୱାସ ଉପରେ ଦେଇଛନ୍ତି ଚନ୍ଦ୍ରକାର ପର୍ବତ ପୃଷ୍ଠ, ଲଘୁଭାବରେ ବୁଲାଇ ତାଙ୍କର ତର୍ଜନୀ ।

ମନ ଖୋଲା, ହାଲୁକା—ଅକାରଣ ଆନନ୍ଦ, ଅପରିଚିତ ଆକାଶର ଅପ୍ରତ୍ୟାଶିତ ଗୋଧୂଳିରୁ ବୋଧହୁଏ ମିଳିଥିଲା ମୋତେ । ଫୁଟ୍‌ପାଥ୍‌ରେ ଯାଉଁ ଯାଉଁ ଲଣ୍ଡ୍ରିଭିଲେଜ୍, ସୁପର୍ ମାର୍କେଟ୍, ବସ୍ ଷ୍ଟେସନ୍, ଅର୍ଦ୍ଧବ୍ୟବହୃତ ମଟର ଗାଡ଼ିର ଦୋକାନ, ଗ୍ୟାସ୍ ଦୋକାନ, କଫିନ୍ ଦୋକାନ, ଦେଖି ଦେଖି ଚାଲିଛି, ସହରଟି ଛୋଟ, କିନ୍ତୁ ଫ୍ଲୁକ୍ ଷ୍ଟୋର ଦୋକାନ ଏଠି ନାହିଁ ।

ବୁଢ଼ାବୁଢ଼ୀ ଦୁଇ ଜଣ ହାତ ଧରାଧରି ହୋଇ ଯାଉଛନ୍ତି, କୁକୁରଟି ଭୁକି ଭୁକି ମୋ ଆଡ଼କୁ ଚମକି ଆସୁଛି । ବୁଢ଼ା କହୁଛି—କାମୁଡ଼ିବ ନାହିଁ । ଯୁବତୀ ଦୁଇଟି ଡେଇଁ ଡେଇଁ ଯାଉଛନ୍ତି ହରିଣ ପରି, ରଙ୍ଗୀନ କେଶକୁ ନଚାଇ ନଚାଇ ।

ମାଆ ପୁଅ ଦୁଇ ଜଣ, କାର୍ ଧକ୍କା ଲାଗେ ନ ଲାଗେ । ଅପରିଚିତ ହେଲେ ବି ଆକଟ କରି କହିଲି—ତୁମେ ଏଇ ସହରର, ଏପରି ଭୁଲ୍ କରୁଛ !

ଯୁବତୀଟି ଅପ୍ରସ୍ତୁତ ହୋଇ କହିଲା—ମୁଁ ଜାଣେ ନାହିଁ, ଗାଡ଼ିଟିଏ ଆସୁଛି ବୋଲି । କିଛି ଦୂର ପଥସଙ୍ଗିନୀ ହେଲା ସେ, ଦଶଟିପୂ ପରେ । ତାର ଛ' ବର୍ଷର ପୁଅ ହସି ହସି ମୋତେ ଗୋଟିଏ ବଣୁଆ ଫୁଲ ଉପହାର ଦେଲା । ସକାଳୁ ଦେଖୁଛି—ସେ ଫୁଲଟି ମଉଳି ଯାଇଛି । କିନ୍ତୁ ତା ହସ ?

## ନେଭେଦାର ପ୍ରାନ୍ତରେ ପ୍ରାନ୍ତରେ

ଦୁଇ ପାଖେ ବନ୍ୟ ସୂର୍ଯ୍ୟମୁଖୀ, କର୍ଷିତ କ୍ଷେତ୍ରର ଲାଲ୍ ମାଟି; ପାହାଡ଼ରେ କ୍ୱଚିତ୍ ଘାସ, ସେଜ୍‌ବ୍ରସ୍, ଜିଷ୍ଟ୍‌ମାସ୍, କେଉଁଠି ଧୂସର ସବୁଜ ଶ୍ୟାମଳର ଯୋଗାଯୋଗ ହୋଇଛି, କେଉଁ ଗିରି ଚୂର୍ଣ୍ଣ ଧବଳ, କଏ ବା ସୂର୍ଯ୍ୟାସ୍ତ ରଙ୍ଗର, କଏ କୃଷ୍ଣ ଧୂସର କଳାମୁଗୁନି,ଶୁଷ୍କ ନଦୀଧାର ବର୍ତ୍ତୁଳ ଉପଳମୟ, ନେତ୍ରପୀଡ଼କ ଅନୁର୍ବରତା ଚତୁର୍ଦ୍ଦିଗରେ । କେଉଁଠି ଗୁଳ୍ମିତ ପ୍ରାନ୍ତରରେ ଗୋଟିଏ ତରୁ, ରାଜାର ଆସନ ଜମେଇ ବସିଛି । ହରିଦ୍ରା ରଙ୍ଗର ଗୁଳ୍ମ; ତୂଳୀସମ ପୁଷ୍ପ ଦଶେ । କେଉଁଠି ରକ୍ତାଭ 'ଫିସ୍‌ହୁକ୍' ଫୁଟିଛି, କେଉଁଠି ବା ଲୋହିତ 'ହେଜହଗ୍', କେଉଁଠି ସପ୍ତପର୍ଣ୍ଣୀ ପରି 'ପ୍ରିକ୍‌ଲିପେଅର୍', 'ବକ୍‌ହର୍ଣ୍ଣ', 'ରେନ୍‌ବୋ', 'ବଭର୍-ଟେଲ୍', କେଉଁଠି ବା ବାରମାସୀ ଭଳି 'ପ୍ଲାନ୍ସ୍ ବାୟୋନେଟ୍','ୟୁକା' (ପେଣ୍ଡା ପେଣ୍ଡା ଧଳା ଫୁଲ), କେଉଁଠି ବା 'ଓକୋଟିଲୋ' (ଝୁବ୍ ଲମ୍ବାନାଡ଼, ନାଲ୍ ଫୁଲ ) ଏଠି ବାର୍ଷିକ ବର୍ଷାର ପରିମାଣ ଛ' ଇଞ୍ଚରୁ କମ୍ । ସ୍ଥାୟୀ ବୃକ୍ଷର ତେର ଅଭାବ; ସେମାନଙ୍କ ସଂଖ୍ୟା ନଗଣ୍ୟ । 'ଆଷ୍ଟର', 'ହେଲିଓ' 'ଟୋପ୍' 'ଗ୍ଲୋବ୍‌ମାଲୋ', 'ସ୍ୟାଣ୍ଡ ଭରବେନା' ପ୍ରଭୃତି ସାମୟିକ ଗୁଳ୍ମ ନଦୀ ଓ ହ୍ରଦତୀରବର୍ତ୍ତୀ ଅଞ୍ଚଳରେ ଜନ୍ମେ । ବୃକ୍ଷ ମଧ୍ୟରେ 'କଟନ୍ ଉଡ୍', ଡେଜାର୍ଟ ଉଇଲୋ, 'ମେସ୍‌କାଇଟ୍' ପ୍ରଧାନ । ଜୀବଜନ୍ତୁ ମଧ୍ୟରେ ଟଗ୍‌ହର୍ଣ୍ଣ, ମୁଲ୍‌ଡ଼ିଅର୍, ମୁଜ୍, ଜାକ୍‌ରବଟ୍ ପ୍ରଭୃତି

ତୃଣ ଭୃଙ୍ଗା; କଛୁ କଛୁ ବର୍କ୍ୟାଟ, କୋପ୍ସୋଟ ଓ କୋକଶିଆଳ ମଧ୍ୟ ଦେଖାଯାନ୍ତି ।

ଧବଳ ମାଳାଭ କାର୍ହ୍ନି ସୂର୍ଯ୍ୟାସ୍ତ ପାହାଡ଼, ପ୍ରସ୍ତର ଜଟିଳ, ଧୂସର ମଧ୍ୟରେ କାର୍ହ୍ନି ବନ୍ଦ ବନ୍ଦ ଶ୍ୟାମଳତା ଫୁଟେ । ଭଗ୍ନ ଚୂର୍ଣ୍ଣୀଭୂତ କାର୍ହ୍ନି ପ୍ରକୃତର ଦୁର୍ଦ୍ଧର୍ଷ ଦୁର୍ଗ, କମକୃଟକର କାର୍ହ୍ନି ବର୍ଷ । ଶିଳ୍ପୀ ହାତଗଢ଼ା ଗେଶର ତୋରଣ । ଦୁଇ ଲାଲ୍ ପାହାଡର ମଧ୍ୟରେ ଧବଳ ପାହାଡ଼ଟିଏ, ଗୋଟିଏ ଶୃଙ୍ଗ ତାର ଧୂସର; କେଉଁଠି ବା ଶିଳାଖଣ୍ଡମୟ କ୍ଷୁଦ୍ର ଶୈଳ । ଶିଖର ଗୈରିକଭରା ଗମ୍ଭୀର ଆକାଶ ରୌଦ୍ରର ମଧ୍ୟାହ୍ନେ ଢଳେ । ଘର୍ଘର କାକଟସ୍; ସେ କସ ତୈଳାକ୍ତ ଗୁଳ୍ମ ? ରୌଦ୍ର ସଙ୍ଗେ ସଂଗ୍ରାମ ତା ଦେଖେ ମସ୍ତକା' ଅସଂଖ୍ୟ ଆକାର୍ ପ୍ରକାର ଓ ବର୍ଣ୍ଣର କଙ୍କର ଉପରେ ନାଚୁ ନାଚୁ ।

ଆମେ 'ସେଣ୍ଟ ଜଜ' ସହରରେ ପହଞ୍ଚିଲୁ । ଦୁଇଟି ପିଲ୍ଲ ପ୍ଲାଷ୍ଟିକ ନାଡ଼ରେ କାଗଜ ଗ୍ଲାସରୁ କଣ ପେଇ ପିଇ ଫୁଟ୍‌ପାଥରେ ବୁଲୁଛନ୍ତି । ତାପରେ ଶ୍ରାନ୍ତ ଚକ୍ଷୁ ଗୁଳ୍ମଦ୍ରୁମ ବନସ୍ପତରେ କିଛି କାଳ ବିଶ୍ରାମ ନେଲା । ଏ ଗୋଟିଏ ଓଏସିସ୍, ଏଠି ସେଠି ଟେନାଏ ଟେନାଏ ଫସଲ ହୋଇଛି; 'ଓଏସିସ୍' କାଫେରେ ଆହାର କରି ପୁଣି ରୌଦ୍ରର ଆତଙ୍କ-ଭରା ଜରାଗ୍ରସ୍ତ କଙ୍କରିଲ ଶୈଳ ପ୍ରବାହ ମଧ୍ୟରେ ଆମେ ବୁଲିଲୁ ।

ପରାଜତ, ବିପନ୍ନ, ମୁମୂର୍ଷୁ, ତଥାପି ଜୀବନର ଜୟଗାନ ଗାଉଛନ୍ତି, ବନ୍ଧ୍ୟ ଭୂମିର ବିରଳ ତୃଣ । ମୃତ୍ତିକାକଙ୍କର ବୁଦ, ଗୋଟିକ ପରେ ଆଉ ଗୋଟିଏ, ଆମେ 'ମେକ୍ସିଟ୍' ସହରରେ ପହଞ୍ଚିଲୁ, କେଉଁଠି ଟେନାଏ ଫସଲ, ମେଞ୍ଚାଏ ଘାସ, ପିର୍ ଗଛ କେତୋଟି, କେତୋଟି କରବୀର ।

କଙ୍କର ମୃତ୍ତିକାର ଅନୁର୍ବର ଲହରୀ, କେଉଁ ଦାନବ ଦଳର ହାଡ଼ ଓ ସିଆର ମେଲିଥିଲି ଏଠି ? ମଧ୍ୟାହ୍ନରେ ବିକଟତମ ହୋଇଛି ମରୁର ଶ୍ରୀ । ମରୁଭୂମି ଦେଖିବାର ଅଭିଳାଷ ଥିଲି ଯଦି, ଅବଶ୍ୟ ପଥହରା ପଥିକ ପରି ନୁହେ, ଉଷ୍ଟ୍ରାରୋହୀ ବଣିକ ପରି ନୁହେ, ଜଣେ ସୌଖୀନ ଯାତ୍ରୀର

ଦୃଷ୍ଟିରେ । କୌତୂହଳୀ ଆଖି ଜନ୍ଧବାସ୍ପ, ସନ୍ନତ ବୁଲୁଛି, ନୂଆଗ୍ରାମାଖର କଙ୍କର ପାହାଡ଼କୁ ସ୍ନେହରେ ସିକ୍ତ କରି ।

କିନ୍ତୁ କୁଆଡ଼ୁ ନିମନ୍ତ୍ରଣ ନାହିଁ, ଯାହାକୁ ସ୍ୱତ୍ତ୍ବଂଚ, ପଳାଅ, ପଳାଅ ବୋଲି ଟେପରିକ କହୁଛି । ଦୃଷ୍ଟି ପଳାଉଛି ଘୂର୍ଣ୍ଣୀ ପରି, ମୁହୂର୍ତ୍ତର ଛଟମଟ କରି ମାଳର ଆଶ୍ରାପ ଖୋଜୁଥିବା ଦଗ୍‌ବଳପୂ ଶେଷ ଶୈଳ ଯାଏ । କେତେବେଳେ ସେ ସଙ୍କୁଚିତ ହୋଇ ରହୁଛି ଆପଣା ଭିତରେ, ତୃଷାର୍ତ୍ତ ଧୂମଳ, ଶୂନ୍ୟ, ଗ୍ଳପ୍ଳାହ୍ଳିତ ଝୁରିତମ ଗ୍ରୀଷ୍ମର ଧମକରେ ।

ପକ୍ଷୀ ନାହିଁ, ପ୍ରଜାପତିଟିଏ ବି କେଉଁଠି ଦିଶୁନାହିଁ, ପାଣ୍ଡୁର, ପାଂଶୁଳ, ବୈଧବ୍ୟ; ଏହାକୁ ଆଗ୍ନେୟ ଉପତ୍ୟକା କହନ୍ତି । କିନ୍ତୁ ସବୁ ଜଳି ପୋଡ଼ି ପାଉଁଶ ହୋଇ ଯାଇଛି । ଜଳିବାକୁ ଅଛି କଣ ? ତଥାପି ଅଗ୍ନି ରୌଦ୍ର ରୂପରେ ବୁଲୁଛି ବନ୍ଦୁ ବନ୍ଦ ସବୁଜ ଲେହନ କରି । ମରୀଚିକା ଝଁଶ୍ଚି ପଡ଼ୁଛି ସତେ କି ସେଇ ଅଗ୍ନିରୂପୀ ଭସ୍ମରୂପୀ ଜଙ୍ଗଲର ସ୍ତୂପେ ସ୍ତୂପେ । ପ୍ରକୃତିର ରୁଦ୍ର ରୂପ ଦେଖିଥିଲି ଜଳାବର୍ତ୍ତେ, ପାତାଳ ଗଭୀର ଗର୍ତ୍ତେ ଭୃଙ୍ଗ କେଉଁ ପ୍ରପାତ ପତନେ, ଗାଇଜର୍ ଭ୍ରୁକୁଟି ବା କର୍ଦ୍ଦମାକ୍ତ କଲ୍ଲୋଳ ପଲ୍ଲବେ । ସେତେବେଳେ ଭୟ ନ ଥିଲି, ମୁଖ ଏତେ ଶୁଷ୍କ ହୋଇପାରେ, ଯୁଗେ ଯୁଗେ ପୁଞ୍ଜୀଭୂତ ବେଦନାରେ ଦଗ୍ଧ । ହାସ୍ୟ ନାହିଁ, ନ ଥାଉ ସେ, ବିନ୍ଦୁଟିଏ ନାହିଁ ଅଶ୍ରୁଧାର, ସେଇ ବିଧବାର ମୁଖେ, କେବଳ କଠୋର ଜ୍ୱାଳା, ଶୂନ୍ୟତା ବା ବୀଭତ୍ସ ବିକୃତି ।

ମୋଭେଦାର ଏଇ ମରୁଭୂମି ଲମ୍ବିଛି ଦକ୍ଷିଣ କାଲିଫର୍ଣ୍ଣିଆକୁ । ଏଇ ପରିବେଶ ମଧ୍ୟରେ ରହିଛି ଲସ୍ ଭେଗସ୍—ମରୁଭୂମିର ସହର ଏ । ଲିକର ସପ୍, ଗଲ୍‌ଫ ସପ୍, କାଫେବାର୍, ପନ୍‌ସପ୍; ଟ୍ରେଲର୍ ସବୁ ଜମିଛି, ଭ୍ରମଣକାରୀଙ୍କର । କେତୋଟି ତାଳଗଛ ଦେଖିଲି ପାର୍କ ମଧ୍ୟରେ, ଖର୍ବ୍ ମୋଟ; ବାହୁଙ୍ଗାରେ କଣ୍ଟା ଅଛି, ପତ୍ର ଏକାପରି; କିନ୍ତୁ ତାଳ ଫଳୁନାହିଁ । ଫଳୁଛି କୋଳି । ତାଳ ନୁହେଁ, ସେହି ଜାତିର କିଛି ଏ ।

'ଲସ୍ ଭେଗସ୍'ର ମ୍ୟୁନିସିପାଲିଟି ପଡ଼ିଆରେ ବସିଛି । ଘାସର ଶ୍ୟାମଳଶ୍ରୀ ମରୁଦଗ୍ଧ ଆଖିରେ ଅଞ୍ଜନ ବୋଳି ଦେଲା ଯେପରି—ମୃତ୍ୟୁରୁ

ଜୀବନ, ଶ୍ମଶାନରୁ ଉଦ୍ୟାନକୁ ଆସିଛୁ ଆମେ; ଭୂମି ଭୂମି ମଧ୍ୟରେ ଏତେ ତାରତମ୍ୟ କେବେ ଆଖିରେ ପଡ଼ ନଥିଲା ମୋର ।

ଘାସ ତୃଣ ପ୍ରାନ୍ତରସବୁ, ଫୁଆରର ବହୁ ବାହୁ ବୁଲୁଛି ଅମୃତ ଛିଞ୍ଚି ଛିଞ୍ଚି । ଜଳକୁ ଅମୃତ କହିଲେ ଏଠି ଅତ୍ୟୁକ୍ତି ନୁହେଁ । ଏହି ପ୍ରାନ୍ତରକୁ ଲାଗି ଗୋଟିଏ ସନ୍ତରଣପୁଷ୍କରଣୀ; ସ୍ୱର୍ଣ୍ଣକେଶୀ କଣୋଷୀ ଯୁବତୀମାନେ ଧାଇଁଛନ୍ତି ସ୍ନାନକୁ । ପାଖରେ ମ୍ୟୁନିସିପାଲଟିର ଗୋଲାପ ବଗିଚା—କି ଯତ୍ନରେ ଏଇ ମରୁଭୂମିରେ ଗୋଲାପ ଫୁଟାଯାଇଛି,ନ ଦେଖିଲେ ବୁଝାଯିବ ନାହିଁ । ସବୁଜ-ସ୍ନାତ ଚକ୍ଷୁ ପ୍ରତ୍ୟେକ ଗୋଲାପକୁ ଯେପରିକି ଚୁମ୍ବନ ଦେବାକୁ ଲାଗିଲା ।

ପଡ଼ିଆରେ କେତେକ ଓସାରପତ୍ରିଆ ଗଛ—ପାତଳ ପତ୍ର ଗୋଟେ ଗୋଟେ ପଡ଼ୁଛି । ବେଞ୍ଚ ଡ଼େସ୍କ ପଡ଼ିଛି, ଏଠି ଆମ ଲକ୍ଷରେ ଅଂଶୀଦାର ହେଲେ—ଗୋଟିଏ ଧଳା ପାରା, କେତୋଟି ବାପୁା ଚଢ଼େଇ । ଯାତ୍ରୀଙ୍କ ଖାଦ୍ୟ ଉପରେ ଚାଳ ଆସିଛନ୍ତି, ଭୟଶୂନ୍ୟ, ପାଖକୁ ଲାଗିଆସି ବସୁଥାନ୍ତି । ପାରାଟି ରୁଗ୍‌ଣ, ଏ ଖାଦ୍ୟ ତା ଦେହରେ ସାଜୁନାହିଁ, ପ୍ରାକୃତିକ ଖାଦ୍ୟ ଖୋଜିବା ଲାଗି ଶ୍ରମକୁଣ୍ଠ । ପୋଷ୍ୟ ସେ, ବହୁ ଜନ ଲାଳିତ, ଡେଣାରେ ତାର ଆଳସ୍ୟ ଜମିଛି, ଚକ୍ଷୁରେ ଜମିଛି ସହଜିଆ ଧର୍ମ । ବାପୁାଙ୍କୁ ଗୋଡ଼ାଇ ତଡ଼ୁଛି ସେ । ବାପୁା କିନ୍ତୁ ହଟିବାର ପାତ୍ର ନୁହନ୍ତି । ପୁଣି ଆସି ଖୁଣ୍ଟି ଖାଉଛନ୍ତି, ପାରାର ବଡ଼ପଣକୁ ବେଖାତିର କରି ।

ଗୋଟାଏ ଝଙ୍କା ତାତଲା ପବନ ବୋହି ଆସିଲା, ତା ସଙ୍ଗେ ଜଣେ ଲେଡ଼ି ପୁଲିସ—ତାଙ୍କ କାର୍ ଉପରେ ଦୁଇଟି ଶକ୍ତିଶାଳୀ ଲାଲ୍-ବତୀ ଦପ୍ ଦପ୍ କରୁଥାଏ, ତା ମଝିରେ ସାଇରନ୍ । ଆମ ଲିଞ୍ଚକୁ ବେଖାତିର କରି ଯେ ଶୀଘ୍ର ମଟରେ ଘୁଞ୍ଚାଇବାକୁ ନିର୍ଦ୍ଦେଶ ଦେଲା—କଡ଼ା ହୁକୁମ୍ । ଉଦୟ ଅଧା ଖିଆରୁ ଉଠି ପୁଲିସ୍‌ର ନିର୍ଦ୍ଧେଶିତ ସ୍ଥାନରେ ଗାଡ଼ି ପାର୍କ କରିଦେଇ ଆସିଲା, ଏଠି ପୁଲିସି ଜବରଦସ୍ତ, ଅଖଣ୍ଡ କ୍ଷମତାର ଅଧିକାରୀ ସେ ।

## ଲାସ୍ ଭେଗାସ୍

ଲାସ୍‌ଭେଗାସ୍‌କୁ ପୃଥିବୀର ବିଳାସବ୍ୟସନର ରାଜଧାନୀ କୁହାଯାଏ । କିନ୍ତୁ ଏ ବିଗରେ ପ୍ୟାରିସ୍ ପ୍ରଥମ, ଲାସ୍‌ଭେଗାସ୍‌ର ସ୍ଥାନ ଦ୍ୱିତୀୟରେ ଆସେ । ଏ ନଗର ବହୁପୁରୁଣା ନୁହେଁ, ୧୯୦୫ରେ ଏହାର ଉପକ୍ରମ ହେଲା, ଦ୍ୟୁତ-କ୍ରୀଡ଼ା ଓ ଭ୍ରମଣକାରୀଙ୍କ ସମାଗମ ଆଧାରରେ ବଢ଼ିଚାଲିଲା । ହୋଟେଲ, ମୋଟେଲ, ରେଷ୍ଟୁରାଣ୍ଟ; ଦୋକାନ ବଜାର ଗଢ଼ିଉଠିଲା । ଭ୍ରମଣକାରୀଙ୍କ ଲାଗି ସନ୍ତରଣ, ସୂର୍ଯ୍ୟସ୍ନାନ, ସ୍କିଙ୍ଗ୍, ଅଶ୍ୱାରୋହଣ, ଟେନିସ୍, ଗଲ୍‌ଫ, ଗିରି ଆରୋହଣ, ନୌକା ଚାଳନ ପ୍ରଭୃତିର ବିସ୍ତୃତ ବ୍ୟବସ୍ଥା ହେବାକୁ ଲାଗିଲା । ଫସିଲ ଓ ଧାତୁ, ଲୋହିତଭାରତୀୟ ଓ ପ୍ରାଗୈତିହାସିକ ଅତିକାୟ ଜୀବଙ୍କ ଅସ୍ଥିର ଅନୁସନ୍ଧାନ, ଆବିଷ୍କାର ଓ ଗବେଷଣା ଲାଗି ସୁବ୍ୟବସ୍ଥା ହେଲା । ଏହି ନଗରର ମୁଖ୍ୟତଃ ଦୁଇଟି ଧନ୍ଦା—ଧାତୁ ଉତ୍ତୋଳନ ଓ ଶସ୍ୟ ଉତ୍ପାଦନ ।

'ଲିଡୋ' ବା ଉଲଗ୍ନ ନୃତ୍ୟ ଏଠାର ଏକ ବିଶେଷତ୍ୱ । ଏଥି ଲାଗି ହଲିଉଡ଼୍‌ର ନକ୍ଷତ୍ରମାନେ ଆସିଥାନ୍ତି । ବଡ଼ଲୋକଙ୍କ ଖିଆଲ ଏଠି ଚାଲୁ । ଆଖି ବୁଜି ଯେ ପଇସା ଉଡ଼େଇ ଦେଇ ପାରେ, ସେ ଏଠିକି ଆସେ । ଯାହାର ପୁଅ ମୁଣ୍ଡକୁ ଆଶା, ତେଣେ ତେଲ ସଢ଼ୁଛି ଆଶା, ସେ ଏ ଭୂଇଁ ମାଡ଼େ ନାହିଁ । ମଉଜ କରିବାର ସବୁ ସୁଯୋଗ ଏଠି ଅଛି । ଜୀବନର ସବୁ ଦୁଃଖକଷ୍ଟ ଭୁଲି ହେବ, ଭସିଯାଇ ହେବ, ଡୁବି ହେବ; କେତେ ଧନ ଲାଗି । ଜୀବନରେ ଅନେକ ପାଇବାର ସୁଖ ଅନୁଭବ କରିଛନ୍ତି । ହରାଇବାର ସୁଖ ଏଠି ସେମାନେ ପାଇଥାନ୍ତି, କେତେକ ଧନ କ୍ଷୟ ହେଲେ ସିନ୍ଧୁ କଣ ଭାବେ ? ଜୀବନର ଗତାନୁଗତିକ ଧାରାରୁ ମୁକ୍ତ ହୋଇ ସେମାନେ ପ୍ରଚୁର ଆନନ୍ଦଲାଭ କରିଥାନ୍ତି । ଆତ୍ମହରା ହେବାର ସ୍ୱଚ୍ଛଳତା ଏପରି ଅନ୍ୟ କେଉଁଠି ମିଳିବ ?

ଚବିଶ ଘଣ୍ଟା ମଧ୍ୟରେ ବିବାହ ବା ଛାଡ଼ପତ୍ର ଏଠି ଆଇନ ଅନୁମୋଦିତ । ଏଥିଲାଗି ଯୁକ୍ତରାଷ୍ଟ୍ରର ବହୁ ସ୍ତ୍ରୀ ପୁରୁଷ ଲାସ୍‌ଭେଗାସ୍‌କୁ ଆସିଥାନ୍ତି । ଯେକୌଣସି ସାଧାରଣ ସହର ଅପେକ୍ଷା ଏଠି ଚର୍ଚ୍ଚର ସଂଖ୍ୟା

ବେଶୀ—କାରଣ ବଷ୍ଟ କରେଇବା ଦାୟିତ୍ୱ ସେମାନଙ୍କର; ବବାହ ଆୟ ଚର୍ଚ୍ଚର ଗୋଟିଏ ବଡ଼ ଆୟ । ବବାହ ରେଜେଷ୍ଟ୍ରି ବା ଛାଡ଼ପତ୍ର କରେଇବା ଲାଗି ଏଠି ବହୁ ଆଟର୍ଣ୍ଣି ଥାନ୍ତି । ଗୋଟିଏ ଛାଡ଼ପତ୍ର କରେଇଲେ ଆଟର୍ଣ୍ଣି ୩୦୦ ଡଲର ଫି ପାଏ । ମୋଟେଲରେ ପହଞ୍ଚିବା ମାତ୍ରେ ମ୍ୟାନେଜର ପଚାରନ୍ତି—ବବାହ ନା ଛାଡ଼ପତ୍ର ?

## କାସିନୋ

ସେତେବେଳେ ସାନ୍‌ଫ୍ରାନ୍‌ସିସ୍କୋ, ଫ୍ଲୋରିଡ଼ା, ଇଲିନଏସ୍, ନ୍ୟୁୟର୍କ, ଜୁଆଖେଳ ଲାଗି ପ୍ରସିଦ୍ଧ ଥିଲା । ଲାସ୍‌ଭେଗସ୍‌ରେ ଖୁବ୍ ସାମାନ୍ୟ ଚାଲୁଥିଲା । ସିଗେଲ୍ ହିଁ ଏହି ନଗରରେ ଏହାର ପ୍ରଧାନ ପ୍ରବର୍ତ୍ତକ । ୧୯୪୬ରେ ଦକ୍ଷିଣ କାଲିଫର୍ଣ୍ଣିଆରେ ଜୁଆ ବେଶ ଜମି ଆସୁଥିଲା । ସେ ଖେଳ ଚାଲୁଥିଲା ସମୁଦ୍ର ମଧ୍ୟରେ, କେତୋଟି ଗ୍ଲେଟ ଗ୍ଲେଟ ଜାହାଜ ଭିତରେ । ସିଗେଲ୍ ଆଉ କେତୋଟି ଜାହାଜ କିଣି ସେଥିରେ ଜୁଆ ଆଡ୍‌ଡା ଜମେଇବାର ପରିକଳ୍ପନା କରୁଥିଲେ, କିନ୍ତୁ ହଠାତ୍ ବିନା ମେଘେ ବଜ୍ରପାତ ପରି କାଲିଫର୍ଣ୍ଣିଆରେ କଡ଼ା ଆଇନ ଜାରି ହେଲା । ସିଗେଲ୍ ରାତାରାତି ପେଡ଼ି ପେଟରା ବାନ୍ଧି ଆସିଲେ ନେଭାଦାର ମରୁଭୂମିକୁ । ଏ ରାଜ୍ୟରେ ଜୁଆ ଆଇନସଙ୍ଗତ ଥିଲା । ସିଗେଲ୍ ଯୁକ୍ତି କଲେ—ଯଦି ଜୁଆ ଖେଳିବା ଲାଗି ଲୋକେ ସମୁଦ୍ର ଭିତରକୁ ଯାଉଛନ୍ତି, ତେବେ ମରୁଭୂମିକୁ ନ ଆସିବେ କାହିଁକି ?

ତା ଛଡ଼ା ଲାସ୍‌ଭେଗସ୍ କାଲିଫର୍ଣ୍ଣିଆର ନିକଟବର୍ତ୍ତୀ । କାଲିଫର୍ଣ୍ଣିଆ ଜନବହୁଳ ହେଉଅଛି । ସେଠା ଖେଳାଳୀ ଏଠିକି ନ ଆସିବେ କାହିଁକି ?

ଲାସ୍‌ଭେଗସ୍ ସେତେବେଳକୁ ଏକ ନଗଣ୍ୟ ସହର । ସିଗେଲ୍ ଏଠି ପାଞ୍ଚ ଲକ୍ଷ ଡଲାରର କାସିନୋ ଓ ହୋଟେଲ ଖୋଲି ଦେଲେ—ଛ'ଟି ବ୍ଲାକ୍ ଜାକ୍ ଟେବୁଲ, ଛ'ଟି ବ୍ୟାଙ୍କକ୍ରାପ୍ ଟେବୁଲ୍, ତିନୋଟି ରାଉଲେଟ୍ ଟେବୁଲ୍, ଗୋଟିଏ ପୋକର୍ ଟେବୁଲ୍ ଓ କେତେକ ସ୍ଲଟ୍ ମେସିନ୍ ପକାଇଲେ । ଗୋଟିଏ ଶନିବାର ରାତିରେ ହୋଟେଲ୍ ଏକ

ଲକ୍ଷ ଡଲାର୍ ହରାଇଲେ । କିନ୍ତୁ ଏହା ହେଲା ସର୍ବୋତ୍କୃଷ୍ଟ ବିଜ୍ଞାପନ । ଖେଳାଳୀଙ୍କ ସୁଅ ଛୁଟିଲା । ଧନ ଗନ୍ତି ଜୁଆଖେଳ ଆଡ୍ଡା ଜମିଲା ।

୧୯୬୫ ବେଳକୁ ଅନ୍ୟ କେତେକ ବ୍ୟବସାୟୀ ଏ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ପନ୍ଦରଟି ହୋଟେଲ୍ କାସିନୋ ଖୋଲିଗଲା । ଲୋକସଂଖ୍ୟା ହେଲା ତିନି ଲକ୍ଷରୁ ଅଧିକ । ସେଥିମଧ୍ୟରୁ ୩୭ ହଜାର ଲୋକ ଜୁଆଖେଳ ଆଡ୍ଡାର ଚାକିରିଆ ।

ଆମେରିକାରେ ମୁଖ୍ୟତଃ ଦୁଇଟି ସହରରେ ଦ୍ୟୁତକ୍ରୀଡ଼ା ଆଇନ-ସଙ୍ଗତ—ରେନୋ ଓ ଲାସ୍ ଭେଗାସ୍ । ଦୁଇଟିଯାକ ସହର ନେଭେଡା ରାଜ୍ୟରେ ଅବସ୍ଥିତ । ଜୁଆଖେଳରେ ଏଠି ଅନୈତିକତା ବୋଲି କିଛି ନାହିଁ । ଏହା ଗୋଟିଏ ବଡ଼ଲୋକୀ ବ୍ୟସନ, ଫେସନ୍ ମଧ୍ୟ । ଗୋଲ୍ଡେନ୍ ନଗେଟ୍, ହର୍ସସୁ, ଫ୍ରେମ୍‌ଚେଟ୍, ଫୋକ୍‌ନ୍ୟୁନ୍ ପ୍ରଭୃତି ବଡ଼ ବଡ଼ ରେଷ୍ଟୁରାଣ୍ଟ ଓ ଦ୍ୟୁତବ୍ୟବସାୟୀ ସଂସ୍ଥା ଧରାବନ୍ଧା ଖେଳାଳୀମାନଙ୍କୁ ମାଗଣାରେ ବ୍ୟୋମଯାନରେ ନେଇ ଆସନ୍ତି, ପୁଣି ସସମ୍ମାନେ ଘରେ ଛାଡ଼ି ଦେଇ ଆସନ୍ତି । ଆମେରିକାର କେତେକ ନାମଜାଦା ବ୍ୟବସାୟୀ ଜୁଆ-ଖେଳରେ ନାମ ଲେଖାଇଛନ୍ତି । କେବଳ ଗୁପ୍ତ ସେମାନେ ଶରକାଳ ସଫଳ ପାଇ ଆସିଛନ୍ତି । ସେମାନେ ଏ ଖେଳ ଭଲଭାବେ ଶିଖିଛନ୍ତି । ଖେଳ କେତେକ ଲାଭବାନ୍ ହୁଅନ୍ତି, କେତେକ କ୍ଷତିରେ ପଡ଼ିବା ସ୍ୱାଭାବିକ । କିନ୍ତୁ କ୍ଷତିକୁ ସେମାନେ ଖାତିରରେ ଆଣନ୍ତି ନାହିଁ । ଜୁଆଖେଳ ବଜାଣି ପକେଇଲା ପରି ସେମାନଙ୍କର ଏକ ବଡ଼ ହବି ।

କେତେକଙ୍କର ଏହା ଗୋଟିଏ ନିଶା । ସେଥିରେ ସେମାନେ ଭୋଳ ହୋଇଥାନ୍ତି, ସର୍ବସ୍ୱ ହରାନ୍ତି; କିନ୍ତୁ ଯୁଧିଷ୍ଠିରଙ୍କ ପରି କେହି ଭାର୍ଯ୍ୟା ହରାଇବା କଥା ଶୁଣା ନାହିଁ । ଆଜି କେତେକ ଖେଳାଳୀ ଆମ ଭଳି ଯାତ୍ରୀ । କ୍ଷଣିକ ସକ୍‌ରେ ଖେଳନ୍ତି, ଗୋଟିଏ ଖେଳିଲା ପରେ । ଗୋଟିଏ ଖେଳୁ ଖେଳୁ କାହାର ଟଙ୍କା ବା ବାହାରିଯାଏ । ଭ୍ରମଣ ଏଠି ବନ୍ଦ ହୋଇଯାଏ । କାନମୁଣ୍ଡା ଆଉଁସି ଘରକୁ ଫେରନ୍ତି ।

ଗୋଟାଏ ହୋଟେଲ୍ ଛକକୁ ଗୃହିଁଦେଲେ ବୁଝାଯାଏ ଜୁଆଖେଳ ବ୍ୟବହାରୀଙ୍କ ସମୃଦ୍ଧି—ବିପୁଳ ପ୍ରାସାଦ, କି ସଜାସଜ, କି ଅନେକ ବୈଚିତ୍ର୍ୟ, କି ଶର୍ଣ୍ଣବୈଭବ ! ହୋଟେଲ୍ ଭିତରକୁ ପଶିଗଲେ ଶୁଣାଯାଏ —ଠକ୍ ଠକ୍, ଠଣ୍ ଠଣ୍ ।

କେତେକ ମୁହଁ ପ୍ରସନ୍ନ; ମେସିନ୍‌ରୁ ମୁଦ୍ରା ଗଳୁଛି, କେତେକ ବିଷଣ୍ଣ, ପକେଟ୍ ଖାଲି ହୋଇ ଆସିଲାଣି; କେତେକ ଆଖିକି ଗୃହିଁଦେଲେ 'ନ କାଦ କାଦଲ ବିଧାନ,' ଯୁଧିଷ୍ଠିରଙ୍କ ଅମଳରେ ନାରୀ ଦ୍ୟୁତକ୍ରୀଡ଼ାର ପଣ୍ୟ ହୋଇଥିଲ; ଏଠି ସେ ଖେଳରେ ମୁଖ୍ୟ ଅଂଶ ଗ୍ରହଣ କରିଛି । ଯୁବତୀ ଓ ମଦ୍ୟର ରାଜତ୍ୱ ଏଇ ଗୃହରେ । ସୁନ୍ଦରୀମାନେ ମଦ୍ୟ ପରି-ବେଷଣ କରି ଗୃଲିଛନ୍ତି । ଏଥିଲଗି ଖେଳାଳୀକୁ ଦାମ୍ ଦେବାକୁ ହେଉ-ନାହିଁ, କାନ୍ଥଯାକ ଉଲଗ୍ନ ଯୁବତୀ, ଦ୍ୟୁତକ୍ରୀଡ଼ାର ଫ୍ରେସ୍‌କୋ, ବିଶେଷ ଉନ୍ମାଦକ ।

ନିକେଲ୍, ଡାଏମ୍, କ୍ୱାଟର୍, ଅଧାଡଲାର ଭଙ୍ଗାଇବାର ସୁବ୍ୟବସ୍ଥା ଏଠି ଅଛି । ଶତ ସଂଖ୍ୟାରେ ସ୍ଲଟ୍ ମେସିନ୍ ଗୃଲିଛି । ମୋର ଟିକିଏ ସକ୍ ହେଲ । ଥରକେ ନିକେଲ୍ (ପାଞ୍ଚସେଣ୍ଟ) କରି ଛ' ଥର ପକାଇଲି । ଛ' ଥରଯାକ ହାରିଲି ।

ମନେ ପଡ଼ିଲ ପିଲାବେଳ କଥା; ମେଳଣ ଖର୍ଚ୍ଚ ଗୃରିପଇସା ପାଇଥିଲି, ଜୁଆ ଖେଳେ ତାକୁ ଦୁଅଣା କଲି । ପୁଣି ଖେଳ ସେତକ ହରାଇଲି । ମନ କଷ୍ଟରେ ଆସି ବୋଉ ପାଖରେ ଛିଡ଼ା ହେଲାରୁ ବୋଉ ପଚ୍ଚାରିଲା—

'କଣ ଖାଇଲୁ ?'

'ଯୁଆଦାଆ ଜିନିଷ !'

'ହଜାଇଲୁ କରେ ?'

ଆଜ ତିରିଶ ସେଣ୍ଟ ହରାଇଲି । ପଚ୍ଚାରିବ କିଏ ? ବଳେ ବଳେ ଯାଇ ଇଗରୁ କହିଲି—ସବଂସ୍ୱ ଗଲା !

'ଲୋକେ ଲକ୍ଷ ଲକ୍ଷ ଡଲାର୍ ହରାଉଛନ୍ତି !'

'ମୁଁ ଗୋଟିଏ ଡଲାରର ମାଲିକ ନୁହେଁ, ପକେଟରେ ଏତିକି ମାତ୍ର ଥିଲା; ପାଣିରେ ପଡ଼ିଲା ! ଲଟେରୀ ବା ଜୁଆରେ ପୁଳାଏ ମିଳିଯିବା ଆଶା ବୃଥା । ବିନା ସଂଗ୍ରାମରେ ସହଜରେ କେବେ କିଛି ପାଇନାହିଁ । ହଠାତ୍ ବହୁତ ଟଙ୍କାର ମାଲିକ ହେବା ଭାଗ୍ୟ ମୋର ନୁହେଁ । ସନ୍ଦେହ ମେଣ୍ଟିଲା, ମନ ଉଦ୍‌ଘାଟିତ ହେଲା ନବ ଭାବରେ—ମୋ ଜୀବନରେ କର୍ମର ଅର୍ଥ କାର୍ଯ୍ୟ, ଭାଗ୍ୟ ନୁହେଁ ।

ଗୋଟିଏ ହେଲେ ମେସିନ୍ ଖାଲି ପଡ଼ିନାହିଁ । କେହି କେହି ଦୁଇ ହାତରେ ଦୁଇଟା ମେସିନରେ ଖେଳୁଛନ୍ତି । କେହି କେହି ଖେଳୁଛନ୍ତି ତାସ, ରାଉଲେଟ ବା କେନୋ; କେହି ଚାଆସ, କେହି ବା ପଶା । ଗୋଟିଏ ପକ୍ଷରେ ହୋଟେଲର ଲୋକ, ଅନ୍ୟ ପକ୍ଷରେ ଯାତ୍ରୀ । କେଉଁ ଯନ୍ତ୍ରରେ କେତେ ଟଙ୍କା ହୋଟେଲ ହାରିଲା, ତାହା ବିଦ୍ୟୁତ୍ ଅକ୍ଷରରେ ଲେଖି ହୋଇଯାଉଛି, ଖେଳାଳୀଙ୍କୁ ଉତ୍ସାହିତ କରିବା ଲାଗି ।

କିନ୍ତୁ ଯାତ୍ରୀ କେଉଁଠି କେତେ ହରାଇଲା ତା ଜାଣିବାର ଉପାୟ ନାହିଁ । ତା ଜାଣିଲେ ସେ ହୁଏତ ଚଳେଇବ, ନ ଖେଳି ଖସିଯିବ—କିନ୍ତୁ ଚତୁର୍ଦ୍ଦିଗରେ ମାୟାଜାଲ—ସୁରା, ମଦ୍ୟ, ଦ୍ୟୂତକ୍ରୀଡ଼ା—ତିନୋଟି ଏକଯୁଟ୍ ହୋଇ ମସ୍ତିଷ୍କ ମନକୁ ବାନ୍ଧି ରଖିଛନ୍ତି । ହୋଟେଲର ଗୁପ୍ତଚର ଲକ୍ଷ୍ୟ ଦେଉଛି—ହୋଟେଲ ଖେଳାଳୀ କେହି କିଛି ପକେଟସ୍ଥ କରୁଛି କି ନାହିଁ ।

ଗୋଲଡେନ୍ ନଗେଟ୍‌ରେ ଏକ କାଚ୍ଚ ରୁପା ଡଲାର୍ ଝୁଲା ହୋଇଥିଲା—ଗଜଲକ୍ଷ୍ମୀ ବସିଥିଲେ ଏଠି, ଚାହିଁଥିଲେ ପୁଞ୍ଜିପତିଙ୍କ ଏତିପର ଭଣ୍ଡାର ଖୋଲିଦେବାକୁ; ଯାହା କୋଟି କୋଟି ହୋଇ ଆସିଛି, ତାକୁ ସୁଅ ମୁହଁରେ ବୁହାଇ ଦିଅ, ଖିଆଲରେ ଫିଙ୍ଗିଦିଅ, ଜୀବନ ବି ଗୋଟାଏ ଜୁଆ, ଦେଲେ ମିଳେ ।

ପଚାଶି ହଜାର ଡଲାର୍ କେତାର ପ୍ରାପ୍ତି ସୀମା । ସେଥିରୁ ଅଧିକ କେହି ପାଇ ପାରିବ ନାହିଁ । ରାଉଲେଟ୍ ଅଭିଜ୍ଞାତଙ୍କ ମଧ୍ୟରେ ଅଧିକ

ପ୍ରିୟ, ବିଶେଷତଃ ସ୍ତ୍ରୀ ଲୋକଙ୍କ ମଧ୍ୟରେ । ଷ୍ଟାପ୍ ପଶା ଖେଳର ଏକ ସ୍ୱତନ୍ତ୍ର; ବଡ ବଡ଼ ବ୍ୟବସାୟୀଙ୍କ ଆଦରଣୀୟ । ଗୋଟିଏ ଡଲାର ଖେଳିଲେ ଏଥିରେ ପଚିଶି ହଜାର ଡଲାର୍ ମିଳିବାର ଆଶା ଥାଏ । ସ୍ଲଟ୍ ମେସିନ୍ ଖେଳରେ ପାଞ୍ଚହଜାର ଡଲାରରୁ କେହି ଅଧିକ ପାଇ ନ ପାରନ୍ତି ।

ଅସଲ ଖେଳାଳୀ ଚତୁର୍ଦ୍ଦିଗ ନିର୍ଜନ ହେଲେ ଖେଳିବାକୁ ଆସି-ଥା'ନ୍ତି । କେତେକ କାସିନୋରେ ଝରକା ନାହିଁ । ତେଣୁ ଦିନ କି ରାତି ଜାଣିବାର ଉପାୟ ନାହିଁ । ଏ ଘରେ ଘଣ୍ଟା ନାହିଁ । ତେଣୁ ଖେଳାଳୀର ସମୟଚେତନା ଲୋପ ପାଏ । ଖାଦ୍ୟପେୟର ଚିନ୍ତାନାହିଁ । ଡଲାର୍ ଶେଷ ହୋଇଗଲେ ଦୁଃଖ ନାହିଁ । କାରଣ ହୋଟେଲ୍ କରଜ ଲଗାଏ, ସମ୍ପତ୍ତିକୁ ରଖି ।

ପଶା ଗଡୁଥାଏ; ରୁଲେଟ୍ ଓ ସ୍ଲଟ୍ ଚକ ବୁଲୁଥାଏ; ତାଅସ ପଡୁଥାଏ; ଦିନରାତି ଚବିଶି ଘଣ୍ଟା ଖେଳ । ହୋଟେଲର କର୍ମଚାରୀ ତିନି ଥାକରେ ଆସନ୍ତି; ଦିନକେ ଛ'ଘଣ୍ଟା ମାତ୍ର କାମ କରନ୍ତି; ଦୁଇଘଣ୍ଟା ବିଶ୍ରାମ । କର୍ମଚାରୀଙ୍କ ମଧ୍ୟରେ କାସିନୋର ମ୍ୟାନେଜର୍, ଅଧିଥି ସତ୍କାରକ, ସାହୁକାର; କାସିଅର୍, ପୁଲିସ୍ ଜଗୁଆଳୀ—ଶେଷୋକ୍ତ ବ୍ୟକ୍ତିର ଚକ୍ଷୁ ଚାରିଆଡ଼େ ବୁଲୁଥାଏ । କିଏ ଅସାଧୁ ଆଚରଣ କଲେ ସେ ଜବତ୍ କରେ ।

କାସିନୋ କାସିନୋ ମଧ୍ୟରେ ଖୁବ ପ୍ରତିଯୋଗିତା ଲାଗେ, ଘରଦ୍ୱାର, ବିଷୟ ସମ୍ପତ୍ତି ସବୁ ଭୁଲିଯିବା ଏଠି ସମ୍ଭବ । ଧୈର୍ଯ୍ୟଧରି ଖେଳିବା ଲାଗି ଖେଳାଳୀକୁ ଉତ୍ସାହିତ କରା ହୋଇଛି—

If you bet slow—you will go
If you bet fast—you connot last.

## ଲେକ୍‌ମିଡ୍

ଲେକ୍ ମିଡ ବୃହତ୍ତମ କୃତ୍ରିମ ହ୍ରଦ, ପର୍ବତମାଳା ମଧ୍ୟରେ କଲୋ-ରାଡ଼ୋ ନଦୀ ଭିତରକୁ ୧୧୫ ମାଇଲ୍ ପର୍ଯ୍ୟନ୍ତ ଏହା ସୁନାବ୍ୟ । ଏହା

ହ୍ରଦର ଦୈର୍ଘ୍ୟ ରୂପେ ପରିଗଣିତ; ଉକ୍ତର ଇଲ୍‌ଉଡ୍ ମିଡ୍‌ଙ୍କ ନାମରେ ଏହା ନାମିତ । ୧୯୨୩ରୁ ୧୯୩୭ ପର୍ଯ୍ୟନ୍ତ ମି:ମିଡ୍ ଜମି ଆବାଦ କମିଶନର ରୂପେ ନିଯୁକ୍ତ ଥିଲେ, ଓ ସେ ବିଭାଗରେ ସୁନାମ ଅର୍ଜନ କରିଥିଲେ ।

କଲୋରାଡୋ ନଦୀ ରକି ପର୍ବତମାଳାରୁ ବାହାରି ପ୍ରଶାନ୍ତ ମହାସାଗରରେ କାଲିଫର୍ଣ୍ଣିଆ ଉପସାଗରରେ ପଡ଼ିଅଛି । ଏହାର ଦୈର୍ଘ୍ୟ ୧୪୦୦ ମାଇଲ । ଶୀତକାଳ ପରେ ବରଫ ତରଳିଲେ ଏହି ନଦୀ ଜଳପୂର୍ଣ୍ଣ ହୁଏ; ବନ୍ୟା ହେତୁରୁ ନିମ୍ନ ଉପତ୍ୟକା ଅଞ୍ଚଳର ଘୋର କ୍ଷତି ଘଟାଏ । ପୁଣି ଗ୍ରୀଷ୍ମ ଓ ଶରତ କାଳରେ ଫସଲ ଲାଗି ଜଳ ଆବଶ୍ୟକ ହେଉଥିବା ବେଳେ ଏହା ଯାଇ କେଉଁ ପାତାଳରେ ପଡ଼େ; ଅତି ଗଭୀର ଗହ୍ୱରରୁ ଜଳ ଉତ୍ତୋଳନ କରିବା ଏକ ଅସାଧ୍ୟ ଓ ଅସମ୍ଭବ ବ୍ୟାପାର ।

ସାତୋଟି ରାଜ୍ୟ ମଧ୍ୟରେ ଏହି ନଦୀ ପ୍ରବାହିତ । ସେହିସବୁ ରାଜ୍ୟର ପ୍ରତିନିଧିମାନେ ବସି ବନ୍ୟାରୋଧ, ଜଳସେଚନ ଓ ବିଦ୍ୟୁତ୍ ଉତ୍ପାଦନ ଉଦ୍ଦେଶ୍ୟରେ ଏଇ ଦୁର୍ଦ୍ଦାନ୍ତ ଓ ଦୁର୍ଦ୍ଧର୍ଷ ନଦୀ ଉପରେ ବନ୍ଧ ପକାଇବା କଥା ସ୍ଥିରକଲେ । ୧୯୨୮ ଖ୍ରୀଷ୍ଟାବ୍ଦରେ ଯୁକ୍ତରାଷ୍ଟ୍ର କଂଗ୍ରେସ 'ବାଉଲଡର୍ ପ୍ରୋଜେକ୍ଟ ଆକ୍ଟ' ବୋଲି ଗୋଟିଏ ଆଇନ ପାସ୍ କଲେ । ଏହାର ପରିଣାମ 'ହୁବର ଡ୍ୟାମ'; ଏହା କଲୋରାଡୋ ନଦୀର ପ୍ରଥମ ଡ୍ୟାମ, ଏହାର ସମସ୍ତ ଜଳ ନିୟନ୍ତ୍ରଣ କରେ । ୧୯୫ରେ ବନ୍ଧ ନିର୍ମାଣ ଦିନରୁ କାଲିଫର୍ଣ୍ଣିଆରେ ବଡ଼ବନ୍ୟା ହୋଇନାହିଁ । କଲୋରାଡୋ ନେଭେଡା ଓ ଆରିଜୋନା ଏଇ ଦୁଇ ରାଜ୍ୟର ସୀମାରେ ପ୍ରବାହିତ । ନେଭେଡା ଅଞ୍ଚଳରେ ଡ୍ୟାମ ହେବା ଫଳରେ ମିଡ୍ ହ୍ରଦର ସୃଷ୍ଟି ହୋଇଅଛି । ସମୁଦ୍ର ପତନରୁ ହୁବରଡ୍ୟାମର ଉଚ୍ଚତା ୭୨୭ଫୁଟ । ଏଥିରୁ ୧୩ ଲକ୍ଷ କଲୋ-ଓ୍ୱାଟ ବିଦ୍ୟୁତ୍ ଉତ୍ପାଦିତ ହୁଏ ଓ ୩୦ ନିୟୁତ ଏକର ଜମି ଜଳସେଚିତ ହୁଏ । ଗଭୀରତମ ସ୍ଥଳରେ ମିଡ୍ ହ୍ରଦରେ ୫୮୯ଫୁଟ ଜଳ ଥାଏ । ଏହି ଡ୍ୟାମରେ ମୋଟ ୧୭୫ ନିୟୁତ ଡଲାର୍ ଖର୍ଚ୍ଚ ହୋଇଥିଲା ।

ହ୍ରଦର ଚତୁର୍ଦ୍ଦିଗରେ ଉଠିଛନ୍ତି ତୃଣଶୂନ୍ୟ ପର୍ବତ, କର୍କଶ କଠୋର, ଘୋର ମରୁଭୂମିକ ଲମ୍ବିଛି ତାର ଶାଖାପ୍ରଶାଖା, ବନ୍ଧୁ ଶ୍ରେଣୀର

ପର୍ବତ ବଳୟର ମଧ୍ୟରେ ଗାଢ ନୀଳଜଳ ଲପ ଲପ କରୁଛି, ହ୍ରଦର ଗିରିଦ୍ୱୀପ ଦୀପବର୍ତ୍ତି ପରି ଦିଶୁଛି । ମୃତ ମଧ୍ୟରେ ଅମୃତ, ରୁକ୍ଷ ମଧ୍ୟରେ ଶ୍ୟାମଳ, କଠୋରକର୍କଶ ମଧ୍ୟରେ କୋମଳ—ଏ ହ୍ରଦ ମରୁଭୂମିରେ ଉଦ୍ଭଟ ଦିଶେ ।

ଦେଖୁ ଦେଖୁ କଲୋରାଡୋ ନଦୀକୂଳରେ ଦୁଇ ପାହାଡ଼ କାନ୍ଥ ମଧ୍ୟରେ ପହଞ୍ଚି ଗଲୁ । ବିଶ୍ରାମ ଗୃହରେ ଗୋଟିଏ ରିଲିଫ୍ ମ୍ୟାପ, ବୋତାମ ଟିପିବା ମାତ୍ରେ ହୁବର ଡ୍ୟାମ୍ କିପରି ଗଢାହୋଇଛି ଦେଖିବାକୁ ମିଳିଲା । ଓ୍ୱାଇଓମିଙ୍ଗ୍‌ରୁ କାଲିଫର୍ଣ୍ଣିଆ ଉପସାଗର ପର୍ଯ୍ୟନ୍ତ ୧୪୦୦ ମାଇଲ୍ ପାହାଡ଼ କାଟି କିପରି କଲୋରାଡୋ ନଦୀ ପ୍ରବାହିତ ହେଉଛି, କେଉଁଠି ପଥେ ପଥେ ତାର ବହୁ ବନ୍ଧ ନିର୍ମିତ ହୋଇ ମରୁଭୂମିରେ ସୁନାର ଫସଲ ଜନ୍ମାଇବା ସମ୍ଭବ ହୋଇଛି, ଟେପ୍ ରେକର୍ଡିଂ ଭାଷଣରୁ ଶୁଣିବାକୁ ପାଇଲୁ । ତାପରେ ଗାଇଡ୍ ଆମକୁ ସଙ୍ଗରେ ନେଇ ଏଲିଭେଟରରେ ଚଢ଼ିଲେ, ଚଉତିରିଶ ମହଲା ତଳକୁ ଯାଇ ଏକ ଶୀତାତପନିୟନ୍ତ୍ରିତ ଆଲୋକ ରଞ୍ଜିତ ଟନେଲ ମଧ୍ୟରେ ଆମକୁ ଚଳାଇ ନେଲେ । ଜଳସ୍ରୋତରେ ଚାଳିତ ବିଦ୍ୟୁତ୍‌ଉତ୍ପାଦକ ଯନ୍ତ୍ରସବୁ ଦେଖି ଆମେ ନଦୀ ସ୍ରୋତ ନିକଟରେ ଛିଡ଼ା ହେଲୁ । ସମୁଚ୍ଚ ଗିରି କାନ୍ଥ ମଧ୍ୟରେ ଗାଢ଼ ନୀଳ ସ୍ରୋତ, ତହିଁରେ ଘୋର ଆବର୍ତ୍ତ—ରୁଦ୍ର ମଧ୍ୟରେ ସୁନ୍ଦର; କର୍କଶ ଗିରି ସଙ୍କଟ ମଧ୍ୟରେ କରୁଣାରୂପିଣୀ କଲୋରାଡୋ । ଯୁଗଯୁଗର ଦଗ୍ଧ ଶ୍ମଶାନକୁ ଉଦ୍ୟାନରେ ପରିଣତ କରିଛି ।

କଲୋରାଡୋ ନଦୀର ପରିତ୍ୟକ୍ତ ଶଯ୍ୟାରେ ଦୁଇହଜାର ଫୁଟ ବହଳ ଉର୍ବର ମାଟି ଥିଲା, କିନ୍ତୁ ଜଳାଭାବରୁ ହୋଇଥିଲା ମରୁଭୂମି । ଏବେ ଗ୍ଲେନ ଓ କେନିଅନ ଡ୍ୟାମ ଯୋଗୁଁ କାଲିଫର୍ଣ୍ଣିଆ ହୋଇଛି ସର୍ବଶ୍ରେଷ୍ଠ ଶସ୍ୟ ଓ ଫଳୋତ୍ପାଦକ ସ୍ଥାନ; କାଲିଫର୍ଣ୍ଣିଆରେ ସବୁ ମିଳେ ବୋଲି ଲୋକଙ୍କ ବିଶ୍ୱାସ ଜନ୍ମିଛି ।

ଏଲିଭେଟରର ଗୃହ ମିନିଟ ଯାହା ନାନା ତଥ୍ୟ—ସମ୍ବଳିତ ଟେପରେକର୍ଡିଂ ଭାଷରେ ସରସ ହୋଇଥିଲା । ଏଲିଭେଟରରେ ଉଠି

ଆମେ ପୁଣି ହ୍ରଦ ତୀରକୁ ଗଲୁ—ଗୋଟାଳିଆ, ଲମ୍ବା କଳା ମୃତୁନ୍ନି ପାହାଡ଼—ଉପରକୁ ଅଜାଡ଼ି ହୋଇ ପଡ଼ିଲା ପରି ଦିଶୁଛନ୍ତି; ଭୂକମ୍ପର ପିଲ୍ଲାସବୁ— ନାଚି ନାଚି ବାଧାରେ ସତେ କି ଛିଡ଼ା ହୋଇ ପଡ଼ୁଛନ୍ତି, ମରୁଭୂମିର ଫସିଲସବୁ, ଏମାନଙ୍କ ଦେହରେ ନୂଆ ଆତ୍ମା ପଶୁଛି—ଏକ ନିପ୍ପାଣୀଳ ଜୀବନ ସଙ୍ଗୀତ । ନବ ସ୍ପନ୍ଦନରେ ସେମାନେ ପୁଲକିତ; ଅଭିଶାପର ଦିନ ଯାଉଛି; ଏବେ ଏକ ନୂଆ ନାଟକ ଅଭିନୟ କରିବେ, ସେଥିଲାଗି ଯବନିକା ବଦଳି ଯାଉଛି, ଦେଖା ଦେଉଛି ନର୍ତ୍ତକୀ କଲୋରାଡୋ ନୂତନ ପରିବେଶରେ ନୂତନ ବେଶରେ; ତା ସହିତ ତାଳ ଦେଇ ନାଚି ଉଠୁଛି ଚତୁର୍ଦ୍ଦିଗ ଉଦ୍‌ବେଳ ହିଲ୍ଲୋଳରେ—ଜୀବନ ଅର୍ଥ ପରିବର୍ତ୍ତନ, ଜୀବନ ଅର୍ଥ ନୃତ୍ୟ ।

କେତେକେ ମଟର୍ ବୋଟ୍‌ରେ ହ୍ରଦରେ ବୁଲୁଥାନ୍ତି । କେତେକ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସନ୍ତରଣ ଓ ସ୍ନାନ କରୁଥାନ୍ତି । କୂଳେ କୂଳେ ମୋଟେଲ୍—ନାନା ରଙ୍ଗର କଟେଜ୍, କଣ୍ଟା କଣ୍ଟା ପାଇନ୍, ନିପ୍‌ମାସ୍, ମାପଲ୍ । ମିଡ୍ ତୀରରେ କେତୋଟି ଟ୍ରେଲର୍ ଗ୍ରାମ—କେତେ ମାଇଲ୍ ପର୍ଯ୍ୟନ୍ତ ଲମ୍ବିଛି । ଘରର ସମସ୍ତ ସୁବିଧା ଏଇ ଚଳନ୍ତା ଗାଡ଼ିରେ ଉପଭୋଗ କରିହୁଏ । ଶୀତାତପନିୟନ୍ତ୍ରିତ । ଏଥିରେ ରାନ୍ଧିହେବ, ଗାଧୋଇ ପାରିବ; ଆଲୋକର ସୁବ୍ୟବସ୍ଥା ଅଛି ।

ଉଡ଼ୁଥାନ୍ତି କେତୋଟି ସି-ଗଲ୍ । ଅପରାହ୍ନର ପାହାଡ଼ ଛାଇ ଲମ୍ବି ଲମ୍ବି ଆସୁଥାଏ ହ୍ରଦ ଉପରକୁ । ଢେଉ ଉପରେ ଢେଉ ଭାଙ୍ଗୁଛି —କଳୁ କଳଧ୍ୱନି ଶୁଣାଯାଉଛି—ଆମେ ଭାଙ୍ଗ ନାହୁଁ, ଆମେ ହଜନାହୁଁ— ଆମେ ଭାଙ୍ଗ······

## ବାଉଲ୍‌ଡର୍

ମିଡ୍ ହ୍ରଦର କୂଳରେ ଅବସ୍ଥିତ ଗୋଟିଏ ନଗର । ହ୍ରଦର ଡାମ୍ ହେଲା ବେଳେ ଏଠି ଅସ୍ଥାୟୀଭାବେ ବାସ କରି ରହିଥିଲେ ଇଞ୍ଜିନିଅର, କାରିଗର, ମିସ୍ତ୍ରୀ ଓ ଶ୍ରମିକ; ଦୋକାନ ବସୁବସୁ ବଜାର

ହେଲ; ଭ୍ରମଣକାରୀଙ୍କ ଯୋଗୁଁ ହୋଟେଲ୍ ମୋଟେଲ୍ ବସିଗଲା । ସହର ଗଢ଼ି ଉଠିଲା, ବଢ଼ି ଚାଲିଲା । ଝଞ୍ଜାମୟୀ ମରୁ ପ୍ରକୃତି ଓ ଖିଆଲି କଲୋରେଡୋର ଚରିତ୍ର ଚମକ ଜାଣିବାର ସୁଯୋଗ ମିଳେ ।

ଆମେ ରାତିଟିଏ କଟାଇଲୁ ଏଠି । ପ୍ରାତରାଶ ପରେ କାର୍‌ରେ ଗ୍ୟାସ୍ ଭର୍ତ୍ତି କରୁ କରୁ ମେକାନିକ ଆବିଷ୍କାର କଲା—ଗୋଟିଏ ଚକ ଚଡ଼କ ଯାଇଛି । ନୂଆ ଗାଡ଼ିର ନୂଆ ଟାୟର୍, ଫାଟିଲା କେମିତି ?

ସେଇଟି ଖୋଲି ଆମ ପାଖରେ ଥିବା ଅନ୍ୟ ଏକ ଟାୟାର୍ ଲଗାଇଲୁ । ଏଥିଲାଗି ଆମକୁ ଏକ ଡଲାର୍ ଦେବାକୁ ପଡ଼ିଲା । କଳ ମୋଡ଼ଲକ୍ଷଣି ଭୂମି ଭିତରୁ ଗୋଟାଏ ମୁଷଳ ଓ ଚାରି ଶାଖାସବୁ ଗାଡ଼ିଟିକୁ ଟେକି ଧରିଲା—ଯେପରି ମରାମତି ବେଳେ ଆଦୌ ହୋହଲିବ ନାହିଁ । ମେକାନିକ ଚକଟି ଗୋଟିଏ ମିନିଟ୍‌ରେ ଖୋଲିଦେଲା । ନୂଆ ଚକଟି ଲଗାଇବା ଲାଗି ଆଉ ମିନିଟିଏ ଲାଗିଲା । ପାଞ୍ଚ ମିନିଟ ମଧ୍ୟରେ ସବୁ ଠିକ ।

ସନ୍ଦେହ ରହିଗଲା ମେକାନିକ ଚାଲବାଜିରେ ? ପ୍ରକୃତରେ ଚକଟି ଫାଟିଥିଲା ନା ଚକଟି ନେବା ଉଦ୍ଦେଶ୍ୟରେ ମିଛକୁ ଦୋଷ ବାହାର କରିଥିଲା ? ଦେଖିଲି ସେ ଗୁଡ଼ାଏ ସେହିପରି ଚକ ଦୁକାନରେ ରଖିଛି । ଏଣ୍ଟି ରଖିଥାନ୍ତା । କିନ୍ତୁ ଉଦୟ ଗାଡ଼ିରେ ନଥିଲା । କାରଣ ଗାଡ଼ିରେ ଟିକିଏ ପିଚିଅଟି ଯାଇନାହିଁ । ସେ ପୁରୁଣାକୁ ବଦଳେଇ ନୂଆ ଚକଟିଏ ପାଇ ପାରିବ ।

## ଆରିଜୋନା (୨୫.୮.୭୬)

ଆରିଜୋନା ଗୋଟିଏ ପର୍ବତ ସଙ୍କୁଳ ମରୁରାଜ୍ୟ । ପ୍ରାକୃତିକ ଦିଗରୁ ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ—ଉତ୍ତର ପୂର୍ବରେ ପର୍ବତମାଳା, ଦୁଇଶହ ମାଇଲ୍ ପର୍ଯ୍ୟନ୍ତ ଗଭୀର ଗହ୍ୱର ଖୋଳି ଖୋଳି କଲୋରାଡ଼ୋ ନଦୀ ଯାଇଛି, ଦକ୍ଷିଣ ପଶ୍ଚିମରେ ଭୂମି ସମତଳ । ବିସ୍ତୃତ ମରୁଭୂମି, ପ୍ରସ୍ତରୀଭୂତ ଅରଣ୍ୟ, ନାନା ଧାତୁରେ ବର୍ଣ୍ଣୋଜ୍ଜ୍ୱଳ ତୃଣହୀନ ପର୍ବତ ଘୋର ଶୂନ୍ୟତା ଓ ରୁକ୍ଷତା ମଧ୍ୟରେ ମାୟାଜାଲ ସୃଷ୍ଟି କରେ ।

ଏହି ରାଜ୍ୟର ସପ୍ତମାଂଶ ଲୋହିତଭାରତୀୟ ଅଞ୍ଚଳ—ଏହି ଜାତୀୟ ବିଭିନ୍ନ ଗୋଷ୍ଠୀ ମଧ୍ୟରେ ନଭଜୋ ବୃହତ୍ତମ । ଲୋହିତ ଭାରତୀୟ ସଭ୍ୟତାର ବହୁ ଉଦ୍‌ବିଶେଷ ଏହି ରାଜ୍ୟରେ ଦେଖାଯାଏ ।

୧୫୩୯ ଖ୍ରୀଷ୍ଟାବ୍ଦରେ ଫ୍ରେ ମାରକୋସ୍ ଡେ ନାଇଜା ନାମକ ସ୍ପେନ ବାସୀ ପଦ୍ରୀ ଏହି ରାଜ୍ୟ ଆବିଷ୍କାର କରିଥିଲେ; ଏଠି ସାତଗୋଟି ସମୃଦ୍ଧ ନଗର ଅଛି, ତାଙ୍କର ଧାରଣା ଥିଲା, ପ୍ରକୃତରେ ସେଗୁଡ଼ିକ ଲୋହିତ ଭାରତୀୟ ଗ୍ରାମ । ପରେ ସ୍ପେନ୍ ସେନାପତି ଏହି ତଥାକଥିତ ସମୃଦ୍ଧ-ନଗର ମଧ୍ୟରୁ ଗୋଟିଏ ଅଧିକାର କରିଥିଲେ, କିନ୍ତୁ ବିଶେଷ ଲାଭବାନ୍ ହେଲେ ନାହିଁ । ସେ ସୁବର୍ଣ୍ଣ ଓ ସଭ୍ୟତା ଅନୁସନ୍ଧାନରେ ଏଠି ଦୁଇଟିବର୍ଷ କଟାଇ ଥିଲେ ।

ପୃଥ୍ବୀ ଅଗ୍ର ଚତୁର୍ଦ୍ଦିଗରେ ସମସ୍ତ ଶୈଳର ଲାଲାଭ ରକ୍ତିମ ଆଭାସ । ଉଷାର ପ୍ରଭାବ ଲୋପ ପାଇ ନାହିଁ; ରୌଦ୍ର ପ୍ରଖରତର ହେଲେ ବି ଏହି ପର୍ବତସବୁ ଏ ରଙ୍ଗ ଛାଡ଼ିବାକୁ ନାରାଜ, ମଧ୍ୟାହ୍ନ ଛଡ଼ାଇ ନନେବା ପର୍ଯ୍ୟନ୍ତ । ଅଦ୍ୟାପି ଦୂର ଦିଗ୍‌ବଳୟର ଲାଲ ଶୈଳ ସବୁ ଯେପରି କି ନିଦ୍ରିତ, ଘନ କୁଜ୍‌ଝଟିରେ । ଆମେ ନିକଟବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ସେ ରଙ୍ଗ ଲଘୁତର ହେଉଛି । ମଧ୍ୟେ ମଧ୍ୟେ ପାହାଡ଼ମାଳାରେ କ୍ଷୀଣାଙ୍ଗୀ, ଖରସ୍ରୋତା, ଗଭୀରତମା କଲୋରାଡ଼ୋର ଲାଲ ଲୋହିତ ଶ୍ରୀ ଦିଶିଯାଉଛି; ଏକ ଦୃଶ୍ୟର ରୂପ ରୂପାନ୍ତର, ବର୍ଣ୍ଣ ବର୍ଣ୍ଣାନ୍ତର, କିନ୍ତୁ ପୁନରୁକ୍ତି ବିରକ୍ତିକର ନୁହେଁ । କାରଣ ତାର ବିକାଶ ହେଉଛି କ୍ଷୁଦ୍ରରୁ ବିପୁଳତର କ୍ରମରେ; ସୀମାରୁ ଅସୀମକୁ ଯାଉଛି ଯେପରି କି !

ଅତି ଧୀରେ କେତୋଟି କାକ୍‌ଟସ, ଦାରିଦ୍ର୍ୟର କରୁଣ ଆଭାସ ଚତୁର୍ଦ୍ଦିଗରେ; କଲୋରାଡ଼ୋ ହୋଇଛି ସେବାବଣି; ତାର ବିଦ୍ୟୁତ ଶକ୍ତିର ପ୍ରଚୁର ଧରିତ୍ରୀ ମିଳୁଛି, ମରୁମୟ ଅଥବା ଭୂମିକି ସେ ସଜୀବ କରିଚାଲିଛି । ଧୂସର ହେଉଛି ସବୁଜ, ସବୁଜ ଫଳରେ ପରିଣତ ।

ମନୁଷ୍ୟର ପ୍ରୀତି ଲଭି

ନର୍ତ୍ତନ ସେ କରୁଅଛି
ଉଦ୍ଦାମ ଗତିରେ
କାହିଁ ସ୍ଥିର ଶାନ୍ତ ରୂପେ ଛିଡ଼ା
ବଣ୍ଣ ମୂର୍ତ୍ତି-ଧର
କାହିଁ ତପଃ କ୍ଳିଷ୍ଟ ତନୁ
ତା ତପସ୍ୟା ଦେଉଅଛି ସଂସାରେ ବିତର ।
ଦେଇ ଦେଇ ରହିଛି ସେ ପରିପୂର୍ଣ୍ଣ,
ଦେବାର ସେ ପରିପୂର୍ଣ୍ଣ ସତ୍ତା
ମନେ ମୋର ସୃଷ୍ଟି କରେ ଗଭୀର ମମତା ।
ମନୁଷ୍ୟକୁ ଦେଇଅଛି
ସ୍ୱାସ୍ଥ୍ୟ; ବର୍ଣ୍ଣ
ଶତ ଅଗ୍ରଗତିର ପ୍ରେରଣା
ବାଧା ବିଘ୍ନ ଲଙ୍ଘିବାର
ଯେତେକ ଉଚ୍ଛ୍ୱାସ ଉଦ୍ଦୀପନା
ସବୁ ଦେଇ ରହିଛି ସେ ମହାସ୍ରୋତା ନଦୀ
ସେଇ ସେବା ପୁଣ୍ୟେ ତାର ଯେମିତି ଜଳଧି
ପ୍ରଶାନ୍ତ ସାଗର
ତା ସଲିଳ ରସ ବନ୍ଧ ମନ ମରୁଭୂମି
ମୋର ଧରେ ରୂପାନ୍ତର ।

ବହୁ ଶାଖାଯୁକ୍ତ ସପ୍ତପର୍ଣ୍ଣୀ, ଫୁଲ ଫୁଟେ, ଲାଲ୍ ବର୍ଣ୍ଣ ଜଳୁଛି ଯେପରି; ପାଖକୁ ଯିବାକୁ ମନା କରୁଛି । ରାଧାନାଥଙ୍କର ପଦେ କବିତା ମନେ ପଡ଼େ—

'ଗୁମ୍ଫାଦାନେ ଦକ୍ଷ ଯହିଁ ସପ୍ତପେଣି,
ଶାରଦାନେ ପୁଣି ମଞ୍ଜରିକା ବେଣୀ ।'

ଏଠି ଦିନେ ଜଳସ୍ରୋତ ବହୁଥିଲା । ଏବେ ଶୁଷ୍କ; ସେଇ ଧାରେ ଧାରେ ସବୁଜପତ୍ର, ଘାସ ଗୁଳ୍ମ ସବୁ ଭିଡ଼ କରିଛନ୍ତି, ସେଜ୍ ବ୍ରସ୍ ! ମରୁଭୂମି ପରିହସିବାକୁ ଚେଷ୍ଟା କରୁଛି—ଶୁଷ୍କହସ, ମସ୍ତୱକା ସହିତ ଆଳାପ କଲାବେଳେ ।

ମରୁଭୂମିର ମେଘ, ମରୁ ପରି ମଳିନ, ବିବର୍ଣ୍ଣ । ମରୁଭୂମିରୁ ଖଣ୍ଡେ ସତେ କି ଆକାଶକୁ ଉଡ଼ିଯାଇଛି ! ପଚାରୁଛି—

‘ଛାଡ଼ି କି ପାରୁଛ ?’
‘ରହି ଏତେ ଉଚେ କମ୍ପା ଛଳନା କରୁଛ ?
ଆହେ ମରୁଭୂମି ମେଘ
ବୃଷ୍ଟି କି ପାରନା ଢାଳେ ତଳର ଉଦ୍‌ବେଗ ?”
ବୃଷ୍ଟି ନ ପାରୁଛ ଯଦି
ଛାଡ଼ିବାର ଇଚ୍ଛା ନାହିଁ ମୋର
ଆହେ ମରୁଭୂମି ମେଘ
କୃଶ କାଷ୍ଠରୂଣ
ଯାହା ନେଇଅଛ ଟାଣି
ଦେଇ ନାହିଁ ଯାଚ,
ଛାଡ଼ିବ ଭୂମରେ ଯେବେ
ଦେବା ଲାଗି ହେବ ସବ୍ୟସାଚୀ ।’

କେଉଁଠି ସବୁଜ, କେଉଁଠି ଶୁଷ୍କ; କେଉଁଠି ପୁଷ୍ପ, କେଉଁଠି କଣ୍ଟକ; ପାହାଡ଼ ଉପରେ ପ୍ରସ୍ତରର ଗୋଟିଏ ଉଚ୍ଚ କାନ୍ଥ, ଅନେକ ଦୂରକୁ ଲମ୍ବିଛି, କେଉଁଠି ପ୍ରସ୍ତର, ପର୍ବତର ମୁକୁଟ ପରି ଦିଶୁଛି, ଭଙ୍ଗା ପାହାଡ଼ରେ ଇତସ୍ତତଃ ବିକ୍ଷିପ୍ତ ଉପଳ, ଦୁଇ ପାହାଡ଼ର ତୋରଣ ମଧ୍ୟରେ ଦୂରସ୍ଥ ଶୈଳର ମଳିନ ଗୌରବ ଦିଶେ—ମୋଟାମୋଟି ଏଇ ଆରିଜୋନାର ଦୃଶ୍ୟ ସୂଚୀ ।

ବାଟରେ ପୁଲିସ୍ ଚେକ ହେଲା—

ଆମେ ନେଭାଦାର କିଛି ଫଳ ନେଇ ଯାଉଛୁ କି ନାହିଁ ?
କିଛି ପଶୁ ପକ୍ଷୀ ନେଇ ଯାଉଛୁ କି ନାହିଁ ?
କିଛି ସଂକ୍ରାମକ ରୋଗ ଅଛି କି ନାହିଁ ?

କାହିଁକି ଏ ବିଚାର ଆଇନ ? ଏଠିକେଉଁ ରାଜ୍ୟରେ ବା ଫଳର ଅଭାବ ? ଏହାର ସେପରି ଆଦର ବା କାହିଁ ? ଭାବିଲି—ନେଭାଦା ମରୁରାଜ୍ୟ, କେହି କିଛି ନେବେ ନାହିଁ; ସମସ୍ତେ ଦେବେ—ଦେବେ । ଅବଶ୍ୟ ଭିକ୍ଷା ନୁହେଁ । କିନ୍ତୁ ଦେବାର ପାଷା ମଧ୍ୟ ନାହିଁ ।

ଆମ ପାଖେ ଦୁଇଟି ପିର୍ ଥିଲା । ପୁଲିସ ଖୋଜିଲା ନାହିଁ; ଆମେ ବି ସ୍ୱୀକାର କଲୁ ନାହିଁ, କିବା କଥା ! ହାଣ କୁରାଢି କାହିଁକି ବେକକୁ ଆଣିଥାନ୍ତୁ !

ଆମେ ‘କାଇମ୍ୟାନ୍’ ସହରରେ ପହଞ୍ଚିଲୁ । ଆମେରିକାସବୁ ସ୍ତମ୍ଭରୁ ରାସ୍ତା ଉପରକୁ ଲମ୍ବିଛି ଅଭୟ ମୁଦ୍ରାରେ । ଏହି ଦେଶର ରାଜପଥ ଉତ୍ତରରୁ ଦକ୍ଷିଣ ଏକ-ତିନି-ପାଞ୍ଚ-ସାତ-ନ’ ଆଦି ବିଯୋଡ଼ ସଂଖ୍ୟାରେ ଶହେ ଏକ ପର୍ଯ୍ୟନ୍ତ ଲମ୍ବିଛି, ପୂର୍ବରୁ ପଶ୍ଚିମକୁ ଯୋଡ଼ ସଂଖ୍ୟା କ୍ରମରେ ପଚାଶ ପର୍ଯ୍ୟନ୍ତ ଯାଇଛି । କେନ୍ଦ୍ର ସରକାର ଏହି ସବୁ ଅନ୍ତଃପ୍ରାଦେଶିକ ରାଜପଥର ଯତ୍ନ ନିଅନ୍ତି ।

ଆଂଶଜୋନା ରାସ୍ତାରେ କିପରି ଜଣେ ଚାଳକ ପୁଲିସ୍ ଧରିଥିଲା ଉଦୟ ବର୍ଣ୍ଣନା କଲା । ଘଣ୍ଟାକେ ପଚାଶ ମାଇଲ୍‌ଗତିରେ ଗାଡ଼ି ଚଳାଇବାର କଥା । ସେ ପଞ୍ଚଷଠୀ ମାଇଲ୍ ଗତିରେ ଚଳାଉ ଥିଲା । ରାଡ଼ାର ଯନ୍ତ୍ର-ଯୋଗେ ଗାଡ଼ିର ନମ୍ବର ଓ ଗତି ଜାଣି ପୁଲିସ ଘଣ୍ଟାକେ ୧୦୦ ମାଇଲ୍ ଗତିରେ ପିଛା ଧରିଲା, ପକଡ଼ିଲା, ଥାନାକୁ ନେଲା । ସାଙ୍ଗେ ସାଙ୍ଗେ କେସ୍ ବିଚାର ଓ ଉଦୟଙ୍କୁ ପଚିଶ ଡଲାର୍ ଜୋରିମାନା ଦେବାକୁ ହେଲା ! ମାତ୍ର ପନ୍ଦର ମିନିଟ ମଧ୍ୟରେ ତଦନ୍ତ, ବିଚାର, ଜରିମାନା ଓ ଛୁଡ଼ି ହୋଇଥିଲା ।

ଘରଚରେ ଏହିପରି ଏକ ଅପରାଧରୁ ମୁକ୍ତ ହେବା ଲାଗି ଥରେ ତାଙ୍କୁ ଦୁଇ ଘଣ୍ଟା ଲାଗିଥିଲା ।

ଦୁଇଶ ମାଇଲ ମଧ୍ୟରେ ଖଣ୍ଡିଏ ସବୁଜ କ୍ଷେତ ଆଖିରେ ପଡ଼ୁ-ନାହିଁ । ଚଳେ ଗ୍ରାଣ୍ଡକାଦ୍ୱେନ୍ନିସ, ଏଲୋଷ୍ଟୋନ୍‌ରେ ଯାଇ ଦେଖିବାକୁ ହୁଏ; ଗୋଟିଏ ନଦୀ ନାନା ଧାତୁଭରା କଙ୍କାଳମୟ ପର୍ବତରେ ଅଦ୍ଭୁତ କାରୁକାର୍ଯ୍ୟ ସୃଷ୍ଟି କରନ୍ତି । ଉପରେ ବରଦ୍ୱାରଙ୍କର ଅଗଣିତ ଫୁଲ, ଶୀତ କାଳରେ ଆମ ଆଡ଼ରେ ସୋରିଷ କ୍ଷେତ ପରି ଦିଶେ ।

ପ୍ରକୃତିର ଚେହେରା ଆସ୍ତେ ଆସ୍ତେ ବଦଳିବାକୁ ଲାଗିଲା; ଚକ୍ଷୁ-ସଦ୍ୟ ପୁଷ୍ପିତ ଶ୍ୟାମଳତା; ସବୁଜ ପର୍ବତରେ ବର୍ଷୁକ ମେଘର ମେଦୁର ଶ୍ରୀ । ଦୁଇଦିନର ତୃଷିତ ଦୃଷ୍ଟି ପରିତୃପ୍ତିରେ ପୂର୍ଣ୍ଣ ହୋଇଆସିଲା ଯେପରି । ମେଘ କ୍ରମେ ନିବିଡ଼ତର ହୋଇ ବର୍ଷିବାକୁ ଲାଗିଲା । ପର୍ବତର ସଂକୀର୍ଣ୍ଣ ପଥେ ପଥେ ଯାଇ ଆମେ ଉଇଲିୟମସ ସହରରେ ପହଞ୍ଚିଲୁ । ମେଘ ଗର୍ଜନରେ ଶବ୍ଦର ତରଙ୍ଗ ଲମ୍ଫିଯାଉଥାଏ ଶୃଙ୍ଗରୁ ଶୃଙ୍ଗକୁ; ବର୍ଷା ବିନ୍ଦୁ ମିଶ୍ରିତ ଶୀତଳ ବାୟୁରେ ପ୍ରାଣ ରୋମାଞ୍ଚିତ ହେବାକୁ ଲାଗିଲା । ଶୀତ; ଅଥଚ ଘଣ୍ଟାକ ଆଗେ ଗମଗମ ଝାଳ ବହୁଥିଲା ।

କଇବାବ ଜାତୀୟ ଉଦ୍ୟାନରେ ଆମେ ଲଞ୍ଚ ଖାଇଲୁ । ଏହି ଉଦ୍ୟାନଟି ପାଇନ, ଫର୍, ସ୍ପ୍ରୁସ, ଜୁନିପର୍, ଓକ ଓ ଆସ୍‌ପେନ ଗଛରେ ଭରା । ଘାସ ତୃଣ ହୃଦ୍ଲୋଳର ମଧ୍ୟେ ମଧ୍ୟେ ବନ୍ୟ ସୂର୍ଯ୍ୟମୁଖୀ; ଉଦଉଦଳିଆ ପରି ନାଳପକ୍ଷ, ଶିରରେ ମୁକୁଟ, କ ପକ୍ଷୀ ଏ ? ପାଇନରୁ ଜୁନିପର୍‌କୁ ଉଡ଼ିଗଲା । କେତୋଟି ହରୁଡ଼ ଆମ ଉପରେ ଅଭିଯାନ ଚଳାଇଲେ । ସେମାନଙ୍କୁ ବିନାଶ ନ କରିବା ପର୍ଯ୍ୟନ୍ତ ରକ୍ଷା ନାହିଁ । ହରୁଡ଼ କାମୁଡ଼ାରେ ଏ ଦେଶରେ ବହୁତ ଲୋକ ମରନ୍ତି । ପାଇନ ବନର ମର୍ମର ପୁରୀ କୋଣାର୍କ କଥା ସ୍ମରଣ କରେଇ ଦେଲା । କଳା ସିଲ୍‌କ ଲୁଗା ବସ୍ତ୍ର ଦେଲ ପରି ଚକ୍‌କଣ ଗଛ । ଗୋଟିଏ ଜାତୀୟ ଉଦ୍ୟାନ, ପକ୍ଷୀ କାକଳୀରେ ଝଙ୍କୃତ । ଆରିଜୋନା ସରକାର କାଠରେ କେତୋଟି ଛୋଟ ଛୋଟ କୁଟୀର ନିର୍ମାଣ କରିଛନ୍ତି । ସେଥିରୁ ଗୋଟିଏ ଆମକୁ ମିଳିଲା । ଖଟ ନ ଥିବାରୁ ତଳେ ଶୋଇଲୁ ।

## ହୋପି ନୃତ୍ୟ

ଗ୍ରାଣ୍ଡ କାନିୟନ ମଧ୍ୟରେ କଲୋରାଡ଼ୋ ନଦୀର ଜଳ ଭାଗକୁ ଲାଗି 'ହୋପି' ଲୋହିତଭାରତୀୟଙ୍କର ଗୋଟିଏ ଗ୍ରାମ, ଜାତୀୟ ଉଦ୍ୟାନରୁ ପାଞ୍ଚ ମାଇଲ୍ ଦୂର, ଗିରିଦୁର୍ଗମ ପଥ; ଖଚରରେ ଯିବା ଆସିବାକୁ ଆଠ ଘଣ୍ଟା ଲାଗେ । ଯାତ୍ରୀମାନଙ୍କ ମନୋରଞ୍ଜନ ଲାଗି ନର୍ତ୍ତକ ନର୍ତ୍ତକୀମାନଙ୍କୁ କଲୋରାଡ଼ୋ ନଦୀରୁ ହୋଟେଲ କୋଠରରେ ପ୍ରଶସ୍ତ ଉପରକୁ ଅଣା-ଯାଏ, ନୃତ୍ୟ ପରେ ଗ୍ରାମରେ ଛାଡ଼ି ଦିଆ ହୁଏ ।

ଗୋଟିଏ ପ୍ରସ୍ତର ମଣ୍ଡପର ସମ୍ମୁଖରେ ସୁନ୍ଦରଗୋଟି ପାଇନ୍ ଗଛ, ନୃତ୍ୟାରମ୍ଭ ଆଗରୁ ପିଲାମାନେ ଗଛରେ ଚଢ଼ି ବସିଲେ, ଆମ ଆଡ଼େ ମେଳଣର ଯାତ୍ରାରେ ଯେପରି କରିଥାନ୍ତି । ଗଞ୍ଜି ଡାଳସବୁ ହଣା ହୋଇ-ଯାଇଛି । ତଥାପି କ୍ୟାମେରା ଧରି କେତେ କେତେ ଭଦ୍ରଲୋକ ଗଛକୁ ଉଠିଲେ । କେତେକ ପିଲା ବାପ ଭାଇଙ୍କ କାନ୍ଧରେ ବସିଲେ । ବାଦ୍ୟ ବା ନୃତ୍ୟରେ କୌଣସି ବିଶେଷତ୍ୱ ନାହିଁ—ସେଇ ଧେ-ଧେ-ଧେ-ଧେ । ସେଇ ଇଗଲ ନୃତ୍ୟ, ଯାହା ଟେକ୍ସାସ ଓ ଉଇସ୍‌କନ୍‌ସିନ୍‌ରେ ଦେଖିଥିଲି । ନୃତ୍ୟ ଶେଷରେ ଗୋଟିଏ ବେଶପିନ୍ଧା ଲୋହିତଭାରତୀୟ ସହିତ ଛିଡ଼ା ହୋଇ ରହିଲି । ଉଦୟ ଫଟୋ ନେଲା ।

## ଯାଦୁଘର

ପଥର ଉପରେ ପଥର ଗଦା ହୋଇ ଲୋହିତଭାରତୀୟ ଶୈଳୀରେ ଗୋଟିଏ ଘର ହୋଇଛି । ସେଥିରେ ପକ୍ଷୀ ପରର ରଙ୍ଗୀନ୍ ମୁକୁଟ ବହୁ ମୁଖାମୟ ସ୍ତମ୍ଭ, ଲୋହିତଭାରତୀୟଙ୍କ ତିଆରି ସଖୀ କଣ୍ଢେଇ, ଅଳଙ୍କାରପତ୍ର, ଫସିଲ୍ ଚଟ୍ଟଖଣ୍ଡ, ଫସିଲ୍ ଅସ୍ଥି, ଓ ଆଧୁନିକ ବହୁ ଶିଳ୍ପଦ୍ରବ୍ୟ ବିକ୍ରୟ ଲାଗି ସଜ୍ଜିତ ଅଛି ।

ଯାଦୁଘରେ ଜଣେ ବଙ୍ଗାଳୀ ଭଦ୍ରଲୋକଙ୍କ ସହିତ ସାକ୍ଷାତ୍ ହେଲା, କଲିକତାରୁ ଆସିଛନ୍ତି । ପରିଚୟ ପାଇ ମୁଁ ବଙ୍ଗଳାରେ ଆଳାପ ଜମେଇ ବସିଲି କିନ୍ତୁ ସେ ବଙ୍ଗଳା କହିଲେ ନାହିଁ, ଟିକିଏ ଆହତ ହେଲି । ବଙ୍ଗଳା

ଭାଷା ଓ ସାହିତ୍ୟ ବଙ୍ଗାଳୀଙ୍କ ଜୀବନ ନାହିଁ । ତା ମଧ୍ୟରେ ଏପରି ଲୋକ ଅଛନ୍ତି ବୋଲି ମୋର ଧାରଣା ନ ଥିଲା ।

## ଉଲ୍‌କା

ଯାଦୁଘର ଦ୍ୱାରରେ ଖଣ୍ଡିଏ ବଡ଼ ଧାତୁ ମିଶ୍ରିତ ପ୍ରସ୍ତର ପଡ଼ିଥିବାର ଦେଖିଲି—ଏ ଦିନେ ଆକାଶରେ ଥିଲା, ଭାସି ବୁଲୁଥିଲା, କେବେ ପୃଥିବୀରେ ପଡ଼ିଲା କିଏ କହିପାରିବ ? ଏବେ କଲୋରାଡ଼ୋ ଉପତ୍ୟକାରୁ ସଂଗୃହୀତ ହୋଇ ଏଠି ରଖା ଯାଇଛି । ଆକାରରେ ଛୋଟ, କିନ୍ତୁ ଓଜନ ତାର ବହୁତ—୫୩୫ପାଉଣ୍ଡ; ଏତେ ଓଜନର ପ୍ରସ୍ତର କିପରି ଆକାଶରେ ଭାସେ, ପୃଥିବୀର ମାଧ୍ୟାକର୍ଷଣ ଶକ୍ତି କିପରି ତାକୁ ତଳକୁ ଟାଣି ଆଣେ, ତାହା ଶୁଣିବା ଏ ଯୁଗରେ ବିଶ୍ୱସ୍ତକର ନୁହେଁ । ଏହି ପ୍ରଥମ ଉଲ୍‌କା ପ୍ରସ୍ତର ମୁଁ ଦେଖିଲି । ବହୁ ଚେଷ୍ଟା କରି ତାକୁ ଦୋହଲାଇ ପାରିଲି ନାହିଁ ।

## ଗ୍ରାଣ୍ଡ୍ କ୍ୟାନିୟନ୍

ଗ୍ରାଣ୍ଡ କ୍ୟାନିୟନ୍ କହେ—ପୃଥିବୀ ନିର୍ମାଣର କାହାଣୀ, ପର୍ବତର ସ୍ତର ପରେ ସ୍ତର ପୁସ୍ତକର ପୃଷ୍ଠା ପରେ ପୃଷ୍ଠା ପରି ଖୋଲି ଦେଇଛି, ପୁରାତନ ଓ ନୂତନ ପର୍ବତର ସ୍ମୃତିଗାଥା; ବହୁ ସଂଗ୍ରାମ ଓ ସଂଘର୍ଷର, ଜୀବନ ଓ ମୃତ୍ୟୁର ଇତିକଥା ।

୧୫୪୦ଖ୍ରୀଷ୍ଟାବ୍ଦରେ ଡନ୍ ଲୋପେଜ୍ ପ୍ରଥମେ ପ୍ରକୃତିର ଏହି ଅପୂର୍ବ ମନ୍ଦିରକୁ ଆବିଷ୍କାର କରିଥିଲେ । ୧୮୪୮ରେ ମେକ୍‌ସିକୋ ଯୁଦ୍ଧ ପରେ ପ୍ରଥମେ ଏହା ଯୁକ୍ତରାଷ୍ଟ୍ରର ଅଧିକାରକୁ ଆସିଲା । ୧୮୬୯ଖ୍ରୀଷ୍ଟାବ୍ଦରେ ଜନ୍ ୱେସ୍‌ଲି ପାଓ୍ୱେଲ୍ ବହୁ ବାଧାବିଘ୍ନ ଅତିକ୍ରମ କରି କଲୋରାଡ଼ୋ ନଦୀରେ ଜଳଯାତ୍ରା କରିଥିଲେ । ସେ ପ୍ରଥମେ ୱାଇଓମିଂର ଗ୍ରୀନ୍ ନଦୀରେ ଆସି କଲୋରାଡ଼ୋରେ ପହଞ୍ଚିଥିଲେ, ଗ୍ରାଣ୍ଡ କ୍ୟାନିୟନ୍‌ରେ ତାଙ୍କର ହଜାର ମାଇଲ୍ ଜଳଯାତ୍ରା ଶେଷ ହୋଇଥିଲା । ତାପରେ ୧୯୧୯ରେ ଏହି ଉପତ୍ୟକା ଜାତୀୟ ଉଦ୍ୟାନ ଭାବେ ଗୃହୀତ ହୋଇଥିଲା ।

ଯେତେବେଳେ ଥିଓଡ଼ର ରୁଜଭେଲ୍ଟ କହିଥିଲେ—ପ୍ରକୃତିର ଏହି ଚମ୍ତ୍କାରୀ ସୌନ୍ଦର୍ଯ ନଷ୍ଟ କରନାହିଁ । ଭବିଷ୍ୟତ ବଂଶଧରଙ୍କ ଲାଗି ସାଇତି ରଖ ।

ନିୟୁତ ନିୟୁତ ବର୍ଷ ତଳେ କଲୋରାଡ଼ୋ ସମତଳ କ୍ଷେତ୍ରରେ ପ୍ରବାହିତ ହେଉଥିଲା । ବର୍ଷା, ତୁଷାର ସ୍ରୋତ, ପ୍ରଖର ନଦୀ ସ୍ରୋତରେ ନଦୀ ଶଯ୍ୟା ଖୋଳି ଦେବାକୁ ଲାଗିଲା । କୋମଳ ମୃତ୍ତିକା ଧୋଇ ହୋଇଗଲା । ଶକ୍ତ ଧାତୁ ଅଂଶମାନ ବିଭିନ୍ନ ଆକୃତି ଘେନି ଛିଡ଼ା ହେଲା ।

ଏହି ନଦୀ ଏବେ ଘଣ୍ଟାକୁ ସାତ ମାଇଲ ଗତିରେ ପ୍ରବାହିତ ହୁଏ, ପ୍ରସ୍ତରମାଟି କାଛିସବୁ ଛିଡ଼ିପଡ଼େ; ଚବିଶ ଘଣ୍ଟାରେ ପ୍ରାୟ ଏହା ଅଧନିୟୁତ ଟନ କାଦୁଅ ବୋହିନିଏ । ସବୁ ଯାଇ ପାଓ୍ୱେଲ୍ ନାମକ କୃତ୍ରିମ ହ୍ରଦରେ ଜମା ହୁଏ । ଏ ଅଡ଼ୁଆ ଛିଡ଼ିଥିବା କଲୋରାଡ଼ୋ ଉପତ୍ୟକା ଅଞ୍ଚଳର ଦୀର୍ଘତା ୨୧୭ମାଇଲ୍, ପ୍ରସାର ୯ ମାଇଲ । ନଦୀସ୍ରୋତ ଏକ ମାଇଲ ତଳେ ପ୍ରବାହିତ । ଏହା ପୃଥିବୀର ଗଭୀରତମ ନଦୀ । ପୃଥିବୀର ଏକ ମାଇଲ ତଳୁ ମୃତ୍ତିକାର ଧାତୁମୟ ଉତ୍କର୍ଷକ ସ୍ତରସବୁ ଦିଶେ - ଦେଖାଯାଏ ପ୍ରଥମ ମେରୁଦଣ୍ଡୀ ପ୍ରାଣୀର ଅସ୍ଥି, ବହୁ ପ୍ରାଗୈତିହାସିକ ଜୀବଜନ୍ତୁଙ୍କ କଙ୍କାଳ, ସାମୁଦ୍ରିକ ଉଦ୍ଭିଦର ଫସିଲ୍ ।

ଏହି ଅପର ଉପତ୍ୟକା ନାନା ବର୍ଣ୍ଣର ପୁଷ୍ପ ହାସ୍ୟରେ ଉଜ୍ଜ୍ୱଳ ହୁଏ—ବଟର୍ କପ୍, ସ୍ପ୍ରିଙ୍ଗ୍ ବିଉଟି, ଗବଟ୍ ବ୍ରସ, ପେପର ଫ୍ଲାଓ୍ୱାର୍ । ପ୍ରାଣୀ ମଧ୍ୟରେ ଦେଖା ଯାନ୍ତି ଧଳାଲାଙ୍ଗୁଡ଼ିଆ କଳାଗୁଣ୍ଡୁଚି, ଧଳାପେଟିଆ ମାଟିଆ ଗୁଣ୍ଡୁଚି ମୂଷା ।

ଏଇସବୁ ଧାତୁଭରା ପାହାଡ଼କୁ କେତେ ବିଚିତ୍ର ରୂପେ ଯେ ବର୍ଷା, ତୁଷାର ଓ ନଦୀ ଖୋଳି ଯାଇଛି, ତାହା କଳନା କରି ହେବ ନାହିଁ । କାହିଁ ଦେଉଳ, କାହିଁ ଦୁର୍ଗ, କାହିଁ ଟାଓ୍ୱାର୍, କାହିଁ ବିମାନ, କାହିଁ ସ୍ତମ୍ଭ, କାହିଁ କନ୍ଦର । କେଉଁଠି କଙ୍କାଳ ପାହାଡ଼ ଜାଣ ପାଦଟିପରେ ଛିଡ଼ା ହୋଇଛି । ସୁସଜ୍ଜିତ ଶୃଙ୍ଗଗୁଡ଼ିକର ନାମକରଣ କରାଯାଇଛି— ଯଥା—କୃଷ୍ଣମନ୍ଦିର,

ରାମ ମନ୍ଦିର, ଶିବ ମନ୍ଦିର, ଆଇସିସ୍ ମନ୍ଦିର, ବିଷ୍ଣୁ ମନ୍ଦିର, ବ୍ରହ୍ମା ମନ୍ଦିର, ଆପୋଲୋ ମନ୍ଦିର, ଓସିରିସ ମନ୍ଦିର, ଜୋରେଷ୍ଟ୍ରର ମନ୍ଦିର, ଓଡ଼ିନଙ୍କ ସିଂହାସନ, ବୁଦ୍ଧ ମନ୍ଦିର, ଭେନସ୍ ମନ୍ଦିର, ହୋରସ୍ ମନ୍ଦିର—ସୋଲମନ ମନ୍ଦିର, ଡାଓପସ ମନ୍ଦିର— ଆନ୍ତର୍ଜାତିକ ମନ୍ଦିରସବୁ—ସର୍ବତ୍ରେ ଦେବତା ନାହାନ୍ତି; କିନ୍ତୁ ଦେବତ୍ୱର ମହିମା ସର୍ବତ୍ର ପ୍ରମାଣ । କେହି ପ୍ରତିଷ୍ଠା କରି ନାହାଁନ୍ତି, କିନ୍ତୁ ସୌନ୍ଦର୍ଯ୍ୟ ପ୍ରତିଫଳିତ ନିତି ନିତି ଅଭିଷେକ । ଏଠି ସ୍ତୁତି ନାହିଁ, କିନ୍ତୁ ଆରାଧନା ଅଛି । ଅଣ ଏଠି ଦେବତ୍ୱ ହାସଲ କରିଛି, ମାନବଙ୍କ ପ୍ରୀତି, ମହାପ୍ରଭୁ କଲୋରାଡୋର ପ୍ରତିଷ୍ଠାରେ ।

କଲୋରାଡୋ ଉପତ୍ୟକାର କଙ୍କାଳମୟ ଗିରି ଶୃଙ୍ଗେ ଶୃଙ୍ଗେ ଗୋଧୂଳିର ପାଟଳ ମଣ୍ଡଣି । ନାନା ଧାତୁର ବର୍ଣ୍ଣ ସଙ୍ଗେ ମିଶୁଥାଏ ସନ୍ଧ୍ୟାର ରଙ୍ଗୀନ୍ ଶ୍ରୀ । ସନ୍ଧ୍ୟାର ଅନୁକୂଳ ରଙ୍ଗମଞ୍ଚ ଏ, ହଠାତ୍ ଗୁଡ଼ି ଖୋଲିପିବା ଲାଗି ସେ କୁଣ୍ଠିତା । କେଉଁ ଗିରି ଶିଖରରେ ରଙ୍ଗାଚରଣ ଦୁଇଟି ସ୍ଥାପନ କରିଛି; କାହା ଶୃଙ୍ଗରେ ବା ଦୁଇ ଚନ୍ଦ୍ର ଅଳତା ଝରି ପଡ଼ୁଛି, ପ୍ରସାଧନ କାଳରେ । କାହା ଉପରେ ତାର ଶାଢ଼ୀର ଫୁଲର ଧଡ଼ି, କାହା ଉପରେ ବା ଲମ୍ବିଛି ତାର ଦୀର୍ଘ ପଣତ; କେଉଁ ଗିରି ତାର ହସର କଣିକାଏ ପାଇ ଆତ୍ମ ପ୍ରସାଦ ଅନୁଭବ କରୁଛି । କିଛି ନା କିଛି ଅନୁଗ୍ରହ ପାଇଛନ୍ତି ସମସ୍ତେ । କିନ୍ତୁ କେହି କିଛି ଦୀର୍ଘକାଳ ରଖି ପାରୁ ନାହାଁନ୍ତି,—ସବୁ ଚଳ ଚଞ୍ଚଳ, କ୍ଷଣିକତା ଯୋଗୁଁ ମନୋହର ।

ସନ୍ଧ୍ୟା ସତେ କି କଲୋରାଡୋର ସଙ୍ଗିନୀ; ତା ସହିତ ଅନ୍ତରଙ୍ଗ ଆଳାପ ଜମାଏ ନିତି ନିତି । ସେ ବୁଝେ ଏଇ କଳାବନ୍ତ ନଦୀର ଜୀବନ କାହାଣୀ, କଠୋର ସଂଗ୍ରାମ ସଂଘର୍ଷ—ସେ କିପରି ଆପଣା ଛନ୍ଦ ଆପେ ତିଆରି କରି ଚାଲିଛି ଯୁଗ ଯୁଗ ଧରି, ସାଧନାର କଷଟିରେ ନିଜକୁ ପରଖିଛି ବାରମ୍ବାର, ପାଇଛି ସିଦ୍ଧିର ଆଲୋକ, ଜୀବନ କଲ୍ୟାଣରେ ଯାହାକୁ ଲଗାଇ ଚାଲିଛି ସେ ।

କଲୋରାଡୋର ସାଧନମୁଗ୍ଧା ସନ୍ଧ୍ୟା; ନଦୀ ସହିତ ଗାଢ଼ ଆଲିଙ୍ଗନରେ ଆବଦ୍ଧ ଥିଲାବେଳେ ଦେଖିଲି—ହାସ୍ୟରେଖା, ତାରି

ଯୌବନର, ଯାହା ଲଭେ ନାହିଁ, ଯାହାର ସ୍ୱର ଝଙ୍କାର ଚିରକାଳ ବାଜେ ନିର୍ଜନ ମୁହୂର୍ତ୍ତରେ ଅନ୍ତରର ଗଭୀରତମ ସ୍ଥଳରେ ।

ହେ କଲେଜଗଡ଼ର ସନ୍ଧ୍ୟା, କବି ଜୀବନର ଚିର ଚିତ୍ତହାରିଣୀ, ରସ ପ୍ରାଣର ଚିର ଉତ୍ସମୟୀ, କଳ୍ପନାର ମନ୍ଦିରକୁ ଏବେ ମୋର ନବ ନବ ଉତ୍ସବରେ ସଜାଉଛ ପ୍ରତିଦିନ । ଯେଉଁ ଯେଉଁ ବୀଣା ତାର ମୋର କ୍ଲୀବ, ଅଥର୍ବ ହୋଇ ଯାଇଥିଲା, ତୁମେ ସେଥିରେ କାଉଁସି ଲଗାଇଛ, ଯୋଗ କରିଛ ନୂତନ ନୂତନ ସ୍ୱର ସଙ୍ଗୀତ, ନବ ନବ ରାଗିଣୀରେ ମନ ମୂର୍ଚ୍ଛିତ ହୋଇ ପଡ଼ୁଛି ।

ଖୋଲି ଦେଇଛ ନୂଆ ନୂଆ ଗବାକ୍ଷ, ଅନ୍ଧକାର କନ୍ଦରରେ, ମୋ ଚକ୍ରବାଳର ସୀମା ତ ଆଜି ମୁଁ ଦେଖିପାରୁ ନାହିଁ—କଳନା କରି ପାରୁ ନାହିଁ ମୋର ଚିତ୍ତର ବିସ୍ଫୁର୍ତ୍ତି—ବିଶ୍ୱରୂପ ।

ଚନ୍ଦ୍ରିକା ଦେଖିଲେ ମନେ ପଡ଼ିଯିବ ଏଇ କଲେଜଗଡ଼ର କଲ୍ଲୋଳର ଚନ୍ଦ୍ରିକା—କେଉଁଠି ଏପରି ପ୍ରୀତିମୟୀ ହୋଇଥିଲା ସେ ? ଭାଙ୍ଗି ଯାଇଥିଲା ଯେଉଁ ସବୁ ସ୍ୱପ୍ନ ଆଜି ଅଙ୍କି ଦେଇଛି ଗଭୀରତମ ରଙ୍ଗରେ । ଯେଉଁ ସବୁ ଫୁଲର ଫସଲ ଅଙ୍କୁରେ ବିନଷ୍ଟ ହୋଇ ଯାଇଥିଲା; ଆଜି ଅତର୍କିତରେ ବି ସେ ସବୁ ଫୁଟି ଉଠିଛି—ହଜିଲା ଭାବ ଖୋଜି ପାଇଛି ମୁଁ, ମନେ ପଡ଼ି ଯାଉଛି ଯାହା ଅଜ୍ଞାତର ବିସ୍ମୃତ ପଦାବଳୀ ।

ଯେଉଁ ସବୁ ଚିନ୍ତା ଶିଳ୍ପୀର ତୁଳୀ ଓ କବିର ଲେଖନୀରେ ଧରା ନ ଦେଇ ପଳାଇ ଯାନ୍ତି, ସେ ସବୁ ଆପେ ଆପେ ଧରା ଦେଇଛନ୍ତି ଆଜି; ନୂତନ ସୃଷ୍ଟିଲୋକ ଜନ୍ମ ନେଇଛି—ଯେଉଁଠି ମୋର ଅଲଭ୍ୟ କିଛି ନାହିଁ, ଯାହାକୁ ମୋର ଅଦେୟ କିଛି ନାହିଁ—ସେ ସୁନ୍ଦର—ଫୁଟି ଉଠିଛି ଶତ ଦଳରେ, ତା ଉପରେ ମୋର ସର୍ବସ୍ୱ ।

କୁହୁଡ଼ି, କେଉଁଦିନ ତଳେ ଏତେ ଭଲ ପାଇଥିଲି ? ଦୁଇ ପାହାଡ଼ ମଧ୍ୟର ଶୂନ୍ୟତାକୁ ତୁ ଭରି ଦେଇଛୁ ଗୋଲାପୀ ରହସ୍ୟରେ । କେଉଁଠି

ଟାଣିଛୁ ଚନ୍ଦ୍ରାତପ, ଉଡ଼ାଉଛୁ ଧ୍ୱଜ, କେଉଁଠି ଲମ୍ବାଇଛୁ ଝାଲର; ଶୀର୍ଷ ଉପରେ ଶିଖର ଯେଉଁ ମନ୍ଦିରଶ୍ରେଣୀ ଗଢ଼ି ଦେଇଛୁ ତାର ତୁଳନା କାହିଁ ? ସତେ ବା ତୁ ଏକ କୁମାରୀ, ରଶ୍ମି ଅଙ୍ଗ ଚନ୍ଦ୍ରିକାକୁ ନାନା ଭାବେ ଭରି ଗଢ଼ୁଅଛୁ ଅହରହ । ଅନ୍ଧକାର କୋଳରେ ଶୋଇପଡ଼ୁ; ସେଇ ତୋ ବିଶ୍ରାମ । ପ୍ରତ୍ୟୁଷକୁ ଦେଉ କସ୍ତୁରୀ ଆକାଶୀ ରଙ୍ଗର ପୋଷାକ, ସୁନେଲୀ ଜରିରେ ଉଜ୍ଜ୍ୱଳ; ଗୋଧୂଳିକୁ ସ୍ନାନ କରାଉ ଅପରୂପତାର ପ୍ରବାହରେ, ସ୍ନାତା ସେଇ ଗୋଧୂଳିର ସଦ୍ୟ ଲାବଣ୍ୟ ଆଜି ଉପଭୋଗ କରୁଛି ମୁଁ । ଯୁଗେ ଯୁଗେ ଲାଗିଛି ତୋର ରୂପ ପ୍ରଦର୍ଶନୀ, ବିଶାଳ ବସୁଧା ଏଇ ଚିତ୍ରାଳୟରେ ।

ପୃଥିବୀ ଏଠି ବସୁନ୍ଧରାର ମୂର୍ତ୍ତି ଧାରଣ କରିଛି । ଗ୍ରୀବା ଟେକି କହୁଛି—ଦେଖ, ମୁଁ ରତ୍ନାକରର କନ୍ୟା, ରତ୍ନାବତୀ, ମୟୂର ଚନ୍ଦ୍ରିକା-ରଙ୍ଗ ଲାଗି ରହିଛି, ଶିଳାରେ ଶିଳାରେ ମୋର ।

ନିୟୁତ ନିୟୁତ ବର୍ଷ ଧରି କଲୋରାଡ଼ୋ ଗଢ଼ି ଚାଲିଛି ଅଗଣିତ ସ୍ୱପ୍ନମନ୍ଦିର, ସବୁ କୋଣାର୍କ, ସବୁ ବୋରବୁଦର୍, ସବୁ ତାଜମହଲ ଏଠି ହାର ମାନିଛି । ଯେଉଁ ସବୁ ଆକୃତି ମାନବର କଳ୍ପନାରେ ଏ ପର୍ଯ୍ୟନ୍ତ ଧରା ଦେଇ , ଯେଉଁ ସବୁ ସୌଧ, ମନ୍ଦିର, ଟାୱାର ଓ ଚତ୍ୱର ଉଜାଇନ୍ ଏ ପର୍ଯ୍ୟନ୍ତ ଅଙ୍କିତ ହୋଇ ନାହିଁ, ଯେଉଁ ସବୁ ରଙ୍ଗମହଲ କଳ୍ପିତ ହୋଇନାହିଁ, ମାନସିକ ଆନନ୍ଦର ଭୋଗମଣ୍ଡପ, ଷଡ଼ଋତୁ ଗୋଧୂଳିର ନାଟ୍ୟ ମନ୍ଦିର, ସ୍ୱଚ୍ଛେଦର ତାଜ ମହଲ ଏ ପର୍ଯ୍ୟନ୍ତ ମନୁଷ୍ୟର ମନର ମୁକୁରରେ ପ୍ରତିବିମ୍ବିତ ହୋଇ ନାହିଁ, ସେ ସବୁ ପ୍ରକୃତି ଗଢ଼ି ସାରିଛି—ସୃଷ୍ଟିଛଡ଼ା ସୃଷ୍ଟିଲୋକ ।

ଏଠି କି ଆତ୍ମପରିଚୟ ଦେବ ? କାହାର ପରିଚୟର ସଙ୍କେତ ରହିଛି ଏଠି ? ଭଙ୍ଗା ଗଢ଼ା ଅନନ୍ତ କାଳର ସମକ୍ଷରେ କି ପରିଚୟ ଦେଇପାରେ କ୍ଷୀଣଜୀବୀ ମନୁଷ୍ୟ ? ଏଠି ହଜି ଯାଉଛି କେତେ କାହାଣୀ, କେତେ କିମ୍ବଦନ୍ତୀ; ରହି ଯାଇଛି କେତେ ମର୍ମସ୍ପର୍ଶୀ କବିତା—ପୃଥିବୀର ବିପର୍ଯ୍ୟସ୍ତ ବକ୍ଷରେ ରକ୍ତାକ୍ତ ରୂପରେ ଦିଶେ ସବୁ— ଅମର ଲେଖ ।

ଗ୍ରାଣ୍ଡ କ୍ୟାନିୟନ୍ ଉପରେ ଶେଷ ଦୃଷ୍ଟି ପକାଇଲୁ; କାରଣ ପ୍ରଖ୍ୟାତ ହୋଇ ନ ଥାଏ । କୁହୁଡ଼ିର ଗାଢ଼ ମାଳମାଳକୁ ଭେଦ କରି ଉଠୁଥାଏ ହେଙ୍ଗ୍ଲିଙ୍ଗ ପିକ୍; ତାପରେ ଧାର ପରେ ଧାର ରଶ୍ମି ଛୁଟିଲା । ସୁବର୍ଣ୍ଣ ଶସ୍ୟରେ ଭରି ଉଠିଲା ଉପତ୍ୟକା । ତା ମଧ୍ୟରେ ଉଷା କୃଷାଣ କନ୍ୟା ପରି ଫିଙ୍ଗାଇଲା କନେବୋହୂଙ୍ଗା ଖଣ୍ଡରେ ଖଣ୍ଡରେ, ଆମେ ଗଲୁ କାମେରୁନ୍; ଇନ୍ଦ୍ରଧନୁ ସେତୁ ପାରହେଲୁ । ଏଇଟି କି ନଦୀ ? ବର୍ଣ୍ଣାଢ଼୍ୟ ପାହାଡ଼ କାନ୍ଥ ମଧ୍ୟରେ ବନ୍ଧୁର, କେବଳ କର୍ଦ୍ଦମ । ଲୋହିତ ପାଣ୍ଡୁର ଭୂମି; ଅନୁର୍ବର; ଏଠି କୃଷି କର୍ଷଣ ନାହିଁ । ଏସବୁ ଏବେ ଲୋହିତଭାରତୀୟଙ୍କ ବାସଭୂମି ।

ଅଗସ୍ତି ଦେଲେ ଦାନ
କଣ୍ଟା ଗୁଆ ପୋଚ୍ଚ ପାନ ।

ବଳଶାଳୀ ଜାତିର ପରାଜିତ ଜାତିକୁ ଦାନ ଏ । ଏଇ ଦୟା ଓ ଉଦାରତାର ସ୍ମରଚନା ସବୁଠି, ଯଦୁମଣିଙ୍କ ଭାଷାରେ—

ଏମନ୍ତ ଭୂଇଁ
ଗଲୁଣ୍ଡା ବୁଣିଲେ ଉଠଇ ନାହିଁ ।

ଗୋଟିଏ ଲୋହିତ ଭାରତୀୟ ଯୁବ ହାଣ୍ଡଲରେ ଦୁଇଟି ବେଲୁନ୍ ବାନ୍ଧିଛି । ସାଇକେଲ୍‌ରେ ଭଉଣୀକୁ ବସାଇ ଯାଉଛି । ଅଷ୍ଟମଶ୍ରେଣୀରେ ପଢ଼େ । କେତେ କଥା ପଚାରିଗଲେ । କିନ୍ତୁ ସେ ମୋ ଭାଷା କିଛି ବୁଝିପାରିଲା ନାହିଁ ।

## ନଭଜୋ

ଗ୍ରାଣ୍ଡ କ୍ୟାନିୟନ୍‌ରେ ତିନି ଜାତୀୟ ଲୋହିତଭାରତୀୟ ବାସକରନ୍ତି । ନଭଜୋ, ହୋପି, ହବସୁପାଇ । ନଭଜୋ ଓ ହୋପି ପୂର୍ବଦିଗରେ, ହବସୁପାଇ ପଶ୍ଚିମ ଦିଗରେ ବାସ କରନ୍ତି ।

'ହୋପି' ଅର୍ଥ ଶାନ୍ତିପ୍ରିୟ ଲୋକ । ସେମାନଙ୍କ ସଂଖ୍ୟା ଚାରିହଜାର, ଏଗାରଟି ଗ୍ରାମରେ ସେମାନେ ବାସ କରି ରହିଛନ୍ତି, ବିଶେଷ ଉଦ୍ଧଶୀଳ ।

'ହବସୁ କ୍ୟାନ୍‌ୟନ୍'ରେ ଅଢ଼େଇ ମାଇଲ୍ ଲମ୍ବ, ଅଧ-ମାଇଲଏ ଓସାର ଗୋଟିଏ ଓଏସିସ୍ ଅଛି, ହବସୁ ପାହାଡ଼ର ବରଫ ତରଳ ଯୋଉ ପାଣି ବୋହି ଆସେ ସେମାନେ ତାକୁ ଅଟକାଇ ରଖନ୍ତି । ଓଏସିସରେ ମକ୍‌କା ଓ ଫଳଫସଲ ଚାଷ କର ଚଳନ୍ତି! ହବସୁପାର ଗ୍ରାମ ତଳେ ତିନିଗୋଟି ଜଳପ୍ରପାତ ଅଛି । ସେଥି ମଧ୍ୟରୁ ଗୋଟିକର ଉଚ୍ଚତା ଦୁଇ ଶତ ଫୁଟ୍ । ଏହି ପ୍ରପାତ ଯୋଗୁଁ ସେମାନଙ୍କୁ ଜଳବାସୀ କୁହାଯାଏ । 'ହବସୁ' ଅର୍ଥ ନୀଳ ଜଳର ଲୋକ ।

ଲୋହିତ ଭାରତୀୟଙ୍କ ମଧ୍ୟରେ ସର୍ବ ବୃହତ୍ ଗୋଷ୍ଠୀ ନଭଜୋ—ଏମାନଙ୍କ ସଂଖ୍ୟା ପ୍ରାୟ ଏକ ଲକ୍ଷ, ଛିନ୍ନଭିନ୍ନ; ସେମାନଙ୍କୁ ଏକାଠି କରି ଶିକ୍ଷା ଦେବା ଏକ ସମସ୍ୟା, କଲୋରାଡୋ, ଆରିଜୋନା, ନେଭେଦା, ନିଉ ମେକ୍‌ସିକୋ ଓ ଇଉଟା ପ୍ରଦେଶରୁ କିଛି କିଛି ସ୍ଥାନ ଆଣି ଗୋଟିଏ ସଂରକ୍ଷିତ ଅଞ୍ଚଳ ଗଠନ କରଯାଇଛି—ପାହାଡ଼ମୟ ମରୁଭୂମି, ସାମାନ୍ୟ କୃଷି ହୁଏ । ଗୋମେଷ ପାଳନ ପ୍ରଧାନ ବୃତ୍ତି ।

ଅଶ୍ୱ ପୃଷ୍ଠରେ ଆରୋହଣ କର ସେମାନେ ଯାତାୟାତ କରଆନ୍ତି; ଅନେକ ବୃଦ୍ଧ ଏ ପର୍ଯ୍ୟନ୍ତ ଗାଡ଼ିରେ ବା ମଟରରେ ବସି ନାହାନ୍ତି । ସେମାନଙ୍କ ମଧ୍ୟରେ ଅତି ଅଳ୍ପ ଲୋକ ଇଂରେଜୀ ଜାଣନ୍ତି । ଅଧିକାଂଶ ଲେଖି ପଢ଼ି ଜାଣନ୍ତି ନାହିଁ । କେତେକ ଠାରରେ କଥାଭାଷା କରନ୍ତି, କିନ୍ତୁ ସେମାନଙ୍କ ନିଜଭାଷା ଦରିଦ୍ର ନୁହେଁ । ସେମାନେ କଳକବଜାର ନାମ ନିଜ ଭାଷାରେ ଦେବାକୁ ସମର୍ଥ ହୋଇଛନ୍ତି । ଓଠ ନ ବୁଜି ସେମାନଙ୍କ ଭାଷାର ଗୋଟିଏ ପୂରା ବାକ୍ୟ କୁହା ଯାଇପାରେ । ସେମାନେ ଗୋଟିଏ ଗୋଟିଏ ଶବ୍ଦରେ ଜଟିଳ ଭାବ ପ୍ରକାଶ କରିବାକୁ ସମର୍ଥ । ସେମାନେ ଚିନିକୁ 'ମଧୁର ଲବଣ' କହନ୍ତି । ଗାଳି ଦେବା କିମ୍ବା ଅଭିଶାପ ଦେବାର ଶବ୍ଦ ସେମାନଙ୍କର ନାହିଁ । ଖୁବ୍ ରାଗିଲେ ସେମାନେ କୋୟୋଟ୍ [ ବାଲୁଆ ଜାତୀୟ ଏକ ପ୍ରାଣୀ ] ବୋଲି କହନ୍ତି ।

## ହୋଗାନ୍

ନଭଜୋଙ୍କ ଘରକୁ ହୋଗାନ୍ କୁହାଯାଏ । ଏ ଘରର କାନ୍ଥ ଓ ଛାତ କାଠରେ ତିଆରି । ଝରକା ନାହିଁ; ଦ୍ୱାର ପୂର୍ବ ଦିଗକୁ ଖୋଲା,

ଘର କଣରେ ବସୁବେଳେ ନାଆଁ ଜଳୁଥାଏ । ଏହା ଘରକୁ ଉତପ୍ତ ରଖେ । ସେଥିରେ ବୋଷେଇ ହୁଏ—ଗ୍ଲୁଚରେ ଗୋଟାଏ କଣା ଥାଏ, ସେ ବାଟେ ଘରକୁ ଆଲୁଅ ଆସେ ।

ହୋଗାନ୍ ଶୀତରେ ଉଷ୍ଣ, ଗ୍ରୀଷ୍ମରେ ଶୀତଳ । ମରୁଭୂମିର ଏହା ଏକମାତ୍ର ଆଶ୍ରୟସ୍ଥଳ, ଘରକୁ ଘର ଲଗିଲା ପରି ହୋଗାନ ତିଆରି ହୋଇ ନ ଥାଏ । ଗୋଟିକଠାରୁ ଅନ୍ୟଟି ବିଚ୍ଛିନ୍ନ । ଗାଆଁ ବୋଲି ସେମାନଙ୍କର କିଛି ନାହିଁ । ହୋଗାନ୍‌ରେ ନଭଜୋମାନେ ମେଣ୍ଢା ଛାଲ ପାରି ଶୁଅନ୍ତି । ସେମାନଙ୍କର ଖଟ ନାହିଁ, ଘରେ ଚୌକି ଟେବୁଲ୍ ନାହିଁ, କଣ୍ଟା ଚାମୁଚରେ ସେମାନେ ଖାଆନ୍ତି ନାହିଁ ।

ପାତାଳରୁ ବାହାରିଛନ୍ତି ବୋଲି ନଭଜୋମାନେ ବିଶ୍ୱାସ କରନ୍ତି । ମରିବାବେଳ ହେଲେ ନଭଜୋଙ୍କୁ ହୋଗାନ ବାହାରକୁ ଅଣାଯାଏ । ଯଦି ଦୈବାତ୍ କେହି ହୋଗାନ୍‌ରେ ମରେ ଉତ୍ତରପଟେ ଏକ ଗର୍ତ୍ତ ଖୋଳି ତାକୁ ବାହାରକୁ ଅଣାଯାଏ । ଦୁଆର ବାଟେ ମୁର୍ଦ୍ଦାଇ କଢ଼ାଯାଏ ନାହିଁ ।

## ସାମାଜିକ ଚଳଣି

ନଭଜୋମାନେ ନିରଳସ, ଭୋରରୁ ସନ୍ଧ୍ୟା ପର୍ଯ୍ୟନ୍ତ ଖଟନ୍ତି । ସେମାନଙ୍କର ଦୁଇ ପ୍ରକାର ନେତା ରହିଛନ୍ତି—ଯୁଦ୍ଧ ସର୍ଦ୍ଦାର, ଶାନ୍ତି ସର୍ଦ୍ଦାର । ସାହସୀ କୌଶଳୀ ବ୍ୟକ୍ତି ଯୁଦ୍ଧନେତା ରୂପେ, ବାଗ୍ମୀ, ବୁଦ୍ଧିମାନ୍ ବ୍ୟକ୍ତି ଶାନ୍ତିନେତା ରୂପେ ବଛାଯାନ୍ତି ।

ନଭଜୋମାନଙ୍କର ସ୍ୱତନ୍ତ୍ର ବିଚାରକ ଓ ପୋଲିସ ରହିଛନ୍ତି । ବିଚାରକର ନ୍ୟାୟ ବିରୁଦ୍ଧରେ ସେମାନଙ୍କର କିଛି କହିବାର ନ ଥାଏ । ନଭଜୋ ଜୁଆଡ଼ୀ । ଏହି ସମାଜରେ ଜୁଆଖେଳ ଓ ଜୁଆଡ଼ୀର ସମ୍ମାନ ଅଛି ।

ସେମାନେ ସୁଯୋଦ୍ଧା । କଏଦୀଙ୍କ ପ୍ରତି ସେମାନଙ୍କର ବ୍ୟବହାର ନିଦାରୁଣ ନୁହେଁ । ପ୍ରତିହିଂସା ନିଅନ୍ତି ନାହିଁ । ସେମାନେ ଅତିଥି ବତ୍ସଳ, କୌତୁକପ୍ରିୟ, ନିଜ ନିଜ ମଧ୍ୟରେ ପ୍ରାୟ କଳହ କରନ୍ତି ନାହିଁ ।

କ୍ରୋଧ ପ୍ରକାଶକୁ ପାପ ବୋଲି ମନେ କରନ୍ତି । ଘରର ଅମଙ୍ଗଳ ଘାଣ୍ଟିଲେ ନିଜର ଅମଙ୍ଗଳ ହୁଏ, ସେମାନଙ୍କର ବିଶ୍ୱାସ ।

ନଭଜୋକୁ କେବେ ତାର ନାମ ପଚ୍ଛିବ ନାହିଁ; ଏହା ଅଭଦ୍ରତା; ନାମ ଜାଣିବାକୁ ହେଲେ ବନ୍ଧୁବାନ୍ଧବଙ୍କୁ ପଚ୍ଛିର ବୁଝିବା କର୍ତ୍ତବ୍ୟ ।

ନଭଜୋକୁ କିଛି ପାଣିପ୍ତ ବା ସିଗାରେଟ ଦେଲେ ସେ ହାତ ବଢ଼ାଇ ଦିଏ ନାହିଁ । କାହାଠୁ କିଛି ମାଗଣା ନ ନେବା ହିଁ ତାର ପ୍ରକୃତି ।

ନଭଜୋ ବିଦାୟ ବେଳେ ନମସ୍କାର କରେ ନାହିଁ । ବନ୍ଧୁମାନଙ୍କ ଦେଖା ସାକ୍ଷାତ ହେଲେ ଶ୍ରଦ୍ଧା ଦେଖାଇ ହୁଏ ନାହିଁ । ସେ ଡାହାଣ ହାତକୁ ଛୁଇଁ ଗୁଣ୍ଣୁ ଗୁଣ୍ଣୁ କରି କିଛି କହେ । ଏହା ତା'ର ଅଭିବାଦନ ରୀତି । ସେ ବଡ଼ ପାଟିରେ କଥା ଭାଷା ହୁଏ ନାହିଁ । କେହି ଆତ୍ମୀୟ ମରିଗଲେ ସେ କାନ୍ଦେ । ଦୀର୍ଘକାଳ ପରେ ଦୁଇବନ୍ଧୁଙ୍କ ମିଳନ ଘଟିଲେ ଏହିପରି କ୍ରନ୍ଦନ ରୋଳ ଶୁଣାଯାଇଥାଏ ।

ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ଚୁମ୍ବନ ପ୍ରଚଳିତ ନାହିଁ । ମାଆ ଶିଶୁକୁ ଚୁମ୍ବନ କରିଥାଏ । ନବ ଦମ୍ପତ୍ତି ପରସ୍ପର ପ୍ରତି କଟାକ୍ଷ ପ୍ରୟୋଗ କରିବାର ଦେଖାଯାଏ ।

ଅବିବାହିତା ଯୁବତୀମାନେ 'ସ୍ତ' ନାମକ ଗୋଟିଏ ନୃତ୍ୟ ନାଚିଥାନ୍ତି । ତିନି ଦିନବ୍ୟାପୀ ଏହି ଉତ୍ସବରେ ଯୁବତୀ ତାର ବର ବାଛିନିଏ । ପୁରୁଷମାନେ ଏହି ନୃତ୍ୟରେ ବାଜା ବଜାନ୍ତି ଓ ଗୀତ ବୋଲିଥାନ୍ତି । କନ୍ୟା ଯାହାକୁ ପସନ୍ଦ କରେ ତା ଲୁଗାଧରି ଟାଣେ, ତାପରେ ଉଭୟଙ୍କ ବାପ ମାଆ ବସି ବିବାହ ସ୍ଥିର କରନ୍ତି । ବରପକ୍ଷ ଗୋରୁ, ମେଣ୍ଢା ଆଦି ଯଉତୁକ ମାଗନ୍ତି । କିନ୍ତୁ କନ୍ୟାପକ୍ଷ ତାହା ଗ୍ରହଣ କରିବା ମାନହାନି । କନ୍ୟାପକ୍ଷ ବିବାହର ସମସ୍ତ ବ୍ୟୟ ବହନ କରିଥାନ୍ତି । ବିବାହ ପରେ ବରକନ୍ୟା ପୂର୍ବପୁରୁଷଙ୍କୁ ଅନାଇ କହନ୍ତି । ସେମାନଙ୍କ ପୁରୋହିତ ଦାମ୍ପତ୍ୟ ଜୀବନ ବିଷୟରେ ନାନା ସଦୁପଦେଶ ଦେଇଥାନ୍ତି ।

ନବ ଦମ୍ପତି ଲାଗି ନୂତନ 'ହୋଗାନ' ନିର୍ମିତ ହୁଏ । ଜ୍ୱାଇଁ ଶାଶୂ ମୁହଁକୁ ଚାହିଁବା ଦୋଷାବହ । ସାଧାରଣତଃ ଜଣେ ପୁରୁଷ ଗୋଟିଏ ସ୍ତ୍ରୀ ବିଭା ହୋଇଥାଏ । ଏକାଧିକ ବିଭାହେବା ଅପରାଧ ବିବେଚିତ ହୁଏ ନାହିଁ । ସ୍ତ୍ରୀ ଏହି ସମାଜରେ ସମ୍ମାନିତା । ବାସ୍ତବସ୍ଥଳରେ ସେ ପ୍ରବୀଣା, ସୁଗୃହିଣୀ । ସେ ଗୃହ ପରିଚ୍ଛନ୍ନ ରଖେ ଓ ତା ରୁଚି ଅନୁସାରେ ସଜାଇଥାଏ, ଜୀବଜନ୍ତୁଙ୍କ ମଧ୍ୟରେ ମେଷ, ଛାଗଳ, ମାର୍ଜାର ସ୍ପୃଶ୍ୟ, ଶ୍ୱାନ ଅସ୍ପୃଶ୍ୟ । ହିନ୍ଦୁମାନଙ୍କ ପରି ନଭଜୋମାନେ ମଧ୍ୟ କୁକୁରକୁ ଅପବିତ୍ର ମନେ କରନ୍ତି ।

ଦାମ୍ପତ୍ୟ କଳହ ବିରଳ; ହେଲେ ତାର ପରିଣାମ—ଛାଡ଼ପତ୍ର । ଛାଡ଼ ହେଲେ ସ୍ତ୍ରୀ ପୁରୁଷର କନିଷ୍ଠ ପଦାକୁ କାଢ଼ି ଫୋପାଡ଼ି ଦିଏ । ପୁରୁଷ ମଧ୍ୟ ସେ ସ୍ଥାନ ଛାଡ଼ି ଅନ୍ୟତ୍ର ପଳାଇଯାଏ ।

ଉତ୍ସବ ଅନୁଷ୍ଠାନରେ ସ୍ତ୍ରୀ ଗୀତ ଗାଏ । ଅନ୍ୟତ୍ର ସେ ଗୀତ ଗାଇବା କିମ୍ବା ହୁଇସିଲ ମାରିବା ଅପରାଧ ।

ଝିଅ ବଢ଼ିଲା ପରେ ଚାରି ଦିନ ଧରି ଗୋଟିଏ ଉତ୍ସବ ହୁଏ । ଏ ଚାରିଦିନ ସେ ଶୁଏନାହିଁ; ସୁଗୃହିଣୀ ହେବା ଲାଗି ତାକୁ ନାନା ଉପଦେଶ ଦିଆ ହୋଇଥାଏ । ତା ଘରେ ତିନି ଫୁଟ ଲମ୍ବ, ନ' ଇଞ୍ଚ ବହଳରେ ଗୋଟିଏ ପୋଡ଼ପିଠା ହୁଏ । ସେଥିଲାଗି ଯେତେ ଚାଉଳ ଆବଶ୍ୟକ, ସବୁ ସେଇ କନ୍ୟା ଚୂରିଥାଏ । ଏହି ପିଠା ପୋଡ଼ି ହେବାକୁ ବାର ଘଣ୍ଟା ଲାଗେ । ଉତ୍ସବ ଶେଷରେ ସମବୟସ୍କ ବାଳକ ବାଳିକାମାନେ ଗୋଟିଏ ଦୌଡ଼ ପ୍ରତିଯୋଗିତା କରିଥାନ୍ତି । ଏହି ପ୍ରତିଯୋଗିତାରେ ଜୟଲାଭ କଲେ ବାଳକମାନେ ଶୀଘ୍ର ବୁଢ଼ା ହୋଇଯାନ୍ତି ବୋଲି ଲୋକ-ବିଶ୍ୱାସ ପ୍ରଚଳିତ ।

ନଭଜୋ ସ୍ୱେଦସ୍ନାନ କରେ । ନିବୁଜ ଘରେ ନିଆଁ ଜାଳି କିମ୍ବା ସେ ଘରେ ଗୋଟିଏ ପ୍ରସ୍ତରକୁ ଉତପ୍ତ କରି ତା ଉପରେ ପାଣି ଢାଳି ସେଇ ବାମ୍ପରେ ସେମାନେ ଗାଧାନ୍ତି । ସ୍ୱେଦସ୍ନାନ ଲାଗି ସେମାନଙ୍କର ସ୍ୱତନ୍ତ୍ର ଗୃହ ଅଛି । ଏହି ସ୍ନାନ ପରେ ପୁଣି ସେମାନେ ଶୀତଳ ଜଳରେ ସ୍ନାନ କରିଥାନ୍ତି । ସ୍ୱେଦ ସ୍ନାନ ବେଳେ ସେମାନେ ଗୀତ ଗାଇଥାନ୍ତି ।

ଗୀତ ସଂଖ୍ୟାରୁ ସେମାନେ କେତେ ସମସ୍ତ ସ୍ନାନ କଲେ ବୃଷ୍ଟି ପାଉଥାନ୍ତି । ସୁତ୍ତା ନାମକ ମୂଳ ଚୂନା କରି ଲଗାଇ ସେମାନେ ମୁଣ୍ଡ ପରିଷ୍କାର କରିଥାନ୍ତି ।

ବାଡ଼ିକଣ ଉଠିଲେ ସେମାନେ ଗୋଟି ଗୋଟି କରି ଉପାଡ଼ନ୍ତି । ସେମାନଙ୍କ ମଧ୍ୟରେ ବ୍ୟଭିଚାର ନାହିଁ, ବେଶ୍ୟା ବୃତ୍ତି ପ୍ରଚଳନ ନାହିଁ । ଦୈବାତ୍ କେଉଁଠି ହେଲେ ବ୍ୟଭିଚାରୀ ବ୍ୟକ୍ତିକୁ ଶାସ୍ତି ସ୍ୱରୂପ କେତେକ ମେଷ, ମୁଦ୍ରା ଜରିମାନା ଦେବାକୁ ହୋଇଥାଏ । ଏହାକୁ ଉତ୍ପୀଡ଼ିତାର ସ୍ୱାମୀ ଗ୍ରହଣ କରେ ।

ଗ୍ରେଟ ପିଲମାନେ କଅଁଳା ବାଛୁରୀ, ଛେଳି ବା ମେଣ୍ଢାଛୁଆଙ୍କ ସଙ୍ଗେ ଖେଳଥାନ୍ତି । ସେମାନେ କାନ୍ଦନ୍ତି ନାହିଁ । ବାପ ମାଆ କ୍ୱଚିତ୍ ମାରନ୍ତି । ପିଲାଙ୍କୁ ସେମାନେ ବଢ଼ିଯିବା ଆଗରୁ ଶିଖାନ୍ତି । କଷ୍ଟସହିଷ୍ଣୁତା ବିନା ଏ ସମାଜରେ ଜୀବନଧାରଣ ଅସମ୍ଭବ । ବାପ ମାଆ ମରିଗଲେ ଅନ୍ୟମାନେ ପିଲାଙ୍କୁ ନେଇ ପାଳଥାନ୍ତି । ପାଞ୍ଚବର୍ଷ ପୂରିବା ଆଗରୁ ପିଲାଙ୍କ କାନଫୋଡ଼ା ହୁଏ । ଦୋଳରେ ଗୋଟିଏ ଗୁଣ୍ଡୁଚି ମୂଷା ଲାଙ୍ଗୁଡ଼ ବନ୍ଧା ହୋଇଥାଏ । ତା ହେଲେ ପିଲା ଦୋଳରୁ ପଡ଼ିବ ନାହିଁ ବୋଲି ଲୋକ-ବିଶ୍ୱାସ ପ୍ରଚଳିତ ।

ସ୍ତ୍ରୀମାନେ ଘେର ପିନ୍ଧନ୍ତି, ଅଣ୍ଟାଯାକ ପରି ଗୋଟିଏ ସୂତା ବେଲ୍ଟ ପିନ୍ଧନ୍ତି । ଅଣ୍ଟାରେ ଗାଞ୍ଜିଆ ପରି କନ୍ତା ଗୋଟାଏ ବାନ୍ଧି ସେଥିରେ ପଇସା ରଖିଥାନ୍ତି ।

ନଭଜୋ ଫିକା କଳା ରଙ୍ଗ ଜୋତା ବ୍ୟବହାର କରେ; 'ଜଣେଜ୍' ନଭଜୋର ଶତ୍ରୁ । ସେ କଳା ଜୋତା ବ୍ୟବହାର କରେ ।

ଅଣ୍ଟାସୂତା, ମାଳି, ମୁଦି, ଝଞ୍ଜୁ ପ୍ରଭୃତି ଅଳଙ୍କାର ସ୍ତ୍ରୀମାନେ ବ୍ୟବହାର କରିଥାନ୍ତି । ଏହି ଅଳଙ୍କାର ଗଢ଼ିବା ଲାଗି ନଭଜୋଙ୍କ ମଧ୍ୟରେ ବଣିଆ ଅଛନ୍ତି ।

ନଭଜୋ ସ୍ଫଟିକ୍କୁ ଗୋଟିଏ ସାମାନ୍ୟ ପଥର ବୋଲି ମନେ କରେ । 'ଟର୍‌କଏଜ' ନାମକ ରତ୍ନ ସେମାନଙ୍କ ଦୃଷ୍ଟିରେ ଅତି ମୂଲ୍ୟବାନ୍ ।

ନଭଜୋ ଦ୍ରୁତ ଗତିରେ ଚାଲିପାରେ; ତା ସଙ୍ଗେ ଘୋଡ଼ାଏ ମିଳିବା କଷ୍ଟ । ପାଦଚିହ୍ନ ବାଟ ସେମାନେ କଏ ଯାଇଛି ଜାଣି ପାରନ୍ତି । ଟାପୁ ଚିହ୍ନ ଦେଖି କାହା ଘୋଡ଼ା ଯାଇଛି, ବୁଝିପାରନ୍ତି ।

ସବୁଠାରୁ ମଇଁଷିକୁ ସେମାନେ ଭଲପାନ୍ତି । ମଇଁଷିର ପ୍ରତ୍ୟେକ ଅଂଶ ସେମାନେ ଔଷଧ ରୂପେ ବ୍ୟବହାର କରନ୍ତି । ଶହେ ଡଲର୍ ଦେଇ ସେମାନେ ମଇଁଷି ଚମଡ଼ା କିଣିଥାନ୍ତି ।

ସେମାନେ 'ଇଗଲ୍ ନାଚ' ବେଳେ ଇଗଲ୍ ପର ବ୍ୟବହାର କରନ୍ତି—ଇଗଲ୍ ଧରିବାର ଗୋଟିଏ ସ୍ୱତନ୍ତ୍ର ଉପାୟ ଉଦ୍ଭାବନ କରିଛନ୍ତି । ସେମାନେ ଗହ୍ୱର ମଝିରେ ଗୋଟିଏ ଗାତ ଖୋଳି ତା ଭିତରେ ପଶି ରହନ୍ତି । ତା ମୁହଁରେ ମାଂସ ରଖିଥାନ୍ତି । ଇଗଲ୍ ମାଂସ ଖାଇବା ଉଦ୍ଦେଶ୍ୟରେ ବସିବା ମାତ୍ରେ ତା ଗୋଡ଼ ଧରି ପକାନ୍ତି ।

ପ୍ରତି ଦଶ ଜଣ ନଭଜୋରେ ଜଣେ ଦଶାରି । ଦଶାରି ବହୁ ମନ୍ତ୍ର ଔଷଧ ଜାଣେ । ଚିକିତ୍ସା ବ୍ୟବସାୟ କରି ସେ କିଛି ରୋଜଗାର କରେ । ସେ ଗ୍ରାମବୈଦ୍ୟ ପରି । ରୋଗୀ ଯେତେ ଗରିବ ହେଲେ ବି କିଛିଏ ଅଟା, କିଛି କଫି, କିଛି ଚେରମୂଳ (ଔଷଧ ଉପଯୋଗୀ), କିଛି ଲୁଗା ଦଶାରିକୁ ଦେଇଥାଏ ।

ଟର୍‌କଏଜ୍ ରତ୍ନ ପିନ୍ଧିଥିଲେ ବଜ୍ରପାତ ହୁଏ ନାହିଁ ବୋଲି ସେମାନଙ୍କର ବିଶ୍ୱାସ । ନଭଜୋ ପାତ୍ରରେ ଜଳ ରଖି ସୂର୍ଯ୍ୟପରାଗ ବା ଚନ୍ଦ୍ରଗ୍ରହଣ ଦେଖିଥାଏ । ମେଷ ପୀଡ଼ିତ ହେଲେ ସେ ଦେବତାଙ୍କୁ ପୂଜା ମାନସିକ କରେ ।

ପିଲା ଜନ୍ମ କଲାବେଳେ ନଭଜୋ ସ୍ତ୍ରୀ ଉଲଗ୍ନ ହୁଏନାହିଁ । ଛାତରେ ବନ୍ଧା ଥିବା ଗୋଟିଏ ଦଉଡ଼ିକୁ ଧରି ସେ ପିଲା ଜନ୍ମ କରେ ।

ମରିବାକୁ ଡର ନାହିଁ, କିନ୍ତୁ ମଲା ଲୋକକୁ ତାର ପ୍ରାଣେ ଭୟ । ଗୁରିଜଣ ମାଲିସାଇ ଶବକୁ ପାହାଡ ଉପରେ ରଖି ଚଉରପାଖୁନି ଘୋଡ଼ାଇ ଦେଇ ଆସନ୍ତି । ଯେଉଁ ବାଟେ ମଡ଼ା ଯାଏ, ସେ ବାଟ ଆଗ ପରିଷ୍କାର କରାଯାଏ । ପଚ୍ଛନ୍ନ ପଥରେ ଭୂତ ଆସିପାରେ ନାହିଁ, ବିଶ୍ୱାସ । ମୃତାର ଯିବା ବାଟ ଗୁରଦିନ ପର୍ଯ୍ୟନ୍ତ ଜଣେ ଜଗି ରହେ । ଏହି ସମୟ ମଧ୍ୟରେ କେହି ସେ ବାଟେ ଗଲେ ତାକୁ ଭୂତ ଲାଗେ । କେହି ଗୁଣି ଶିଖିବା ଜଣାଗଲେ ତାକୁ ମୃତ୍ୟୁଦଣ୍ଡ ଦିଆଯାଏ । ଡକେଇତି ବା ନାରୀ ହରଣରୁ ବଳି ଏହା ଗୁରୁତର ଅପରାଧ ।

ନାଗାଜୋଲ ଭୂତ ଗଧିଆ ହୋଇ ରାତିରେ ବାହାରେ । ଗଧିଆ ବେଶ ଧରିଥିବା ଭୂତକୁ ଗୁଳି କଲେ ସେ ମଲା ପୂର୍ବରୁ ମଣିଷ ରୂପ ଧରେ । କତୁରି ହେବା ପରେ ନାଗାଜୋ ବାଳସବୁ ପୋଡ଼ିଦିଏ । ନ ହେଲେ ଭୂତ ଗ୍ରାସ କରେ ବୋଲି ବିଶ୍ୱାସ ।

ଭୂତ ଖଣ୍ଡିଆ ଭୂତ ହୋଇ ବାହାରେ । ମାକଡଶା ପାହାଡ଼ରେ ଗୋଟାଏ ଅଦ୍ଭୁତ ମାକଡଶା ଅଛି । ସେ ଖରାପ ଚରିତ୍ରର ନାଗାଜୋଙ୍କୁ ମାରି ପକାଏ । ଝୁଲା ଲଙ୍ଗୁଡ ଧଳା ବାନ୍ଦର ଭୂତଙ୍କ ସମ୍ପର୍କୀୟ । କାରଣ ମଶାଣିରେ ସେମାନେ ଗାଛ କରି ରହନ୍ତି ।

କୁଚରିତ୍ର ନାଗାଜୋ କୋଷ୍ଟୋଙ୍, ପେଚକ ବା କାକ ହୋଇ ଜନ୍ମହୁଏ ବୋଲି ଲୋକ ବିଶ୍ୱାସ । ଦୁଃସ୍ୱପ୍ନ ପରେ ନାଗାଜୋ ଦେବତାଙ୍କୁ ପ୍ରାର୍ଥନା କରେ । ସେ ସୂର୍ଯ୍ୟାସ୍ତ ପରେ ଘିଟି ମାରେ ନାହିଁ; ଅନ୍ଧାରରେ ଏକୁଟିଆ ଯାଏ ନାହିଁ, ଗଲେ ଗୀତ ଗାଇ ଗାଇ ଯାଏ ।

ହୁଙ୍କା ଉପରେ ଛେପ ପକାଇଲେ ଲୋକ ଜଡ଼ା ହୁଏ, ଚୁଟୁନ୍ଦ୍ରା ମାରିଲେ ଅନ୍ଧ, ହଂସାରେ ଲାଲ୍ ମିମୁଣ୍ଡି ମାରିଲେ ବର୍ଷକ ପରେ ତାର ମୃତ୍ୟୁ ହୁଏ ବୋଲି ଲୋକ ବିଶ୍ୱାସ । ବେଙ୍ଗ ସଙ୍ଗେ ଖେଳିବା, କୋଷ୍ଟୋଙ୍ ଯାଇଥିବା ପଥ କେହି ଲଙ୍ଘନ କରିବା ମନା । ପାଣିରେ ମଳ୍କା, ଚରଭୂଜ ଫିଙ୍ଗିବା ଦୋଷାବହ; ଡାହାଣ ହାତର ମର୍ଯ୍ୟାଦା ଅଧିକ । ବାଁ ହାତରେ କାହାକୁ କିଛି ଦେବା ଅପରାଧ ।

ନଭଜୋ ସତ୍ୟବାଦୀ । କାହାଠୁଁ ଉଧାର ଆଣିଲେ ଶୁଝନ୍ତି । ଗୋ, ମେଷ ତାର ପ୍ରଧାନ ସମ୍ପତ୍ତି । ନଭଜୋ ସ୍ତ୍ରୀ ତାର ଗାଈ ମେଣ୍ଢାଙ୍କୁ ଭଲଭାବେ ଚିହ୍ନେ; ପ୍ରତ୍ୟେକର ସ୍ୱତନ୍ତ୍ର ନାମ ଅଛି । ସେଇ ନାମରେ ସେ ଡାକେ; ସେମାନଙ୍କୁ ବିଶେଷ ଶ୍ରଦ୍ଧା କରେ ଓ ଯତ୍ନ ନିଏ । ମେଣ୍ଢାଙ୍କର ଗୁଡ଼ାଏ ନାମ ଅଛି । ଗୋରୁ ଗାଈ ମେଣ୍ଢା ସଂଖ୍ୟାରୁ କୌଣସି ନଭଜୋ କେତେ ଧନୀ ଜଣାଯାଏ । ନଭଜୋର ସମ୍ପତ୍ତିକୁ ପାଞ୍ଚ ଶ୍ରେଣୀରେ ବିଭକ୍ତ କରିଯାଇ ପାରେ (କ) ବସନ, କମ୍ବଳ, ଚମ, ଟୋକେଇ, ଘୋଡ଼ାଜିନ (ଖ) ଗୋଡ଼ଳା, ରୁପା, ଟର୍କୋଇଜ୍ ରତ୍ନ (ଗ) ମନ୍ତ୍ର, ଔଷଧ, ସ୍ତୁତିଗୀତ (ଘ) ଜମିବାଡ଼ି (ଙ) ପଶୁ । ଆବଶ୍ୟକ ହେଲେ ସାହୁକାର ପାଖରେ ଅଳଙ୍କାରପତ୍ର ବନ୍ଧା ପକାଇ ସେ ଟଙ୍କା ଆଣେ । ପାଖରେ ପଇସା ନ ଥିଲେ ବଜାରରେ ମେଣ୍ଢା ବିକି ନଭଜୋ ସ୍ତ୍ରୀ ସଉଦା କିଣି ଆଣେ ।

ଖିଆପିଆ ବେଳେ କେହି ପହଞ୍ଚିଲେ ନଭଜୋ ନ ଖୁଆଇ ଛାଡ଼େ ନାହିଁ । କିଛି ନ ଦେଇ ପାରିଲେ ପାଉଁରୁଟି, କଫି ଦିଏ । ତାର ସାଧାରଣ ଖାଦ୍ୟ—ରୁଟି, ଲୁଣ, ପାଣି । ସେ ଉପାସେ ରହେ ପଛେ ଜୀବ ମାରି ଖାଏ ନାହିଁ । ଘରେ ପିମ୍ପୁଡ଼ି, ମାକଡ଼ଶା ଯେପରି ନ ପଶନ୍ତି, ସେଥିଲାଗି ଔଷଧ ଝୁଲେଇ ରଖିଥାଏ ।

## ସେମାନେ ଆମେରିକାନ୍ ?

ଆମେରିକାନ୍ କହିଲେ ଯେଉଁ ଧାରଣା ଜନ୍ମିଥାଏ, ଲୋହିତ ଭାରତୀୟର ଦୁର୍ଦ୍ଦଶା ଦେଖିଲେ ତାହା ଓଲଟି ଯାଏ । ସେ ଏ ଦେଶର ପ୍ରଥମ ଅଧିବାସୀ, ବେରିଂ ପ୍ରଣାଳୀ ବାଟେ ଏସିଆ ମହାଦେଶରୁ ଏ ଦେଶକୁ ଆସିଥିଲା । ଏବେ ସେ ଉପେକ୍ଷିତ, ବିଚ୍ଛିନ୍ନ, କେତେକାଂଶରେ ଅଶିକ୍ଷିତ, ଅସଭ୍ୟ ।

ଆମେରିକାର ମୋଟ ଲୋହିତଭାରତୀୟଙ୍କ ସଂଖ୍ୟା ପାଞ୍ଚଲକ୍ଷ ଚବିଶ ହଜାର (୧୯୬୦ ଜନଗଣନା ଅନୁସାରେ) । ସେଥିମଧ୍ୟରୁ ପ୍ରାୟ ଏକ ଚତୁର୍ଥାଂଶ ଆମେରିକାର ସଭ୍ୟ ସମାଜରେ ମିଶି ଯାଇଛନ୍ତି । ପ୍ରାୟ ଚାରି ଲକ୍ଷ ଲୋହିତଭାରତୀୟ ସରକାରଙ୍କ ସଂରକ୍ଷିତ ଅଞ୍ଚଳରେ ବାସ କରନ୍ତି,

ସେମାନଙ୍କ ହାରହାରି ବାର୍ଷିକ ଆୟ ତେର ଶତ ଡଲାର୍; ଏତେକ ଆୟରେ କୌଣସି ଭଦ୍ର ବ୍ୟକ୍ତି ଚଳି ନ ପାରେ । ସେ ଆମେରିକାର ନଚିବ୍ରାତ୍ୟ, ଅତି ଦରିଦ୍ର ଅବସ୍ଥାରେ ଥାଏ । ବେକାର, ରୋଗଗ୍ରସ୍ତ । ସିଫିଲିସ, ନିମୋନିଆ, ଟି.ବି.ରେ ଏକ ଷଷ୍ଠାଂଶ ଲୋକ ମୃତ୍ୟୁ ମୁଖରେ ପଡନ୍ତି । ବହୁ ବ୍ୟକ୍ତି ଚକ୍ଷୁରୋଗରେ ପୀଡ଼ିତ; ଶିଶୁମୃତ୍ୟୁ ସଂଖ୍ୟା ।

ସେ ଅନୁଭବ କରିପାରି ନାହିଁ ଯେ ସେ ଏକ ସମୃଦ୍ଧ, ସଭ୍ୟ ସମାଜର ଅଂଶ ବିଶେଷ, ସାମାଜିକ ସମତା ବା ନ୍ୟାୟବିଚାରର ଅଦ୍ୟାପି ତା ପକ୍ଷରେ ଏକ ସ୍ୱପ୍ନ । ତାର ହାହାକାର ଶୁଣିବାକୁ କେହି ନାହିଁ, ରାଜ୍ୟ ବ୍ୟବସ୍ଥା ସମ୍ବନ୍ଧୀୟ ସଂଖ୍ୟା ଫଳାଫଳରେ ଲେଖିବାକୁ ସେମାନଙ୍କ ସଭ୍ୟ ବିବେଚିତ ହୋଇପାରି ନାହାନ୍ତି; ଆମ ଦେଶର ଅଧିବାସୀଙ୍କ ପରି ଅବଶ୍ୟ ସେମାନେ ଦରିଦ୍ର ନୁହନ୍ତି, ଭୋକ ଉପାସରେ ଅଖାଦ୍ୟ ଖାଆନ୍ତି ନାହିଁ; କିନ୍ତୁ ସେ ଦେଶର ସମୃଦ୍ଧ ସମାଜକୁ ଚାହିଁଲେ ଏବେ ସେମାନେ ପାତାଳ ପୁରରେ ଅଛନ୍ତି । *

## ଆକ୍‌ସିଡେଣ୍ଟ

ମରୁଭୂମିରେ ବର୍ଷା ? ଦଶ ବାରଟି ବଡ଼ବୋଳିଆ ଟୋପା ପଡ଼ିଲା; କିନ୍ତୁ ଗୋଟାଏ ଭୁଲ୍ କରି ପକେଇଲା ସତେ କି ! ବଡ଼

---

* ଜଣେ ଇଂରେଜ ସଭ୍ୟ କହୁଛନ୍ତି :—

"Indians remain at the bottom of the economic ladder, have the highest rate of un-employment, live in the poorest housing and suffer chronic poverty".

"Red Indians are yet to feel the healing remedial touch of the great society".

"Far too many of our Indians live under conditions which make a mockery of our claims to social justice'.

ହୋଇଗଲା ଆଗେ ଆଗେ । ଆମେ 'ହିଜ୍ବା' ସହରରେ ପହଞ୍ଚିଲୁ । ବଡ ବଡ ଲୋକଙ୍କ ଘରଗୁଡ଼ିକ ଅଣ୍ଡରଗ୍ରାଉଣ୍ଡ ପରି କରି ତିଆରି କରାଯାଇଛି ।

ଏ ମରୁ ସହରର ସାମ୍ନାରେ ଚାରିଆଡ଼େ ଫସଲ— ମକ୍କା ଗଛ ହାତେ ହାତେ ବଢ଼ିଛି; ଏଠି ସେଠି ଛୋଟ ଗଛ ଗଜୁରିଛି; ଅଳ୍ପ ଦୂରରେ ଗୋଟିଏ ଟ୍ରେଲର ଗ୍ରାମ, ଖରାରେ ଚକ୍ ଚକ୍ କରୁଥାଏ; ଜଳନ୍ତା ଗମ୍ଭୀରରେ ଗୋଟିଏ କ୍ଷୀଣ ଝରଣା, ତାତିଲା ପବନ ଶୋଷି ଯାଉଛି ସେ ପାଣିକୁ । ହଠାତ୍ ପଛରୁ ଧକ୍କା ଦେଲା, ଗୋଟିଏ ବଡ ଗାଡ଼ି ଓଲଟି ପଡ଼ିଲା, ସେଥିରେ ସ୍ତ୍ରୀ, ପୁରୁଷ ଓ ଦୁଇଜଣ ପିଲା ଥିଲେ । ଦରଜା ଖୋଲି ଲୋକଙ୍କୁ କାଢ଼ି ଆଣିଲେ । ଭାଗ୍ୟକୁ କାହାରି କିଛି କ୍ଷତି ହୋଇ ନାହିଁ; ସ୍ତ୍ରୀ ଲୋକଟିର ଭୟ ବିହ୍ୱଳ ମୁଖ ଆଖି ଆଗରେ ନାଚି ଯାଉଛି, ମୃତ୍ୟୁ ଆଉ କେତେ ଦୂର ଥିଲା ?

ଇସ୍, ଉଦୟ ସେମାନଙ୍କୁ ଔଷଧପତ୍ର ଦେଇଥାନ୍ତେ; କିନ୍ତୁ ଆରିଜୋନାର ଲାଇସେନ୍ସ ନାହିଁ । ଚିକିତ୍ସା କରିଥିଲେ ସେମାନେ ବିପଦରେ ପଡ଼ିଥାନ୍ତେ । ପୁଣି ସାକ୍ଷୀ ହୋଇ କୋର୍ଟକୁ ଟଣା ହେବାର ସମ୍ଭାବନା ଥିଲା । ତେଣୁ ପଳାଇ ଯିବାକୁ ହେଲା, କିଛି ଗୋଟାଏ ଦଂଶନ ମର୍ମେ ମର୍ମେ ଅନୁଭବ କରୁଥିଲେ ବି; ଅବଶ୍ୟ କେହି ଖର୍ଣ୍ଣ୍ ଆ ଖାଦ୍ୟ ହେବା ପରି ଦଶୁ ନ ଥିଲେ; ସୁସ୍ଥ ହୋଇ ପଡ଼ିଥିବା ଜିନିଷପତ୍ର ଗୋଟାଇ ଲାଗିଥିଲେ ।

## ଆରିଜୋନାର ଅପାନ୍ତରାରେ

ଭୁବନେଶ୍ୱରର ଭଙ୍ଗା ମନ୍ଦିର ପରି ବାଲୁସ୍ତର ପର୍ବତସବୁ; ନାନା ରଙ୍ଗର ଫ୍ରେସ୍କୋ, ଅଦ୍ଭୁତ ପ୍ରାକୃତିକ କାରୁକାର୍ଯ୍ୟ । ଲକ୍ଷ ଲକ୍ଷ ବର୍ଷ ଧରି ଗଢ଼ା ଚାଲିଛି; ସରୁ ନାହିଁ, ସରିବ ନାହିଁ, ପ୍ରକୃତିକଳାର ଏହି ବୈଶିଷ୍ଟ୍ୟ ଯେ ଏହା ପ୍ରତି ମୁହୂର୍ତ୍ତରେ ଗଢ଼ା ଚାଲିଥାଏ, କ୍ଲାନ୍ତ ନାହିଁ, ଅବସନ୍ନତା ନାହିଁ, ଅହୋରାତ୍ର । ଭଙ୍ଗା ଗଢ଼ା ଏକାବେଳକେ ଚାଲିଥାଏ ।

ମୁହୂର୍ମୁହୁ ପରିବର୍ତ୍ତନ ହିଁ ଏହି କଳାର ବୈଭବ—ବଦଳାଇ ବଦଳାଇ କଳା ହୁଏତ ଲୋପ ପାଇଯାଏ । କିନ୍ତୁ ଶେଷ ହେଲା ବୋଲି ପ୍ରକୃତି କାହାକୁ ଛାଡ଼ିଦିଏ ନାହିଁ ।

ବିସ୍ତୀର୍ଣ୍ଣ ବିଦୀର୍ଣ୍ଣ ଭୂମି, ପ୍ରସ୍ତରିତ, ଗୁଳ୍ମାବୃତ; ଗହ୍ୱର, ଗମ୍ବୁଜ, ଶୁଷ୍କ ନଦୀଶଯ୍ୟା, ବାଲୁକା ଉପଳମୟ—ଜନବସତିର ସୂଚନା ନାହିଁ କେଉଁଠି । ଆମେରିକାର ଶତକଡ଼ା ପଞ୍ଚସ୍ତରି ଭାଗ ଲୋକ ନଗରବାସୀ; ଏହି ଭାଗରୁ ଧୀରେ ମୁକ୍ତ କରି ଚଳନ୍ତି । ବିଶ୍ୱସ୍ୱାର୍ଥ ଅପେକ୍ଷା ଜାତୀୟ ସ୍ୱାର୍ଥ ଏଠି ମଧ୍ୟ ବଡ଼ ହୋଇ ରହିଛି । ଆମେରିକା ଚାହିଁଲେ ଜନାକୀର୍ଣ୍ଣ ଭାରତ, ଚୀନ ବା ଯାପାନର ଲୋକଙ୍କୁ ବାସ ଦେଇ ପାରନ୍ତା; ଚାଷର ବ୍ୟବସ୍ଥା ବି ହୋଇ ପାରନ୍ତା ।

## ନିଉ ମେକ୍‌ସିକୋ

ଆରିଜୋନାରୁ ଆମେ 'ନିଉ ମେକ୍‌ସିକୋ' ରାଜ୍ୟରେ ପହଞ୍ଚିଲୁ । ଦିନେ ଏହା ମେକ୍‌ସିକୋର ଅନ୍ତର୍ଗତ ଥିଲା; ୧୮୪୭ ଖ୍ରୀଷ୍ଟାବ୍ଦରେ ଯୁକ୍ତରାଷ୍ଟ୍ରର ଅନ୍ତର୍ଭୁକ୍ତ ହେଲା । ୧୯୧୭ ଖ୍ରୀଷ୍ଟାବ୍ଦରେ ସ୍ୱତନ୍ତ୍ର ରାଜ୍ୟ ଭାବରେ ଏହା ସ୍ୱୀକୃତି ଲାଭ କଲା । ତେଲ, ଗ୍ୟାସ୍, ଇଉରାନିୟମ୍ ଏହି ରାଜ୍ୟରେ ବହୁଳ ଭାବେ ଉତ୍ପାଦିତ ହୁଏ । ଜଳବାୟୁ ଶୁଷ୍କ ଓ ସ୍ୱାସ୍ଥ୍ୟକର ।

କାରଟେଜ୍ ସହର ପାଖରେ ଆମେ ଅଟକିଲୁ—ପାଣ୍ଡୁର ଧୂସର ଗୁଳ୍ମାବୃତ ଗମ୍ଭୀର ଅଞ୍ଚଳରେ । ଏଠି ଚାରିଗୋଟି ରାଜ୍ୟ ମିଳିତ ହୋଇଛନ୍ତି । ଆରିଜୋନା, ନିଉ ମେକ୍‌ସିକୋ, କଲୋରାଡୋ, ଇଉଟା, ଚାରି ରାଜ୍ୟର ମିଳନ ସ୍ଥଳରେ ଗୋଟିଏ ଚତୁଷ୍କୋଣ ବେଦୀ ନିର୍ମିତ ହୋଇଅଛି । ଚାରି କୋଣରେ ଚାରିଗୋଟି ରାଜ୍ୟର ନାମ ଲିଖିତ ହୋଇଅଛି । ନିଉ ମେକ୍‌ସିକୋର ଗୋଟିଏ କୋଣ ମାତ୍ର ଅତିକ୍ରମ କରି ଆମେ ଶୁଷ୍କ, ରୁକ୍ଷ ପ୍ରସ୍ତରିତ କଲୋରାଡୋ ରାଜ୍ୟରେ ପ୍ରବେଶ କଲୁ । ସାମ୍ନାରେ ଗୋଟିଏ ଦୀର୍ଘ ବିଦୀର୍ଣ୍ଣ ପାହାଡ଼ ଶ୍ରେଣୀ, ପୂର୍ବ ପ୍ରାକୃତିକ କୀର୍ତ୍ତିର ପୁନରୁକ୍ତି, କିନ୍ତୁ ବିରକ୍ତି ଆସେ ନାହିଁ, ପରିବେଶର ପରିବର୍ତ୍ତନରେ ଭିନ୍ନ ଦିଶେ ।

କେଉଁଠି ପାହାଡ଼ ବଣ୍ଟୁଛି, ଖଣ୍ଡିତ ଦୁର୍ଗ ପରି, ଭଗ୍ନ ମନ୍ଦର ପରି; ତଳେ ମାଟି ଉପରେ ପ୍ରସ୍ତର ସ୍ତର ବଣେ; କାଳ ସ୍ରଷ୍ଟାର କର୍ମପଟୁ ହସ୍ତ ସଦା ତତ୍ପର, ଖଣ୍ଡନ ମଣ୍ଡନରେ । ମନରେ କାରୁଣ୍ୟ ଆସେ କୋଶ କୋଶ ବ୍ୟାପୀ ମଥିତ, ଘର୍ଷିତ, ଦନ୍ତୁରିତ ଶୈଳଶ୍ରେଣୀ ଦେଖିଲେ । ଭଗ୍ନ ଚୂର୍ଣ୍ଣ ଚତୁର୍ଦ୍ଦିଗ. ମରୁଭୂମି ସହର 'କେର୍‌ମେନ୍‌କୁ ଗୋଟିଏ ସ୍ୱର୍ଣ୍ଣ ଘେରି ରହିଛି ମେଖଳା ପରି, କୂଳରେ ତାର କେତୋଟି ନୀଳ ଶୈଳ— ଅଦୂରରେ 'ମେସାଭର୍ଡେ' ନ୍ୟାସନାଲ ପାର୍କର ନୀଳ ଲୋହିତ ଗିରି-ଶ୍ରେଣୀ, ମରୁଭୂମି ଶ୍ରାନ୍ତ ଯାଯାବର ବନ୍ଧୁରର ବିଶ୍ରାମ ସ୍ଥଳ ।

କଲୋରାଡୋ ଗୋଟିଏ ଖଣି ରାଜ୍ୟ । ସୁନା, ରୁପା, ଜିଙ୍କ୍, ତମ୍ବା, ଟିଣ ପ୍ରଭୃତି ଧାତୁ, ମାର୍ବଲ, କଳା ମୁଗୁନି ପ୍ରଭୃତି ମୂଲ୍ୟବାନ ପ୍ରସ୍ତର ଯୋଗୁଁ ଏହା ପ୍ରସିଦ୍ଧ । ସଭାପତି ଗ୍ରାଣ୍ଟ୍‌କୁ ଅଭିନନ୍ଦନ ଦେବା ଲାଗି, ଏହି ପ୍ରଦେଶବାସୀ ରୌପ୍ୟ ଇଷ୍ଟକରେ ଗୋଟିଏ ପୀଠ ନିର୍ମାଣ କରିଥିଲେ । ୧୮୭୭ ଖ୍ରୀଷ୍ଟାବ୍ଦରେ କଲୋରାଡୋ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ରୂପେ ସ୍ୱୀକୃତି ଲାଭ କଲା । ଲୋହିତଭାରତୀୟ ସଭ୍ୟତାର ଧ୍ୱଂସାବଶେଷ ଦେଖିବା ଲାଗି ଏ ରାଜ୍ୟକୁ ବହୁ ଭ୍ରମଣକାରୀ ଆସିଥାନ୍ତି ।

## ମେସାଭର୍ଡେ ନାସ୍‌ନାଲ ପାର୍କ

'ମେସାଭର୍ଡେ' ଗୋଟିଏ ସ୍ପେନୀୟ ଶବ୍ଦ – ଏହାର ଅର୍ଥ ସବୁଜ ଟେବୁଲ୍ । ଏହି ଜାତୀୟ ପାର୍କର ଉତ୍ତମ ପର୍ବତ ଶିଖ ଟେବୁଲ ପରି ସମତଳ, ଜୁନିପର ଓ ପାଇନ ଗଛ ଭରା । ଏହାର ମୂଳେ ମୂଳେ 'ମାନ୍‌କୋସ' ନଦୀ ପ୍ରବାହିତ । ରଶ୍ମି ଉଜ୍ଜ୍ୱଳ, ଗୁଳ୍ମ ଶ୍ୟାମଳ ଶୃଙ୍ଗେ ଶୃଙ୍ଗେ ଆମେ ବୁଲିଲୁ । ତଳେ ନଗ୍ରିତ ଘଣ ତରଙ୍ଗ, ତୃଣ ଗୁଳ୍ମର ହିଲ୍ଲୋଳ, ଚଳ ବାଦଲର ଛାୟା । ଯେତିକ ପାହାଡ଼କୁ ଉଠିଲୁ, ସେତିକ ତଳକୁ ଖସିବାକୁ ହେଲା—ଗୋଧୂଳିର ପୂର୍ବାଭାସ, ଆମେ 'କନ୍ଦର' ଗ୍ରାମରେ ପହଞ୍ଚିଲୁ । ଗୋଟାଳିଆ ବୃହତ୍ ପ୍ରସ୍ତର ଖଣ୍ଡ, ତା ତଳେ ପ୍ରସ୍ତ ଗହ୍ୱର, ତାକୁ ଲଗାଇ କେତୋଟି କୋଠରୀ ନିର୍ମାଣ କରିଥିଲେ ଲୋହିତ-ଭାରତୀୟମାନେ—ରନ୍ଧା ଘର, କୋଠି ଘର, ଶୋଇବା ଘର, ଭଣ୍ଡାର

ଘର; ମୋଟ କୋଠରୀ ସଂଖ୍ୟା ୧୧୪ । ଏହି ଗ୍ରାମର ଲମ୍ବ ୬୧୭ ଫୁଟ । ଶତାଧିକ ଲୋକ ଏଠାର ବାସିନ୍ଦା ଥିଲେ । କୋଠରୀଗୁଡ଼ିକ କ୍ଷୁଦ୍ର, ଛ' ଫୁଟରୁ ଆଠ ଫୁଟ, ଉଚ୍ଚତା ପାଞ୍ଚ ଫୁଟ । ଗୋଟିଏ ଗୋଟିଏ ପରିବାର ଏକାଧିକ କୋଠରୀ ଅଧିକାର କରି ରହୁଥିଲେ ।

କୋଠରୀସବୁ ପ୍ରସ୍ତରରେ ନିର୍ମିତ, ମାଟିର ଗାର ଦିଆଯାଇଥିଲା । ପ୍ରତ୍ୟେକ କୋଠରୀର ସ୍ୱତନ୍ତ୍ର ଦରଜା ଥିଲା; ଆଲୋକ ପବନ ପିବା ଲାଗି ଗବାକ୍ଷ ରଖାଯାଇଥିଲା ।

ସେମାନେ ପ୍ରସ୍ତରରେ ଗହମ ଗୁଣ୍ଡା କରୁଥିଲେ, ବାଟିବା ଲାଗି ଶିଳ ବ୍ୟବହାର କରୁଥିଲେ । ଶିଳକୁ ସେମାନେ କହୁଥିଲେ—ମିଟେଟ୍, ଶିଳପୁଆକୁ ମନୋ । 'କିବା' ବୋଲି ସେମାନଙ୍କର ଗୋଟିଏ ଧର୍ମାନୁଷ୍ଠାନ ଥିଲା । ବର୍ଷା କରେଇବା, ଭଲ ଫସଲ ଉତ୍ପାଦନ ଲାଗି ଉପାୟ ଅବଲମ୍ବନ କରିବା, ଗ୍ରାମର କଲ୍ୟାଣ ଲାଗି ଚିନ୍ତା କରିବା 'କିବା'ର କାର୍ଯ୍ୟ । ସ୍ତ୍ରୀମାନେ ଏଠାର ସଭ୍ୟ ହୋଇ ପାରୁ ନ ଥିଲେ । ଗୋଟିଏ ଦୀର୍ଘ ନିଶୁଣିରେ ଚଢ଼ି ଉପର ମହଲାର ନିର୍ଜନ 'କିବା" ଗୃହକୁ ଯିବାକୁ ହେଉଥିଲା ।

ଲୋହିତଚର୍ମଇଣ୍ଡିଆନ୍ମାନେ କାନ୍ଥରେ ନାନା ରଙ୍ଗ ଲେପନ କରୁଥିଲେ । ସେମାନେ ଶିମ୍ବ, ମକ୍କା ଆଦି ଫସଲ ଉତ୍ପାଦନ କରୁଥିଲେ । ଜୀବନ ଧାରଣ ଲାଗି ବର୍ଷରେ କେତେ ମାସ ସେମାନେ ଶିକାର ଉପରେ ନିର୍ଭର କରୁଥିଲେ ।

ଏଠି ବର୍ଷକୁ ମାତ୍ର ଅଠର ଇଞ୍ଚ ବର୍ଷା ହୁଏ । ବର୍ଷେ ବର୍ଷା ନ ହେଲେ ଅବସ୍ଥା ଶୋଚନୀୟ । ଦୀର୍ଘ ଅନାବୃଷ୍ଟି ଓ ଦୁର୍ଭିକ୍ଷ ଯୋଗୁଁ ସେମାନେ ହୁଏତ ଏଇ ଉଦର ଗୃହ ତ୍ୟାଗ କରି ନିଉମେକ୍ସିକୋ ଓ ଅରିଜୋନା ଗ୍ଲଲଗଲେ, ଦ୍ୱାଦଶ ଶତାବ୍ଦୀରେ । ତାପରେ ସେମାନେ ବା ସେମାନଙ୍କର କେହି ବଂଶଧର ଏଠିକି ଫେରିବାର ସୂଚନା ନାହିଁ ।

ତାପରେ ଲୋହିତଚର୍ମଇଣ୍ଡିଆନ୍ ଯାଦୁଘରେ ପଶି ତାଙ୍କ ପ୍ରାଗୈତିହାସିକ ଜୀବନ ଧାରଣ ପ୍ରଣାଳୀ, ଯାବତୀୟ ବ୍ୟବହାର୍ଯ୍ୟ ଦ୍ରବ୍ୟସମ୍ଭାର,

ଚଣଲ ପାଇନ ବୃକ୍ଷର ଗଣ୍ଡି, ର୍ୟାଟଲ୍ ସ୍ନେକ୍, ଟର୍କି ପକ୍ଷୀ, କୋକ-ଶିଆଳ ପ୍ରଭୃତି ଦେଖି ପାହାଡ଼ ଉପରକୁ ଉଠିଲୁ । ସେତେବେଳକୁ ଗୃଧ୍ରାଏ ଶାଗୁଣା ବଣ ଉପରେ ଚକ୍କର ଦେଉଥାନ୍ତି, ଆମ ଆଡ଼େ ମଡ଼ ପଡ଼ିଲେ ଯେପରି, ମାଛ ଗୋଳ ହେଲେ ଚିଲ ଯେପରି ଉଡ଼ିବୁଲନ୍ତି । ବୋଧେ କୌଣସି ବନ୍ୟ ଜନ୍ତୁ ମରିଛି । ଗାଆଁର ସେହି ପରିଚିତ ଦୃଶ୍ୟ ମନେ ପଡ଼ିଗଲା ।

ମଡ଼ ପଡ଼ିଲେ ମଣିଷ କେମିତି ଜାଣନ୍ତି ? କଟୁଆ ଛୁଡ଼ା କରିଥାନ୍ତି; ସେ ସୁଆଡ଼େ ଉଡ଼ନ୍ତି ସିଆଡ଼େ ମଡ଼ ପଡ଼ିଛି ବୋଲି ବୁଝନ୍ତି । ମଲା ଗୋରୁକୁ କାଟି ବେଢାବେଢି ମାଉଁସ ନିଅନ୍ତି ଖାଇବା ପାଇଁ, ଚମଡ଼ା ନିଅନ୍ତି ବିକ୍ରୟ ପାଇଁ; ଅଦୂରରେ ଛକି ବସିଥାନ୍ତି କେତୁଟା ବୁଲା କୁକୁର; କଅଁା ବାଡ଼ରେ ଲୁଚି ବସିଥାଏ ବିଲୁଆ, ଚକ୍କର ଦେଉଥାନ୍ତି ଶାଗୁଣା । କେତୁଟା ଡାମରା କୁଆ ଡାହାଣା ପରି ଚୁହିଁଥାନ୍ତି ସେଇ କଟା ହେଉଥିବା ମଡ଼ାକୁ । ମାଂସ କଟା ସରିଲେ ସମସ୍ତେ ଏକାବେଳକେ ଝାମ୍ପି ପଡ଼ନ୍ତି, ବିଲୁଆ କୁକୁରଙ୍କ କାମୁଡ଼ା କାମୁଡ଼ି ଚିତ୍କାର ଗର୍ଜନରେ ସ୍ଥାନଟି ଉପ୍ଲାବିତ ହୋଇ ଉଠେ । କି ବିକଟ ଦାରିଦ୍ର୍ୟ ! କି ବୁଭୁକ୍ଷା !

ସନ୍ଧ୍ୟାର ଶେଷ ରଙ୍ଗ ଉପରେ ଶ୍ରାବଣ ଦ୍ୱାଦଶୀର ଚନ୍ଦ୍ର; ସେଇ ପାର୍ବତ୍ୟ ଓ ଆରଣ୍ୟ ପ୍ରକୃତିରେ ତାର କିରଣର ମାୟା ଅଦ୍ୟାପି ଲାଗି ନ ଥାଏ । ଜାଷ୍ଟାପ୍ସ ଅରଣ୍ୟରୁ ୩୫ ମାଇଲ୍ ଦୂରବର୍ତ୍ତୀ ଡୁରାଙ୍ଗୋ ସହରରେ ଆମେ ରହିଲୁ । ସେତେବେଳକୁ ମୋଟେଲ୍ ସାମ୍ନା ଝଙ୍କା ଉଇଲୋ ଗଛରେ ଚକ ଚକ କରୁଥାଏ ଚନ୍ଦ୍ରିକା, ରଙ୍ଗୀନ୍ ବିଦ୍ୟୁତର ବିଜ୍ଞାପନରେ ମଳିନତର ହେଲେ ବି ।

## ଡୁରାଙ୍ଗୋ (୨୭।-।୭୬)

ଜୁନିପର୍, ପପ୍ଲର୍ ଓ ଉଇଲୋରେ ସକାଳର ଶାନ୍ତି, ତୃପ୍ତି; ପ ଇନର ପତ୍ରେ ପତ୍ରେ ଶିଶିର ବିନ୍ଦୁ ଝୁଲୁଛି, ଦ୍ୱାରରେ ଗାଢ଼ ସବୁଜ ପତ୍ରଆମାନଙ୍କରେ ଚୂନା ଚୂନା ଶିଶିର ଜମିଛି, ଧ୍ରୁ ସ୍ୱଚ୍ଛ ସୁନ୍ଦର; ହିସମାସ୍ ଶାଖାରେ କୁହୁଡ଼ି ବାଟବଣା ହୋଇଛି ଯେପରି କି । ଶାନ୍ତ ନୀରବତା ।

ସ୍ୱୀ.ପାଥରେ ଗୁଲ ଗୁଲ ସାଲ ପହଞ୍ଚିଲୁ ଲ୍ଲ.ବ୍ଲେଁ ନଗରର ପ୍ରାଚୀନତମ ଗୃହ ସାମ୍ନାରେ । ୧୮୭୦ ଖ୍ରୀଷ୍ଟାବ୍ଦରେ ଏହା ନିର୍ମିତ ହୋଇଥିଲା । ଏବେ ସଂରକ୍ଷିତ, ସେ କାଳରେ ନାନା ଦ୍ରବ୍ୟସମ୍ଭାର ଦେଖାଯାଇ ଏହାକୁ ଗୋଟିଏ ଯାଦୁଘରେ ପରିଣତ କରାଯାଇଛି । ପଥ ପାର୍ଶ୍ୱରେ ଅଗଣିତ ଲାଲ୍ ଗୋଲାପ ଜଙ୍ଘାର ମଧ୍ୟ ଆବେଳକ ସଜ୍ଜିତ ସିଡ଼ି ମନକୁ ମୋହେ ଅଫ୍ରାଙ୍କ ଅନୁରାଗରେ ଲେଖିତ କରିଦେଲା—ଆଃ, ଜୀବନ ଅର୍ଥ ବ୍ୟବସାୟ ବୋଲି ବୁଝିଲେ ବି ଏମାନେ ସୌନ୍ଦର୍ଯ୍ୟକୁ କେବେ. କେଉଁଠି ଭୁଲିଯାଇ ନାହାନ୍ତି । ପ୍ରକୃତି ସହିତ ମନୁଷ୍ୟର ସହଯୋଗ ସର୍ବତ୍ର, ସୌନ୍ଦର୍ଯ୍ୟ ପସରା ମେଲି ବସିଛନ୍ତି ଯେପରି ସକାଳର ମୀନାକର ମାହାତ୍ତରେ, ଯେତ୍ତପରି ସୌଧେ ସୌଧେ, ଦ୍ୱାରେ ଦ୍ୱାରେ; ମହାଲକ୍ଷ୍ମୀ ସର୍ବତ୍ର ବିରାଜମାନା ।

'ଆନ୍ନାମସ୍' ଝରଣା କୂଳେ କୂଳେ ପୁଣି ଆମେ ଅଗେଇଲୁ—ପୂର୍ବରେ ସୂର୍ଯ୍ୟ, ପଶ୍ଚିମରେ ସୂର୍ଯ୍ୟମୁଖୀ, ଫଳଭରା ଚେରୀ ଓ ଆପଲ୍‌କୁ, ଦୂର ଦୃଷ୍ଟିରେ ଚୁମ୍ବନ ଦେଇ; ଜନ୍ଦୁଲଗାଛିଆ ମକାନର ପ୍ରସନ୍ନତା ବିତରଣ କରୁଥାଏ । ଆମେ ଆନ୍ନାମସ୍‌ରୁ ମ୍ଲୋଟେତ୍ତା ନଦୀ ଓ ତାପରେ କ୍ୟସ୍ ପାଇନସ୍ ନଦୀ କୂଳରେ ଯାଇ ପହଞ୍ଚିଲୁ । ଏକାଳ ଉତ୍‌ଫୁଲ୍ଲତା ଖେଳାଇ ଦେଇଛି ଏଠି, ଶ୍ରଦ୍ଧା ପ୍ରୀତି ପୂର ରହିଛି ପ୍ରାନ୍ତରେ କେଦାରେ, ତାହାତ୍ତର ସ୍ତରେ ସ୍ତରେ ନଦୀର କଲ୍ଲୋଳେ ।

ପର୍ବତ କ୍ରମେ ଘାର୍ଘଟର ଦେହକୁ ଲଗିଲା, ଘାର୍ଘଟର ପାଇନ୍ ପୁଞ୍ଜ, ପ୍ରପାତ ଶିକରରେ ପ୍ରସନ୍ନ, ଋଣ୍ଟରେ ଜଙ୍ଗଲ—ତାର ମର୍ମର ସ୍ୱରରେ ମୋର ପ୍ରଶସ୍ତ ପ୍ରଶାନ୍ତ ହୃଦୟରେ ଜାଗ୍ରତ ହେଲା ଏକ ସ୍ୱପ୍ନ —ସୌନ୍ଦର୍ଯ୍ୟ କଳ୍ପଲୋକର ଛନ୍ଦ, ତାହା ଏହି ମାଟି ପୃଥିବୀର—ଯେ ଏକ ଶକ୍ତି, ସାଧନାର ସିଦ୍ଧି । ସନ୍ଦିଗ୍‌ଧ ମନ ମୋର ସ୍ଥିର ହେଲା ଗୋଟିଏ ବିନ୍ଦୁରେ । ବିନ୍ଦୁରେ ସିନ୍ଧୁ ବ୍ୟାପ୍ତିର ଅନୁଭବ ଏଇ ପ୍ରଥମ ମୋର । ଅଜ ଜାଜ ପାଖରେ ଏକ ନୂତନ ପରିଚୟ ପାଇ ସ୍ତମ୍ଭିତ ହୋଇଗଲି ।

ପର୍ବତେଇ ଯାଉଛି ଶୃଙ୍ଗ ପରେ ଶୃଙ୍ଗ ତା ତୁଙ୍ଗତାରେ ମୋତେ ଉନ୍ନତ କରି, ପାଇନ୍ ବନ ପରେ ବନ, ତା ଶ୍ୟାମଳତାରେ ମୋତେ ପରିପୂର୍ଣ୍ଣ କରି;କେଉଁ ଗିରି ଉପତ୍ୟକାରୁ ଏ ଅକଳ କୁତ୍ତୁଝ ମାଡ଼ିଆସିଲା ?

ଶୃଙ୍ଗ ପରେ ଶୃଙ୍ଗରେ ପଦକ୍ଷେପ କରି ଯେ ଉଠିଲା ଆକାଶକୁ ମେଘ ହୋଇ, ସ୍ତର ପରେ ସ୍ତର ଦିଗ୍‌ଚକ୍ରବାଳ ପର୍ଯ୍ୟନ୍ତ ବ୍ୟାପିଛି ପାହାଡ଼, କୁହୁଡ଼ି ଏକାକାର କରୁଛି, ସାନ ଜୁଆନ୍ ନଦୀ କୂଳକୁ ମାଡ଼ି ଆସିଛି ଚାର ଘାସ, ପାଇନ୍‌ର ଅଗ୍ରେ ଅଗ୍ରେ ଉଠୁଛି ଧୂମ ଘନ; ସବୁ ମାୟା ? କୁଆଡ଼େ ଲୁଚିଗଲା ସେ କୁହୁଡ଼ି ? ଦେଖିଲି ଆକାଶ ଛୁଆଁ ପାଇନ୍ ସବୁ ଗୁଳ ମିଶା ଝଉ ଗୁଚ୍ଛ ଛନ୍ତି; ମନ ମୋର ଗିରି ଗୌରବରେ, ଅଦ୍ଭୁତ ସବୁଜ ପ୍ରପାତ ! ସମସ୍ତ ଭାବ ମୋର ସବୁଜ ହୋଇଯାଇଛି ଯେପରି, ରିଓଗ୍ରାଣ୍ଡି ନାସନାଲ ପାର୍କ ଆମେ ଅତିକ୍ରମ କରୁ କରୁ ଏପଟୁ କହିଲି—ସବୁଜ, ଉଜ୍ଜ୍ୱଳ, ନୀଳ, ଧବଳ କେତେ ରଙ୍ଗ ଦେଖନ୍ତୁ; ଅଦ୍ଭୁତ ଗ୍ରୁପ୍‌ଲେକର ଛଟା, ପ୍ରପାତର ଇନ୍ଦ୍ରଧନୁ, ଧୂସର ପାଣ୍ଡୁର କୃଷ୍ଣତୃଣର ପ୍ରାନ୍ତର; କଲୋରାଡ଼ୋ ରାଜ୍ୟକୁ ଆମେରିକାବାସୀ କଣ କହନ୍ତି ଜାଣ ? ବର୍ଣ୍ଣାଢ୍ୟ !

'ଅନ୍ୟ ରାଜ୍ୟଗୁଡ଼ିକର ସେହିପରି ନାଆଁ ଦିଆ ହୋଇଥିବ ?'

'ସବୁ ମୋର ମନେ ନାହିଁ, କେତୋଟି କହୁଛି; ଓ୍ୟାଇଓମିଂକୁ 'ରେଡ଼ଓ' ରାଜ୍ୟ, ଇଂସଜକୁ ସହମ ରାଜ୍ୟ, ମିନେସୋଟାକୁ ହ୍ରଦରାଜ୍ୟ, ଉଇସ୍‌କନ୍‌ସିନ୍‌କୁ ଗୋ-ରାଜ୍ୟ, ଜର୍ଜିଆକୁ ପିଚ୍ ରାଜ୍ୟ; ଆରିଜୋନାକୁ ଗ୍ରାଣ୍ଡ କାନିୟନ୍ ରାଜ୍ୟ, ମଣ୍ଟାନାକୁ ସମ୍ପଦରାଜ୍ୟ, ନର୍ଥଡାକୋଟାକୁ ମକ୍‌କା ରାଜ୍ୟ; କାଲିଫର୍ଣ୍ଣିଆକୁ ସୁବର୍ଣ୍ଣ ରାଜ୍ୟ, ଫ୍ଲୋରିଡ଼ାକୁ ସୂର୍ଯ୍ୟରଶ୍ମି ରାଜ୍ୟ, ଭର୍ଜିନିଆକୁ ଧୂଆଁପତ୍ର ରାଜ୍ୟ, ନେଭେଦାକୁ ମରୁରାଜ୍ୟ କହନ୍ତି । କଲୋରାଡୋ ରାଜ୍ୟର ଏଇ ସରୁ ସରୁ ପାହାଡ଼ୀ ନଦୀ ଧାରରେ ପ୍ରଚୁର 'ରେନ୍‌ବାଓ ଟ୍ରାଉଟ୍' ଅଛନ୍ତି, ଝରଣା କୂଳରୁ ପାହାଡ଼ର ସ୍ତର ପରେ ସ୍ତର ହୋଇ ପୋଉ ପାଇନ୍ ବନ ଆକାଶକୁ ଉଠିଛି, ଏ କ୍ୟାଂପିଂ ଗ୍ରାଉଣ୍ଡ—ଶାନ୍ତିର ଆଶ୍ରମ—ଭ୍ରମଣକାରୀଙ୍କ ତୀର୍ଥସ୍ଥାନ ।

ଭିନ୍ନ ଭିନ୍ନ ଢୋଳରେ ସଜ୍ଜିତ ଶୈଳସବୁ କଳ୍ପନାରେ ସୃଷ୍ଟି କରି ମନରେ ସଜାଇଲି, ନାନା ରଙ୍ଗରେ ମଜାଇଲି, ସ୍ୱପ୍ନରେ କେବେ ମାନେ ସେ ସବୁ ଦେଖା ଦେବ ବୋଲି, ଆଜୀବନ ନିଜର କରିନେବ ବୋଲି; ପ୍ରକୃତିର ମନ ମୋର ନାନା ବିକୃତିରେ ନାରଖାର ହୋଇଯାଇଥିଲା ।

ଡ଼୍ରାଙ୍ଗୋରୁ ୧୩୩ ମାଇଲ୍ ଯାଇ ଆମେ 'ମଣ୍ଟେଭିଷ୍ଟା' ସହରରେ ପହଞ୍ଚିଲୁ । ଦୂରବର୍ତ୍ତୀ ଗିରି ଆକାଶର ମାଳମାଳୁ ଉନ୍ନତର ଦିଶେ । ଯତେ ଯେପରି ଏସବୁ କଏ ଚଷ କରନ୍ତି ଭଗ୍‌ବାନଙ୍କୁ ଚମତ୍କାର୍ଷିତ କରିବା ଲାଗି—ସମତଳ କ୍ଷେତ୍ର ପୁଷ୍ପିତ ଫଳିତ, ବାଟରେ ଗୋଟିଏ ଗବାଟ୍ ମରି ପଡ଼ିଛି—ଏ ପାଖରୁ ସେ ପାଖ ଜମିକୁ ଗଲାବେଳେ ଆହାର ଖୋଜି, ନିସ୍ପନ୍ଦ ହଡବା ।

ଗାଞ୍ଚଜଗା ଟୋକା ଘୋଡ଼ାରେ ବସିଛି; ପ୍ୟାଣ୍ଟ ପିନ୍ଧି, ମୁଣ୍ଡରେ ଟୋପିଟିଏ ଦେଇ, ହାତରେ ଗୋଟିଏ ଛୁଟ ଧରି—ଚରୁଛନ୍ତି ପଲ୍ଲେ ଗାଈ, ଆମ ଅଞ୍ଚଳର ଗାଈଗୋଠ, ଗାଈଆଳ, ହପହର ଛୋଟାରେ ତାର ଡ଼ାବଳ ପୂଆ, ଡ଼ାଳମାଙ୍କୁଡ଼ ଖେଳ ଓ ଗାଈ ପଠିରେ ବସି ତାର ସେଇ ଯାଷା ଗୀତ ବୋଲିବା ମନେ ପଡ଼ିଗଲା । ଏଠି ଟୋକାଙ୍କ ମେଳ ନାହିଁ, ଏ ଗୋଠ ସେ ଓରାଠର ମେଳ ନାହିଁ—ବିଶ୍ରାମ ଲୋଡ଼ା ନାହିଁ, କାରଣ ରୌଦ୍ର ପ୍ରଖର ନୁହେଁ ।

ପର୍ବତ ତୋରଣ ଦେଇ ଅମେ ସାଗୁଆରେ ସହରର ଗୋଟିଏ କାଫେରେ ପହଞ୍ଚିଲୁ—ଜାଦୁଆ କାନ୍ଥ ଚୂନରେ ଧଉଳା ହୋଇଛି, ଦୁଆରେ ଗୋଟିଏ ଫୁଲମନ୍ଦା, ମଝିରେ ଲାଲ ଗୋଲାପ, ତାର ଚାରି ପାଖରେ ଟିକି ଟିକି ମାଳଫୁଲର ଧାଡ଼ି ।

ଭିତର କାନ୍ଥରେ ସଜା ହୋଇଛି ଗୋଟିଏ ଖଣ୍ଡା ମାଛ । ଟଙ୍ଗା ହୋଇଛି ଗୋଟିଏ ଛବି—ଶୀତର ଅନ୍ତିମ, ଉଚ୍ଚ ପର୍ବତରେ ବରଫ ପଡ଼ି ପଡ଼ି ଆସୁଛି, କିନ୍ତୁ ତାର ଗାତ୍ର ସମ୍ପୂର୍ଣ୍ଣ ଧବଳ ହୋଇନାହିଁ, ସ୍ଥାନେ ସ୍ଥାନେ ସବୁଜ ଜକୁଟିଛି । ପାହାଡ଼ ତଳେ ଗ୍ରେଟ ଗ୍ରେଟ ଗୁଳ୍ମ; ଗୋଟିଏ ବନସ୍ପତି ଅଦ୍ୟାପି ତାର ଶ୍ୟାମଳତା ବଜାୟ ରଖିଛି । କାଫେର ଛପା ଖାଦ୍ୟ ବିଜ୍ଞାପନରେ ଗୋଟିଏ କବିତା ? ଉଦର ପରିତୃପ୍ତ ହେବା ଆଗରୁ ମନ ମୋର ପ୍ରସନ୍ନ ହୋଇଉଠିଲା ।

ତାର ଶୀର୍ଷକ—

## A LITTLE MORE

A little more kindness
a little less creed
A lititle more giving
a little less greed
A little more smile
a little less frown.
A little less kicking
when he is down
A little more we, a little less I,
A little more laugh a little less cry
A little more flowers on the pathway of life
And fewer on graves at the end of the strife.

କବିତାଟି ପଢ଼ି ସାରିଲା ପରେ ସାଲଡ୍ ଆସିଲା, ଛୋଟ ପ୍ଲେଟ ପାତ୍ରରେ, ଏତିକି ? କବିତାରେ ଟିକିଏ ମୋଡ଼ ଦେବାକୁ ଇଚ୍ଛା ହେଲା—

A little more salad
A little more ballad.

ଫରାସୀ ସ୍ୱାଦରେ ଅଣ୍ଡାଭଜା, ପିଠଉଦିଆ ରୁଟି ଭଜା, ଗ୍ଲାସେ ଗରମ ଦୁଧ ଖାଇଲି । କାଫେର ସାମ୍ନାରେ ବୋହୁଛି ଗୋଟିଏ କ୍ଷୀଣ ଝରଣା —ଜଳ ଉପରେ କେତୋଟି ବୁଲୁଛନ୍ତି—ପାଦରେ ପାଣି ଲାଗୁନାହିଁ । ସବୁଜର ଘନ ପଲ୍ଲବିତ ତରୁ; ମୁକ୍ତ ଆକାଶର ରୌଦ୍ର, ମୃଦୁ ଶୀତଳ ପବନରେ ପ୍ରାଣରେ ଅପୂର୍ବ ପରିତୃପ୍ତି ଆସିଲା ।

ସାମ୍ନାରେ ଏ ଦିଗରୁ ସେ ଦିଗ ପର୍ଯ୍ୟନ୍ତ ଗିରିମାଳା ଲମ୍ବିଛି । ଉର୍ଦ୍ଧ୍ୱାକାଶରୁ ମଧ୍ୟ ଶିଖରକୁ ଲମ୍ବି ଆସିଛି ବର୍ଷାଧାର; ଗିରିର ଅନ୍ୟ କେତୋଟି ଶୃଙ୍ଗରେ ଉଜ୍ଜ୍ୱଳ ଧୂପ୍ ମିଶ୍ରିତ ।

ପିଲଙ୍କ ପାଇଁ ଗାଡିରେ ଶେଯ ପଡ଼ିଲ—ଯାଅ, ଶୋଇବ ।
'ନା'
ଦୃଢ଼ ପ୍ରତିବାଦ ଦେଖି କହିଲି—
'ଅଚ୍ଛା, ଦେଖିବା, କିଏ ତୁମ ଭିତରୁ ଆଗ ଶୋଇପଡ଼ୁଥାଏ ।'

କଳକଳିଆ ହୋଇ ସେ ଯୋଡ଼ାଟି ଗଡ଼ ପଡ଼ିଲେ, ଉଦୟକୁ କହିଲି ।

'ଦେଖିଲୁ, ମନୋବିଜ୍ଞାନ । ଆଦେଶକୁ ରୋଧ କଲେ, କିନ୍ତୁ ପ୍ରତିଯୋଗିତାକୁ କେମିତି ଡେଇଁ ପଡ଼ିଲେ ।'

ଆମେ ସଲାଡା ସହରରେ ପହଞ୍ଚିଲୁ, ହରିଣ ଶିଙ୍ଘର ଗୋଟିଏ ଟାଓ୍ୱାର କରାହୋଇଛି; ଆପଲଚେରି ଭରା ସହର, ଭ୍ରମଣକାରୀଙ୍କ ଯୋଗୁଁ ହୋଟେଲ ମୋଟେଲମୟ । ନିକଟବର୍ତ୍ତୀ ସଭନୋ ପର୍ବତ ଏ ଅଞ୍ଚଳରେ ବୃହତ୍ତମ, ଏହାର ଉଚ୍ଚତା ୭୦୩୮ ଫୁଟ—ବସନ୍ତରେ ବରଫ-ଭରା ଥାଏ ।

ତାପରେ ଆମେ 'କାନନ' ସହରରେ ପହଞ୍ଚିଲୁ—ପର୍ବତ ଯେଉଁଠି ସେଠି କେତୋଟି ପାର୍କ, ଏହି ସହରରେ ଆମେ ଘଣ୍ଟାଏ ଅଟକିଲୁ; ନିକକୁ ଜର, ଦେହରେ ଖଇଫୁଟା ତାତି, ରେଷ୍ଟୁରାଣ୍ଟରେ ହଠାତ୍ ବାନ୍ତି ହେଲ । ନାହିଁ କରୁ କରୁ ମ୍ୟାନେଜରର ବୁଢ଼ୀ ଆସି ପଡ଼ିଲା କାଗଜ ଗୋଟିଏ ଧରି ପୋଛି ପକାଇଲା । ତାର ମାତୃମୂର୍ତ୍ତିକୁ ନମସ୍କାର କଲି । ବୁଝିଲି କାହିଁକି ଜନନୀ ସ୍ୱର୍ଗାଦପି ଗରୀୟସୀ । ପୁଣି ଯେ ଜନନୀ ନ ହୋଇ ଜନନୀର କାର୍ଯ୍ୟ କରେ, ସେ କେତେ ବଡ଼, କଳନା କରିବ କାହାର ?

## କଲୋରେଡ଼ୋ ସ୍ପ୍ରିଙ୍ଗ୍ସ୍

'ନିକ'କୁ ବିଶ୍ରାମ ଦେବା ଲାଗି ଏଠି ରହିଲୁ । ଦୋକାନରୁ ବଭର ମାଂସ, ପନିପରିବା, ଫଳ, ରୁଟି କିଣି ଫେରିଲୁ ବେଳକୁ ଇସ

ଭାତ, ଡାଲି, ତରକାରି ବାଢ଼ିସାରିଲେଣି । ଖାଇପିଇ ଶୋଇ ପଡ଼ିଲୁ ସକାଳୁ ବୁଲି ବାହାରିଲି—ଯୁଆଡ଼େ ଯାନ ଗହଳି ନାହିଁ; ଫୁଟ୍‌ପାଥ ଦରଭଙ୍ଗା, ସ୍ଥାନେ ସ୍ଥାନେ ଗୋଡ଼ି ବାଲି ଉଜରଜ । ଲିଲ୍‌ଖିରି ପାହାଡ଼ ଶୃଙ୍ଗରୁ ତଳକୁ ଖସୁଛି ଧୀରେ ଧୀରେ, କର୍ଣ୍ଣିବଦଳାଇ । ନିର୍ଜନ । କେବଳ ଜଙ୍ଗଲରେ ବହୁ ପକ୍ଷୀଙ୍କର ମେଳା ବସିଛି । ଜଣକ ଦୁଆରେ ଟିକିଏ ପାଦ ଅଟକି ଗଲି—ମାଣିକ ବୁଦ୍ଧି ଗେଣ୍ଡୁ; ଧଳା, ଲାଲ, ଫିକା ଗୋଲାପ । ଆଉ ଆଗକୁ ପାଦ ପକେଇବାକୁ ସାହସ କଲିନାହିଁ, ଯେତେବେଳେ କୁକୁରର ଗର୍ଜନ ଶୁଣିଲି ।

ବୁଲିଆସି ବସିଥିବାବେଳେ ମୀରର ପାଦ ମୋ ଦେହରେ ବାଜିଲା, ସେ କ୍ଷମା ମାଗିଲା ନାହିଁ । 'ସରି' କହିବା ରୀତି ତ ଏଣେ ଜାଣନ୍ତି ନାହିଁ । ଉଦୟକୁ କହିଲି— ଶିଖଉନୁ କାହିଁକି ? ଏ କଣ ?

'ତୁଆ ତ ପାଦରେ ମୋଜା ପିନ୍ଧିଛନ୍ତି, କଣ ମଇଳା ଅଛି ? ବରଂ ମୁଁ କହିବି—ପାଟି ସବୁଠାରୁ ଅପରିଚ୍ଛନ୍ନ ।'

'ଚୁମ୍ବନ ଦେଲାବେଳେ ଆମେରିକାନ୍‌ଙ୍କର ସେ ସଚେତନତା ଥାଏ କି ? ଆମ ଦେଶରେ ବାପ ପୁଅ, ମା ଝିଅ ଅବଶ୍ୟ ଏକାଠି ଖାନ୍ତି; ଏକାଠି ନ ଖାଇଲେ ଅନେକଙ୍କୁ ସୁଖ ଲାଗେ ନାହିଁ । ଏହା କ୍ଷତିକାରକ, ସ୍ୱୀକାର କରିବାକୁ ହେବ । କିନ୍ତୁ ପଦାଘାତକୁ ଗୌଣ ମନେକରିବା ଉଚିତ ନୁହେଁ, ଏହା ଚରମ ଅପମାନ । ଭଗବାନ୍ ପଦକୁ ନିମ୍ନତମ ସ୍ଥାନ ଦେଇଛନ୍ତି, ବିଶ୍ୱର ସଂସ୍କୃତିରେ ମଧ୍ୟ ତାହା ସେହିଭଳି ଗୃହୀତ ହୋଇଛି । ଟିକିଏ ହାତ ବାଜିଗଲେ ପଦ ୧୦ ଲୋକେ କ୍ଷମା ମାଗୁଛନ୍ତି, ପାଦ ବାଜିଗଲେ କ୍ଷମା ନ ମାଗିବେ କାହିଁକି ? ଅବଶ୍ୟ ଗ୍ରେଟ ପିଲା, ସେ କିଛି ଜାଣେ ନାହିଁ, ଉଦୟ ମୋ ଯୁକ୍ତି ଘେନିଲା ।

## ସପ୍ତ ପ୍ରପାତ

ସପ୍ତପ୍ରପାତ ଦେଖିବା ଲାଗି ହାପ୍ସାନ୍ ପର୍ବତମାଳକୁ ଯାତ୍ରା କଲାବେଳେ ଜୀପ ଗୋଟାଏ ଛୁକ୍କି ଦେଲା । ମୋଟେଲ୍ ମ୍ୟାନେଜର

ଆଶୀର୍ବାଦ କରି କହିଲେ—ସୁସ୍ୱାସ୍ଥ୍ୟ, ସୁଖ ଭୋଗ କର, ଆମର ଯେପରି କହନ୍ତି—ଚିରଜୀବୀ ହୋଇ ଥା ।

ସପ୍ତ ପ୍ରପାତ ଦେଖିବା ଲାଗି ମୁଣ୍ଡ ପିଛା ଗୁଣ ଡଲାର୍ ଟିକେଟ ; ଘୋଡାରେ ବସି ଯାତ୍ରୀମାନେ ଯାଉଥାନ୍ତି । ଆମେ ମଟରରେ ଅନ୍ୟ ବୁଲଣି ବାଟରେ ଗଲୁ—ଦେଉଳଆ, ଗୋଳିଆ, ଛୁଞ୍ଚମୁନିଆଁ ପାହାଡସବୁ, କେଉଁ ଲଣ୍ଡିତ, କେଉଁ ନାନା ବର୍ଣ୍ଣର ପଣ୍ଡରିରେ ମଣ୍ଡିତ, କେଉଁ ବିବର୍ଣ୍ଣ; ପକ୍ୱତୃଣ ହରିଦ୍ରାରଞ୍ଜିତ, ମଝି ମଝି ଫୁଟିଛି ବଟର୍‌କପ୍ ଫୁଲ । ପର୍ବତର ବାଙ୍କେ ବାଙ୍କେ ସାତୋଟି ପ୍ରପାତ । ଅତ୍ୟୁଚ୍ଚ ପ୍ରପାତ, ଉତ୍ତୁଙ୍ଗ ପର୍ବତ, ଗଭୀର ଗର୍ତ୍ତ, ରଙ୍ଗୀନ୍ ଶୈଳମାଳା କିମ୍ବା ଆଗ୍ନେୟଗିରିର ବିବର୍ଣ୍ଣ ଭସ୍ମୀ-ଭୂତ ଭୂମି ଯାହାସବୁ ଦେଖି ଆସିଛୁ, ତା ଆଗରେ ଏ ସପ୍ତ ପ୍ରପାତ କଣ ? ମହତ୍ତମ ସ୍ତରରୁ ଅତି ନିମ୍ନକୁ ଖସିଗଲା ପରି ଲାଗିଲା । ପ୍ରାତଃ ପରବର୍ତ୍ତୀ କାରଣରେ ସ୍ନାତ ଉନ୍ନତ ଆନତ, ପ୍ରପାତ ପର୍ବତ, ମୁକ୍ତା ମଞ୍ଜୁଳ ପାଇନ୍ ଶାଖା, ସୂର୍ଯ୍ୟମୁଖୀ ଓ ବଟରକପ୍ ଦେଖୁ ଦେଖୁ ଆମେ ଫେରିଲୁ ଗୋଟିଏ ସମାଧି ପ୍ରାନ୍ତର ବାଟେ—କଲୋରାଡୋ ସ୍ପ୍ରିଙ୍ଗ୍‌ସ୍ ସହରର ଅଜ୍ଞାତ ଏଠି ଶୋଇଛନ୍ତି ପୁଷ୍ପାସ୍ତୃତ ହୋଇ; ସେମାନେ ଯଦି ଏଇ ସହରରେ ଥିଲେ ରକ୍ତ ମାଂସ ଶରୀରରେ, ଫସଲରେ ଜଳ, ଘାସରେ ପ୍ରାନ୍ତର, ଫୁଲରେ ଘର ସଜାଇ ରଖିଥିଲେ ଯେବେ କେଉଁ ମାୟା ମମତାରେ, କଳ୍ପିତ ମୁଖଗୁଡ଼ିଏ ଆଖି ଆଗରେ ନାଚିଗଲା ମୋର, ମଳିନ, ମ୍ରିୟମାଣ ।

## ନଥପୋଲ୍

ଗୋଟିଏ ପାଖରେ ପାହାଡ଼ ବିବର୍ଣ୍ଣ, ରକ୍ତାକ୍ତ, ଉପରେ ପାଇନ୍ ବନ; ଅନ୍ୟ ଏକ ପାଖର ପାହାଡ଼ ରୌଦ୍ର ଉଜ୍ଜ୍ୱଳ, ଏଇ ଦୁଇ ମଧ୍ୟବର୍ତ୍ତୀ ଉଚ୍ଚ ପର୍ବତ ମେଘ ମେଦୁର । ପାହାଡ଼ ମଝିରେ ନର୍ଥ୍ ପୋଲ୍—ଏହାକୁ ଚିଡ଼ିଆଖାନା କହିଲେ ଯଥେଷ୍ଟ ହେବ ନାହିଁ—ବାଟରେ ଭ୍ରମଣକାରୀଙ୍କ ଶିଶୁ ମନୋରଞ୍ଜନ ଲାଗି ନର୍ଥ୍‌ପୋଲ୍ ନାନା ବ୍ୟବସ୍ଥା କରିଛି ।

ପ୍ରଥମେ ନଯ଼ନ ପଥର ଅତିଥି ହେଲେ ତିନି ଗୋଟି 'ପ୍ରାଣୀ—ହ୍ୱାନର୍, ପ୍ରାନର, ହ୍ଲାନର—ବହୁ ଶାଖାଯୁକ୍ତ ଶୃଙ୍ଗ, ହରିଣ ଭଳି ମୁହଁ, ଦେହ, ହଂସ । ପାଖକୁ ଡିଆଁକୁ ମନା ଦେଇଯାଉଛି—ଉତ୍ତରମେରୁ ଅଞ୍ଚଳରୁ ଧରିହୋଇ ଆସିଛନ୍ତି ଏମାନେ—ବଲ୍‌ଗାହରିଣ ।

ଏ କଣ ? ଛତ୍ର ! ଛତାକାରର ପ୍ଲାଷ୍ଟିକ୍ ଛତ୍ର; ମିକ ତା ତଳେ ଯାଇ ବସି ପଡ଼ିଲା । ଗୀତା ଆଜ ମୀରାକୁ କହିଲି—

ଦେଖିବ ଆସ,
'ଛତ୍ର ତଳେ ମୂଳେ ବେଙ୍ଗଟିଏ ବସି
ଆପେ ବୋଲାଉଛି ରଜା !'

ଗୋଟିଏ କୋଠରେ ପିଲାମାନେ ବସିଛନ୍ତି । ତାକୁ ଘେରି ଦଉଡ଼ୁଛି । ପିଲା ମଝିରେ ଗାଡ଼ି ଚଳାଉଛନ୍ତି । ଅଟକାଇବା ଲାଗି ବାଟରେ ଗୋଟିଏ ଲୁହା ଧାରଣା ଲଗା ହୋଇଛି । ଷ୍ଟେସନଟି ଉଚ୍ଚା, ଷ୍ଟେଟ ଇଞ୍ଜିନ୍‌ଟିଏ; ରେଲ ଧାରଣା ଉପରେ ଚାଲୁଛି । ପିଲା ଓହ୍ଲାଉଛନ୍ତି, ଚଢ଼ୁଛନ୍ତି—ଗୀତାର ଭାଷାରେ ଏହା ଚ-ଚୁ ରେଲଗାଡ଼ି ।

ଝରଣାଟି ଝରି ଯାଉଛି; ବାଟରେ ପ୍ରପାତ ସୃଷ୍ଟି କରି । ତଳ ପୋଖରୀରେ ମିଛଗ ପାଣି ପିଉଛନ୍ତି, ରାଜହଂସ ପହଁରୁଛନ୍ତି । ପ୍ରପାତ ପାଖରେ ଗୋଟିଏ ମୟୂର ଡେଣା ମେଲାଇ ଛିଡ଼ା ହୋଇଛି—ଝରରେ ମାଳ ଜଳମଯ଼ କଣ୍ଠ ତାର ଝକ୍ ଝକ୍ କରୁଛି, ଜଳ ଉଠୁଛି ଫୁଆରା ପରି ଚନ୍ଦ୍ରକା । ଆମେରିକାରେ ଗ୍ରୁଗଲ ଝରଳ, ଶିଶୁମାନଙ୍କ କୌତୁକ ପ୍ରାଣୀ । କେତେକ ତା କଡରେ ଛିଡ଼ା ହୋଇ ଫଟୋ ନେଉଛନ୍ତି । ସେ ପ୍ୟାଣ୍ଡ୍ ଖେଳାଇବା ଦେଖି ମୀରା ଚିତ୍କାର କଲା—

·ଏଉଟା କଏ ?

ମିଁ ମିଁ କା ମାଣିକ ରଜା
ଶିଙ୍ଘ ଦୁଇଟା ଗୋଜା ଗୋଜା
ଏକ ଶିଙ୍ଘରେ ପର୍ବତ ଚାଡ଼େ
ଦୁଇ ଶିଙ୍ଘରେ ମଣିଷ ମାରେ !

ମୀଗ୍ବକୁ ଟେକ ଧର କହିଲ—ମିଟକୁ ଡରୁନୁ କାହିଁକ ? ସେ କଣ ବାଘ ନା ଗଧିଆ ? ଶିଙ୍ଘଗୁଡ଼ାକ ଗୋଜଆ ଗୋଜଆ, କନ୍ତୁ ମାରେ ନାହିଁ । ଆଖି ମୁଦ୍ରଚିଲ ପର ଦଶେ, କନ୍ତୁ ବଡ଼ ନିରୀହ, ଅହିଂସ୍ର । କଛି କରବ ନାହିଁ । ମୀଗ୍ବ ତା ସଙ୍ଗେ ବନ୍ଧୁତା ଜମେଇଲ ।

ହଠାତ୍ ଦକ୍ଷିଣ ଆମେରିକାର କଳା କାପୁଚିନ୍ ମାକଡ଼ଟିଏ ଗୀତା କାନ୍ଧକୁ ଡେଇଁପଡ଼ି ତା ମୁଣ୍ଡରେ ଖୋସା ହୋଇଥିବା କଟର୍‌କଫଟି ଖାଇଦେଲ । ମାକଡ଼ ନଗ୍ବଳ ତାକୁ ଆଶ୍ୱାସନା ଦେଲା—ଡରନ, ସେ ପଇସା ମାଗୁଛି, ଦଅ । ଗୀତା ତାକୁ ପାଞ୍ଚ ସେଣ୍ଟ୍ ଦେଲ । କାପୁଚନ୍ ସେ ପଇସା ନେଇ ବାକ୍‌ସରେ ପକାଇଦଲ ।

ନର୍ଥଚୋଲର ଦୋକାନଟି ସବୁଠାରୁ ସଜ୍ଜିତ, ଚିତ୍ତାକର୍ଷକ । କୌତୁକ ଛନ୍ଦବନ୍ଧ ଖେଳଣା; ପିଲଙ୍କ ହସଖେଳରେ ଘରଟି ଯେପର କ ପୂର ରହିଛି । ଏଠି ତ ଏବୁବେଳେ 'କ୍ରିସ୍‌ମାସ୍' ଲହବ; କ୍ରିସମାସ୍ ଗଛସବୁ ବଲ୍ବ ଜରରେ ସଜ୍ଜିତ, ତା ମଧ୍ୟରେ ନାନା ରଙ୍ଗର ଆଲୋକ ଚକ୍ ଚକ୍ କରୁଛି ।

ଯୁବତୀମାନେ ଜନ୍ମଷପଙ୍କ ଚର୍ଚ୍ଚା କରୁଛନ୍ତି—ଉତ୍ସବର ଭୂଷଣ ଓ ପ୍ରସାଧନରେ ଅପସରା ପର ଦଶୁଛନ୍ତି । ମୁଣ୍ଡରେ ରଙ୍ଗୀନ୍ ପକ୍ଷୀ ପରର ମୁକୁଟ, ଗାଢ଼ ଲଲ, ନାଲ, ଜରଦଆ ପୋଷାକ ଆଖି ଅଟକ ଯାଉଛି । ଯେପର ଦୋକାନ ସେପର ଦୋକାନୀ । ଖେଳ କୌତୁକର ରଙ୍ଗ ଲଗିଛି ଘରଦ୍ୱାରରେ, ଖେଳ କୌତୁକ ମଧ୍ୟରେ ପଇସା ଘୁଣ ନେବାର ଉପାୟ ଖଞ୍ଜା ଯାଇଛି ।

ସେ ଦୋକାନରେ ଯେଉଁ ଦାଢ଼ିଆ ବୁଢ଼ା ବସିଛନ୍ତି ସେ ସବୁଠାରୁ ବଡ଼ ଆକର୍ଷଣ, ସେ ଏହି ଦୋକାନର ବଡ଼ ଚଳାଚନ; ସେ ଶିଶୁପ୍ରେମୀ ସେଣ୍ଟ୍ ନିକୋଲସ୍‌ଙ୍କ ଭୂମିକାରେ ଅଭିନୟ କରୁଛନ୍ତି । ବେଥେଲହେମ୍‌ର ଶିଶୁ ଯିଶୁଖ୍ରୀଷ୍ଟ, ଜଗତକୁ ଭଗବାନଙ୍କର ସର୍ବଶ୍ରେଷ୍ଠ ଦାନ । ଏହି ଦାନ ଲାଗି ନିକୋଲାସ୍ ଭଗବାନଙ୍କୁ ଧନ୍ୟବାଦ ଦେଇଥିଲେ । ଅନ୍ୟ ଶିଶୁମାନେ ମଧ୍ୟ ଯିଶୁଙ୍କର ପ୍ରିୟ, ଏମାନଙ୍କ ମଧ୍ୟରେ ସ୍ୱୟଂ ଯିଶୁ ବିଦ୍ୟମାନ । ଏହି ବିଶ୍ୱାସରେ ନିକୋଲାସ୍ ଶିଶୁମାନଙ୍କ ଲାଗି ଖାଦ୍ୟ, ବସ୍ତ୍ର ଓ ନାନା ଖେଳଣା ଉପହାର ଗ୍ରହଣ କରୁଥିଲେ । ନିକୋଲାସ୍ ଲୋକପ୍ରିୟ ନିକ୍ ନାମରେ ଖ୍ରୀଷ୍ଟିୟାନ୍ ଜଗତରେ ପରିଚିତ ।

କ୍ରିସ୍‌ମାସ୍ ଉତ୍ସବରେ ଲୋକେ ବନ୍ଧୁବାନ୍ଧବଙ୍କୁ, ବିଶେଷତଃ ସେମାନଙ୍କ ପିଲାମାନଙ୍କୁ ନାନା ଖେଳଣା ଉପହାର ଦେଇ ଆସୁଛନ୍ତି । ସେଇ ଶିଶୁସ୍ନେହୀ ନିକ ଏବେ ପ୍ରାଣେ ପ୍ରାଣେ ଅମର । ତାଙ୍କର ଏବ ନାମ ସାନ୍ତାକ୍ଲଜ । ନର୍ଥପୋଲର ଉପହାର ଦୋକାନଟି ତାଙ୍କ ସ୍ମୃତିରେ ସାନ୍ତା ନାମରେ ନାମିତ । ଜଣେ ଶ୍ମଶ୍ରୁଳ ବୃଦ୍ଧ ବସିଛନ୍ତି ସାନ୍ତାକ୍ଲଜ୍ ହୋଇ—ହସ ଖୁସିରେ ଭରପୂର ହୋଇ; ନାନା କୌତୁକ କଥାର ଭଣ୍ଡାର ସେ । ପିଲାମାନଙ୍କୁ ନେଇ କୋଳରେ ବସାଉଛନ୍ତି, ରଙ୍ଗୀନ୍ ଫଟୋ ନିଆ ଯାଉଛି ।

"Merry chrismas, goodness for all."

ସାନ୍ତାକ୍ଲଜ୍‌ଙ୍କ ସ୍ନେହାଶୀର୍ବାଦ ନେଇ ନର୍ଥପୋଲ୍‌ରୁ ଫେରିଲୁ ।

## ମହମ ଯାଦୁଘର—

ଲଞ୍ଚ୍ ପରେ ଉଡ଼ିଯିବ ଗଲ ମାଛି ମାରି । ମୁଁ ଶୋଇଲି । ସ୍ୱଳ୍ପଟା ବେଳକୁ ନିଦ ଭାଙ୍ଗିଲା; ଝଡ଼ ପବନ, ପାଇନ୍ ଓ ଓକଲେଇ ମର୍ମର ଗର୍ଜନ ସ୍ୱରକୁ ଉଠିଥାଏ । ପାହାଡ଼ ଏ ମୁଣ୍ଡରୁ ସେ ମୁଣ୍ଡକୁ ଛୁଟିଥାଏ ମେଘ ପବନରେ ବ୍ୟସ୍ତବ୍ୟସ୍ତ ହୋଇ । ଦିନଟା ବୃଥା ହୋଇ ଯାଉଛି ।

ମୁଁ ବ୍ୟସ୍ତ ହୋଇ ଛୁଟିଲି ଓ୍ୱାକ୍‌ସ ମ୍ୟୁଜିଅମ୍‌ । ଏହା'ର ଅଧିକାଂଶ ଜଣେ ବ୍ୟବସାୟୀ ।

ସାମ୍ନାରେ ଦୋକାନ, ପଛରେ ଯାଦୁଘର; ଯାଦୁଘର ଦେଖାଳି ଅବଶ୍ୟ କିଛି ଜିନିଷପତ୍ର କିଣିବେ । ଟିକେଟର ମୂଲ୍ୟ ଏକ ଡଲାର୍ ପଚାଶ ସେଣ୍ଟ ।

ମହମରେ ଯାବତୀୟ ଦୃଶ୍ୟ, ଜୀବଜନ୍ତୁ ଓ ମନୁଷ୍ୟର ମୂର୍ତ୍ତି ଗଢ଼ା ଯାଇଛି, ବାସ୍ତବ, ଜୀବନ୍ତ; ଅତୀତର ଭୟାବହତା ଓ କାରୁଣ୍ୟକୁ ଆଖି ଆଗରେ ନଚାଇ ଦିଏ । ଭ୍ରମିଗଲି ଅତୀତର ରୋମାଞ୍ଚକର ଘଟଣାକୁ ଅଟକାଇ ରଖା ହୋଇଛି ଯେପରି ।

ବ୍ୟକ୍ତିଗତ ସମ୍ପତ୍ତି, କିନ୍ତୁ ଜାତି ନାମରେ ଏହା ଚଳୁଛି । ଯେ କରିଛି ସେ ଗୋଟାଏ ଛୁଞ୍ଚ ବ୍ୟବସାୟୀ ନୁହେ । ତାର ଜାଣିପଣା ବା କଳାଜ୍ଞାନ ଅଳ୍ପ ନୁହେ । ଯେଚ୍ଛା ତା ଗୋଟାଏ କଣ ଠକିବା ସ୍ୱଭାବ ତାର ନୁହେ, ଏଠା ଜନସାଧାରଣ ମଧ୍ୟ ସହଜରେ ଭୁଲି ଯିବେ ନାହିଁ । ତେଣୁ ବ୍ୟବସାୟୀ ଖୋଜି ଲୋଡ଼ି ଆଣିଛି, ଜାତିର ଯାହା କିଛି ଗୌରବର ବସ୍ତୁ, ଯାହା ଚିତ୍ତ ଉନ୍ମାଦକ, ରୋମାଞ୍ଚକର—ଅବଶ୍ୟ ଦୃଷ୍ଟି ଟିକିଏ ଢଳୁଛି ଜଟିଳ, କ୍ରୂର, ଭୟଙ୍କର ପ୍ରତି । ଦୁଃସାହସିକ ଘଟଣା ଶୁଣିବା ଲାଗି ଲୋକେ ଉଦ୍‌ଗ୍ରୀବ ।

କାଉବୟ୍‌ଠାରୁ କବିଙ୍କ ପର୍ଯ୍ୟନ୍ତ ତା କଳନାରେ କେହି ଶ୍ରେଷ୍ଠ ନୁହେ । ଜାତିକୁ ଗଠନ କରିବାରେ କାହାରି ଦାନ ନଗଣ୍ୟ ନୁହେ । ନେଡବୁଣ୍ଟଲାଇନ୍ (ଔପନ୍ୟାସିକ), ବ୍ରେଟ୍‌ହାର୍ଟେ ( ଔପନ୍ୟାସିକ ); ଫ୍ରେଡରିକ୍ ରେମିଂଟନ୍ (କଳାକାର) ଯେପରି ସ୍ଥାନ ପାଇଛନ୍ତି, ସେହିପରି ଗୋପାଳକ ଜନ୍ ଚିସମ୍ ମଧ୍ୟ ସ୍ଥାନ ପାଇଛନ୍ତି । ସେ ପହିଲେ ଗୋଟିଏ ଗାଈ ପାଳିଥିଲେ, ତାଙ୍କ ଜୀବନ କାଳ ମଧ୍ୟରେ ଗୋ ସଂଖ୍ୟା ହେଲା ଏକରୁ ଏକ ଲକ୍ଷ । ସେହିପରି ସେ ବନର ଜଣେ ଦରିଦ୍ର ବ୍ୟକ୍ତି—ତାଙ୍କ ନାମ ଶଗୁଡ଼ କଙ୍ଗ୍, ଅସାଧାରଣ ସାହସ ଓ ଶୌର୍ଯ୍ୟବଳରେ ନିଜ ବଂଶଧରଙ୍କ ଲାଗି ରଖିଗଲେ ଅଧ ନିୟୁତ ଏକର ଗୋଚାରଣ ଭୂମି ।

ଆମ ଯାଦୁଘରେ କାଠଦସ୍ତ ପାଣ୍ଡୁଲିପି ପ୍ରଚୁର; କିନ୍ତୁ ସ୍ଥୂଳ ରୂପରେ କିଛି ନାହାନ୍ତି । ଏଠି ଗାଈଆଳଙ୍କ କଥା ପଚାରେ କିଏ ? ସାଧାରଣ ଜୀବନରେ ବୀର ଅଳ୍ପ ନାହାନ୍ତି, ବୀରତ୍ୱର କାହାଣୀ ଅଳ୍ପ ନାହିଁ । କିନ୍ତୁ ଆମେ ପୂଜିବା ଲାଗି ଅସାଧାରଣଙ୍କୁ ଖୋଜିଯାଉ । ତାଙ୍କୁ ପୂଜି ଆମଠାରୁ ଦୂରେଇ ଦେଉ, କିନ୍ତୁ ଆମ ଭିତରର ଜଣେ କରିପାରୁ ନାହିଁ । ତେଣୁ ସାଧାରଣର ପ୍ରତିଭା ଆଜି ମରି ଯାଉଛି । ତା ବଦଳରେ ପୂଜା ପାଉଛି କୁଡ଼ କୁଡ଼ ପାଷାଣ ।

ଆମ ଗାଆଁର ଗାଈଆଳ କାଳିଆ କଥା ମନେ ପଡ଼ିଲା । ଆମ ଗାଈଙ୍କ ହାଡ଼କଙ୍କାଳ ଦିଶୁଥିବା ବେଳେ ତା ଗାଈ ପେଟ ଫାଟି ପଡୁଥାନ୍ତି, ଗାଈ ତା ପଛେ ପଛେ ଗୋଡ଼ାନ୍ତି, ନାଆଁ ଧରି ଡାକିଲେ 'ଓ' କରନ୍ତି । ଟୋକିଆ ଚରେଇ ଚରେଇ ସେ ଗାଈଙ୍କ ପେଟ ପୂରେଇଥାଏ, ଖୋଇବାକୁ ଟେଣ୍ଡେରେ ଧନ ନାହିଁ ତାର । ଏହିପରି କେତେ ପ୍ରତିଭାଶାଳୀ ଗୋପାଳକଙ୍କ ନାମ ଓଡ଼ିଶା ଓ ଭାରତରୁ ଲୋପ ପାଇ ଯାଉଛି । କୃଷ୍ଣ ଖଟୁଲିରେ ଥିବାରୁ ତିଷ୍ଠି ଯାଇଛନ୍ତି ମାତ୍ର । ଗାଈଆଳର ପ୍ରତିଭାକୁ ନ ଚିହ୍ନିଲେ ଗୋ ସମ୍ପଦର ଉନ୍ନତି ହେବ କିପରି ?

ସାହିତ୍ୟିକ, କଳାକାର ଓ ଗାଈଆଳଙ୍କ ମଝିରେ ସ୍ଥାନ ପାଇଛନ୍ତି ଜଣେ—ଯେତିକି ଭଲ, ସେତିକି ମନ୍ଦ, ଯେତିକି ବିଜ୍ଞ, ସେତିକି ମୂର୍ଖ—ଗୁଲିସ, ଇ. ବୋଲ୍‌ଟନ—ବିପଥଗାମୀ ପ୍ରତିଭା । ସେ ଡକେଇତି କରନ୍ତି, ପୁଣି କବିତା ଲେଖନ୍ତି । ଡକେଇତି କଲାବେଳେ ସେ କବିତା ଛାଡ଼ି ପାରି ନାହାନ୍ତି, ବଲ୍ଲମ୍ ଓ କଲମ୍ ତାଙ୍କର ଏକାବେଳକେ ଚାଲିଥିଲା । କବିତା ସବୁ ନେଇ ସେ ଖାଲି ଏକ୍‌ସପ୍ରେସ ବାକ୍‌ସରେ ପ୍ରତିଦିନ ପକାଇ ଦେଇ ଆସନ୍ତି । ସୁନାମ ଓ ଦୁର୍ନାମ ତାଙ୍କର ଏକାବେଳକେ ବ୍ୟାପୁଥିଲା । ଡକେଇତି କରୁ କରୁ ସେ ଦିନେ ଧରା ପଡ଼ିଲେ, ଜେଲ ଗଲେ, କିନ୍ତୁ ଅତ୍ୟୁତ୍ତମ ବ୍ୟବହାର ଦେଖାଇଥିବା ଯୋଗୁ ସେ ଅଳ୍ପଦିନ ମଧ୍ୟରେ ମୁକ୍ତି ଲାଭ କଲେ । ତାପରେ ଅନ୍ତର୍ଦ୍ଧାନ; ବୋଲଟନ କୁଆଡ଼େ ଗଲେ ? ତୀର୍ଥ ? ସେବାଶ୍ରମ ? ନା ବରଣ କଲେ ମୃତ୍ୟୁ, ଶାନ୍ତ ଅନୁଶୋଚନାରେ ?

ଆରେ ଏ ତ ଗୋଟିଏ ଡିଟେକ୍‌ଟିଭ୍‌ ଉପନ୍ୟାସ ମୂର୍ତ୍ତି ହୋଇଛି । ବଡ଼ ବଡ଼ ଡକାୟତି ରୂପାୟିତ ହୋଇଛି, ନାମଜାଦା ଡକାଇତମାନେ ସ୍ଥାନ ପାଇଛନ୍ତି, ସେମାନଙ୍କ ଲୁଣ୍ଠନ ବା ନରହତ୍ୟାକୁ ଉଚ୍ଚ ସ୍ଥାନ ଦିଆ ହୋଇନାହିଁ । ସେମାନେ ସମ୍ମାନିତ ହେଉଛନ୍ତି ଅସୀମ ସାହସିକତା ଓ ବୀରତ୍ୱ ଯୋଗୁଁ । ସେମାନଙ୍କର ବୀରତ୍ୱ ଥିଲା, କିନ୍ତୁ ବିପଥଗାମୀ । ଉପଯୁକ୍ତ କ୍ଷେତ୍ର ପାଇଥିଲେ ସେମାନେ ଐତିହାସିକ ବୀରତ୍ୱର ପରିଚୟ ଦେଇ ପାରିଥାନ୍ତେ ।

ଜେସି ଜେମ୍‌ସ ହେଉଛନ୍ତି ଅମେରିକାର ରବିନ୍‌ ହୁଡ଼ । ସେ ଓ ତାଙ୍କ ଭାଇ ଫ୍ରାଙ୍କ୍‌ ଜେମସ୍‌ ଗୋଟିଏ ତରୁଣ ଡକେଇତ ଦଳ ଗଢ଼ିଥିଲେ । ମଣିଷ ହିସାବରେ ଦୁଇ ଭାଇଙ୍କର ଦେଶରେ ଯଥେଷ୍ଟ ସମ୍ମାନ ଥିଲା । ସେମାନେ ଯେପରି ଦାମୀ ସେହିପରି ମହତ୍‌ । ଯେପରି କ୍ରୂର, ହିଂସ୍ର ସେହିପରି ଭୟଙ୍କର ହତ୍ୟାକାରୀ । ସେମାନେ ଛୋଟ ଛୋଟ ଚୋରି ଡକେଇତି କରୁ ନ ଥିଲେ । ଲୁଣ୍ଠନ କରୁଥିଲେ ଟ୍ରେନ୍‌ ବା ବ୍ୟାଙ୍କ୍‌ । ଲକ୍ଷ ଲକ୍ଷ ଡଲାର ଲୁଟ୍‌ କରି ସରକାରଙ୍କ ପ୍ରବଳ ଚେଷ୍ଟା ସତ୍ତ୍ୱେ ସେମାନେ ଧରା ପଡ଼ି ନ ଥିଲେ ।

ଏ ଦୁଇ ଭାଇଙ୍କର ଗୁରୁ ଥିଲେ ଚାର୍ଲସ କ୍ୱାଣ୍ଟ୍ରିଲ୍‌; ତାଙ୍କ ପରି ରକ୍ତଶୋଷୀ, ଆତତାୟୀ ଏ ପର୍ଯ୍ୟନ୍ତ ଆଉ ଜଣେ ଆମେରିକାରେ ଜନ୍ମ ଗ୍ରହଣ କରି ନାହାନ୍ତି ।

ସେ ଦିନେ ସ୍କୁଲର ଶିକ୍ଷକ ଥିଲେ, ବାଇବଲ ସ୍କୁଲର ସୁପରି-ଣ୍ଟେଣ୍ଡେଣ୍ଟ । ଉତ୍ତମ ମନୁଷ୍ୟ ହେବା ଲାଗି ଛାତ୍ରମାନଙ୍କୁ ସଦୁପଦେଶ ପ୍ରଦାନ କରୁଥିଲେ । କିନ୍ତୁ କଣ ହେଲ—ଆଦର୍ଶ ଉପରୁ ତାଙ୍କର ବିଶ୍ୱାସ ତୁଲିଗଲା; ସେ ହେଲେ ପ୍ରଚଣ୍ଡ; ଭୟଙ୍କର ଆଗ୍ନେୟଗିରି, ଜେମସ୍‌ ଦୁଇ ଭାଇଙ୍କୁ ସେ ଅଶ୍ୱାରୋହଣ, ବ୍ୟାଙ୍କ ଓ ଟ୍ରେନ୍‌ ଡକାୟତି, ନରହତ୍ୟା ଶିକ୍ଷା ଦେଇଥିଲେ । ଜୀବନରେ କେତେ ଲୋକ ଯେ ବିନାଶ କରିଥିଲେ କହିବା ଦୁଷ୍କର ।

ଏହି ଡାକୁଙ୍କ ନିକଟରେ ଛିଡ଼ା ହୋଇଛି ଜଣେ କୁକୁର ହତ୍ୟାକାରୀ । କୁକୁର ଦେଖିବା ମାତ୍ରେ ସେ ହତ୍ୟା କରୁଥିଲା, ବନ୍ୟ ହେଉ ବା ପାଳିତ

ହେଲ । ଏଇ ନିର୍ଦ୍ଦିଷ୍ଟ ଜୀବହତ୍ୟା ଯେପରିକ ତା ଜୀବନର ବ୍ରତ ଥିଲା, ଶ୍ରେଷ୍ଠ ବିନୋଦନ । ବହୁ ପ୍ରୟାସରେ ସେ ଧରା ପଡ଼ି ନଥିଲା, ଯେଉଁଦିନ ଧରା ପଡ଼ିଲା, ସେହି ଦିନ ଆତ୍ମହତ୍ୟା କଲା ।

ତାଙ୍କ ନିକଟରେ ସେ କିଏ ? ହେନେରୀ ଷ୍ଟାର୍, ଡକାୟତିରେ ଅଦ୍ଭୁତ କୌଶଳ ଓ ସାହସ ପ୍ରଦର୍ଶନ କରିଥିଲା । ସେଥିରେ ମୁଗ୍ଧ ହୋଇ ସଭାପତି ଥିଓଡ଼ର୍ ରୁଜ୍‌ଭେଲ୍‌ଟ ତାକୁ କ୍ଷମା ପ୍ରଦାନ କରିଥିଲେ । ତା ପରେ ସେ ଆମ ଓଡ଼ିଶାର ବଦାନ୍ୟ ଉତ୍କେଇଡ଼ ପରି ବିଭା ହୋଇ ଘର ସଂସାର କଲା । କିନ୍ତୁ ପ୍ରକୃତି କେତେ ଜଣ ଛାଡ଼ି ପାରନ୍ତି ? ଯେ ବାଳ୍ୟରୁ ଦସ୍ୟୁ ଜୀବନ ବିତାଇଛି, ତାକୁ ଏ ଧୀର ସ୍ଥିର ଜୀବନ ଭଲ ଲାଗିବ କାହିଁକି ? ଗୋଟିଏ ବ୍ୟାଙ୍କରେ ଡକାୟତି କରୁ କରୁ କଟୁଆଳୀର ଗୁଳି ମାଡରେ ତା ଜୀବନ ଗଲା ।

ଅନ୍ୟ ଏକ ଦୃଶ୍ୟରେ ଜନ ଓ୍ୱେଲ୍‌ସେଲ ହାର୍ଡିନଙ୍କୁ ଦେଖିଲି । 'ବାଳ କାଳରୁ କାହ୍ନୁ ଘରବୁଡ଼ା'—ପିଲା ଦିନରୁ ବିଭ୍ରାନ୍ତ ସେ । କିନ୍ତୁ ଭଲ ଘରେ ସେ ଲାଳିତ ପାଳିତ ହୋଇଥିଲେ, ତାଙ୍କ ପିତା ଜଣେ ଆଦର୍ଶ ଶିକ୍ଷକ, ମାତା ସୁଶିକ୍ଷିତା । ଦୁହେଁ ପୁଅକୁ ଭଲ ମଣିଷ କରି ଗଢ଼ିବାକୁ ଚେଷ୍ଟା କରିଥିଲେ । କିନ୍ତୁ ପୁଅ ସେମାନଙ୍କ କଥା ଶୁଣିଲା ନାହିଁ କି ଘରେ ରହିଲା ନାହିଁ । ମାତ୍ର ପନ୍ଦର ବର୍ଷ ବୟସରେ ସେ ଗୋଟିଏ ନିଗ୍ରୋ ବାଳକକୁ ହତ୍ୟା କଲା, ତାକୁ ଆରେଷ୍ଟ କରିବାକୁ ଆସୁଥିବା ତିନିଜଣ ପୁଲିସ୍‌କୁ ସଙ୍ଗେ ସଙ୍ଗେ ବିନାଶ କଲା ।

ତାପରେ ସେ ଧରା ପଡ଼ିଲା, ପଚିଶି ବର୍ଷ ଜେଲ ଦଣ୍ଡ ଭୋଗିଲା । ଜେଲରେ ଥିବା ବେଳେ ତା ମନରେ ସଦ୍‌ବୁଦ୍ଧି ଜାତ ହେଲା, ସେ ଆଇନ୍ ପଢ଼ିଲା । ମୁକ୍ତିପରେ ଭଲ ଆଇନଜ୍ଞ ଭାବରେ ନାମ କମେଇଲା । କିନ୍ତୁ ମନ୍ଦ ପ୍ରକୃତି ପୁଣି ଘୋଟି ଆସିଲା । ସେ ଜୁଆ ଖେଳିଲା ଓ ଜଣେ ଜୁଆଡ଼ୀ ଦ୍ୱାରା ନିହତ ହେଲା ।

କେଜିଙ୍ଗସ୍ କିନ୍ତୁ ନିଜକୁ ସଂଶୋଧନ କରି ପାରି ଥିଲେ । ବ୍ୟାଙ୍କ ଓ ଟ୍ରେନ୍ ଡକାୟତି ଯୋଗୁଁ ସେ ଜେଲ ଯାଇଥିଲେ । ଜେଲ୍‌ରୁ

ଫେରିବା ପରେ ସେ ଆଇନଜ୍ଞ ଓ ଲେଖକ ହିସାବରେ ସୁନାମ ଅର୍ଜନ କଲେ । ଶେଷ ଜୀବନରେ ସେ ଓକାଲହୋମାର ଗଭର୍ଣ୍ଣର ହେବା ପାଇଁ ଚେଷ୍ଟା କରିଥିଲେ ।

ଜେମ୍‌ ବ୍ରିଜରଙ୍କ ପ୍ରତିମୂର୍ତ୍ତିକୁ ଏଠି ସୁସମ୍ମାନ ଦିଆଯାଉଛି । ସେ ଏଲୋଷ୍ଟୋନ୍‌ ଗାଇଡର୍‌ମାନଙ୍କର ଅଗ୍ରଦୂତ, ସେ ରକି ପର୍ବତର ସ୍ତରେ ସ୍ତରେ ଆରୋହଣ କରିଥିଲେ, ପର୍ବତର ପ୍ରତ୍ୟେକ ପଥ ସେ ଜାଣିଥିଲେ । ସଲ୍‌ଟଲେକର ପାଣି ସେ ପ୍ରଥମେ ଚାଖିଥିଲେ ।

ଓ୍ୱାଇଲ୍ଡ ବୋକେଟ୍‌ ଜଣେ ଭଲ ଶିକାରୀ । ଜୀବନରେ ସେ କେବେ ଲକ୍ଷ୍ୟଭ୍ରଷ୍ଟ ହୋଇ ନ ଥିଲେ । ତାଙ୍କ ଶିକାର ସମ୍ପର୍କରେ ବହୁ ଗଳ୍ପ ପ୍ରଚଳିତ ।

ତା ଛଡ଼ା ଶ୍ରେଷ୍ଠ ସେନାପତି, ଆବିଷ୍କର୍ତ୍ତା, ଉଦ୍‌ଭାବକ, ବଣିକପତିଙ୍କ ପ୍ରତିମୂର୍ତ୍ତିକୁ ଏଠି ସମ୍ମାନ କରାଯାଇଛି । ଆମେରିକାନ୍‌ ନିଜ ଦେଶର ପ୍ରତିଭାକୁ କିପରି ପୂଜା କରେ, ତାର ପ୍ରମାଣ ଏଥିରେ ଓ ଏହିପରି ଶତ ଶତ ମ୍ୟୁଜିଅମ୍‌ରେ ମିଳେ ।

ମୁଁ ଫେରିଲି ବେଳକୁ ଉଦୟ ବଜାରରେ ଗୁଟିଏ ଟ୍ରାଉଟ୍‌ ମାଛ ଧରି ଆଣିଥିଲା; ଛୋଟ ଥୋପ ଗୁଣ୍ଡି । ପାହାଡ଼ୀ ଟ୍ରାଉଟ୍‌ ସୁସ୍ୱାଦୁତା ଯୋଗୁଁ ଲୋକପ୍ରିୟ ।

୨୯ । ୮ । ୭୬ ରେ କଲୋରାଡ଼ୋ ସ୍ପ୍ରିଙ୍ଗ୍‌ସ୍‌ରୁ ଆମେ ବିଦାୟ ନେଲୁ । ଭ୍ରମଣର ବହୁ ଗଦ୍ୟ ଭୂମିକା ଅଛି । କେଉଠି ରହିବା, କଣ ଖାଇବା, କିପରି ଅଳ୍ପ ଖର୍ଚ୍ଚରେ ଚଳି ପାରିବା, କୋଉ ବାଟେ ଯିବାକୁ ହେବ, କଣ କଣ ଦେଖିବାକୁ ହେବ, କିପରି ପିଲାମାନଙ୍କୁ ଶାନ୍ତ ରଖିବାକୁ ହେବ, ବଜାର ସଉଦା କରିବାକୁ ହେବ, ରୋଷେଇ କରିବାକୁ ହେବ, ଜିନିଷପତ୍ର ବନ୍ଧାବନ୍ଧି ନଦାନଦ କରିବାକୁ ହେବ, ଇତ୍ୟାଦି । ଏସବୁ ଉଦୟ ଓ ଇଭା କରୁଥାନ୍ତି । ମୁଁ କେତେବେଳେ କେମିତି ବାଆଁକୁ ବଡ଼ା । ଖବୁଥାଏ, ପଢ଼ୁଥାଏ ବା ଲେଖୁଥାଏ ।

ମାଇଲ ମାଇଲ୍ ବ୍ୟାପୀ ପାନ୍ତର, ଘାସ ଫୁଲ୍‌ର ପାଣ୍ଡୁର, ମଝେ ମଝେ ବଟର ବନ୍ ବା ସୂର୍ଯ୍ୟମୁଖୀ । ଗ୍ରେଟ୍ ଏକ ସହର ପଡ଼ିଲା, ନାମ ସିମ୍‌ଲା, ଭାରତୀୟ ପରିବେଶର ସମ୍ପୂର୍ଣ୍ଣ ଭିନ୍ନ । ଏ ଅଞ୍ଚଳର ଭୂମି ଉର୍ବର, କିନ୍ତୁ ଆବଶ୍ୟକ ନ ଥିବାରୁ ଫସଲ କରା ହେଉନାହିଁ ।

## କାଂସାକ୍

କାଂସାକ୍ ଏବଂ ଲୁଇସିଆନା ରାଜ୍ୟର ଅନ୍ତର୍ଗତ ଥିଲା । ଲୁଇ-ସିଆନା କ୍ରୟ ବେଳେ ଡାନିଏଲ୍ ଓ୍ୱେବ୍‌ଷ୍ଟର୍ କହିଥିଲେ—ବନ୍ୟ ମନୁଷ୍ୟ, ହିଂସ୍ର ଜନ୍ତୁ, ବାଲୁକା, ଘୂର୍ଣ୍ଣି, କାକ୍‌ଟସ, ପ୍ୟାରୀକୁକୁର, ଏ ବିସ୍ତୃତ ଅନନ୍ତ ମରୁଭୂମି କ୍ରୟ କରି କ ଲାଭ ?

ସେଇ ବନ୍ଧ୍ୟ ମରୁ ଆଜ ଯୁକ୍ତରାଷ୍ଟ୍ରର ଶ୍ରେଷ୍ଠ କୃଷିକ୍ଷେତ୍ର ରୂପେ ପରିଚିତ, ବିଶ୍ୱଲକ୍ଷ୍ମୀଙ୍କ ଅମାର ହୋଇଛି । ତେତିଶ କୋଟି ବୁସେଲରୁ ଅଧିକ ଗହମ ଏଠା କୋଠି ଅମାରରେ ଛିଞ୍ଚି ଥାଏ । ଏହି ଭଣ୍ଡାରକୁ ଚାହିଁଥାନ୍ତି କେତେ ଦୁର୍ଭିକ୍ଷ ପ୍ରପୀଡ଼ିତ ବୁଭୁକ୍ଷୁ ଦେଶ; କେତେ ଜନସଂଖ୍ୟା ଗରିଷ୍ଠ, ପ୍ରକୃତିର ଖିଆଲ ଉପରେ ନିର୍ଭରଶୀଳ ଅନଗ୍ରସର ଦେଶ, କାହାର ଘର କୋଉଠି, ଅଥଚ ଦାନା ଉଡ଼ୁଛି ଏଇଠି ।

୧୮୫୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ରାଜ୍ୟ କେବଳ ଲୋହିତ-ଭାରତୀୟଙ୍କ ବାସଭୂମି ଥିଲା । ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେଲା-ବେଳେ ଏହାର ଲୋକସଂଖ୍ୟା ଥିଲା ସାତଶ ମାତ୍ର । ସେମାନେ ଥିଲେ ଶିକ୍ଷା ପ୍ରତି ଆଗ୍ରହୀ, ବିଶେଷ ପରିଶ୍ରମୀ, ଧର୍ମବିଶ୍ୱାସୀ; ସ୍ୱାଧୀନଚେତା । ଏବେ ୮୨ ହଜାର ବର୍ଗମାଇଲରୁ ଊର୍ଦ୍ଧ୍ୱ ଅଞ୍ଚଳରେ ପ୍ରାୟ ୨୨ ଲକ୍ଷ ଲୋକ ବାସକରନ୍ତି । ଏହା ଏକ ଜନବିରଳ ରାଜ୍ୟ—କିନ୍ତୁ ରତ୍ନଭଣ୍ଡାର, ତଳେ ତରଳ ସୁବର୍ଣ୍ଣ; ଉପରେ ସୁବର୍ଣ୍ଣ ଗହମ । 'ସୂର୍ଯ୍ୟମୁଖୀ' ରାଜ୍ୟ ନାମରେ ମଧ୍ୟ ଏହା ପରିଚିତ ।

## ଆବିଲେନ୍

ଗହମରେ ଗହମରେ ତୈଳ କୂପ, କୂପ ନିକଟରେ କେହି ନାହାନ୍ତି । ଯନ୍ତ୍ର ତୈଳ ଉଠାଉଛି; ପାଇପ୍ ଭିତରେ ତୈଳ ଶୋଧନ କାରଖାନାକୁ

ହୋଇଯାଉଛି । ଭିକ୍ଟୋରିଆ ସହରର କାଠ କାରଖାନା ଦେଖି ଆମେ ଆବଲେନ୍ ସହରରେ ପହଞ୍ଚିଲୁ । ଆଇଜେନ୍ ହାଓ୍ୱାର୍ ବାଲ୍ୟ ଓ କୈଶୋର ଜୀବନ ଏହି ସହରରେ କଟାଇଥିଲେ । ଏବେ ତାଙ୍କ ଗୃହ ସଂରକ୍ଷିତ; ତାଙ୍କ ସ୍ମୃତି ରକ୍ଷା ଲାଗି ଏହି ଗୃହ ଲଗାଏତ୍ ଗୋଟିଏ ଯାଦୁଘର ପ୍ରତିଷ୍ଠିତ ହୋଇଅଛି । ଗ୍ରେ-ହାଉଣ୍ଡ କୁକୁର ଲାଗି ଏହି ସହର ଯୁକ୍ତରାଷ୍ଟ୍ରରେ ପ୍ରସିଦ୍ଧି ଲାଭ କରିଅଛି । ଆମେ ପହଞ୍ଚିଲା ବେଳକୁ ଯାଦୁଘର ବନ୍ଦ ହୋଇ ଯାଇଥିଲା । ମୋଟେଲରେ ମଧ୍ୟ ରହିବା ଲାଗି ଜାଗା ମିଳିଲା ନାହିଁ । ବାଧ୍ୟ ହୋଇ 'ଜଙ୍କ୍‌ସନ୍' ସହରକୁ ଯାତ୍ରାକଲୁ ।

## ଜଙ୍କ୍‌ସନ୍

'ଇଷ୍ଟର୍ଣ୍ଣ' ମୋଟେଲ୍‌ଟି ସହରର ଶେଷ ଭାଗରେ । ସହରର ସମସ୍ତ ଆଲୋକ ଦୂରରେ, ଚନ୍ଦ୍ରକାନ୍ତିକୁ କଳେ ହେଲେ କଳୁଷିତ କରି-ପାରି ନାହିଁ, ଏକ ଜନବିରଳ ପ୍ରାନ୍ତରରେ ମୁଖାମୁଖି ହୋଇ ଛିଡ଼ା ହେଲୁ—ଚନ୍ଦ୍ର, ଆଉ ମୁଁ, କେତେ କଣ ସେ ତ କ ସେ କହିଯାଉଛି, ତା ଅର୍ଥ ମୁଁ ବୁଝି ନାହିଁ, ବୁଝିବାକୁ ଚେଷ୍ଟା କରୁ ନାହିଁ । ଭୃଣ ନ ଫିଟାଇ ମୁଁ ମଧ୍ୟ ଗପିଯାଉଛି । କଣ କହୁଛି ନିଜେ ଜାଣେ ନାହିଁ, ଜାଣିବାକୁ ଚେଷ୍ଟାବି କରୁନାହିଁ । ଶେଷର ଅର୍ଥ ତାର ଥାଉ ବା ନ ଥାଉ ସବୁ ମର୍ମସ୍ପର୍ଶୀ, ପ୍ରାଣକୁ ଉଦ୍‌ବେଳିତ କଲାଭଳି କରୁଛି ଏକ ଜୁଆର ବାଜୁଛି ମନରେ ।

ଭ୍ରମଣକାଳ ମଧ୍ୟରେ କେବେ ଏତେ ନିଶ୍ଚିନ୍ତ ନିଦ୍ରା ଶୋଇ ନଥିଲି, ନିତି ନୂତନ ସ୍ଥାନ, ବହୁ ବ୍ୟବହୃତ ଏ ଗୃହ, ବହୁ ଅଳିଙ୍ଗିତ ଶଯ୍ୟା । କେପର ଅଙ୍ଗଆଙ୍ଗୁଆ ଲାଗେ; ଆଖି ଆଗରେ ବହୁମୁଖ ନାଚ ଉଠେ, ସ୍ତ୍ରୀ ପୁରୁଷ, ବାଳୁତ ବୃଦ୍ଧଙ୍କର, ନିଶ୍ଚିନ୍ତ ପର ବୋଧ ହେଲେ ବି ମନ ମୋର କାଲି ଜଙ୍କସନ ସହରରେ ନଥିଲା, ସେ ଗୁଲିଯାଇଥିଲା ଶେଷର ଅଞ୍ଚଳକୁ—ପ୍ରଥମେ ଦେଖାଦେଲା ନନା, ବୋଉ ଭାଇନାଙ୍କ ମୁହଁ —କେତେ କଥା କହୁଛନ୍ତି; ବର୍ତ୍ତମାନ ସମସ୍ତଙ୍କୁ ଖାପଛଡ଼ା । ମୁଁ ଯେଉଁମାନଙ୍କ ସେହି ପରିବାରରେ ଅଛି—ସେମାନଙ୍କ ସ୍ନେହ ମଧ୍ୟରେ ସବୁ ମୁଣ୍ଡ ଗୁଞ୍ଜି-ଦଶୁଛି—ସେହି ଗ୍ରାମ—ଆହା କେତେ ହତାଶା ମଧ୍ୟରେ ଉଡିଗଲା

ସେମାନଙ୍କ ନିଃଶ୍ବାସ । ନାଥଦାସ, ଯେ ଠଙ୍କାଠଙ୍କ କରି କୌଣସି ମତେ ଜୀବନକୁ ଲଟକାଇ ରଖିଥିଲେ ସଂସାର ବୃନ୍ତରେ, ମୃହଁ ଧଡଣରେ ସବୁ ଚାଲିଥିଲା—ଘରେ ନାହିଁ ଚଡ଼ା, ଦାଣ୍ଡରେ ଅଖଡ଼ା । ତଥାପି ଗାଆଁକୁ ଗୋଟାଏ ସାହସ ସେ, କେଉଁଠି ଲଢେଇ ଝଡ଼େଇ ହେଲେ, ଗାଆଁର ମର୍ଯ୍ୟାଦାରେ ସାମାନ୍ୟ ହାନି ଘଟିଲେ, ସେ ଅଗ୍ରଲେ ଡେଇଁ ପଡ଼ୁଥିଲେ, ଖାଲରେ ପଡ଼ନ୍ତୁ ବା ଢ଼ିପରେ ପଡ଼ନ୍ତୁ । ତାଙ୍କ ଗୁଣ୍ଡିପଣ ମକର୍ଷ ହଣି ଯାଉଥିଲା ମତେ ।

ଦିଶି ଯାଉଥିଲା ସେଇ ବୁଢ଼ା ଭୋଇ, ଯେ ଆମ ଘରେ ଚାଳିଶି ବର୍ଷ ଲେକ ଲଗିଥିଲା—ସେଇ ଜହ୍ନ ବାଉରାଣୀ ଯେ ଆମର ହଳ ବାହୁଥିଲା, ଧାନ ରୋଉଥିଲା, ଖଳାବାଡ଼ି ଲିପୁଥିଲା, ସେଇ କଥାଚଢେଇ ମଞ୍ଜୀ, ସେଇ ଫୁଲେଇ ପାଟ, ସେଇ ଚରଣ ଜଳ୍ଲବା, ଯାହାକୁ ବାଇଆ ବଳୁଆ କାମୁଡ଼ିଥିଲା, ମଲାବେଳେ ଯେ ବାଇଆ ବଳୁଆ ପରି ବୋବାଉ ଥିଲା; ସେଇ ଗପୁଡ଼ି ବାଞ୍ଛା, ଯେ ଭଲ ପାଟୁଆ ଗାୟକ ଥିଲା, ଶେଷକୁ ଗାୟକ ବିଦ୍ୟା ଗୁଡ଼ି ଚାହିଁଲା ଧନକୁ; ସେଦିନର କବି ଗାୟକ ହେଲା ମକ୍ଷିଚୂଷ ସାହୁକାର । ମଲା ଦିନ ଯେତେ ଯାହା ପାଇଲା ଭଲ ଜିନିଷ କିଣି ଖାଇଲା—ଜୀଇଁଥିବା ବେଳେ ସବୁ କିଛି ସ୍ୱାଦ ଚାଖିଯିବ । ଖାଇବାକୁ ନ ପାଇ ଜୀବନଯାକ ମରୁଥିଲା ସେ । ଏବେ ଖାଇ ଖାଇ ମଲା ।

ମନେ ହେଉଥିଲା— ଖୁବ୍ ଶୋଇଛି । କିନ୍ତୁ ରାତିଯାକ ଜାଗ୍ରତ ରହି ଏହି ଲୀଳା ହିଁ ଦେଖୁଛି, ଆଖି ଦିଓଟି ବୁଜି ହୋଇଛି ମାତ୍ର । ଏଇସବୁ ଜୀବନ ପ୍ରତି ମମତା ମୋର ଯାଉନାହିଁ, ଏଇ ଉଜ୍ଜ୍ୱଳ ଜୀବନର ପ୍ରାଚୁର୍ଯ୍ୟ ମଧ୍ୟରେ—ନିଭି ବଳିତାର ଜଳନ୍ତା ନାପି ପରି ଏବେ ବି ଅନ୍ଧାରରେ ଜଳ ଜଳ ଦିଶୁଛି ।

ସକାଳୁ କରୁଣ ଭାବ ଗୁଡ଼ିକରେ ଟଳମଳ ହେଉଥିଲା—ମୁଁ ଚାଲିଗଲି—ଯୋଉଠି ଗାଡ଼ ଚାଲେନାହିଁ, ମଣିଷର ପାଦ ପଡ଼େନାହିଁ—ଗୋଟାଏ ଗଛର ଖାଲ—ସେଠି ଲଟା ମାଡ଼ୁଛି, ଧଳା ଧଳା ଫୁଲ, ସେ ଫୁଲ କେହି ତୁଣ୍ଡାଉ ନାହିଁ, ମାଡ଼ୁଛି କେତେ ପ୍ରକାରର ଅନାବନା ଘାସ,

ତା ଉପରେ ଘାସକଣ୍ଟା କଳ ବୁଲେନାହିଁ—ଫୁଟିଛୁ ଶତ ଶତ ସୂର୍ଯ୍ୟମୁଖୀ, ମନ୍ଦିରର ଦାତଫଟେକା ପାଣି ଉପରେ ଭରସା ନ ରଖି ; ଫୁଟିଛନ୍ତି କେତେ ଅଜଣା ଅଶୁଣା ଫୁଲ—ନେଳ, ନାଲି, ବାଇଗଣି—ସେମାନେ ପାଉ ନାହାନ୍ତି ଟିକଏ ହେଲେ ମମତା ; ହୃଦୟ ମୋର ତରଳ ଝରିଗଲା ପରି ଲାଗିଲା । ତା ପରେ ଦେଖିଲି—ସେମାନେ ଦୋହଲି ଦୋହଲି ଗାଉଛନ୍ତି କେତେ ଗୀତ—ତାର ଭାଷା ମୁଁ ବୁଝୁନାହିଁ ; କିନ୍ତୁ ପ୍ରୀତି କଣ ଶବ୍ଦରେ ବୁଝାଯାଏ, ନା ଢଙ୍ଗରେ ?

ସେଠାରୁ ମନକୁ ଓଟାରି ନେଇ ଆସିଲେ ବି ସେଇ ଅଜ୍ଞାତ ଅପରିଚିତ ବନ୍ୟତାଟିକ ଏବେ ବି ମନରେ ଲାଗିଛି ।

ପ୍ରାତଃସ୍ନାନ ଲାଗି ଯାଉଛି । ଦେଖାହେଲା ଦୁଇଟି ମାର୍ଜାରଙ୍କ ସଙ୍ଗେ ; ଗୋଟିଏ ଧଳା କଇଁଫୁଲ ପରି, ଅନ୍ୟଟି କୃଷ୍ଣଧୂସର । ଗୀତା ସେମାନଙ୍କ ସଙ୍ଗେ ଲୁଚକାଳି ଖେଳିଲା, ସେମାନେ ଗୀତା ସଙ୍ଗେ ବି । ମୀରା ଖୁସି ; ସେମାନଙ୍କ ପାଖ ମାଡ଼ିଲା ନାହିଁ, କାଳେ କାମୁଡ଼ି ଦେବେ । ନିକ ତ କେବେ ବଗଡ଼ଙ୍କ ସଙ୍ଗେ ଚଳବଚଳ ହୋଇନାହିଁ, ସେ ଛିଡ଼ା ହୋଇ କେବଳ ଦେଖିବାକୁ ଲାଗିଲା । ବ୍ରେକ୍‌ଫାଷ୍ଟ ବେଳେ ଗୀତାକୁ ପଚାରିଲି— ବଗଡ଼ଙ୍କୁ ବ୍ରେକ୍‌ଫାଷ୍ଟକୁ ନିମନ୍ତ୍ରଣ କଲୁନାହିଁ କାହିଁକି ?

କର୍ତ୍ତବ୍ୟରେ ହେଳା କରିଛି ବୋଲି ଗୀତା ଅନୁଶୋଚନା କରିବାକୁ ଲାଗିଲା । ପୁଣି ତାକୁ ପଚାରିଲି—ବଗଡ଼ଙ୍କୁ ଭଲ ପାଉ କି ନାହିଁ ?

'ହଁ'

'ଯାହାକୁ ଭଲ ପାଉ ତାକୁ ଜନ୍ମଦିନ ଉତ୍ସବକୁ ନିମନ୍ତ୍ରଣ କରୁ କି ନାହିଁ ?'

'ହଁ'

'ବଗଡ଼ଙ୍କୁ ସାମାନ୍ୟ ବ୍ରେକ୍‌ଫାଷ୍ଟକୁ ନିମନ୍ତ୍ରଣ କରିପାରିଲୁ ନାହିଁ ? କଣ ବା ଖାଇଥାନ୍ତେ ? ଟିକଏ ମାଛ ନଇଲେ ଟିକଏ ଦୁଧ ;

ଯେଉଁଠି ମଣିଷ ବନ୍ଧୁ ତାର ଅଛନ୍ତି, ତା ମଧ୍ୟରେ ତୁ ଜଣେ । ଯାହା ତ ହେଲାଣି ହେଲାଣି, ଏବେ ଯା, ତାକୁ ଡାକି ଆଣିବୁ ।'

ରଜନୀବଣ୍ଣାସିଙ୍ଗ ଗୀତା ବିଦ୍ୱଦ୍ଭଙ୍କୁ ନିମନ୍ତ୍ରଣ କରି ଆଣିବା ଲାଗି ପଦାକୁ ଗଲାବେଳେ ଇବା ଆଜି ଉଦସ୍ତ ହସି ଉଠିଲେ ।

## ଟୋପେକା

ଗ୍ରେଟ ଗ୍ରେଟ ବୁଦ ବୁଦକିଆ ପାହାଡ଼ ଓ ବର୍ଷା ବିପାର୍ଶ୍ୱ ଧାରରେ ନାନା ରଙ୍ଗର ଉପଳ ଦେଖି ଦେଖି ଆମେ କାଂସଜ୍ ନଦୀ କୂଳରେ ପହଞ୍ଚିଲୁ—ଅଦୂରରେ ଟୋପେକା, କାଂସଜର ରାଜଧାନୀ । ଏଠି ଦାସତ୍ୱର ସପକ୍ଷ ଓ ବିପକ୍ଷଙ୍କ ମଧ୍ୟରେ ଘୋର ବିବାଦ ହୋଇଥିଲା । କେନ୍ଦ୍ର ସୈନ୍ୟମାନେ ଆସି ଦାସତ୍ୱର ପକ୍ଷପାତୀଙ୍କୁ ଜବତ୍ କଲେ ।

ମାଂସ ପ୍ୟାକିଂ, ଟାୟାର୍ ତିଆରି ଏହାର ପ୍ରଧାନ ଶିଳ୍ପ । ସହରରେ ଛପ୍ପନଶ ଗୋଟି ପାର୍କ ଓ ସାତଗୋଟି ସାଧାରଣ ସନ୍ତରଣ ପୁଷ୍କରିଣୀ ଅଛି । ଏଠା ଗୋଲାପ ଉଦ୍ୟାନ ଆମେରିକା ପ୍ରସିଦ୍ଧ; ଏଠା ମନୋବିଜ୍ଞାନ ମେନିଂକଲେଜ ସାରା ଜଗତର ଗ୍ରନ୍ଥ ଗ୍ରନ୍ଥୀଙ୍କୁ ଆକର୍ଷଣ କରି ଆଣିଥାଏ ।

'କାଂସଜ' ମିସୌରୀ ନଦୀରେ ମିଶି ତାର ସତ୍ତା ହରାଇଅଛି । ଆମେ ଏହି ବୃହତ୍ ଶିଳ୍ପ ନଗରୀ ପାର ହୋଇ ମିସୌରୀରେ ପ୍ରବେଶ କଲୁ ।

## ନିକୋଲାସ୍ ପିଆଣ୍ଟୋନିଡ଼ା

ବାଟରେ ଶୁଣିଲୁ ନିକୋଲାସ୍ ପିଆଣ୍ଟୋନିଡ଼ାଙ୍କ ଜୀବନ କାହାଣୀ । ସେ ଜଣେ ଟ୍ରକ ବ୍ୟବସାୟୀ ଥିଲେ । କିନ୍ତୁ ଏକାନ୍ତ ଖିଆଲି; ତାଙ୍କ ବିଚାରରେ ଜୀବନ ଗୋଟାଏ ଖେଳ । ବହୁ ଉଚ୍ଚଆକାଶକୁ ଉଠି ପାରାଚୁଟ୍‌ରେ ଓହ୍ଲାଇବା ତାଙ୍କ ଜୀବନର ମୁଖ୍ୟ ବିନୋଦନ ଥିଲା । ଜୀବନରେ ସେ ଗ୍ରୀରିଶ ଥର ଦଶ ହଜାରରୁ ଛତିଶ ହଜାର ଫୁଟ୍ ପର୍ଯ୍ୟନ୍ତ ଉଠି ପାରାଚୁଟ୍‌ରେ ତଳକୁ ଓହ୍ଲାଇଥିଲେ । କିନ୍ତୁ ତାଙ୍କର ଲକ୍ଷ୍ୟ ଥିଲା

ଏକଲକ୍ଷ ପଚଶ ହଜାର ଫୁଟ୍ ଉପରକୁ ଉଠିବା ଓ ସେଠାରୁ ଶବ୍ଦ ଗତିରେ ଭୂତଳକୁ ଖସିବା; ଏହି ଆନନ୍ଦ ଲାଭ ଲାଗି ସେ ବ୍ୟାକୁଳ ହୋଇ ଉଠିଥିଲେ । ପ୍ରଥମ ଥର ଅମ୍ଳଯାନ ଯନ୍ତ୍ର ବିଗିଡ଼ିଲା, ଦ୍ୱିତୀୟ ଥର ବେଲୁନ୍‌ଟି ଫାଟିଗଲା ।

ତୃତୀୟ ଥର ତାଙ୍କ ବସିବା ଆସନ ବେଲୁନରୁ ଛିଣ୍ଡି ଅଲଗା ହୋଇଗଲା । ସେ ପାରାଚୁଟରେ ବେଶ୍ ଖସି ଆସୁଥିଲେ; କିନ୍ତୁ ଦୁର୍ଭାଗ୍ୟ —ଅମ୍ଳଯାନ ଅଭାବରୁ ବାଟରେ ତାଙ୍କ ପ୍ରାଣ ଗୁଚ୍ଛିଗଲା ।

ଜାତୀୟ ଅଷ୍ଟ୍ରୋନଟ୍ ଓ ଅନ୍ତରୀକ୍ଷ ଭ୍ରମଣ ବିଭାଗ ତାଙ୍କୁ ଏହି କାର୍ଯ୍ୟରେ ଉତ୍ସାହିତ କରୁଥିଲେ । ନିଜ ବ୍ୟବସାୟ ଗୁଡ଼ି ଗତ ଷାଠିଏ ବର୍ଷ ହେଲା ସେ ଏହି କାର୍ଯ୍ୟରେ ମାତି ଉଠିଥିଲେ ।

ଆମେରିକାନ୍ ଜୀବନର ଏ ଗୋଟିଏ ଉଜ୍ଜ୍ୱଳ ଦିଗ— ଦୁଃସାହସିକ ଖିଆଲରେ ଜାତିର ବଡ଼ ହେବାର ଉନ୍ମାଦନା ଅଭୁତ ଲାଗେ ।

## ମିସୌରୀ

ଦିନେ ମିସୌରି ଫରାସୀ ଲୁଇସିଆନା ରାଜ୍ୟର ଅଂଶ ଥିଲା, ତା ପରେ ସ୍ପେନର ଅଧିକାରକୁ ଆସିଲା । ୧୮୦୩ ଖ୍ରୀଷ୍ଟାବ୍ଦରେ ଏହା ଯୁକ୍ତ-ରାଷ୍ଟ୍ରର ଅନ୍ତର୍ଭୁକ୍ତ ହେଲା; ମିସିସିପି ଓ ମିସୌରି ନଦୀର ପ୍ରବାହ ଯୋଗୁଁ ଭୂମି ଉର୍ବର ଓ ଚର ଶସ୍ୟସମ୍ଭାର । ଓଜାର୍କ ପର୍ବତମାଳା, ପ୍ରାକୃତିକ ଗିରିକନ୍ଦର ଓ ମିସିସିପି ମିସୌରି ସଙ୍ଗମ ଭ୍ରମଣକାରୀଙ୍କୁ ଏ ରାଜ୍ୟକୁ ଆକର୍ଷଣ କରିଥାଏ । ଏବେ ଏହାର ଲୋକସଂଖ୍ୟା ବାଉନ ଲକ୍ଷରୁ ଅଧିକ । ଏହାର ରାଜଧାନୀ ଜେଫରସନ୍ ସିଟି, ଜାତୀୟ ପୁଷ୍ପ 'ହଥର୍ଣ୍ଣ ।'

ଗୀତା ବାରମ୍ବାର ପଚାରୁଥିଲା—ମାଆ, କେତେବେଳେ ଆମେ ସେଣ୍ଟଲୁଇସରେ ପହଞ୍ଚିବା ? ସବୁବେଳେ ମାଆ, ମାଆ ଡାକିବା ମୀରାର ସ୍ୱଭାବ । 'ମା' ନାମର ମହିମା' ସେ ଓ ତା ପରି ପିଲାମାନେ ବୁଝନ୍ତି ।

ନିକ ତ ସବୁବେଳେ ମାଆ ପାଖେ ନାକେଇଥାଏ,କହୁଥାଏ—ଶୀଘ୍ର ସେଣ୍ଟ-ଲୁଇସ୍ ଚାଲ । ପୁଣି ପିଲାଙ୍କ ଭିତରୁ କିଏ କହୁଥାଏ—ମା, ଗରମ, କିଏ କହୁଥାଏ, ମା, ଅଣ୍ଡା; କିଏ କହୁଥାଏ ଭୋକ, କିଏ କହୁଥାଏ ଶୋଷ । ଉତ୍ତମ ସୁନ୍ଦର ଖାଦ୍ୟ ଛୁଇଁ ନ ଥାନ୍ତି; ପୁଣି ଗୋଟାଏ ବିସ୍କୁଟ୍ ଲାଗି ଯୁଦ୍ଧ ଲାଗି ଯାଉଥାଏ । ସେଇ ଗୋଟିକ ସମସ୍ତେ ଖାଇବେ, ଆଉ ଗୋଟିଏ ଦେଲେ ଚଳିବ ନାହିଁ ।

ଆଜ ସମସ୍ତେ କ୍ଳାନ୍ତ—ଉଦପୂ ସତର ଦିନ କାଳ କ୍ରମାଗତ ଦିନକୁ ଚାରିଶ ମାଇଲ କରି ଗାଡ଼ି ଚଲାଇ, ଭରି ଆମ ସମସ୍ତଙ୍କ ଜଞ୍ଜାଳ ବୃଦ୍ଧି ବୃଦ୍ଧି, ପିଲାମାନେ ମୁକ୍ତ ପ୍ରାଙ୍ଗଣରେ ଅନ୍ୟ ପିଲାଙ୍କ ସଙ୍ଗେ ଖେଳ-ବାର ସୁଯୋଗ ନ ପାଇ; ମୁଁ ମଧ୍ୟ କ୍ଳାନ୍ତ ଗାଡ଼ିରେ ବସି ବସି; ଅତ୍ୟଧିକ ଆନନ୍ଦ ଲାଭ ବୋଧ ହେଉଥିଲା—ପ୍ରାକୃତିକ ଦୃଶ୍ୟ ଆଉ ହୃଦୟ ସ୍ପର୍ଶ କରୁ ନ ଥିଲା; ମଧ୍ୟେ ମଧ୍ୟେ ଅବସର ଥିଲେ ଏସବୁ ସୁଖପ୍ରଦ । ଏକା-ବେଳକେ ତେରୋଟି ପ୍ରଦେଶ, ଛ' ହଜାର ମାଇଲରୁ ଉର୍ଦ୍ଧ୍ୱ ପଥ—ପ୍ରାୟ ଗୋଟିଏ ଭାରତବର୍ଷ ଆମେ ବୁଲି ଆସିଲୁ । ଆମ୍ଭେ କ୍ଳାନ୍ତ, ଘୋର କ୍ଳାନ୍ତ ସମସ୍ତେ ।

ମିସୌରି ନଦୀ ଲଙ୍ଘନ କରି ଅପରାହ୍ଣ ଚାରିଟା ବେଳେ ଆମେ ସେଣ୍ଟଲୁଇସ୍‌ରେ ପହଞ୍ଚିଲୁ । ଘରେ ପହଞ୍ଚି ଗୋଟାଏ ଦୀର୍ଘଶ୍ୱାସ ପକାଇଲୁ । ଗଛରେ ଗୋଲାପ ଜେନିଆ ଭରି, କେହି ଗୋଟିଏ ହେଲେ ଛିଣ୍ଡାଇ ନେଇ ନାହାନ୍ତି । ଗୋଟିଏ ବନ୍ଧୁ ପରିବାରର ପିଲାମାନେ ଆସି ପଡ଼ିଆରୁ ଘାସ କାଟି ଦେଇ ଯାଇଛନ୍ତି । ସବୁ ସୁନ୍ଦର ସବୁ ଶୋଭନୀୟ ଅବସ୍ଥାରେ ଅଛି ।

## ମିଷ୍ଟର୍ ହାରକଟ୍ (୧।୯।୬୭ ସେଣ୍ଟଲୁଇସ୍)

ଆମ ପଡ଼ୋଶୀ ହାରକଟ୍ ସାହେବ କାଲି ରାତିରେ ନିମନ୍ତ୍ରଣ କରି ଯାଇଥିଲେ—ସକାଳୁ ଆମ ବାଡ଼ିରୁ ଅଙ୍ଗୁର ଆଣିବ । ସଜବାଜ ହୋଇ ଗୀତା, ମୀରା, ନିକ ଗୋଟିଏ ଗୋଟିଏ କାଗଜପଟା ବାକ୍ସ ଧରି ବାହାରିଲେ; ସାଳ ପହିଣି, ତାପରେ ଅରମା ଘାସ, ଉଠାଣି ।

ମୀରା କଚଡ଼ାଏ ପଡ଼ୁ ପଡ଼ୁ ଧରି ପକାଇଲି । ପଢ଼ିଲା ନାହିଁ ସିନା, ସେଇ ଧଡ଼ିଶରେ କାନ୍ଦ ପକାଇଲା । ମୁଁ ତା ହାତକୁ ଧରି ପଚାରିଲି—

ପଢ଼ି ନାହୁଁ ତ କାନ୍ଦୁଛୁ କାହିଁକି ?

ତାପରେ ଗୀତାକୁ ଆଗରେ ଚାଲିଲି ମୀରା ଓ ମିକିର ହାତ ଧରି ମୁଁ ଚାଲିଲି । ପ୍ରାୟ ତିନି ଏକର ଜମିର ପ୍ରଶସ୍ତ ପ୍ରାଙ୍ଗଣ, ଏଠି ସେଠି କେତୋଟି ଓକ୍, ଦୁଆରେ ଟିପ ମାରିବା ମାତ୍ରେ ଫିଟିଲା; ହାର୍‌କଟ୍ ନୁହନ୍ତି, ଏ କିଏ ? ସତର ଅଠର ବର୍ଷର ଯୁବତୀ; ଛନଛନିଆ କନକନିଆ ଚେହେରା, ତାଙ୍କ ନାତୁଣୀ ? ଓ୍ୱାସିଂଟନ୍ ବିଶ୍ୱବିଦ୍ୟାଳୟର ଛାତ୍ରୀ; ପୁଣି କଥା ବୁଢ଼ା ଗପନ୍ତି ?

ପରିଚୟ ନେବା ପରେ ଜାଣିଲି ଏ ସେ ନୁହେଁ, ରୋଜ୍, ଯେଣ୍ଟଲ୍-ଇସରୁ ତିରିଶି ମାଇଲ ଦୂରରେ ତା ବାପ ମାଆ ରହନ୍ତି । ସେ ଚାକିରି କରେ ହାର୍‌କଟଙ୍କ ଘରେ, ମାନେ ଚାକରାଣୀ—ହରଓଲିଆ, ବାସନମଜା ଲୁଗାସଫା, ରୋଷେଇବାସ ସବୁ କରେ । ସପ୍ତାହକୁ ତିରିଶି ଡଲାର, ତାର ଦରମା । ପ୍ରତି ଶୁକ୍ରବାର ସନ୍ଧ୍ୟାରେ ବାପମାଆଙ୍କୁ ଦେଖିବାକୁ ଘରକୁ ଯାଏ, ଶନିବାର ସନ୍ଧ୍ୟାକୁ ଫେରିଆସେ । ପଚାରିଲି—ରୋଜ୍, ତୁମର କଣ ପୋଥିରେ ଡୋରି ଦିଆ ହୋଇଗଲା ?

ରୋଜ୍ କହିଲା—ନା, ଟଙ୍କା ଜମାଉଛି ଆଉ କାହିଁକି ? ପଢ଼ିବା ପାଇଁ ତ !

ହାରକଟ୍‌ଙ୍କ ସ୍ତ୍ରୀ ୧୯୬୧ ମସିହାରୁ ମଲେଣି । ହାର୍‌କଟଙ୍କ ଦୃଷ୍ଟି କିନ୍ତୁ ଏବେ ବି ଆଗକୁ । ପଛ କଥା ସେ ଭାବୁ ନାହାନ୍ତି ନୁହେଁ, କିନ୍ତୁ ଏହା ତାଙ୍କୁ ଜଡ଼ କରି ଦେଇ ନାହିଁ । ୮୫ ବର୍ଷ ବୟସ । ସବୁବେଳେ କିଛି ନା କିଛି ରୋଗ ଲାଗି ରହିଛି; କିନ୍ତୁ ତାଙ୍କୁ ଦବେଇ ଦେଇ ପାରି ନାହିଁ । ବଞ୍ଚି ରହିବାର ସାହସ ତାଙ୍କର ଅତୁଟ, ଛୋଟ ମୋଟ ରୋଗ ବା ଜଞ୍ଜାଳ ତାଙ୍କୁ ବିବ୍ରତ କରୁ ନାହିଁ; ଅଦ୍ୟାପି କର୍ମ ତାଙ୍କର ବ୍ରତ ହୋଇ ରହିଛି, ତାଙ୍କୁ ଉତ୍‌ଫୁଲ୍ଲ ରଖୁଛି ।

ପିଲମାନେ ତାଙ୍କର ସାଙ୍ଗ । ସେ ଗଳ୍ପ ସେଣ୍ଟଲୁଇସ ସହରର ଜନ୍ମ କଥା—ଯେତେବେଳେ କେମିତି ଜଙ୍ଗଲ ଭିତରେ ଅଳ୍ପ କେତୋଟି ଘର ଥିଲ, ଏବେ ବଢ଼ି ବଢ଼ି କେମିତି ବିରାଟ ନଗର ହୋଇଛି; ସେତେବେଳେ କେମିତି ଅଳ୍ପ କେତୋଟି ଖେଳଣା ଗ୍ଭଲୁଥିଲା—ଏବେ କେମିତି ପିଲଙ୍କର ଖେଳ ଘର, ଖେଳଣାର ଭଣ୍ଡାର ହୋଇଛି—ନାନା ଜାତିସ୍ର ଯାନ୍ତ୍ରିକ ଖେଳଣାରେ ଖେଳୁ ଖେଳୁ ଦିନ କୁଆଡେ ଗଡ଼ିଯାଉଛି ।

ବୁଢ଼ା ଆମକୁ ଅଙ୍ଗୁରଲତା ବାଡ଼ ଆଡକୁ ବାଟ କଢ଼ାଇନେଲେ । ଯାଉଁ ଯାଉଁ ଗୋଟାଏ ଖାଲରେ ଅଣ୍ଟୋଇ ପଡ଼ିଲେ; ମୁଁ ଟେକି ଧରୁ ଧରୁ କହିଲେ—ଧନ୍ୟବାଦ, ଦରକାର ନାହିଁ, ମୋର ଚ଼ାରିସ୍ର ପଦ ଅଛି । ମୁଁ ନିଜେ ଉଠିବି । ବାଡ଼ରେ ଡିଳ ଦେଇ ବୁଢ଼ା ଉଠିଲେ ।

ଆପଲ୍ ଗଛ—ମୂଳ ଯାକ ପାଚିଲ ଆପଲ୍ ପଡ଼ି ସଢ଼ି ଖତ ହୋଇଗଲଣି । ଯେ କେଉଁଠା ଡଳ ଓହଳା ଡ଼ାଳରେ ଝୁଲୁଛି, ଦେଖିଲି ଖଣ୍ଡିଆ ଦଣ୍ଡିଆ, ସବୁ ଗୁଣ୍ଡୁଚି ଖାଇ ଯାଉଛି । ଏ ଗଛଗୁଡ଼ିକ ମଣିଷ ଲଗେଇନାନ୍ତି, କିନ୍ତୁ ତାର ଦଖଲରେ ଅଛି ।

ବୁଢ଼ା ଗପି ଗ୍ଭଲିଲେ ନିଜ ଝିଅ କଥା; ଗୋଟିଏ ବୋଲି ଝିଅ, ବାହା ହୋଇଛି, ଘର ଆରପଟେ ରହେ, କେବେ କେବେ ଦେଖିବାକୁ ଆସେ । କିନ୍ତୁ ବୁଢ଼ା ଗ୍ଭହେଁ ନାହିଁ କାହାର ସେବା । କାମ କରୁ କରୁ ମରିବ, ତାର ଇଚ୍ଛା, କାମରେ ଆନନ୍ଦ ଅଛି, ଉନ୍ମାଦନା ଅଛି । ଭଗବାନ ସ୍ୱର୍ଗରେ ଅମୃତ ରଖିଛନ୍ତି, ମର୍ତ୍ତ୍ୟବାସୀଙ୍କି ଦେଇଛନ୍ତି କର୍ମ ।

ଆମ ଆଡ଼ ବୁଢ଼ା ହୋଇଥିଲେ କହନ୍ତେ—କାହିଁକି ବୋହୂ କରିଥିଲ ? କୋଉ ପୁଅ ଝିଅ କାହାର ? ମଲା ବେଳକୁ ଟୋପାଏ ପାଣି ପାଟିରେ ଦେଲେ ନାହିଁ ।

ଏଠା ଜୀବନ ଦର୍ଶନ ଭିନ୍ନ । ଯେତେ ଦିନ ସକ୍ଷମ ହୋଇ ଗ୍ଭଲି-ପାରିବ ଗ୍ଭଲ; ଯୋଉଦିନ ଟଳି ପଡ଼ିବ ତ ଟଳି ପଡ଼ିବ । ପୁଅ ଝିଅ ତାଙ୍କ

ସୁଖରେ ରହନ୍ତୁ । ସ୍ୱାଧୀନ ଭାବରେ ତୁମେ ଚାଲ । କଷ୍ଟ ହେଲେ ବି ତା ଅଭ୍ୟାସରେ ପଡ଼େ; କାହା ଉପରେ ନିର୍ଭର ନ କରି ଚଳିବାରେ ଆନନ୍ଦ ଅଛି । ତୁମ ସୁଖ ତୁମ ଦୁଃଖ ଏକାନ୍ତ ଭାବେ ତୁମର ।

ଅଳ୍ପ ଦୂରରେ ଅଙ୍ଗୁରଲତା—ବୁଢ଼ା ଗପିଲାଗିଲା ତାର ଇତିହାସ —କୋଉ ବର୍ଷ କେତେ ଫଳିଥିଲା; ଏ ବର୍ଷ ପୋକ କିପରି ଫୁଲ ଖାଇ-ଯାଇ ଥାନ୍ତେ, ଔଷଧ ପକାଇ ନ ଥିଲେ; ଆପଲ୍ କିପରି ଝଡ଼ି ଝଡ଼ି ଗଲା, ରାବଟ୍, ଗୁଣ୍ଡୁଚି ଖାଇଲେ । ବୁଢ଼ା ବଗିଚାର ଗୋଟିଏ ଯୋଜନା ଉପ-ସ୍ଥାପିତ କଲା ମୋ ସାମ୍ନାରେ, ଏଥି ବଗିଚାରେ ଅଧିକ ପୁଷ୍ପ ଓ ଫଳ କିପରି ଉତ୍ପାଦନ କରାଯିବ । ସେତେବେଳେ ମୁଁ ମନେମନେ ଭାବୁଥିଲି—ଏ କଣ ବୁଢ଼ା ହେବେ ନାହିଁ ? ଏ ଦେଶରେ କଣ କେହି ବୁଢ଼ା ହୁଅନ୍ତି ନାହିଁ ?

ହାର୍‌କଟଙ୍କ ପଡ଼ୋଶୀ ସୀମାରେ ଗୋଟିଏ ଲୁହା ବାଡ଼ ଲମ୍ବିଛି; ତା'ର ଉପରେ ଅଙ୍ଗୁର ଲଟାଇଛି—ବଡ଼ ବଡ଼ ପତ୍ର; ପେନ୍ଥା ପେନ୍ଥା ହୋଇ କେତେ ଯେ ଫଳ ଗଛ ପଡ଼ିଛି ତାର ସୀମା ନାହିଁ । ତୋଳୁ ତୋଳୁ ବି ଚାରିଟା ପାଟିରେ ପକାଇଲି, ପିଲାକାଳ ଅଭ୍ୟାସରେ; ଟକିଲା ସ୍ୱଭାବ ତ ଯାଇ ନାହିଁ ।

ବୁଢ଼ା କହିଲା—ହାତରେ କେତେ ତୋଳିବ ? ଏ କଇଞ୍ଚିଟି ନିଅ । କଇଞ୍ଚିରେ କାଟି ରଖୁ ରଖୁ କାଗଜ ବାକ୍ସ ଦଉଟି ପୂର୍ଣ୍ଣ ହୋଇଗଲା । ବୁଢ଼ା ତା ଝୁଡ଼ିର ଅଧା ଭର୍ତ୍ତି କରି ସାରିଥିଲା, ସବୁତକ ଏକାଠି କଲା-ବେଳକୁ ଝୁଡ଼ି ପୂର୍ଣ୍ଣ ହୋଇଗଲା । ବୁଢ଼ା କହିଲା, ନିଅ-ଆମର କଣ ହେବ ? ସବୁ ତ ତଳେ ପଡ଼ି ସଢ଼ୁଛି । ଗ୍ରେଜ୍ କରୁଛୁ ଜେଲି କରୁଛୁ ।

ଦଶ ବାର ସେର ଅଙ୍ଗୁର । ବୁଢ଼ା ପୁଣି ଥରେ କହିଲା—ନିଅ, ସରିଲେ ଆଉ ଆସି ନେଇଯିବ ! ଗଛରେ ଚଢ଼ି ଜାମୁକୋଳି ଖାଇଲେ ଯେପରି, ସେଦିନ ସେହିପରି ଅଙ୍ଗୁର ଖାଇ ମନବୋଧ ହୋଇଗଲା । ମତେ କିଏ ମାଗିଲେ ମୁଁ ଏହିପରି ଆମ୍ବ ଦେଇ ପାରନ୍ତି, ଅବଶ୍ୟ ହାଉଯାଉ ହେଉଥିଲେ । କିନ୍ତୁ ଦେଶୀ ଆମ୍ବ ପ୍ରାପ୍ତି ତ ନିରାଶ କରେ, ତିନି ବର୍ଷ ପାଞ୍ଚ ବର୍ଷରେ ଥରେ ହୁଏ ।

## ଅଙ୍ଗୁର ଫଳ ଖଟା

କୋକିଶିଆଳ କୁଦା ମାରି ବ୍ୟର୍ଥ ହୋଇ ନିଜ ମାନ ରକ୍ଷା କରିବା ଲାଗି କହିଲା—ଛୁଃ, ସେ ଗୁଡ଼ାକ କିଏ ଖାଉଛି—ଖଟା ! ମୁଁ ବି ମେହୁପର ଗାଛରୁ ଶିଖି ଜାଣୁଛି—ଏ ଅଙ୍ଗୁରରେ ଗୋଟା ଅଛି, ସେଥିରେ ମଞ୍ଜି ଅଛି । ଏଇଟା ଖଟା । କଥା ଅଛି—ଷୋଳ ବେଳେ ଆମ୍ବିଳା ଆମ୍ବ ସ୍ୱାଦ । ଷୋଳ ନ ଥାଇ ବହୁତ ମୋଫତ୍ ମିଳିଗଲେ କୋଉଟା ମଞ୍ଜି-ଖଟା, କୋଉଟା ଝିମା, କୋଉଟା ଲେଲପଟିଆ, କୋଉଟା ଚେନ୍ଥୁଆ—ଏମିତି ନାନା ଦୋଷ ବାହାରେ ।

## ରୋଜଗାରୀ ପେଟ୍ରିକ୍

ଅଙ୍ଗୁର ଥୋଇଦେଇ ବସିଛି, ଏତିକିବେଳେ ପେଟ୍ରିକ୍‌ର ମାଆ ଆସିଲା; ସଙ୍ଗରେ ସାନପୁଅ ରାସେଲ୍; କହିଲା—

ତୁମେ ସବୁ ନ ଥିଲା ବେଳେ ପେଟ୍ରିକ୍ ବି ଥରେ ଆସିଥିଲା; ଗୋଲାପ, ଜେଜିଆ, ଗେଣ୍ଡୁ ବଗିଚାରୁ ଘାସ କାଟି ଦେଇ ଯାଇଛି । ଇଏ ସେ ବାବଦକୁ ତାକୁ ବାର ଡଲାର୍ ଦେଲି । ଏଗାର ବର୍ଷର ପେଟ୍ରିକ୍ ୩ଘଣ୍ଟା ପରିଶ୍ରମ କରି ଏତିକି ରୋଜଗାର କରିଥିଲା । ପେଟ୍ରିକ୍ ମାଆ କାଲି ଚେକ୍ ଆଣିଥିଲା । ଇଏ ପିଲାଙ୍କ ହାତରେ ତାଙ୍କ ଘରକୁ କିଛି ଅଙ୍ଗୁର ପଠାଇ ଦେଲି । ସାଇ ପଡ଼ିଶାରେ ଏଠି ବେଶ୍ ଦିଆ ନିଆ ଚାଲେ । ଦିଆ-ନିଆ ବନ୍ଧୁତ୍ୱର ଭିତ୍ତି ;ଯେତିକି ଗାଢ଼ ବନ୍ଧୁତ୍ୱ, ସେତିକି ଦିଆନିଆ—ଜନ୍ମଦିନ, ବିବାହ ବର୍ଷିକିଆ, କ୍ରିସ୍‌ମାସ୍; କିଏ କୁଆଡ଼େ ବୁଲିଗଲେ ବନ୍ଧୁ ପାଖକୁ ଗିଫ୍ଟ ପାର୍ଶଲ ପଠାଇ ଦିଏ । ଏ ଗୋଟିଏ ସ୍ୱଭାବମତ ପ୍ରଥାରେ ପରିଣତ ହୋଇ ଯାଇଛି । ଆଗେ ଆମ ସାଇପଡ଼ିଶାରେ ବେଶ୍ କୁଟୁମ୍ବିତା ଚାଲୁଥିଲା । ଆମ ଘରେ ଯେତେ ହେଲେ ବି ତାଙ୍କ ଘରେ କଣ ତିଆରି ହୋଇଛି, ତାଙ୍କର ଯେତେ ହେଲେ ବି ଆମର କଣ ହୋଇଛି, ତକେଇ ବସୁଥିଲୁ । ଆମ ଘରର ବାଇ ତାଙ୍କ ପତରରେ, ତାଙ୍କ ଘରର ସିଝୁଲା ଆମ ପତରରେ ପଡ଼ୁଥିଲା ।

ଏଠି ଚକାଚକ ନାହିଁ । ବଢ଼ିଆକୁ ବଢ଼ିଆ, ଅବଢ଼ିଆକୁ ଦୁଆର ବଢ଼ିଆ । ଶୃଙ୍ଖଳା ଶାନ୍ତି, ବନ୍ଧୁତ୍ୱ ଓ ସାମାଜିକତା ରକ୍ଷା କରିବାକୁ ହେଲେ ଏଇ ଦେବା ନେବା ଭାବଟି ରକ୍ଷା କରିବାକୁ ହେବ । ଆମ ଦୁଃଖରେ ଆମେ ଚଳୁଛୁ, କାହା ସୁଖ–ଦୁଃଖରେ ନାହୁଁ ଭାବିଲେ ମନକୁ ମନ ଏକୁଟିଆ-ବାଆଁରା ହୋଇଯିବ । ଏ ସମାଜରେ ସେ ଭଳି ଜୀବ ବଡ଼ ଦୟନୀୟ ।

## ଖଣ୍ଡି ଆଦାନ୍ତା

ରଚେଲ୍ ହସୁଥିଲା, ଯେତେବେଳେ ଆମ ଆଡ଼େ ପିଲା ମୁହଁ ବନ୍ଦ କରନ୍ତି । ଇଏ ପଚାରିଲା—ଦାନ୍ତ କୁଆଡ଼େ ଗଲା ?

'ଝଡ଼ିଛି'

'ବୁଢ଼ା' !

ମୁଁ ପଚାରିଲି—ଏ ଦାନ୍ତ କଣ କର ?

'ତକିଆ ତଳେ ରଖି ଦେଉ' ।

'କାହିଁକି' ?

'ଆଞ୍ଜେଲ୍ ସେଇଟି ନେଇଯିବ, ଡଲାର୍ ଥୋଇଯିବ' !

ସବୁ ତ ଏଠି ବ୍ୟବସାୟ—ପଇସା ରୋଜଗାରର ଫନ୍ଦି । ଦାନ୍ତଟିକୁ ଆଞ୍ଜେଲକୁ ମାଗଣା ଦେବେ କାହିଁକି ?

ପେଟ୍ରିକ୍ ମାଆ ପଚାରିଲା—ତୁମେ ଦାନ୍ତ କଣ କର ? ମୁଁ କହିଲି ଭାରତ ବର୍ଷ ଗୋଟିଏ ବଡ଼ ଦେଶ । ବିଭିନ୍ନ ପ୍ରଦେଶରେ ବିଭିନ୍ନ ପ୍ରଥା ପ୍ରଚଳିତ । ମୁଁ ସେ କଥା କହି ପାରିବି ନାହିଁ । ଓଡ଼ିଶାରେ ପିଲାଏ ଭଙ୍ଗା ଦାନ୍ତ ନେଇ ମୂଷା ଗାତରେ ପକାନ୍ତି—ଏଇ କଥା କହି—

ମୋ ଦାନ୍ତ ନେ
ତୋ ଦାନ୍ତ ଦେ ।

ଆମ କଥାଭାଷା ବେଳେ ମେଟ୍ରିକ୍ ଅସି ପହଞ୍ଚ ଥିଲା । ସେ କହିଲା—ଗୋଟିଏ ଡାଲ୍ଡା ଡବଲରୁ ରଖିଦେଲେ ଆଞ୍ଜେଲ୍ ପଚାରି ଗେଣ୍ଡି ଦିଏ । ପଚାରିଲା—

'ତୋର କେତୋଟି ଦାନ୍ତ ?'

ସେ କଣ ହିସାବ କରି ଲାଗିଲା । ମୁଁ ଇସ୍କୁ ଚପ୍ ଚୁପ୍ କହିଲା, ସ୍ୱାର କୋଡ଼ିଏଟିରୁ ବେଶୀ ହେବ ନାହିଁ; ଗୋଟିଏ ଗୋଟିଏ କୋଡ଼ି ପଣ ଓସାରିଆ । ଗୋଟିଏ ଭାଙ୍ଗିଲେ ଯାଇ ମେଳ । ଉସେଲର ବ ସେଇଆ । ସେ ଆଞ୍ଜେଲ ଠାରୁ ଭଙ୍ଗା ଦାନ୍ତ ବାବଦକୁ ମୋଟରେ କେତେ ପାଇବ ?

ଇସ୍ ହସିଲା ।

ମୁଁ କହିଲି—ଆମ ଆଡ଼ ହୋଇଥିଲେ ସ୍ୱାକୁ ଚିଡ଼ାନ୍ତେ—

ଖଣ୍ଡିଆ ଦାନ୍ତା ମୁଗ ପଇଚା
କୂଅରେ ଚଢ଼ିଲା ରୁଅରେ .....

## ମି. ଯାଦବ

ସେ ଦିନ ସନ୍ଧ୍ୟାରେ ଇଲନଏସ୍‌ରୁ ମି. ଯାଦବ ସପରିବାର ଆସିଲେ, ସଙ୍ଗରେ ପନ୍ଦର କଲେ ପିଚ୍, ଏକ କଲୋ କଲିସ୍ । ସତରେ ଜୀବନରେ ମୋର କୌଣସି ବିଷୟଟି ଏତେ ସଫଳ ହୋଇ ନ ଥିଲା । ଏତେ ଇଙ୍ଗର, ଏତେ ପିଚ ଖାଇବ କିଏ ? ମି. ଯାଦବଙ୍କ ଝୁଡ଼ିରେ କିଛୁ ଅଙ୍ଗୁର, ମି. ହାର୍କିଙ୍କ ଝୁଡ଼ିରେ କିଛି ପିଚ୍ ଦିଆଗଲା । ପ୍ରକୃତରେ ସ୍ୱାଙ୍କ ଗଛ ଫଳ ସେ, ତାଙ୍କ ଗଛ ଫଳ ଏ ଖାଇଲେ । ଭିତର ମର୍ମ କେହି ଜାଣିଲେ ନାହିଁ । ଆମେ ରହିଲୁ ବନ୍ଧୁ ।

ଯାଦବଙ୍କ ଦୁଇ ଜାତିସ୍ୱ ଫଳ ପରସ୍ପରର ବିପରୀତ । ଗୋଟିଏ ଯେତିକ ମିଠା, ଆରଟି ସେତିକ ପିଚା । କିନ୍ତୁ ମିଠା ଫଳ ପ୍ରତି ଆଦର ଏ ଘରେ ନାହିଁ । ପିଚା ଫଳଟିକୁ ଉଦୟ ଇସ୍ ଉଭୟେ ଆଦର କରୁଛନ୍ତି ।

କାରଣ ଏଠି ଏହା ଦୁର୍ଲଭ । ଯାଦବ ଭାରତରୁ ମଞ୍ଜି ମଗାଇ ନିଜ ବଗିଚାରେ ଗଛ ଲଗାଇଛନ୍ତି ।

ଯାଦବ ବହାରୀ । ଇଞ୍ଜିନିଅରିଂରେ ଉଚ୍ଚ ଶିକ୍ଷା ପାଇବାକୁ ଆସି ରହୁ ରହୁ ରହି ଯାଇଛନ୍ତି । ସେ ଗୃହନିର୍ମାଣ ବିଶେଷଜ୍ଞ । ଭାରତ ବା ବିହାର ସରକାର କେହି ତାଙ୍କୁ ବେଶୀ ଟଙ୍କା ଦେଇ ନେବାକୁ ରାଜି ନୁହନ୍ତି । ତାଙ୍କ ଦର ମଧ୍ୟ ଚଢ଼ା । ପନ୍ଦରଶ ଟଙ୍କାରୁ କମ୍‌ରେ ସେ ଭାରତରେ ପରିବାର ଚଳାଇ ପାରିବେ ନାହିଁ । ଏହାର ମୂଲ୍ୟ ତାଙ୍କ କଳନାରେ ଦୁଇଶ ଡଲାର୍ ମାତ୍ର । ଯୁକ୍ତରାଷ୍ଟ୍ରର ଯେ କୌଣସି ଶ୍ରମିକ ଏହାର ଦୁଇଗୁଣା ରୋଜଗାର କରେ । 'ମୋର ମୂଲ୍ୟ କଣ ଜଣେ ଶ୍ରମିକର ମୂଲ୍ୟଠାରୁ ଊଣା '—ତାଙ୍କର ପ୍ରଶ୍ନ ।

ମୁଁ କହିଲି—ଭାରତରେ କିଏ ନିଜର ମୂଲ୍ୟ ପାଉଛି କି ? ଡାକ୍ତର ପାଉନି, ଶିକ୍ଷକ ପାଉନି, ଇଞ୍ଜିନିଅର ପାଇବେ କେମିତି ? ଦେଶର ଅର୍ଥନୈତିକ ମାନ ନ ବଢ଼ିବା ପର୍ଯ୍ୟନ୍ତ ଏହା କଣ ସମ୍ଭବ ହେବ ? ଯୁକ୍ତରାଷ୍ଟ୍ର ଉନ୍ନତିର ଚୂଡ଼ାନ୍ତ ସ୍ତରରେ । ଭାରତ ତା ଲୋକଙ୍କୁ ଦିଓଳା ଦି ମୁଠା ଦାନା ଦେଇ ପାରୁନାହିଁ । ଦୁଇ ଦେଶକୁ ତୁଳନା କଲେ ଚଳିବ କିପରି ?

ତେବେ ଗୋଟିଏ କଥା ଆପଣ ବିଚାର କରିବେ । ଆମେରିକାର ଦୁଇଶ ଡଲାର ଅପେକ୍ଷା ଭାରତରେ ପନ୍ଦରଶ ଟଙ୍କାର କ୍ରୟ ମୂଲ୍ୟ ଯଥେଷ୍ଟ ଅଧିକ ।

ଯାଦବ ମୋତେ ସିଧାସଳଖ ପ୍ରଶ୍ନ କଲେ—ଭାରତରେ ଗୋଟିଏ କାର୍‌ର ଦାମ୍ କେତେ ? ଗୋଟିଏ ରେଫ୍ରିଜରେଟରର ଦାମ୍ ?

ଭାରତ କଳକବଜା ଦିଗରେ ତ ବେଶୀ ଆଗେଇ ନାହିଁ । ଖାଦ୍ୟ କଥା, ପିନ୍ଧାପରିଧା କଥା ପଚାରନ୍ତୁ । ଭାରତରେ ଚାଉଳ ବା ଗହମ କିଲୋର ଦାମ୍ ଆମେରିକାଠାରୁ ଯଥେଷ୍ଟ କମ୍ । କେତେ ଦୃଷ୍ଟିରୁ ବିଚାର କଲେ ଗୋଟିଏ ଡଲାର୍, ଗୋଟିଏ ଟଙ୍କା ପ୍ରାୟ ସମାନ ।

ଯାଦବ କହିଲେ—ମୋ ମାଆ ଲେଖିଛି, ଗୁଣ୍ଡଳ କଦଳୀ ଦେଢ଼ ଟଙ୍କା । ଫଳ ବୋଇଲେ ପିଜୁଳି, କଦଳୀ; ଦୁଧ ବୋଇଲେ ଜଳ ଭିତରୁ ଟିକିଏ ଭିନ୍ନ । ଏଇ ତ ? ଏଇଥି ପାଇଁ ଭାରତକୁ ଯିବ ?

'ଭାରତ ଆପଣଙ୍କ ଘର; ଯେଉଁଠି ଆପଣ ଦୁଃଖେ ସୁଖେ ଚଳିବେ । ଏ ବଡ଼ ଲୋକ ଘର, ଏଠି ଆପଣ କେତୋଟି ଧନ କୁଣିଆ ହୋଇଛନ୍ତି, ସେ ଆପଣଙ୍କୁ 'ଛ' ବଅଣା ନ ଭଜା କରି ଖୋଜୁଛନ୍ତି । ଘରେ ସବୁବେଳେ ଗୁଡ଼ ଭୁଲି ଖୋଜିଲେ ମିଳିବ କୋଉଠି ? ଭାରତଧେନୁକୁ ଯେପରି ବଢ଼ାଇବେ ସେପରି ଦୁହିଁବେ । ଭଲ ଭାବରେ ବଢ଼ାଇ ଜାଣିବେ ବୋଲି ଆପଣଙ୍କୁ ପଠା ଯାଇଥିଲି; ଆପଣ ନିଜେ ବଢ଼ିଲେ; ଧେନୁ ଖାଲି ପେଟରେ ଆପଣଙ୍କ ଆଡ଼କୁ ଆକୁଳ ଆଖିରେ ଚାହିଁ ହମା, ହମା ରଡ଼ ଛାଡ଼ୁଛି !'

'ବଢ଼େଇବା ଭାର ଆମେ ନେଇ ନାହୁଁ, ନେଇଛନ୍ତି କେତେ ଜଣ ବ୍ୟବସାୟୀ; ସେମାନଙ୍କୁ ସାତ ଖୁଣ ମାଫ । ସେମାନେ ମୋହିଁବା ନାଆଁରେ ଦୁହିଁ ବସୁଛନ୍ତି । ଦୁହୁଁ ଦୁହୁଁ ପଣ୍ଡା କାଟି ନେଇଛନ୍ତି; କ୍ଷୀର ଟୋପାଏ ନ ପାଇ ବାଚ୍ଛୁରିଙ୍କର ତାଳୁକା ଶୁଖି ଯାଉଛି, ସେ କଥା ଦେଖୁଛି କିଏ ? ବଢ଼ାଉଛନ୍ତି ଜଣା, ଅଧିକେ ସମସ୍ତେ, ଦୁହୁଁଛନ୍ତି କେତେ ଜଣ; ଏଇ ଦାଲାଲ୍ ଦଳଙ୍କ କବଳରୁ ମୁକ୍ତ ନ ହେବା ପର୍ଯ୍ୟନ୍ତ ଭାରତର ମୁକ୍ତି ନାହିଁ ।'

## ଲୁସି ଓ ତାକର ବିଭାଘର

ଲୁସିର ବିଭା ଘରକୁ ନିମନ୍ତ୍ରଣ ନ ଥିଲି, ମୁଁ ଦେଖିଛି ଟେଲିଭିଜନରେ । ଏ ରାଜା ଘର ବିଭାଘର, ଯଦି ବା ଏ ଦେଶରେ ରାଜା ବୋଲି କେହି ନାହିଁ । ରଜାଙ୍କ ମୁକୁଟ ବା ପୋଷାକ ନାହିଁ; କିନ୍ତୁ ସେ ଯେ ଏ ଦେଶରେ ସର୍ବ ପ୍ରଧାନ ଏହା ଅସ୍ୱୀକାର କରିବ କିଏ ? ସଭାପତି ଜନସନ୍‌ଙ୍କ କନ୍ୟା ଲୁସି—ତାର ବିଭା ସମ୍ବାଦରେ କେତେଦିନ ଧରି ପତ୍ରିକା ଉଚ୍ଛୁଳି ଉଠୁଥାଏ । ବରକନ୍ୟାଙ୍କ ପରିଚୟଠୁଁ ବିବାହ କାଳରେ ପିନ୍ଧିଥିବା ବସନ ଭୂଷଣ, ସାମାଜିକ ଶିଷ୍ଟାଚାରର ବିବରଣୀ, ଫଟୋ ସବୁ ଦୈନିକମାନଙ୍କରେ ପ୍ରକାଶିତ ହେଉଥାଏ ।

ଯେଉଁ କେକ୍ ଟି ବିବାହରେ କଟା ହେବା ଲାଗି ତିଆର ହୋଇଥିଲା ତାହା ତେର ମହଲାର, ଜାଣ ଏକ କୁତବମିନାର, ଓଜନ ଛ'ଶ ପାଉଣ୍ଡ । ଲୁସି ତାର ବର ପାଟ୍ରିକ୍ ଜନ୍ ଲୁକେଶଙ୍କ ସାହାଯ୍ୟରେ ବହୁ କଷ୍ଟରେ ସେଇଟି କାଟିଥିଲା ।

ବିବାହ ପୂର୍ବରୁ ଲୁସି ଡାଗକୁ ଗଣି ଗଣି ସମ୍ବର୍ଦ୍ଧନା ପତ୍ର ଆସିଥିଲା । ଲୁସି ବାନ୍ଧବୀମାନଙ୍କ ସାହାଯ୍ୟରେ ସେଥିମଧ୍ୟରୁ ବାଛି ବାଛି ତିନି ହଜାର ଖଣ୍ଡ ପତ୍ରର ଉତ୍ତର ଦେଇଥିଲା ।

ଏ ବିବାହ ଉତ୍ସବରେ ଲୁସି ପ୍ରଥମେ ତାର ବାପା ଜନ୍ସନଙ୍କ ସହିତ ନୃତ୍ୟ କରିଥିଲା । ସେ ଲୁସିକୁ ଆଶୀର୍ବାଦ କରିବାକୁ ଯାଇ କହି-ଥିଲେ 'ମୋ ସବୁ ସାନ ଝିଅକୁ ବିଭା ଦେଇ ମୁଁ ଯେ କୌଣସି ଲୋକ ପରି ଗର୍ବିତ । ସେ ମନର ମର୍ଯ୍ୟାଦାକୁ ଯେମିତି ଘର ଦୁଆର କରୁ, ତାର ବହୁତ ପିଲାଛୁଆ ହୁଅନ୍ତୁ ।'

ଲୁସି ତା ନିଜର ବର ବାଛି ଥିଲା । ସେ ବଡ଼ ଲୋକର ପିଲା ନୁହେ, ରାଜଘରର ଧାର ଧାରେ ନାହିଁ । ସୁନ୍ଦର ବା ସୁ ଖେଳାଳୀ ହିସାବରେ ମଧ୍ୟ ତାର ନାମ ନାହିଁ । ହେଲେ ବି ବର ବାଛିବାର ଅଧିକାର କେବଳ କନ୍ୟାର ଅଛି । ଏଥିରେ ବାପ ମାଆ, ବନ୍ଧୁ ବାନ୍ଧବ ପାଟି ଫିଟେଇବାର ଜୁ ନାହିଁ ।

ବିବାହରେ ପୁରୋହିତ ନବ ଦମ୍ପତିଙ୍କୁ ଆଶୀର୍ବାଦ କରିଥିଲେ—

'ତୁମର ଏ ବିବାହ ଶାନ୍ତ ଓ ପ୍ରୀତିର ହେଉ । ଲୁସି ଧାର୍ମିକା ମହିଳାମାନଙ୍କର ପଦାଙ୍କ ଅନୁସରଣ କରୁ; ସେ ସତୀ ହେଉ, ସୁଭଦ୍ରା ହେଉ, ସେ 'ରାଚେଲ୍' ପରି ସ୍ୱାମୀର ପ୍ରିୟା ହେଉ, 'ରେବେକା' ପରି ବିଜ୍ଞା ହେଉ, 'ସାରା' ପରି ଦୀର୍ଘାୟୁ ହେଉ ।'

କବି ହୁଇଟିମ୍ୟାନଙ୍କ ବିବାହ ଆଶୀର୍ବାଦ ଏ ଦେଶରେ ସର୍ବଶ୍ରେଷ୍ଠ ବିବେଚିତ ହୁଏ ।

O bonnie bride,
Yield thy red cheeks to-day
unto the nation's loving kiss.

ବିବାହର ରଙ୍ଗ ବା ଢଙ୍ଗ ନାହିଁ । ବର୍ଷସାରା ଚାଲିଛି । ସମ୍ବାଦ ପତ୍ରର ଚାରିପାଞ୍ଚ ପୃଷ୍ଠା ବିବାହ ସମ୍ବାଦରେ ପୂର୍ଣ୍ଣ ।

ଉତ୍ତର ବର୍ଷ୍ଟଙ୍କ ମଝିଆଁ ଝିଅ ଜାକୋଲିନ୍—ଡାକ ନାମ ଜାକ୍; ବର୍ଷ୍ଟ ଉଦୟନାଥର ସାଥୀ ଡାକ୍ତର । ତେଣୁ ଇରା ଓ ଉଦୟ ସଙ୍ଗେ ମୋତେ ଚର୍ଚ୍ଚକୁ ନିମନ୍ତ୍ରଣଟିଏ ମିଳିଥିଲା । ବର୍ଷ୍ଟ ପ୍ରେସ୍‌ବାଇଟେରିଆନ୍; ଚର୍ଚ୍ଚଟି ଗଥିକ୍ ଶୈଳୀରେ ନିର୍ମିତ । ବହଳ ଭେଲଭେଟ୍ ଗଦି ଉପରେ ଚାଲିଚାଲି ଯାଇ ଗଦିଚୌକି ଉପରେ ବସିଲି । କାହାକୁ ନମସ୍କାର ଦେବାର ବା କାହାଠୁଁ ନେବାର ନ ଥାଏ । ପ୍ରାୟ ସମସ୍ତେ ଅପରିଚିତ ।

ଦମ୍ପତିର ପଛୁଆର ଏ—ପୁରୁଷଙ୍କ ବିଷୟରେ କିଛି କହିବାର ନାହିଁ । ଭୂଷଣ ନାହିଁ, କେବଳ ବସନ—ଅଫିସ୍ ଡ୍ରେସ୍‌ରୁ ଭିନ୍ନ ନୁହେ । ବିବାହ ଉତ୍ସବରେ ସବୁ ଦେଶରେ ପ୍ରାୟ ସ୍ତ୍ରୀଙ୍କର ପ୍ରାଧାନ୍ୟ । ଆମ ଓଡ଼ିଶାରେ ବେଦୀ ପାଖକୁ ବନ୍ଦେଇବାକୁ ଆସିଲାବେଳେ ଅଳଙ୍କାର ଉଜ୍ଜ୍ୱଳା ସ୍ତ୍ରୀମାନେ ଯେପରି ଯେ ଯାହାର ଶ୍ରେଷ୍ଠ ପେଡ଼ିଲୁଗା ପିନ୍ଧି ଆସିଥାନ୍ତି, ଏଠି ସ୍ତ୍ରୀମାନେ ଚର୍ଚ୍ଚକୁ ଆସିଛନ୍ତି ସେହିପରି । ଅଳଙ୍କାର ଥାନେ ବି ଥାନେ । କିନ୍ତୁ ପ୍ରଗଲ୍‌ଭ;—ମୁଖର ଶ୍ରୀବୃଦ୍ଧି କରୁଛି, ଗଳାରୁ ଓ କର୍ଣ୍ଣରୁ ଜ୍ୟୋତି ବିକୀରଣ କରି । ଗମ୍ଭୀର, ଉଜ୍ଜ୍ୱଳ, ସୁନ୍ଦର ମୁଖ ପରେ ମୁଖ ।

ବସ୍ତ୍ର ବାହୁଲ୍ୟବର୍ଜିତ । ଫେସନ୍ ବେଶୀ । ଆଧୁନିକ ଯୁଗ ଫେସନର ଏ ଗୋଟିଏ ପ୍ରଦର୍ଶନୀ । କଟିର କିଞ୍ଚିତ୍ ଊର୍ଦ୍ଧ୍ୱ ଉଦର ଓ ପୃଷ୍ଠ ପ୍ରାୟ ଖୋଲା । ଇଂରେଜୀ ଭି ଆକାରରେ କଟାଯାଇଛି ବ୍ଲାଉଜ୍ । ସ୍କନ୍ଧରେ ଉପବୀତାକାର ସଂପର୍କ ସୂତ୍ର । ସ୍ତନ ମୂଳରୁ କିଞ୍ଚିତ୍ ଊର୍ଦ୍ଧ୍ୱକୁ ହାର ବା ସେ ଜାତୀୟ କିଛି । ଜଣେ ଏକ ପ୍ରକାର, ଆଉ ଜଣେ ଅନ୍ୟ ପ୍ରକାର । କିଏ କୋଉ ଦେଶକୁ ଅନୁକରଣ କରିଛି କିମ୍ବା ନିଜେ ମୌଳିକ ଫେସନ୍ କରିଛି

ଢ଼ଦଙ୍ଗବନ କରୁଛି । କଏ ପାରମ୍ପରିକ ପଦ୍ଧତିରେ ଲମ୍ବା ସିଲକ ପାଞ୍ଜାବୀ ପିନ୍ଧି ଆସିଛି । କଏ କାହାଠୁଁ ସୁନ୍ଦର ଦିଶୁଛି, ତୁଳନା କରିବାକୁ ଅବସର ନାହିଁ । ସବୁଠି ଆଖି ଅଟକୁଛି, ପ୍ରଶଂସା କରିବାକୁ ପ୍ରେରଣା ଆସୁଛି । ଅଭିଜାତ ଆଡ଼ମ୍ବରର ଏକ ଗମ୍ଭୀର ପରିପ୍ରକାଶ, ଅପୂର୍ବ ଦର୍ଶନୀ ଓ ସୂକ୍ଷ୍ମ କାରୁକାର୍ଯ୍ୟରେ ଚମତ୍କାର ।

ବରର ସାଥୀମାନେ ଅତିଥିଙ୍କୁ ଆଦର କରି ବସାଉଥାନ୍ତି— ଗୋଟିଏ ବାଟରେ ଯାଇ ଅନ୍ୟ ବାଟରେ ଆସୁଥାନ୍ତି । ଅଦ୍ଭୁତ ଶୃଙ୍ଖଳା ଓ ଗାମ୍ଭୀର୍ଯ୍ୟ । ଆଗରେ ମଞ୍ଚ, ଦୁଇପାଖେ ଫୁଲତୋଡ଼ା, ମହମବତୀରେ ଦୀପ୍ତ ଆଲୋକିତ । କନ୍ୟାର ସାଥୀମାନେ ଗୋଲାପୀ ପାଞ୍ଜାବୀ ପିନ୍ଧି ମୁଣ୍ଡରେ ଶ୍ୱେତ ଓଢ଼ଣି ପକାଇ ହାତରେ ଗୋଲାପ ତୋଡ଼ା ଧରି ମୃଦୁ ମନ୍ଦ ଗତି ଛନ୍ଦରେ ଆସିଲେ । ଯୁବତୀମାନଙ୍କ ସୁବେଶ, ସୁହାସ ଓ ଗୋଲାପଗୁଚ୍ଛ, ମୃଦୁ ମହମବତୀର ଆଲୋକ ଚର୍ଚ୍ଚକୁ ଏକ ଗମ୍ଭୀର, ସ୍ୱପ୍ନାଚ୍ଛନ୍ନ ରୂପ ଦେଲା ।

ବର ସାଥୀମାନଙ୍କ ସହିତ ଆଗରୁ ଆସି ଛିଡ଼ା ହୋଇଥାନ୍ତି । ବାପୁଙ୍କ ଜାକୋଲିନ୍‌କୁ ନେଇ ଆସିଲେ; ମୁଣ୍ଡରେ ତାର ଧଳା ସିଲ୍‌କର ଓଢ଼ଣା, ପିନ୍ଧିଥାଏ ଧଳା ସିଲ୍‌କର ପାଉନ୍ । ପୁରୋହିତ ଶପଥ ଗ୍ରହଣ କରାଇଲେ, କନ୍ୟା ପାଖରେ ବର ଓ ବର ପାଖରେ କନ୍ୟା ଦୃଢ଼ସଙ୍କଳ୍ପରେ ଆବଦ୍ଧ ହୋଇ ରହିଲେ । ଉଭୟେ ଉଭୟଙ୍କ ପ୍ରତି ଚିର ଅନୁଗତ ରହିବେ, ଶପଥ କଲେ । ତାପରେ ପୁରୋହିତ ସଦୁପଦେଶ ଦେଲେ— ପ୍ରେମ ଜୀବନ ପୁଷ୍ପର ମଧୁ; ଉଭୟେ ସେଥିରେ ମଧୁର ହୁଅ, ଜଗତକୁ ମଧୁର କର । ଈଶ୍ୱରଙ୍କ ଇଚ୍ଛାରେ ପ୍ରେମର ବନ୍ଧନ ଆଜୀବନ ଅତୁଟ ରହୁ ।

ଆନୁଗତ୍ୟ ପ୍ରକାଶ ପରେ ବରକନ୍ୟାଙ୍କର ଶୁଭଦୃଷ୍ଟି—ମଧୁର ବାଦ୍ୟ ନାଦ । ବରକନ୍ୟା ମୃଦୁ ମଧୁର ଦୃଷ୍ଟିରେ ଅତିଥିମାନଙ୍କୁ ପ୍ରସନ୍ନ କରି ବିଦାୟ ନେଲେ । ଜାକୋଲିନ୍‌ର ସଙ୍ଗିନୀ ଓ ବରର ସଙ୍ଗୀମାନେ ମଧ୍ୟ ତାଙ୍କ ପଛେ ପଛେ ବିଦାୟ ନେଲେ ।

ତାପରେ ଆମେ 'କଣ୍ଟ୍ରି କ୍ଲବ୍'କୁ ଯାତ୍ରା କଲୁ । ବୀଚରେ ବର୍ଷ୍ଟଙ୍କ ଘର, ନିର୍ଜନ, ନିରୁପଦ୍ରବମୟ । ଘରଦ୍ୱାର, ନେଣଦେଣ, ଦଉଡ଼ଧାପଡ଼, ଝିଅପିଲା, ଯାନବାହନ କିଛି ନାହିଁ । ଖଢ ଶଢ ଗଡ଼ ବୁଜାରୁ କ୍ଲବ ଘରକୁ, ତା ମଧ୍ୟରେ ଆମେ ।

ବର୍ଷ୍ଟ କ୍ଲବ୍‌ର ଜଣେ ସଭ୍ୟ; ପାଞ୍ଚ ହଜାର ଡଲାର୍ ଏହି କ୍ଲବ୍‌ର ପ୍ରବେଶିକା ଫି । ତା ଛଡ଼ା ମାସିକ ଦେୟ ପଚିଶ ଡଲାର୍ । ସେଭଳି ଅବସ୍ଥାପନ୍ନ ନ ହେଲେ କେହି ଏହି କ୍ଲବ୍‌ର ସଭ୍ୟ ହୋଇ ପାରିବେ ନାହିଁ । ଗୁଢା ହେଲେ ମଧ୍ୟ ଯେ କେହି ଏହାର ସଭ୍ୟ ହୋଇ ନ ପାରନ୍ତି । ବୋର୍ଡ ବସି ଦରଖାସ୍ତକାରୀ ଗ୍ରହଣୀୟ କି ନୁହେଁ ବିଚାର କରେ । ସଭ୍ୟ ଗ୍ରହଣରେ କଡ଼ା କଟକଣା ଅଛି; ସ୍ୱଭାବ ଚରିତ୍ରର ବିଶେଷ ବିବେଚନା ହୋଇଥାଏ ।

ଏହି କ୍ଲବରେ ରାତି ଭୋଜନ ଓ ପାନର ବ୍ୟବସ୍ଥା ଅଛି । ଘରେ ଓ ବାହାରେ ସ୍ତ୍ରୀ ଓ ପୁରୁଷଙ୍କର ନାନା ଖେଳର ବ୍ୟବସ୍ଥା ରହିଅଛି । କେତେକ ଧନପତି ଓ ଅଭିଜାତଙ୍କର ବିନୋଦନ ଗୃହ ଏ । ବ୍ୟକ୍ତିଗତ ଜୀବନକୁ ସାମାଜିକ ସରସତାରେ ଭରି ରଖିବା ଏହାର ଉଦ୍ଦେଶ୍ୟ । ଏହା ଜୀବନକୁ ଲୀଳାଚଞ୍ଚଳ ଓ ଫୂର୍ତ୍ତିମୟ ରଖେ । କାହାରିକୁ ଏକୁଟିଆ ବସାଇ ଦାର୍ଶନିକ କରେ ନାହିଁ ।

ଏହି କ୍ଲବ ଦୁଆରେ ଦ ଦ ଜଣିଆ ଗୋଟିଏ ଧାଡ଼ି ଲମ୍ବିଗଲା; ଛିଡ଼ା ହୋଇଥିବା ଅବସ୍ଥାରେ ସାଁପେନ୍ ପରିବେଷଣ କରାଗଲା—ସ୍ୱଚ୍ଛ ଜଳବତ୍ ମୂଲ୍ୟବାନ୍ ଫରାସୀ ମଦ୍ୟ । ଖାଅ, ନ ଖାଅ ଆନୁଷ୍ଠାନିକ ରୀତିରେ ଗ୍ରହଣ କରିବାକୁ ହେବ । ଏତେ ବଡ଼ ବଡ଼ ଲୋକ ଖାଉଛନ୍ତି, ଏ କପରି ଲାଗେ ? ଚାଖିବା ଲୋଭ ମୋର ନ ଥାଏ ନୁହେଁ, ଟୋପାଟିଏ ଚୁମିଦେଇ ପାଟି ଓଦା କଲି; ତାପରେ ଗୋଟିଏ ବଡ଼ ଢୋକ, ବେଶ୍ । ଗ୍ଲାସଟି ଥୋଇ ଦେଲି । ପଣା ସର୍‌ବତର ଆସ୍ୱାଦ ଯେଉଁମାନେ ପାଇଛନ୍ତି ସେମାନଙ୍କୁ ମଦ ଭଲ ଲାଗିବ ନାହିଁ । ଯେ ମଦ ଖାଉଛନ୍ତି, ସେ ସରବତ୍ ମଧ୍ୟ ଛୁଇଁବେ ନାହିଁ । ଆସ୍ୱାଦ ଯାହା ହେଉ, ଶରୀର ଉପରେ ଏହାର ପ୍ରଭାବ ଶାନ୍ତିକାରୀ ।

ମଦ୍ୟ ବିନା ବିବାହ ଉତ୍ସବ ଏଠି ଜମେ ନାହିଁ । ଗତି ସେଦିନ ଗମ୍ଭୀର ହୁଏ, ଉତ୍ସବର ବ୍ୟକ୍ତିମାନେ ସେଦିନ ନାଚଖିଆ ହୋଇ ଉଠନ୍ତି, ତରଳ ବୃହାଣୀରେ, ସଂଳାପ ଭଙ୍ଗୀରେ । କ୍ଲବ୍ ଘରେ ଡକ୍ଟର ବରଷ୍ଟ, ତାଙ୍କ ସହଧର୍ମିଣୀ, ଜ୍ୟେଷ୍ଠା ଓ କନିଷ୍ଠା କନ୍ୟାମାନେ, କନ୍ୟାର ସୁବେଶିନୀ ସଙ୍ଗିନୀମାନେ—ଆହ୍ଲାଦିନୀ ସୁବକ୍ଷା, ମଧୁର ଆଳାପମୟୀ, ସୁରଭି ସ୍ନିଗ୍ଧ ଚଞ୍ଚଳ ଉଜ୍ଜ୍ୱଳ ସବୁ, ପଥେ ପଥେ ସୁବକ୍ଷାର ତୋରଣ; ଆଳାପ ଜମେଇ ଜମେଇ ପିବାକୁ ହେବ—କପର ଅଛନ୍ତୁ ? ଦେଖି ସୁଖୀ ହେଲି । ବ୍ୟକ୍ତିଗତ ପରିଚୟ ଥିଲେ ଗୋଟା କେତେ ଅଧିକ କଥା, ଏଇ ସାମାଜିକ ଚଳଣିରେ ଅଭ୍ୟାସ ନଥିଲେ ଜମେଇ ପାରିବ ନାହିଁ; ହସି ଜାଣିବା, କଥା କହି ଜାଣିବା ଏକ ସ୍ୱତନ୍ତ୍ର କଳା, ବୋଧହେଲା, ସେଥିରେ ବଡ଼ ଅପଟୁ ମୁଁ, ଅସାମାଜିକ ।

କ୍ଲବ୍ ବାହାରେ ବିସ୍ତୃତ ତୃଣପ୍ରାନ୍ତର; ଓକ୍, ପାଇନ୍, କ୍ରିସ୍-ମାସ୍ର ଡାଳେ ଡାଳେ ଜୁନିପରର ମୂଳେ ମୂଳେ ରଙ୍ଗୀନ ଆଲୋକସଜ୍ଜା । ଉଜ୍ଜ୍ୱଳତା ଅଳ୍ପ, ପାରମ୍ପାରିକ ଘଣ୍ଟରେ ମୃଦୁଳ, ମନୋହର—ଆଲୋକ ଆଘାତ କରେ ନାହିଁ, ଶିହରଣ ଆଣେ; ଅଦୂରେ ଚନ୍ଦ୍ରକାର ଚନ୍ଦ୍ରମାଧୁସ୍ମ । ଟେବୁଲ ଚୌକି ପଡ଼ିଛି; ଠାଏ ଠାଏ ଛତି ଟଣା ହୋଇଛି । ଯେ ଯାହାର ମନଲଖି ପାନୀୟ ପିଉଛି, ଖାଦ୍ୟ ନେଇ ଖାଉଛି, ଗୋମାଂସ ଅଧିକ; ଚିଙ୍ଗୁଡ଼ି, ଡିମ୍ବ ଓ ସର୍ବସାମାନ୍ୟ ଫଳରେ ଉଦର ପୂରଣ କଲି, ଝୋଷଣି-ଫିଟା ଭୋଜନ ଏଠି ନାହିଁ । ଭୋଜନ ଅପେକ୍ଷା ପାନ ଉପରେ ଜୋର୍ ବେଶୀ ।

ରାତି ଦଶଟା, ଘାଦୁକ ଚନ୍ଦ୍ର ଉଠି ଆସୁଥାନ୍ତି; ମି. ମାର୍ଟିନ୍ ତାଙ୍କ ଗୃହିଣୀଙ୍କ ପାଖେ ମୋତେ ବସାଇଦେଲେ—ଏଇଠି ବସନ୍ତୁ, ସବୁ ଦେଖି-ପାରିବେ । ସେତେବେଳକୁ ନାଚ ବେଶ୍ ଜମି ଆସୁଥାଏ, ମିସେସ୍ ପଚାରିଲେ—

'ଆମେରିକାରେ ସବୁଠୁଁ ତୁମକୁ କଣ ଭଲ ଲାଗିଲା ?'

'ପ୍ରାକୃତିକ ଦୃଶ୍ୟ ।'

'ମଣିଷ ?'

'ଏତେ ଅଳ୍ପଦିନ ଭିତରେ ଏଠା ଲୋକଙ୍କ ବିଷୟରେ କଣ ଜାଣିଲି ଯେ କହିବି, ତେବେ ଏମାନେ ବେଶ୍ ଆଳାପୀ, କଣା ହେଲେ ବାଟ ଦେଖାଇ ଦିଅନ୍ତି, ଅତିଥି ଚର୍ଚ୍ଚା କରନ୍ତି ଭଲ ।'

'ଆମେରିକା ଛାଡ଼ି ଇଂଲଣ୍ଡ କାହିଁକି ଯାଉଛନ୍ତି ? ଇଂଲଣ୍ଡ କଣ ଏ ଦେଶ ଅପେକ୍ଷା ଭଲ ?'

'ଦେଖିନାହିଁ ବୋଲି ଯାଉଛି; କିଏ ଭଲ କିଏ ମନ୍ଦ କହିପାରିବି ନାହିଁ ।'

ମିସେସ୍ କଥାର ମୋଡ଼ ଘୁରାଇ ପୁଣି ପଚାରିଲେ—

'ସେଠି କିଏ ବସିଛନ୍ତି, ଦେଖୁଛ ?'

'କିଏ ?'

'ଆମର ସବୁଠୁଁ ଭଲ ବେସ୍‌ବଲ୍ ଖେଳାଳୀ ! ତାଙ୍କ ପ୍ରତି ବହୁତ ଝିଅ ଆକୃଷ୍ଟ; କିନ୍ତୁ ତାଙ୍କର କିଛି ବଦ୍‌ନାମ ନାହିଁ । ତୁମକୁ ବେସ୍‌ବଲ୍ କେମିତି ଲାଗେ ?'

'ଭଲ !'

ସେଠୁଁ ସେ ସ୍ୱାମୀଙ୍କି ଟିକିଏ ଠେଲିଦେଇ କହିଲେ—ଯୁବକକୁ ଯଦି କାଲି ଆମ ଘରକୁ ନ ଆଣିବ ଫେର୍ ଦେଖିବ । ଯୁବକକୁ ବେସ୍‌ବଲ୍ ଶିଖେଇବାକୁ ହେବ । ସେ ଭାରତକୁ ଗଲେ ତାଙ୍କ ପିଲାଙ୍କୁ ଶିଖାଇବେ । ଏମିତି ଆମେରିକାର ଏ ଚମତ୍କାର ଖେଳ ଭାରତରେ ଲୋକପ୍ରିୟ ହୋଇ-ଉଠିବ ।

ମନେ ମନେ ଭାବିଲି—ହେ ଭଗବାନ୍, ଏ କି ପରୀକ୍ଷା ? ଏ ନାରୀଟି ମନରେ ଏପରି ଅଦ୍ଭୁତ ଇଚ୍ଛା ଜାତ କରୁଛ କାହିଁକି ? ଆଜି ଏ ନୈଶ ଭୋଜିର ଭାବ କାଲି ପ୍ରାତଃ ଜାଗରଣରେ ନ ଥାଉ, ପ୍ରଭୁ ।

ଏଇ ସମୟରେ ଖୁବ୍ ଜୋରରେ ବାଜା ବାଜି ଉଠିଲା । କଣ ? କନ୍ୟାବର ମିଶି କେକ୍ କାଟୁଛନ୍ତି !

ପୁଣି ଦଣ୍ଡେ ଗଲା; ଫେର୍ ଜୋର୍‌ରେ ବାଜା ବାଜିଲା; କଣ ? ଜାକ ତାର ଅବିବାହିତା ସଙ୍ଗୀମାନଙ୍କ ଉପରକୁ ଫୁଲତୋଡ଼ା ପକାଉଛୁ, ଯାହା ହାତରେ ବାଜିବ ପହିଲେ ତା'ର ବିଭାଘର ହେବ । ଏ କୌତୁକ ଦେଖିବା ଲଗି ନିମନ୍ତ୍ରିତମାନେ ଚୌକି ଛାଡ଼ି ଯାଇଥିଲେ ।

କନ୍ୟା ହାତରେ ଚାରିଗୋଟି ଦ୍ରବ୍ୟ ବାନ୍ଧିଥାଏ—ଗୋଟିଏ ପୁରାତନ, ଗୋଟିଏ ନୂତନ, ଗୋଟିଏ ଧାର୍‌କରା, ଗୋଟିଏ ନୀଳ—ଏଠା ଜାଣିଷ୍ଟ ଦ୍ରବ୍ୟ ସବୁ । ବର ସେଥିରୁ ଗୋଟିଏ ଫିଟାଇ ତାର ଅବିବାହିତ ସଙ୍ଗୀ-ମାନଙ୍କ ଉପରକୁ ଫିଙ୍ଗେ, ଯାହା ଉପରେ ପଡ଼େ, ତା ବିଭାଘର ଆଗେ ହୁଏ ବୋଲି ବିଶ୍ବାସ ପ୍ରଚଳିତ ।

ସେତେବେଳକୁ ରାତି ଏଗାର । ଜାକ ତା ବରକୁ ଘେନି ଆମ ଟେବୁଲ୍ ପାଖକୁ ଆସିଲା । ଉଦୟ କହିଲା—ଜାକ, ତୋ କଥା ଲେଖା ହେବ; ସେଠି କିଏ ବସିଛନ୍ତି, ଜାଣୁ ? ଘରତର ଜଣେ କବି !

ଜାକ ମୋ ପାଖକୁ ଦୌଡ଼ିଆସିଲା; ସୁନ୍ଦର ସେହି ମୁଖରେ ଅପୂର୍ବ ପ୍ରଫୁଲ୍ଲତା, ବଦଳୁଥାଏ ମୁହୂର୍ମୁହୂ ତାର ଶ୍ରୀ, ଲୀଳା ଚଞ୍ଚଳତାରେ । ମୋତେ ପଚାରିଲା—କଣ ଲେଖିବ ମୋ ବିଷୟରେ ?

'ଚନ୍ଦ୍ରାଲୋକ ସଙ୍ଗେ ତୁମର ସ୍ମିତ ଯେଉଁ ମୂର୍ଚ୍ଛନା ସୃଷ୍ଟି କରୁଛି ମୋ ମନରେ, ତାକୁ ରୂପ ଦେବାକୁ ଚେଷ୍ଟା କରିବି ।'

ସବୁ ଟେବୁଲକୁ ଯିବାକୁ ହେବ, ବର ଛିଡ଼ା ହୋଇଛନ୍ତି ପଛରେ; ମୋ କଥା ଶୁଣିଛି କି ନାହିଁ, ଶୁଣିଥିଲେ ବୁଝିବା ଲଗି ମନଯୋଗ ଥିଲା କି ନାହିଁ, କହି ପାରିବି ନାହିଁ, ଟିକିଏ ହସି ଦେଇ ଜାକ ଅନ୍ୟ ଟେବୁଲକୁ ଚାଲିଗଲା ।

ଆମେ ବନ୍ଧୁମାନଙ୍କଠାରୁ ବିଦାୟ ନେଇ ଏକୁଟିଆ ଟେବିଟିଏ ଅନ୍ଧାରିଆ ଜାଗାରେ ଛିଡ଼ାହେଲୁ । ଆଗ ଚାଲିପିବୁ, ରାତି ବହୁତ ହେଲଣି, ଏ ପିଆ, ନାଚ ମଜଲି ଗୋଟାଏ, ବଣ୍ଟା ପର୍ଯ୍ୟନ୍ତ ଚାଲିବ । ଆଉ ଭଲ ଲାଗୁନାହିଁ । କିନ୍ତୁ ମିସେସ୍ ଶପେଟଙ୍କ ଦୃଷ୍ଟି ଆମ୍ଭ ଉପରେ କେମିତି ପଡ଼ିଲି ଜାଣେ ନାହିଁ । ସେ ଆମ ଭିତରୁ ଉଦୟଙ୍କୁ ଝାମ୍ପି ନେଇ ଗୋଟିଏ ଚୁମା ଦେଲେ, ଆଲୋକିତ ଅଞ୍ଚଳକୁ ନେଇ ତା ସହିତ ନୃତ୍ୟ କଲେ । ତାପରେ ମୋ ପରିଚୟ ପାଇ ଧାଇଁ ଆସିଲେ ମୋ ପାଖକୁ । ଦେହରେ ନୀଳ ବର୍ଣ୍ଣର ଗାଉନ୍, କାନରେ ଟିକା ଦୁଲ୍, କଥା କହିଲ ବେଳେ ମୁହଁରୁ ମଦଗନ୍ଧ ବାହାରୁ ଥାଏ; ଆଖି ଅଳ୍ପ ଲାଲ୍ । ମନରେ ଅଦ୍ଭୁତ ଉଚ୍ଛ୍ୱାସ, ତାଙ୍କୁ ଶାଣିତ କରି ଦେଇଥାଏ ଶରତ୍ ଚନ୍ଦ୍ରିକା । ସେଇ ଯୁବତୀ ମୋ ହାତକୁ ଧରି ପକାଇ କହିଲି—ତୁମ ସାନ ଭାଇର ପଦ ଧାରି ଲଣ୍ଡ, ହଣ୍ଟଣର ପଦ ପରି, ସ୍ଵିଟର ପଦେ ପରି । ତୁମ ପଦ ମଧ୍ୟ ସେହିପରି ହୋଇଥିବ, ଆସ ମୋ ସଙ୍ଗେ ନାଚିବ । ଏହା କହି ମୋ ଦୁଇହାତକୁ ଧରି ପଛେଇ ପଛେଇ ଟାଣି ନେଲି । ତାପରେ ଦୁଇ ଘେରା ନାଚିଗଲା ।

ମୁଁ କହିଲି—

କେବେ ମୁଁ ନାଚ ନାହିଁ, ମୋତେ ନାଚ ଜାଣେ ନାହିଁ । ଆମ ଭାରତରେ ଏ ରୀତି ଚଳେ ନାହିଁ । ମୋ ପଦ ମଧ୍ୟ ଅକୃତିକ ଗୃହିଁ, ବଡ଼ ଭାରି; ନାଚ ପାଇଁ ଏହା ଆଦୌ ଉଦ୍ଦିଷ୍ଟ ନୁହେ । ନାଚିଲେ ବେଅଡ଼ିଆ ଦିଶିବ, ବୁଦ୍ଧି ତେହେରା, ଅଳସ ଗର୍ଦ୍ଦଭ ପଦ !

ମୋ କଥା କି ସେ ଶୁଣେ ? କହିଲା—ହେଇ, ଏମିତି ନାଚନ୍ତି, ଦେଖ, ଶିଖ । ଏହା କହି ମୋ ହାତଧରି ପୁଣି ବି ଘେରା ବୁଲିଗଲି ! ମୁଁ ନ ନାଚିବାରୁ ଯାଇ ସାନଭାଇ ଆଗେ ନାଲିସ୍ କଲି । ସେ ବା ଏ ବିଷୟରେ କି ରାୟ ଦେବ ? ମୁହଁ ବୁଲାଇ ଦେଲି ।

ସେ ପୁଣି ଥରେ ମୋ ହାତଧରି ଘେରାଏ ବୁଲିଯାଇ କହିଲା— ନାଚିବା କିଛି କଷ୍ଟ ନୁହେଁ; ମନର ଦ୍ୱାର ଝରକା ଖୋଲିଯାଏ । ଭାରି ସୁଖକର ।

ନୀଶାରେ ମିସେସ୍‌ଙ୍କ ଆଖି ଛଳ ଛଳ, ମଦ୍ଧରେଷଣାର ମୁଖରେ କାବ୍ୟୋଚ୍ଛ୍ୱାସ—ସେ କ୍ରମେ ହୋଇ ଉଠୁଥାନ୍ତି ବାଗ୍ମିକ, ପଦ ଝଲମଲ । ଭବୋଦନରେ ଅସଙ୍ଗତ ଭାବେ ବ୍ୟାହତ ହୋଇ ଦୁଃଖରେ ମୋତେ ବିଦାୟ ଦେଲା, ସକାଳେ ତା ଘରକୁ ଯିବାକୁ ନିମନ୍ତ୍ରଣ କଲା ।

ଇସ୍ରକୁ ପଚ୍ଚରିଲି—ଜଣେ ସଜ୍ଜନଙ୍କ ସ୍ତ୍ରୀ, ସେ ଏପରି କାହିଁକି ହେଉଛନ୍ତି ?

ଇସ୍ର କହିଲା—ନୀଶାର ଜୋର୍ ତାକୁ ବଦଳାଇ କରିନାହିଁ, ସେ ଏକ ଆନନ୍ଦୀ ଧରଣର; ଏକାନ୍ତ ନିଜର ବୋଲି ମନେ କରେ, ଅଳ୍ପା-ଳାପରେ ଆତ୍ମୀୟ ପରି ନିକଟେଇ ଆସେ ।

## ଶପଥ ଉତ୍ସବ (ସେଣ୍ଟଲୁଇସ୍)

ଉଦୟ ଆମେରିକାର ସ୍ଥାୟୀ ବାସିନ୍ଦା, ଇସ୍ର ଆଜିଠାରୁ ହେବ । ଶପଥ ଉତ୍ସବରେ ଇସ୍ରର କେତେକ ବାନ୍ଧବୀ ଓ ମୁଁ ଉପସ୍ଥିତ ରହିଛୁ ।

ମାସର ପ୍ରଥମ ଶୁକ୍ରବାର ଦିନ ଏଇ ଉତ୍ସବ ଅନୁଷ୍ଠିତ ହୁଏ । ଜର୍ମାନୀ, ଇଂଲଣ୍ଡ, ଯୁଗୋସ୍ଲାଭିଆ, ପୋଲଣ୍ଡ, ବଲିଭିଆ, ଗ୍ରିସ୍, ଫ୍ରାନ୍ସ, ଏଣ୍ଡିଆ—ଏଇ ଦଶଗୋଟି ଦେଶର ଯୁବକଯୁବତୀ ବୃଦ୍ଧବୃଦ୍ଧା, ବାଳକ ବାଳିକା ଆସିଛନ୍ତି ଆମେରିକାର ସ୍ଥାୟୀ ଅଧିବାସୀ ହେବା ଲାଗି । ଏଇ ଶପଥ ଗ୍ରହଣ ଉତ୍ସବ ସରକାରୀ, ଆଂଶିକ ଭାବେ ବେସରକାରୀ ଚେଷ୍ଟାରେ ଅନୁଷ୍ଠିତ ।

କଳ ଜଜଙ୍କ ଅଫିସ୍; ସରକାରଙ୍କ ତରଫରୁ କଳ ଜଜ୍, ସରକାରୀ ଓକିଲ, ଜଣେ ସ୍ତ୍ରୀ ଓ ଜଣେ ପୁରୁଷ ମିଲିଟେରୀ ସରଜେଣ୍ଟ୍, ଆମେରିକାନ୍ ଲେଜିୟନଙ୍କ ଛଡ଼ା ରେଡକ୍ରସ୍‌ର ପ୍ରତିନିଧି ଓ ବୟସ୍କାଉଟ୍ ମାନେ ଉପସ୍ଥିତ ଅଛନ୍ତି । ପଞ୍ଚାଶତ୍ ତାରକା ଖଚିତ ପତାକାମାନ ଉଡ଼ନ୍ତିମାନ । ତା ବ୍ୟତୀତ ଯୁକ୍ତରାଷ୍ଟ୍ରର ଜାତୀୟ ପତାକା ଧରି ଜଣେ ଉପସ୍ଥିତ ହେଲେ । ତାଙ୍କୁ ସମ୍ମାନ ଦେଖାଇବା ଲାଗି ସମସ୍ତେ ଛିଡ଼ା ହେଲେ ।

ଆମେରିକାନ୍ ହେବାକୁ ଯାଉଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଗୋଟିଏ ଗୋଟିଏ ଗୋଲାପ ଫୁଲ ଉପହାର ଦିଆଗଲା । ଜଜ୍ ଆସିବା ଲାଗି ଗୋଟିଏ ସ୍ୱତନ୍ତ୍ର ଦ୍ୱାର ଅଛି, ତାଙ୍କ ଆସନର ପୃଷ୍ଠ ପଟେ । ସେ ଗୃହରେ ପ୍ରବେଶ କରିବା ପୂର୍ବରୁ ସମସ୍ତେ ଠିଆହେଲେ, ନିସ୍ତବ୍ଧ; ବାତାବରଣ ଗୁରୁ ଗମ୍ଭୀର । ଜଜ୍‌ଙ୍କ ତରଫରୁ ଜଣେ ଅଫିସର୍ ସମସ୍ତଙ୍କୁ ଶପଥ ପତ୍ର ପାଠ କରାଇଲେ ।

'ମୁଁ ଘୋଷଣା କରୁଛି ଯେ ମୁଁ ମୋର ପୂର୍ବ ଦେଶ ପ୍ରତି ଆନୁଗତ୍ୟ ତ୍ୟାଗ କରିବି । ଯୁକ୍ତରାଷ୍ଟ୍ରର ସମ୍ବିଧାନକୁ ସମର୍ଥନ କରିବି । ଏ ଦେଶର ଆଇନ୍ କାନୁନ୍ ମାନି ଚଳିବି । ଏ ଦେଶ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱସ୍ତ ଓ ଅନୁଗତ ରହିବି । ଆବଶ୍ୟକ ହେଲେ ଏ ଦେଶ ଲାଗି ଅସ୍ତ୍ର ଧାରଣ କରିବି । ହେ ଈଶ୍ୱର, ମୋତେ ସାହାଯ୍ୟ କର ।'

ତାପରେ ଆମେରିକାନ୍‌ର ନାଗରିକ ଅଧିକାର ପତ୍ର ପାଠ କରାଗଲା—ସେ ସ୍ୱାଧୀନ ଭାବରେ ଚିନ୍ତା କରିପାରେ, ଅନ୍ୟର ଅଧିକାରରେ ହସ୍ତକ୍ଷେପ ନ କରି ନିଜର କଥିତ ବା ଲିଖିତ ମତ ବ୍ୟକ୍ତ କରି ପାରେ; ଇଚ୍ଛା ଅନୁଯାୟୀ ଭୋଟ ଦେଇ ପାରେ; ଇଚ୍ଛା ଅନୁସାରେ ଯେ କୌଣସି ଚାକିରି କରିପାରେ; ଯଥାସମ୍ଭବ ଶୀଘ୍ର ସରକାରଙ୍କଠାରୁ ସୁବିଚାର ଦାବୀ କରେ; ଏ ଦେଶରେ ଅନ୍ୟମାନଙ୍କର ଯେତିକ ଅଧିକାର, ତା ନିଜର ସେତିକ ଅଧିକାର । ତହିଁରୁ ଅଧିକ ଦାବୀ କରି ନ ପାରେ; ସେ ଇଚ୍ଛାନୁଯାୟୀ ଧର୍ମାଚରଣ କରି ପାରେ; ନିଜ ପିଲାଙ୍କୁ ଯେ କୌଣସି ସ୍କୁଲରେ ପଢାଇ ପାରେ । ତାପରେ ଉତ୍ତମ ନାଗରିକର ପାଞ୍ଚଗୋଟି ସଦ୍‌ଗୁଣ ପ୍ରକାଶ କରାଗଲା ।

୧ । ଗଣତନ୍ତ୍ରର ଆଦର୍ଶ ପ୍ରତି ତାର ଅନୁଗତ୍ୟ ଅଜୀବନ ଅବିଚଳିତ । ସେ ଲୋକକଲ୍ୟାଣବ୍ରତୀ; ସବୁ ଲୋକଙ୍କୁ ସମାନ ସୁଯୋଗ ଦେବାରେ ବିଶ୍ୱାସୀ ।

୨ । ସେ ପରର ଦୁଃଖକୁ ନିଜର କରେ, ବଦଳରେ ଅନ୍ୟକୁ ସାହାଯ୍ୟ କରେ, ସତ୍ କର୍ମରେ ସହଯୋଗ କରେ ।

୩ । ସାମାଜିକ ସମସ୍ୟା ସମାଧାନରେ ସେ ସାହାଯ୍ୟ କରେ—ଗୋଷ୍ଠୀ ଧର୍ମ, ଅର୍ଥନୀତି, ରାଜନୀତି, ପରିବାର, ସ୍କୁଲ ଓ ଗ୍ରାମାଞ୍ଚଳରେ ଯେ କୌଣସି ସମସ୍ୟାର ସମାଧାନରେ ସେ ଅଗ୍ରଣୀ ହୁଏ ।

୪ । ଯେ କୌଣସି ଦେଶକୁ ଦାସତ୍ୱରୁ ମୁକ୍ତ କରି ଶୋଷଣମୁକ୍ତ ସମାଜ ଗଢ଼ିବା ତାର କାର୍ଯ୍ୟ । ପ୍ରତ୍ୟେକ ଯେପରି ଉପଯୁକ୍ତ ଘରେ ରହନ୍ତି, ଭଲ ଖାଇବାକୁ ପାନ୍ତି; ଭୌତିକ ଓ ଆଧ୍ୟାତ୍ମିକ ଦିଗରୁ ଉଚ୍ଚ ସ୍ତରରେ ସମାସୀନ ହୁଅନ୍ତି, ତାହା ଦେଖିବା ମଧ୍ୟ ତାର କର୍ତ୍ତବ୍ୟ ।

୫ । ଅଧ୍ୟୟନ, ଶ୍ରବଣ, ଆଲୋଚନ ଓ ପର୍ଯ୍ୟବେକ୍ଷଣରେ ସମସ୍ତ ସୁଯୋଗ ସେ ପାଏ । ଫଳରେ ସେ ଜ୍ଞାନୀ, ଆଧୁନିକ ଯନ୍ତ୍ରପାତି ଚାଳନରେ କୌଶଳୀ; ଅର୍ଥନୈତିକ, ରାଜନୈତିକ ଓ ସାମାଜିକ ଦୃଷ୍ଟିରେ ସେ ବର୍ତ୍ତମାନ ଦେଶକୁ ବୁଝିବାକୁ ସମର୍ଥ । ଜ୍ଞାନ ଓ କଳ କୌଶଳକୁ ଅବଲମ୍ବନ କରି ଗଠି କରୁ ଥିବାରୁ ସେ କାର୍ଯ୍ୟରେ ଅଗ୍ରଣୀ ।

## ଯୁକ୍ତରାଷ୍ଟ୍ରର ଜାତୀୟ ପତାକା—

ପ୍ରତ୍ୟେକ ନୂତନ ଆମେରିକାନ୍‌କୁ ଗୋଟିଏ ଗୋଟିଏ ଜାତୀୟ ପତାକା ଦିଆଗଲା; ସେ ତାର ମାନମର୍ଯ୍ୟାଦା ରକ୍ଷା କରିବ, ଲୋଡ଼ା ହେଲେ ଆତ୍ମଦାନରେ ।

ଆମେରିକାର ଜାତୀୟ ପତାକା ସ୍ଥିର ଓ ସ୍ଥାୟୀ ରୂପ ଗ୍ରହଣ କରିନାହିଁ । ଏହା ଅତୀତରେ ବହୁବାର ବଦଳିଛି, ଏବେ ମଧ୍ୟ ବଦଳୁଛି । ପୁରାତନ ପତାକା କେବେ ବିଭର୍, ପାଇନ୍‌ଟ୍ରି, ରାଟଲ୍‌ସ୍ନେକ୍ ବା ଲଙ୍ଗର୍ ଚିହ୍ନିତ ଥିଲା । ତା ଉପରେ 'ଆଶା', 'ମୁକ୍ତି', 'ମୋ ଉପରେ ପାଦ ପକାଅନା' ପ୍ରଭୃତି ଉଲ୍ଲିଖିତ ଥିଲା ।

୧୭୭୫ ଖ୍ରୀଷ୍ଟାବ୍ଦରେ ଯୁକ୍ତରାଷ୍ଟ୍ରର ଜାହାଜ ଭେଳାରେ ଉଡ଼ନ୍ତୀନ ପତାକା ବର୍ତ୍ତମାନ ପତାକାର ମୂଳ ଉତ୍ସ—ଶ୍ୱେତ ଓ ଲୋହିତ ଉପରେ

କୃଷ୍ଣବର୍ଣ୍ଣ—ଚତୁର୍ଦ୍ଦିଗରେ ତେରଗୋଟି ନକ୍ଷତ୍ରର ସଙ୍କେତ; ଏହା ସେତେବେଳର ତେରଗୋଟି ରାଜ୍ୟର ପ୍ରତୀକ । ଏହି ପତାକାର ଅର୍ଥ ବୁଝାଇବାକୁ ଯାଇ ଜର୍ଜ ଓ୍ୱାସିଂଟନ କହିଥିଲେ—ସ୍ୱର୍ଗରୁ ନକ୍ଷତ୍ରମାନଙ୍କୁ ଗ୍ରହଣ କରିଛୁ, ପୈତୃକ ଦେଶରୁ ଗ୍ରହଣ କରିଛୁ ଲୋହିତବର୍ଣ୍ଣ; ଧବଳତା ମୁକ୍ତିର ରଙ୍ଗ, ଯାହା ଦେଶରୁ ଆମ ଦେଶର ସ୍ୱାତନ୍ତ୍ର୍ୟ ଚିହ୍ନିତ କରେ ।

ପତାକାର ନକ୍ଷତ୍ର ସଂଖ୍ୟା ତେରରୁ ବଢ଼ି ବଢ଼ି ବର୍ତ୍ତମାନ ପଚାଶ ହୋଇଅଛି । ପଚାଶଟି ରାଜ୍ୟକୁ ନେଇ ଯୁକ୍ତରାଷ୍ଟ୍ର ସଂଗଠିତ । ୧୯୧୨ ରେ ନିଉ ମେକ୍‌ସିକୋ ଓ ଆରିଜୋନା ମିଶିବାରେ ହୋଇଥିଲା ଅଠଚାଳିଶଟି ନକ୍ଷତ୍ର । ଆଲାସ୍କା ଉନପଞ୍ଚାଶତ୍ତମ, ହାଓ୍ୱାଇ ପଞ୍ଚାଶତ୍ତମ ୧୯୬୦ ରେ ଏହି ପତାକା ବର୍ତ୍ତମାନ ରୂପ ଲାଭ କରିଥିଲା; ହାଓ୍ୱାଇକୁ ଶେଷ ନକ୍ଷତ୍ର ବୋଲିଯାଇ ନପାରେ ।

ଥୋମାସ୍ ଜେଫରସନ୍‌ଙ୍କ ଭାଷାରେ ଗୋଟିଏ ଦେଶର ଲୋକେ ସଂଗ୍ରାମ କରି କପରି ଏକ ବିରାଟ ଜାତିରେ ପରିଣତ ହୋଇଛନ୍ତି, ଏ ପତାକା ତା'ର ସଙ୍କେତ । ଭଗବାନଙ୍କ ନାମରେ ଶପଥ କରୁଛି—

> ମନୁଷ୍ୟ ମନ ଉପରେ ଯାବତୀୟ ଅତ୍ୟାଚାରର ଚିରନ୍ତନ ଶତ୍ରୁ ମୁଁ ।

ଏହି ପତାକା ଆମ ଜାତୀୟ ଐକ୍ୟ, ଶକ୍ତି ଓ ଚିନ୍ତାର ବାହକ ।

ଜାତୀୟ ପତାକାପ୍ରଦାନ ପରେ ଜଜ୍ ପ୍ରତ୍ୟେକଙ୍କୁ ଜାତୀୟ ଉନ୍ନତିର ସଂକଳ୍ପରେ ଦୃଢ଼ୀଭୂତ କରାଇଲେ । ସରକାରୀ ଓକିଲ ତାପରେ ସଂକ୍ଷିପ୍ତ ଭାଷଣ ଦେଲେ—

ଆମେରିକା ଅତି ସୁନ୍ଦର ଦେଶ, ତାର ବାସିନ୍ଦା ହେବା ସୌଭାଗ୍ୟର କଥା, କିନ୍ତୁ କଷ୍ଟକର । ବହୁ ସାଧନା ଓ ନିଷ୍ଠାରେ ପୂର୍ବ ପୁରୁଷ ଏ ଦେଶକୁ ବଡ଼ କରି ଆସିଛନ୍ତି । ନୂତନ ସ୍ଥାୟୀ ଅଧିବାସୀ ସେହି ନିଷ୍ଠା ଦେଖାଇବେ, ବିଶ୍ୱାସ ।

ତାପରେ ଅଧିବାସୀମାନଙ୍କୁ ସର୍ଟିଫିକେଟ୍, ଆମେରିକାର ସମ୍ବିଧାନ, ୱାସିଂଟନଙ୍କ ସଭାପତିତ୍ୱରେ ବସିଥିବା ପ୍ରଥମ ସ୍ୱାଧୀନତା ଉତ୍ସବ ଅବସର ଅବତରଣୀ ଦିଆ ହୋଇଥିଲା; ଜାତୀୟ ସଙ୍ଗୀତ ବୋଲି ଯାଉଥିଲା । ଉଚ୍ଚାସନରୁ ଓହ୍ଲାଇ ଆସି ଜଜ୍ ପ୍ରତ୍ୟେକ ନୂତନ ଆମେରିକାନ୍‌ଙ୍କ କରମର୍ଦ୍ଦନ କରୁଥିଲେ । ରେଡ଼୍‌କସ୍ ତରଫରୁ ଜଳପାନର ବ୍ୟବସ୍ଥା ହୋଇଥିଲା ।

## ଦେଲ ଯାହା ନେଲ ତାହା

ସେତେବେଳେ ବଡ଼ା ସାଦାଣ ମେଳ । ରାଜଅତ୍ୟାଚାର ଓ ଧର୍ମାନ୍ଧ ନିପୀଡ଼ନରେ ବ୍ୟସ୍ତ ବିକଳ ହୋଇ ଲୋକେ ଏ ଦେଶକୁ ପଳିଆସୁଥିଲେ—ନିରାଶ୍ରୟର ଆଶ୍ରୟ, ନିରାଶର ଆଶା । ଲକ୍ଷ୍ମୀଙ୍କ କୋଠଭଣ୍ଡାର ଖୋଲି ପଡ଼ିଥିଲା, ଆମେରିକାନ୍‌ର ହସ୍ତ ପ୍ରସାରିତ ହୋଇ ରହିଥିଲା ବିଦେଶୀଙ୍କୁ ଆଲିଙ୍ଗନ କରି ନେବା ଲାଗି । ଜାତୀୟତାର ଜୁଆର ଆସିଲା; ଦରଜା ବନ୍ଦ ହୋଇଗଲା—ଆମେରିକା ଆମେରିକାନ୍‌ଙ୍କର ହେଲା, ଯେମିତି ଇଂଲଣ୍ଡ ଇଂରେଜଙ୍କର ।

୧୮୭୦ ଖ୍ରୀଷ୍ଟାବ୍ଦରେ ଚୀନା ଶ୍ରମିକମାନଙ୍କ ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ ହେଲା—ବିଦେଶୀ ମଜୁରିଆଙ୍କ ଦାଉରେ ଦେଶୀଆ ଉଧେଇ ପାରୁନାହାନ୍ତି—ଜୀବନର ମାନ ବଢ଼ୁନାହିଁ, କିନ୍ତୁ ପୁଞ୍ଜିପତି ଲୋଡ଼ିଲା ବିଦେଶୀ, କାରଣ ତାର ମଜୁରି ଅଳ୍ପ, ଉତ୍ପାଦ ବେଶୀ । ବହୁ ଆନ୍ଦୋଳନ ପରେ ୧୮୮୨ରେ ଆଇନ ପାସ୍ ହୋଇ ଚୀନ୍ ଶ୍ରମିକଙ୍କୁ ଫାଟକ ବନ୍ଦ ହୋଇଗଲା । ତାପରେ କୋଡ଼ ପଡ଼ିଲା ଉନ୍ମତ୍ତ, ଦୁଷ୍ଟଚରିତ୍ର, ବିକଳାଙ୍ଗ, ବ୍ୟାଧିଗ୍ରସ୍ତ, କାଙ୍ଗାଳ ଓ ବିପ୍ଳବୀମାନଙ୍କ ଉପରେ, ଅବଶ୍ୟ ଦେଶକୁ ନିରାପଦ ରଖିବା ପାଇଁ; ରୋଗ ହେବା ପରେ ଔଷଧ ଖାଇବା ଅପେକ୍ଷା ରୋଗ ହେବାକୁ ନ ଦେବା ଅଧିକ ଶ୍ରେୟସ୍କର ।

ତାପରେ ଯାପାନୀଙ୍କ ପାଳି ପଡ଼ିଲା । ୧୯୦୭ରେ ଆଇନ ହୋଇ ଯାପାନୀଙ୍କୁ କବାଟ କିଳା ହୋଇଗଲା ।

ପ୍ରଥମ ମହାଯୁଦ୍ଧ ବେଳେ ବହୁ ପଣ୍ଡିତ, ବଧ୍ୟିତ, ଦେବାଳିଆ, ବଳକାଙ୍ଗ, ଦୁର୍ବୃତ୍ତ ଦେଶକୁ ପଶିଆସିବାର ଶଙ୍କା ଥିଲା । ତେଣୁ କଟକଣା ଜାରି ହେଲା—ଆମେରିକାରେ କୌଣସି ନିର୍ଦ୍ଦିଷ୍ଟ ଦେଶର ଲୋକ ଦୁଇ ପରସେଣ୍ଟରୁ ଅଧିକ ରହି ପାରିବେ ନାହିଁ । ତାପରେ ଯେଉଁମାନେ ଆମେରିକା ଆସି ସ୍ଥାୟୀ ଭାବରେ ବସବାସ କରିବାକୁ ଇଚ୍ଛା କଲେ, ସେମାନଙ୍କୁ ପୁରାପୁରି ଆମେରିକାନ୍ କରିବାକୁ ଚେଷ୍ଟା କରାଗଲା— ଆମେରିକାନ୍ଙ୍କ ଆଇନ କାନୁନ୍, ସଭ୍ୟତା ସଂସ୍କୃତି; ରୀତିନୀତି ଜାଣିବା, ଏହି ଦେଶ ପ୍ରତି ଏକାନ୍ତ ଆନୁଗତ୍ୟ ଦେଖାଇବାର ଯୋଗ୍ୟତା ଅସଲ ମାପ କାଠି ହେଲା । ଡାକ୍ତର, ଇଞ୍ଜିନିୟର, ବୈଜ୍ଞାନିକ, ଶିକ୍ଷାବିତ୍— ଏମାନଙ୍କୁ ସ୍ଥାୟୀ ବାସିନ୍ଦା ଭାବେ ନେବା ଲଗି ଆମେରିକାର ଆଗ୍ରହ ଥିଲା—କାରଣ ସେମାନେ ଗଳଗ୍ରହ ହେବେ ନାହିଁ, ବରଂ ହେବେ ନାନା ଦିଗରେ ସହାୟକ । କିନ୍ତୁ ଯେଉଁ ଦେଶ ଏମାନଙ୍କୁ ବିଶେଷ ଟ୍ରେନିଂ ଲାଗି ଆମେରିକା ପଠାଇଥିଲା ସେ ହେଲା କ୍ଷତିଗ୍ରସ୍ତ । ସେଥିଲାଗି ସମାଲୋଚନା ହେଲା—ଆମେରିକା ଡାହାଣ ହାତରେ ଯାହା ଦେଉଛି, ବାଁ ହାତରେ ତା ଫେରି ଯାଉଛି । ଦାନର ପୁଣ୍ୟଫଳ ସଙ୍ଗେ ସଙ୍ଗେ ମାରି ନେଉଛି । ଏହିପରି ଦେଶ ବା ବ୍ୟକ୍ତି ପ୍ରତି ଲକ୍ଷ୍ୟ ରଖି ତେଣୁ ଯଦୁମଣି ଲେଖିଥିଲେ—

ଦେଲ ଯାହା, ନେଲ ତାହା
ଏଥିପାଇଁ କି ମା ମହାଦୋଚାପଣେ
ପତାକା ବାନ୍ଧିଛ
ହେ ନୀଳାଚଳ କଳାକର
ସତ କ ଏ ମିଛ ?

ଯାପାନ ବା ଭାରତରେ ଜନସଂଖ୍ୟା କମାଇବା ଚେଷ୍ଟା ହେଉଛି, କିନ୍ତୁ ଅଷ୍ଟ୍ରେଲିଆ ବା ଆମେରିକା, ଯେଉଁଠି ଜନସଂଖ୍ୟା ଅତି କମ୍ ସେଠିକି ଜନବହୁଳ ଦେଶରୁ କିଛି ଜନ ଖାଲି କରି ନେବା ଚେଷ୍ଟା ନୋହୁଛି କାହିଁକି ? ମନେହୁଏ, ଆନ୍ତର୍ଜାତିକତା ଏବେ ବି ଏକ ଫାଙ୍କା ଆବାଜ୍ ହୋଇଛି । ଜାତିପ୍ରୀତିର ରାଜତ୍ୱ ସର୍ବତ୍ର ।

## ଜେଫରସନ୍ ମ୍ୟୁଜିୟମ୍

ଫରାସୀ ସମ୍ରାଟ ଲୁଇ ନବମଙ୍କ ନାମାନୁସାରେ ସେଣ୍ଟଲୁଇସ୍ ସହର ନାମିତ । ଯାଦୁଘର ସାମ୍ନାରେ ତାଙ୍କର ଅଶ୍ୱାରୋହୀ ମୂର୍ତ୍ତି; ମୂର୍ତ୍ତିର ପୃଷ୍ଠଦେଶରେ ଗୋଟିଏ ପୁଷ୍କରିଣୀ, ଘାଟ ଆଉ କେଟିସ୍ଥାନ, ଗାଢ଼ ନୀଳ ଜଳ; ଗଡ଼ାଣିଆ ହୋଇ ଘରଆଡ଼ୁ କୂଳ ପର୍ଯ୍ୟନ୍ତ ଲମ୍ୱି ଆସିଛି ତୃଣଭୂମି —ଇତସ୍ତତଃ ଗୋଟାଏ ଗୋଟାଏ ମାପଲ୍, ବାର୍ଚ୍, ଜୁନିପର୍ ବା କୋନିଫର୍ । ଶୀତଦିନେ ଏ ପୋଖରୀ ଜମାଟ ବାନ୍ଧିଲେ 'ସ୍କି' ଖେଳ ହୁଏ । କୂଳରେ ଗୋଟିଏ ବନ୍ୟଚେରୀ ଗଛ, ଲାଲ୍ ଫଳ ନଦ ହୋଇଛି । ତାର ମୂଳରେ ବସିଲି ମୁଁ । ମଧୁର, ଶୀତଳ ଶରତ୍ ପବନ । ଝରନ୍ତ୍ ପତ୍ର ବଡ଼ ବଡ଼ ଗୁଣ୍ଡୁଚି ଚେରୀ ଖାଉଁ ଖାଉଁ ସତେ ଯେପରି ମୋତେ ପଚାରୁଥାନ୍ତି —କଣ ଭାବୁଛ ?

ନିଜକୁ ସେଇ ପ୍ରଶ୍ନ ପଚାରିଲା ବେଳେ ବୁଝିଲି—ନିର୍ଦ୍ଦିଷ୍ଟ କିଛି ନାହିଁ । ଗୋଟିଏ ଘଣ୍ଟା କଟେଇ ସାରିଲିଣି, ସତେ ତ, ଏ ଶରତ୍‌କାଳ ମନରେ ପଶିବା ଲାଗି ଅନୁମତି ଲୋଡ଼ୁନାହିଁ; ମୋ ଅଜାଣତରେ ସେ କେତେବେଳେ ପଶି ତାର ପ୍ରଭାବ ବିସ୍ତାର କରିସାରିଲାଣି । ଅଥଚ ଏଠି ଆମ ଦେଶର କାଶଫୁଲ ନାହିଁ, ମଥାନ ଧାନ ଖେତ ନାହିଁ, ଆକାଶରେ ଧାଡ଼ି ଧାଡ଼ି ଉଡ଼ୁଡ଼ୀନ ହଂସାବଳୀ ନାହାନ୍ତି, ତଥାପି ଅଦ୍ଭୁତ ପ୍ରସନ୍ନ ଶ୍ରୀ, ଜଳ, ସ୍ଥଳ, ଆକାଶ ସର୍ବତ୍ର ।

ଆଉ ହାତରେ ଗୋଟିଏ ମାତ୍ର ଘଣ୍ଟା; ଯାଦୁଘରେ ପଶିଲି । କଣ ଦେଖିବ ? କେବଳ ଚାଲିଲି; ଯେଉଁ ଛବି ବା ମୂର୍ତ୍ତି ମୋତେ ଜବରଦସ୍ତି ଅଟକାଇଲା ଅଟକିଲି ।

ଟେମ୍ ନାମକ ମିଶରର ଦେବତାଙ୍କ ପୁରୋହିତ, ତାଙ୍କ ମମିର ଖୋଳ; ତା ଉପର ଲେଖରେ ଦେବତା ଓ ପୁରୋହିତଙ୍କ ପରିଚୟ ଓ କେତୋଟି ସ୍ତୁତିଗୀତ ଲିଖିତ ହୋଇଅଛି । ତାପରେ ଓସିରିସ୍, ଆପୋଲୋ, କ୍ରୟସ୍, ଦକ୍ଷିଣ ବାଲିର ଡାଇନା ମୂର୍ତ୍ତି, ଭାରତୀୟ ନଟରାଜ, ଅର୍ଦ୍ଧ

ନାଗଶୃର ମୂର୍ତ୍ତି ଉପରେ ଦୃଷ୍ଟି ବଳଜାଇ ନେଲି । ମୋ ଆଖିକୁ ବନ୍ଦୀ କରି ରଖିଲି କେତୋଟି ଫଟୋ ଛବି—ଷଡ଼ରଷଡ଼ ମଙ୍ଗଲ, ପ୍ରତ୍ୟୁଷ ଗୌରବ, ବନାନ୍ତର ମାୟା, ଶିଶୁଦ୍ରଷ୍ଟି ଶିଶୁ । ଦେଖୁ ଦେଖୁ ଉଗ ଆସି ପହଞ୍ଚିଗଲି । ଅଧା ଦେଖାରୁ ଷଡ଼ ମନରେ ଫେରି ମୁଁ ଫେରି ଆସିଲି; ବୋଧ ହେଲା—ମୋ ପଛେ ପଛେ ଗୋଡ଼ାଇ ଆସିଛନ୍ତି କେତେ ଛବି, ସେଇ ସେଇ ଯୁଗର ପରିବେଶ ନେଇ ।

## ସେଣ୍ଟଲୁଇସ୍ ବିଶ୍ୱବିଦ୍ୟାଳୟ

ମି: ବେକର୍ ଏହି ବିଶ୍ୱବିଦ୍ୟାଳୟର ଜଣେ ପିଏଚ. ଡି ଛାତ୍ର । ଲାଇବ୍ରେରୀରେ କାର୍ଯ୍ୟ କରନ୍ତି, ଗବେଷଣା ମଧ୍ୟ କରନ୍ତି । ସେ ମୋତେ ସକାଳ ଆଠଟାରୁ ନ' ଟା ମଧ୍ୟରେ ବିଶ୍ୱବିଦ୍ୟାଳୟ ବୁଲେଇ ଦେଖାଇବେ କଥା ହୋଇଥିଲା । ମୁଁ ତାଙ୍କୁ ଖୋଜିବା ଲାଗି ଲାଇବ୍ରେରୀରେ ପଶିଲି । ପରିଚୟ ହେଲା ପେଟ୍ରିକ କୋଲେମ୍ୟାନ୍‌ଙ୍କ ସହିତ । ବୃଦ୍ଧ, କିନ୍ତୁ ତରୁଣ ପରି ଉତ୍ସାହୀ । ଲାଇବ୍ରେରୀର ଜଣେ କର୍ମଚାରୀ ସେ । ବେକର୍‌ଙ୍କ ରୁମ୍ ନମ୍ବର କେତେ ? ଜଣକ ପାଖେ ପାଠାଗାରର ସବୁ କର୍ମୀଙ୍କ ତାଲିକା; କିଏ ଆସିଛନ୍ତି ନ ଆସିଛନ୍ତି ସେ ବୁଝନ୍ତି । ସେ ବେକର୍‌ଙ୍କ ରୁମ୍ ନମ୍ବର ବାହାର କଲେ—୪୩୧ । କୋଲେମାନ୍ ମୋତେ ନେଇ ସେଠି ପହଞ୍ଚିଲେ ; ଖୋଲାନାହିଁ । ଇତସ୍ତତଃ ହେଉଛି, ସାକ୍ଷାତ୍ ହେଲା ରେଭରେଣ୍ଡ ଆର୍ ମୂର୍‌ଙ୍କ ସହିତ । ସେ ଭାଷା ବିଭାଗର ଡିରେକ୍ଟର; କାଥୋଲିକ୍ ଫାଦର୍, ବେତନ ନିଅନ୍ତି ନାହିଁ, କେବଳ ନିଜର ବ୍ୟୟ ନିର୍ବାହ ଲାଗି ଯତ୍‌ସାମାନ୍ୟ ।

ବିଶ୍ୱବିଦ୍ୟାଳୟ ସମ୍ପର୍କରେ ଗୋଟିଏ ସ୍ଥୂଳ ଧାରଣା ଦେବାକୁ ଯାଇ ମି: ମୂର୍ କହିଲେ—ଏହା ଗୋଟିଏ ପବ୍ଲିକ ଅନୁଷ୍ଠାନ; କାଥୋଲିକ୍ ଅନ୍ତର୍ଗତ ଜେସୁଇଟ୍‌ଙ୍କ ଚେଷ୍ଟାରେ ୧୮୧୮ ଖ୍ରୀଷ୍ଟାବ୍ଦରେ ସ୍ଥାପିତ, ସେତେବେଳକୁ ଏହି ବିରାଟ ନଗରର ଜନସଂଖ୍ୟା ମାତ୍ର ତିନି ହଜାର । ୧୮୩୨ରେ ମିସୌରୀ ସରକାର ଏହାକୁ ସ୍ୱୀକୃତି ଦେଲେ । ଏହାର ଛାତ୍ର ଛାତ୍ରୀ ସଂଖ୍ୟା ଏବେ ପ୍ରାୟ ଏଗାର ହଜାର । ଫୋର୍ଡ଼ ଫାଉଣ୍ଡେସନ୍ ଏବେ

ଏହି ବିଶ୍ୱବିଦ୍ୟାଳୟକୁ ୫° ଲକ୍ଷ ଡଲାର୍ ଦାନ କରିଛନ୍ତି । ଗବେଷଣା ଲାଗି ବିଶ୍ୱବିଦ୍ୟାଳୟର ବିଭିନ୍ନ ବିଭାଗ ଉପରେ ଆଲୋକ ପାତ କରିବାକୁ ଯାଇ ସେ କହିଲେ—ଏଠି କାଲ, ଜଡ଼ାମାନଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା ଅଛି । ଅନ୍ଧମାନଙ୍କୁ ଶିକ୍ଷା ଦେବା ଲାଗି ହେଲେନ୍ କେଲେରଙ୍କ ଗୀତ ଅବଲମ୍ବିତ ହୋଇଅଛି । ହାତରେ ବରଣ୍ଡି ବରଣ୍ଡି ସେମାନେ ଅକ୍ଷର ଶିଖନ୍ତି; ଲେଖିଲା ବେଳେ ଯେପରି ଧାଡ଼ି ବଙ୍କା ନ ହୁଏ, ଏଥିଲାଗି କଲମ ମୁନ ଧାରେ ଧାରେ ଖଣ୍ଡିଏ କାଗଜ ପଟା ବ୍ୟବହାର କରନ୍ତି । କେତେକ ଟାଇପ୍ କରି ଶିଖନ୍ତି; ଜ୍ଞାନ ଅର୍ଜନ ଲାଗି ଶ୍ରବଣ ଅଧିକ ବ୍ୟବହୃତ ହୁଏ । ସେମାନେ ଟେଲ୍‌ଭିଜନ୍ ଓ ଟେପ୍ ଯନ୍ତ୍ର ସାହାଯ୍ୟରେ ଜ୍ଞାନ ଆହରଣ କରିଥାନ୍ତି । ସ୍ମୃତି ଶକ୍ତି ତୀକ୍ଷ୍ଣ । ଯାହା ଶୁଣନ୍ତି ମନରେ ଗ୍ରଥି ହୋଇ ରହିଯାଏ । ସେ ମାର୍ଜୋରି ପ୍ଲାଭେନ୍‌ସଙ୍କର ହସ୍ତାକ୍ଷର ମୋତେ ଦେଖାଇଲେ । ମିସ୍ ପ୍ଲାଭେନ୍‌ସ ଅନ୍ଧୁଣୀ; କେବଳ ସାଧାରଣ ଭାବେ ଶିକ୍ଷିତା ନୁହନ୍ତି, ବିଦୁଷୀ ହିସାବରେ ସୁପରିଚିତା । ସେ ପ୍ରାନ୍‌ସ୍ ସାହିତ୍ୟରେ ପିଏଚ. ଡ. ଡିଗ୍ରୀ ଲାଭ କରିଛନ୍ତି ।

ତାପରେ ମି.ମୁଲ୍ଲ ରେଜନାଲ୍ଡ କାର୍ଟର୍‌ଙ୍କ ଥେସିସ୍ ମୋତେ ଦେଖାଇଲେ; ସେ ନିଗ୍ରୋ, ପୁଣି ଅନ୍ଧୁଣୀ । ନିଜ ଥେସିସ୍ ନିଜେ ଟାଇପ୍ କରିଛନ୍ତି । କାଥୋଲିକ୍ ନନ୍‌ଙ୍କ ମଧ୍ୟରେ ପୃଥିବୀରେ ସେ ଏକମାତ୍ର ପିଏଚ୍. ଡି । ବୟସ ଈର୍ଷା ଉଦ୍ରେକକାରୀ । ଧର୍ମ ରାଜ୍ୟରେ ବି ତାର ଆଧିପତ୍ୟ ଅଳ୍ପ ନୁହେ କାର୍ଟର୍‌ଙ୍କ ଜ୍ଞାନ ସାଧନାକୁ ସ୍ୱତନ୍ତ୍ର ଗୌରବ ଦିଆ ହୋଇନାହିଁ । ଏପରିକି ତାଙ୍କୁ ଜଣେ ସିଷ୍ଟରଭାବେ ନିଆ ହେଉନାହିଁ । ଏହି ଭଗିନୀମାନେ ଗୌରାଙ୍ଗିନୀ ନୁହନ୍ତି, କୃଷ୍ଣା !

ତାପରେ ମି. ମୁଲ୍ଲ ଜଣେ ମେହେନ୍ତରର କଥା କହିଲେ । ତାଙ୍କ ନାଆଁ ଫକ୍‌ସଓ୍ୱାର୍ଥ । ନିଷ୍ଠା ଓ ଦୃଢ଼ତା ବଳରେ ମନୁଷ୍ୟ ବି ଅସାଧ୍ୟ ସାଧନ କରିପାରେ ସେ ତାର ଦୃଷ୍ଟାନ୍ତ । ସେ ଏଗାର ବର୍ଷକାଳ ବିଶ୍ୱବିଦ୍ୟାଳୟରେ ମେହେନ୍ତର କାମ କରିଥିଲେ । ବହୁ ଦୁଃଖରେ ସଂସାର ଚଳାଇ ସେ ନିଜର ପୁଅ ଦୁଇଟିଙ୍କୁ ପାଠ ପଢ଼ାଇଲେ । ସେମାନେ ବି.ଏ

ପାସ୍ କଲା ପରେ ସେ ନିଜେ ପଢ଼ିଲେ । ଗୃହକର୍ମ କରୁଥାନ୍ତି, ଏଣେ ପଢ଼ୁ-ଥାନ୍ତି । ସେ ବି.ଏ ପାସ୍ କଲେ । ସେଣ୍ଟଲୁଇସ୍‌ର ଏକ ହାଇସ୍କୁଲରେ ସେ ଏବେ ଶିକ୍ଷକ । ଏମ୍ ଏ ପରୀକ୍ଷା ଦେବା ଲାଗି ପ୍ରସ୍ତୁତ ହେଉଛନ୍ତି ।

କଥାଭାଷା ଆଜ କହ୍ନି କାଳ ଚାଲିଥାନ୍ତା । ମି ବେକର ଆସି ଠିଆ ହେଲେ । ତିରିଶ ବର୍ଷର ଯୁବକ; ବାଳ ପାଚି ଲାଣି । ବର୍ଣ୍ଣ ମଧ୍ୟ ଲାଲ୍ ବା ଚେହେରା ଧଳା ନୁହେ, ସାହେବଙ୍କରୁ ଟିକିଏ ତୋଫା । ସେ ଆମେରିକାନ୍ ନୁହନ୍ତି, ଏଠି ବାକୁ ଆସିଛନ୍ତି । ଘର 'ବ୍ରିଣ୍ଟିଶ ଗିଆନା'—ମେକ୍ସିକୋ ଓ ଦକ୍ଷିଣ ଆମେରିକା ମଝିରେ ଅବସ୍ଥିତ ଏହା ଏକ କ୍ଷୁଦ୍ର ରାଜ୍ୟ । ଲୋକସଂଖ୍ୟା ମାତ୍ର କେତେ ହଜାର, ବ୍ରିଟିସ୍ ଶାସନାଧୀନ । ସାଧାରଣ ନିର୍ବାଚନ ହୋଇ ଏବେ ଜଣେ ପ୍ରଧାନ ମନ୍ତ୍ରୀ କରା ହୋଇଛନ୍ତି । କିନ୍ତୁ ତାଙ୍କ ଉପରେ ଜଣେ ବ୍ରିଟିସ୍ ଗଭର୍ଣ୍ଣର ରହିଛନ୍ତି । ସ୍ୱାଧୀନ ହେଲେ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଭାବରେ ଚଳିବାର ଆର୍ଥିକ ଅବସ୍ଥା ତାର ନାହିଁ ବୋଲି ବେକର୍ କହିଲେ ।

ମି. ମୃଙ୍କ୍ ବିଦାୟ ନେବା ପରେ ବେକର୍ ମୋତେ ଗୋଟିଏ ଭାଷା ଶ୍ରେଣୀ ମଧ୍ୟକୁ ନେଲେ । ଶିକ୍ଷା ଦାନରେ ଏଠି ଅଧୁନିକ ଯାନ୍ତ୍ରିକ ପ୍ରଣାଳୀ ବ୍ୟବହୃତ ହେଉଅଛି । ଅଧ୍ୟାପକ ଏଠି ଛିଡ଼ା ହୋଇ ବକ୍ତୃତା ଦିଅନ୍ତି ନାହିଁ । ସେ ତାଙ୍କ ବକ୍ତବ୍ୟକୁ ଟେପ୍ ରେକର୍ଡ଼ିଂ କରି ଆଣିଥାନ୍ତି । ଅଧ୍ୟାପକ ବସନ୍ତି, ରେକର୍ଡ ବାଜେ । ଛାତ୍ର ଛାତ୍ରୀମାନଙ୍କ ସାମ୍ନା ଟେବୁଲ ଉପରେ ମଧ୍ୟ ଗୋଟିଏ ଗୋଟିଏ ଟେପ୍ ରେକର୍ଡ଼ିଂ ଯନ୍ତ୍ର ବୁଲୁଥାଏ । ଟେପ୍‌ରୁ ଟେପ ହୁଏ । ଆବଶ୍ୟକ ହେଲେ ଛାତ୍ରମାନେ ନିଜ ଯନ୍ତ୍ରରୁ ଏହି ବକ୍ତୃତା ଶୁଣିଥାନ୍ତି ।

ପ୍ରତ୍ୟେକ ଛାତ୍ରର ଦୁଇପାଖେ କାଠର କାନ୍ଥି—ଏକଠାରୁ ଅନ୍ୟକୁ ସ୍ୱତନ୍ତ୍ର ରଖିବା ଲାଗି ଏ ବ୍ୟବସ୍ଥା । ଏୟାରଫୋନ୍ କାନରେ ଦେଇ ଛାତ୍ରମାନେ ଶିକ୍ଷକଙ୍କ କଥା ଶୁଣିଥାନ୍ତି । ପ୍ରତ୍ୟେକର ଗୋଟିଏ ସ୍ୱତନ୍ତ୍ର ମାଇକ୍ ଅଛି । ଶିକ୍ଷକଙ୍କୁ ପ୍ରଶ୍ନ ପଚାରିବା ଲାଗି ସେ ତାକୁ ବ୍ୟବହାର କରେ ।

ଛାତ୍ରର ପ୍ରଶ୍ନ ଓ ଶିକ୍ଷକଙ୍କ ଉତ୍ତର ଅନ୍ୟ ଛାତ୍ରମାନେ ଶୁଣି ପାରନ୍ତି ନାହିଁ— ଏହିପରି ଯାନ୍ତ୍ରିକ ବ୍ୟବସ୍ଥା ହୋଇଅଛି ।

ତାପରେ ବେକର ମୋତେ ଭୂଇଁ ତଳର ବାସ୍କେଟବଲ୍ ଖେଳ ହଲ୍, କୁସ୍ତି କସରତ ହଲ୍, ସ୍ୱିମିଂ ପୁଲ୍ (ଏଠି ସହ ସନ୍ତରଣ ନାହିଁ । ଯୁବକ ଯୁବତୀମାନଙ୍କ ସନ୍ତରଣ ଲାଗି ଭିନ୍ନ ଭିନ୍ନ ସମୟ ନିର୍ଦ୍ଧାରିତ ହୋଇଅଛି) କାଫେ (ଛାତ୍ର ଛାତ୍ରୀ ଏକତ୍ର ଭୋଜନ କରନ୍ତି; ମଦ୍ୟ ଓ ଧୂମ ପାନ ନିଷେଧ) ଗୋଟିଏ ହଷ୍ଟେଲ୍ (ଏଠି କେବଳ ବିବାହିତ ଛାତ୍ର ତାର ସ୍ତ୍ରୀକୁ ନେଇ ରହିପାରେ) ଦେଖାଇଲେ । ତାପରେ ସେ ଗୋଟିଏ ଛାତ୍ରାବାସର କୋଠରୀ ଖୋଲିଲେ, ଛାତ୍ର କିପରି ରହନ୍ତି ଦେଖାଇବା ଲାଗି ।

ପ୍ରତ୍ୟେକ କୋଠରୀରେ ଦୁଇଜଣ ଛାତ୍ର ରହନ୍ତି, ଲୁଗାପଟା, ବହି-ପତ୍ର ରଖିବା ଲାଗି ଯଥେଷ୍ଟ ସ୍ଥାନ ରହିଛି । ଏ ସବୁ ଶୀତାତପ ନିୟନ୍ତ୍ରିତ ନୁହେ । ଗୋଟିଏ କୋଠରୀରେ ଦ୍ୱିତଳ ଶଯ୍ୟା ମଧ୍ୟ ଦେଖିଲି । ଶିଡ଼ିରେ ଉଠି ଉପରକୁ ଯିବାକୁ ହୁଏ । ସ୍ଥାନାଭାବରୁ ବୋଧେ ଏ ବ୍ୟବସ୍ଥା ।

ତାପରେ ଲାଇବ୍ରେରୀର ବିଭିନ୍ନ ମହଲା ବୁଲଉ ବୁଲଉ ଇଂରେଜୀ ପୁସ୍ତକ ଗଚ୍ଛିତ ରହିଥିବା ତଳରେ ଟି. ଏସ୍. ଏଲିଅଟ୍‌ଙ୍କର ଗୋଟିଏ ଛବି ପ୍ରତି ଦୃଷ୍ଟି ଆକର୍ଷଣ କଲେ । ଏହି ସହର କବି ଏଲିଅଟ୍‌ଙ୍କ ଜନ୍ମସ୍ଥାନ ।

ବେକର୍ Folklore ମାଗାଜିନ୍‌ରୁ ମୋର ନାମ କାଢ଼ି ଲାଇ-ବ୍ରେରୀର ଆସିଷ୍ଟାଣ୍ଟ ଡିରେକ୍ଟରଙ୍କୁ ଦେଖାଇଲେ । ଆସିଷ୍ଟାଣ୍ଟ ଡିରେକ୍ଟର ଲେଖକ ବୋଲି ମୋର ପରିଚୟ ପାଇ ମାର୍କଟ୍ୱେନ୍‌ଙ୍କ ସାଧନାପୀଠ ହାନିବାଲ୍ ଦେଖିଯିବା ଲାଗି ଅନୁରୋଧ କଲେ ।

ତାପରେ ଫିତା ପାଠାଗାର ବୁଲି ଦେଖିଲି । ଏସବୁ ଗ୍ରନ୍ଥ ସାଇତି ରଖିବା ଲାଗି ମାଇଲ୍ ମାଇଲ୍ ପାଠାଗାର ଆବଶ୍ୟକ ହୋଇଥା'ନ୍ତା; ତାହା ଅଳ୍ପ କେତୋଟି କୋଠରୀ ମଧ୍ୟରେ ରଖା ଯାଇଛି । ବିଶ୍ୱର ଜ୍ଞାନ-ଭଣ୍ଡାରକୁ ଅଳ୍ପ ପରିମିତ ସ୍ଥାନରେ ଶତ ଶତ ବର୍ଷ ଅକ୍ଷୁଣ୍ଣ ରଖିବାର ଏ ବ୍ୟବସ୍ଥା ଚମତ୍କାର । ଫିତାକୁ ଯନ୍ତ୍ରରେ ଲଗାଇଲକ୍ଷଣି ବଡ଼ ବଡ଼

ଅକ୍ଷରରେ ବାଣ୍ଡୁତ୍ତି; ତତ୍ତ୍ୱାନ୍ ମାନେ ଅଧ୍ୟୟନ କରୁଛନ୍ତି । ଦୁଇ ହଜାର ପୃଷ୍ଠାବାଗୀ ଗ୍ରନ୍ଥକୁ ଫିତାରେ ହାତମୁଠାରେ ରଖାଯାଇ ପାରୁଛି, ଟେପ୍ ରେକର୍ଡ଼ ପାଠାଗାର ଓ ମାଇକ୍ରୋଫିଲ୍ମ ଯନ୍ତ୍ରର ଧାଡ଼ିସବୁ ଦେଖି ମୁଁ ପ୍ରାୟ ସାଢ଼େ ଏଗାରଟା ବେଳେ ବସାକୁ ଫେରି ଆସିଲି ।

## ପାଲ୍ ମଞ୍ଚର ଓ ମିସେସ୍

ପାଲ୍ ମଞ୍ଚର ଓ୍ୱାଇଁଡିଙ୍ଗ୍ ବ୍ରୁକ୍ ଲେନରେ ଆମ ପଡ଼ୋଶୀ, ତାଙ୍କ ସ୍ତ୍ରୀ ଜଣେ ଶିଳ୍ପୀ; ଛବି ପ୍ରଦର୍ଶନୀଟିଏ କରି ଆମକୁ ଦେଖିବାକୁ ଡାକିଛନ୍ତି ।

ଘରେ ସପ୍ତପର୍ଣୀ ଓ କେତେ ପ୍ରକାର ସ୍ଥାନୀୟ ଗୁଳ୍ମଲତା ସଜ୍ଜିତ; କିଏ ଜୀବନ୍ତ କିଏ ପ୍ଲାଷ୍ଟିକ୍ ବାରି ହେଉନାହିଁ ।

ତନ୍ତୁ ଉପରେ ମହଲଯାଏ ବହୁ ପେଣ୍ଟିଂ, ବହୁ ଛବି । ସେଥିରୁ କେତେକ ଆଙ୍କିଥିଲେ ତାଙ୍କର ସ୍ୱର୍ଗତ ପିତା । କେତେକ ଆଙ୍କିଛନ୍ତି ତାଙ୍କର ସ୍ତ୍ରୀ । ଛବି କଣବା ସ୍ତ୍ରୀଙ୍କର ଏକ ବିନୋଦନ । ମଞ୍ଚର ଜଣେ କଳାକାର; କିନ୍ତୁ ସେ ନିଜେ ଆଙ୍କନ୍ତି ନାହିଁ, ଅଙ୍କାନ୍ତି; ଜଣେ ଲେଖକ, କିନ୍ତୁ ସେ ନିଜେ ଲେଖନ୍ତି ନାହିଁ, ଲେଖାନ୍ତି । ନିଜ ଅଙ୍କନ ଓ ଲିଖନର ଏକ ନମୁନା ସେ ଦେଖାଇଲେ, ଆର୍ଟ କାଗଜରେ ଛପା ଗୋଟିଏ ପତ୍ରିକା କାଢ଼ି ।

ଦୁଇଟି ଚରଣ, କଳ୍ପିତା ଯୁବତୀର ହୋଜ୍ ଓ ଜୋତାପିନ୍ଧା ଛନ୍ଦା ଚରଣ, ଅବଶ୍ୟ ନାଚର ନୁହେଁ, ଏକ ସୁନ୍ଦର ଚଳନ ଭଙ୍ଗୀର । ମଞ୍ଚର ଏହି ଚରଣ ଅଙ୍କନର ଓ ତା ତଳେ ଲିଖନର ଭାବ ଯୋଗାଇଛନ୍ତି; କଳା ହେଉ ବା କବିତା ହେଉ, ଭାବ ଯୋଗାଇବା ତାଙ୍କର କାର୍ଯ୍ୟ । ଭାବୁକ ସେ, ବିଜ୍ଞାପନର କଳାକାର ଓ କବି । କବିତା ବା ଉପନ୍ୟାସର ଲେଖକଙ୍କ ଅପେକ୍ଷା ତାଙ୍କର ଅର୍ଜନ ଯଥେଷ୍ଟ ଅଧିକ । ସେ ଆଗେ କ୍ଷୁଦ୍ର-ଗଳ୍ପ ଲେଖୁଥିଲେ; ପରେ ବୁଝିଲେ ଯେ ସେ ସବୁ ଲେଖି ଲାଭ ନାହିଁ । ସମୟ ନଷ୍ଟ । ରୋଜଗାର କିଛି ନୁହେଁ କହିଲେ ଚଳେ । ସେ ବିଜ୍ଞାପନରେ

ଲକ୍ଷ୍ମୀ ସରସ୍ୱତୀଙ୍କ ମିଳନ ଘଟାଇଛନ୍ତି ବୋଲି କହିଲେ । ସେ ଜୋତା କାରଖାନାର ଜଣେ କର୍ମକର୍ତ୍ତା ।

ତାଙ୍କ ସ୍ତ୍ରୀ ସୁଗୃହିଣୀ; ଘର ସଜାସଜରେ କଳାବିଦ୍ୟାକୁ ଖଟାଇ-ଛନ୍ତି । ଛବି ବା ପେଣ୍ଟିଂ ହୋଇଛି ବିଶେଷ ପରିପୂରକ । ତାଙ୍କ ଷ୍ଟୁଡିଓ ଓ ଉଦ୍ୟାନ ମଝିରେ ଗୋଟିଏ କାଚ କାନ୍ଥ । ଆଉ ପାଖେ ଘାସର ଭେଲ୍‌ଭେଟ୍ ପଡ଼ିଆ; କ୍ରିସ୍‌ମାସ୍, ଗୋଲାପ ଓ ଗେଣ୍ଡୁ—ପେଣ୍ଟିଂ ପରି ଦିଶେ, ଜୀବନ୍ତ । ଉଦ୍ୟାନ ସଙ୍ଗେ କଳାକାରର ମନର ମିଳନ ହେଉଛି ପ୍ରତି ମୁହୂର୍ତ୍ତରେ । ଶିଳ୍ପୀ ଆଙ୍କିଛନ୍ତି—ପାହାଡ଼ରେ ପାଇନ୍ ବନର ତରଙ୍ଗିତ ଶ୍ରୀ, ହ୍ରଦରେ ନବ ଦମ୍ପତିଙ୍କ ନୌକାବିହାର, ପୁଷ୍ପିତ ଶାଖାରେ ସୁଗ୍ରପକ୍ଷୀ; ତା ଛଡ଼ା ଲାଇଲାକ୍, ମାଗ୍ନୋଲିଆ ଫୁଲର ପେଣ୍ଟିଂ । ସେ ପ୍ରକୃତିର ଶିଳ୍ପୀ । ତଥାପି ମଣିଷର ଛବି ଅଙ୍କନରେ ତାଙ୍କ ତୁଳୀ ପଟୁତ୍ୱ, ବୁଝାଯାଇ ନ ପାରେ । ତାଙ୍କ ଦୁଇବର୍ଷର ପିଲାଟିର ଛବି ସର୍ବୋତ୍କୃଷ୍ଟ ହୋଇଅଛି । ସତେଜ ଓ ସୁନ୍ଦର ତାର ମୁଖ, କୈଶୋର ପ୍ରଫୁଲ୍ଲତାରେ ଭରା । କଳା ବିଗ୍ରଡ଼କ ଧରି ସେ ଛୁଡ଼ା ହୋଇଛି ।

ଷ୍ଟୁଡିଓ ଭିତରେ ଗୋଟିଏ ଶ୍ରେଷ୍ଠ ପାଠାଗାର; ସେଥିରେ କଳା ସଂକ୍ରାନ୍ତ ବହୁ ପୁସ୍ତକ—ବିଭିନ୍ନ ଯୁଗରେ ଆମେରିକାନମାନଙ୍କ ପୋଷାକପତ୍ର, ଯାପାନୀ କଳା, କଳାର ଆଦର୍ଶ ଓ ଆତ୍ମମୁଖ୍ୟ ଓ ବହୁ ଆଲ୍‌ବମ୍ ସୁରକ୍ଷିତ ।

ଗୋଟିଏ ପୁଷ୍ପକୁଞ୍ଜ ଅଧା ହୋଇ ପଡ଼ିଛି, ମଧ୍ୟ ଆଜି କେତୋଟି ଛବିରେ ଶେଷ ତୁଳୀ ମରିନାହିଁ; ଶିଳ୍ପୀ ସେସବୁ ଓଲଟାଇ ରଖିଛନ୍ତି, କେହି ଯେପରି ନ ଦେଖନ୍ତି । କିନ୍ତୁ ଲୋକଚକ୍ଷୁ ଛବି ଶେଷ ହୋଇଛି କି ନାହିଁ ଜାଣି ପାରିବ ନାହିଁ, ସେଭଳି ପ୍ରବୀଣ ନ ହୋଇଥିଲେ । କିନ୍ତୁ ପୂର୍ଣ୍ଣ ସନ୍ତୋଷ ନ ଆସିବା ପର୍ଯ୍ୟନ୍ତ ଶିଳ୍ପୀ ତାକୁ ବାହାରକୁ ଛାଡ଼ି ନ ପାରେ । ଛବି ବା ପେଣ୍ଟିଂର ମାନ ଖୁବ୍ ଉଚ୍ଚ; କହି ହେଉ ନାହିଁ । ତେବେ ଶିଳ୍ପୀ କୌଣସି କଳା ସ୍କୁଲରେ ପଢ଼ି ନାହାନ୍ତି । ଛବି ଦେଖି ଦେଖି ସେ ଆଙ୍କିଛନ୍ତି, ଆଙ୍କି ଶିଖିଛନ୍ତି । ଏକଲବ୍ୟ ସାଧନା ତାଙ୍କର,

ଅଦ୍ୟାପି ଗୃହମଧ୍ୟରେ ଆବଦ୍ଧ । ବଡ଼ ବଡ଼ ପ୍ରଦର୍ଶନୀକୁ ଛବି ପଠାଇବା ଲାଗି ଯେଉଁ ଆତ୍ମବିଶ୍ୱାସ ଆବଶ୍ୟକ, ତାହା ତାଙ୍କର ଆସିନାହିଁ । ଦର୍ଶକ ଦର୍ଶିକାମାନେ ପସନ୍ଦ କଲେ ହୁଏତ ଏହା ଆସିବ ।

କଳାରୁ କଳାକାରଙ୍କ ଆଡ଼କୁ ଦୃଷ୍ଟି ଫେରାଇଲେ ଦିଶେ ଶାନ୍ତ, ସରଳ ମୁଖଟିଏ, ଆଖି 'ସୁନ୍ଦର' ଦେଖି ଦେଖି ସୁନ୍ଦର ହୋଇ ଯାଇଛି, କି ଅପୂର୍ବ ଲାବଣ୍ୟ କ୍ରୀଡ଼ା କରୁଛି ସେଇ ଆଖି ଡୋଳାରେ ! ଆଃ, ଆଙ୍କିପାରନ୍ତି କି !

ଅନେକ ଲୋକ ତାଙ୍କ ଛବି ଦେଖି ପ୍ରଶଂସା କରୁଥାନ୍ତି, କେହି ସୌଜନ୍ୟରେ, କେହି ବା କଳାର ପ୍ରକୃତ ମର୍ମ ବୁଝି । ଭିଡ଼ ଭିତରୁ ମୋତେ ଟାଣିନେଲେ ପାର୍ଲର ମଝିର ଉପର ମହଲାକୁ । ମଝିର—ଲମ୍ବା ଚେହେରା, କଳା କେଶ, ଭାରତୀୟଙ୍କ ସଙ୍ଗେ ବର୍ଣ୍ଣ ମିଶେ । ଉପର ମହଲାରେ ତାଙ୍କର ଛୋଟ ପାଠାଗାରଟିଏ; ସେଥିରୁ Basic judaism ବୋଲି ଖଣ୍ଡିଏ ବହି ଟାଣି ଆଣି ମୋତେ ଉପହାର ଦେଲେ । ତାପରେ କହିଲେ—ମୁଁ ଋଷିୟାନ୍ ଜୀଉ, ମୋ ସ୍ତ୍ରୀ ପଲାସ୍ ଜୀଉ; ମୋ ସ୍ତ୍ରୀର ପରିବାରର ଲୋକଙ୍କୁ ହିଟଲର୍ ମାରିଛି । ଆମେ ସବୁ ପ୍ରାଣ ବିକଳରେ ଏ ଦେଶରେ ଆଶ୍ରୟ ନେଇଥିଲୁ । ବର୍ତ୍ତମାନ ଆମେରିକାରେ ଜୀଉଙ୍କ ସଂଖ୍ୟା ପଚାଶ ଲକ୍ଷ । ସମଗ୍ର ପୃଥିବୀର ଦୁଇଭାଗ ଭାଗ ଜୀଉ କେବଳ ଆମେ-ରିକାରେ ବାସ କରନ୍ତି । ୧୬୫୪ ଖ୍ରୀଷ୍ଟାବ୍ଦରେ ବ୍ରାଜିଲରୁ ବିତାଡ଼ିତ ହୋଇ ଆସି କେତେକ ଜୀଉ ନିଜ ଆମଷ୍ଟରଡ଼ାମ୍‌ରେ ଆଶ୍ରୟ ଗ୍ରହଣ କଲେ; ନିଉୟର୍କ ସହରର ଏହାହିଁ ପୂର୍ବନାମ । ସେତେବେଳେ ଏହି ସହରର ଲୋକସଂଖ୍ୟା ଥିଲା ମାତ୍ର ଆଠଶ । ଜୀଉ ଧର୍ମ ବିଷୟରେ କିଛି ଜାଣିବାକୁ ଚାହିଁବାରୁ ମଝିର୍ କହିଲେ—

ଜୀଉଧର୍ମ ଚାରି ହଜାର ବର୍ଷରୁ ଅଧିକ ପୁରାତନ । ସେମାଇଟ୍-ମାନେ ଟାଇଗ୍ରିସ୍ ଓ ଇଉଫ୍ରେଟିସ୍ ନଦୀ କୂଳରେ ବାସ କରୁଥିଲେ । ଆରବ ମରୁଭୂମିର ଯାଯାବର ମେଷ ପାଳକ ପ୍ରଥମ ଜୀଉ ।

ଯିହୁଦୀଙ୍କ ଧର୍ମ ମନ୍ଦିରକୁ ସିନାଗଗ୍ କୁହାଯାଏ । ଏଥିରେ ଯିହୁଦୀଙ୍କ ପବିତ୍ର ଧର୍ମଶାସ୍ତ୍ର 'ତୋରାହ' ସମ୍ଭୃତ । ଧର୍ମଶାସ୍ତ୍ରବିହୀନ ସିନାଗଗ କଳ୍ପନା କରା ଯାଇ ନ ପାରେ । ପୃଥିବୀର ସୃଷ୍ଟି କାଳରୁ ମୋଜେସ୍‌ଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଯାବତୀୟ ରାଜନୈତିକ, ସାମାଜିକ, ପାରିବାରିକ ଓ ଧର୍ମାତ୍ମକ ଘଟଣା, ଯିହୁଦୀଙ୍କ ପର୍ବ ପର୍ବାଣି, ପବିତ୍ର ଉତ୍ସବ, ପୂଜାମନ୍ତ୍ର, ଇଜିପ୍ଟରେ ଯିହୁଦୀଙ୍କ ଦାସତ୍ୱ, ସିନାଇ ପର୍ବତରେ ଈଶ୍ୱରଙ୍କ ଉପଦେଶ ପ୍ରଦାନ ଏଥିରେ ବର୍ଣ୍ଣିତ । ଏହା ପୃଥିବୀର ଖଣ୍ଡିଏ ଶ୍ରେଷ୍ଠ ସାହିତ୍ୟ ପୁସ୍ତକ ।

ଯିହୁଦୀମାନେ ଏକେଶ୍ୱରବାଦୀ; ସେମାନଙ୍କ ଈଶ୍ୱର ସ୍ରଷ୍ଟା, ରକ୍ଷକ, ମୁକ୍ତିଦାତା, କରୁଣାମୟ, ପବିତ୍ରତାର ପ୍ରତିମୂର୍ତ୍ତି, ପୂର୍ଣ୍ଣତାର ପ୍ରତୀକ । ମନୁଷ୍ୟ ଜାତି ଗୋଟିଏ ପରିବାର; ଉତ୍ତମ ଜୀବନ ଯାପନ କଲେ ସେ କେବଳ ଅମରତ୍ୱ ଲାଭ କରିପାରେ । ପତିତ, ଅନାଥ, ଉତ୍ପୀଡ଼ିତଙ୍କୁ ରକ୍ଷା କରିବା ଯିହୁଦୀର ଧର୍ମ । ନିଜ କର୍ମ ଲାଗି ମନୁଷ୍ୟ ପୂର୍ଣ୍ଣ ମାତ୍ରାରେ ଦାୟୀ । ଶିକ୍ଷିତ ହେବା, ଶିକ୍ଷିତ କରିବା ଯିହୁଦୀ ଧର୍ମନୀତିର ଅନ୍ତର୍ଗତ । ସାମାଜିକ ସାମ୍ୟ ରକ୍ଷା ତାର ଆଦର୍ଶ । ତେଣୁ ସେ ପୃଥିବୀର ଦୀନ ଦରିଦ୍ରଙ୍କୁ ତା ସମ୍ପତ୍ତିର ଏକାଂଶ ଦାନ କରେ ।

ଯତ୍ ସାମାନ୍ୟ ଧର୍ମଶାସ୍ତ୍ର ଶୁଣିଲା ପରେ ମଠରଙ୍କ ସହିତ ତଳକୁ ଆସି ପ୍ରଦର୍ଶନୀ ଗୃହରେ ପୁଣି ପ୍ରବେଶ କଲି ।

ମିସେସ୍‌ଙ୍କୁ ପଚାରିଲି—କେତେବେଳେ ତୁମେ ଛବି କର ?

ମିସେସ୍ କହିଲେ—ଆମର ପୂଜାହାରୀ ଗୃହକର ନାହାନ୍ତି; ଘର ସଫା କମ୍ପାନୀ ସପ୍ତାହକେ ଥରେ ଆସି ଘର ସଫା କରି ଦେଇଯାଏ । ଘର ସଜାସଜ ମୁଁ ନିଜ ରୁଚି ଅନୁସାରେ କରେ, ଯେତେ କଷ୍ଟ ପଡ଼ୁ ପଛେ, ସେଥିରୁ ଆନନ୍ଦ ମିଳେ । ମୁଁ ନିଜେ ବଜାରସଉଦା କରେ, ରୋଷେଇ କରିବାକୁ ଭଲ ପାଏ । ପିଲାମାନେ ବଡ଼ ହୋଇ ଗଲେଣି । ଏବେ ସେ ଜଞ୍ଜାଳ ଆଉ ନାହିଁ । ଅବସର ପାଇଲେ ମୁଁ ଛବି କରେ ।

ଏଣେ ତେଣେ ପଡ଼ିଛି ତୂଳୀ, ଏଠି ସେଠି ରଙ୍ଗ ଛିଟା, ବଡ଼ ଅବ୍ୟବହୃତ ହୋଇ ପଡ଼ିଛି କ୍ୟାନଭାସ । ଏଠି ବସି ଶିଳ୍ପୀ ଆଙ୍କନ୍ତି ।

ଏହି ସ୍ଥାନଟି ସଜାଇବାକୁ ସେ କେବେ ଚେଷ୍ଟା କରି ନାହାନ୍ତି, ତାହା ଉପରେ ସେ ଦାୟିତ୍ୱ ମଧ୍ୟ ନେଇ ନାହାନ୍ତି। ବର୍ଣ୍ଣ ରୂପ ବର୍ଣ୍ଣ ଦେଇ ଯେ ଗଢନ୍ତି; ତା ଷ୍ଟୁଡ଼ିଓଟି ବୋଧେ ଏହିପରି ଅସଜଡ଼ା ରହିଥିବ—ଭାବ ଭୋଳା କଳାକାରର ଜୀବନ ଏ—ନିଜର ଭୂମି ଉପରେ ତାର ଭୂମିକା ନାହିଁ, ଅଙ୍ଗକରେ ହେଉ ବା ପ୍ରସାଧନରେ ହେଉ।

ଶେଷାଙ୍କ ସୂତ୍ରଧର ହେବା ଉଚିତ୍, କିନ୍ତୁ ଟ୍ରାଜେଡି ଅଧିକ ସତ୍ୟ। ମନର ଗୋଲାପୀ ବାତାବରଣ ବଦାପ୍ ବେଳେ ନଷ୍ଟ ହୋଇଗଲା। ଜଣେ ଓକିଲ, ସେଣ୍ଟଲୁଇସ୍‌ର କାଉନ୍‌ସିଲର ହେବାକୁ ଚେଷ୍ଟା କରୁଥାନ୍ତି। ମଣ୍ଟେର ତାଙ୍କର ବନ୍ଧୁ। ବନ୍ଧୁ ମିଳନର ସୁଯୋଗ ନେଇ ସେ ବକ୍ତୃତା ଆରମ୍ଭ କରିଦେଲେ ବୈଠକ ଘରେ। ଭୋଟ୍‌ନେବାର ବକ୍ତୃତା; ଅଧିକାଂଶ ରାଜନୀତିକଙ୍କ ପରି ବାଚାଳ ସେ। ପୁଣି ବାକ୍ ବ୍ୟବସାୟ ତାଙ୍କର। ରାଜନୀତି ଓ ଓକିଲାତି ଉଭୟର ବାଚାଳତା ତାଙ୍କୁ ଭୟଙ୍କର କରିଥାଏ। ସୌଜନ୍ୟ ରକ୍ଷା ଲାଗି କିଛି କାଳ ରହି ଆମେ ବସାକୁ ଫେରି ଆସିଲୁ।

## ପ୍ରାଇସ୍ ପ୍ରାଥମିକ ସ୍କୁଲ (ସେଣ୍ଟଲୁଇସ୍ ୯।୯। ୬୬)

ବାକର ଜକ ଜକ ସଜ ସକାଳଟିଏ, ମଙ୍ଗଳବାର। ଗାଁଟାକୁ ସାଥିରେ ନେଇ ବାହାରିଲି ତା ସ୍କୁଲ ଦେଖି। ଜଣକ ବାଡ଼ିପଟେ ସିଧା ଚଲ ବାଟ, ଯିବାକୁ ଦଶ ମିନିଟ୍ ଲାଗେ। ନିସ୍ତବ୍ଧ, ନିର୍ଜନ, କେଉଁଠି କେହି ଜଣେ ଦିଶୁନାହିଁ, ଗୋଟାଏ ଉଦ୍ୟାନ୍ ବା ସବଟ୍ ଗମ୍ଭୀର ପ୍ରକୃତିକୁ ଚହଲାଇବାକୁ ଚେଷ୍ଟା କରୁଥାନ୍ତି। କ ହିଂସ୍ରକ କୁକୁର ଏ! ଆମକୁ ଦେଖିବା ମାତ୍ରେ ଗର୍ଜନ ତର୍ଜନ କରି ବାଡ଼ ଡେଇଁବାକୁ ଚେଷ୍ଟା କଲା। କିନ୍ତୁ ପାରିଲା ନାହିଁ। ନିସ୍ତବ୍ଧ କ୍ରୋଧର ଫର୍ମା ଆଓ୍ୱାଜ୍‌ସବୁ ଶୁଣା ଯାଉଥାଏ। ଆମେ ପ୍ରାଇସ୍ ସ୍କୁଲରେ ପହଞ୍ଚିଲୁ। କେତେକ 'କିକ୍‌ବଲ୍' ଖେଳୁଥାନ୍ତି, କେତେକ ଖେଳୁଥାନ୍ତି ଦୋଳି।

ମୁଁ ଛୁଟି ହୋଇ ଦେଖି ଦେଖୁ ଜଣେ ଶିକ୍ଷକ ମୋତେ ସ୍କୁଲକୁ ଡାକି ନେଇ ପ୍ରିନ୍‌ସିପାଲ୍ ମି: ଆଲେକ୍‌ଜାଣ୍ଡାର୍‌ଙ୍କ ସଙ୍ଗେ ପରିଚିତ କରାଇ ଦେଲେ।

ସ୍କୁଲର ସଂକ୍ଷିପ୍ତ ବିବରଣୀ ଦେବାକୁ ଯାଇ ପ୍ରିନ୍‌ସିପାଲ କହିଲେ—ଏ ସ୍କୁଲଟି ମ୍ୟୁନିସିପାଲିଟି ପରିଚାଳନା କରେ । ଏଥିରେ ପ୍ରଥମରୁ ଷଷ୍ଠ ଷ୍ଟାଣ୍ଡାର୍ଡ଼ ପର୍ଯ୍ୟନ୍ତ ପଢ଼ିବାର ବ୍ୟବସ୍ଥା ଅଛି । ଛାତ୍ର ସଂଖ୍ୟା ୨୪୦; ଶିକ୍ଷକ ଶିକ୍ଷୟିତ୍ରୀଙ୍କ ସଂଖ୍ୟା ୧୦; ପ୍ରିନ୍‌ସିପାଲ ଏମ୍. ଏ. ଡିଗ୍ରୀ ପ୍ରାପ୍ତ, ବାକୀ ସମସ୍ତେ ବି.ଏ ପାସ୍ କରିଛନ୍ତି । ଆମେରିକାରେ ସିନିଅର୍ ହାଇ ସ୍କୁଲ ଜୁନିଅର ହାଇ ସ୍କୁଲ କିମ୍ବା ପ୍ରାଥମିକ ସ୍କୁଲ, ସବୁଠି ଟ୍ରେନିଂ ପ୍ରାପ୍ତ ଗ୍ରାଜୁଏଟ୍ ସମାନ ଦରମା ପାନ୍ତି । ତାଙ୍କର ବାର୍ଷିକ ଦରମା ୫୨୦୦ ଡଲାର୍ ।

ପ୍ରିନ୍‌ସିପାଲ୍ ଏହି ସ୍କୁଲର ସର୍ବେସର୍ବା ନୁହନ୍ତି । ତାଙ୍କ ଉପରେ ଜଣେ ସୁପରିଟେଣ୍ଡେଣ୍ଟ ଅଛନ୍ତି । ଗୋଟିଏ ପରିଚାଳନା ବୋର୍ଡ଼ ଅଛି ।

ଏହି ସ୍କୁଲରେ କିଣ୍ଡରଗାର୍ଟେନ୍ ଶିକ୍ଷା ପ୍ରଣାଳୀ ପ୍ରଚଳିତ । ଛାତ୍ର ଛାତ୍ରୀମାନେ ସକାଳ ଆଠଟାରେ ଆସନ୍ତି, ଉପର ବେଳା ଚାରିଟା ବେଳେ ଘରକୁ ଫେରିଯାନ୍ତି । ସ୍କୁଲରେ ମଧ୍ୟାହ୍ନ ଭୋଜନ କରନ୍ତି । ସେଥିଲାଗି ପ୍ରତ୍ୟେକଙ୍କୁ ପ୍ରତିଦିନ ଚାଳିଶ ସେଣ୍ଟ ଦେବାକୁ ହୋଇଥାଏ ।

ପ୍ରିନ୍‌ସିପାଲଙ୍କର ଜଣେ ଅଫିସ୍ ସେକ୍ରେଟାରୀ ଅଛନ୍ତି । ସେ ଚିଠି ପତ୍ର ବା ନୋଟିସ ଲେଖାଲେଖି କରନ୍ତି । ତା ଛଡ଼ା ଜଣେ ଚାକର ବା ପିଅନ୍ ଅଛି । ସେ ଘରସଫା କରିବାଠାରୁ ସ୍କୁଲ ହତାରେ ଘାସ କାଟିବା ପର୍ଯ୍ୟନ୍ତ ସବୁ କାମ କରେ । ରାତିରେ ଜଣେ ଜଗୁଆଳୀ ସ୍କୁଲ ଘର ଜଗି ଶୁଏ । ସ୍କୁଲରେ ଘଣ୍ଟା ବାଜେ ନାହିଁ । ଘଣ୍ଟା ଦେଖି ଯଥା ସମୟରେ ଶିକ୍ଷକ ଆସି ପାଠ ପଢ଼ାଏ ।

ଆଜି ପରିଚୟ ଦିବସ । ସେଥିଲାଗି ହଲରେ ସବୁ ପିଲା ଜମିଥାନ୍ତି । ଏହି ହଲ୍‌ରେ ବାସ୍କେଟ୍ ବଲ ଖେଳ ହୁଏ । ପୁରସ୍କାର ବିତରଣୀ ସଭା ହୁଏ, ନାଟକ ଅଭିନୟ ମଧ୍ୟ ହୋଇଥାଏ ! ପ୍ରିନ୍‌ସିପାଲ ଓ ମୁଁ ଯାଇ ପିଲାଙ୍କ ସବା ପଛରେ ବସିଲୁ । ଷଷ୍ଠ ଷ୍ଟାଣ୍ଡାର୍ଡ଼ର ଜଣେ ଛାତ୍ରୀ ସଭା ପରିଚାଳନା କରିବାର ଦେଖି ବିସ୍ମିତ ହେଲି । ପ୍ରଥମେ ଆମେରିକାର

ଜାତୀୟ ସଙ୍ଗୀତ ସମସ୍ତେ ଛିଡ଼ା ହୋଇ ବୋଲିଲେ । ତାପରେ ଛାତ୍ରଛାତ୍ରୀ କେତୋଟି କବିତା ଆବୃତ୍ତି କଲେ ।

ପରିଚାଳିକା ଗୋଟିଏ ଛାତ୍ରକୁ ମାଇକ୍ ଦେଲେ; ମାଇକ୍‌ଟି ଏ ହାତରୁ ସେ ହାତ ବୁଲିଲା । ପ୍ରତ୍ୟେକ ନିଜ ନିଜର ପରିଚୟ ଦେଲେ । ଅବଶ୍ୟ ଘରୁ ଲେଖି ଆଣିଥିଲେ, ପଢ଼ିଲେ । ଶେଷକୁ ପ୍ରିନ୍‌ସିପାଲ ମୋର ପରିଚୟ ଦେଲେ—ଭାରତୀୟ କବି ଓ ବିଦ୍ୱାନ୍, ଏସିଆ ଲେକ ସଂସ୍କୃତି ସମ୍ମେଳନରେ ଯୋଗ ଦେବାକୁ ଆସିଛନ୍ତି; କରତାଳି ମଧ୍ୟରେ ବିଦାୟ ନେଇ ମୁଁ ପ୍ରଥମ ଷ୍ଟାଣ୍ଡାର୍ଡ଼ ଦେଖିଗଲି ।

ବହିସବୁ ସରକାର ଯୋଗାଇଥାନ୍ତି, ଛଅ ବର୍ଷର ଗୋଟିଏ ଛୋଟ ଲାଇବ୍ରେରି ହୋଇଛି । ଗୋଟିଏ ଗ୍ରାମୋଫୋନ୍, ଟେପ୍‌ରେକର୍ଡ଼ିଂ ଯନ୍ତ୍ର ଓ ବହୁବିଧ ଖେଳଣା ଏ ଘରେ ରଖାଯାଇଅଛି । ଛୋଟ ଛୋଟ ପିଲାମାନେ ହାତାରେ କଟା ନେଇ କାଗଜ ମଡ଼ାଇ ପ୍ରାଣୀ ଜଗତ୍‌ର ବହୁମୂର୍ତ୍ତି ବହୁ ଅଦ୍ଭୁତ ନିର୍ମାଣ କରୁଥାନ୍ତି ।

ତାପରେ ଛାତ୍ରଛାତ୍ରୀମାନେ ଗୋଟିଏ ଅର୍ଦ୍ଧବୃତ୍ତ କରି ବସିଲେ । ଶିକ୍ଷକ ପୁସ୍ତକ ଖୋଲିଲେ; Aରେ ଗାର ନାହିଁ, Bରେ ପୁଡ଼ା ନାହିଁ, Dରେ କେବଳ ଗାର । Eରେ ମଝିଗାରଟି ନାହିଁ, Fରେ କେବଳ ଉପର ଗାରଟି ଅଛି । ଛାତ୍ରଛାତ୍ରୀମାନେ ନିଜ ନିଜ ବହିରେ ପେନ୍‌ସିଲରେ ଅକ୍ଷର ଗୁଡ଼ିକ ପୂର୍ଣ୍ଣାଙ୍ଗ କରି ଲେଖିଲେ ।

କିଏ ଗୀତ ଗାଉଚି ? କିଏ ଛବି ଆଙ୍କୁଚି ? ଶିକ୍ଷୟିତ୍ରୀ ଜଣଙ୍କର କାଗଜ ଖଣ୍ଡ ଉଡ଼ି ଆସିଲେ—ପଟାଟୋ ହେଡ୍ ! ଟିକିଏ ବ୍ୟସ୍ତ ହୋଇ କହିଲେ—ଏ ଅଣ୍ଡାବଚ୍ଚାଙ୍କୁ ପଢ଼େଇବା ବଡ଼ କଷ୍ଟ । ମୁଣ୍ଡ ବଥେଇଯାଏ ।

ତାପରେ ଯାଇ ଷଷ୍ଠ ଷ୍ଟାଣ୍ଡାର୍ଡ଼ରେ ପହଞ୍ଚିଲି—କେତେ ପ୍ରକାରର ପିଲା, କାହାର ମୁଣ୍ଡବାଳ କଳା, କାହାର ଧଳା, କାହାର ବା କର୍ବୁର ।

ଏ ଶ୍ରେଣୀରେ ଦୁଇଟି ଭୂମଣ୍ଡଳ, ଗୋଟିଏ ବିଶ୍ୱ ମାନଚିତ୍ର, ଗୋଟିଏ ଶ୍ରେଣୀ ପାଠାଗାର ରହିଛି, କାନ୍ଥରେ ଗୋଟିଏ ଗ୍ରୀନ ବୋର୍ଡ଼, ଶିକ୍ଷୟିତ୍ରୀ ପଚାରୁଥାନ୍ତି—

'କେତେ ମିଲିଅନ୍‌ରେ ଏକ ବିଲିଅନ୍ ହୁଏ ?'

ତାଙ୍କ ପିରିୟଡ଼ ପରେ ସଙ୍ଗୀତଶିକ୍ଷୟିତ୍ରୀ ଆସିଲେ । ନାନା ତାଳଲୟ ଶିକ୍ଷା ଦେଲେ ।

ଶେଷକୁ ବକ୍ତୃତା ଦେବାଲାଗି ମୋତେ ସୁଯୋଗ ଦେଲେ, ମୁଁ ଭାରତର ଛୋଟ ଛୋଟ ପିଲା, ସେମାନେ ଖେଳୁଥିବା ଖେଳ ଓ ଖେଳଣା, ଶୁଣୁଥିବା ଗଳ୍ପର ଆଭାସ ଦେଲି । ଭାରତର ଗାଆଁ ସବୁ କେମିତି, ପିଲା-ମାନେ କି ଦୁଃଖରେ ପାଠ ପଢ଼ନ୍ତି, ତାର ସୂଚନା ମଧ୍ୟ ଦେଲି । ବିଦାୟ ବେଳେ କେତେକ ପିଲା କହିଲେ—

ଆମେ ଭାରତ ଦେଖିଯିବୁ ।

## ଟାଉନ୍ ବସ୍‌ରେ ଡାଉନ୍ ଟାଉନ୍

ଓ୍ୱାଇଁଡ଼ଙ୍ଗ୍‌ବ୍ରୁକ୍‌ରୁ ତିନି ମାଇଲ ଦୂରରେ ଫେ୍ୟଷ୍ଟୋନ୍; ଏଠି ବସ୍‌ଷ୍ଟାଣ୍ଡ, ଟାଉନ୍‌ବସ୍ ଛିଡ଼ା ହେବା ମାତ୍ରେ ଆପେ ଆପେ ପ୍ଲାଷ୍ଟିକ୍ ଦରଜା ଖୋଲିଗଲା, ପୁଣି ଆପେ ଆପେ ବନ୍ଦ ହୋଇଗଲା । ଟିକେଟ୍ ଲାଗି ଗୋଟିଏ ଯନ୍ତ୍ରରେ ବାଇଶି ସେଣ୍ଟ ଗଳାଇବାକୁ ହେଲା । ଟିକେଟ୍ ମନକୁ ମନ ବାହାରି ଆସିଲା । ଅପରେଟର୍ ଯନ୍ତ୍ରରୁ ଡାମ୍, ଡାପ୍ଲାଲ୍, କ୍ୱାଟର-ସବୁ କାଢ଼ିନେଇ ଅଲଗା ଅଲଗା କରି ରଖିଲେ—ପରେ ଆଉ ବାଣ୍ଟିବାକୁ ପଡ଼ିବ ନାହିଁ ।

କିଛି ଦୂର ଗଲାପରେ ବସ୍ ଅଟକିଲା; ଉଠିଲା ଗୋଟିଏ ନିଗ୍ରୋ ବୁଢ଼ୀ, ହାତରେ ସୁନାଖିଲି ମାଣିଟିଏ । ତାପରେ ଉଠିଲା ଜଣେ ଗୋରା ବୁଢ଼ୀ, କରୁପଫର ତୋଫା ବାଳଉପରେ ଜଳାଜାଲି, ଭଉଁରର ଗୋଟିଏ

ଗେ ଟିଏ ବୃଟି ପଢ଼ନ୍ତି, ତାପରେ ଆସିଲା ଜଣେ ଯୁବତୀ, ଗଳାରେ ସରୁ ସୁନା ଚେନ୍; ଗୁଞ୍ଚ ଉପରେ ସୁନାରେ ମୀନାକରା ପ୍ରଜାପତି, ହାତରେ ଗୋଲ୍ଡ ଏ କାନ୍ଧ; ଘୁଷୀ ! ତାପରେ ଉଠିଲା ଆଉ ଜଣେ ନିଗ୍ରୋ—ତାର ଦୁଇଟା ଜାଗ, ଗୋଟାଏ ନାକ ତଳେ, ଆଉ ଗୋଟାଏ ତଳ ଓଠ ତଳେ । ଓଠ ଦୁଇଟି ମିଶିଲେ ବେଶ୍ ଦଂଶ । ଶେଷକୁ ଉଠିଲା ଗୋଟିଏ ବାଳକ, ପକେଟ୍‌ରେ ତାର ଗୁଡ଼ାଏ ପେନ୍‌ସିଲ୍ ।

ବସ୍ ପ୍ରାୟ ପଞ୍ଚାଳଶ ମିନିଟ ପରେ ଗୋଟିଏ କୋଇଲା କମ୍ପାନୀ ପାଖେ ଅଟକିଲା । ସେଠୁ ଡ଼ାକେ ବାଟ ଦୂରରେ ମିସିସିପି ନଦୀ । ଯାନାରଣ୍ୟ, ଲାଲ ବିଦ୍ୟୁତ୍ ଅକ୍ଷରରେ ଲେଖି ହୋଇଯାଉଛି—'ଚାଲ- ନାହିଁ', ଫେର୍ ଦୁଇ ମିନିଟ୍ ପରେ 'ଚାଲ' । ଦୁଇ ପଟେ ଗାଡ଼ିର ଲମ୍ବା ସୁଅ ସବୁ ଅଟକିଥାଏ । ରାସ୍ତା ପାର ହେବାରେ ବିପଦ ନାହିଁ ।

ପାଞ୍ଚ ପରସ୍ତ ରାସ୍ତା ପାର ହୋଇ ମୁଁ ଛୁଡ଼ା ହେଲି ମିସିସିପି କୂଳର ଏକ ଟିପ ଅରମାରେ, ଏଠି ସାଧାରଣତଃ ମଣିଷ ପାଦ ପଡ଼େ ନାହିଁ । ବଣୁଆ ଫୁଲ ସବୁ ମଉଳା ଶୁଖି ଡେମ୍ପରେ ଲାଗିଛନ୍ତି । କେବଳ ଫୁଟିଛି ଗୋଟିଏ ସୂର୍ଯ୍ୟମୁଖୀ, ସଜ ସୁନାହାସ ବୃତ୍ତାଆଡ଼େ ବୁଣିବୁଣି ।

ମିସିସିପିର ଏ କୂଳେ ସେ କୂଳେ ଚାଲିଛି ଅଗଣିତ ମଟରଗାଡ଼ି, ସେଥିରୁ ତଳେ ତଳେ ଚାଲିଛି ଲଞ୍ଚ୍, ମଟର ବୋଟ୍; 'ଆସ, ବେଳ- ହୋଇଗଲା', ଡାକିବାକୁ କେହି ନାହିଁ ।

କିନ୍ତୁ ବେଶୀକାଳ ସ୍ଥିର ହୋଇ ବସି ପାରିଲି ନାହିଁ । ଜୀବନର ଗତିବେଗ ମୋ ରକ୍ତକୁ କ୍ଷିପ୍ରତର କରିବାକୁ ଲାଗିଲା ।

ପ୍ରାୟ ଦୁଇଶ ବର୍ଷରେ ସହର ଏ । ୧୭୬୪ ଖ୍ରୀଷ୍ଟାବ୍ଦରେ ଫରାସୀ ଫ୍ୟୁ.ରେ ଲାସ୍ ଲେଡ଼ ଏହାର ଭିତ୍ତି ସ୍ଥାପନ କରିଥିଲେ, ଯୁକ୍ତରାଷ୍ଟ୍ରର

ଅନ୍ତର୍ଭୁକ୍ତ ହେବା ପରେ ଏହାର ଅଦ୍ଭୁତ ବିକାଶ ହୋଇଛି । ଜେଫରସନ୍ ସ୍ମୃତି ମନ୍ଦିରର କାର୍ଯ୍ୟ ୧୯୭୧ରୁ ଚାଲିଛି, ମନ୍ଦିର ନିର୍ମାଣ ଶେଷ ହୋଇଛି, ଏବେ ତୃଣ ପ୍ରାନ୍ତର ଓ ଉଦ୍ୟାନ ନିର୍ମାଣ କାର୍ଯ୍ୟ ଚାଲିଛି । ମିସିସିପି ନଦୀ ତୀରର ବାତାବରଣ ଏହି ମନ୍ଦିରକୁ ଦେଇଛି ଅପୂର୍ବ ବ୍ୟକ୍ତିତ୍ୱ; ମିସିସିପି ଉପରେ ଥରେ ମମତ ପୂର୍ଣ୍ଣ ଦୃଷ୍ଟି ବୁଲାଇ ଆଣିଲି । ରୋମାଞ୍ଚ ଆସିଲା, ଆଉ ଥରେ କଣ ଏ ସବୁ ଦେଖିବା ସମ୍ଭବ ହେବ ?

ଟାଉନରେ ଫେରିଲି; ଜୋତା ମରାମତି କମ୍ପାନୀ ସୌଧ, ବେକ ଭାଙ୍ଗିଯାଏ । ଅଗ୍ରଭାଗ ଦିଶେ ନାହିଁ ।

ପନ୍‌ସପ୍; ଜିନିଷ ବନ୍ଧା ପକାଇ ଏଠି ଯେ କେହି ଡଲାର୍ ନେଇପାରେ; କରଜ ଶୁଝିଲା ପରେ ଜିନିଷ ମୁକୁଳାଇ ନିଏ । ନ ନେଇ ପାରିଲେ ଏହା ବିକ୍ରୀ ହୋଇଯାଏ । ପୁରୁଣା ଦ୍ରବ୍ୟ ସୁଲଭ ମୂଲ୍ୟରେ ଲୋକେ ଏଠି କ୍ରୟ କରନ୍ତି ।

ଗୋଟିଏ ଖାଦ୍ୟ ଦୋକାନ; ଦୋକାନୀ ଆମ ଗୁଡ଼ିଆ ଦୋକାନ ପରି ସଜାଇଛି, ଜଣେ ନିଗ୍ରୋ ଫୁଟ୍‌ପାଥ୍‌ରେ ବ୍ରସ୍ ଚଳାଇଛି । ପଚାରିଲି —

ତୁମେସବୁ କାହିଁକି ଏତେ ଆନ୍ଦୋଳନ କରୁଛ ?

ସେ କହିଲା ଚାକିରି ମିଳୁନାହିଁ । ବଞ୍ଚିବୁ କେମିତି ? ନିଗ୍ରୋଙ୍କ ମଧ୍ୟରେ ଦୁଃଖୀ ଗରିବ ଅନେକ ଅଛନ୍ତି । ଫୁଟ୍‌ପାଥ୍‌ର ଅଗ୍ର ଅଗ୍ର ଚଟାଣ କଟା ହୋଇ ଫୁଲ ଗଛ ଲଗା ହୋଇଛି । ଜଣେ ପାଣି ଦେଉଛି । କୁଆଡ଼େ ଯିବ, ଭାବୁଚ, ଆଖିରେ ପଡ଼ିଲା ଗୋଟିଏ ବହି ଦୋକାନ— ପୁରୁଣା ବହିସବୁ ଏଠି ମିଳେ । ଭିତରକୁ ପଶିଯାଇ ଦେଖିଲି— ଗଦା ଗଦା ଉପନ୍ୟାସ, ଏଠି ବହୁ ଲୋକ ବହି କିଣନ୍ତି; କିନ୍ତୁ ସାଇତି ରଖିବା ଲାଗି ଘରେ ଜାଗା ନାହିଁ । ଯତ୍‌ସାମାନ୍ୟ ଦାମ୍‌ରେ ବିକ୍ରୀ କରି ଦିଅନ୍ତି । ଦଶ ପନ୍ଦର ସେଣ୍ଟରେ ସ୍କଟ୍, ହାର୍ଡ଼ି ଓ ଇମର୍‌ସନ୍‌ଙ୍କ ବହିସବୁ ମିଳୁଛି ।

ମାଗାଜିନ୍‌ର ପାହାଡ଼ସବୁ ହୋଇଛି—ନାସନାଲ୍ ଜୋଗ୍ରାଫିକାଲ୍ ମାଗାଜିନ୍ ନାମମାତ୍ର ଦାମ୍‌ରେ ମିଳୁଛି । କିନ୍ତୁ ମୁଁ ଭ୍ରମଣକାରୀ ଚେକ୍ ବହିଟି ଘୁଞ୍ଚ ଆସିଛି । ମାତ୍ର ଷାଠିଏ ସେଣ୍ଟ ଦେଇ କିଣିଲି—ଯାପାନର ଇତିହାସ, ଇତାଲିର ଲୋକଗଳ୍ପ ।

ସେତେବେଳକୁ ସାଢ଼େବାର; ନିଗ୍ରୋ ଅପରେଟର୍ ବସ୍ ଉପରେ ବସି ଦୁଇ ପ୍ୟାକେଟ୍ ବିସ୍‌କୁଟ୍‌ରେ ଲଞ୍ଚ ଶେଷ କରୁଥାଏ । ସ୍କୁଲ ଅଞ୍ଚଳରେ ସମସ୍ତ ଗାଡ଼ିର ଗତିବେଗ ଊଣା କରିବାର ନିର୍ଦ୍ଦେଶ ଅଛି । ଦେଖିଲି ଜଣେ ନିଗ୍ରୋ ଚଉଛକରେ ଛିଡ଼ା ହୋଇ ସ୍କୁଲ ପିଲାମାନଙ୍କୁ ରାସ୍ତା ପାରି କରାଉଛନ୍ତି । ଦୁଇଟି ପିଲା ଗପରେ ଭୋଳ ହୋଇ ଧୀରେ ଧୀରେ ଚାଲୁଥିବାରୁ ସେ ହୁଇସିଲ୍ ଦେଇ ଡାକୁଛି । ସେମାନେ ରାସ୍ତା ପାରିହେଲା ବେଳେ ବୁଢାକୁ ଖଚେଇ ହେଉଛନ୍ତି; ବୁଢ଼ା ମଧ୍ୟ ଶ୍ରଦ୍ଧାରେ ସେହିପରି ଜିଭ ଦେଖାଇ ଦେଉଛି । କାଳେ ବୃଦ୍ଧେ ସମାନେଽପି !

ଗ୍ରେ‌ହାଉଣ୍ଡଡିପୋରେ ପଚିଶ ଯନ୍ତ୍ରରେ ଦଶ ସେଣ୍ଟ ଗଳାଇ ମୁଁ ଇରାକୁ ଫୋନ୍ କଲି; ଇରା ପନ୍ଦର ମିନିଟ୍ ମଧ୍ୟରେ କାର୍‌ରେ ଆସି ହସି ହସି ପଚାରିଲା— 'ହଜିନାହିଁ ?'

'ବସ୍‌ଷ୍ଟାଣ୍ଡ ଘୁଞ୍ଚ ବେଶୀ ଦୂର ଆଉ ଯାଇଛି କୁଆଡେ ?'

## ଫରେଷ୍ଟ ପାର୍କ

ନାମ ସହିତ ରୂପର ସାମ୍ୟ ନାହିଁ, ବିସ୍ତୃତ ତୃଣଭୂମି ଉପରେ କେତୋଟି ବନସ୍ପତି; ପାର୍କରେ ବଙ୍କେଇ ଟଙ୍କେଇ ବୁଲିଛି ଗୋଟିଏ କେନାଲ୍— ଖେଳୁଛନ୍ତି ଅଗଣିତ ରାଜହଂସ, ଲୋହିତ ଚଞ୍ଚୁଚରଣ, ଅଳ୍ପ କେତୋଟି କୃଷ୍ଣ ହଂସ । ମନୁଷ୍ୟର ଦୟାରେ ବିଶ୍ୱାସୀ, କାର୍ ରହିବା ଦେଖି ଛୁଟିଲେ ଅମ ଆଡେ କ୍ଲିଷ୍ଟ କର୍କଶ ଶବ୍ଦ କରି; ଆମ ହାତରୁ ପାଉଁରୁଟି ଖାଇଲାବେଳେ ତୀବ୍ର ପ୍ରତିଯୋଗିତା ଲାଗିଗଲା; କିଏ ଖାଇ ପୁଣି ଖାଇଲା, କିଏ ବା ଆଦୌ ପାଇଲା ନାହିଁ । ସବଳର ଜୟ, ପ୍ରବଳର ବିଜୟ, ଦୁର୍ବଳର ହାହତାଶ । ହାତରୁ ରୁଟି ଶେଷ ହେଲା । ସୁବିଧାର

କରିପାରିଲ୍ ନାହିଁ ଆମେ, ହଂସ ରାଜ୍ୟରେ ସାମ୍ୟବାଦ ପ୍ରଚାର କରି ପାରିଲ୍ ନାହିଁ । ପୁଣି ଏକ ମଟର ଗାଡ଼ି ଆସିଲା । ଅକୃତଜ୍ଞ । ଆମକୁ ପଛଆଡ଼ କରି ହଂସମାନେ ଛୁଟିଲେ ସିଆଡ଼େ ! ନୂତନ ଦାତା ଅଧିକ ମୁକ୍ତହସ୍ତ, ଦାତାରୁ ଦାତାଙ୍କ ନିକଟକୁ ହଂସମାନଙ୍କ ଗତି, 'ଦିଅ, କଣ ଆଣିଛ ଦିଅ' ଡାକ ! ଭିକ୍ଷା ବୃତ୍ତି, 'ଭିକ୍ଷା ନୈବଚ' ଏ ଦେଶର ଆଦର୍ଶ ହେଲେ ମଧ୍ୟ । ଆହାର ଖୋଜୁ ନାହାନ୍ତି ସେମାନେ, ଶ୍ରମକୁଣ୍ଠିତ । ଆହାର ଖୋଜୁଛି ସେମାନଙ୍କୁ, ଅଳସ ହାତର ଆହାର ।

ଇସ୍, ମୁଁ ଆଜ ପିଲମାନେ ଯାଇ କଟଓ୍ୱେଲ୍ ହାଉସ୍‌ରେ ପହଞ୍ଚିଲୁ । ଏ ଗୋଟିଏ ଉଦ୍ୟାନ ଗୃହ, ଉଦ୍ୟାନରେ ପୁଷ୍କରିଣୀ, ପ୍ରପାତ ଖସୁଛି, ପୁଷ୍କରିଣୀରେ ଫୁଟିଛି ନାନା ବର୍ଣ୍ଣର କଇଁଫୁଲ । ଗାଇଜର୍ ଅନୁକରଣରେ ଫୁଆରା ଉଠାଇବାର ଯାନ୍ତ୍ରିକ ବ୍ୟବସ୍ଥା ହୋଇଛି, ଜଳସ୍ତମ୍ଭ ଆସ୍ତେ ଆସ୍ତେ ଦୁଇଶ ଫୁଟ୍ ଉପରକୁ ଉଠୁଛି, ତାପରେ ଖସି ଖସି ପୁଷ୍କରିଣୀ ଜଳରେ ଲୀନ ହୋଇ ଯାଉଛି । ପୁଷ୍କରିଣୀର ଧାରେ ଧାରେ ଗୋଲାପ ଉଦ୍ୟାନ, ତୃଣ ପ୍ରାନ୍ତର । ପାଣି ଦେଉଛି ଜଣେ ମାଳୀ । ବୃକ୍ଷଲତା ବଞ୍ଚାନ ସେ ଜାଣେ, ସେମାନଙ୍କ ବ୍ୟଥା ସେ ବୁଝେ । ସେମାନଙ୍କ ଅପୂର୍ବ ସ୍ୱାସ୍ଥ୍ୟ ଫୁଟିଛି, ପୁଷ୍ପର ପରିପୂର୍ଣ୍ଣ ଶ୍ରୀରେ । ଶ୍ରମିକ ତ ନୁହେ, ଜଣେ ପ୍ରେମିକ ସେ, ପ୍ରାଣର ସଙ୍ଗୀତ ଶୁଣାଉଛି ଉଦ୍ୟାନକୁ—ହେ ଗୁଳ୍ମ ଲତା, ମୋ ପ୍ରାଣ ପରି ତୁମେ ଫୁଟି ଉଠ ପ୍ରାଚୁର୍ଯ୍ୟରେ, ମନେ ମନେ ଛୁଟାଅ କବିତାର ସ୍ରୋତ । କର୍ତ୍ତବ୍ୟ ନୁହେ, ପ୍ରୀତି ହିଁ ତାର ପ୍ରାଣର ପୁଞ୍ଜି । ବୃକ୍ଷଲତା ପରମ କୃତଜ୍ଞତାରେ ତାର ସାଦର ଅର୍ଘ୍ୟ ଗ୍ରହଣ କଲା ପରି ଲାଗୁଛି— ଗୁଡ଼ାଉଛନ୍ତି ମୋ ଆଡ଼େ ନାନା ରଙ୍ଗର ଫୁଆରା, ସ୍ନେହରେ ସୁକୁମାର ।

ସେଇ ପାର୍କର ଗୋଟିଏ ପାଖରେ କାଥୋଲିକ୍ ସେଣ୍ଟ ଫ୍ରାନ୍‌ସିସ୍‌ଙ୍କ ମୂର୍ତ୍ତି । ଶିର ପକ୍ଷୀ ପ୍ରେମୀ ସେ । ଆକାଶର ଉଡ଼ନ୍ତା ପକ୍ଷୀକି ଅଭିବାଦନ କରୁଛନ୍ତି, ଅଭୟ ଦେଉଛନ୍ତି । ପକ୍ଷୀମାନେ ଜାଣ ତାଙ୍କ ଦେହରେ ବସା ବାନ୍ଧିଛନ୍ତି । ସେଥିଲାଗି କୁଣ୍ଠା ନାହିଁ ତାଙ୍କର । ପକ୍ଷୀମାନଙ୍କର ଏହି ପରମ ସଖାଙ୍କୁ ଭକ୍ତିଭାବେ ନମସ୍କାର କଲି ।

ସ୍ୱାର୍ଥ ଓ ପରମାର୍ଥ ମଧ୍ୟରେ ସାଳିସ୍ ହୋଇ ପାରନାହିଁ ଏ ଦେଶରେ ବି । ଆତ୍ମସ୍ୱାର୍ଥ ଲାଗି ମନୁଷ୍ୟ ବିନାଶ କରିଯାଇଛି, ଧର୍ମକୁ ଆଖି ମିଟିକା ମାରି । ଯେ ପ୍ରବଳ, ଯେ ବୁଦ୍ଧିମାନ୍ ବଞ୍ଚିବାର ଅଧିକାର ତାରି ଅଛି । ତାକୁ ଭଲଭାବେ ବଞ୍ଚାଇ ରଖିବା ଲାଗି ଲୋଡ଼ା ହେଲେ ମରିବେ ପଶୁ, ପକ୍ଷୀ ଓ ସବୁ ଜାତିସ୍ଥ ପ୍ରାଣୀ ।

## ହାନିବଲ୍ ପଥେ (୨୬।୯।୭୭, ସେଣ୍ଟଲୁଇସ୍)

ପଥପାର୍ଶ୍ୱ ପୂର୍ବରୁ ଶରତ୍ ଅରଣ୍ୟ ଅଦ୍ଭୁତ ଭାବେ ରଙ୍ଗୀନ୍ ହୋଇ ଉଠିଛି । ମୃତ୍ୟୁ ବିବର୍ଣ୍ଣ ନୁହେ; ତାର ବି ବର୍ଣ୍ଣାଢ୍ୟ ଗୌରବ ଅଛି, ଅଭିଭୂତ କଲାଭଳି । ଦିବସର ମୃତ୍ୟୁ ଗୋଧୂଳିରେ—ଗୋଧୂଳି ସୁନ୍ଦର । ରାତିର ମୃତ୍ୟୁ ପ୍ରତ୍ୟୁଷରେ, ପ୍ରତ୍ୟୁଷ ମନୋହର । ମୃତ୍ୟୁ ବର୍ଣ୍ଣହୀନତାରେ କୃଷ୍ଣ ନୁହେ, ବିବର୍ଣ୍ଣତାରେ କୁତ୍ସିତ ନୁହେ, ନବ ଜନ୍ମର ସମ୍ଭାବନାରେ ଉଜ୍ଜ୍ୱଳ, ଭାସ୍ୱର; ଏକର ଗମନରେ, ଅନ୍ୟର ଆଗମନ; ପ୍ରାନ୍ତ ସଙ୍ଗୀତ ସହିତ ପ୍ରାରମ୍ଭିକ ସଙ୍ଗୀତର ଧ୍ୱନି ଯେପରିକ ମିଶି କରି ରହିଛି ।

ଗଛସବୁ ପତ୍ରଝଡ଼ା ଦେଉଛି କମ୍ୱା ପତ୍ରସବୁ ଅପେକ୍ଷା କରିଛନ୍ତି ପବନର ଏକ ଉଚ୍ଛ୍ୱସିତ ତରଙ୍ଗକୁ । ପିଙ୍ଗଳ ଧୂସର ବନ୍ୟ ଫୁଲ, ସୂର୍ଯ୍ୟ-ମୁଖୀ—ବାଧାବନ୍ଧକୁ ଖାତିର ନ କରି, ଲାଳନାକୁ ଅପେକ୍ଷା ନ କରି ଯିଏ ସବୁ ଫୁଟୁଛନ୍ତି, ଏ ଦେଶର ସଂଗ୍ରାମଶୀଳ ଜୀବନର ପ୍ରତୀକ; ଦୁଃଖ କଷ୍ଟ ମଧ୍ୟରେ ମୁଖକୁ ରଖିପାରିଛନ୍ତି ପ୍ରଫୁଲ୍ଲ । ରାଜପଥର ତୋରଣ ତୋଳି ସୌନ୍ଦର୍ଯ୍ୟର ନିତ୍ୟନବ ଜୟନ୍ତୀ ଏଇମାନେ ପାଳନ୍ତି ।

ଶରତ୍ ହାତରେ ନବୀନ ଶିଳ୍ପ ତୂଳୀ, ଅରଣ୍ୟ ପ୍ରାନ୍ତରକୁ ନବ ନବ ରଙ୍ଗରେ ରଚନା କରେ ସେ; ହରିଦ୍ରାବର୍ଣ୍ଣର, ଲୋହିତ ବର୍ଣ୍ଣର ପତ୍ର; ଅରଣ୍ୟ କେଉଁଠି ପୀତଲୋହିତ, କେଉଁଠି ପୀତଶ୍ୟାମ, ପୀତପିଙ୍ଗଳ କମ୍ୱା ପୀତଧୂସର । ମିସୌରୀ ନଦୀ ପାରି ହୋଇ ଆମେ ଗଲୁ 'କଇଭର' ନଦୀ କୂଳକୁ; ନୌକା ଚଳାଉ ଚଳାଉ ପାର୍ଶ୍ୱୀ ବନଶି ପକାଇ ମାଛ ଧରୁଛନ୍ତି । ହଗ୍‌ବଲସ୍ତୁ ଖଣ୍ଡିତ, ବୁଦ ବୁଦକିଆ ପାହାଡ଼ରେ । କର୍ଷିତ ଭୂମିର କଳା କଳା ମାଟି; ଉଦ୍ୟାନର ପୀତୋଜ୍ଜ୍ୱଳ ଶ୍ୟାମଳତା

ଦୃଷ୍ଟି ଆକର୍ଷଣ କରେ; କେଉଁ ଅରଣ୍ୟରେ ଶ୍ୟାମଳତା ମୁଖ୍ୟରଙ୍ଗ, ବନ୍ଦ୍ ବନ୍ଦ୍ ପୀତ ରକ୍ତ ଛିଟା ପଡ଼ିଲା ପରି ଦିଶୁଛି । ଶ୍ୟାମଳ ଗୃହରେ ରଙ୍ଗର ପ୍ରାପସବୁ କେଉଁଠି ବା ପ୍ରଜ୍ଜ୍ୱଳିତ; ଆକାଶରେ ସୋଲ ସୋଲ ଧୂଳିଆ ମେଘ, ମଝେ ମଝେ ଗାଢ଼ନୀଳ ଆକାଶ; ଅପରନ୍ତୁ ବନ୍ୟ ଫୁଲ ପିଙ୍ଗଳ ଧୂସର, ନୀଳୋଜ୍ଜ୍ୱଳ, ପ୍ରଜାପତିମୟ, ସ୍ଥାନେ ସ୍ଥାନେ ସୂର୍ଯ୍ୟମୁଖୀ ପୁଞ୍ଜିତ କୁଞ୍ଜିତ । ଆମେରିକା ଭ୍ରମଣ ସରି ସରି ଆସୁଛି, ତେଣୁ ଲୋଭାତୁର ଦୃଷ୍ଟିରେ ଶୋଷି ଯାଉଛି ସବୁ, ତୃଷାର୍ତ୍ତ ମଦ୍ୟପ ପରି ।

'ଆଇଓ' ନାମକ ଷ୍ଟେଟ ସହରରେ ଆମେ ପହଞ୍ଚିଲୁ; ଏଇ ବାଣିଜ୍ୟର ଗୋଟିଏ ବଡ଼ କେନ୍ଦ୍ର ଏ । ଲିଫ୍ଟଚେୟାରରେ ୪୦ ମାହାଡ଼ ଉପରକୁ ଉଠିବାର ବ୍ୟବସ୍ଥା ଅଛି । ଧାଡ଼ି ଧାଡ଼ି ଗଛ ମଧ୍ୟରେ ମିସିସିପି ନଦୀର ଲୁଚକପା ଚେହେରା ଦେଖିଲି ।

ବ୍ଲାକ୍ ସହର; ଲୁଇଜିଆନା ସହର, ମିସିସିପିର ଜଳ ଚେନାଲରେ ବୋଝ ଚାଲିଛି; ଫସଲ ଇନ୍‌ସୁରେନ୍‌ସ କମ୍ପାନୀ, ଶସ୍ୟ—ବ୍ୟବସାୟୀ, ବଡ଼ ଇସ୍ପାତ ଶସ୍ୟକୋଠି ତାର ଦିଗ୍-ବଳୟକୁ ଲମ୍ବିଛି । ଛୁଡ଼ା ହୋଇଛି ଲୁହାର ଏକ ମେରୁଦଣ୍ଡ; କଳ ସାହାଯ୍ୟରେ ଏକ ସୌଧ ନିର୍ମାଣ ଲାଗି ଦୁଇ ତିନି ମାସରୁ ଅଧିକ ସମୟ ଲାଗିବ ନାହିଁ ।

ଶତ ଶତ ପିଚ, ଆପଲ୍ ଉଦ୍ୟାନ । ଫଳରସ କାଢ଼ିବା ଲାଗି କଳ ବସିଛି । ପଥୁରିଆ ରାସ୍ତାରେ ବୋହୁଛି ଗୋଟିଏ ଷ୍ଟ୍ରିମ୍ ଝରଣା, ନିର୍ଜନ ପାହାଡ଼ରେ ଗୋଟିଏ ମାତ୍ର ଘୋଡ଼ା ଚରୁଛି । ଶାନ୍ତ ମନ, ଶାନ୍ତ ଚତୁର୍ଦ୍ଦିଗ—କିନ୍ତୁ ରେଡ଼ିଓ ବୋହି ଆଣୁଛି ଭୀଷଣ ସମ୍ବାଦ—ରେଲ ଡକେଇତି, ଆକ୍‌ସିଡେଣ୍ଟ ।

'ଜଣେ ପିସ୍ତଲ ଧରି ଆଉ ଜଣକ ଘରେ ପଶିଲା; କହିଲା—ସ୍ତ୍ରୀ ବେମାର, ମୋତେ ଦଶ ଡଲାର୍ ଦିଅ, ତା ପାଖେ କିଛି ନ ଥିଲା । ସେ

ପଡ଼ୋଶୀଠାରୁ ଦଶ ଡଲାର ଉଧାର ଆଣି ଦେବା, କିନ୍ତୁ ଉତ୍କେଇତକୁ ଉତ୍ତର ଦେଉଛନ୍ତି ବୋଲି କହିଲା ନାହିଁ କିମ୍ବା ପୁଲିସ୍‌କୁ ଫୋନ୍‌ରେ ଡାକିଲା ନାହିଁ । ସେପରି କରିଥିଲେ ଅବସ୍ଥା ଭୟଙ୍କର ହୋଇଥାନ୍ତା, କେତେକଙ୍କର ପ୍ରାଣହାନି ଘଟିଥାନ୍ତା । କିନ୍ତୁ ଏ ଲୋକଟି ପ୍ରକୃତରେ ଉତ୍କେଇତ ନୁହେଁ, ଅବସ୍ଥା ଚକ୍ରରେ ପଡ଼ି ଏପରି କରୁଛି । ଅଭାବ ତାର ସ୍ୱଭାବ ନଷ୍ଟ କରିବାକୁ ଯାଉଛି । ପରିବାର ପୋଷଣ କରିପାରୁ ନାହିଁ, ହୁଏତ ଅପବ୍ୟୟୀ, ମଦ୍ୟପ । ହୁଏତ ପାଦ ଖସୁ ଖସୁ ଖସିବ । ବନିଯିବ ପୂରା ଉତ୍କେଇତ ।

ମକ୍‌କା ଖେତ ଲମ୍ବିଛି, ଦୃଷ୍ଟି ଯେତେ ଦୂର ଯାଏ । ତାପରେ ଛୋଟ ଛୋଟ ପାହାଡ଼, ତାକୁ ଭାଙ୍ଗି ଭାଙ୍ଗି ରାସ୍ତା ଯାଇଛି । ଅଣ ଓସାରିଆ, କାଦୁଆ ନଈଟିଏ । ଆମେ ହାନିବାଲ୍ ସହରରେ ପହଞ୍ଚିଲୁ ।

## ହାନିବାଲ୍‌ର ଡାକବାଲା

ବେଟ୍‌ଟୀ ଏରେନ୍‌ସିନ୍ ହେଣ୍ଡଲ୍ଲିଉସର ଜଣେ ନର୍ସ, ନାସ-ଥେସିଆ ସ୍ପେସାଲିଷ୍ଟ, ଉଦୟର ସୁପରିଚିତା । ତାଙ୍କ ଭଉଣୀ ଘର ହାନିବାଲ୍‌ରେ । ଭଉଣୀର ନାଆଁ ଲୁଇସ୍ । ବେଟ୍‌ଟୀ ଆମକୁ ମାର୍କ-ଟ୍ୱେନଙ୍କ ଜନ୍ମସ୍ଥାନ ଦେଖାଇ ନେବେ ବୋଲି ଗତ ସପ୍ତାହରେ କହିଥିଲେ । କିନ୍ତୁ ତାଙ୍କର ଜଣେ ଆତ୍ମୀୟା ଗୁରୁତର ଭାବେ ପୀଡ଼ିତା ହୋଇ ଡାକ୍ତର ଖାନାକୁ ଆସିଲେ । ପରବର୍ତ୍ତୀ ସପ୍ତାହକୁ ଯାତ୍ରା ସ୍ଥଗିତ ରଖାଗଲା ।

ବେଟ୍‌ଟୀର ସ୍ୱାମୀ ଜଣେ ଡାକ୍ତର, ଭର୍ଜିନିଆରେ ଗୋଟିଏ ଔଷଧ କମ୍ପାନୀର ସ୍ୱତ୍ୱାଧିକାରୀ । ଡାକ୍ତର ଏରେନ୍‌ସେନ ଓ ବେଟ୍‌ଟୀ ଦୁହେଁ ରବିବାର ସକାଳେ ହାନିବାଲ୍ ବୁଲି ଆସିଲେ, ଆମ ଖିଆପିଆର ବନ୍ଦୋବସ୍ତ କରିବା ଲାଗି ।

ଆମେ ହେଷ୍ଟଲୁଇସ ରୁ ବାହାରିଲୁ ସକାଳ ଦଶଟା ବେଳେ—ଉଦୟ, ଇରା, ଗୀତା, ମୀରା ଓ ନିଜ । ସାଢ଼େ ବାରଟା ବେଳେ ହାନି-ବାଲ ରେ ପହଞ୍ଚିଲୁ । ଶ୍ରୀ ଓ ଶ୍ରୀମତୀ ଏନସନ ସ୍ୱୋନ, ଟିମବ୍ରୁକ୍ ଛୁଆ ହୋଇଛନ୍ତି ଦୁଆର ମୁହଁରେ ଆମକୁ ଅପେକ୍ଷା କରି । ଛୁଆ ହୋଇଛନ୍ତି ଟିମ୍ବ୍ରୁକ୍ ପରିବାରର ପୋଷ୍ୟ ଦୁଇଟି କୁକୁର, ଦୁଇଟି ବିରାଡ଼ି, ଲୁଇସ ର କନ୍ୟା ନବଯୌବନା ଜୋହାନ୍ନା, ଜୁନିଅର ହା. ସ୍କୁଲର ଛାତ୍ରୀ; ପୁଅ କେନେଥ କ୍ଲେ—ବନ୍ୟଜନ୍ତୁ ସଂରକ୍ଷଣ ଟ୍ରେନିଂ ନେଉଛି । ନିଜେ ନିଜ ପଢ଼ା ଖର୍ଚ୍ଚ ତୁଲାଏ; ସେଥିଲାଗି ତାକୁ ରାସ୍ତା ସଫା କରିବାକୁ ହୁଏ, କମ୍ବା ରାତିରେ ଯାତ୍ରୀ ବସ୍ ମାନଙ୍କରେ ଗ୍ୟାସ୍ ଭର୍ତ୍ତି କରିବାକୁ ପଡ଼େ ।

ଲୁଇସଙ୍କୁ ମଧ୍ୟ ଗୃହର ଉପ ମାନ ରକ୍ଷା ଲାଗି ଚାକିରି କରିବାକୁ ହୁଏ । ସେ ସପ୍ତାହକେ ତିନିଦିନ କାମ କରିବାକୁ ଯାଏ, ଏକ ପାଉଁରୁଟି କମ୍ପାନୀକୁ ।

ଲୁଇସ୍‌ର ସ୍ୱାମୀଙ୍କ ପୂରା ନାମ ଉଇନ୍‌ଫ୍ରେଡ଼୍ ଟିମ୍ବ୍ରୁକ୍, ଡାକବାଲା; ଚିଠିପତ୍ର ବାଣ୍ଟିବା ତାଙ୍କର କାମ । କିନ୍ତୁ ହାନିବାଲ୍ ଗୋଟିଏ ଛୋଟ ସହର । ଏଠି ଡାକବାଲା ମଟର ଗାଡ଼ିରେ ବସି ଚିଠି ବାଣ୍ଟିବାର ବ୍ୟବସ୍ଥା ନାହିଁ । ଯେତେ ପତ୍ରପତ୍ରିକା ଆସେ ସେ ସବୁ ସାଇକେଲ୍ ରେ ବୋହି ନେବା ଅସମ୍ଭବ । ତେଣୁ ଗୋଟିଏ ଠେଲା ଗାଡ଼ିରେ ଚିଠି ପତ୍ର ଓ ପତ୍ର ପତ୍ରିକାର ବଣ୍ଡଲ ସ୍ତୂପ ରଖି ଟିମ୍ବ୍ରୁକ୍ ଠେଲି ନିଅନ୍ତି ଏ ଗଳିରୁ ସେ ଗଳି ।

ଟିମ୍ବ୍ରୁକ୍ ଗୋଟିଏ ଦୋମହଲା କୋଠାରେ ରହନ୍ତି; ଦଶବର୍ଷ ପୂର୍ବେ ତିନିହଜାର ଡଲାର୍‌ରେ ସେ ଘରକୁ କିଣିଥିଲେ । ଏବେ ଦାମ୍ ଚତୁର୍ଗୁଣ । ଘରଟି ଅବଶ୍ୟ ଟିକିଏ ପୁରୁଣା ଧରଣରେ ତିଆରି—କାଠର ଚଟାଣ, କାଠର ପାହାଚ; କାନ୍ଥରେ ଚିତ୍ରକାଗଜ ମଡ଼ା ହୋଇଛି । ଶଯ୍ୟା, ଦର୍ପଣ, ଚୌକି, ଟେବୁଲ୍ ପ୍ରଭୃତି ଆସବାବ, କାନ୍ଥରେ ମରା ଛବି, ଫଟୋ, ବୈଠକ ଘରର ସଜାସଜି, ରେଡ଼ିଓ, ଟେଲିଭିଜନ୍ ଦେଖିଲେ କିଏ ଜାଣିବ ଟିମ୍ ଗରିବ ବୋଲି ? ପତ୍ର ପତ୍ରିକା ଯେପରି ସଜା

ହୋଇଛନ୍ତି ଦେଖିଲେ ମନେ ହୁଏ ବେଶ୍ ପଡ଼ାପଢ଼ି କରନ୍ତି; ବହୁଖଣ୍ଡ ପୁସ୍ତକ ମଧ୍ୟରେ ଖଣ୍ଡିକର ନାମ—The story book of Rabin-hood, ପ୍ରକୃତ ପକ୍ଷେ ପଢ଼ିବା ପାଇଁ ନୁହେ, ଏ ସବୁ ପ୍ରଦର୍ଶନୀ, ସଂସ୍ଥା ଦ୍ବାରା ସଜ୍ଜିତ ପୁସ୍ତକ ସଜ୍ଜିତ।

କଥାବାର୍ତ୍ତାରୁ ବୁଝିଲି ଏହି ପରିବାରର ପଢ଼ିବାକୁ ଅବସର ନ ଥାଏ। ସବୁ ବେଳେ କାର୍ଯ୍ୟ। ଜୀବନର ମର୍ଯ୍ୟାଦା ରକ୍ଷା କରି ଚଳିବା ଲାଗି ଧ୍ୟାନ ନାଳ ହେବାକୁ ହୁଏ। ଅବସର ମିଳିଲେ ରେଡ଼ିଓ ଶୁଣନ୍ତି କିମ୍ବା ଟେଲିଭିଜନ୍ ଦେଖନ୍ତି। ଏଥିରୁ ଯାହା ଶିକ୍ଷା ମିଳେ ସେତିକି ମାତ୍ର ଜ୍ଞାନଧନ। 'ଅଶୋକ ଜଣେ ଭାରତୀୟ ସମ୍ରାଟ', 'ରବୀନ୍ଦ୍ରନାଥ ଜଣେ ବିଶ୍ୱକବି, ନୋବେଲ ପୁରସ୍କାର ଏହିଭଳି କବିଙ୍କୁ ଦିଆଯାଏ', 'ଭାରତ ବର୍ଷ ସ୍ୱାଧୀନ ହୋଇଛି' ଏ ସବୁ କଥା ଟିମ୍‌ବ୍ରୁକ୍ ଜାଣନ୍ତି ନାହିଁ। ତାଙ୍କ ଧାରଣାରେ ଭାରତ ଗୋଟିଏ ବଣୁଆ ଦେଶ। ମହାବଳ ବାଘ, ଅଜଗର ସାପ ଓ ବଡ଼ ଅଳ କୁମ୍ଭୀର ଭରା।

ନିମନ୍ତ୍ରିତ ହୋଇ ଆସିଛନ୍ତି ଟିମ୍‌ବ୍ରୁକ୍‌ଙ୍କର କେତେକ ବନ୍ଧୁ; ସେମାନଙ୍କ ଭିତରେ ଲୁଇସ୍, କେଞ୍ଚୀ, ଭର୍ଜିନିଆ ଓ ସେମାନଙ୍କର ବୁଢ଼ୀ ମାଆ। ଟେବୁଲ ସଜେଇଛି ଜୋସେଫ୍, ଫେଣ୍ଟା ଫେଣ୍ଟା ପ୍ଲାଷ୍ଟିକ୍ ଲାଲ ଅଙ୍ଗୁର ରଖି; ଖାଦ୍ୟ ମଧ୍ୟରେ କେନ୍‌ଟକି ଚିକେନ୍ ଭଜା ମୁଖ୍ୟ। ଆମ ଦେଶରେ ଗୋଟିଏ ଗୋଟିଏ ଅଞ୍ଚଳରେ ଗୋଟିଏ ଗୋଟିଏ ପ୍ରକାର ଖାଦ୍ୟ ପ୍ରସିଦ୍ଧି ଲାଭ କରିଥାଏ, ଏଠି ମଧ୍ୟ ସେହିପରି; ଆମର ଯେପରି ଭୁବନେଶ୍ୱର ଭୋଗ, କେନ୍ଦ୍ରାପଡ଼ା ରସାବଳୀ, ଏଠି ସେହିପରି କେନ୍‌ଟକି ପ୍ରଦେଶର ଚିକେନ୍‌ଭଜା। ତା ଛଡ଼ା ମଟର ଶିମ୍ବା, ଶିମ୍ବମଞ୍ଜି ତରକାରୀ, କେତେ ପ୍ରକାର ଫଳର ସାଲାଡ୍, ହିମଦଧିଆ କଖାରୁ ଫୁଲ ଭଜା। କଖାରୁ ଫୁଲ ଦୋକାନରେ ମିଳେ ନାହିଁ। ହାନିବାଲ୍‌ର ଜଣେ ଜର୍ମାନୀ ଭଦ୍ର ଲୋକଙ୍କ ବାଡ଼ରେ ଫୁଟିଥିଲା; ସେ ଟିମ୍‌ବ୍ରୁକ୍‌ଙ୍କ ନିକଟକୁ ଉପହାର ପଠାଇଥିଲେ। ସବା ଶେଷରେ କଫି, ଆଇସ୍‌କ୍ରିମ୍ ବା ପାଇ।

ଖିଆ ପିଆ ପରେ ଟିମ ବ୍ରୁକ ଆମକୁ ମିସିସିପି ନଦୀ କୂଳକୁ ବୁଲାଇ ନେଲେ। 'ବାର୍ଜ' ବୋଟମାନଙ୍କରେ ଜଳପଥ ନଦୀ

ଦେଉଥାଏ । ହାଟବଜାରରୁ ଗହମ, ମକକା, ଗୁଣ୍ଡଦୁଧ, ଲହୁଣୀ ପ୍ରଚୁର ଉତ୍ପନ୍ନ ହୁଏ । ବହୁ ସଂଖ୍ୟାରେ ମେକ୍ସିକୋ ଓ ଦକ୍ଷିଣ ଆମେରିକାକୁ ଘୁଷୁରି ମଧ୍ୟ ପଠାଯାଏ । ନଦୀ କୂଳରେ ଗୋଟିଏ ଲହୁଣୀ କାରଖାନା । ବନ୍ଦ ଦୁଧ ଡବାସବୁ ଭିତରକୁ ଯାଉଛି, ଯନ୍ତ୍ର ସାହାଯ୍ୟରେ ଖାଲି ଡବା ସବୁ ପଦାକୁ ବାହାରି ଆସୁଛି ।

ଆମେ ଯାଉ ଥାଉ; ବାଁ ପଟେ ପାହାଡ଼ କାନ୍ଥ, ଲତାଗୁଳ୍ମଭରା, ପଡ୍ଡ ପତ୍ରରେ ରଙ୍ଗୀନ୍; ଡାହାଣ ପଟେ ମିସିସିପି ନଦୀ, ପ୍ରସାରିତ ବକ୍ଷ, କୂଳରେ ବୋଟ ଷ୍ଟେସନ, ବରଫଗୃହ । ଅଗେ ଶୀତ କାଳରେ ମିସିସିପିରୁ ବିଶାଳ ତୁଷାର ଖଣ୍ଡ ସଂଗୃହୀତ ହୋଇ ସାଇତି ରଖା ହେଉଥିଲା । ନଦୀ ବକ୍ଷ ଜମାଟ ବାନ୍ଧିଲେ ଲୋକେ ତାହା କାଟନେଇ ଅଣୁଥିଲେ; ଯେପରି ତରଳି ବୋହି ନଯିବ, ସେଥିଲାଗି ଉପଯୁକ୍ତ ବ୍ୟବସ୍ଥା କରାଯାଉଥିଲା ।

ମିସିସିପିରେ ଗୋଟିଏ ଗାଢ଼ ସବୁଜ ଦ୍ୱୀପ—ଟରଟିଜ୍ ଆଇଲାଣ୍ଡ୍; ଆମେରିକାର ପ୍ରସିଦ୍ଧ ଔପନ୍ୟାସିକ ମାର୍କ ଟ୍ୱେନ୍ ବେଳେ ବେଳେ ଏହି ଦ୍ୱୀପକୁ ଲେଖାଲେଖି କରିବାକୁ ଯାଉଥିଲେ । ଏଇ ବୃଦ୍ଧବୃଦ୍ଧକଥା ପାହାଡ଼, ଦ୍ୱୀପ, ଗାଢ଼ ନୀଳ ନଦୀ ଧାର, କୂଳେ କୂଳେ ପାଇନ୍ ବନ, ଉଚ୍ଚାବଚ ତୃଣଭୂମି ଓ ଶସ୍ୟ ଖେତର ରୋମାଣ୍ଟିକ୍ ପରିବେଶ ମନକୁ ମୋହାଚ୍ଛନ୍ନ କରେ ।

ଦେଖୁ ଦେଖୁ ମିସିସିପି କେତେବେଳେ ଦୂରେଇ ଗଲା । ଆମେ ପହଞ୍ଚିଲୁ ଗୋଟିଏ ହ୍ରଦ କୂଳରେ; ଆଲ୍‌ଫାଲ୍‌ଫା କାରଖାନା ଏଠି ରହିଛି ।

## ଆଲ୍‌ଫାଲ୍‌ଫା—

ଆଲ୍‌ଫାଲ୍‌ଫା ଆମ ଆଡ଼ର ମୁଗ ବା କୋଳଥ ଗଛ ପରି, ପୁଷ୍ଟିକର ଗୋଖାଦ୍ୟ । ମିସିସିପି ନଦୀ କୂଳର ଶହ ଶହ ଏକର ଜମିରେ ଆଲ୍‌ଫାଲଫା ଉତ୍ପାଦନ କରା ହେଉଛି । ଗଛରେ ଫୁଲ ଧରିବା

ଆଗରୁ ତାକୁ ଓପାଡ ଅଣା ହେଉଛି । ଟ୍ରକ ସଞ୍ଚିତ ମାଲ ଓଜନର ବ୍ୟବସ୍ଥା କାରଖାନାରେ ରହିଛି । ତ୍ୟାପ ତାପରେ କଞ୍ଚା ଆଲ୍‌ଫାଲ୍‌ଫା ଶୁଖି ଯାଉଛି । ତାପରେ ତାକୁ ଗୁଣ୍ଡ କରି ସେଥିରେ ସୋୟାବିନ୍ ବା କପାମଞ୍ଜି ତେଲ ଦିଆ ହେଉଛି । ଏ ମୃଣ୍ଡ କଳରେ ଆଲ୍‌ଫାଲ୍‌ଫା ଭର୍ତ୍ତି କରିଦେଲେ ଆଉ ପଟେ ସିଲିଟ୍ ଖଡ଼ ଆକାରରେ ବାହାରୁଚି; ତାକୁ ମୋଟା କାଗଜ ବସ୍ତାରେ ଭର୍ତ୍ତି କରି ସିଲେଇ କରି ଦିଆଯାଉଛି, ତାପରେ ଜାହାଜରେ ବହୁ ଦୂରବର୍ତ୍ତୀ ସ୍ଥାନକୁ ରପ୍ତାନି କରି ଦିଆଯାଉଛି ।

ପି. ଫିଲିପ୍, ପିନ୍ଧିଛନ୍ତି ଖଣ୍ଡିଏ ମଇଳା ପ୍ୟାଣ୍ଟ୍, ଗୋଟିଏ ମଇଳା ଟୋପି । ସେ ଏକା ଏଇ କଳକୁ ଚଳାଉଛନ୍ତି । କଳରେ ଆଲ ଫାଲଫା ଭର୍ତ୍ତି କରୁଛନ୍ତି ଓ ଆରପାଖେ ବସ୍ତା କାଢ଼ୁଛନ୍ତି । ସେ ଆମକୁ ଘୂରିଆଡ଼େ ବୁଲାଇ ଦେଖାଇଲେ ଓ ବୁଝାଇଲେ—ଏ ଖାଦ୍ୟରେ ପ୍ରଚୁର 'ଏ' ଭିଟାମିନ ଓ ପ୍ରୋଟିନ ରଖା ଯାଇଛି, ମାଂସ ଲାଗି ଉଦ୍ଦିଷ୍ଟ ଗୋରୁଙ୍କ ମାଂସ ବୃଦ୍ଧି କରୁଛି, ଗାଈ ମଧ୍ୟ ଅଧିକ ଦୁଧ ଦେଉଛନ୍ତି । କଳରୁ ଉଠୁଚି ସବୁଜ ଧୂଆଁ, ଘୂରିଆଡ଼େ ସବୁଜ ଗୁଣ୍ଡ ଉଡ଼ି ପଡ଼ୁଛି, ଏଇ ସ୍ଥାନର ମାଟିକୁ କରିଛି ଅଧିକ ଉର୍ବର ।

## ଗୋ ଓ ଶୂକରଶାଳା

ଟିମ୍‌ବ୍ରୁକ୍ ଆମକୁ ସ୍ଥାନୀୟ ଗୋଟିଏ ଗୋଶାଳାକୁ ବୁଲାଇନେଲେ । ଗୃଲ୍‌ସ୍ ଏହାର ମାଲିକ, ଗୃହାଳ ପୋଛି ସାରି ସେ ଆମ ଆଗରେ ଆସି ଛିଡ଼ା ହେଲେ—କଳା ପ୍ୟାଣ୍ଟ, କଳା କୁର୍ତ୍ତା, କଳାଟୋପି ।

ଗୃଲ୍‌ସ ଦେଖାଇ ବୁଝାଇଲେ—ବାରିକ ବାରିକ କରି ଦୁହାଁଳ ଗାଈ, ବାଛୁରି ଛଡ଼ା, କଅଁଳା ବାଛୁରୀ କପରି ରଖାଯାଇଛି; ସମସ୍ତ ଗୋ ଖାଦ୍ୟ କପରି ସେ ନିଜେ ଉତ୍ପାଦନ କରନ୍ତି, ଗାଈଙ୍କ କପରି ମକ୍‌କା ଓ ଚାରା ଡାଙ୍ଗଡୁଙ୍ଗା ମିଶାଇ ଡଙ୍ଗାପରି ଆକାର ଏକ ପାତ୍ରରେ ଖାଇବାକୁ ଦିଆହୁଏ, ଶିଙ୍ଘ କପରି କଟାହୁଏ, ଗାଈ ଉପରକୁ ଉଠି ଥିବା ବେଳେ ବୃଷଭ ଠାରୁ ସିମେନ୍ କପରି ସଂଗୃହୀତ ହୁଏ

ରେଫ୍ରିଜରେଟରରେ କପର ରଖାଯାଏ, ଗହମ କଣ କପର ଗାଈକ ଇଞ୍ଜେକସନ ଦିଆଯାଏ ।

ଗ୍ରୁଲ୍‌ସ ଗ୍ରକର ଲକ୍ଷ ନାହାନ୍ତି । ସେ, ତାଙ୍କ ପୁଅ ଓ ସ୍ତ୍ରୀ ଗୋରୁ-ଙ୍କର ସମସ୍ତ କାର୍ଯ୍ୟ ଓ ଗୃହବାସ କରନ୍ତି । ତାଙ୍କର ମୋଟରେ ୭୫ଟି ଗୋରୁ ଓ ବାଛୁରି ଅଛନ୍ତି । ଦୁଗ୍ଧ ବକ୍ରୟରୁ ସେ ବର୍ଷକୁ ଗ୍ରକଶ ହଜାର ଡଲାର୍ ପାନ୍ତି ।

ଗ୍ରୁଲ୍‌ସଙ୍କ ପୁଅର ନାମ ରସେଲ୍, ଯୁବକ, ବବାହିତ । ଗୃହର ଦାୟିତ୍ୱ ପୂର୍ବାପର ତାଙ୍କ ଉପରେ, ସେ କ୍ଷେତରେ ଗହମ, ମକ୍‌କା, ଆଲଫାଲଫା ଉତ୍ପାଦନ କରନ୍ତି । ସେ ମକ୍‌କା କାଟିବା କଳରେ ବସି କ୍ଷେତକୁ ଚଳାଇ ନେଲେ; ଜଗ୍ରୁ ବସ୍ତା, ଲଣ୍ଡା ଲଣ୍ଡା ଗୋବର ପଡ଼ିଛି । ଆମେ ତାଙ୍କ ପଛେ ପଛେ ଚାଲିକୁ ଗଲୁ । କଳଟି ଲମ୍ବା, ବୁଲାଇବା କଷ୍ଟ, ଏକାବେଳକେ ମକ୍‌କା, ଡାଙ୍ଗଡ଼ୁଙ୍ଗା ଗୁଣ୍ଡ ହୋଇ ଟ୍ରକ ଡାଲା ପରି କଳରେ ଲାଗିଥିବା ପାତ୍ରରେ ଜମା ହୋଇ ରହୁଛି । ଡାଲା ପୂରିଲେ ରସେଲ ଖାଦ୍ୟ କୋଠରିରେ ଭର୍ତ୍ତି କରଦେଇ ଆସୁଛନ୍ତି । ଆଲଫାଲଫା କ୍ଷେତରେ ଠିଆ ହୋଇ ଆମେ ଏ ଦୃଶ୍ୟ ଦେଖୁଥିଲୁ—ମୁଠାଏ ଲମ୍ବା ମକ୍‌କା—ଲାଲ୍ ହଳଦିଆ ରଙ୍ଗର, ଖଣ୍ଡ ଖଣ୍ଡ ହୋଇ କେତେ କ୍ଷେତଯାକ ପଡ଼ିଛି । କେହି ଗୋଟାଉ ନାହାନ୍ତି । ଦୁଇ ତନି ମାଇଲ ପର୍ଯ୍ୟନ୍ତ କେବଳ ତାଙ୍କର ଜମି ।

ଗ୍ରୁଲ୍‌ସଙ୍କ ସ୍ତ୍ରୀ ଆସି ପହଞ୍ଚିଲେ । କାଖରେ ନାତିଟିଏ । ଲଞ୍ଚ୍‌ବେଳ ହେଲେ ସେ ଘଣ୍ଟା ବଜାନ୍ତି । କ୍ଷେତ ବା ଗୁହାଳରୁ ତାଙ୍କ ସ୍ୱାମୀ ବା ପୁଅ ଏ ଘଣ୍ଟି ଶୁଣିଲେ ଖାଇବା ପାଇଁ ଆସନ୍ତି । ଗ୍ରୁଲ୍‌ସଙ୍କ ସ୍ତ୍ରୀ ପଗ୍ରୁରିଲେ—

'କହି ପାରିବେ, ଏ ଘର କେତେ ବର୍ଷର ?'

କହିଲି—'ପଗ୍ରଶ ବର୍ଷ ହେବ; ଆଉ କେତେ ?'

'ତିନି ପୁରୁଷ ହେଲା ଏ ଘର ରହୁଛୁ । ଚାଷ କରି ଓ ଗୋରୁଗାଈ ପାଳି ଆମେ ଚଳୁଛୁ ।'

ଗ୍ରିଲ୍‌ସ୍ ପରିବାରକୁ ଧନ୍ୟବାଦ ଦେଇ ଆମେ ବିଦାୟ ନେଲୁ ।

ତାପରେ ଚାରିପାଞ୍ଚ ମାଇଲ୍ ଦୂରବର୍ତ୍ତୀ ଗୋଟିଏ ଶୂକର ଶାଳାରେ ପହଞ୍ଚିଲୁ; ଗାଡ଼ି ଦେଖି ଛୁଟି ଆସିଲା ଗୋଟିଏ କୁକୁର, ଟେରିଅର କି ମିଶ୍ର ? ଅଧୀର ଭାବେ ଗାଡ଼ି ଚାରିପାଖ ଶୁଙ୍ଘିଗଲା । କଣ ବାରିଲା କେଜାଣି ଆଖି ତାର ଲାଲ୍ ହୋଇଗଲା, ଟିମ୍‌ବ୍ରୁକ୍ କହିଲେ, ସାବଧାନ, ଗତିବିଧି ଭଲ ଦେଖାଯାଉ ନାହିଁ । କେହି ଓହ୍ଲାଅ ନାହିଁ । ଉତ୍କଣ୍ଠିତ, ଚମତ୍କୃତ ।

ଫାର୍ମ ମାଲିକାଣୀ ବୋଧେ ଲକ୍ଷ୍ୟ କରୁଥିଲେ; ଏ କୁକୁରର ଚରିତ୍ର ସେ ଜାଣନ୍ତି, ବେଳେ ବେଳେ ବନ୍ଧୁର ବିପଦରେ ପଡ଼ନ୍ତି । ସେ ଦୌଡ଼ି ଆସିଲେ । କୁକୁରକୁ ଥାପୁଡ଼େଇ କଣ ବୁଝାଇ ଦେଲେ କେଜାଣି, ତା ଜିଜ୍ଞାସା ଥଣ୍ଡା ହୋଇଗଲା; ସେ ଆମ ଜୋତା ଶୁଙ୍ଘି ଲାଗିଲା ।

ବୋଧେ ଆରାମ କରୁଛି; ମାଆ ନଡ଼ା ଗଦାରେ ଶୋଇଛି । ପନ୍ଦର ଛୁଆ—ଅଠରରୁ କୋଡ଼ିଏ—ଦୁଧ ଚୁଚୁମି ଲାଗିଛନ୍ତି । ଗାଈଙ୍କ ପରି ସେ ନାଚ ଉଠଉ ନାହିଁ, ମଣିଷଙ୍କ ପରି ଚଡ଼ ଚଡ଼ ହେଉନାହିଁ । ଅସୀମ ଧୈର୍ଯ୍ୟଶୀଳା ଧରିତ୍ରୀ ଯେପରିକି । କି ଭବ୍ୟ । ଆମକୁ ଦେଖି ଛୁଆଗୁଡ଼ାକ କଲବଲିଆ ହୋଇଯାଇ କୋଉ କୋଣରେ ପଶିଲେ, କେଡ଼େ ସୁନ୍ଦର ଦୃଶ୍ୟଟିଏ ମାଟି ହୋଇଗଲା ଅବା ।

ଗୋଟିଏ ଗୋଟିଏ ଲମ୍ବା ହଲ, କାଠର ଅଧା କାନ୍ଥ, ଛୋଟ-ଛୋଟ କଟରା । ପ୍ରତି କଟରାରେ ପନ୍ଦର କୋଡ଼ିଏଟି ଲେଖାଏ ଛୁଆ । ଗୋଟିଏ ଗୋଟିଏ ମାଆ । ଏପରି ଅନେକ ହଲ୍, ହଜାର ହଜାର ଘୁଷୁରି—ଧଳା କଳା ଆଉ ଛିଟିକା । ପୁରି ଠୁମ୍ ଠୁମ୍ ହୋଇଛନ୍ତି, ଏମାନଙ୍କୁ ବସ୍ତା ବସ୍ତା ମକ୍‌କା ଗୁଣ୍ଡ ଖାଇବାକୁ ଦିଆ ହେଉଛି । ଆଗେ ଗାଈଦୁଧ ପିଇବାକୁ ଦିଆ ହେଉଥିଲା, ଏବେ ସେ ବ୍ୟବସ୍ଥା ଆଉ ନାହିଁ ।

ପଡ଼ିଆରେ ଦୁଇଶହ ମାଇଲ ବାଡ଼ ଘେରା ହୋଇଛି; ତା ମଝିରେ ଗୋଟିଏ ଗୋଟିଏ ଗେରଜ। ସେଥିରେ ଏକମସ୍ତ ଘୁଷୁରିଙ୍କୁ ଅଲଗା ଅଲଗା କରିବା ଲାଗି ଘୁଡ଼ି ଦିଆ ହୋଇଛି। ମାଈ ଦଳରେ ଗୋଟିଏ ଗୋଟିଏ ଅଣ୍ଡିରା ଚରୁଛନ୍ତି। ଅନ୍ୟ ଅଣ୍ଡିରାମାନଙ୍କୁ ଖସି କରି ଦିଆହୋଇଛି। ଗୋଟିଏ ଗୋଟିଏ ଘୁଷୁରିର ଓଜନ ପ୍ରାୟ ଦୁଇଶ ପାଉଣ୍ଡ, ଦାମ୍ ପଚିଶ ଡଲାର୍!

ଘୁଷୁରି ଫାର୍ମରେ କେତୋଟି ମକ୍‌କା ନଡ଼ାର କୋଠି, ମକ୍‌କା ଗୁଣ୍ଡ କରିବା ଲାଗି ଗୋଟିଏ କଳ ରହିଛି। ପୁରୁଣା ମକ୍‌କା ଗୁଣ୍ଡ-କୋଠିରେ ରଙ୍ଗ କଳା ପଡ଼ି ଯାଇଛି, ଛେଲ ଛେଲ ଫେଷି ପିଢ଼ିଆ ପରି ଦିଶୁଛି। ଗୋଟିଏ ସ୍ଥାନରେ ଗଦା ହୋଇଛି ମକ୍‌କା ଆଉ ମକ୍‌କା ନଡ଼ାର ଗୁଣ୍ଡ; ପଲ୍ଲେ ଘୁଷୁରି ଖାଉଛନ୍ତି, ଶୁଙ୍କୁଛନ୍ତି, କାମୁଡ଼ାକାମୁଡ଼ି ହେଉଛନ୍ତି। ଖଣ୍ଡେ କାଦୁଅ ଭୂଇଁରେ କେତେକ ଯାଇ ଲୋଟୁଛନ୍ତି; ଯୋଉ ଦେଶର ହେଉ, ପଛେ, 'ଘୁଷୁରି ପ୍ରକୃତ ପଙ୍କ ଘେଣ୍ଟେ।'

ମି. ହାରମାନ ଆମକୁ ଫାର୍ମ ବୁଲାଇ ଦେଖାଇଲେ। ପଚାରିଲି—

'ମୋଟରେ କେତୋଟି ଘୁଷୁରି ଅଛନ୍ତି?'
'ଗଣା ହୁଏ ନାହିଁ।'
'ଫାର୍ମରେ ମୋଟ କେତେ ଲୋକ କାମ କରନ୍ତି?
'ତିନି ଜଣ ଲୋକ, ପାଞ୍ଚୋଟି କୁକୁର?'

ଲୁଇସ୍ ତିନି ପିଲାଙ୍କ ଲାଗି ତିନୋଟି ଖେଳଣା ଆଣି ଦେଲା। ଗୀତା ଖେଳଣାର ନାମ ଦେଲା 'ଚଞ୍ଚି', ମୀରା ତା ଖେଳଣାର ନାମ ଦେଲା 'ଲୁସି'। ଜିକି କିଛି ଦେଇ ପାରିଲା ନାହିଁ। ନାମ ଉଦ୍ଭାବନ କରିବା ବୟସ ତାର ହୋଇନାହିଁ। ଉଦୟ, ଲିବ୍ ଓ ପିଲାମାନେ ସେଣ୍ଟଲୁଇସ୍ ଫେରିଗଲେ। ମାର୍କଷ୍ଟେନଙ୍କ ଘର ଦେଖିବା ଲାଗି ମୁଁ ରହିଲି, ଅବଶ୍ୟ ଖୁବ ଅଡୁଆ ଅଡୁଆ ଲାଗୁଥାଏ, କେମିତି ଏମାନଙ୍କ ସଙ୍ଗେ ଚଳିବି, ସେଇ କଥା ଭାବି। ରହିବା ପ୍ରସ୍ତାବ ତ ନ ଥିଲା। ଲୁଗା-ପଟା କିଛି ଆଣି ନାହିଁ। ସେ ଗୋଟିଏ ଚିନ୍ତାର ବିଷୟ ହୋଇଥାଏ।

## ଭର୍ଜିନିଆଁ ଓ ଟିଲ୍ଲିଟ୍

ଗତ ନ' ଟା । ଭର୍ଜିନିଆ ଓ ତାର ସ୍ୱାମୀ ଉଇଲିୟମ୍ ଏଫ୍. ଟିଲ୍ଲିଟ୍ ମୋତେ ଷ୍ଟେସନ ଆଡେ ବୁଲାଇ ନେଲେ । ଭର୍ଜିନିଆ ବଡ ଭଉଣୀ, ଲୁଇସ୍ ମର୍ଟିଆଁ, ବେଶି ସବା ସାନ । ଏଇ ତିନି ଭଉଣୀଙ୍କ ବାପା ସୈନ୍ୟ ବିଭାଗରେ ଜଣେ କର୍ଣ୍ଣେଲ୍ ଥିଲେ, ଦଶ ବର୍ଷ ତଳେ ଇହଧାମ ତ୍ୟାଗ କରିଛନ୍ତି । ମାଆ ଅଛନ୍ତି; ବୟସ ୮୭ । ସିଧା ସଳଖ, ମୁଖର ଚର୍ମ ଯଦ୍ଧ ବା ଲୋଳିତ । ହାନିବାଲ୍ ସହରରେ ସେ ସମ୍ମାନ-ଜନକ ଆସନ ପାଇଛନ୍ତି । ବୁଢ଼ୀ ଏକୁଟିଆ ଥାଏ, ନିଜେ ହାତରେ ରୋଷେଇ କରି ଖାଏ । ତା ସ୍ୱାମୀର୍ ଫଟୋ ଦେଖାଇବା ଲାଗି ବୁଢ଼ୀ ମତେ ଘରକୁ ଡାକିନେଲା । ବୁଢୀକି ଖୁସି କରିବା ଲାଗି ମୁଁ କର୍ଣ୍ଣେଲଙ୍କ ଶ୍ରୀ ଓ ସ୍ୱାସ୍ଥ୍ୟର ପ୍ରଶଂସା କଲି । ବୁଢୀ କେତେ କଣ ଗପିବାକୁ ଯାଉଥିଲା; ଭର୍ଜିନିଆ କହିଲା—ମାଆ, ଅତିଥିଙ୍କୁ ମୁଁ ଟିକିଏ ଆମ ଘରକୁ ନେବି ।

ବୁଢ଼ୀ ଘର ସଜାସଜି କରି ରଖିଛି, ଯେମିତି ରଖିଥିଲା ତାରସ୍ୱାମୀ ଜୀବିତ ଥିଲାବେଳେ । ସତେ ଯେପରି ଏକ ବାସକସଜ୍ଜା ନାୟିକା—ଅପେକ୍ଷା କରିଛି ପ୍ରିୟତମଙ୍କ ଆଗମନକୁ । ଏକୁଟିଆ ଚଳିବାକୁ ତା ମନରେ ସାହସର ଅଭାବ ନାହିଁ । ନିଜକୁ ସେ ଅବହେଳା କରୁନାହିଁ, ଅବହେଳା କରୁନାହିଁ ଏକୁଟିଆ ସଂସାରକୁ । 'ସଂସାର ଅନିତ୍ୟ, ଅସ୍ଥାୟୀ ଆଉ କାହିଁକି ଏତେ ?'—ଏ ଭଳି ମାରାତ୍ମକ ଦାର୍ଶନିକତା ତା ମନରେ ନାହିଁ, ତାକୁ କ୍ଷିପ୍ର ଗତିରେ ମୃତ୍ୟୁ ଆଡକୁ ଟାଣିନେଉ ନାହିଁ । କର୍ତ୍ତବ୍ୟ କରୁ କରୁ ଯେତେବେଳେ ପ୍ରାଣ ଯିବ ତ ଯିବ, ସେଥିଲାଗି ଭାବି ଲାଭ ନାହିଁ ।

ତାପରେ ଭର୍ଜିନିଆ ଓ ତା ସ୍ୱାମୀ ମୋତେ ଗୋଟିଏ ଦୋକାନକୁ ଟାଣିନେଲେ । ଭାବିଲି—ସେମାନଙ୍କର କିଛି କିଣିବାକୁ ଥିବ ! କିଣା ହେଲା ଗୋଟିଏ ପ୍ୟାଣ୍ଟ, ଗୋଟିଏ ସ୍ୱେଟର୍; ଲାଲବର୍ଣ୍ଣର ଟେର୍ଲିନ୍ ଆଙ୍ଗ୍ଲିକ୍ । ଯାକୁ ପିନ୍ଧିଲେ ଝାଳ ବୁହେ ନାହିଁ; ଯାକୁ ପୋକ କାଟନ୍ତି ନାହିଁ, ଧୋଇଲେ ଏହା ସଙ୍କୁଚିତ ହୁଏ ନାହିଁ, ଚଞ୍ଚଳ ଶୁଖିଯାଏ । କିଣା ହେଲା

ଗୋଟିଏ ଟ୍ରୁଥ୍ ବ୍ରସ୍, ମୁଣ୍ଡ କୁଣ୍ଡେଇବା ଲାଗି ଗୋଟିଏ ବ୍ରସ୍ । କହିଲ ଗୋଟାଏ ଦିନ, କୌଣସିମତେ ମୁଁ ଚଳିଯାଇ ଥାନ୍ତି । କାହିଁକି ଏତେ ଖର୍ଚ୍ଚାନ୍ତ ହେଲେ ? ତୁମ ଋଣ ମୁଁ କିପରି ଶୁଝିବି ?

ଟିଲ୍ଲିଟ୍ କହିଲେ—ଏଇ ଦୀନ ଅବସ୍ଥାରେ ତୁମ ଦେଶରେ କେହି ଅବଶ୍ୟ କେତେବେଳେ ପଡ଼ିଥିବ, ତୁମର ଅତିଥି ହୋଇ ହୁଏତ ଆସିଥିବ—ସଙ୍ଗରେ ଟଙ୍କା ନାହିଁ; ଆଜ କହୁବା ନାହିଁ ତାକୁ ଅସମୟରେ ସାହାଯ୍ୟ କଲେ ମୋ ଋଣ ଶୁଝାଯାଇ ପାରିବ ।

ତାପରେ ଟିଲ୍ଲିଟ୍ ନିଜ ଘରକୁ ନେଇ ମୋତେ ତାଙ୍କର ଗୋଟିଏ ଫଟୋ ଦେଖାଇଲେ—ଦାଢ଼ି ? ଲାଲ୍ କୋଟ, ଝୁଲିବା ମୁସ୍ତେଲ୍; ଏ କିଏ ? ଶିଶୁବତ୍ସଳ ସେଣ୍ଟ ନିକୋଲାସ୍ ? ଯେ ରୋଗୀର ସେବା କରନ୍ତି, ପୀଡ଼ିତ ପତିତକୁ ସାହାଯ୍ୟ କରନ୍ତି, କ୍ରିସ୍ମାସରେ ଶିଶୁମାନଙ୍କ ଲାଗି ଉପହାର ବ୍ୟବସ୍ଥା କରନ୍ତି । ଏ ତାଙ୍କରି ଛବି ?

ଟିଲ୍ଲିଟ୍ କହିଲେ—ମୁଁ ଜଣେ ବ୍ୟବସାୟୀ; ମୋର ଧନର ଅଭାବ ନାହିଁ; ମୋତେ ପ୍ରତିବର୍ଷ ଏହିପରି ନିକୋଲାସ୍ ସାଜିବାକୁ ହୁଏ, ଅର୍ଜିତ ଅର୍ଥରୁ କିଛି ଭାଗ ଦାନ ଧର୍ମରେ ଲଗାଇ ଦିଏ ।

ପ୍ରଚୁର ଅର୍ଥ ଥିଲେ ବି ଭର୍ଜିନିଆଁ ଅଳସ ଜୀବନ ଯାପନ କରେ ନାହିଁ । ସେ ରେଲଓ୍ୱେରେ ଚାକିରି କରେ । ଘଣ୍ଟ ଦଶଟା । ଭର୍ଜିନିଆଁ ମୋତେ ରେଲବାଇ କଣ୍ଟ୍ରୋଲ୍ ଅଫିସକୁ ଘେନିଗଲା । ପରିଚିତ ହେଲା ପରେ କର୍ମଚାରୀମାନେ ମୋତେ ବୁଝାଇ ଲାଗିଲେ—ସବୁଜ ସଙ୍କେତରେ ଟ୍ରେନ୍ ଚାଲେ, ଲାଲସଙ୍କେତରେ ଟ୍ରେନ୍ ଅଟକେ, ହଳଦିଆ ସଙ୍କେତରେ ଧୀରେ ଧୀରେ ଚାଲେ । ଏଇ ସଂକେତକୁ ଅପେକ୍ଷା କରି ଡ୍ରାଇଭର୍ ରହିଥାଏ । ରେଲ୍ ରାସ୍ତା ଓ ଗାଡ଼ିର ଯାବତୀୟ ସମ୍ବାଦ ଏଠି ।

ରେଲଯାତ୍ରା ଏ ଦେଶରେ ସବୁଠାରୁ ନିରାପଦ । ଟ୍ରେନ ଚଳେଇବା ଏକ ଘରୋଇ ବ୍ୟବସାୟ । କିନ୍ତୁ ବ୍ୟବସାୟୀ ତା ବ୍ୟବସାୟର ଗୁରୁତ୍ୱ ବୁଝେ, ଚମତ୍କାର ଭାବେ ଦାୟିତ୍ୱ ତୁଲାଇବାର ବ୍ୟବସ୍ଥା କରିଥାଏ ।

‘କେତେବେଳେ ଶୁଅନ୍ତି ? ଡେରି ହୋଇଯାଉଛି ନା, ?’ ମୋତେ ପଚାରୁ ପଚାରୁ ଭର୍ଜିନିଆ ଗାଡ଼ି ଫେରାଇଲା । ବାଟରେ ସେ ମୋତେ ପଚାରିଲା—

‘ତୁମେ ହିନ୍ଦୁ, ପିତୁଳା ପୂଜା କର ।’

‘କେବଳ ପିତୁଳା ନୁହେଁ, ଅସୀମକୁ ନିରାକାରକୁ ମଧ୍ୟ ଆମେ ପୂଜା କରୁ ।’

‘କାଠ ପଥରରେ ଭଗବାନ୍ ଅଛନ୍ତି ?’

‘ଜଗତ୍ ବ୍ରହ୍ମମୟ ।’

‘ପଶୁର ଆତ୍ମା ଅଛି; ଏ ବିଶ୍ୱାସ ଆମେ କରୁନାହିଁ ।’

‘ମଣିଷର ଯଦି ଆତ୍ମା ଅଛି, ପଶୁପକ୍ଷୀର ମଧ୍ୟ ଅଛି ।’

‘ଯିଶୁଖ୍ରୀଷ୍ଟ ମଣିଷ ପରି ଜନ୍ମ ହୋଇଥିଲେ, ତୁମେ ବିଶ୍ୱାସ କର ?’

‘ହଁ, ମାଆ ପେଟରୁ ସେ ଅବଶ୍ୟ ଜନ୍ମ ହୋଇଥିବେ । ଧର୍ମ ଲାଗି ଆମେ ବିଜ୍ଞାନକୁ ବଳି ଦେଇ ପାରିବା ନାହିଁ । ମଣିଷ ମାତ୍ରେ ଜନ୍ମ ହୁଅନ୍ତି ।’

‘ଖ୍ରୀଷ୍ଟ ଦେବତା, ତୁମେ ବିଶ୍ୱାସ କରନାହିଁ ?’

‘ସେ ଆଗେ ମନୁଷ୍ୟ, ପରେ ଦେବତା । ସେ ଶ୍ରେଷ୍ଠ ମନୁଷ୍ୟ, ଦେବତ୍ୱ ଲାଭ କରିଥିଲେ । ଜନ୍ମ ହେଲେ ଦେବତ୍ୱ ହାନି ହୁଏ ନାହିଁ । ଆମ ଦେବତା, ରାମ, କୃଷ୍ଣ ଏମାନେ ମାତୃ ଗର୍ଭରୁ ଜନ୍ମ ହୋଇଥିଲେ । ଅମ୍ବ ଖୋଇ ଫୁଲ ଶୁଙ୍ଘେଇ, ଜନ୍ମ କରିବାର କାହାଣୀ ଅବଶ୍ୟ ଲୋକ-ସ୍ମୃତିରେ ରହିଛି । ମାହାତ୍ମ୍ୟ ଆରୋପ କରିବା ଲାଗି ଭକ୍ତମାନେ ଏମିତି ଗୋଟେ ଗୋଟେ କାହାଣୀ ଉଦ୍ଭାବନ କରିଅନ୍ତି, ଏ ସବୁକୁ ଅନ୍ଧ-ବିଶ୍ୱାସ ନ କରିଲେ ବିଜ୍ଞାନ ଉପରେ ଆମେ ଆସ୍ଥା ହରାଇବା । ତୁମର ଧର୍ମ ଉପରେ ମୋର ବିଶ୍ୱାସ ଥାଇ ପାରେ ନ ଥାଇ ପାରେ । କିନ୍ତୁ ତୁମର ଏ ସାହାଯ୍ୟକାଙ୍କ୍ଷୀ ମନୋଭାବ, ଆପଣାର କଲଭଳି ମେଲାପି କଥାଭାଷା,

ବନ୍ଧୁ ଭଳି ଅଗରେ ମୁଁ ନତମସ୍ତକ । ତୁମେ ବନ୍ଧୁମାନଙ୍କୁ ସାହାଯ୍ୟ କର, ଏହାଠାରୁ ବଡ଼ ଧର୍ମ ଆଉ କଣ ଅଛି ? ଯେ କୌଣସି ଧର୍ମର ଆନୁଷ୍ଠାନିକ ଘଣ୍ଟ ଉପରେ ଅବଶ୍ୟ ମୋର ବିଶ୍ବାସ ନାହିଁ ।

ମୁଁ ଫେରିଲି ବେଳକୁ ମ୍ୟୁନିସ୍‌ପାଲିଟିର ଗାଡ଼ି ଘରଆଡ଼େ କୁହୁଡ଼ି ଛାଡ଼ୁଛି, ମଶା ମାରିବାଲାଗି । ମୋ ପିଲାଦିନର କୁଣ୍ଡା ଧୂଆଁ, ଖୋସାଧୂଆଁ, କଡ଼ାଧୂଆଁ କଥା ମନେ ପଡ଼ିଗଲା—କପଡ଼ା ଆଗି ପୋଡ଼ି-ଥିଲା, ନାକ ରୁନ୍ଧ ହୋଇ ଯାଉଥିଲା; ତା'ର ଭିତରେ ପୁଣି ନିଦ ଲାଗି ଯାଉଥିଲା ।

ଫେରି ଆସି ଟିମ୍‌କୁକ୍‌ଙ୍କ ବୈଠକ ଘରେ ବସିଲି । ତାଙ୍କ ସ୍ତ୍ରୀ, ପୁଅ ଝିଅ ଭାରତ ବିଷୟରେ ନାନା ପ୍ରଶ୍ନ କଲେ; ଆମ ଭୂଗୋଳ, ଇତିହାସ, ସଂସ୍କୃତି ବିଷୟରେ କିଛି ଜାଣନ୍ତି ନାହିଁ କହିଲେ ଚଳେ । ଆଖି ମାଡ଼ି ମାଡ଼ି ପଡ଼ୁଥାଏ । ଦିନସାରା ବୁଲି ବୁଲି କ୍ଲାନ୍ତ । ଶୋଇଲି ବେଳକୁ ରାତି ବାର ।

## ମାର୍କ ଟ୍ୱେନ୍‌ଙ୍କ ସମାଧି—

ମିସିସିପି ଧାରେ ଧାରେ ଯାଇ 'ରିଭର୍ ଭ୍ୟୁ' ପାର୍କରେ ପହଞ୍ଚିଲୁ; ଗାଢ଼ ଜଙ୍ଗଲ, ଉଚ୍ଚାବଚ ଭୂମି, ବଙ୍କା ଡଙ୍କା ରାସ୍ତା, ହଳଦିଆ ଲାଲ୍ ପତ୍ର ତଳେ ବଦଳି ହୋଇ ଝଡ଼ୁଛି, ତା ଉପରେ ବସିଛି ସ୍ୱେଟର୍, ଜଣେ ସାମ୍ବାଦିକ ଗାମ୍ଭୀର୍ଯ୍ୟରେ । ଜର୍ଜୀନ ମାଇଲ୍ ଗଛରେ ଦୌଡ଼ା ଦୌଡ଼ି କରୁଛନ୍ତି କେତୋଟି ଗୁଣ୍ଡୁଚି ମୂଷା । ପାର୍କର ପ୍ରସନ୍ନ ଗମ୍ଭୀର ଶ୍ରୀ ଚୁମ୍ବନ କରୁ କରୁ ଦୃଷ୍ଟି ମୋର ଅଟକିଗଲା ଜାକ୍‌ସନ୍ ହାଇପରେ, ମିସିସିପି ମଝିର ଅରଣ୍ୟ ସଙ୍କୁଳ ଦ୍ୱୀପଟିଏ, ଶାନ୍ତ ଅଜ୍ସ୍ରଗାପସବୁ ପଶି ଯାଇଛି ଗାଢ଼ ନୀଳ ଜଳ ଭିତରକୁ, କୁହୁଡ଼ିର ନୀଳ ଆସ୍ତରଣ, ମେଘମେଦୁର ଆକାଶ, ନୀଳ କାଳିରେ ଅଙ୍କା ହୋଇଛି ଆଉ କୂଳର ଇଲିନଏସ୍ ରାଜ୍ୟ ଯେପରି କି । ନଦୀ ଜଳକୁ ଝୁଙ୍କି ପଡ଼ିଛି ତୀର ବନସ୍ପତିର ପୁଷ୍ପିତ ପଲ୍ଲବିତ ଶାଖା । ଅଦୂରରେ ମାର୍କ ଟ୍ୱେନ୍ ସେତୁ । ମାର୍କ ଟ୍ୱେନ୍‌ଙ୍କ ସମାଧି ସ୍ତମ୍ଭ ରହିଛି ଠିକ୍ ନଦୀ କୂଳରେ । ଗଭୀର ନିର୍ଜନତା ଓ ପ୍ରାକୃତିକ

ସୌନ୍ଦର୍ଯ୍ୟ ସମାଧିକୁ ଦେଇଛି ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । କବି ଲେଖକଙ୍କ ଲାଗି ଉପଯୁକ୍ତ ସ୍ଥାନ; ଜୀବନରେ ଏହି ସ୍ଥାନ ତାଙ୍କ ମନକୁ ଚିର ସ୍ୱପ୍ନମୟ କରି ରଖିଥିଲା । ମୃତ୍ୟୁ ପରେ ତାଙ୍କ ଆତ୍ମା ଦେହ ତ୍ୟାଗ କରିଛି ସତ, କିନ୍ତୁ ଏ ଦୃଶ୍ୟ ତ୍ୟାଗ କରି ପାରି ନ ଥିବ ।

ସମାଧି ସ୍ତମ୍ଭରେ ଖୋଦିତ ହୋଇଛି—ମଣିଷ ଲାଗି ଯେ ବଞ୍ଚିଥିଲେ, ମଣିଷ ଚରିତ୍ର ଯାହାଙ୍କର ଚିର ଆଗ୍ରହ ଥିଲା—ଜନ୍ମ ୧୮୩୫, ମୃତ୍ୟୁ ୧୯୧୦ ।

## ମାର୍କଟ୍ୱେନ୍‌ଙ୍କ ଜୀବନୀ

ମାର୍କଟ୍ୱେନଙ୍କ ଯୋଗୁଁ ହାନିବାଲ୍ ସହର ଜଗତ୍ ବିଖ୍ୟାତ । ଏଇ ସହରର ସେତୁ, ହୋଟେଲ୍, ପଥ, ଗିରିକନ୍ଦର, ଯାଦୁଘର ସବୁଥିରେ ମାର୍କଟ୍ୱେନ୍, ବିଦଗ୍ଧ ମୁଖେ ମୁଖେ ତାଙ୍କ ମନ୍ତ୍ରମାର ବାଣୀ, ଆଖପାଖ ଗ୍ରାମାଞ୍ଚଳରେ ନାନା ଜନଶ୍ରୁତି, କାହାଣୀ, ।

'କାର୍ଡିଫ୍ ହିଲ୍‌ର ମଧ୍ୟଭାଗରେ ତାଙ୍କ ପ୍ରସିଦ୍ଧ ଚରିତ୍ର ଟମସଏର୍ ଓ ହକଲବେରୀ ଫିନ୍‌ଙ୍କର ବ୍ରୋଞ୍ଜ ମୂର୍ତ୍ତି; 'Life on Mississippi'ରେ ଯେଉଁ ଦୃଶ୍ୟର ବର୍ଣ୍ଣନା କରୁ କରୁ ସେ ବିଭୋର ହୋଇଥିଲେ, ତା ମଧ୍ୟରେ ତାଙ୍କ ସମାଧି ରଖାଯାଇଛି । ସେ ସବୁଜ ବନ ଓ ନଦୀ ସ୍ରୋତକୁ ସ୍ଥିର ଦୃଷ୍ଟିରେ ଅନାଇ ରହିଛନ୍ତି ।

ସେତେବେଳକୁ ହାନିବାଲ୍‌ର ଲୋକସଂଖ୍ୟା ଥିଲା ମାତ୍ର ତିନି ହଜାର । ଏ ଅଞ୍ଚଳକୁ ଉପନିବେଶକାରୀମାନେ ଆସିଥିଲେ ବହୁ ବିଳମ୍ବରେ, ମାତ୍ର ୧୮୨୧ ଖ୍ରୀଷ୍ଟାବ୍ଦରେ, ଟ୍ୱେନଙ୍କ ଜନ୍ମର ଅଳ୍ପ କେତେ ଦିନ ଆଗରୁ ମାତ୍ର । ତାଙ୍କ ପିଲାଦିନେ ଏଠି ଦାସ ବ୍ୟବସାୟ ଖୁବ୍ ଚାଲିଥିଲା । ଦାସମାନଙ୍କ ମୁଖରୁ ବହୁ କାହାଣୀ ଶୁଣି ସେ ନିଜ ଗଳ୍ପ ଓ ଉପନ୍ୟାସରେ ବ୍ୟବହାର କରିଥିଲେ । ହକଲବେରୀ ଫିନର ଜିମ୍ ଚରିତ୍ର ସେ କାଳ କାସର ଏକ ରୂପାନ୍ତର ।

ଡାକ୍‌ବାଲରେ ଟେ୍ଵନ୍ ସାମ୍‌କ୍ଲେମେନସ ନାମରେ ପରିଚିତ । ୧୮୩୫ ଖ୍ରୀଷ୍ଟାବ୍ଦ ନଭେମ୍ବର ୩୦ ତାରିଖରେ କ୍ଲେମେନ୍‌ସ ମିସୌରୀ ରାଜ୍ୟର ଫ୍ଲୋରିଡ଼ା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଓରିଅନ ଓ ହେନେରୀ ନାମରେ ଦୁଇଟି ଭାଇଥିଲେ; ଗୋଟିଏ ଭଉଣୀ ଥିଲା; ତା ନାଆଁ ପାମେଲା । ତାଙ୍କ ମାଆଙ୍କ ନାଆଁ ଜେନ ଲାମଟନ କ୍ଲେମେନସ । ଟମସଏର୍‌'ରେ ତାଙ୍କ ମାଆ 'ଅଣ୍ଟ ପୋଲି', ପାମେଲା ଓ ହେନେରି କଜନ୍ ମେରୀ ଓ ସିଡ଼ ରୂପେ ଚିତ୍ରିତ ।

୧୮୪୭ରେ ତାଙ୍କ ପିତାଙ୍କର ମୃତ୍ୟୁ ହେଲା ଓ ତାଙ୍କ ପୋଥିରେ ଡୋରି ବନ୍ଧା ହେଲା । ସେତେବେଳକୁ ତାଙ୍କ ବୟସ ମାତ୍ର ଏଗାର ବର୍ଷ । ସାମ ଗୋଟିଏ ଛାପାଖାନାରେ କାର୍ଯ୍ୟ କରିବାକୁ ବାଧ୍ୟ ହୋଇଥିଲେ । ତାପରେ ସେ ତାଙ୍କ ବଡ଼ ଭାଇ ଓରିଅନ କିଣିଥିବା ଏକ ଛାପାଖାନାରେ ଯାଇ କାମ କଲେ; ଭଲ ମୁଦ୍ରାକର ହିସାବରେ ପ୍ରଶଂସିତ ହେଲେ । କିନ୍ତୁ ତାଙ୍କର ଅସଲ ପ୍ରତିଭା ଲୁଚି ରହିପାରି ନ ଥିଲା ।

ମିସେସ ହୋର୍‌ଙ୍କ ଘରୋଇ ଗାଆଁ ଗୁରୁକୁଳିରେ ଟେ୍ଵନଙ୍କ ବିଦ୍ୟାରମ୍ଭ ହୋଇଥିଲା । ତାପରେ ମି. କ୍ରସଙ୍କ ସ୍କୁଲକୁ ସେ ପଢ଼ିବାକୁ ଗଲେ । ଅତି ଅଳ୍ପ ବୟସରେ ଏହି ସ୍କୁଲରେ ହିଁ ତାଙ୍କ କବିତ୍ୱର ପ୍ରଥମ ସ୍ଫୁରଣ ହୋଇଥିଲା । ଅବଶ୍ୟ ସେଥିଲାଗି ପୁରସ୍କାର ମିଳିଥିଲା ବେତ୍ରାଘାତ । କାରଣ କବିତା ରଚନାର ସର୍ବ ପ୍ରଥମ ସ୍ତରରେ ଫୁଟି ଉଠିଥିଲା ବ୍ୟଙ୍ଗ, ଅବଧାନ 'କ୍ରସ'ଙ୍କ ଚରିତ୍ରକୁ ନେଇ । କବିତ୍ୱର ଏଇ ପୁରସ୍କାର ଆଦ୍ୟ ଜୀବନରେ ପୃଥିବୀର ବହୁ ବଡ଼ ବଡ଼ କବି ପାଇଛନ୍ତି ।

କବିତାଟି ହେଲା—

Cross by name & Cross by nature
Cross jumped over an Irish potato.

ମି. କ୍ରସ୍‌ଙ୍କ ଆଖିରେ ଏ ସିଲଟ ଲେଖା କବିତା ଯେମିତି ପଡ଼ିଲା ସେ କ୍ରୋଧରେ ହତଜ୍ଞାନ ହୋଇ ସାମ୍‌କୁ ନିର୍ମମ ଭାବେ ପ୍ରହାର କରିଥିଲେ ।

ତାପରେ ସେ ଭାଇଙ୍କ ଛାପାଖାନାରୁ ପ୍ରକାଶିତ ଗୋଟିଏ ପତ୍ରିକାରେ ଜଣେ ପ୍ରସିଦ୍ଧ ସମ୍ପାଦକଙ୍କ କାର୍ଟୁନ୍ ଛବି ଓ ନିଜର ଗୋଟିଏ କବିତା ପ୍ରକାଶ କରିଦେଇଥିଲେ । ଫଳରେ ପତ୍ରିକାର କାଟତି ବଢ଼ିଥିଲା । ସେଇ ପତ୍ରିକାର କେତୋଟି କପି ଏବେ ଯାଦୁଘରେ ରଖା ହୋଇଛି । କିନ୍ତୁ ଅର୍ଥାଭାବରୁ ପତ୍ରିକାଟି ବେଶୀ ଦିନ ଚଳିଲା ନାହିଁ । ଓରିଅନ୍ ନିଜ ଘରକୁ ଛାପାଖାନା ଉଠାଇ ଆଣିଲେ । କିନ୍ତୁ ଦିନେ ଗାଈ ପଶି ଟାଇପ୍ ରୋଲର ଖାଇ ଦେବାରୁ ଛାପାଖାନା ବନ୍ଦ ହୋଇଗଲା ।

ଅଠର ବର୍ଷ ବୟସରେ ଟ୍ୱେନ୍ ହାନିବାଲ୍ ଛାଡ଼ିଲେ, କିନ୍ତୁ ତାଙ୍କ ମନରେ ହାନିବାଲ୍ ପରିପୂର୍ଣ୍ଣ ହୋଇ ରହିଥିଲା । ଏହି ନଗରରୁ ବିଦାୟ ନେବା ପରେ ବାଲ୍ୟ ଜୀବନର ଜୀବନ୍ତ ସ୍ମୃତିକୁ ସେ ଉପନ୍ୟାସରେ ରୂପାୟିତ କଲେ ।

ତାଙ୍କ ଉପନ୍ୟାସରେ ହାନିବାଲ୍‌ର ନାମ ସେଣ୍ଟ ପେଟରସ୍‌ବର୍ଗ, ତାଙ୍କ ନାମ ସହିତ ଜଡ଼ିତ କ୍ଷୁଦ୍ର ହୋମହାଲ୍ ଯେଉଁଠି ତାଙ୍କ ପିତାଙ୍କ ହାର୍ଗ ନିର୍ମିତ । ନିକଟରେ ବହୁ ଶାଖାୟିତ ସୁଦୀର୍ଘ ଗିରି କନ୍ଦର; ବହୁଷ୍ଟ୍ରୁ ଲୀଳା ଶୈଳ, ଘନାରଣ୍ୟ ଓ ବିଶାଳବକ୍ଷା ମିସିସିପି, ଶୈଶବାୟୁ ଲୀଳା ମଧ୍ୟରେ ଏ ସବୁର ଦୃଶ୍ୟ ଜୀବନ୍ତ ହୋଇ ଉଠିଛି । କଟନ୍ ଓ ଜଇଲେ ଗଛରେ ଭରା ଜାକ୍‌ସନ୍ ଦ୍ୱୀପ, ପିଲାଙ୍କ ଡକାୟତି ଖେଳ ଖେଳିବାର ଉପଯୁକ୍ତ ସ୍ଥାନ ଏ । ତାଙ୍କ ଉପନ୍ୟାସର ଚରିତ୍ର ଟମ୍ ଓ ବେକି ଏହି ଦୀର୍ଘ ଗିରିକନ୍ଦର ଓ ଘଞ୍ଚ ଅରଣ୍ୟକୁ ପ୍ରୀତିଲୀଳାର ନିବନ୍ଦ ସ୍ଥାନ ରୂପେ ବାଛି ନେଇଥିଲେ । ଏବେ ବି ସେସବୁ ସ୍ଥାନ ସହର ପାଠକଙ୍କ ପକ୍ଷେ ପ୍ରେମାଞ୍ଚକର । ହାନି-ବାଲ୍ ସହର ଏବେ ବହୁ ଗୁଣରେ ବୃଦ୍ଧି ଲାଭ କରିଅଛି । କିନ୍ତୁ ଆଧୁନିକ ଜୀବନର କୋଳାହଳ ସେଇ ମଧୁର ସ୍ମୃତିକୁ ହଜାଇ ପାରିନାହିଁ । ସେ କାଳର ପିଲାଙ୍କ ଦୁଷ୍ଟାମି ହସ, କିଶୋର କିଶୋରୀଙ୍କ ଦୁଃସାହସ, ସ୍ୱପ୍ନ ମନର ସୃଜନଶୀଳ ଲୀଳା ଅଦ୍ୟାପି ଯେପରିକି ସଜୀବ ଲାଗି ରହିଛି । କାରଣ ମାର୍କ ଟ୍ୱେନ ଟମ୍ ସଏର୍ ଓ ହକଲ୍ ବେରୀ ଫିନ୍‌ରେ ସେଇ ସବୁ ମଧୁର ଲୀଳାକୁ ଜଗତରେ ସୁପରିଚିତ ଓ ପ୍ରିୟ କରିଛନ୍ତି ।

ପିଲାଦିନୁ ସେ ବିକଟ ଦାରିଦ୍ର୍ୟର ସମ୍ମୁଖୀନ ହୋଇଥିଲେ, ଶିକ୍ଷା ଲାଭର କୌଣସି ସୁଯୋଗ ତାଙ୍କର ନ ଥିଲା । ସେ ଯେଉଁ ଅବସ୍ଥାରେ ଥିଲେ, ସେଥିରେ ସାଧାରଣତଃ କେହି କିଛି ହୁଅନ୍ତି ନାହିଁ—ମୂଲିଆ ବା ମଜଦୁର୍ ହୋଇ ଜୀବନ ବିତି ଯାଏ । କିନ୍ତୁ ଦୁଃଖ ଟ୍ୱେନ୍‌ଙ୍କୁ ଗଢ଼ୁଥିଲା, ଦାରିଦ୍ର୍ୟ ତାଙ୍କୁ ନିର୍ମାଣ କରୁଥିଲା । ରଣକ୍ଷେତ୍ରରୁ ବାହାରିଲେ ସେ ଜଣେ ବିଜୟୀ ସୈନିକ ରୂପେ, ବାଲ୍ୟ ଜୀବନର ଯାବତୀୟ ଅନୁଭୂତି ହେଲା ତାଙ୍କ ଲେଖାର ଉପାଦାନ, ଉତ୍ତୀର୍ଣ୍ଣ ହେଲେ ସେ ଜଣେ ଶ୍ରେଷ୍ଠ ଲେଖକ ରୂପେ । ସେ ନିଜେ ଟମ୍ ସୟର୍ । ତାଙ୍କ ଜୀବନର ଯାବତୀୟ ପ୍ରତ୍ୟକ୍ଷ ଅନୁଭୂତି ଏହି ଚରିତ୍ରରେ ରୂପାୟିତ ହୋଇଅଛି । ତାଙ୍କ ମାନସୀ ଟମ୍‌ଙ୍କ ପ୍ରଣୟିନୀ ।

‘ଘରଭଞ୍ଜଣୀ’ ସ୍ତ୍ରୀ ଓ ପିଲାମାନଙ୍କ ଅକାଳ ମୃତ୍ୟୁ ଆଦି ବହୁ ଦୁଃଖାବହ ଘଟଣା ତାଙ୍କ ଜୀବନରେ ଘଟିଥିଲା । ଅଶ୍ରୁର ସମୁଦ୍ରରୁ ଜନ୍ମ ନେଇଥିଲା ତାଙ୍କର ହାସ୍ୟରସାତ୍ମକ ବ୍ୟକ୍ତିତ୍ୱ—ସେ ପରାଜୟ ମାନେନା, ବାଧାବିଘ୍ନକୁ ଭ୍ରୂକ୍ଷେପ କରେନା । କାନ୍ଦ ଭିତରେ ହସେ ଓ ହସାଏ ।

ସାମ୍ ହାନିବାଲ୍, ସେଣ୍ଟଲୁଇସ୍, ନିଉୟର୍କ, ଫିଲାଡେଲ୍‌ଫିଆରେ ନିଜ ଭାଗ୍ୟ ଖୋଜି ବୁଲିଥିଲେ । କେତେବେଳେ ମୁଦ୍ରାକର, କେତେବେଳେ ଷ୍ଟିମ୍‌ବୋଟ୍‌ର ପାଇଲଟ୍, କେତେବେଳେ ସୈନିକ, କେତେବେଳେ ସୁବର୍ଣ୍ଣ ଅନୁସନ୍ଧାନକାରୀ, କେତେବେଳେ ସାମ୍ବାଦିକ—ଜୀବନର ବିସ୍ତୃତ କ୍ଷେତ୍ରରୁ ନାନା ମୂଲ୍ୟବାନ୍ ଅନୁଭୂତି ଅର୍ଜନ କରିଥିଲେ । ନିଉୟର୍କ ଓ ଅନ୍ୟାନ୍ୟ ସହରରେ ଥିବା ବେଳେ ସେ ଜଣେ ଲେଖକ ହିସାବରେ ପରିଚିତ ଓ ପ୍ରସିଦ୍ଧ ହେଲେ ।

ହାନିବାଲ୍ ତ୍ୟାଗକରି ଯିବାର ତିରିଶ ବର୍ଷ ପରେ ସେ ପୁଣି ଥରେ ଏହି ସହରକୁ ଆସିଥିଲେ । ‘ହଲିଡେଭିଲ୍’ରେ ଆରୋହଣ କରିଥିଲେ, ପ୍ରତ୍ୟେକ ଗଳି କନ୍ଦି ବୁଲି ଦେଖିଥିଲେ—କଣ ଥିଲା, କଣ ହୋଇଛି । ଯେଉଁମାନଙ୍କୁ ସେ ଭଲଭାବେ ଚିହ୍ନିଥିଲେ, ସେଥି ମଧ୍ୟରୁ ଅଧିକାଂଶ ଏହି ମାଟିର ପୃଥିବୀକୁ ଛାଡ଼ି ଚାଲି ଯାଇଥିଲେ ।

ବାଲ୍ୟକାଳର ବହୁ ଦୁଃଖସ୍ମୃତି ତାଙ୍କର ମନେ ପଡ଼ୁଥିଲା । ଜେଲ୍ ଭିତରର ଜଣେ କଏଦୀ ଥରେ ପାଇପ୍ ଲଗାଇବା ଲାଗି ସାମ୍‌କୁ ଦିଆସିଲି ମାଗିଥିଲା । ସାମ୍ ତା ସାମାନ୍ୟ ପାଣ୍ଠିରୁ ଗନ୍ଧକ ଦିଆସିଲିଟିଏ କିଣି କଏଦୀକୁ ଦେଲା । ସେଇ ଦିନ ଜେଲ୍‌ରେ ନିଆଁ ଲାଗିଲା । କଏଦୀଟି ଝରକାରେ ଡାକ ପକାଇଲା । ସାମ୍ ଦେଖିଲା ବେଳକୁ ତାକୁ ନିଆଁ ପ୍ରାୟ ପାଶ ଘେରି ଗଲାଣି । ଦଣ୍ଡକ ଭିତରେ ସେ ପୋଡ଼ି ପାଉଁଶ ହୋଇଗଲା । ପୁଲିସ୍ ଉପରେ ସେ ବନ୍ଧରେ ସାମ୍‌କୁ ଜିଦ ହେଲା ନାହିଁ । କିନ୍ତୁ ପୁଲିସ୍ ସାମ୍ ଉପରେ ସନ୍ଦେହ କରି ନଥିଲେ । 'Life on the Mississipi' ରେ ତାଙ୍କ ବାଲ୍ୟ ଜୀବନର ବହୁ ସ୍ମୃତି ଜୀବନ୍ତ ହୋଇ ରହିଛି ।

୧୯୧୦, ଅପ୍ରେଲ୍ ଦଶ ତାରିଖରେ ତାଙ୍କର ମୃତ୍ୟୁ ହେଲା । 'ଯାହା କହନ୍ତି ଜଙ୍ଗଲରେ ପାଣି ଦେବାକୁ' ଏବେ ତାଙ୍କ ବଂଶରେ କେହି ଜୀବିତ ନାହାନ୍ତି । ଶେଷ ଶାଖା 'ନିନ' ।୧୯୬୬ ରେ ପ୍ରାଣତ୍ୟାଗ କରିଛନ୍ତି ।

## ମାର୍କଟ୍ୱେନ୍ ଯାଦୁଘର

ଶହେ ବର୍ଷ ତଳର ଏକ ଗୃହରେ ଯାଦୁଘରଟି ନିର୍ମିତ ହୋଇଅଛି, ସେ କାଳର ସ୍ୱାଭାବିକ ବାତାବରଣ ଆଣିବାରେ ଏହା ଅଧିକ ସହାୟକ ହୋଇଛି, ଜଣେ ଧନୀ ବ୍ୟକ୍ତି ଏହା ନିର୍ମାଣ କରି ସହରବାସୀଙ୍କୁ ଦାନ କରିଛନ୍ତି । ସହରବାସୀଙ୍କ ଅନୁରୋଧରେ ଏହି ଧନୀ ବ୍ୟକ୍ତିଙ୍କ ଜାମାତା ଯାଦୁଘର ପରିଚାଳନାରେ ମୁଖ୍ୟ ହୋଇ ଅଛନ୍ତି । ତାଙ୍କ ସହିତ ମୋର ସାକ୍ଷାତ ହୋଇଥିଲା । ସେ ଟ୍ୱେନଙ୍କ ଜୀବନୀ ସମ୍ପର୍କରେ ଖଣ୍ଡିଏ ପାମ୍ପଲେଟ ମୋତେ ଉପହାର ଦେଇଥିଲେ ଓ ଭ୍ରମଣ କାହାଣୀ ପ୍ରକାଶିତ ହେଲେ ଖଣ୍ଡିଏ ଯାଦୁ ଘରକୁ ପଠାଇବା ଲାଗି ଅନୁରୋଧ କରିଥିଲେ ।

ଯାଦୁଘରଟି ଛୋଟ, ଭିଡ଼ ବେଶୀ, ଦେଖିବା ଲାଗି ଟିକେଟ୍ କିଣିବାକୁ ପଡ଼େ ନାହିଁ । ସେ ପଢ଼ିଥିବା 'Bunyan's Pilgrim's Progress', ଚମଡ଼ା ମଲାଟ ବନ୍ଧା ବାଇବଲ୍, ଗ୍ରୀକ୍ ଗ୍ରାମାର, ଗୁଡ୍‌ସ୍ ବୁକ୍ ଅଫ୍ ନେଚର୍, ମାର୍କଟ୍ୱେନ୍‌ଙ୍କ ମୁଣ୍ଡର ପାଚିଲା ବାଳ

(୧୮୯୫, ତାଙ୍କ ଘରବୋଡ଼ୁ ଏହା ଉମାଡ ରଖିଥିଲେ,) ଟେ୍ୱନଙ୍କୁ ଉପହାର ଦିଆ ହୋଇଥିବା ଘଡ଼ି (ଡିସେମ୍ବର, ୧୮୭୮), ତାଙ୍କର କେତେକ ଛବି ଓ ଫଟୋ, ତାଙ୍କ ସମ୍ପର୍କରେ ଲିଖିତ ଆଲୋଚନା ପୁସ୍ତକ, ତାଙ୍କର ପାଣ୍ଡୁଲିପି ଓ ଚିଠିପତ୍ର, ତାଙ୍କ ଉପନ୍ୟାସ ଅବଲମ୍ବନରେ ଲିଖିତ ନାଟକ ଓ ତାର କୃଷ୍ଣ ଅଭିନେତା ହଲ୍‌ବ୍ରୁକ୍‌ଙ୍କ ଫଟୋ, ତାଙ୍କ ପୁସ୍ତକ ସମ୍ପର୍କୀୟ କେତେକ ବିଜ୍ଞାପନର ନମୁନା, ସେ ବ୍ୟବହାର କରୁଥିବା ଗୋଟିଏ ବୃହତ୍ ଅର୍କେଷ୍ଟ୍ରା (ତାଙ୍କ ନିର୍ଦ୍ଦେଶରେ ୧୯୦୪ରେ ମେହୋଗାନି କାଠରେ ନିର୍ମିତ; ଏଥିରେ ୨୪ଟି ଭିନ୍ନ ଭିନ୍ନ ସ୍ୱରସେଟ୍ ଅଛି, ଏହା ଏବେ ବଜା ଯାଇ ପାରେ; ତାଙ୍କ ଜୀବନୀ ଲେଖକ ପେନ୍ ଏହାକୁ ଯାଦୁ ଘରକୁ ଉପହାର ଦେଇଛନ୍ତି—୮ଫୁଟ୍ ଉଚ; ୭ଫୁଟ୍ ପ୍ରଶସ୍ତ, ତିନିଫୁଟ ଗଭୀର,) ଟେ୍ୱନ୍ ଯେଉଁ ଖାଦ୍ୟ ଖାଉଥିଲେ ତାର ଏକ ମେନୁ' ଦେଖିଲି ।

୧୮୬୭ରେ ଟେ୍ୱନ୍‌ଙ୍କ ହାନିବାଲ୍ ତ୍ୟାଗ ସମୟର ଫଟୋ, ତାଙ୍କର ବକ୍ତୃତାବଳୀ, ତାଙ୍କ ଘରର କାରୁକାର୍ଯ୍ୟଭରା କାଠବାକ୍ସ, ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ତାଙ୍କର ଡକ୍ଟରେଟ୍ ଡିଗ୍ରୀଲାଭ, ସେତେବେଳର ଅଭିନନ୍ଦନ ପତ୍ର, ତାଙ୍କର ହୁଡ୍ ଓ ଗାଉନ୍, ଦେଖି ତାଙ୍କର ଗୋଟିଏ ବ୍ରୋଞ୍ଜମୂର୍ତ୍ତି ପାଖେ ଛିଡ଼ା ହେଲି । ସେଥିରେ ଖୋଦିତ ହୋଇଛି ପଦେ କବିତା—

Always do right
This will gratify
Some people and astonish the rest

ଟେ୍ୱନ୍ ଯେଉଁ ହାତରେ ଲେଖୁଥିଲେ ତାର ଏକ ବ୍ରୋଞ୍ଜ ଛାଞ୍ଚ ଦେଖିଲି । ତାଙ୍କ ସମୟର ରେଳଗାଡ଼ି, ଲଣ୍ଠନ, 'personal Recollections of Joan of Arc'ର ପାଣ୍ଡୁଲିପି, ତାଙ୍କ ଚଷମା; ଧୂ-ପାତ୍ର, ନିଆଁ ପୋହ୍ଲବା ଚୁଲି, ବ୍ୟବହୃତ ଶଯ୍ୟା—ଯେଉଁ ଟେବୁଲ୍ ଉପରେ ଟେ୍ୱନ୍ The Adventures of Tomsaw ୯ ଲେଖିଥିଲେ,

ସବୁ ସହରରେ ଦୋ'କଣ୍ଟ୍ରୁ । ଗୋଟିଏ ସ୍ଥାନରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି—

ନେଲ୍ସନ୍‌ଙ୍କ ଜୀବନରୁ ଏହି ଶିକ୍ଷା ମିଳେ ଯେ
ଦାରିଦ୍ର୍ୟ ଉନ୍ନତିର ବାଧକ ନୁହେଁ,
ପରିଶ୍ରମ କଲେ, ସଦୁଦ୍ଦେଶ୍ୟ ଥିଲେ
ଯେ କେହି ତାଙ୍କ ସ୍ତରକୁ ଯାଇ ପାରିବ ।

ତାଙ୍କ ବ୍ୟବହୃତ ଟାଇପ୍ ରାଇଟର୍ ତଳେ ନେଲ୍ସନ୍‌ଙ୍କର ଖଣ୍ଡେ ପତ୍ର (ଟାଇପ୍ ରାଇଟର୍ ନିର୍ମାଣକାରୀଙ୍କ ନିକଟକୁ)—

ମୁଁ ତୁମ ଟାଇପ୍ ରାଇଟର୍ ଆଉ ବ୍ୟବହାର କରୁନାହିଁ । ଏ ପର୍ଯ୍ୟନ୍ତ ଏପରି ଖଣ୍ଡିଏ ପତ୍ର ପାଇନାହିଁ, ଯହିଁରେ ନାହିଁ ଶୀଘ୍ର ଉତ୍ତର ଦେବାର ଅନୁରୋଧ; ଟାଇପ୍ ରାଇଟର୍ କେମିତି ବନ୍ଧୁମାନେ ଜାଣିବାକୁ ଚାହିଁଛନ୍ତି । ମୁଁ ପତ୍ର ଲେଖିବାକୁ ଭଲ ପାଏ ନାହିଁ । ତେଣୁ ତୁମ ଟାଇପ୍ ଯନ୍ତ୍ର ଅଉ କୌଣସି କାର୍ଯ୍ୟରେ ଲଗୁନାହିଁ ।

ଏହି ପତ୍ର ପଢ଼ି ବାଲେଶ୍ୱରକୁ ଫକୀରମୋହନ ଛାପାଖାନା ଆଣିବା କଥା ମନେ ପଡ଼ିଗଲା ।

ତାଂକ କାଳର ଗୁଡ଼ିଏ ଉଚ୍ଚ ସାଇକେଲ୍‌ଟିଏ ଦେଖିଲି, (ଲମ୍ବାସିଟ, ସ୍ଲେଟ ହ୍ୱାଣ୍ଡଲ୍' 'ଗୋଟାଳିଆ ଟାୟାର;) ନେଲ୍ସନ୍ ତାଂକ ବାଡ଼ ଆଡ଼େ ପିଲାଦିନେ ସାଇକେଲ ଶିଖୁଥିଲେ—କେହି ଦେଖିବ ବୋଲି, ଜାଣେ କାହା ଦେହରେ ଧକ୍‌କା ଲାଗିବ ବୋଲି । କିନ୍ତୁ ତାଂକ କୁକୁର ଏ ମଜ୍ଜା ଦେଖିବାକୁ ଅସି ବାରମ୍ବାର ଧକ୍‌କା ଖାଉଥିଲା । କାରଣ କୁକୁରର କୌତୁକ ଉତ୍ପାଦନ ଲାଗି ଗାଆଁରେ ଅନ୍ୟ କିଛି ନ ଥିଲା । ସେ କାଳ ସାଇକେଲ ବିଷୟରେ ନେଲ୍ସନ୍ ଲେଖିଛନ୍ତି—

Get a bicycle
You will not regret if you live

ଜେମ୍ସ୍ ସ୍ପାର୍ ନାମକ ଜଣେ ଧନୀ ବ୍ୟକ୍ତିଙ୍କୁ ହାନିବାଲ୍ ସହର ରାସ୍ତା ମଝିରେ ଲେଖକଙ୍କ ସାମ୍ନାରେ ହତ୍ୟା କରା ଯାଇଥିଲା । ଲେଖକ ହକଲ୍ ବେରୀ ଫିନ୍‌ର ସର୍‌କଶ ଓ ମର୍ଡ଼ର ବର୍ଣ୍ଣନାରେ ଏହାକୁ ହିଁ ରୂପାୟିତ କରିଛନ୍ତି । ସ୍ପାରଙ୍କ ହତ୍ୟାରେ ବ୍ୟବହୃତ ପିସ୍ତଲଟି ମ୍ୟୁଜିଅମ୍‌ରେ ପ୍ରଦର୍ଶିତ ହୋଇଛି । ତାଙ୍କ ସମୟର ବଳଦହଳ, ଜୁଆଳି, ବଳଦଙ୍କ ଗୋଡ଼ର ନାଲ, ପିଲାଙ୍କ ଖେଳ ଶଗଡ଼ ଦେଖିଲେ ବୁଝାଯାଏ —ଆମେରିକା କିପରି ଦିନେ ଆମ ଦେଶ ପରି ଥିଲା ।

ଟ୍ୱେନ୍‌ଙ୍କ ବାଲ୍ୟଶିକ୍ଷକ ହୋର୍‌ଙ୍କୁ ଏଇ ଯାଦୁଘରେ ସମ୍ମାନ ପ୍ରଦର୍ଶନ କରା ହୋଇଛି । ତାଙ୍କ ପରିବାରର ଫଟୋ ଓ କେତେକ ବ୍ୟବହାର୍ଯ୍ୟ ଦ୍ରବ୍ୟ ପ୍ରଦର୍ଶିତ ହୋଇଛି । ହୋର ଗେଟିସ୍‌ବର୍ଗ ଯୁଦ୍ଧରେ ନିହତ ହୋଇଥିଲେ । ହୋର୍‌ଙ୍କ ସ୍କୁଲରେ ବ୍ୟବହୃତ ଡେସ୍କ ଠିକ୍ ଆମ ଘରଘାସ୍ତ ଡେସ୍କ ପରି !

ପ୍ରତିଭାଶାଳୀ ଉତ୍ତମ ବ୍ୟକ୍ତି ଅଳ୍ପବୁଦ୍ଧିଙ୍କ ଦ୍ୱାରା ନଷ୍ଟ, ଦଳିତ ହୁଏ । ବୁଦ୍ଧିର ଦୀପ୍ତ ପ୍ରଦର୍ଶନୀ ଯେପରିକି ଏକ ଅପରାଧ । ଦୁଃଖର ବିଷୟ ହେଲେ ବି ଏହା ଯୁଗେ ଯୁଗେ ଏକ ସାଧାରଣ ସତ୍ୟ । ଭଲଗୁଣର ପରିଣାମ ଦେଖାଇ ସେଥିଲାଗି ଟ୍ୱେନ୍ ଉପଦେଶ ଦେଇଛନ୍ତି—

Be good be good be always good
And now and then be clever
But do not you ever be too good
Nor ever be too clever
For each as be too awful good
The awful lonely are

ଯାଦୁଘରକୁ ଲାଗି ମାର୍କ୍‌ଟ୍ୱେନ୍‌ଙ୍କ ଘର—ଛୋଟ ହୋମହଲ କୋଠା-ଟିଏ, ଏଥିରେ ତାଙ୍କ ଶୋଇବା ଖଟ, କାନ୍ଥ ଦର୍ପଣ ଓ ଡ୍ରେସିଂ ଟେବୁଲ୍ ରହିଛି । ଘର ଉପରେ ଆଇଭିଲତା ମାଡ଼ିଛି । ଶରତ୍‌କାଳ ଯୋଗୁଁ ପତ୍ର ସବୁ ନାନା ବର୍ଣ୍ଣରେ ରଙ୍ଗୀନ । ଘରପାଖ ଛୋଟ ବଗିଚାରେ ବଡ଼ ବଡ଼

ସୂର୍ଯ୍ୟମୁଖୀ, ଈଶ୍ବରଜଟା, ଗୋଲାପ, ଓ କେନିଆଁ ଫୁଟିଛି । ଘର ସାମ୍ନାରେ ଗୋଟିଏ ପୁସ୍ତକ ଦୋକାନ, ଏଥିରେ ଟ୍ୱେନ୍‌ଙ୍କ ଜୀବନୀ, ରଚନାବଳୀ, ଟ୍ୱେନ୍ ସାହିତ୍ୟର ନାନା ସମାଲୋଚନା ପୁସ୍ତକ କ୍ରୟ କରିବାକୁ ମିଳେ । ମୁଁ ପୁସ୍ତକ ସବୁ ଦେଖୁଛି । ଏତିକିବେଳେ ଭଳିନିଆଁର ବୃଦ୍ଧୀ ମାଆ ଆସି ମାର୍କଟ୍ୱେନ୍‌ଙ୍କ ଫଟୋଗୁଚ୍ଛ ଉପହାର ଦେଲେ । ମି. ଟିଲ୍ଲିଟ୍ 'Tom Sawyer' ଉପନ୍ୟାସ ଖଣ୍ଡି ଉପହାର ଦେଲେ ଓ ଟ୍ୱେନ୍‌ଙ୍କ ଘର ସାମ୍ନାରେ ମୋର କେତୋଟି ଫଟୋ ନେଲେ । ସେତେବେଳକୁ ମୁଁ ଜଣେ ଭାରତୀୟ କବି ବୋଲି ସମ୍ବାଦ ପ୍ରଚାରିତ ହୋଇଥାଏ । ଲୁଇସ୍ ସ୍ଥାନୀୟ ସମ୍ବାଦ ପତ୍ରରେ ପ୍ରକାଶ କରିବା ଲାଗି ମୋର ପୂର୍ଣ୍ଣ ପରିଚୟ ସଂଗ୍ରହ କରିନେଇ ଥିଲେ ।

ଟିମ୍ ବ୍ରୁକ୍ସ, ଲୁଇସ୍, ଟିଲ୍ଲିଟ୍, ଭଳିନିଆଁ ମୋତେ ବସ୍‌ଷ୍ଟେସନରେ ଛାଡ଼ିଦେଇ ଗଲେ । ଟିଲ୍ଲିଟ୍ ମୋ ଲାଗି ଟିକେଟ୍ କରି ଆଣିଲେ, ହାତରୁ ପଇସା ଦେଇ । ତାପରେ ଅପରେଟରଙ୍କ ସଙ୍ଗେ ପରିଚିତ କରେଇ ଦେଲେ । ଅପରେଟର ସମ୍ମାନରେ ମୋନେ ଆଗ ସିଟ୍‌ଟି ଦେଲେ । ରାସ୍ତାଯାକ ସେ ହେଲେ ମୋର ଗାଇଡ଼ —କେବଳ ରାସ୍ତା ନୁହେଁ, ସ୍ଥାନୀୟ ପ୍ରାଚୀନ କୀର୍ତ୍ତି ଓ ସାଂସ୍କୃତିକ ମହତ୍ତ୍ୱର ସମ୍ବାଦ ସେ ରଖନ୍ତି ।

## ଆଦ୍ୟ ଶରତର ସକାଳଟିଏ

ଅଳ୍ପ ଶୀତଳ ପବନ; ଜକ ଜକ ହୋଇଥାଏ ହ୍ରାର ପ୍ରାନ୍ତର ସକାଳ, କାକର ଓ ସୁନା ଖରାରେ ଗାଧୋଇ । ରବିର ସ୍ୱର ଏବେ ବି ଲାଗିରହିଛି ଝିଙ୍କାରି କଣ୍ଠରେ, ଯଦି ବା ବୈତାଳିକ ପକ୍ଷୀମାନଙ୍କର ବନ୍ଦନା ଗାଇବାର ବେଳ ଏ । ପପଲର୍ ପତ୍ରଝଡ଼ା ହେଉଛି—ଗାଢ଼ ପାଟ ଆସୁଛି ଅନ୍ୟ ଗଛର ପତ୍ରସବୁ, ଦୂରରୁ ଦିଶୁଛି ରଙ୍ଗ ମୋଟର କଣଳସ୍ତ ଯେପରିକି ସ୍ୱପ୍ନ ରାଜ୍ୟର ! ପ୍ରସ୍ତୁତ ହୋଇଛନ୍ତି ବା ହେଉଛନ୍ତି; କିଛି ଦିନ ପରେ ଗୋଟିକ ପରେ ଗୋଟିଏ ଗଛ ପତ୍ରଝଡ଼ା ହେବେ— ଦିଶିବ କେବଳ ତରୁର କଙ୍କାଳ, ବରଫ ମରୁଭୂମିରେ ।

ଏକେ ବଡବେଲ ରାସ୍ତାରେ ଚାଲିଛୁ ନିର୍ଜନ । ଦେଖା ହେଲା ଗୋଟିଏ ସାତ ଆଠ ବର୍ଷର ପିଲା ସଙ୍ଗେ ।

'ତୁମ ନାଆଁ କଣ ?'
'ଲେଥର୍'
'ହାତରେ କଣ ?'
'ସେ ଦେଖାଇଲା ନାହିଁ, କିନ୍ତୁ ମୁଁ ଦେଖିପାରିଲି—ଚୁରୁଟ୍ !'
'ଦିଆସିଲି ଅଛି ?'
'କଣ କରିବ ?'
'ଚୁରୁଟ୍ ଲଗାଇବି ।'
'ଏତେ ଛୋଟ ପିଲା, ଚୁରୁଟ୍ ଖାଇବ ?'
'ଡାଡି ଦେଇଛନ୍ତି ।'
'ଦେଇଛନ୍ତି ? ପଚାରିବି ଡାଡିଙ୍କୁ ?'
'ପଚାର; କିନ୍ତୁ ସେ ନାହାନ୍ତି ।'

'ସିଗାରେଟ୍ ଖାଏନାହିଁ, ମୋ ପାଖେ ଦିଆସିଲି ନାହିଁ । ତୁମ ମୁଣ୍ଡ ବୁଲାଇବ, ଏସବୁ ଖାଅ ନାହିଁ ।'

'ଡାଡି କେମିତି ଖାଉଛନ୍ତି ?'

ମତେ ଏ କଥା ପଚାରୁ ପଚାରୁ ଲେଥର୍ ଚୁରୁଟ୍‌ଟି ଟିକି ଟିକି କରି ଛିଣ୍ଡାଇ ଫିଙ୍ଗି ଦେଲା, ମୁଖରେ ତାର ବିରକ୍ତିର ଭାବ । ଉଦ୍ଦେଶ୍ୟ ସଫଳ ହୋଇଛି ।

ଏସବୁ ଦେଖି ଭାବୁଛି—ଲେଥର୍‌ର ଡାଡିକି କଣ ପଚାରିବି ?

## କୁକୁର ଗେଲ

କୋଉ କଥା କହୁ କହୁ କୋଉଠି ଯାଇ ମଣିଷ ପହଞ୍ଚେ—ତିକ୍ଲି ଶାଳରୁ ଢେଙ୍କାନାଳ ! ସେତେବେଳକୁ ମୂଳ କଥା ହୁଏତ ମନେ ନ ଥାଏ । କୋଉ କଥା ପଡ଼ୁ ପଡ଼ୁ ପହଞ୍ଚିଲୁ ଏ ଦେଶର କୁକୁରଙ୍କ ପାଖେ,

ପୁଣି କୁକୁରଚୋରଙ୍କ ପାଖେ ନେଇଜାଣି, ଉଦୟ କହିଲ—ଚୋରି କରି ଆଣିବ, ହଜିଲା ଜିନିଷ ଖୋଜି ଦେଇ ମାଲିକଙ୍କଠାରୁ ପୁରସ୍କାର ପାଇବ, ଏଇ ଆଶାରେ ଜଣେ କୁକୁର ଚୋରି କରୁଥିଲ । ଯାହାର ହଜେ, ସେ ସମ୍ବାଦପତ୍ରରେ ବିଜ୍ଞାପନ ଦିଏ; ଚୋର ମାଲିକ ସହିତ ଚିଠିପତ୍ର କାରବାର କରେ—ଖୋଜି ଆଣି ଦେଲେ ସେ କେତେ ପାଇବ । ପରିମାଣ ସ୍ଥିର ହେଲା ପରେ ସେ ମାଲିକକୁ କୁକୁର ଦେଇ ତାର ପ୍ରାପ୍ୟ ଆଣେ ।

କିନ୍ତୁ ସବୁବେଳ ସମାନ ଯାଏ ନାହିଁ । ଯେଉଁମାନଙ୍କର କୁକୁର ହଜିଲ ସେମାନେ ଆଜି ବିଜ୍ଞାପନ ଦେଲେ ନାହିଁ; କୁକୁର ତ ଗଲା; ବିଜ୍ଞାପନରେ ଖର୍ଚ୍ଚ କରିବେ କାହିଁକି ? ଚୋରକୁ ପୁରସ୍କାର ଦେବେ କାହିଁକି ? ସେତିକି ଟଙ୍କାରେ ହୁଏତ ନୂଆ କୁକୁର କିଣା ଯାଇ ପାରିବ ।

ଗୋଟିଏ ଗୋଟିଏ ରଖୁ ରଖୁ ଏମିତି ବହୁତ କୁକୁର ଚୋର ପାଖେ ରହିଗଲେ । ସେମାନଙ୍କୁ ଖାଇବାକୁ ଦେବ କିଏ ? ହାତରେ ଧନ କାହିଁ ? ଖାଇବାକୁ ନ ପାଇ କୁକୁରଙ୍କ କଣ୍ଠ ଝୁଲିଲା । ବିକଳ ବୋବାଳିରେ ପଡ଼ୋଶୀମାନଙ୍କ ହୃଦୟ ତରଳିଲା । ପୁଲିସକୁ ସମ୍ବାଦ ଗଲା । ଜୀବଜନ୍ତୁଙ୍କ ପ୍ରତି ନିଷ୍ଠୁର ଆଚରଣ କରିଥିବା ଅପରାଧରେ ଚୋର ଆରେଷ୍ଟ ହେଲ ।

ମୁଁ କହିଲି—ଭାରତବର୍ଷରେ କୁକୁରଚୋରି ସମ୍ବାଦ ବିଶେଷ ଶୁଣି ନାହିଁ, ସେଠି ମଣିଷ ଚୋର ବେଶୀ । ଛୋଟ ଛୋଟ ପିଲାଙ୍କୁ ଭୁଲାଇ ନେଇଯାଇ ଚୋର ବିକୃତ ବିକଳାଙ୍ଗ କରି ଦିଅନ୍ତି—କାହାର ହାତ ଭାଙ୍ଗି ଦିଆ ହୁଏ; ଆଖି ଫୁଟାଇ ଦିଆହୁଏ, ଜିଭ କାଟି ଦିଆ ହୁଏ, ଗମ୍ଭୁଡ଼ି ଗାମ୍ଭୁଡ଼ି ମୁଖ ବିକୃତ କରା ହୁଏ—ତାପରେ ତାକୁ ରାସ୍ତା ପାଖରେ ବସାଇ ଦିଆ ହୁଏ; ସେ ହୁଏ ଆଜୀବନ ଭିକାରୀ । ଲୋକେ ବିକଳ ପାଇ ଦିଅନ୍ତି । ଯୋଉଠି ମଣିଷ ପ୍ରତି ଏ ଆଚରଣ ସେଠି ଜୀବଜନ୍ତୁଙ୍କ କଥା ପଚାରେ କିଏ ? ଗୋ ନାମକୁ ମାତା, କିନ୍ତୁ ଦେଖିଲ ବେଳକୁ ହାଡ଼ ଗୁଣିଗଣ୍ଡି ! ଠେଙ୍ଗ ଉପରେ କୁଆ ହାଣୁଥିବେ ! କୁକୁର ତ ସବୁଠୁଁ କଷ୍ଟୀ; ହାଡ଼

ଉପରେ ଚମଟି ମାତ୍ର ଥାଏ । କାହାର ବି ତା ନାହିଁ—କଲବଲ କରୁଥାନ୍ତି ମାଛ—ତା ପଛେ ପଛେ ବୁଲୁଥାଏ ମାଛର ପଟୁଆର ।

ଭଗ୍ନ କଳ୍ପନା—ଏ ଦେଶରେ କଣ ନିଷ୍ଠୁର ଆଚରଣ ଅଳ୍ପ ? ବଡ଼ ବଡ଼ ସହର ଜଙ୍ଗଲ ପରି । ସେଠି ନାନା ଗୋପନ ବ୍ୟବସାୟ ଚାଲେ; ଚୋର ବଡ଼ ବଡ଼ ଝିଅଙ୍କୁ ଚାକିରି ବା ଅନ୍ୟ କିଛି ପ୍ରଲୋଭନ ଦେଖାଇ ଶିଖାଇ ଘେନି ଯାନ୍ତି । ବେଶ୍ୟାବୃତ୍ତି କରିବାକୁ ବାଧ୍ୟ ହୁଅନ୍ତି ସେମାନେ । ଏଇ ଚୋରର କବଳରୁ ଖସି ଆସିବାର ଉପାୟ ନାହିଁ ।

## ବିଜ୍ଞାପନ ଓ ସ୍କାଣ୍ଡିନେଭିଆର ନାଚ—

ପୃଥିବୀର ବଡ଼ ବ୍ୟବସାୟୀ ଜାତି ଇଂରେଜ; ତାଙ୍କ ଠେଲ ଆମେରିକାନ୍ । ଆମେରିକାର ଯେ କୌଣସି ସହରରେ ବ୍ୟବସାୟ ବୁଦ୍ଧିର କ୍ରୀଡ଼ା ଅନୁଭବ କରି ହୁଏ । ବିପୁଳ ପ୍ରାକୃତିକ ସମ୍ପଦ ଓ ବିସ୍ତୃତ ଭୂମିର ପ୍ରଚୁର ଉତ୍ପାଦନ ବ୍ୟତୀତ ଚମତ୍କାର ବ୍ୟବସାୟ ବୁଦ୍ଧି ହିଁ ଆମେରିକାନ୍‌ଙ୍କୁ ବଡ଼ କରିଛି । ମୋ ପରି ଅବ୍ୟବସାୟୀ ପକ୍ଷରେ ସେ ସବୁର ସୂତ୍ର ବୁଝିବା ଦୁଷ୍କର ।

ସଙ୍ଗୀତ ଶୁଣି ପାର ବା ନ ପାର; ନୃତ୍ୟ ଦେଖିବାର ଅବକାଶ ଘଟିପାରେ ନ ପାରେ; କିନ୍ତୁ ବିଜ୍ଞାପନ କବଳରୁ ତ୍ରାହି ନାହିଁ; ତାର ଡିଣ୍ଡିମ ଚତୁର୍ଦ୍ଦିଗରେ ବାଜୁଛି । ନ ଶୁଣିଲେ ସେ ଜବରଦସ୍ତି କାନରେ ପଶିବ, ନ ଦେଖି ଉପାୟ ନାହିଁ; ସବୁ ଭିତରେ ସେ ନିଜକୁ ଜାହିର୍ କରୁଛି, ଡ଼ିଜାଇନ୍, ଛବି ବା ଅଲୌକିକ ନୃତ୍ୟରେ । ଗୋଟିଏ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ର ବିଜ୍ଞାପନ ଦୈନିକ 'ପୋଷ୍ଟ ଡେସ୍‌ପାଚ'ରେ ବାହାରିଛି—ନାନା ମନୋରଞ୍ଜକ କାର୍ଯ୍ୟକ୍ରମ—ନୂତନ ଫେସନ୍ ଦେଖା, ସ୍ୱେଡ଼ିସ୍ ଲୋକ ନୃତ୍ୟ, ସ୍କାଣ୍ଡିନେଭିଆର ରନ୍ଧନ ପ୍ରଦର୍ଶନୀ, ସ୍କାଣ୍ଡିନେଭିଆର ଲୋକନୃତ୍ୟ, ସପ୍ତଦଶ ଶତାବ୍ଦୀରେ ବୁଡ଼ିଯାଇଥିବା ସୁଇଡେନ୍‌ର ଯୁଦ୍ଧଜାହାଜ 'ଭାସା'ର ଉଦ୍ଧାର କାହାଣୀ, ସ୍ୱେଡ଼ିସ୍ ସିନେମା ପ୍ରଦର୍ଶନୀ,

ହଲଣ୍ଡ ଯୁବଙ୍କ ସାଣ୍ଡଷ୍ଟ୍ରିଟ୍ ଥିଆଟର, ଡେନମାର୍କ—ଭ୍ରମଣ ପ୍ରଦର୍ଶନୀ, ଟଲଷ୍ଟୟଙ୍କ ଆନାକେରେନିନା ମୋଭି । ସ୍ୱେଡ଼ସ୍ ଲୋକ ଗୀତ, ସ୍କାଣ୍ଡିନେଭିଆ ନର୍ତ୍ତକ ଓ ନର୍ତ୍ତକୀଙ୍କ ଲୋକନୃତ୍ୟ ଓ ଲୋକଗୀତ ପରିବେଷଣ, 'କାମିଲେ' 'କ୍ୟୁନ କ୍ରାଇଷ୍ଟିନା' ମୋଭି, ହାନ୍ସ ଆଣ୍ଡରସନ୍‌ଙ୍କ 'ମୋ ଜୀବନର କାହାଣୀ' ଇତ୍ୟାଦି ।

ବଙ୍ଗାଳନରେ ଆକୃଷ୍ଟ ହୋଇ ସ୍କାଣ୍ଡିନେଭିଆର ଲୋକନୃତ୍ୟ ଦେଖିଗଲି । 'ଫେମସ୍ ବାର୍', ଏକା ସେଣ୍ଟ ଲୁଇସ୍ ସହରରେ ଏହାର ପାଞ୍ଚୋଟି ଶାଖା ରହିଅଛି, ଏହି ଦୋକାନରେ ବହୁ ମହଲ—ପ୍ଲାଷ୍ଟିକ୍ ନାଗ୍ରି ପ୍ରାସାଦର ସ୍ତରେ ସ୍ତରେ ନାନା ବେଶଭୂଷଣ ପିନ୍ଧି ଠିଆ ହୋଇଛନ୍ତି । କେଉଁଠି ମୋଜା ପିନ୍ଧା ପଦ; ଗ୍ଲୋଭସ୍ ପିନ୍ଧା ହସ୍ତ, କୋଟ୍‌ପିନ୍ଧା ଦେହ । ଆଲୋକ ସଜ୍ଜାରେ ଦୋକାନଟି ଅପୂର୍ବ ଔଜ୍ଜ୍ୱଲ୍ୟ ଓ ଶ୍ରୀ ମଣ୍ଡିତ ହୋଇଅଛି ।

ଏସ୍କାଲେଟରରେ ତୃତୀୟ ମହଲକୁ ଉଠିଲୁ । କେତୋଟି ଚୌକି ଧାଡ଼ି ହୋଇଛି, ଦର୍ଶକଙ୍କ ଲାଗି—ଯାହାପଛେ ଦୋକାନର ଦ୍ରବ୍ୟ ସମ୍ଭାର । ଧାଡ଼ି ଧାଡ଼ି ଟଙ୍ଗା ହୋଇଥିବା କୋଟ୍‌ସବୁ ଘୁଞ୍ଚାଇ ଦିଆ ହେଲା । ସେଇଠି ଆରମ୍ଭ ହେଲା ସପ୍ତଦଶ ଶତାବ୍ଦୀର ଲୋକନୃତ୍ୟ—ବାଦ୍ୟ କେବଳ ବେହେଲା, ଜୋତା ପିନ୍ଧି ସ୍ତ୍ରୀ ପୁରୁଷ ନୃତ୍ୟ କଲେ—ନାରୀ ବକ୍ଷର ଅଳଙ୍କାର ଝୁଣ୍ଟୁ ଝୁଣ୍ଟୁ ଶବ୍ଦ କରୁଥାଏ, ନାଚିବାର ଗୋଟାଏ ବୟସ ଅଛି, ଏହା ସ୍ୱୀକାର କରିବାକୁ ହେବ । ବୟସ୍କ ବୟସ୍କାମାନେ ସାହସି ଯାଉଥାନ୍ତି; ନୃତ୍ୟ ବେତାଳିଆ ହେଉ ନ ଥାଏ, କିନ୍ତୁ ଅଦ୍ଭୁତର ଦିଶୁଥାଏ; ଭଙ୍ଗୀ ଅଭିନବ, କିନ୍ତୁ ମନୋରଞ୍ଜକ ହେଉ ନ ଥାଏ । ଅସଲ କଥା—ଏମାନେ ଏକ ବ୍ୟବସାୟୀ ଦଳ ନୁହନ୍ତି; ସ୍କାଣ୍ଡିନେଭିଆର ବ୍ୟୋମଯାନ ବିଭାଗରେ କାମ କରନ୍ତି; ନୃତ୍ୟ ଏମାନଙ୍କର ଏକ ସାମୟିକ ବିନୋଦନ; ନୃତ୍ୟ ଆସୁରେ ଆମେରିକା ଭ୍ରମଣ କରିବା ଏମାନଙ୍କର ଉଦ୍ଦେଶ୍ୟ । ଦୋକାନର ବିଜ୍ଞାପନ ଓ ଗରାଖଙ୍କ ଆକର୍ଷଣ ଲାଗି ଦୋକାନୀମାନେ କି ବ୍ୟୟ କରନ୍ତି ତାର ଏକ ସ୍ଥୂଳ ଧାରଣା ହେଲା ।

ସେଇ ଦୋକାନରେ ଷ୍ଟକ୍‌ହମ୍‌ର ଶଫେନ୍ ସାଲ୍‌ଭଡ୍, ଡ ନାଲ୍ଟ୍ ଛେନା ଓ ଗାର୍‌ଲିକ୍ ବ୍ରେଡ୍ ଖାଇ ଘରକୁ ଫେରିଲି ।

## ଆଲେସ୍କା ଓ ଡକ୍ଟର ଲିଣ୍ଡ୍ରେଲ୍—

ଆମେରିକା ଭ୍ରମଣର ଶେଷ ପର୍ବ; ଆମର ଚିର ଶୁଭାକାଂକ୍ଷୀ ସ୍ନେହୀ ଲିଣ୍ଡ୍ରେଲ୍‌ଦମ୍ପତି ନିମନ୍ତ୍ରଣ କରିଥିଲେ ଉନାର୍‌କୁ—ଉନାର୍ ପରେ ରଙ୍ଗୀନ୍ ହୋମ୍ ମୋଡ୍—ଆଲେସ୍କା ! ନର୍ଥଡ଼ାକୋଟା, ସାଉଥ୍‌ଡାକୋଟା, କାନେଡ଼ାର କେତେକ ନଗର—ଲିଣ୍ଡ୍ରେଲ ଦମ୍ପତିଙ୍କ ଗନ୍ତବ୍ୟ ଏ ସବୁ ନ ଦେଖାଇବେ କିପରି ? ସେ ଦିନ ଘଟଣାସବୁ ହୋଇଛି ସ୍ମୃତି, ମଧୁମୟ, କିନ୍ତୁ ବିଚ୍ଛେଦରେ କରୁଣ। ତାର ଡ଼ାକ ଏଡ଼ ହେବ କିପରି ? ଆମେରିକାରୁ କାନେଡ଼ା ବାଟେ ଯାଇ ଆମେ ଆଲେସ୍କାରେ ପହଞ୍ଚିଲି ବେଳକୁ ସାଢ଼େ ନ', ତନ୍ଦ୍ରାରେ ବେଳେ ବେଳେ ଆଖି ବୁଜି ହୋଇ ଯାଉଥାଏ—ଅର୍ଦ୍ଧ ତନ୍ଦ୍ରା, ଅର୍ଦ୍ଧ ଜାଗରଣରେ ଦେଖିଲି—ନୀଚର ତରୁ ତୃଣ ଶୂନ୍ୟ ଜଙ୍ଗଲୀକା, ପୃଷ୍ଠ ପଟ ହିମ୍‌ବଲୟେ ତୁଷାର ପର୍ବତ, ମୂଳ-ତାର ଗୁଳ୍ମ ଶ୍ୟାମଳ; ଶିଖ ତାର ବରଫ ଭରା, ଭଣି ତ ଧଳତାନ । ସ୍ଥାନେ ସ୍ଥାନେ ତୃଣ ଭୂମିରେ 'ମୁଜ୍', 'ଏକ୍', ଚରୁଛନ୍ତି।

ଦେଖାଗଲା ଗୋଟିଏ କାଷ୍ଠଗୃହ,ସ୍ୱପ୍ନାଚ୍ଛନ୍ନ ଅତୀତର 'ସାମୋଗଗି' ଏଥିରେ ଦିନେ ବାସ କରୁଥିଲା । ବିଚରା ସାମୋଗଗି, କଏ ତାକୁ କହାଇଲା କି ନିଜ ବୁଦ୍ଧିରେ କାମ କଲା,କେଜାଣି, ଅମଣା ବ୍ୟବସାୟ ଗୁଡ଼ ସୁନାର ସ୍ୱପ୍ନରେ ସେ ମାତିଗଲା—ରାତାରାତି ବଡ଼ଲୋକ ହୋଇଯିବ। ସେଇ ନିଶାରେ ପାଗଳ ହୋଇ ସେ ଦୂରେ ବୁଲିଲା ତୁଷାର ମରୁଭୂମିରେ । ଖାଦ୍ୟାଭାବରେ ଦିନେ ତାର ପ୍ରାଣବାୟୁ ଉଡ଼ିଗଲା ।

ଲିଣ୍ଡ୍ରେଲ୍ ସେ ସମ୍ପର୍କରେ ଗୋଟିଏ କବିତା ପାଠ କଲେ—ସ୍ୱର୍ଣ୍ଣତୃଷା କେତେ ଲୋକଙ୍କର କିପରି ଏକ ମୃଗତୃଷ୍ଣା ହୋଇ ପ୍ରାଣ ନେଇଥିଲା ତାର କରୁଣ ଇତିହାସ । କାଷ୍ଠ କୁଟୀରଟି ସେ ଯୁଗର ସ୍ମାରକ ହୋଇ ଏବେ ଛିଡ଼ା ହୋଇଛି ।

ନିଃସନ୍ତାନ ଲାଣ୍ଡେଲ୍, ପ୍ରକୃତିକୁ ଯେପରିକି ନିଜ ସନ୍ତାନ ପରି ସ୍ନେହ ଦୃଷ୍ଟିରେ ଦେଖନ୍ତି—ତୁଷାର ସ୍ରୋତ, ଗିରି ଅଗ୍ରଭାଗର ସେଇ ସ୍ଥାୟୀ ତୁଷାର, ବରଫ ମରୁରେ ଅଳ୍ପ ଅଳ୍ପ ଶ୍ୟାମଳ ଓଏସିସ୍, ଅନାମିକା ତୃଣର ଫୁଲ, ଅନାମଧେୟ ଚଢ଼ୁଇ ପକ୍ଷ, ଅଲେଉଡ଼ା ଶିଳା ସମ୍ପର୍କରେ କି ସ୍ନେହାନୁରାଗରେ ସେ ବର୍ଣ୍ଣନା କରି ଯାଉଥାନ୍ତି । ଉଷା ଓ ସନ୍ଧ୍ୟାର ରଙ୍ଗ, ପାହାଡ଼ ଉପରେ ସ୍ତରେ ସ୍ତରେ ଗୁମ୍ଫାଲୋକ ଆମର ମର୍ମେ ମର୍ମେ ଲିପି ଦେଉଥାନ୍ତି, ରୋମାଞ୍ଚକର ଉତ୍ତେଜନାରେ । କେଉଁଠି ଟାଣ୍ଡ୍ରାର ଚିନ୍ତା, ପ୍ରକୃତି ପ୍ରତି କି ସ୍ନେହାନୁରାଗ; ସୌନ୍ଦର୍ଯ୍ୟ ପ୍ରତି କି ଅଦ୍ଭୁତ ମମତା; ରଙ୍ଗମଖା ମନର ମମତାମେଦୁର କଥା ଶୁଣି କାହାର ମନ ମୁଗ୍ଧ ନ ହେବ ? ତନ୍ଦ୍ରା ସ୍ୱପ୍ନ ଆଉ ଶ୍ରୀ ମଧ୍ୟରେ ନିବିଡ଼ ଆଲିଙ୍ଗନରେ ଆମେ ବିଦାୟ ନେଲୁ । ମୋ ନମସ୍କାରର ଉତ୍ତର ସେ ନମସ୍କାରରେ ଦେଲେ ।

## ଡାକ୍ତର ଓ କବି

'ସକାଳୁ ଯାଇ ରାତି ଦଶଟାରେ ଫେରୁଛୁ ?'

ମୋ ପ୍ରଶ୍ନର ଉତ୍ତରରେ ଉଦୟ କହିଲା—ଆଜି ଶ୍ରମିକର ଦିନ, ସମସ୍ତେ ଛୁଟି ଉପଭୋଗ କରନ୍ତି, କେବଳ ଡ଼ାକ୍ତରଙ୍କୁ ଛାଡ଼ି । ବେପରୁଆ ଛୁଟି ଉପଭୋଗ ଫଳରେ ଆକ୍ସିଡେଣ୍ଟ । ଖଣ୍ଡିଆ ଖାବରା ହୋଇ ବହୁ ରୋଗୀ ଡାକ୍ତରଖାନାରେ ପଶନ୍ତି, ଗୃହଅଡ଼େ ଡ଼ାକରା; ଖାଇବାକୁ ବେଳ ମିଳେ ନାହିଁ; ଡାକ୍ତର ତ ଗୋଟିଏ ମୂଲିଆ ।

'ମୂଲିଆ କଣରେ ? ତା ଖଟଣିର ତ ସୀମା ଅଛି । ତୋର କାହିଁ ?'

'ତୁମ ପରି ରଜରଜା ଜୀବନ କଣ ଆମର ଅଛି ?'

'ଛାତ୍ର ଜୀବନର ଘୋର ଦାରିଦ୍ର୍ୟ ମଧ୍ୟରେ ଡ଼ାକ୍ତରଙ୍କୁ ଗୁରଟଙ୍କା ଫିଜ୍ ଦେଇ ଖଣ୍ଡିଏ ସାର୍ଟିଫିକେଟ୍ ଆଣିବାକୁ ପଡ଼ୁଥିଲା । ମୋ ଜୀବନ ତ ଜାଣି ନଷ୍ଟ ହୋଇଛି; ନିଜେ ସୁସ୍ଥ ଓ ସୁଖୀ ରହନ୍ତି, ଅନ୍ୟକୁ

ସୁସ୍ଥ ଓ ସୁଖୀ କରନ୍ତୁ; ବଡ଼ ଲଜ୍ଜାଜନକ । ଯେତେ କଷ୍ଟ ପଡ଼ୁ ପଛେ ଭାଇକୁ ଡାକ୍ତରୀ ପଢ଼ାଇବ । ପଢ଼ାଇବା ପାରିଲ ନାହିଁ, ତୁ ପଢ଼ିଲୁ, ଉଚ୍ଚତମ ସ୍ତରକୁ ଆସିଲୁ; ଆଜି ଏ କଣ କହୁଛୁ ?'

'ଆଉ କଏ ଏତେ ଖଟୁଛି ?'

'ରାଜନୀତିକ, ଯୁଦ୍ଧ କ୍ଷେତ୍ରରେ ସୈନିକ, ଆତ୍ମୋନ୍ନତିଲାଗି ବ୍ୟାକୁଳ ବ୍ୟବସାୟୀ, ଜ୍ଞାନପିପାସୁ ପଣ୍ଡିତ, ଯଶଲିପ୍ସୁ ଲେଖକ—ସମସ୍ତେ ଖଟୁଛନ୍ତି । ମୋ ଖଟଣି ତାଙ୍କ ଠାରୁ କମ୍ ନାହିଁ—ସେ ସବୁବେଳେ ମନରେ, କଳ୍ପିତ କଲମରେ ରାଜା ଯାହା କହିଲୁ ସତ; ଲେଖକର ସେଥିପାଇଁ ଗୋଟାଏ ବଡ଼୍‌ଗୁଣ ଅଭିଜାତ୍ୟ ଆସେ, ଖବର କାଗଜର ଚୁଟିକିରେ ବେଳ । ସବୁ କିଛି ପାଇଗଲା ପରି ଲାଗେ, କୋଉ ରାଜା, ଅମୀର ଆମ ସଙ୍ଗେ ସରି ହେବ ?

ମୂଲିଆ ଖଟେ ମଜୁରି ପାଇଁ; କର୍ମରେ ପ୍ରୀତି ବା ଆନନ୍ଦ ତାର କାହିଁ ? କର୍ମରୁ ଆନନ୍ଦ ଯେ ନ ପାଏ ସେ ପ୍ରକୃତରେ ମୂଲିଆ ।

ମୂଲିଆ ଖଟଣିରେ ଖଇରୁ ରହିପାରେ, କିନ୍ତୁ ଡାକ୍ତର ସାମାନ୍ୟ ଅଳସ ହେଲେ ସର୍ବନାଶ ।

ରୋଗୀ ରୋଗମୁକ୍ତ ହେଲେ ଯେପରି ଆନନ୍ଦ ପାଏ, ରୋଗମୁକ୍ତ କରି ପାରିଲେ ଡାକ୍ତର ସେପରି ଆନନ୍ଦ ପାଏ—କର୍ମର ଏଇ ତତ୍ତ୍ୱଠାରୁ କିବା ତାର ବଡ଼ କାହିଁକି ବା ବଡ଼ ହେବ ? ସେଥିଲାଗି ଡାକ୍ତର ବଡ଼ ସମ୍ମାନ ପାଏ, ଏଇ ଗଣତନ୍ତ୍ର ଦେଶରେ ।'

୨୭ । ୯ । ୭୭ ( ମେଣ୍ଡଲୁଇସ୍ )

ଉଦୟ ଓ ଭଗ ଗଲେ ଗୀତାର ପ୍ରାଇସ୍ ସ୍କୁଲକୁ; ଆଜି ଅଭିଭାବକମାନଙ୍କର ସଭା । ଛାତ୍ରଛାତ୍ରୀମାନଙ୍କ ଜୀବନ ଗଠନରେ ଶିକ୍ଷକ ଅଭିଭାବକର ପୂର୍ଣ୍ଣ ସହଯୋଗ ପାଏ । ପିଲାମାନେ ଘରେ ପଢ଼ାପଢ଼ି କରୁଛନ୍ତି

କି ନାହିଁ, ଘରକାମରେ ସାହାଯ୍ୟ କରୁଛନ୍ତି କି ନାହିଁ, ଘରେ ବା ସ୍କୁଲରେ କିଛି ଗୋଳମାଳ କରୁଛନ୍ତି କି ନାହିଁ, ପିଲା ଭଲ ନ ପଢୁଥିଲେ କିଣ ପ୍ରତିକାର କରାଯାଇ ପାରେ, ଏକଥା ଶିକ୍ଷକଙ୍କ ସଙ୍ଗେ ବସି ଅଭିଭାବକ ଭାବନ୍ତି ଓ ଉପଯୁକ୍ତ ମାର୍ଗରେ କର୍ମ ତତ୍ପର ହୁଅନ୍ତି । ପ୍ରକୃତରେ ଏଠି ଘର ଗୋଟିଏ ସ୍କୁଲ, ସ୍କୁଲ ଗୋଟିଏ ଘର । କେଉଁଠି ଜୀବନକୁ ଅବହେଳା କରାଯାଇ ନ ପାରେ । ସ୍କୁଲ ଯେପରି ଆନନ୍ଦୋଜ୍ଜ୍ୱଳ, ଗୃହ ସେହିପରି କର୍ତ୍ତବ୍ୟ କଠୋର । ପାଠ ସଙ୍ଗେ କର୍ମଠତା ମିଶି ରହିଛି । କର୍ମରେ ଶ୍ରେଷ୍ଠ ବଡ଼ କିଛି ନାହିଁ; କେଉଁ କର୍ମରେ ଆୟ ମଧ୍ୟ ଅଳ୍ପ ନୁହେଁ, ଜଦସ୍ପର ଗୃହିଣୀ କୋଡ଼ିଏ ହଜାର ଡଲାରରେ ଗୋଟିଏ ଘର କିଣିଛି ।

ସେ ଏଠାର ବିଦାୟବେଳେ ମନ ବୁଝିଲା ନାହିଁ । ଡକ୍ଟର ଲଣ୍ଡ୍ରେଲ୍ ପୁଣି ଆସିଛନ୍ତି ଶେଷ ଆଳାପ କରିବା ଲାଗି । ନାନା ସଂଳାପ ମଧ୍ୟରେ ପଚାରିଲି—ଆମେରିକାର ସବୁଠାରୁ ବଡ଼ କବି କିଏ ? ବଡ଼ ଔପନ୍ୟାସିକ କିଏ ? ଭଲ କ୍ଷୁଦ୍ର ଗଳ୍ପ କିଏ ଲେଖେ ?

ଡକ୍ଟର ଲିଣ୍ଡ୍ରେଲ୍ ଉପନ୍ୟାସ ପଢ଼ନ୍ତି ନାହିଁ, କ୍ଷୁଦ୍ର ଗଳ୍ପ କେତେବେଳେ ଆଖିରେ ପଡ଼ିଲେ ଗଡ଼ାଇଥାନ୍ତି । ଆଧୁନିକ କବିତା କବିତା ନୁହେଁ—ତାଙ୍କର ଧାରଣା । ପଣ୍ଡିତ ସେ ନାନା ଦିଗରେ । କିନ୍ତୁ ଆଧୁନିକ ସାହିତ୍ୟ ତାଙ୍କଠାରୁ ଦୂରେଇ ଦୂରେଇ ଅତି ଦୂରବର୍ତ୍ତୀ ହୋଇ ଗଲାଣି ।

ସାହିତ୍ୟର କାର୍ଯ୍ୟ ବିଷୟରେ କହିବାକୁ ଯାଇ ସେ କହିଲେ—ସାହିତ୍ୟ ଭଲ ମଣିଷ ଗଢ଼େ; ଭଲ ମଣିଷ କିଏ ? ଯେ ନିଜ ସ୍ୱାର୍ଥ ଉପରକୁ ଉଠିପାରେ, ପଡ଼ୋଶୀର ସୁଖଦୁଃଖ ବୁଝିପାରେ, ବିପନ୍ନକୁ ସାହାଯ୍ୟ କରେ, ସଦ୍‌ବ୍ୟବହାର ଜାଣେ, ସେ ଭଲ ମଣିଷ ।

ତାପରେ ସେ ଗୋଟିଏ କବିତା ଆବୃତ୍ତି କରି ଶୁଣାଇଲେ—ଗୀତ—ଉପଦେଶଭରା । କହିଲେ—ଏଥିରେ ମାଷ୍ଟରଗିରି ଅଛି, କବିତ୍ୱ ନାହିଁ । ଗୁରୁ ଯାହା ପ୍ରତିଦିନ ଶିଷ୍ୟକୁ କହନ୍ତି, ତହିଁରୁ ଅଧିକ ଏଥିରେ କିଛି ନାହିଁ ।

ତାପରେ ପ୍ରୀତି ସମ୍ମତ ମାତ୍ର ମିଶିଥିବା ଅଣ୍ଡ ଟୋଫିଏ କବିତା ସେ ଗାଇଲେ; ଗାଇ ଗାଇ ତାଙ୍କ ଆଖିକ ଆଗେ ନିଦ ଆସିଲା, କ ଆଗେ ମୋ ଶ୍ରବଣ ଶକ୍ତି ଗ୍ରହଣ ବନ୍ଦ କଲା, କହିବା କଷ୍ଟକର । ସାହିତ୍ୟ ନିଶାରେ ଆମେ କେତେବେଳ ଶୋଇଗଲୁ ଜାଣିନାହିଁ । ଉଡପୁ ଡାକିଲା ପରେ ଚେତା ହେଲା — ଲିଣ୍ଡେଲ ପୁଣି ଗପି ଚାଲିଲେ, ବୋଧହୁଏ ନିଦ ବାଉଳାରେ; ପରିବର୍ତ୍ତିତ ପରିସ୍ଥିତିରେ ଏହା ବଡ଼ ଅପ୍ରାସଙ୍ଗିକ ଶୁଣାଗଲା ।

ତାପରେ ବଦାୟୁବେଳେ ମୋତେ ପଚାରିଲେ — ଆମେରିକାର ସଭାପତି କିଏ ହେବ ? କହିଲି — ଆପଣ ! ଲିଣ୍ଡେଲ ହସି ହସି କହିଲେ — ସେପରି ଆପଣ ଭାରତର ପ୍ରଧାନମନ୍ତ୍ରୀ ହେବେ ! ହସି ହସି କହିଲି — ସେତେବେଳେ ଆମ ଦୁହିଙ୍କର ସାକ୍ଷାତ୍ ହେବ ଫିଲାଡେଲଫିଆରେ ।

## ସେଣ୍ଟଲୁଇସ୍, ବିଦାୟ

ମୋ ଶୋଇବା ଘରର ଝରକା ଉପରେ ମାଡ଼ିଥିବା ଲତା ପତ୍ର ଉପରେ ଟପ ଟପ ପାଣି ପଡ଼ୁଥାଏ, ରାତିସାରା — ବର୍ଷା, ଯାହା ନିଦ୍ରାକୁ ଘନେଇ ଦିଏ । ପଲଙ୍କରୁ ଉଠି ଦେଖେ ସେ ଆକାଶ ମେଘାଚ୍ଛନ୍ନ; ଅତି ସରୁ ସରୁ ବୁନ୍ଦା ତଳେ ନ ପଡ଼ି ଉଡ଼ି ଯାଉଛି ପ୍ରଖର ପବନରେ; ଉଦ୍ୟାନେ ଉଦ୍ୟାନେ ମର୍ମର ଝଙ୍କାର । ପ୍ରକୃତି ଏତେ ସୁନ୍ଦର କେବେ ହୋଇନାହିଁ, ମୋ ରହଣି କାଳ ମଧ୍ୟରେ ! ଅରଣ୍ୟରେ ସତେ ବା ଖୋଲିଛି ଏକ ପ୍ରଦର୍ଶନୀ, ନାନା ରଙ୍ଗେ ରଞ୍ଜିତ । ଲାଲ୍, ହଳଦିଆ ପତ୍ର ପତ୍ର ବୁନ୍ଦ ବୁନ୍ଦ ଜଳ ମର୍ମର ଝଙ୍କାରେ ଝରେ, ସତେ ବା କେଉଁ ଏକ ଆଦିମ କବିତା ଆବୃତ୍ତି କରେ, ଅଲିଖିତ, କିନ୍ତୁ ପ୍ରଚଳିତ ମୁଖେ ମୁଖେ । ପରିଚିତ କଣ୍ଠସ୍ୱର; ତଥାପି ତା ପ୍ରତି ମୋହ ଅଳ୍ପ ନୁହେ; ଯେ ଶୁଣିଛି ସେ କେବଳ ଶୁଣିପାରେ ।

ସୁପରିଚିତ ବନ୍ଧୁ ଓକ୍, ଶରତ୍ ଆରମ୍ଭରେ ବର୍ଣ୍ଣବ୍ୟଞ୍ଜନାକୁ ପର ପହିଲେ ପତ୍ରଝଡ଼ା ଦେଇଛି ଯେଉଁ ପପ୍‌ଲର୍, ବନର ନର୍ତ୍ତକୀ ରୂପେ

ରଙ୍ଗୀନ୍ ବେଶ ମଣ୍ଡିତା ମେପଲ୍, ଶୀତ ଓ ଗ୍ରୀଷ୍ମରେ ସମଭାବାପନ୍ନ କ୍ରିସ୍‌ମାସ୍, ଶରତ୍‌କୁ ପ୍ରଶସ୍ତ ହସ୍ତରେ ଆଲିଙ୍ଗନ କରିବାକୁ ପ୍ରସ୍ତୁତ ହୋଇଲେ; ଆଇଭି, ହନିସକଲ୍ ଆଉ ଅଙ୍ଗୁର ଲତା—ଜୀବନର ବାସ୍ତବତାକୁ ମାନି ନେଇଛନ୍ତି, କାଳର ଗତିବିଧି ବୁଝି ବଞ୍ଚି ଭଳି; କୁହୁଡ଼ି ପଛେ ପଛେ ବୁଲୁଛି । ଝିଙ୍କାରିକ ପଚାରୁଛି ଏକ ନୀଳ ପକ୍ଷୀ—ତୁମେ କମ୍ପା ରହି ଛନ୍ଦେ ସଙ୍ଗୀତ ଗାଉଛ ?

ଗୁଣ୍ଡୁଚିର ବସା କଏ ଭାଙ୍ଗି ଦେଇଛି, କର୍କଶତମ ସ୍ୱରରେ ସେ ଗାଳି ଦେଉଛି, ବୁଝିପାରୁ ନାହିଁ ଏତେ ସୁନ୍ଦର ସକାଳଟା ମାଟି ହୋଇ-ଯାଉଛି ବୋଲି ତାର କଟୁ ବଚନରେ । ଗଛ କଥା ଦେଉଛି ପକ୍ଷୀ ସଙ୍ଗେ, ପକ୍ଷୀ ସରୀସୃପ ସଙ୍ଗେ, ଟୁପୁଟାପୁ କଥାର ଏକ ସୁଅ ଭାସି ଯାଉଛି; କଏ କଣ କହୁଛି, ସ୍ପଷ୍ଟ ନୁହେଁ । କେବଳ ଉରତିଆର କଥା ବୁଝି ହେଉଛି । ସେ ଯେପରି କି କହୁଛି—ଏ ଜୀବନ ପ୍ରୀତିକର, ଅତି ପ୍ରୀତିକର ।

ଦୃଶ୍ୟରେ ବଦଳି ହୋଇ ଗଲାଣି; ହଠାତ୍ ମନର ଛନ୍ଦ ଭଙ୍ଗ ହେଲା ଶାର୍ଦ୍ଦୂଳାକୃତି ଏକ କୁକ୍କୁରର ବିକଟ ଗର୍ଜନରେ । ସେ ପଚାରୁଛି—ବର୍ଷା ବାଦ୍ ଓ ଅନ୍ଧକାର ଝଗ ଏ ସକାଳେ କଏ କେଉଁଠି ବୁଲିବାର ଦେଖିଛ ? ଆଉ ତୁମେ କାହିଁକି ଆସିଛ ? କାହିଁକି ? କାହିଁକି ?

ବେଆଇନ୍ ପ୍ରଶ୍ନସବୁ । ସତେ ଯେପରି ତାଙ୍କ ପିତାଜୀ ଏ ପଥ ନିର୍ମାଣ କରିଥିଲେ ସବୁରି ବ୍ୟବହାର ପାଇଁ, କେବେ କେବେ ଅଧିକ କର୍ତ୍ତବ୍ୟନିଷ୍ଠ ହୋଇ କେତେକ ନିଷ୍ଠୁର ଆଚରଣ ଦେଖାଇଥାନ୍ତି, ନିରୀହଙ୍କ ପ୍ରତି ।

ଘରେ ଘରେ ଏହିପରି ଶାର୍ଦ୍ଦୂଳ; ଯା'ର ଗର୍ଜନ ଶୁଣି ଅନ୍ୟମାନେ ଝାଡ଼ ଝୁଡ଼ ହୋଇ ଠିଆ ହେଲେଣି । ଟିକଏ ଇସାରା ଦେଲେ ମାଡ଼ି ଆସିବେ । କିନ୍ତୁ ନ ଘଟିଲା ପରି ମୁଁ କୁଆଡ଼କୁ ନ ଚାହିଁ ଫେରି ଆସିଲି । କୁକୁର ନିଜର ଭୁଲ୍ ବୁଝିପାରି ତାର ମାଲିକ ମନ୍ଦିରକୁ ଚାଲେ ଗଲା । ତାର ବି ଶାସନ ଭୟ ! କାହାର ଆଦେଶରେ ପଦାକୁ ଯାଇଥିଲା ?

ଅକାରଣ ଉତ୍ତେଜନାରେ ପଦ କଚ୍ଛି କରି ବସିଥାନ୍ତି, ସେ ଦାୟିତ୍ୱ କାହା ମୁଣ୍ଡରେ ପଡ଼ିଆନ୍ତା ?

ବର୍ଷା ଅନ୍ଧାର ମଧ୍ୟରେ ରାଜପଥ ଯାନ ବହୁଳ ହୋଇ ଉଠିଲାଣି । ମୁଁ ଘରେ ପହଞ୍ଚିଲା ବେଳକୁ ଉଦୟ ନିକ କ 'ପାଣି ବୋହୁଛି' ! ତା ନନା ପିଲାଦିନେ ତାର ଗୋଟିଏ ହାତ ଗୋଟିଏ ଗୋଡ଼କୁ ଧରି ଏହିପରି ପାଣି ବୋହୁଥିଲେ । ନନା ତ ନିପଟ ମଫସଲି । ପାଣିବୁହା ଖେଳ ଖେଳିବା ତାଙ୍କ ପକ୍ଷେ ସ୍ୱାଭାବିକ । କିନ୍ତୁ ଉଦୟ ଆମେରିକାନ୍ ହୋଇ ସେ ଖେଳ ଭୁଲିନାହିଁ; ପିଲାଦିନର ସ୍ମୃତି ଲିଭେଇନାହିଁ, ଘଟଣା ପ୍ରବାହ ଦ୍ରୁତ ଓ ସେତେ ଦୁର୍ଗାନ୍ତକାରୀ ହେଲେ ମଧ୍ୟ ।

ହଠାତ୍ ବେଳ ଘନେଇ ଆସିଲା; ବ୍ୟାକୁଳ ଆଖିରେ ଚାହିଁଗଲି ଗୃହର ନିମ୍ନତମ ଭୂମିରେ ସାଢ଼େ ତିନିମାସର ବାସସ୍ଥଳ ସଦା ବିଦ୍ୟୁତ୍ ଆଲୋକିତ ମୋର କୋଠରୀକୁ । ଭ୍ରେଜନାକପୁରରେ ସଜ୍ଜିତ ହେଇ ତାଜମହଲ୍‌କୁ, କଳା ଧଳା ଘୋଡ଼ାରେ ବସି କାଞ୍ଚୀ ଯୁଦ୍ଧକୁ ଯାଉଥିବା ସେଇ ବଳରାମ ଜଗନ୍ନାଥଙ୍କୁ, ଗୀତାର ଅପଟୁ ହସ୍ତରେ ଅଙ୍କିତ ରଙ୍ଗୀନ ଜୀବ ଜନ୍ତୁଙ୍କୁ, ଇତସ୍ତତଃ ଭୂଲୁଣ୍ଠିତ ଖେଳଣାକୁ, କାଚ କାନ୍ଥର ଧାରେ ଧାରେ ସଜ୍ଜିତ, ଜୀବନ୍ତ ପରି ଆଭାସିତ ପ୍ଲାଷ୍ଟିକ ଫୁଲଲତାକୁ; ଆମେରିକାକୁ ଆଣି ନୂଆ ଆଖି ଆଗରେ ନାଚୁଥିବା ଟେଲିଭିଜନକୁ, ନିଜ ଚକା ଭଉଁରୀ ଲାଗି ଅଳି କରୁଥିବା ଗୀତାକୁ, ଫଟେଇ ହେଉଥିବା ମୀରାକୁ, ଲୁଚକାଳି ଖେଳୁଥିବା ନିକକୁ—

—ଗୋଲାପ, ପେଟୋନିଆଁ, ମାଗ୍ନୋଲିଆ, ଡନିସକଲ୍, ପାଇନ୍, କ୍ରିସ୍‌ମାସ୍‌କୁ, କାନ୍ଥ ଆପଲ୍ ଗଛ ତଳେ ନାଚେଇଥିବା ରାବିଟ୍‌କୁ, ଡେକ୍ସରେ ସଚଞ୍ଚଳ ରବିନ୍‌କୁ, ସିକାମୋର୍‌ରେ ଏ ଶାଖାରୁ ସେ ଶାଖାରେ ବସୁଥିବା ନୀଳ ପକ୍ଷୀକୁ, ଉପରେ ପାଖରେ ପଶୁ ନଥିବା ଡାମରା କୁଆକୁ, ଅବିଶ୍ରା ବାଜୁଥିବା ଗ୍ରଣ୍ଡ୍‌ଚିକୁ, ଅଙ୍ଗୁର ଖୋଳୁଥିବା ମି. ହ୍ୱାର୍‌କଟଙ୍କୁ; ଗେଣ୍ଡୁ ଫୁଲରୁ ମହୁ ଶୋଷୁଥିବା ଶହେ ଜଣ କେତୋଟି ପ୍ରଜାପତିଙ୍କୁ,

ମନର ମମତା ବୋଳା ସେଇ ଭେଲ୍‌ଭେଟ୍‌ ପଡ଼ିଆକୁ, ଚତୁର୍ଦ୍ଦିଗର ଚିକ୍‌କଣ ସବୁଜକୁ, ମେଘ ମେଦୁର ଆକାଶକୁ ।

ଇସ୍, କିଛି ଖେଳଣା କିଣି ମୋ ହାତରେ ଦେଇଛି—ପିଲାଙ୍କୁ ଦିଅ । ପିଲାଏ ବୁଝିଲେ ଦଦେଇ ଆଣିଛନ୍ତି ବୋଲି । ଏ ଅଭିନୟ ମୁଁ କରୁଛି, ନିର୍ଦ୍ଧନ, ନିରୁପାୟ; ସ୍ନେହର ପ୍ରତିଦାନ ଉଜ୍ଜ୍ୱଳ ହାସ୍ୟରେ ପାଉଛି ।

ବଡ ଡାକ୍ତରଣୀ; କିନ୍ତୁ ଅଭିମାନ ନାହିଁ ତାର ମନରେ । ଓଡ଼ିଆଙ୍କ ମାଛ ବେସର, ତାମିଲଙ୍କ ସମ୍ବର, କିଛି ବିଦେଶୀ ରନ୍ଧା ସେ ଶିଖିଛି; ଆମେରିକା ଓ ଭାରତୀୟ ଭାବର ତେଜର ଧକ୍‌କା ତା ମନରେ ବାଜୁଛି । ପିଲାଙ୍କୁ କେଉଁ ଛାଞ୍ଚରେ ଗଢ଼ିବ ଏବେ ବି ଠିକ୍ ନାହିଁ; ଆମେରିକା ଜୀବନର ପ୍ରାଚୁର୍ଯ୍ୟ, ଜୀବନ ତୃଷ୍ଣା, ଭାରତୀୟ ଜାତୀୟତା ମନକୁ ଏବେ ବି ଟଣାଓଟରା କରୁଛି । କେତେବେଳେ କହୁଛନ୍ତି—ଭାରତକୁ ଫେରିଯିବୁ, ନାନା ଅସୁବିଧା କଥା ମନେ ପଡ଼ିଲେ ଶଙ୍କି ଯାଉଛନ୍ତି—ସୁବିଧାରୁ ଅସୁବିଧାକୁ ଫେରିଯିବାକୁ ମନ ହେଉନାହିଁ । କେତେବେଳେ ହୁଏତ ନିଜକୁ ଅପରାଧୀ ମନେ କରୁଛନ୍ତି—ଏଠି ଲଖିଯିବାକୁ ତ ଆସି ନଥିଲୁ—ଆସିଥିଲୁ ଯୋଗ୍ୟତର ହେବାଲାଗି; ଭାରତର ସେବାରେ ସେ ଯୋଗ୍ୟତାର ଉପଯୋଗ କରିବା ଥିଲା ଲକ୍ଷ୍ୟ । କକ୍ଷଚ୍ୟୁତ ହୋଇଥିଲୁ, ଏବେ ହେଲୁ ଲକ୍ଷ୍ୟଚ୍ୟୁତ । ଅସନ୍ତୋଷ, ସନ୍ଦେହ, ପରମ୍ପରାର ଆକର୍ଷଣ ଓ ବର୍ତ୍ତମାନର ମୋହ ମନକୁ ଦୋଳାୟିତ କରୁଛି—ଆଗକୁ ଯିବାକୁ ଦେଉନାହିଁ, ପେଛୁଆର ପଛକୁ ଫେରିଯିବାକୁ ।

ମୁଁ ହେଣ୍ଡଲ୍‌ଇସ୍‌କୁ ଆସିବା ଦିନରୁ ଲୁଗା ସଫା, ଜୋତା ସଫା ସବୁ ସେ କରୁଛି । ଦେଢ଼ଶୁର ମାଇନ ନ କରି ଅଇଁଠା ଧୋଉଛି । ଯା ପାଇଁ ଯା, ତା ପାଇଁ ତା କିଣି ଲଗିଛି—ସୁଟ୍‌କେଶ୍‌ର ଓଜନ ୪୬, ତଥାପି ପଚାରୁଛି—ଆଉ କଣ ନେବ ?

ଜିନିଷ ପତ୍ର ବାନ୍ଧିବା ସଙ୍ଗେ ସଙ୍ଗେ ଗ୍ରାମୋଫୋନ୍‌ରେ ଗୋଟିଏ ରେକର୍ଡ଼ ବଜାଉଛି—

There were birds on the hill
But I never heard them singing
I never heard them at all
Till there was you.

ଆମେରିକାର ଗୋଟିଏ ଅତି ଲୋକପ୍ରିୟ ଗୀତ—ମୁଁ ତାର ଅନୁବାଦ ଓଡ଼ିଆରେ କରିଦେଲି—

ପାହାଡରେ ପକ୍ଷୀ ଥିଲେ
ଶୁଣି ତ ନ ଥିଲି ତାଙ୍କ ଗୀତ
ତୁମେ ଆସିବାର ଆଗେ
ଶୁଣି ତ ନ ଥିଲି ତାଙ୍କ ଗୀତ ଅନୁରାଗେ ।

ଆକାଶେ ବି ପକ୍ଷୀ ଥିଲେ
ଦେଖି ତ ନ ଥିଲି ତାଙ୍କ ଉଡ଼ିବାର ଲୀଳା
ତୁମେ ଆସିବାର ଆଗେ
ଦେଖି ତ ନ ଥିଲି ତାଙ୍କ ଉଡ଼ିବାର ଲୀଳା ଅନୁରାଗେ ।

ତଟପାଶେ ଥିଲା ହାସ୍ୟ
ଥିଲା ବି ସଙ୍ଗୀତ
ପ୍ରତ୍ୟୂଷ ଶିଶିରେ ଅବା
କିଛି ସୁବାସିତ ।

ପାହାଡରେ ପକ୍ଷୀ ଥିଲେ
ଶୁଣି ତ ନ ଥିଲି ତାଙ୍କ ଗୀତ
ତୁମେ ଆସିବାର ଆଗେ
ଶୁଣି ତ ନ ଥିଲି ତାଙ୍କ ଗୀତ ଅନୁରାଗେ ।

ଉଦୟ, ଧନସାର କାର୍ଯ୍ୟ ତାର । ଟିକିଏ ବେଳ ମିଳିଲେ ମୋତେ ବୁଲେଇ ନେଉଛି, ସହର ଧନ ଛୁଟି ନେଇଥିଲି ମୋତେ କେବଳ ବୁଲେଇ ନେବା ଲାଗି; ଭାଇନା ଆଧୁନିକ ହୁଅନ୍ତୁ, ବୈଜ୍ଞାନିକ ଯନ୍ତ୍ରରେ ଚଳନ୍ତୁ—ଏ ଭାବନାର ଅନ୍ତ ନାହିଁ । କିନ୍ତୁ ଶଗଡ ଯୁଗର

ଲେକ ମୁଁ, ମଫସଲି ସାନ୍ତ୍ରତ୍ୟ ଅନୁଧ୍ୟାନ କରୁଛି । କେତେ ବା ଆଧୁନିକ ହୋଇ ପାରିବ ? କଟକ ପରିବେଶରେ ସେ ସୁବିଧା ବ କାହିଁ ?

ପୁଣି ତାର ଇଚ୍ଛା—ମୁଁ ବହୁତ ଦେଖେ, ଲେଖେଁ; ସପ୍ତପୁରୁଷ ଉଦ୍ଧାର କରେ । ଏଥିଲାଗି ସେ ଅକାତରେ ଖର୍ଚ୍ଚ କରି ଚାଲିଛି ।

ସମୟେ ଆସିଥିଲେ ସେଣ୍ଟଲୁଇସ୍ ବ୍ୟୋମବନ୍ଦରକୁ; ଗୋଟିଏ କରୁଣ ମୁହୂର୍ତ୍ତ, କେତୋଟି ଅଶ୍ରୁବନ୍ଦୁ । ମୁଁ ଆମେରିକାନ୍ ଏୟାର ଲାଇନସ୍ର ଏକ ଉଡ଼ାଜାହାଜରେ ଚଢ଼ିଲି—ମେଘୁଆ ପାଗ, ମନ ଥରୁଥାଏ ଶଙ୍କାରେ, ଉଚ୍ଛୁଳୁଥାଏ ବେଦନ ଆବେଗରେ ।

ଦେଖୁ ଦେଖୁ ଉଡ଼ାଜାହାଜ ମେଘ ଉପରକୁ ଉଠିଗଲା—ସିମେଣ୍ଟ ଚଟାଣ ପରି ଦିଶିଲା ମେଘସବୁ—ଉପରେ ନିର୍ମଳ ଖଗ; ଦୁଇଘଣ୍ଟା ପରେ ନିଉୟର୍କରେ ପହଞ୍ଚିଲି । ଏୟାର ହୋଷ୍ଟେସ୍ ହାତରେ ହାତ ମିଳାଇ ଶୁଭେଚ୍ଛା ଜ୍ଞାପନ କଲି—ଯାହା ନିରାପଦ ଓ ମଧୁମୟ ହେଉ ।

ତାପରେ ଲାଗୋଆଡିନ୍ରେ କେନେଡ଼ି ବ୍ୟୋମବନ୍ଦରକୁ ଯାତ୍ରା କଲି—ଏକମାତ୍ର ଯାତ୍ରୀ । ବିମାନ ବନ୍ଦରରେ ପାଞ୍ଚଘଣ୍ଟା ଅପେକ୍ଷା କରିବାକୁ ହେଲା । ବର୍ଷା ଘୁଞ୍ଚିଯାଇଛି, ହେଲିକୋପ୍ଟରରେ ଅନେକ ଯାତ୍ରୀ ବସୁଛନ୍ତି, ନିଉୟର୍କ ଆକାଶରେ ବୁଲିବାଲାଗି । ପ୍ଲାଷ୍ଟିକ୍ ପଥ କେଶରେ; କିଏ ସେ ମହିଳା ସିଗାରେଟ୍ ଲଗାଉଛି ? ବୁଲୁବୁଲୁ ମୁଁ ଉପର ମହଲାକୁ ଉଠିଲି—ଯାଦୁଘର—ସିକୋରସ୍କି, ଡଗଲାସ୍, ଡଲଫିନ୍, ଅର୍ମିବିଆନ୍; କମୋଡୋର୍, ଫୋକ୍କର, ଫେୟାର ଚାଇଲଡ୍ ଫୋର୍ଡ ମନୋପ୍ଲେନ୍ ପ୍ରଭୃତି ନାନା ଜାତିର ବିମାନର ନମୁନା ଏଠି ପ୍ରଦର୍ଶିତ ହୋଇଛି । ଉଡ଼ିବାରେ କୃତିତ୍ୱ ଅର୍ଜିଥିବା ବ୍ୟକ୍ତିଙ୍କୁ ସ୍ୱୀକୃତି ପ୍ରଦାନ କରାହୋଇଛି । ପ୍ରାଥମିକ ଉଡ଼ଣ ପ୍ରୟାସ, ବୈଫଲ୍ୟ, ଉଡ଼ଣ ସମ୍ପର୍କରେ ନାନା ଗୌରବମୟ ସମ୍ବାଦ ସ୍ୱର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ହୋଇଅଛି । ବିମାନରେ ଜାଳେଣିକୁ କପରି ଅକ୍ସିଆରରେ ଆଣିବାକୁ ହୁଏ, ବୁଝେଇ ଦିଆ ହୋଇଛି; ବିଭିନ୍ନ ଦେଶର ଡାକ ଟିକଟର ନମୁନା, ବିଭିନ୍ନ ସମୟରେ ଉଡ଼ାଜାହାଜ ଇଞ୍ଜିନ୍, ଯାନ୍

ଆମେରିକା ବିମାନର ସୁଖ ପ୍ରଦର୍ଶିତ ହୋଇଛି । ଭୂମଣ୍ଡଳରେ ଯାତ୍ରାପଥ ମଧ୍ୟରେ ଛବିର ଦାଗଟିଏ କାହିଁକି ରଖା ଯାଇଛି, ବୁଝି ପାରିଲି ନାହିଁ ।

ପାନ୍ ଆମେରିକାନ୍ ଜେଟ୍ ବିମାନର ଲାଞ୍ଜ ପଟେ ମୋର ସିଟ୍, ୨ ଏ, ବନ୍ଦରର ନୀଳ୍ ନୀଳ ଆଲୋକମାଳା ଦେଖୁ ଦେଖୁ ସେଥିରେ ଉଠିଲି—ଆଲୋକ ହସ୍ତରେ ଜଣେ ମହିଳା ମୋ ସିଟ୍ ପାଖକୁ ବାଟ କଢ଼ାଇ ନେଲା; ସର୍ବିକାଳ, ଗୁରୁଗମ୍ଭୀର ପରିବେଶ । ଖଣ୍ଡେ ଚକଆ ସିଲିଲା ଆଜ୍ଞା ବସିବା ଲାଗି, ଖଣ୍ଡିଏ ଖଣ୍ଡିଏ ସମ୍ବାଦପତ୍ର ମଧ୍ୟ ମିଳିଲା । ବର୍ଷା ଧାର ଧାର ହୋଇ ପ୍ଲାଷ୍ଟିକ୍ ଝରକା ବାଟେ ତଳକୁ ଖସୁଥାଏ । ଯାନ ମଧ୍ୟରେ ଅଧା ଅନ୍ଧାର ଅଧା ଆଲୋକ, ଯାନ ଛାଡ଼ିବା ବେଳ । ନୀଳ୍ ଜାକେଟ୍ ପିନ୍ଧି ଏୟାର୍ ହୋଷ୍ଟେସ୍ ମୁହଁରେ ଲାଲ୍ ଲୁଗା ଦେଇ ଯାତ୍ରୀମାନଙ୍କୁ ଧୂଆଁ ଖାଇବାକୁ ମନା କରିଗଲା । ଡେଣାର ଆଲୁଅ ଜଳି ଉଠିଲା—ଯାନ ମୁହୂର୍ତ୍ତକ ମଧ୍ୟରେ ନିଉୟର୍କ ସହରର ଗୋଟିଏ କୋଣ ଅତିକ୍ରମ କରି ପହଞ୍ଚିଲା ସମୁଦ୍ରରେ । ମନେ ମନେ ଡାକୁଥାଏ ଜଗନ୍ନାଥଙ୍କୁ ।

ସ୍ୱଚ୍ଛ ଆକାଶ, ନୀଳ ଜଳଧି ଉପରେ ଚନ୍ଦ୍ରିକାର ସ୍ୱଚ୍ଛନ୍ଦ ଲୀଳା; ଏତେ ପ୍ରଶସ୍ତ କ୍ଷେତ୍ରରେ ଚନ୍ଦ୍ରିକାର ଶ୍ରୀ ଉପଭୋଗ ଏଇ ପ୍ରଥମ । ନକ୍ଷତ୍ର-ଟିଏ ନୀରବରେ ରୁହିଁଥାଏ । ଖଣ୍ଡେ ଖଣ୍ଡେ ଧଳା ମେଘ କୁଆଡ଼ୁ ବା ପହଁଚି ଆସେ, ପୁଣି କୁଆଡ଼େ ବା ଲୀନ ହୋଇଯାଏ । ଆଟଲାଣ୍ଟିକ୍ ମହା-ସାଗରର ପରିପୂର୍ଣ୍ଣ ଚନ୍ଦ୍ରିକା; ମେଘ ଉପରେ ଚନ୍ଦ୍ରିକା, ମେଘ ତଳେ ବର୍ଷା । ସମୁଦ୍ର କୁଆଡ଼େ ହଜିଗଲା—କେବଳ ମେଘ, ମେଘ ।

କିଛି କାଳ ପରେ ମେଘ କୁଆଡ଼େ ଘୁଞ୍ଚିଗଲା । ନୀଳ ନିର୍ମଳ ଆକାଶ, ପୁଞ୍ଜ ପୁଞ୍ଜ ତାରା ସବୁ ସମୁଦ୍ର ଲହରୀରେ ଫୁଟି ଉଠିଲେ, ଶରତ କାଳର ସ୍ୱଚ୍ଛ କହ୍ଲାର ସଦୃଶ । ରତ୍ନାକର ନାମ ସାର୍ଥକ ହୋଇଗଲା, ଭାସି ବୁଲନ୍ତି ବା ଧବଳ ହଂସମାଳା, ଧାଡ଼ି ବାନ୍ଧି—କେଉଁ ଦ୍ୱୀପର ନଗରୀ ମନରେ ମୁହୂର୍ତ୍ତେ ରେଖାଙ୍କିତ ହୋଇଗଲା, ନାନା ବର୍ଣ୍ଣର ଖଦ୍ୟୋତ, ଚନ୍ଦ୍ରିକାର ସ୍ୱପ୍ନାଚ୍ଛନ୍ନ ମାଧୁରୀ, ପ୍ରାଣ ପୂରିଉଠିଲା କାବ୍ୟରେ ।

ତେର ହଜାର ଫୁଟ୍ ଉପରେ ଉଡ଼ୁଥାଉ ଆମେ, ଘଣ୍ଟାକେ ୫୫୦ ମାଇଲ୍ ଗତିରେ, ବୋଡାମ ଟିପିଲଣି ଆସନଟା ଶେଯ ପରି ଲମ୍ବିଗଲା । କିନ୍ତୁ ଶୋଇବ କିପରି ? ଘୁଞ୍ଚ ଦଳଦଳ ।

ଘଣ୍ଟ ଦଣ୍ଟା; ଟିକିଏ ଘୁଇନାଦ ଲାଗି ଆସିଛି କି ନାହିଁ, ଏୟାର ହୋଷ୍ଟେସ୍ ଡାକ ପକାଇଲା—ବ୍ରେକ୍‌ଫାଷ୍ଟ, ମୁହଁ ପୋଛିବା ଲାଗି ଗରମ ପାଣିରେ ଓଦା କନା ବଣ୍ଟା ହୋଇଗଲା ।

ଦଣ୍ଟା ବେଳେ କାହିଁକି ପ୍ରାତରାଶ ? ଝରକା ବାଟେ ଚାହିଁଲା ବେଳକୁ ସମୁଦ୍ରରେ ଚନ୍ଦ୍ରିକା ଆଉ ନାହିଁ । ଗୋଟିଏ କୋଣରୁ ହଳଙ୍କ ପରି ଲାଲ୍ କିରଣ ଝରି ଆସୁଛି—ରଙ୍ଗୀନ କୁହୁଡ଼ିର ଦୌଡ଼; ତାପରେ ଶ୍ୟାମଳ ଭୂମିଖଣ୍ଡ, ଖଣ୍ଡଗାର ପରି ଗୋଟିଏ ଗୋଟିଏ ପଥ, ନଦୀଧାର, ଶ୍ୟାମଳ ପ୍ରାନ୍ତର, ଓକ୍ ଓ ଏଭରଗ୍ରିନ୍ ସବୁ ସ୍ୱପ୍ନମୟ, ଉଷାର ରଙ୍ଗୀନ୍ ଆଲୁଅରେ—ଗ୍ରେଟ୍‌ବ୍ରିଟେନ୍ !

---

# ବ୍ରସ୍‌ଲେ ପଥେ

ଲଣ୍ଡନର ମାଟି ଛୁଇଁବା ମାତ୍ରେ ପାଦ ରୋମାଞ୍ଚିତ ହୋଇ ଉଠିଲା । * ଅନ୍ନଦାବାବୁଙ୍କୁ ମନେ ମନେ ଗୋଟିଏ ନମସ୍କାର କଲି । ମୋର କାଳି-ଫର୍ଣ୍ଣିଆ ବାଟେ ଜାପାନ ଦେଖି ଭାରତ ଫେରିବା କଥା ହୋଇଥିଲା । କିନ୍ତୁ ଅନ୍ନଦାବାବୁ ଶାନ୍ତିନିକେତନରୁ ଲେଖିଲେ—ଜାପାନ ଦେଖିବାର ସୁଯୋଗ ପରେ ମିଳିବ; ଇଉରୋପ ଦେଖି ଆସନ୍ତୁ—ଲଣ୍ଡନ, ପ୍ୟାରିସ୍ ରୋମ୍, ମ୍ୟୁନିକ୍ ! ମନ ତେଣେ ଦୌଡ଼ିଲା । ଶାନ୍ତିନିକେତନରେ ମୋର ଜାପାନୀ ବନ୍ଧୁ ଡକ୍ଟର କାସୁଗାଇଙ୍କ ନିକଟକୁ ପତ୍ର ଲେଖି ଉତ୍ତର ପାଇଲି ନାହିଁ; ପରେ ଶୁଣିଲି—ଠିକଣା ଭୁଲ୍ ଥିଲା । ଏହିପରି ମୋର ସାନ୍‌ଫ୍ରାନ୍‌ସିସ୍‌କୋ ଟୋକିଓ ପଥ ବଦଳିଲା । ମୁଁ ଆସିଲି ଲଣ୍ଡନ ।

ଲଣ୍ଡନ ବନ୍ଦରରେ ଟିକେଟ୍ ଓ ପାସ୍‌ପୋର୍ଟ ଚେକ୍ ହେଲା । କଷ୍ଟମସ୍ ଅଫିସର୍ ପଚାରିଲେ—ସିଗାରେଟ୍ ନେଇଛ ? କିଛି ମଦ ? କାହା ପାଇଁ କିଛି ଉପହାର ?

ଛୋଟ ପିଲାଙ୍କ ଲାଗି କିଛି ଉପହାର ଅଛି, ମଦ ବା ସିଗାରେଟ୍ ନାହିଁ । ତାପରେ ମୋତେ ଛାଡ଼ିଦେଲା । କଷ୍ଟମ୍ସ୍ ଅଫିସ୍ ବାହାରେ

* ଓଡ଼ିଆ ଓ ବଙ୍ଗଳାର ବରିଷ୍ଠ ଲେଖକ ଅନ୍ନଦାଶଙ୍କର ରାୟ ।

ସୁରେନ୍ ଗୋଖଲ୍ ମୋତେ ଅପେକ୍ଷା କରିଥିଲେ, ତାଙ୍କ କାର୍ ନେଇ। ଗୋଖଲ୍ ଇଂରେଜ ଭଉଣୀ, ଜ୍ୟୋତ୍ସ୍ନାର ସ୍ୱାମୀ। ସେ ଭାରତୀୟ ନୌ ବାହିନୀରେ କାର୍ଯ୍ୟ କରନ୍ତି। ପ୍ରଥମେ କାଡେଟ୍, ତାପରେ ମିଡ୍‌ସିପ୍ ମ୍ୟାନ୍, ସବ୍ ଲେଫଟେନାଣ୍ଟ, ଲେଫ୍‌ଟେନାଣ୍ଟ; ଏବେ ଲେଫ୍‌ଟେନାଣ୍ଟ କମାଣ୍ଡର୍ ହୋଇଛନ୍ତି। ଘର ଉତ୍ତର ପ୍ରଦେଶରେ।

ବିମାନ ବନ୍ଦରରୁ 'ବ୍ରମ୍‌ଲେ' ତିରିଶ ମାଇଲ ପଥ। ଅଣଓସାରିଆ ରାସ୍ତା; ଭିଡ଼; ଗାଡ଼ି ରହି ରହି ଯାଉଥାଏ। ଶୀତୁଆ ପବନ, ଗୋଟି ଗୋଟି ପାଚିଲା ପତର ଖଲଖଲ ହୋଇ ପବନରେ ଝଡ଼ୁଥାଏ। କେଉଁଠି ମଣ୍ଡା, ମାଣିକସ୍ତମ୍ଭ ଗେଣ୍ଡୁ, କେଉଁଠି ବା ଗୋଲାପ, ଅଗ୍ର ଅଗ୍ର ଘାସ ପଡ଼ିଆ; ଫୁଟପାଥରେ ଲୋକେ ଧାଇଁଥାନ୍ତି। ଚୂଲିବା ଏଠା ସ୍ୱଭାବ। ବହୁଲୋକ ଚାଲି ଚାଲି ଅଫିସ୍ ଯାନ୍ତି, ନିଜର ମଟର ଥିଲେ ବି। କାରଣ ଗାଡ଼ି ପାର୍କ କରିବାକୁ ଜାଗା ନାହିଁ। ଗାଡ଼ି ରଖିବାର ଖର୍ଚ୍ଚ ମଧ୍ୟ ଅଳ୍ପ ନୁହେ—ଘଣ୍ଟାକୁ ଦୁଇ ସିଲିଂ। ସନ୍ଧ୍ୟା ପରେ କମ୍ପା ରହିବାର ହେଲ ପାର୍କିଂଖର୍ଚ୍ଚ ଦେବାକୁ ହେବେ ନାହିଁ।

କେଣ୍ଟ ର ଏଇ ଅଞ୍ଚଳ କେତେକାଂଶରେ ଭାରତ ପରି; ଘରଗୁଡ଼ିକ ଛୋଟ ଛୋଟ, ରାସ୍ତା ଅଣଓସାରିଆ। ପାର୍କରେ ଛିଣ୍ଡା କାଗଜ। ଫୁଟପାଥରେ ଲୋକ ଭିଡ଼; ଆମେରିକାର ସ୍କାଇସ୍କେପର୍ ଉପରେ ଉଡ଼ି ବୁଲୁଥିବା ଆଖି ତଳକୁ ଖସି ଆସିଲା ପରି ଲାଗିଲା। ସବୁ ଯେପରି ଦରିଦ୍ର, ମଳିନ; ଅନେକ କଷ୍ଟ ଜରାଜୀର୍ଣ୍ଣ। ଗାଡ଼ିର ସେଭଳି ଚକଚକ୍ୟ ନାହିଁ; କେତେକ ରଙ୍ଗଛଡ଼ା ପୁରୁଣା ଫେସନର ଗାଡ଼ି ଚାଲିଛି, ଦୃଷ୍ଟିକଟୁ ହେଉନାହିଁ; ଅବସ୍ଥାକୁ ଚାହିଁ ବ୍ୟବସ୍ଥା। ୭୯, କାମେରନ୍ ରୋଡ଼, ବ୍ରମଲେରେ ଆମେ ପହଞ୍ଚିଲୁ।

ଇସାର ପାଇ ଜ୍ୟୋତ୍ସ୍ନା ପଦାକୁ ଚାଲି ଆସିଥିଲା; ଜ୍ୟୋତ୍ସ୍ନା କ୍ଷୀଣାଙ୍ଗୀ। ଶାଢ଼ୀ ପିନ୍ଧିଛି, ମୁଣ୍ଡରେ ଛୋଟ ଛୋଟ ବାଳ। କପାଳରେ ସିନ୍ଦୂର ବିନ୍ଦୁ; ମାନ୍ଦ୍ରାଜରେ ବି. ଏ ପାସ୍ କରିଛି। ଯେପରି ଚମତ୍କାର ହିନ୍ଦୀ ସେହିପରି ଇଂରେଜୀ ମଧ୍ୟ କହୁଛି। ତାର ଦୁଇଟି ପୁଅ, ସଞ୍ଜୀବ, ବିବେକ; ସେମାନେ

ମାଆ ବାପାଙ୍କ ସଙ୍ଗେ ହିନ୍ଦୀରେ କଥାଭାଷା ହେଉଛନ୍ତି । ଦୁହେଁଯାକ କିଣ୍ଡର ଗାର୍ଟନ ସ୍କୁଲରେ ପଢ଼ନ୍ତି । ଜୋତ୍ସ୍ନା ଫରାସୀଭାଷା, ସର୍ଟହାଣ୍ଡ ଓ ଟାଇପ ରାଇଟିଂ ଶିଖୁଛି । ସେ କିଛି ରୋଜଗାର କରି ସୁରେନର ଆୟ ସଙ୍ଗେ ନିଜ ଆୟ ମିଶାଇ ଦେବ । ଜୀବନର ମାନ ବଢ଼ିବ ।

ଘରେ ତିନୋଟି ଛୋଟ ଛୋଟ କୋଠରୀ; ଗୋଟିଏ ହଲ୍—ଏଥିରେ ଟେଲିଭିଜନ, ରେଡ଼ିଓଟିଏ; ଦୁଇଟି ଶୁଆ, ପେଟ ତଳ ଶାଗୁଆ । ପିଠି ଧଳା କଳା ରଙ୍ଗରେ ଚିତ୍ରିତ । ଶିଖେଇଲେ କଥା କହିବେ—ଦୋକାନୀର ବିଜ୍ଞାପନ । ଏମାନେ ଅଶିକ୍ଷିତ । ଜୋତ୍ସ୍ନା କଣ ଶିଖାଇବ ସେ ଜାଣେ । ଏବେ ଅରଣ୍ୟର ଭାଷା କହୁଛନ୍ତି । କେଣ୍ଟରେ ସ୍ୱତନ୍ତ୍ର 'ପେଟ୍' (pet) ଦୋକାନ ଅଛି । ସେଠି କୁକୁର, ବିରାଡ଼ି, ଗିନିପିଗ୍, ବନି ରାବିଟ୍, କାକତୁଆ, କାର୍ଡିନେଲ୍ ଆଦି ନାନା ପଶୁ ପକ୍ଷୀ କିଣିବାକୁ ମିଳନ୍ତି ।

ଏ ଘର ଶୀତାତପ ନିୟନ୍ତ୍ରିତ ନୁହେଁ । କେବଳ ବୈଠକ ଘରଟି ଉଷ୍ଣ ରଖିବା ଲାଗି ବିଜୁଳି ଚୁଲ୍ଲୀଟିଏ ଅଛି । ସେଇ ବୈଠକ ଘରେ ଭୋଜନ ଟେବୁଲ୍; ପିଲାଙ୍କ ଖେଳଘର ବି ସେଇ, ସୁରେନର ପଢ଼ାଘର, ଜୋତ୍ସ୍ନା ବହୁ ସମୟ ଏଇ ଘରେହିଁ କଟାଏ; ଅତିଥିଶାଳା ରୂପେ ସାମୟିକ ଭାବେ ଏହି ଗୃହଟି ବ୍ୟବହୃତ ହୋଇଥାଏ ।

ବାଡ଼ ପଟ ପାଚେରୀ ଘେରା; ପାଞ୍ଚସାତ ହାତ ଲମ୍ବ, ଘାସ ମଡ଼ିଆ ଖଣ୍ଡେ ଏଠି ଅଛି । ଗୋଟିଏ ଦୋଳି ଲାଗିଛି । ଖେଳଣାରେ ମନ ନ ଲାଗିଲେ ଧନଞ୍ଜୟ, ବିବେକ ଏଠି ଦୋଳି ଖେଳନ୍ତି ।

କେଣ୍ଟ୍ ଆଉ ସେଣ୍ଟ୍ ଲୁଇସ୍‌ର ଖାଦ୍ୟମାନରେ ତାରତମ୍ୟ ଅନେକ ବେଶୀ । ଏହା ଆମେରିକା ଓ ଇଂଲଣ୍ଡର ଜୀବନଗତ ମାନର ତାରତମ୍ୟ ନୁହେଁ; ଯଦି ବା ତାହା ପଦାରୁ କିଛି କିଛି ଅନୁଭୂତ ହୁଏ । ଏହା ବ୍ୟକ୍ତିଗତ ଆୟର ତାରତମ୍ୟ । ଉଦୟ ମାସକୁ ପାଞ୍ଚ ହଜାର ଡଲାର୍ ରୋଜଗାର କରେ, ସେଥିରେ ଇରାର ଆୟ ମଧ୍ୟ ମିଶେ । ସୁରେନ୍‌ର ରୋଜଗାର ତା ତୁଳନାରେ ଖୁବ୍ କମ୍ । ସେ ତାର ଭାରତୀୟ ବେତନ ପାଉଣ୍ଡ ରୂପେ ଏଠି ପାଇଥାଏ । ଇଂଲଣ୍ଡରେ ଭାରତୀୟ ବେତନରେ ଚଳିବା

ବଡ଼ କଷ୍ଟକର । ନୂତନ ମୁଦ୍ରା ମୂଲ୍ୟାୟନରେ ତାର ମୂଲ୍ୟ କମି ଆସିଛି । ଘରଭଡ଼ା ଯଥେଷ୍ଟ ଦେବାକୁ ପଡ଼େ । ତେଣୁ ସାଧାରଣ ଭାରତୀୟ ମଧ୍ୟବିତ୍ତ ପରିବାରଠାରୁ ଉଚ୍ଚତର ସ୍ତରରେ ଚଳିବା ସମ୍ଭବପର ନୁହେ । କେତ-ଜଣ ଚାକରାଣୀଟିଏ ଆଣି ରଖିଛନ୍ତି । ସେ ଇଂରାଜୀ ବୁଝେ, ମୋ କଥା ବୁଝୁନାହିଁ ।

କେବଳ ହସରେ ପରିଚୟ । ପଲ୍ଲୀ ସାରଲ୍ୟର ମୂର୍ତ୍ତି ପ୍ରତୀକ, ହସଟିଏ ଦେବା ଲାଗି ସେ ସଦା ପ୍ରସ୍ତୁତ; ଅବଶ୍ୟ ଏହା ବାହୁଲ୍ୟ ବିବର୍ଜିତ, ଫୁଟୁ ଫୁଟୁ ସେ ମିଳେଇଯାଏ । କ୍ଷଣପ୍ରଭା ପରି କ୍ଷଣିକ ହେଲେ ବି ତାର ଗାର ଗଭୀର ହୋଇ ମନରେ ଅଙ୍କିତ ହୋଇଯାଏ ।

ତରକାରୀରେ ଦରଦାମ ଟିକଏ ବେଶୀ; ତଥାପି ସୁରେନ୍ ଭାରତରୁ ଆସିଥିବା ଲଙ୍କା ଆଚାର ବୋତଲ ଫଟାଇଲା । ସାନ ପୁଅ ଝିଅ ଭିତରେ ଲଢ଼ାଇ ମାରୁଛି ଦାଣ୍ଡରୁ ବାଡ଼ି, ବାଡ଼ିରୁ ଦାଣ୍ଡ,— ଏକ କୌତୁକ ଖିଆ-ଲରେ । ଜୋଷ୍ଣ ନାଙ୍କଚକ୍ରବର୍ତ୍ତୀ ଦୋକାନରୁ ସଉଦା ଘେନି ଫେରିଲା । ଦରଦାମ ସମ୍ପର୍କରେ ପଚାରିଲାରୁ କହିଲା— ଏ ଦେଶରେ ଦର ବଢ଼ିନାହିଁ, ଦରମା ବଢ଼ିନାହିଁ । ମୁନାଫାଖୋରର ସ୍ଥାନ ଏ ଦେଶରେ ନାହିଁ ।

'ଏ ଦେଶର ଅର୍ଥଶାସ୍ତ୍ରଜ୍ଞ, ରାଜନୀତିକ ଓ ସଂଗଠକମାନଙ୍କର ଦୂରଦୃଷ୍ଟିର ଫଳ ଏ ।'

'କିନ୍ତୁ ସେଇ ଐତିହାସିକ ସାଧୁତା ଦୈନନ୍ଦିନ ଅନୁଭୂତିରେ ତ ମିଳୁନାହିଁ । ଟିକଏ ନଜର ନ ଦେଲେ ଏଠା ଦୋକାନୀ ଠକି ଦିଅନ୍ତି । ନିଜେ ଦୋକାନରୁ ଜିନିଷ ବାଛି ଆଣିବାର ଉପାୟ ନାହିଁ । ବନ୍ଧୁକ ଦେଖାଇ ଟଙ୍କା ଛଡ଼ାଇନେବା ଏ ଦେଶର ଏକ ନିତ୍ୟ ନୈମିତ୍ତିକ ବ୍ୟାପାର ।

ଜୋଷ୍ଣର ପଡ଼ୋଶୀ ଗୋଟିଏ ବୁଢ଼ୀ । ନାଆଁ—ଫ୍ରେଷ୍ଟ୍ରୁଜଣ୍ଡ, ବାଳ କେଇଟି ଧୋଳା । କିନ୍ତୁ ଚକ୍ଷୁ ଦୁଇଟି ଉଜ୍ଜ୍ୱଳ, ସ୍ନେହଶୀଳ । ଜଣେ ନୂଆ କୁଟିମ୍ବ ଅସିଛନ୍ତି ଶୁଣି ସେ ଜୋଷ୍ଣ ଘରକୁ ଆସି ମୋର ପରିଚୟ ନେଲା । ତା ବିଷୟ ପଚାରିଲାରୁ କହିଲା—ମୋର ଦୁଇଟି ପୁଅ,

ଗୋଟିଏ ନଉସ୍ୱର୍କରେ, ଆଉ ଗୋଟିଏ କାନେଡାରେ; ସ୍ୱାମୀ ସ୍ୱର୍ଗପୁରରେ । ତଥାପି ମୁଁ ଦୁଃଖିତ ନୁହେଁ । ନିଜ ଗୋଡ଼ରେ ଛିଡ଼ା ହୋଇ ମୁଁ ରହିଛି ।

କହିଲ— ତୁମକୁ ଏଠା ଶରତ୍ କାଳ ସଙ୍ଗେ ତୁଳନା କରିବାକୁ ଇଚ୍ଛା ହେଉଛି, ସେ ସବୁ ହରାଇ ବି ଅପ୍ରସନ୍ନ ନୁହେଁ । ଜୀବନସର୍ବସ୍ୱଙ୍କୁ ହରାଇଛ, ଦୁଃଖିତ ହୋଇ ଆଉ ଯାହା କିଛି ସୁଖଶାନ୍ତି ଅଛି, ତାକୁ ହରାଇବ କାହିଁକି ?'

ଓ୍ୱେଷ୍ଟଉଇଣ୍ଡ୍ କହିଲ—ଜୀବନ କ୍ଷଣସ୍ଥାୟୀ ।

'ଯେ ସୁଖୀ ତା ପାଇଁ··· କିନ୍ତୁ ଯେ ଦୁଃଖୀ ତାର ଗୋଟିଏ ଦିନ ଗୋଟିଏ ବର୍ଷ ପରି । ଆମ ଓଡ଼ିଶାରେ ଗୋଟିଏ ପ୍ରବଚନ ଅଛି—ସୁଖର ଦିନ ଘୋଡ଼ାରେ ଛୁଟେ । ଏ ଜୀବନ; ଜୀବନରେ ଗଣିତର ଫର୍ମୁଲା ଚଳେ ନାହିଁ ।'

'ଏଠି କଣ ବିଶେଷ ଦର୍ଶନୀୟ' ପଚାରିଲରୁ ବୃଦ୍ଧା କହିଲ— ଚର୍ଚ୍ଚିଲଙ୍କ ଘର ଦେଖ, ଓ୍ୱେଷ୍ଟ ମିନିଷ୍ଟର ଆବେରେ କବି, ଲେଖକ, ବଡ଼ଲୋକଙ୍କ ସମାଧି ଦେଖ, କଳା କେନ୍ଦ୍ର ଓ ଯାଦୁଘର ଦେଖ ।

ପାଞ୍ଚଟା ବେଳକୁ ବୁଲାଗଲି; କ୍ଷୁଦ୍ର କ୍ଷୁଦ୍ର ଦ୍ୱାର ପ୍ରାଙ୍ଗଣ, କେଉଁଠି ଇଞ୍ଚେ ଜାଗା ଖାଲି ନାହିଁ; ଈଷତ୍ ଲାଲ୍ ପେଣ୍ଟା ପେଣ୍ଟା ହାଇଡ୍ରାନ୍‌ଜିଆ, ଆଇସ୍‌ବର୍ଗ ରୋଜ୍, ଗାଢ଼ ଲାଲ୍ କରେନିସ୍ମମ୍ , ଗାଢ଼ ନୀଳ ଲୋବିଲିଆ, ଅଳ୍ପ ଲାଲ୍ ଧଳା ଲଇଲକ୍, ଅଳ୍ପ ନୀଳ ମାଇକେଲ୍‌ମାସ୍ ଡେଜିଜ୍, ବହୁ ପ୍ରକାର ଡାଲିଆ, ପୋଟୋନିଆଁ, ଗେଣ୍ଡୁ ଓ ଗୋଲାପ ଦେଖି ମନ ଉତ୍ଫୁଲ୍ଲତାରେ ପୂରି ଉଠିଲା । ହୋଲି—କଣ୍ଟାପତ୍ର, ପତ୍ରର ଧାର ଅଳ୍ପ ଧଳା, ଫଳ ଲାଲ; 'ଇଉ' ବାଡ଼; ଆପଲ୍, ପିଅର୍, ପିଚ୍, ଚେଷ୍ଟନଟ୍, ଘାସର ଟ୍ଲେଟ ଟ୍ଲେଟ ପଟାଳି, ଗାଢ଼ ସବୁଜ । କାହା ଦୁଆରେ ବଗିଚା ନାହିଁ ? ଦ୍ୱାର ସଜେଇବା ଏକ ଜାତୀୟ ରୁଚି, ବ୍ୟକ୍ତି ରୁଚିରେ

ଭିନ୍ନ ଭିନ୍ନ ହେଲେ ବି । ଇଂରେଜ ସନ୍ତଶୀଳତାର ଏକ ସ୍ଥୂଳ ପରିଚୟ ମିଳିଥାଏ ଏଇ ବୃକ୍ଷବାଟିକାମାନଙ୍କରୁ ।

କେଣ୍ଟ୍ ଅବଶ୍ୟ ଏକ ଉଦ୍ୟାନନଗରୀ ହିସାବରେ ପ୍ରସିଦ୍ଧ । ଏଠାର ଫୁଲ ଓ ଫଳ ଇଂଲଣ୍ଡର ବଡ଼ ବଡ଼ ନଗରମାନଙ୍କରେ ବିକ୍ରୀ ହୋଇଥାଏ ।

ଆଜି ଟେଲିଭିଜନରେ ଦେଖିଲି—ଅକ୍ସଫୋର୍ଡ ଓ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ସାଧାରଣଜ୍ଞାନ ପ୍ରତିଯୋଗିତା— ପୃଥିବୀର ପ୍ରଧାନ ପ୍ରଧାନ ନଗର, ବିଶିଷ୍ଟ କବି ଓ ସାହିତ୍ୟିକ, ନେତା ଓ ମହାତ୍ମା, ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ ସମ୍ପର୍କରେ ନାନା ପ୍ରଶ୍ନ ଓ ଉତ୍ତର ବଡ଼ କୌତୁକପ୍ରଦ ହୋଇଥିଲା ।

## ବ୍ରମ୍ଲେ ସାଉଥ୍‌ରୁ ଲଣ୍ଡନ (୨୯।୯।୭୬)

ସୁରେନ୍‌ର ବସାଠାରୁ ଦୁଇ ମାଇଲ୍ ଦୂରରେ ବ୍ରମ୍ଲେ ସାଉଥ୍ ଷ୍ଟେସନ । ସେ ପ୍ରତିଦିନ ନିଜ କାର୍‌ରେ ଯାଇ ଷ୍ଟେସନ୍ ପାଖ ଗୋଟିଏ କୋଣରେ ଗାଡ଼ି ପାର୍କ କରେ । ରାତି ଆଠ; ସେଇ ଗାଡ଼ିରେ ସେ ଷ୍ଟେସନରୁ ଘରକୁ ଫେରେ ।-

ପ୍ରାୟ ସାଢ଼େ ସାତ, ମେଘୁଆ ସକାଳ; ପ୍ଲାଟ୍‌ଫର୍ମ ଲୋକରେ ଭରି ଉଠିଲାଣି । ଆମେ ଏକ୍ସପ୍ରେସ୍‌ରେ ଚଢ଼ିଲୁ; ଭାରି ଭିଡ଼ । ଛିଡ଼ା ହେବାକୁ ପଡ଼ିଲା । ଦି ପାଖ ଘରସବୁ କୁହୁଡ଼ିରେ ଘୁଞ୍ଚି ଘୁଞ୍ଚିଆ ଦିଶୁଥାଏ । ସ୍ଲମ୍ ଏରିଆର ଠିକ ଠିକ ଘର, କୋଉଠି କେମିତି ଖଣ୍ଡେ ଖଣ୍ଡେ ଗୃହଜମି, ଟେନାଏ ଟେନାଏ ଫୁଲ ବଗିଚା, ଆଖିକି ଜାଣିନେବା ଆଗରୁ ଖସି ଯାଉଥାଏ । ଟେମ୍ସ୍ ନଦୀର ସେତୁ ଉପରକୁ ଗାଡ଼ି ଉଠିଲା । ଦେଖୁ ନ ଦେଖୁ ସେ ଦୂରେଇ ଗଲା । ଏଇ ନଦୀଟିରେ ତ ବହୁ ସେତୁ—ଆଲ୍‌ବର୍ଟ ବ୍ରିଜ୍, ଲମ୍ବେଥ୍ ବ୍ରିଜ୍, ଓ୍ୱେଷ୍ଟ ମିନିଷ୍ଟର ବ୍ରିଜ୍, ଓ୍ୱାଟର୍‌ଲୁ ବ୍ରିଜ୍, ଟାଓ୍ୱାର୍ ବ୍ରିଜ୍, ଲଣ୍ଡନ ବ୍ରିଜ୍ ଇତ୍ୟାଦି ।

ଟେମ୍ସ୍ ଗ୍ରେନ ସିନା, ମହା ମହାନଗରୀଠାରୁ ଅଧିକ ମହିମାମୟୀ । ଏହାର ଗ୍ରାରେ ଗ୍ରାରେ ଶତ ବାଣିଜ୍ୟ କୋଠି; ଶତ ଲକ୍ଷ୍ମୀଙ୍କ ଭଣ୍ଡାର ଘରର ଗୃହ ଧନେ ଥିଲ ଲଣ୍ଡନକର ହାତରେ । ଟେମ୍ସ୍ ସରସ୍ୱତୀ, ଏହାର ଗ୍ରାରେ ଗବେଷଣାର ଅଦ୍ୟ ଓଙ୍କାର ଝଙ୍କୃତ ହୋଇଥିଲ ।

ଟେମ୍ସ୍ ଗୁଡ଼ିଲେ ଲଣ୍ଡନର କଳ୍ପନା ହୁଏନା, ଯେମିତିକି ଲଣ୍ଡନକୁ ଗୁଡ଼ିଦେଲେ ଇଂଲଣ୍ଡର । ଲଣ୍ଡନର ଅକଳନ୍ତ ସମ୍ପଦ ଏହାର ସ୍ରୋତରେ ହିଁ ବୁହା ହୋଇ ଆସିଥିଲ । ଜଗତର ଇତିହାସକୁ ନିଜବାଟେ ନେବା ଲଗି ଲଣ୍ଡନକକୁ ଟେମ୍ସ୍ ଦେଇଛି ପ୍ରେରଣା । ଇଂରେଜ ଚରିତ୍ରକୁ ବେଗବାନ୍ କରିଛି ସେ ! ତାର ସେପରି କଳଧ୍ୱନି ନାହିଁ, ଇଂରେଜ ବି କଥା କୃପଣ । ଶ୍ରମ ତାର ସଙ୍ଗୀତ, କର୍ମ ତାର ଶକ୍ତି । ପ୍ରାକୃତିକ ଦୃଷ୍ଟିରୁ ସେ ଶ୍ରୀମତୀ ନୋହିପାରେ, କିନ୍ତୁ ସେବାବତୀ, କାନ୍ଧରେ ତାର ଲକ୍ଷ୍ମୀ, କଣ୍ଠରେ ସରସ୍ୱତୀ, ତରଙ୍ଗେ ତରଙ୍ଗେ ଦୁର୍ଗା ।

ଭିକ୍ଟୋରିଆ ଷ୍ଟେସନରେ ଆମେ ଓହ୍ଲାଇଲୁ । ମଣିଷର ସୁଅ ଛୁଟିଥାନ୍ତି । ଲୋକଙ୍କୁ ବିଭିନ୍ନ ଅଫିସ୍‌କୁ ନେଇ ଯିବା ଲଗି ଷ୍ଟେସନରେ ବସ୍‌ସବୁ ଛିଡ଼ା ହୋଇଛନ୍ତି । ଦେହରୁ ଶୀତ ଛଡ଼େଇବା ଲଗି ଆମେ ଚାଲି ଚାଲି ଗଲୁ । ଦୁଇ ପାଖେ ଗଗନସ୍ପର୍ଶୀ ସୌଧସବୁ; କିନ୍ତୁ ଗୃହତତ୍ତ୍ୱ ବିହୀନ, ଯୁଗ ଯୁଗର କଳଙ୍କି ଯେପରିକି ବସି ଯାଇଛି ! ବକିଂହାମ୍ ପାଲେସ୍ ! ପଛରେ ବଗିଚା, ଆଗରେ ଭିକ୍ଟୋରିଆଙ୍କ ସ୍ମୃତି ମନ୍ଦିର— ମୂର୍ତ୍ତି, ବଗିଚା, ଘାସ ପଡ଼ିଆ, ଫୁଆରା ।

ତାପରେ ଆମେ ଗ୍ରିନ୍ ପାର୍କରେ ପଶିଲୁ । ବୁଢ଼ା ବୁଢ଼ୀ ଓକ୍‌ସବୁ ବୟସର ଗାମ୍ଭୀର୍ଯ୍ୟ ନେଇ ଛିଡ଼ା ହୋଇଛନ୍ତି—ଦାବୀ କରୁଛନ୍ତି ଶ୍ରଦ୍ଧା, ସମ୍ମାନ । ସତେ ଯେପରି ବର୍ଣ୍ଣିବେ ବର୍ଣ୍ଣାତ୍ୟ ଅନୁଭୂତି—ଏ ଜାତିର ଉତ୍ଥାନର ଇତିହାସ, ବତାଇଦେବେ ଅଗ୍ରଗତିର ସ୍ପନ୍ଦନକୁ, ପ୍ରଳୟ ସ୍ରୋତରେ ଅଟଳ ରହିବାର ସଙ୍କଳ୍ପ, ବାଧାବିପତ୍ତି ଲଘିଂବାର ପୌରୁଷ—ଏ ଜାତି ଭାଙ୍ଗିନାହିଁ, ଭାଙ୍ଗିବ ନାହିଁ, ଏହିପରି ଏକ ଆତ୍ମବିଶ୍ୱାସ ।

ଜଗତର ରଙ୍ଗମଞ୍ଚରେ ଏବେ ଦେଖା ଦେଉଛନ୍ତି ନବ ନବ ଅଭିନେତା, ଅଭିନୟର ଆଭିମୁଖ୍ୟ ବଦଳିଛି । ପୁରୁଣା ପାଣ୍ଡୁଲିପି ପରି ପଡ଼ି ରହିଛି ବକିଂହାମ ପାଲେସ, ଯଦ୍ଧି ବା ତାର ବାଦ୍ୟଝଙ୍କାର, ଯାହା ଦିନେ ସମୁଦ୍ର ଗର୍ଜନକୁ ଡୁବେଇ ଦେଉଥିଲା, ତାହା ଏବେ ବି ଥମିନାହିଁ । ଗାର୍ଡର ପୋଷାକରେ ମଧ୍ୟଯୁଗର ଯେଉଁ ରୂପ ଏବେ ବି ଲାଗି ରହିଛି—କଳା ପ୍ୟାଣ୍ଟ, କଳା ମୁକୁଟ, ନାଲି କୋଟ, କିନ୍ତୁ ସବୁ ବେତାଳିଆ ଶୁଭୁଛି, ଆଧୁନିକ ଯୁଗ ସଙ୍ଗୀତ ସହିତ ତାର ମେଳ ନାହିଁ । ତଥାପି ଅତୀତର ଗୌରବକୁ ପଦେ ପଦେ ସ୍ମରଣ କରି ବଞ୍ଚିବାକୁ ଚାହେଁ ଇଂରେଜ, ତା ସହିତ ନୂତନ କିଛି ଯୋଗ କରି, ମହିମାର, ମହତ୍ତ୍ୱର; ସେ ବୁଦ୍ଧି ଖେଳାଉଛି, ବାଟ ଖୋଜୁଛି ।

ଆମେ ଭାରତୀୟ ନୌ ଅଫିସରେ ପହଞ୍ଚିଲୁ—କେତେ ମହଲା ଉପରେ । ଇଂଲଣ୍ଡ ସଙ୍ଗେ ଭାରତର ଜାହାଜ କଣାବିକା କାରବାର ଏହି ଅଫିସ ଜରିଆରେ ଚାଲେ । ଭାରତର ନୌ ବିଶେଷଜ୍ଞମାନେ ଜାହାଜର ଅବସ୍ଥା ପର୍ଯ୍ୟବେକ୍ଷଣ ଓ ଦରଦାମ ସ୍ଥିର କରନ୍ତି । ସୁରେନର କର୍ମକ୍ଷେତ୍ର ଏ । ସେ ମୋତେ ନୌ ଅଫିସରମାନଙ୍କ ସହିତ ପରିଚିତ କରେଇ ଦେଲା । ଇଂରେଜର ବର୍ତ୍ତମାନ ଅବସ୍ଥା ସମ୍ପର୍କରେ କଥା ପଡ଼ୁ ପଡ଼ୁ ଲେଫଟନାଣ୍ଟ କମାଣ୍ଡର୍ ଶ୍ରୀ ପଦମାନ କହିଲେ—

ଇଂରେଜ ଏକ ପୁରୁଣା ମହାଜନ, ତାର ଉଭା ଯେତେ, ପୋତା ଯେତେ । ତିନି ପୁରୁଷରେ ବଡ଼ ଘର ଭାଙ୍ଗେ, ଏ ଏକ ନୈରାଶ୍ୟବାଦୀର ବିଶ୍ୱାସ । ଏ ମହାଜନ ପୁଅ ବଡ଼ ଚତୁର । ସେ ବଡ଼, କିନ୍ତୁ ତାର ବଡ଼ଲୋକି ନାହିଁ । ସେ ସଉକୀ, କିନ୍ତୁ ସଉକିଆମିରେ ସମ୍ପତ୍ତି ବରବାଦ୍ କରେ ନାହିଁ । ସେ ନିଶା ଖାଏ, କିନ୍ତୁ ନିଶାଖୋର୍ ନୁହେଁ, ପଶା ଖେଳେ, କିନ୍ତୁ ଜୁଆଡ଼ୀ ନୁହେଁ । ସେ ବାହା ପିଟି ସାମ୍ରାଜ୍ୟ କରିଥିଲା । ସାମ୍ରାଜ୍ୟର ଦିନକାଳ ଗଲା । ସାମ୍ରାଜ୍ୟ ଭାଙ୍ଗିଲା, କିନ୍ତୁ ସେ ଭାଙ୍ଗିଲା ନାହିଁ । ତା ଦେହରେ ଚର୍ବି ନ ଥିଲା, ଫମ୍ପା ବା ଫଟ୍ସା କିଛି ନ ଥିଲା । ଏବେ ତେଣୁ ମେରୁଦଣ୍ଡ ଟେକି ଇଂରେଜ ଛିଡ଼ା ହୋଇଛି । ଯୋଉଁ ପଇସା ଜମେଇ ରଖିଥିଲା, ସେ ତାକୁ ଅସୁସରେ ଉଡ଼େଇ ଦେଇନାହିଁ । ସେ

ଟଙ୍କା ଖେଳଉଛି; ତାର ଅର୍ଥନୈତିକ ସାମ୍ରାଜ୍ୟ ବ୍ୟାପିଛି ଦିଗେ ଦିଗେ । ତାର ଶାଖା ଯେପରି ଅଗଣିତ, ତେର ସେହିପରି ବହୁଦୂର-ଗାମୀ । କଳକଦର ଜାଣେ ସେ । ଭବିଷ୍ୟତ ଦୃଷ୍ଟି ତାର ଅଛି । ଟଙ୍କା ଖେଳେଇ ଖେଳେଇ ସେ ଭାବୁଛି—ତିନି ପୁରୁଷ ଚଳିଯିବ । ଦୁର୍ଭାଗ୍ୟଗ୍ରସ୍ତ ମହାଜନ ପୁଅ ପରି ସେ ଏକ ଢଙ୍ଗେ ଟାଳୁନାହିଁ, ପ୍ରାସାଦର ପଥର ଛାଡ଼ିବାକୁ ପଡ଼ୁନାହିଁ । ପୁରୁଣା ବୁନିଆଦିର ମାନ୍ ରକ୍ଷା କରିଚାଲିଛି, ଅତି କୌଶଳରେ ।

ଟଙ୍କା ଗୁଣ୍ଡି ବଣ୍ଟି ପକେଇଛି ସେ—ଭାରତରେ, ଅଷ୍ଟ୍ରେଲିଆରେ, କାନାଡ଼ାରେ, ଆଫ୍ରିକାରେ—ଯେଉଁଠି ତାର ପୁରୁଣା ଯୋଗସୂତ୍ର ଥିଲା । ମୃଣ୍ମୟ ସାମ୍ରାଜ୍ୟ ସେ ଛାଡ଼ିଛି, ସୁବର୍ଣ୍ଣ ସାମ୍ରାଜ୍ୟ ଗଢ଼ିବ ବୋଲି । ବହୁ ଦେଶ ଏବେ ସ୍ୱାଧୀନ, କିନ୍ତୁ ଅର୍ଥନୈତିକ ଦିଗରୁ ପରାଧୀନ । ଅବଶ୍ୟ ଇଂରେଜ ଏକମାତ୍ର ମହାଜନ ନୁହେଁ, ଆହୁରି ବଡ଼ ବଡ଼ ମହାଜନ ବାହାରିଲେଣି—ଆନ୍ତର୍ଜାତିକ ସ୍ତରରେ ମହାଜନୀ କାରବାର ଖୁବ ଘନେଇଛି ।

ସୁରେନ୍ ମୋତେ ବ୍ରଥ୍ ଓ କୁକ୍' କମ୍ପାନୀ ଅଫିସ୍‌କୁ ନେଇ ଗଲା । ସେଠି ତିରିଶ ଡଲାରର ଟ୍ରାଭେଲର୍ସ ଚେକ୍ ଭଙ୍ଗାଇ ପାଉଣ୍ଡ, ସିଲିଙ୍ଗ୍‌ନୋଟ ଓ ସିଲିଙ୍ଗ ଟଙ୍କ ଆଣିଲି । 'ବ୍ରଥ୍ ଓ କୁକ୍' ଏକ ବ୍ୟବସାୟୀ ଭ୍ରମଣକାରୀ ସଂସ୍ଥା—ଲଣ୍ଡନ ଓ ଆଖ ପାଖ ଅଞ୍ଚଳ ବୁଲାଇ ଦେଖାଇଥାଏ । ବସ୍‌ରେ ବସିଲି । ଦି ଜଣ ଇଂରେଜ ଶ୍ରମିକ କାଗଜ ବଣ୍ଡା କାନ୍ଧେଇ ଫୁଟପାଥରେ ଧାଇଁଥାନ୍ତି । ପାତଳା ମେଘ ଭିତରେ ସୂର୍ଯ୍ୟ । ଫଡ଼ ଫଡ଼ କରି ଉଡ଼ି ଯାଉଥାନ୍ତି ପାରା । ଆକାରରେ ଆମ ଅଡ଼ ପାରାର ଦିଗୁଣ ।

'ଗୋଲଡେନ୍ ନଗ୍‌ଗେଟ'? ଏଠି କାସିନୋ ଅଛି । ଏହା ମୁଖ୍ୟତଃ ଭ୍ରମଣକାରୀଙ୍କ ଲାଗି ଉଦ୍ଦିଷ୍ଟ; ଲଣ୍ଡନ ଲୋକେ ଦଶା ଖେଳନ୍ତି; ବୁଝିଲେ ସାତ ସମୁଦ୍ରରେ ସେମାନଙ୍କ ପଶାପାଲି ବନ୍ଦ ହୋଇ ରହିଛି । ସବୁ ଜାତିର ଜୀବନକୁ କାଠି କରି ସେମାନେ ଗଡ଼ାଇ ଆସିଛନ୍ତି, ବେଳେ ବେଳେ ଶକୁନି ଭଳି; ଧନ ମାନ ମର୍ଯ୍ୟାଦା ସବୁ ଯାଇଛି—ଯୁଜେଷ୍ଟି ମାନଙ୍କ ନିଦ୍ରା ଭାଙ୍ଗିଲା ବେଳକୁ ଗଡ୍ ଫତେ ।

ଗୋଟାଏ ଛତା ଦୋକାନ ପଡ଼ିଲା; ଆଉ କିଛି ନାହିଁ, କେବଳ ଛତା । ବେଶ୍ ପକେଟରେ ନେଇ ହେବ । ଏଠା ପ୍ରକୃତିକୁ ବିଶ୍ୱାସ ନାହିଁ, ତାର ଏ ଆଖିରେ ହସ, ଆର ଆଖିରେ ଲୁହ । ସେ ହସି ହସି ଗଡ଼ୁଥିବ, ପୁଣି ହଠାତ୍ ମୁହଁକୁ କୁହୁଳେଇ ପକେଇବ । ବର୍ଷାର ଅପେକ୍ଷା ଛତାର ବ୍ୟବହାର ଏଠି ଅଧିକ ।

## ଟ୍ରାଫାଲ୍‌ଗାର୍ ସ୍କୋୟାର

ପୃଷ୍ଠ ଦେଶରେ ଜର୍ଜ ଓ୍ୱାସିଂଟନ୍ ଓ ରାଜା ଜର୍ଜ ଚତୁର୍ଥଙ୍କ ମୂର୍ତ୍ତି । ଏକ ଦୀର୍ଘ ସ୍ତମ୍ଭର ଅଗ୍ରଭାଗରେ ନେଲ୍‌ସନ୍; ସ୍ତମ୍ଭ ଚତୁର୍ଦ୍ଦିଗରେ ଯୁଦ୍ଧର ନାନା ଦୃଶ୍ୟ । ସ୍ତୂର ଢଗକୁ ଚାରୋଟି ବିରାଟ ସିଂହ ମୋହିଁଛନ୍ତି, ସତେ ବା ଲମ୍ଫ ଦେବେ ! କିନ୍ତୁ ଏବେ ଅନ୍ୟ କାହା ଉପରକୁ ?

ନେଲ୍‌ସନ୍ ନୀଳ ନଦୀରେ ଫରାସୀ ନୌବାହିନୀକୁ ପରାଭୂତ କରି ଇଂରେଜ ନୌବାହିନୀକୁ ଦେଇଥିଲେ ଅଜେୟତାର ମହାନ୍ ଗୌରବ । ସେଇ ସ୍ତମ୍ଭକୁ ଅନାଇଲେ ଇଂରେଜର ଛାତି ଏବେ ବି ଅଭିମାନରେ ଫୁଲି ଉଠେ ।

୧୮୫୭ ଖ୍ରୀଷ୍ଟାବ୍ଦରେ ସିପାହୀ ବିଦ୍ରୋହର ଦମନକାରୀ ଜେନେରାଲ ହାଭେଲକ୍‌ଙ୍କର ଗୋଟିଏ ମୂର୍ତ୍ତି ଦେଖିଲି, ସେହି ସ୍ତମ୍ଭରେ ଖୋଦିତ ହୋଇଛି ତାଙ୍କ ବକ୍ତୃତାର ଏକାଂଶ—

“ସୈନ୍ୟଗଣ, ତୁମମାନଙ୍କର ଶ୍ରମ, ଦୁଃଖକଷ୍ଟ, ବଳବିକ୍ରମ ଏ କୃତଜ୍ଞ ଦେଶ କେବେ ହେଲେ ଭୁଲି ପାରିବ ନାହିଁ ।” ପ୍ରକୃତରେ ଏ ଦେଶ ସୈନିକ, ସାମ୍ରାଜ୍ୟ ନିର୍ମାତାମାନଙ୍କ ସ୍ମୃତି ବହୁଁ ଅଧିକ ପରିମାଣରେ ରକ୍ଷାକରିଛି । ବ୍ରିଟିଶ ବୀରତ୍ୱ ଚତୁର୍ଦ୍ଦିଗରେ ମୂର୍ତ୍ତି, ବ୍ରିଟିଶ ବିକ୍ରମର ସଙ୍ଗୀତ ସର୍ବତ୍ର ଝଙ୍କୃତ ।

ଫୁଆରା ଛୁଟିଛି, ଜମିଛନ୍ତି ହଜାର ହଜାର ପାରା ; ଯାତ୍ରୀମାନେ ସେମାନଙ୍କୁ ଦେଉଛନ୍ତି ଖାଦ୍ୟ । ନିର୍ଭୀକ । କେତେକ ଆସି ବସୁଛନ୍ତି

ଯାତ୍ରୀଙ୍କ କାନ୍ଧରେ, ମୁଣ୍ଡରେ । ଆମେ ଟ୍ରାଫାଲ୍‌ଗାର୍ ସ୍କୋୟାର ଛୁଡ଼ ଗଲୁ ଫାଉଡ୍ରେ ଇଞ୍ଜିନିୟରିଂ କଲେଜ୍, ଲଣ୍ଡନ ବିଶ୍ୱବିଦ୍ୟାଳୟ, ଗ୍ରୋଲ-ଭୋନର ହୋଟେଲ, ଇମ୍ପେରିଆଲ୍ ହୋଟେଲ୍, ରସେଲ୍ ସ୍କୋୟାର୍, ଅକ୍ସଫୋର୍ଡ ଷ୍ଟ୍ରିଟ୍, ବାଣ୍ଟ ଫ୍ଲିଟ୍ ଷ୍ଟ୍ରିଟ୍, ମାଞ୍ଚେଷ୍ଟର ଗାର୍ଡିୟାନ୍, ଡେଲିମିରର୍, ଟାଇମ୍‌ସ ପତ୍ରିକା ଅଫିସ ବାଟେ ଯାଇ ପହଞ୍ଚିଲୁ ଲଣ୍ଡନର ବ୍ୟାଙ୍କ ଅଞ୍ଚଳରେ; ଆକାଶସ୍ପର୍ଶୀ ସୌଧମାଳା, ନୂତନ ଶୈଳୀରେ ନିର୍ମିତ, ରାସ୍ତା ସୁପ୍ରଶସ୍ତ । ଦ୍ୱିତୀୟ ମହାଯୁଦ୍ଧ ବେଳେ ଜର୍ମାନର ବାରମ୍ବାର ବୋମାମାଡ଼ ଫଳରେ ପ୍ରାୟସମସ୍ତ ସୌଧ ଭୂଲୁଣ୍ଠିତ ହୋଇଥିଲା । ଏବେ ତାର ମୃତ୍ତିକାର ସଙ୍କେତ ସ୍ୱରୂପ କେଉଁଠି କେମିତି ଗୋଟାଏ ଗୋଟାଏ ଗୋଟାଏ ଭଙ୍ଗା କାନ୍ଥ ଛିଡ଼ା ହୋଇଛି । ପ୍ରାଚୀନତାର କୌଣସି ଚିହ୍ନ ନାହିଁ । ଭଙ୍ଗା ଗୁଜା ଲଣ୍ଡନର ପର ଗୌରବ ଫେରିଆସିଛି ବର୍ତ୍ତମାନର ରୂପରେ । ଏଠା ଆର୍ଥିକ, ରାଜନୈତିକ, ବ୍ୟବସାୟୀ, ଜନସାଧାରଣ ଗୋଟିଏ ଲକ୍ଷ୍ୟରେ ବାନ୍ଧି ହୋଇଛନ୍ତି—କିପରି ନିଜ ଜାତିକୁ ବଡ଼ କରିବେ । ଜାତିକୁ ତଳେଇଦେଇ କରି ନିଜେ ବଡ଼ ହେବାର ପ୍ରଚେଷ୍ଟା ଏଠି ନାହିଁ ।

## ଗିଲ୍‌ଡ ହଲ୍

ଲଣ୍ଡନ ଟାଉନ୍ ହଲ୍‌ର ପ୍ରାଚୀନ ନାମ ଗିଲ୍‌ଡ ହଲ୍ । ପ୍ରାୟ ଏକ ସହସ୍ର ବର୍ଷ ଧରି ଏହା ନଗରର ଶାସନ କେନ୍ଦ୍ର ହୋଇ ରହିଆସିଛି । ଏଠା କର୍ପୋରେସନ ଗୃହରେ ଇଂଲଣ୍ଡ ଓ ପୃଥିବୀର ବହୁ ଦେଶର କର୍ପୋରେସନ ଓ ମ୍ୟୁନିସିପାଲିଟିମାନ ଗଢ଼ା ଯାଇଅଛି । ୧୧୯୧ ଖ୍ରୀଷ୍ଟାବ୍ଦରେ ଏହି ହଲ୍‌ରେ ଇଂଲଣ୍ଡର ପ୍ରଥମ ମେୟର ନିର୍ବାଚିତ ହୋଇଥିଲେ । ଏବେ ବି ଏଠି ମେୟର୍, ସେରିଫ୍ ନିର୍ବାଚିତ ହେଉଛନ୍ତି ।

୧୮୧୧ ଖ୍ରୀଷ୍ଟାବ୍ଦରେ ଏହି ହଲ୍‌ଟି ପୁଣି ନିର୍ମିତ ହୋଇଥିଲା । ଏ ଦୀର୍ଘ କାଳ ମଧ୍ୟରେ ଏହାର ଦୁଇଥର ମାତ୍ର କିଛି ପରିବର୍ତ୍ତନ କରାଯାଇଛି । ବହୁ ଗୌରବୋଜ୍ଜ୍ୱଳ ପରମ୍ପରା ନେଇ ଏହି ଗୃହ ଏବେ ସଗର୍ବେ ଦଣ୍ଡାୟମାନ ।

ସମ୍ରାଟ ଓ ନେତାମାନେ ଏହି ଗୃହରେ ଅଭିନନ୍ଦିତ । ପୁଣି ବିଶ୍ୱାସ ଘାତକମାନେ ଦଣ୍ଡିତ । ଏଠି ଗନ୍ ପାଉଡର ପ୍ଲଟ୍‌ରେ ସମ୍ପୃକ୍ତ ବ୍ୟକ୍ତି-ମାନଙ୍କର ଶରୀର ହୋଇ କଠୋର ଶାସ୍ତି ବିଧାନ କରାହୋଇଥିଲା । ବହୁ ଦେଶଦ୍ରୋହୀଙ୍କୁ ପ୍ରାଣଦଣ୍ଡ ମଧ୍ୟ ଦିଆ ହୋଇଥିଲା ।

ରାଣୀ ଏଲିଜାବେଥ (୧ମ)ଙ୍କର ଜଣେ ସ୍ପେନୀୟ ଚିକିତ୍ସକ ଥିଲେ । ସେ ବିଷ ପ୍ରୟୋଗ କରି ରାଣୀଙ୍କୁ ବିନାଶ କରିବାଲାଗି ଚେଷ୍ଟା କରିଥିଲେ । ସେତେବେଳେ ଇଂରେଜ ଓ ସ୍ପେନୀୟଙ୍କ ମଧ୍ୟରେ ଯୁଦ୍ଧ ଲାଗିଥିଲା । ଅଭିଯୋଗ ପ୍ରମାଣିତ ହେବାରୁ ଡାକ୍ତରଙ୍କୁ ବିନାଶ କରାଗଲା । ବିଶ୍ୱାସ-ଘାତକଙ୍କୁ ଇଂରେଜ ସରକାର କପରି କଠୋର ଶାସ୍ତି ଦିଅନ୍ତି, ଏହା ଏକ ନମୁନା; ଗିଲ୍‌ଡ ହଲ୍‌ରେ ଐତିହାସିକ ଲିପିବଦ୍ଧ କରାଯାଇ ବୈଦେଶିକ ତଥା ବର୍ତ୍ତମାନ ଓ ଭବିଷ୍ୟ ଦେଶବାସୀଙ୍କୁ ଚେତେଇ ଦିଆହୋଇଛି ।

ଏଇ ହଲ୍‌ରେ ବହୁ ମୂର୍ତ୍ତି ସଂରକ୍ଷିତ । ପୂର୍ବରେ ଇଂଲଣ୍ଡରେ ଗଗ୍ ଓ ମାଗଗ୍‌ଙ୍କର ଶାସନ ଥିଲା, ତାପରେ ଅସୁରମାନେ ଏ ଦେଶ ଶାସନ କରିଥିଲେ ବୋଲି ଲୋକବିଶ୍ୱାସ ପ୍ରଚଳିତ । ପ୍ରାଗୈତିହାସିକ ଗଗ ଓ ମାଗଗ୍‌ଙ୍କ କାଳ୍ପନିକ ମୂର୍ତ୍ତି ନିର୍ମାଣ କରାଯାଇଛି । ଏବେ ଯେଉଁଠି ଲଣ୍ଡନ ନଗର ଅବସ୍ଥିତ, ପୂର୍ବେ ସେଠି ଅନ୍ୟ ଏକ ନଗରୀ ଥିଲା । ତାର ନାମ ନିଉଟ୍ରୟ ।

ଇଂଲଣ୍ଡର ଦୁଇଜଣ ବିଶିଷ୍ଟ ସେନାପତିଙ୍କୁ ଏହି ହଲ୍‌ରେ ସ୍ଥାନ ଦିଆ ଯାଇଛି—ଟ୍ରାଫାଲ୍‌ଗାରର ଜେତା ନେଲ୍‌ସନ୍, ଓ୍ୱାଟରଲୁର ଜେତା ଓ୍ୱେଲିଂଟନ୍ । ତିନିଜଣ ନେତାଙ୍କୁ ମଧ୍ୟ ଏଠି ଗୌରବମୟ ଆସନ ଦିଆ ଯାଇଛି—ଉଇଲିୟମ୍ ପିଟ୍, ପିଟ୍ ଦ ୟଙ୍ଗର୍, ଉଇଣ୍ଟସନ୍ ଚର୍ଚ୍ଚିଲ । ମୂର୍ତ୍ତି ଚର୍ଚ୍ଚିଲଙ୍କ ହାତରେ ଭଲିବ ସିଗାରେଟ୍ ଧରେଇ ନ ଥିବାରୁ, କେହି ପରିଦର୍ଶକ ମୂର୍ତ୍ତି ତଳେ ଲେଖି ଦେଇଛି—Why no smoking'?

ଦ୍ୱିତୀୟ ମହାଯୁଦ୍ଧ କାଳରେ ଚର୍ଚ୍ଚିଲ ଏହି ଗୃହରେ ତାଙ୍କର ଜ୍ୱାଳାମୟ ଭାଷଣମାନ ଦେଇ ଇଂରେଜ ଜାତିକୁ ଉଦ୍‌ବୁଦ୍ଧ କରିଥିଲେ ।

୧୮୯୯ରୁ ୧୯୦୨ ପର୍ଯ୍ୟନ୍ତ ଦକ୍ଷିଣ ଆଫ୍ରିକାରେ ଯେଉଁ ବୋଅର୍ ଯୁଦ୍ଧ ହୋଇଥିଲା, ସେଥିରେ ବହୁ ଇଂରେଜ ପ୍ରାଣ ହରାଇଥିଲେ; ଏହି ଗୃହରେ ମୃତ ସୈନିକମାନଙ୍କର ସ୍ମୃତି ରକ୍ଷା କରା ଯାଇଛି । ସେହିପରି ପ୍ରଥମ ମହାଯୁଦ୍ଧରେ ଅଜ୍ଞାତ ଇଂରେଜ ସୈନିକର ସ୍ମୃତିକୁ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରା ହୋଇଅଛି ।

ଗିଲ୍‌ଡହଲ୍‌ର ସ୍ତରେ ସ୍ତରେ ଜାତୀୟ ଗୌରବର ଉଜ୍ଜ୍ୱଳ ସ୍ୱାକ୍ଷର, ଏହାର ପାଠାଗାରରେ ଜାତୀୟ ବୀରମାନଙ୍କ ଜୀବନକାହାଣୀ—ଶ୍ରଦ୍ଧା ଆସେ, ସମ୍ଭ୍ରମ ଆସେ; ଇତିହାସ ଏଠି କି ଅପୂର୍ବ ସମ୍ମାନ ଲାଭ କରିଛି । ବଡ଼ଙ୍କୁ ତାଙ୍କ ଯଥାଯୋଗ୍ୟ ଆସନ ଦେବାରେ ଇଂରେଜ କେବେ କୁଣ୍ଠିତ କୃପଣ ହୋଇନାହିଁ—ଏ ତାର ଏକ ବଡ଼ପଣ, ଅନୁକରଣୀୟ ।

## ଦି ଓଲଡ୍ କିଉରିଓସିଟିସପ୍

ଡିକେନ୍‌ସଙ୍କ ଯୁଗର ଗୃହ ଏବେ ଇଂଲଣ୍ଡରେ ପ୍ରାୟ ଦେଖିବାକୁ ମିଳେ ନାହିଁ । କିନ୍ତୁ ଏ ଅଦ୍‌ଭୁତ ଦୋକାନ ଘରଟି ଛିଡ଼ା ହୋଇଛି, ପ୍ରାଚୀନ ଯୁଗର ନାନା ବିଚିତ୍ର ସ୍ମୃତି ନେଇ । ମଝେ ମଝେ ଯତ୍ନ ସାମାନ୍ୟ ସଂସ୍କାର କରା ଯାଇଛି, କେବଳ ପତନରୁ ରକ୍ଷା କରିବା ଲାଗି; କିନ୍ତୁ ଡିକେନ୍‌ସଙ୍କ ଆଙ୍ଗିକ ଉପରେ ଆଞ୍ଚ ଆସିନାହିଁ ।

ଏ ଗୃହଟି ଦୁର୍ଲଭ ପଦାର୍ଥର ଭଣ୍ଡାର । ଅହରହ ଯାତ୍ରୀ ଆସୁଛନ୍ତି, ମନକୁ ପାଇଲେ କିଛି କିଣି ନେଉଛନ୍ତି । ଯାଦୁଘରେ ଯାହା ରହିବା କଥା, ଏଠି ରଖା ହୋଇଛି; ଯାଦୁଘରେ କିଛି ବିକ୍ରୀ ହୁଏ ନାହିଁ, ଏଠି ହେଉଛି; ଏ ଜଣେ ବ୍ୟବସାୟୀର; ପ୍ରାଚୀନତା ପ୍ରତି ଲୋକଙ୍କର କୌତୂହଳକୁ କିଛିଟା ଚରିତାର୍ଥ କରୁଛି ସେ । କିନ୍ତୁ ଏତେ ପ୍ରାଚୀନ ଦ୍ରବ୍ୟ

ମିଳିବ କାହିଁ ? ହଜାର ହଜାର ପାଠକଙ୍କ ତୃଷ୍ଣା କିଏ ମେଣ୍ଟାଇବ କିପରି ? ଦୋକାନୀ ପ୍ରାଚୀନ ନମୁନାର ଦ୍ରବ୍ୟ ତିଆରି କରିବାରେ ଲାଗିଛନ୍ତି ।

ଚାର୍ଲସ୍ ଡିକେନ୍ସ (ଜନ୍ମ ୧୮୧୨, ମୃତ୍ୟୁ ୧୮୭୦) ସ୍ୱଉପନ୍ୟାସରେ ଏହି ଦୋକାନଟିକୁ ବର୍ଣ୍ଣନା କରିଥିଲେ । କଳ୍ପଲୋକର ରଙ୍ଗ ଘେନି ଏହା ଲୋକଙ୍କ ମାନସ ରାଜ୍ୟରେ ପ୍ରବେଶ କଲା । ସେହି କାଳରୁ ବିଶେଷ ଲୋକପ୍ରିୟ ହୋଇ ଉଠିଛି ।

ଏହି ଗୃହ ସେକ୍ସପିଅରଙ୍କ 'ରୋମିଓ ଜୁଲିଏଟ' ନାଟକର ପ୍ରଥମ ଅଭିନୟର ମୂକସାକ୍ଷୀ; ଏଇ ସମୟ ଦେଖିଥିଲା ସ୍ତ୍ରୀ ଭୂମିକାରେ ପ୍ରଥମେ ସ୍ତ୍ରୀର ଅଭିନୟ—ପ୍ରଥମ ଅଭିନେତ୍ରୀ ଲଣ୍ଡନର କମଳାଲେମ୍ବୁବାଲୀ, ନାଟକର ନାୟିକା ।

ଏହି ଦୋକାନ ନିକଟରେ ଥିଲା ଡିକେନ୍ସଙ୍କ ସମ୍ପାଦିତ 'All the year Round' ପତ୍ରିକାର ଅଫିସ୍ । ଏଇ ଅଞ୍ଚଳର ଜଣେ ଅଭିନେତ୍ରୀଙ୍କ କିରାଣୀ ଭାବେ ଡିକେନ୍ସଙ୍କୁ କାମ କରିବାକୁ ହୋଇଥିଲା । ଏଠି ସେ ତାଙ୍କର କେତେକ ଉପନ୍ୟାସ ଲେଖି ସୁଧୀ ସାହିତ୍ୟିକମାନଙ୍କୁ ଚମକାଇଥିଲେ । ତାଙ୍କ ଘର ଝରକାରୁ ଚାହିଁଲେ ଏ ଦୋକାନ ଦିଶୁଥିଲା ।

ଏ ଘରଟି ଭଙ୍ଗା ହେଉଛି ବୋଲି କେଜାଣି କିପରି ଥରେ ସମ୍ବାଦ ପ୍ରଚାରିତ ହୋଇଗଲା । ପୋର୍ଟସ୍ମାଉଥ ଷ୍ଟ୍ରିଟ୍‌ରେ ହଜାର ହଜାର ଲୋକ ଜମିଗଲେ, କେତେକ ଶେଷ ଦୃଷ୍ଟିକ୍ଷେପ ଲାଗି, କେତେକ ଦୃଢ଼ ପ୍ରତିବାଦ ଲାଗି—ଡିକେନ୍ସ ଏହି ଗୃହକୁ ଅମର କରିଛନ୍ତି, ତାଙ୍କ ସ୍ମୃତି ଲୋପ ହେବାକୁ ଦେବୁନାହିଁ ।

ଜର୍ମାନୀ ବୋମାମାଡ଼ରେ ଆକାଶସ୍ପର୍ଶୀ ପ୍ରାସାଦସବୁ ଓଲଟି ପଡ଼ିଥିଲା, କିନ୍ତୁ ଅକ୍ଷତ ଶରୀରରେ ରହିଥିଲା ଲୋକ ମନର ମନ୍ଦିର ଓଲ୍ଡ କ୍ୟୁରିଓ ସିଟି ସପ୍, ଝଞ୍ଜାରେ ମହା ମହୀରୁହମାନ ଭାଙ୍ଗିପଡ଼ନ୍ତି, ଯେପରି ତୃଣ ଛୁଞ୍ଚାହୋଇ ରହେ, ମନର ମରୁ ଅଞ୍ଚଳମାନଙ୍କୁ ସବୁଜ ରଖିବା ଲାଗି ।

## ସେକସ୍‌ପିଅରଙ୍କ ଜନ୍ମଭୂମି ପଥେ (୩୦ । ୯ । ୭୭)

କାଲି ରାତିଯାକ ବର୍ଷା, ସକାଳୁ ବି ଛାଡ଼ିନାହିଁ, ଲାଗିଛି ଏକ ଅଛିଣ୍ଡା ଧାର, କୁହୁଡ଼ି ଘୋଟିଛି, ଶୀତ । ସାଉଥ୍ କ୍ରମ୍‌ୱେଲରୁ ଭିକ୍ଟୋରିଆ ଷ୍ଟେସନ, ସେଠୁ ଏକ ଦୋମହଲା ବସ୍‌ରେ ଗ୍ରୀନ୍ ପାର୍କ ପାରି ହୋଇ ଆମେ ଏସ୍‌କାଲେଟର୍‌ରେ ଭୂତଳକୁ ଗଲୁ; ଅଟୋମାଟିକ୍ ଭୂମିତଳ ଗାଡ଼ିରେ ଯାଇ ଗୋଟିଏ ଲିଫ୍‌ଟରେ ଆମେ ରସେଲ୍ ସ୍କୋୟାରକୁ ଉଠିଲୁ, ପ୍ରାୟ ଆଠଟା ବେଳେ ସୂ-ରନ୍ ମୋତେ ବସ୍‌ରେ ବସାଇ ଦେଇ ଅଫିସ୍‌କୁ ଚାଲିଗଲା ।

ରଙ୍ଗୀନ ଛତାଧରି ଯୁବତୀମାନେ ଫୁଟ୍‌ପାଥରେ ଚାଲିଥାନ୍ତି । ଚିକ୍‌କଣ ଘାସ ଉପରେ ଚାରିଆଡ଼ ପତର ଝଡ଼ିପଡ଼ୁଥାଏ; ପାର୍କ ଆମ ଆଡ଼ ମାଘମାସର ଚୋଟା ପରି ଦିଶୁଥାଏ—କେତେକ ଗଛ ଝାଟି । ପାର୍କକୁ ଏଠି ସହରର ହୃତ୍‌ପିଣ୍ଡ କୁହାଯାଏ । ହୃତ୍‌ପିଣ୍ଡ ନିର୍ମଳ ରହିଲେ ଶରୀର ସୁସ୍ଥ ରହେ; ସେଥିଲାଗି ପାର୍କ ପରିଚ୍ଛନ୍ନ, ସୁନ୍ଦର ।

ନାନା ପ୍ରକାର ବାଡ଼, ନାନା ବର୍ଣ୍ଣର ଫୁଲ; କ୍ରମେ ଘରସବୁ ସ୍ଳେଟ ହୋଇ ଆସିଲା; ଆମେ ଲଣ୍ଡନ ପାରି ହୋଇଗଲୁ, ଝାପସା ଦିଶେ ଦୂର ଗଛ, ଅମାଣିଆ କୁହୁଡ଼ି, ଅବୁନକ ବର୍ଷା; ବର୍ଷା, ଶୀତକୁ ବେଖାତିର କରି ଚରୁଛନ୍ତି ଗାଈ ଘୋଡ଼ା; ପ୍ରଚୁର ଆହାର, ପିଠିରେ ପାହାର ଯେତେ ଟାଣ ହେଲେ ବି କାଟୁନାହିଁ ।

'ନିଉକାସଲ'କୁ କୋଇଲା ଟ୍ରକ ଯାଉଛି କାହିଁକି ? ଗହ୍ବରରେ ଜଳ ଜମିଛି, ଅଗ ଅବ ସବୁଜ ଉପରେ ଅରଣା ମଇଁଷି ପରି ବୁଲୁଛି କୁହୁଡ଼ି । ମୋ ପାଖେ ବସିଛି ଗୋଟିଏ ବୁଢ଼ୀ, ଆମେରିକାର 'ନିଉଜେରେସି'ରୁ ଆସିଛି ।

ଲାଲ୍ ଫଳଭରା ଫାୟାର୍ ଟ୍ରି, ବଡ଼ ବଡ଼ ଓକ୍, ବର, ସିକାମୋର; ଘନ ଲଟା ମଝିରେ କୁହୁଡ଼ି ଦେଖିତ ଧୂସର ଛନ୍ଦ ଚରୁଛନ୍ତି । ରାସ୍ତା ଧାରରେ ବର୍ଷା ପାଣିର ସୁଅ ଛୁଟିଛି । ତାପରେ କୁହୁଡ଼ି ଆଉ ମେଘ

ଏକାକାର ହୋଇ ଗଲେ—ମୁଷଳ ଧାରରେ ବର୍ଷା ଝରିବାକୁ ଲାଗିଲା; ପାଣିକୁ ଦି ପଟେ ଛାଟି ବସ୍ ଚାଲିଛି ଅତି ଧୀରେ, ମନୁଷ୍ୟ ହାତରୁ ବେଶୀ ଦୂର ଦିଶୁନାହିଁ । ଆମେ ଅକ୍ସଫୋର୍ଡ ସାମ୍ନାରେ ପହଞ୍ଚିଲୁ; ବର୍ଷାତି ପିନ୍ଧି ପଶିଲୁ ଏକ କଫି ସପରେ; କପେ କଫିର ଦାମ ଏକ ସିଲିଙ୍ଗ୍ ।

## ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ

ଅକ୍ସଫୋର୍ଡର ସୁନାମ ବିଶ୍ୱବ୍ୟାପୀ । ଏଇ ବିଶ୍ୱବିଦ୍ୟାଳୟକୁ ଯେତେ ସ୍ତୁତି ବଢ଼େଇ କରେ; ତା ବଡ଼ିମାକୁ ମଧ୍ୟ କେହି ହସି ଉଡ଼େଇ ଦିଅନ୍ତି ନାହିଁ । କାରଣ ସେ ତିଆରି ହୋଇଛି ନୂଆ ଭାବରେ—ସେହି ଭାବରେ ସେ ସ୍ୱାତନ୍ତ୍ର୍ୟ ଚିହ୍ନିତ ।

ଅକ୍ସଫୋର୍ଡରେ ବୁଲିବା ଅର୍ଥ ଇତିହାସରେ ବୁଲିବା—ସେ ଇତିହାସ ଯେପରି ଦୀର୍ଘ ସେହିପରି ଗୌରବମୟ । ଗୋଟିଏ ସୀମିତ ଅଞ୍ଚଳରେ ଇଂଲଣ୍ଡରେ ଆଉ କେଉଁଠି ଏତେ ଇତିହାସ, ଏତେ ପରମ୍ପରା, ଏତେ କାରୁକଳା ପରିଦୃଷ୍ଟ ହୋଇ ରହିଛି ? ଆଉ କେଉଁଠି ପ୍ରାଚୀନ ଓ ଆଧୁନିକ, ପରମ୍ପରା ଓ ପୂର୍ବଦୃଷ୍ଟି ପରସ୍ପରର ପରିପୂରକ ହୋଇ ରହିଛନ୍ତି ?

ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ସହରର ପୂର୍ବ ଓ ପଶ୍ଚିମକୁ 'ଆଇସିସ୍' ଓ 'ଚେର୍‌ୱେଲ୍' ନଦୀ ଘେରି ରହିଛନ୍ତି । ଟେମ୍‌ସର ଅନ୍ୟ ନାମ ଆଇସିସ୍, ଚେରୱେଲ ଏହାର ଉପନଦୀ, ସୁନାବ୍ୟା । ବଳଦଙ୍କୁ ପାରିକରେଇବା ଲାଗି ସେତେବେଳେ ଏଠି ହୋଇଥିଲା ଗୋଟିଏ ଘାଟ । ଇତିହାସ କେଳେ କେଳେ ଉପନ୍ୟାସ ପରି ବିସ୍ମୟକର ହୋଇଥାଏ । ଯେ ସେ କାଳେ ପଶୁଙ୍କୁ ପାରି କରୁଥିଲା, ସେ ଏବେ ମଣିଷଙ୍କୁ ପାରିଜଥିର କରଉଛି—ବିଦ୍ୟାର୍ଣ୍ଣବ । ବର୍ତ୍ତମାନ ଯୁଗର ସାଂସ୍କୃତିକ ଚରିତ୍ର ଗଠନରେ ଅକ୍ସଫୋର୍ଡର ଭୂମିକା ଉଲ୍ଲେଖଯୋଗ୍ୟ ଅବଶ୍ୟ ।

ସମ୍ରାଟ୍ ଆଲ୍‌ଫ୍ରେଡ୍ ଏହି ବିଶ୍ୱବିଦ୍ୟାଳୟ କଲେଜ ପ୍ରତିଷ୍ଠା କରିଥିଲେ ବୋଲି ଜନଶ୍ରୁତି ପ୍ରଚଳିତ । ୧୬୧୪ ଖ୍ରୀଷ୍ଟାବ୍ଦବେଳକୁ ଏହା ନିର୍ମିତ

ହୋଇ ସାରିଥିଲା—କଲେଜ ପରେ କଲେଜ ଗଢ଼ି ଉଠିଲା । —ଟ୍ରିନିଟି କଲେଜ, ଲିଙ୍କନ କଲେଜ, ପେମ୍‌ବ୍ରୋକ୍ କଲେଜ୍, ଓ୍ୱାର୍‌ସେଷ୍ଟର କଲେଜ ଟ୍ରିନିଟି କଲେଜ ଇତ୍ୟାଦି । ପ୍ରତ୍ୟେକ କଲେଜ ସହିତ ଯେପରି ଗୋଟିଏ ଲାଇବ୍ରେରୀ ସେହିପରି ଗୋଟିଏ ଚାପେଲ୍ ସଂଯୁକ୍ତ ରହିଛି । ଶିକ୍ଷା ଏବଂ ଧର୍ମରେ ଆରମ୍ଭ; ଏ ବିଜ୍ଞାନ ଯୁଗରେ ବି ଶିକ୍ଷା ଧର୍ମଛଡ଼ା ହୋଇନାହିଁ । ପ୍ରାଚୀନତା କେଉଁଠି ମଣିଷକୁ ପାଦ ଧରି ପଛକୁ ଟାଣୁନାହିଁ । ଆଧୁନିକତାର ମୋହ ପ୍ରାଚୀନକୁ ଅବହେଳା କରୁନାହିଁ ।

'ଟମ୍ ଟାଓ୍ୱାର'ରେ ପ୍ରତିଦିନ ୧୦୧ ଥର ଘଣ୍ଟା ବାଜେ, ବିଶ୍ୱବିଦ୍ୟାଳୟର ପ୍ରଥମ ୧୦୧ ଜଣ ପରୀକ୍ଷୋତ୍ତୀର୍ଣ୍ଣ ବିଦ୍ୱାନଙ୍କୁ ସ୍ମରଣ କରିବା ଲାଗି । ଟ୍ରିନିଟି କଲେଜର ଗୋଟିଏ ଟାଓ୍ୱାରରେ ଚାରୋଟି ନାରୀ ଚିତ୍ର ଅଙ୍କିତ, ପ୍ରତୀକାତ୍ମକ—ଜ୍ୟାମିତି, ଜ୍ୟୋତିର୍ବିଦ୍ୟା, ଧର୍ମ ଓ ଔଷଧ । ଓ୍ୱାର୍‌ସେଷ୍ଟର କଲେଜ ଚାପେଲ୍‌ର ମୋଜାଇକ୍ ପେଣ୍ଟିଂରେ ଲିଖିତ—ମନୁଷ୍ୟ ଓ ପ୍ରକୃତି ଈଶ୍ୱରଙ୍କୁ ପ୍ରଶଂସା କରୁଛନ୍ତି ।

ପ୍ରାଚୀନ ଗୋଥିକ ଶୈଳୀର ଚାପେଲ ସବୁ—ଧର୍ମର ବହୁ ଚିତ୍ରଣ ନିର୍ମାଣରେ ଭରପୂର । ଚେରଓ୍ୱେଲ୍ ନଦୀର ସେତୁ ଅତିକ୍ରମ କରି ଆମେ ବେଲଟାଓ୍ୱାର ପାଖେ ପହଞ୍ଚିଲୁ—ସାମ୍ନାରେ ବିସ୍ତୃତ ତୃଣଭୂମି । ବୃହତ୍ ଉଦ୍ୟାନ, ଗଛ ପୁଷ୍ପରେ ଭରା—ଦାର୍ଶନିକ ପରି ଠିଆ ହୋଇଛନ୍ତି ବଡ଼ ବଡ଼ ଓକ୍, ସିକାମୋର୍ । ପ୍ରଚଣ୍ଡ କୁହୁଡ଼ି, ପ୍ରବଳ ବର୍ଷା, ଟପ ଟପ ଗଛ; ଏଥିରେ ବୁଲି ବା କଣ ଦେଖିବୁ ? ମୃଦୁରେ କହିଲୁ—ଯେଉଁଠି ବିଶିଷ୍ଟ ବ୍ୟକ୍ତିମାନେ ସମ୍ମାନସୂଚକ ଡିଗ୍ରୀ ନିଅନ୍ତି । ବିଦାୟବେଳେ ମନେ ପଡ଼ିଲା—କବି ସେଲିଙ୍କ କଥା—ଏହି ବିଶ୍ୱବିଦ୍ୟାଳୟର ଅଣ୍ଡର ଗ୍ରାଜୁଏଟ୍ ଥିଲାବେଳେ 'ନାସ୍ତିକତାର ପ୍ରୟୋଜନ' ଶୀର୍ଷକ ପୁସ୍ତକ ଲେଖି, ସେ ଧର୍ମଗୁରୁଙ୍କ ଦ୍ୱାରା ବିତାଡ଼ିତ ହୋଇଥିଲେ; ଏବେ ତାଙ୍କ ମାର୍ବଲ ମୂର୍ତ୍ତି ବିଶ୍ୱବିଦ୍ୟାଳୟ ପ୍ରାଙ୍ଗଣରେ ସ୍ଥାପିତ ହୋଇଛି, ବୋଧେ ସେଇ ପାପର ପ୍ରାୟଶ୍ଚିତ୍ତ ଲାଗି ! ଆଉ ମନେ ପଡ଼ିଲା ଡକ୍ଟର ଜନ୍‌ସନ୍‌ଙ୍କ କଥା—ସେ ୧୮୨୭ ଖ୍ରୀଷ୍ଟାବ୍ଦରେ ପେମ୍‌ବ୍ରୋକ୍ କଲେଜରେ ଯୋଗ ଦେଇଥିଲେ, କିନ୍ତୁ

ଘୋର ଅନାଟନରେ ପଡ଼ି କଲେଜ ଛାଡ଼ି ଦିବାକୁ ବାଧ୍ୟ ହୋଇ-ଥିଲେ । ଭବିଷ୍ୟତର ମହିମାନ ଦୁର୍ଭାଗ୍ୟ ସତ୍ତ୍ୱେ ଏହି ଭଳି ସଂଗ୍ରାମ କରିଥାନ୍ତି ।

ପାଖରେ ବସିଛି ନର୍ଥଜେରେସିର ସେଇ ବୁଢ଼ୀ, ନାଆଁ ଡୋନାନ୍; ସ୍ୱାମୀ ମୃତ; ବଡ଼ ପୁଅ ବ୍ୟାଙ୍କରେ କାମ କରେ, ମଝିଆଁ ପୁଅ ଡାକ୍ତର, ସବା ସାନ ଇନ୍ସୁରେନସ କମ୍ପାନୀର ଏଜେଣ୍ଟ । ପୁଅମାନେ ନିଜ ନିଜ ରୋଜଗାରରେ ମଣିଷ ହୋଇଛନ୍ତି ।

ବର୍ଷା ଟିକଏ ଛାଡ଼ିଛି; ମେଷମାନଙ୍କୁ ଚରୁଥିବାର ଦେଖି ଡୋନାନ୍ କହିଲା—That is a good way of cutting lawn !

ବୁଢ଼ୀ କରୁଛି ଇଂଲଣ୍ଡ ଓ ଆମେରିକାର ଏକ ତୁଳନାତ୍ମକ ଆଲୋଚନା—ଏ ଗ୍ରେଟ ଦେଶଟିରେ ତା ମତରେ ସବୁ ରହିଛି; ଇଂରେଜ ସ୍ୱଦେଶକୁ ଚମତ୍କାର ସଜେଇଛି—ସତେ ଯେପରି ଏକ ଛବିର ପ୍ରଦର୍ଶନୀ । ମୃଣ୍ମୟ ଭୂମି ହେଲେ କୌଣସି ଦେଶ ବଡ଼ ହୁଏ ନାହିଁ; ବଡ଼ ହେବାର ବୀଜ ଲୋକଙ୍କ କର୍ମ ପ୍ରେରଣା ଭିତରେ ହିଁ ଥାଏ ।

ଦ ପାଖେ ଗମ୍ଭୀର—କହି ଗଛମାନଙ୍କର ହଳଦିଆ ମୂଳସବୁ—ବନ୍ଦୂବନ୍ଦୂ ଘନ କୁହୁଡ଼ି ପରି ଉଡ଼ି ଯାଉଛନ୍ତି ପକ୍ଷୀ; ମଝିରେ ମଝିରେ ବୁଦ୍ଧ ବୁଦ୍ଧିକଆ ଖଡ଼ ପାହାଡ଼, କ ବଣ ଲଟା ସବୁ ମାଡ଼ିଛି । 'ଟିପ୍' ନଦୀର କ୍ଷୀଣ ସ୍ରୋତ ଉପରେ କୁହୁଡ଼ି ବୁଲୁଛି । ବାଡ଼ରେ ଆଜ କ ଧଳା ଧଳା ଫୁଲ ଫୁଟିଛି । ଆମେ ଓ୍ୱାର୍ଉ୍ୱିକ୍ ସହରରେ ପହଞ୍ଚିଲୁ ।

## ପରିକ୍ ପଞ୍ଚ୍

ଓ୍ୱାରଓ୍ୱିକ୍ ସହରର ରେଷ୍ଟୁରାଣ୍ଟ ଅତି ପୁରାତନ । ନାନା କରୁଣ ମଧୁର ମୂର୍ଚ୍ଛନାରେ ସମୃଦ୍ଧ; ବହୁ ଯୁଦ୍ଧ ଓ ରୋମାଞ୍ଚକର କାହାଣୀର ମୂକ ସାକ୍ଷୀ । ଓ୍ୱାର୍ଓ୍ୱିକ୍ ଦୁର୍ଗର ସୈନ୍ୟ ବାହିନୀର ଭୋଜନାଳୟ ଏଠି ଥିଲା । ଏଲିଜାବେଥ୍ ଯୁଗର ବହୁ କାହାଣୀ ହୁଏତ ଏଠି ସତ୍ୟ ଥିଲା;

ସେକସ୍‌ପିଅରଙ୍କ ମନକୁ ଗଢ଼ିଥିଲା ବିଶେଷଭାବେ ଏହି ସ୍ଥାନର ପ୍ରକୃତି, ଇଂଲଣ୍ଡର ଇତିହାସ ବିଶେଷତଃ ସାଂସ୍କୃତିକ ଇତିହାସର ଉଚ୍ଚତମ ଅଧ୍ୟାୟ ଯଦିନେ ଗଢ଼ା ହୋଇଥିଲା ଏହି ସ୍ଥାନରେ ।

୧୬୯୮ ଖ୍ରୀଷ୍ଟାବ୍ଦରେ ଅଗ୍ନିଦାହରୁ ଏହା ଅଳ୍ପକେ ରକ୍ଷା ପାଇଥିଲା । ଦହନର ଲେହନ ଚିହ୍ନ ଏହାର କଡ଼ି ବରଗା ଏବେ ବି ବହନ କରେ ।

ରେଷ୍ଟୁରାଣ୍ଟଟି ଶ୍ରେଷ୍ଠ, କିନ୍ତୁ ଇତିହାସ ବଡ଼ । ମେନୁ ଭିତରୁ ବାଛିଲା ଫଳ ରସ, ସାମନ୍ ମାଛ ଭଜା, ସୂକର୍ସାପ୍ୟାର୍ ପୁଡ଼ିଂ, ଆଳୁ ଚପସ୍ ।

## ୱାରୱିକ କାସଲ୍

ପ୍ରସ୍ତରରେ ନିର୍ମିତ ଏହା ସେ କାଳର ଏକ ସୁଦୃଢ଼ ଦୁର୍ଗ । ଏହାର କାନ୍ଥ ଦଶଫୁଟ୍ ମୋଟ । ଏବେ ଗୋଟିଏ ଯାଦୁଘର—ଇଂଲଣ୍ଡର ରାଜା, ଜମିଦାର, ସାମନ୍ତଙ୍କର ନାନା ସ୍ମୃତି ସୁରକ୍ଷିତ ।

ଦୁଇ ପାଖେ ପ୍ରସ୍ତର ପ୍ରାଚୀର, ଶୀତଳ ସବୁଜ; ପ୍ରଶସ୍ତ ପ୍ରାଙ୍ଗଣ ଅତିକ୍ରମ କରି ଆମେ ଦୁର୍ଗରେ ପ୍ରବେଶ କଲୁ—'ଆଭନ' ନଦୀ ଏହାର ପରିଖା ପରି ବହିଛି, ପ୍ରାୟ ଶହେ ଫୁଟ ତଳେ; ଦିଗ୍‌ବଳୟ ପର୍ଯ୍ୟନ୍ତ ଗମ୍ଭୀର ଲମ୍ବିତ—ସବୁଜ ଉପରେ ମିଛି ମିଛିକା ଘାଲର ତରଙ୍ଗ ଖେଳେ ।

ଦୁର୍ଗର କୋଠରୀମାନଙ୍କରେ 'ଅର୍ଲ' ମାନଙ୍କ ଛବିସବୁ, ଅଶ୍ୱାରୋହୀ ରାଜା ଚାର୍ଲସ ପ୍ରଥମ, ୱେଲ୍‌ସ୍‌ର ରାଜକୁମାରୀ, ରାଣୀ ଏଲିଜାବେଥ୍, ଅଷ୍ଟମ ହେନେରୀ; ଏଡ୍‌ୱାର୍ଡ଼ ଓ ଅଷ୍ଟମ ହେନେରୀଙ୍କ ବ'କୃତ ବପୁସର ଛବି । ରାଣୀ ଆନେଙ୍କ ଛବି, ବାରନ୍‌ମାନଙ୍କ ଯୁଦ୍ଧ, ଚାର୍ଲସ୍ ଡିକେନ୍ସଙ୍କ ଛବି, ଲିସେଷ୍ଟରର 'ଅର୍ଲ', ବକିଂହାମ୍ ଡ୍ୟୁକ୍‌ଙ୍କ ଦୁଇ ପୁତ୍ର, ସେକ୍‌ସ୍‌ପିଅର୍‌ଙ୍କ ଛବି; ଦୁଇଟି ସିଂହର ରଖୁଆଳ—ସେମାନଙ୍କ ଗର୍ଜନ ଶୁଣିବା ଲାଗି ଦିନେ ସେ କେଶର ଉପାଡ଼ୁଥିଲା ।

ସିଂହମାନେ ସୈନିକଙ୍କୁ ଚିର କୁଚ୍ଛୁକୁଚା କରିଦେଲେ । ଗୋଟିଏ ଛବିରେ ଏହା ଅଙ୍କିତ ।

ତାପରେ ବାରୁଦା ଶିକାର, ନାଇଟମାନଙ୍କ ସାଞ୍ଜୁ, ଶିରସ୍ତ୍ରାଣ, ଅଲିଭର୍ କ୍ରମୱେଲଙ୍କ ଶିରସ୍ତ୍ରାଣ, ସେ ଯୁଗର ବହୁ ଅସ୍ତ୍ରଶସ୍ତ୍ର, ଏଲିଜାବେଥ ପ୍ରଥମଙ୍କ ଘୋଡ଼ାର ଜିନ, ରାଣୀ ଆନ୍ନେଙ୍କ ଶଯ୍ୟା, ନାନା ପୋଷାକ, କାରୁକାର୍ଯ୍ୟ ପୂର୍ଣ୍ଣ ଗାଲିଚ୍, କାଷ୍ଠ ବାକ୍ସ, ବ୍ରୁସେଲସର ସିଲ୍କ କାର୍ଯ୍ୟ, ଷୋଡ଼ଶ ଶତାବ୍ଦୀର ଫ୍ଲୋରେନ୍ସ ନାଇଟିଙ୍ଗେଲ୍, ସେ କାଳର ନାନାବିଧ ବାସନ କୁସନ ଦୁର୍ଗରେ ପ୍ରଦର୍ଶିତ ହୋଇଅଛି ।

ଗୋଟିଏ ପୁସ୍ତିକାରେ ଦୁର୍ଗର ଇତିହାସ ବର୍ଣ୍ଣିତ । ଏହି ଦୁର୍ଗ ସମ୍ରାଟ ଆଲ୍ଫ୍ରେଡ୍ଙ୍କ କନ୍ୟା ମାଟିଲ୍ଡା ନିର୍ମାଣ କରିଥିଲେ । ତାଙ୍କ ପ୍ରତିନିଧି ଏଠି 'ଅର୍ଲ', ହୋଇଥିଲେ । ଓ୍ୱାରଓ୍ୱିକ୍ ଇଂଲଣ୍ଡର ଗୋଟିଏ କରଦ ରାଜ୍ୟ ଥିଲା । ଯୁଦ୍ଧବେଳେ ଏହାର ଶାସକ ରାଜାଙ୍କୁ ସୈନ୍ୟ ଯୋଗାଉଥିଲେ ।

ଏହାର ପ୍ରସିଦ୍ଧ ଅର୍ଲ ଟର୍ଚ୍ଚିଲ ଉଇଲିୟମ୍ ଦି କଙ୍କରରଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ଲାଗି ଇଂଲଣ୍ଡ ରାଜାଙ୍କୁ ସୈନ୍ୟସାମନ୍ତ ଯୋଗାଇ ଥିଲେ, ତାଙ୍କ ଅଧୀନରେ ୬୧ଟି ଜମିଦାରୀ ଥିଲା, ଉଇଲିୟମ ଟର୍ଚ୍ଚିଲଙ୍କ ଠାରୁ ଏହି ଦୁର୍ଗ ଛଡ଼େଇ ନେଇ ନିଜର ଜଣେ ବ୍ୟକ୍ତିଙ୍କୁ ଶାସନକର୍ତ୍ତା ରୂପେ ନିଯୁକ୍ତ କଲେ । ଏହି ଶାସକ ଓ ତାଙ୍କ ବଂଶଧରଙ୍କ କର୍ତ୍ତୃତ୍ୱରେ ଦୁଇଶତ ବର୍ଷ କାଳ ଏ ଦୁର୍ଗ ରହିଲା । ବାରେନ୍ମାନଙ୍କ ସଙ୍ଗେ ଅର୍ଲଙ୍କର ଝଗଡ଼ା ହେଲା । ସେମାନେ ଏକଜୁଟ୍ ହୋଇ ଏଇ ଦୁର୍ଗ ଅଧିକାର କଲେ, ଅର୍ଲ ଓ ତାଙ୍କ ରାଣୀଙ୍କୁ ବନ୍ଦୀ କଲେ, କିନ୍ତୁ ବହୁ-ଅର୍ଥ ଦାନ ପରେ ସେମାନଙ୍କୁ ମୁକ୍ତ କରିଦେଲେ । ତାପରେ ସେମାନଙ୍କର ଗୋଟିଏ କନ୍ୟା ଦୁର୍ଗର ଶାସିକା ହେଲେ—ବର୍ତ୍ତମାନ ଦୁର୍ଗ ତାଙ୍କର କୀର୍ତ୍ତି । ନିର୍ମାଣର ହିସାବ ରହିଛି । ମୋଟ ୩୯୫ ପାଉଣ୍ଡ ବ୍ୟୟିତ ହୋଇଥିଲା । ତାର ମୂଲ୍ୟ ବର୍ତ୍ତମାନ ଗୁଳିଶ ହଜାର ପାଉଣ୍ଡ । ସେତେ-ବେଳେ ଗୋଟିଏ ମେଷର ମୂଲ୍ୟ ଛ' ପେନ୍ସ ମାତ୍ର ଥିଲା ।

ତାପରେ ନେଭିଲ୍ ବଂଶ ମେକଭ ଏହାର ଶାସକ ହେଲେ । ସେ କାହତ ହେବା ପରେ ଏ ଦୁର୍ଗ ତାଙ୍କ ଜ୍ୱାଇଁଙ୍କ ହାତକୁ ଗଲା । ତାଙ୍କୁ ଲଣ୍ଡନ ଡ଼ାକ ନେଇ ରାଜା ମଦ ଗାଣ୍ଡରେ ବୁଡାଇ ମାରଥିଲେ ବୋଲି ଜନଶ୍ରୁତି ଅଛି ।

ତାଙ୍କ ପୁତ୍ର ଆଠ ବର୍ଷ ମାତ୍ର ବୟସରେ ଅର୍ଲ ହେଲେ । ମାମୁଁ ଅଭିଭାବକ ହୋଇ ତାଙ୍କୁ ବନ୍ଦୀ କଲେ, ପଚଶ ବର୍ଷ ବୟସରେ ତାଙ୍କ ମୁଣ୍ଡକାଟ ହେଲ । ତାପରେ ଷାଠିଏ ବର୍ଷ ପର୍ଯ୍ୟନ୍ତ ଦୁର୍ଗର ସିଂହାସନ ରାଜଶୂନ୍ୟ ହୋଇ ରହିଲା ।

ଆମ୍ବ୍ରୋସ୍ ଏହାର ଅର୍ଲ ହେଲେ; ସେ ତିନି ଥର ବବାହ କରଥିଲେ । କନ୍ତୁ ନିଃସନ୍ତାନ । ଫଳରେ ଇଂଲଣ୍ଡର ରାଜାଙ୍କ କର୍ତ୍ତୃତ୍ୱକୁ ଏ ଦୁର୍ଗ ଗ୍ଲଲଗଲା ।

୧୬୦୪ରେ ରାଜା ଜେମ୍ସ୍ ପ୍ରଥମ ଏହି ଦୁର୍ଗକୁ ତାଙ୍କର ଜଣେ ପ୍ରିୟ ପାତ୍ର ଗ୍ରେଭିଲ୍ ନାମକ ବ୍ୟକ୍ତିଙ୍କୁ ଦାନ କଲେ । ଗ୍ରେଭିଲ କୋଡ଼ିଏ ହଜାର ପାଉଣ୍ଡ ଖର୍ଚ୍ଚ କର ଏହି ଦୁର୍ଗ ମରାମତି କଲେ, ସୁନ୍ଦର ସୁନ୍ଦର ଉଦ୍ୟାନ ରୋପଣ କଲେ । ଏହି ଗ୍ରେଭିଲ୍‌ଙ୍କ ପୂର୍ବ ପ୍ରସିଦ୍ଧ ସାର ଫିଲିପ୍ ସିଡ଼ନି ।

ସେ ରାଣୀ ଏଲିଜାବେଥ୍‌ଙ୍କ ପ୍ରିୟପାତ୍ର ଥିଲେ । ଜେମ୍ସ ପ୍ରଥମଙ୍କ ରାଜତ୍ୱ କାଳରେ ବହୁ ଉଚ୍ଚ ପଦବୀର ଅଧିକାରୀ ହୋଇଥିଲେ । ସେ ପ୍ରଚୁର ଅର୍ଥ ଦାନ କର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଇତିହାସ ଅଧ୍ୟାପନାର ବ୍ୟବସ୍ଥା କରଥିଲେ । ସେ ସାହିତ୍ୟର ଜଣେ ବଡ ପୃଷ୍ଠ-ପୋଷକ ଥିଲେ । ସାର୍ ଫିଲିପ୍ ସିଡ଼ନିଙ୍କ ଜୀବନୀ ସେ ଲିପିବଦ୍ଧ କରି-ଯାଇଛନ୍ତି । କନ୍ତୁ ଶୋଚନୀୟ ଭାବରେ ତାଙ୍କୁ ପ୍ରାଣ ହରାଇବାକୁ ହୋଇଥିଲା । ତାଙ୍କର ଜଣେ ଚାକର ତାଙ୍କୁ ହତ୍ୟା କରଥିଲା ।

ଟାଓ୍ୱାର ଉପରୁ ଭୂଇଁତଳକୁ ଗୋଟିଏ ସୁଡ଼ଙ୍ଗ ନିର୍ମିତ । ଆବଶ୍ୟକ ହେଲେ ସୈନ୍ୟମାନେ ଏ ବାଟେ ଖସି ପଳାଇ ଯାଉଥିଲେ । ଏହି ଦୁର୍ଗର, ଏକାଂଶ ଜେଲ୍ ରୂପେ ବ୍ୟବହୃତ ହେଉଥିଲା ।

ଆଭନ୍ ନଦୀ ବର୍ଷା ଜଳରେ ଭରପୂର, ଆବିଳ, ଫେନିଳ, ଗଡ୍ଡଳତା ସବୁ ଝୁଲି ପଡ଼ିଛି ତାର କ୍ଷୀଣଧାରା ଉପରକୁ । ତା ଉପରେ ସ୍ନେହ ଦୃଷ୍ଟି ପକାଇ ସେଇ ରାଜବାଟିରୁ ବିଦାୟ ନେଲି ।

ସାମନ୍ତ ଯୁଗର କଳା, ଚିତ୍ର, ଭାସ୍କର୍ଯ୍ୟ, ସୌନ୍ଦର୍ଯ୍ୟ ରୁଚି, ସାହିତ୍ୟ ପ୍ରୀତି ମୋଟେ ଅଦ୍ଭୁତ କରିଥିଲା; ସେମାନେ କେବଳ ରକ୍ତଶୋଷୀ ନ ଥିଲେ, ରସ ପିପାସୁ ମଧ୍ୟ ଥିଲେ, ଏହି ଆଭିଜାତ୍ୟ ମଧ୍ୟରେ ଫୁଟି ଉଠେ ମାନବିକ ମହତ୍ତ୍ୱ ଓ ମହିମା, ଚିନ୍ତାର ତୁଙ୍ଗତା, ହୃଦୟର ଗଭୀରତା ।

ଆମର ରାଜା ଲୋପ ପାଇଛନ୍ତି, ଜମିଦାରୀ ଉଠିଯାଇଛି । ତା ସଙ୍ଗେ ଉଭେଇ ଯାଇଛି ମନ୍ଦ ସଙ୍ଗେ ଅନେକ କିଛି ଭଲ, ଗଡ଼ଜାତର ରାଜା, ମୋଗଲବନ୍ଦୀର ଜମିଦାର—ସେମାନଙ୍କ ପ୍ରାସାଦର ହାତୀଦାନ୍ତର ପଲଙ୍କ, ବେଶଭୂଷଣ, ଅସ୍ତ୍ରାଗାର, ପୁସ୍ତକଭଣ୍ଡାର, ନାନା ଫଟୋ, ଛବି ଏକାଠି କଲେ ଏକ ଚମତ୍କାର ପ୍ରଦର୍ଶନୀ ହୁଅନ୍ତା ନାହିଁ କି, ଆମ ଯାଦୁଘରେ ?

## ଷ୍ଟ୍ରାଟଫୋର୍ଡ-ଅପନ-ଆଭନ୍

ଇଂଲଣ୍ଡର ମଧ୍ୟ ଭାଗରେ ଅବସ୍ଥିତ, ଲଣ୍ଡନରୁ ଶହେ କୋଡ଼ିଏ ମାଇଲ ଦୂର—ଗୋଟିଏ ଶ୍ରେଷ୍ଠ ସହର—ଅପ୍ରଶସ୍ତ ପଥ, ପ୍ରାଚୀନ ଶୈଳୀରେ ଘରଦ୍ୱାର—ସେକ୍ସପିଅରଙ୍କ ଯୋଗୁଁ ଷ୍ଟ୍ରାଟ୍‌ଫୋର୍ଡ ଜଗତ୍ ବିଖ୍ୟାତ—ନିଖିଳ ଜନମନର ମିଳନଭୂମି—ସାର୍ବଜନୀନ ତୀର୍ଥକ୍ଷେତ୍ର, ସର୍ବକାଳୀନ ବିଶ୍ୱକବିଙ୍କ ଜନ୍ମସ୍ଥାନ ଭାବରେ ମହନୀୟ ହୋଇ ଉଠିଛି ଏହାର ପରିପାର୍ଶ୍ୱ—ଆଭନ୍ ହୋଇଛି ମାନବକୁଳ ପାବନୀ ଗଙ୍ଗା, ଜଳ ନୁହେଁ ସତେ ଯେପରି ରସ ପ୍ରବାହିତ ହେଉଛି ଏଥିରେ—ଚିରନ୍ତନ ସାହିତ୍ୟର—ଅନନ୍ତ ଜୀବନର ଜୟଯାତ୍ରା ଫୁଟିଦିଶୁଛି ତାର ମୁକୁରରେ—ଅଥେଲୋ, ଭେନିସ୍‌ର ସେଇ ବଣିକ୍, ବିଶ୍ୱସ୍ତ ଡେସ୍‌ଡେମୋନା, ହାମଲେଟ୍, ମାକ୍‌ବେଥ୍ ଆଉ କେତେ କିଏ ।

ଷ୍ଟ୍ରାଟ୍‌ଫୋର୍ଡ଼୍‌ର ହେନ୍‌ଲିଷ୍ଟ୍ରିଟ୍‌ରେ ୧୫୬୪ ଖ୍ରୀଷ୍ଟାବ୍ଦରେ ସେକ୍‌ସ ପିଅର୍‌ଙ୍କ ଜନ୍ମ—ସ୍ଥାନୀୟ ପ୍ରାଥମିକ ସ୍କୁଲରେ ସେ ଅଧ୍ୟୟନ କରିଥିଲେ; ୧୬୧୬ ଖ୍ରୀଷ୍ଟାବ୍ଦ, ଅପ୍ରେଲ୍‌ ୨୩ ତାରିଖରେ ମାତ୍ର ବାଉନ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା, ମୃତ୍ୟୁର କୋଡ଼ିଏ ବର୍ଷ ମଧ୍ୟରେ ଷ୍ଟ୍ରାଟ୍‌ଫୋର୍ଡ଼ ଗ୍ରାମ ସାରା ଦେଶର ଦୃଷ୍ଟି ଆକର୍ଷଣ କରିପାରି ଥିଲା ।

୧୮୪୭ ଖ୍ରୀଷ୍ଟାବ୍ଦରେ ସେକ୍‌ସପିଅର୍‌ଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ତାଙ୍କ ଗୃହକୁ କ୍ରୟ କରି ହେଲା—ଏହା କ୍ରମେ ଗଢ଼ି ଉଠିଲା ଗୋଟିଏ ଯାଦୁଘର ରୂପରେ । ଏଠି ତାଙ୍କ ନାଟକ ଓ ସମାଲୋଚନା ଓ ସମ୍ବନ୍ଧ ପୁସ୍ତକରେ ପ୍ରକାଶିତ ଛବିସବୁ ପ୍ରଦର୍ଶିତ ହୋଇଛି—ତାଙ୍କ ଗୃହର ଇତିହାସ ଲିପିବଦ୍ଧ ହୋଇଛି । ତାଙ୍କ ଗୃହ ନିକଟବର୍ତ୍ତୀ ଅଞ୍ଚଳଆଗଦାରୁ କେତେକ ଭଙ୍ଗା କାଚ ସଂଗୃହୀତ ହୋଇ ରହିଛି । ଗୃହର ଛାତ ଅନୁଚ୍ଚ । ତାର ଗୋଟିଏ ବାତାୟନରେ ସଂରକ୍ଷିତ ହୋଇଛି—ସେକ୍‌ସପିଅରଙ୍କ ଗୃହ ପରିଦର୍ଶନକାରୀ ସାର୍ ଓ୍ୱାଲ୍‌ଟର୍‌ ସ୍କଟ୍‌, ଥୋମାସ୍‌ କାର୍‌ଲାଇଲ୍‌, ଆଇଜାକ୍‌ ଓ୍ୱାଟସ୍‌ଙ୍କ ଦସ୍ତଖତ । କବିଙ୍କ ଗ୍ରହାଳୀର ଡେସ୍କଟିଏ ମଧ୍ୟ ରଖାହୋଇଛି ।

ଗୃହ ସନ୍ନିକଟ ସଲଗ୍ନ ଭେଲ୍‌ଭେଟ୍‌ ଘାସର ଭୂମି, ମଝେ ମଝେ ଗୋଲାପ କୁଞ୍ଜ, ବୃହତ୍‌ ବଟ ଓ ମଲ୍‌ବେରୀ—ସେକ୍‌ସପିଅରଙ୍କ ରୋପିତ ବୃକ୍ଷରୁ ଏହାର ଚାରା କରାଯାଇଛି, ଜନଶ୍ରୁତି । ଉଦ୍ୟାନର ଧାରେ ଧାରେ ବକ୍‌ସ ଓ ଇଉ ଗୁଳ୍ମର ବାଡ଼ । ସେକ୍‌ସପିଅରଙ୍କ ନାଟକରେ ବର୍ଣ୍ଣିତ ପୁଷ୍ପ ଓ ଔଷଧ ଗୁଳ୍ମ ଏହି ଉଦ୍ୟାନରେ ରୋପିତ ହୋଇଅଛି ।

"In emerald tufts, flowers purple, blue &white
Like sapphire, pearl & rich embroidery.

ଉଦ୍ୟାନ ରୋପଣରେ ଏଇ ବର୍ଣ୍ଣନା ଅନୁସୃତ ।

ସେକ୍‌ସପିଅର୍‌ କେନ୍ଦ୍ରରେ ଗୋଟିଏ ପାଠାଗାର—ନାନା ପିକ୍‌ଚର୍‌ କାର୍ଡ଼ ଓ ଫଟୋ କିଣିବାକୁ ମିଳେ । ଏଠି ସେକ୍‌ସପିଅର୍‌ଙ୍କର

ଗୋଟିଏ ବ୍ରଞ୍ଜ୍ ମୂର୍ତ୍ତି ସଂସ୍ଥାପିତ । କାଚରେ ତାଙ୍କ ନାଟକର ଚରିତ୍ରସବୁ ମୂର୍ତ୍ତ ହୋଇଅଛି ।

ଆଭନ୍ ନଦୀ କୂଳରେ ତାଙ୍କର ସମାଧି, ତାଙ୍କ ସ୍ତ୍ରୀ ଆନ୍ନେ ହାଥାୱେ, କନ୍ୟା ସୁସାନ୍ନାହଲ୍ ଓ ଜାମାତା ଡାକ୍ତର ଜନ୍ ହଲ୍‌ଙ୍କ ସମାଧି । ସେକ୍‌ସପିଅର ତାଙ୍କ ଶେଷ ଜୀବନ ଆଭନ୍‌ତୀରବର୍ତ୍ତୀ ଷ୍ଟ୍ରାଟ୍‌ଫୋର୍ଡ଼ ଗ୍ରାମରେ କଟାଇ ଥିଲେ ।

ଆନ୍ନେ ହାଥାୱେ ସେକ୍‌ସ ପିଅର୍‌ଙ୍କ ପ୍ରଥମ ସ୍ତ୍ରୀ—ପ୍ରାୟ ଚାରିଶ ବର୍ଷ ତଳେ ନିର୍ମିତ ତାଙ୍କ ଗମ୍ବୁଜ ନଡ଼ା ଘରର କୁଡ଼ିଆଟି ଏବେ ସୁରକ୍ଷିତ । ସେତେବେଳେ ଲୋକ କାଠ ଜାଲ ମାଟି ହାଣ୍ଡିରେ ରୋଷେଇ କରୁଥିଲେ, କନାବଳତାରେ ଚର୍ବି ବୋଳ ଗୃହ ଆଲୋକିତ କରୁଥିଲେ । ଝାଟି ମାଟି କାନ୍ଥର ସେଇ ଘରେ ଷୋଡ଼ଶ ଶତାବ୍ଦୀରେ ବ୍ୟବହୃତ ଟେବୁଲ, ଚୌକି, ମଶାରିବାଡ଼ଥିବା ଖଟ, ଲେସ୍‌ବୁଣା ଯନ୍ତ୍ର, ମଦ ରଖିବାର ଚମଡ଼ା ମୁଣି ପ୍ରଦର୍ଶିତ ହୋଇଅଛି । ଲୋକେ ସେତେବେଳେ ହାତରେ ଖାଉଥିଲେ । କଣ୍ଟା ଚାମୁଚର ବ୍ୟବହାର ନ ଥିଲା ।

ହାଥାୱେଙ୍କ ଘର ସାମ୍ନାରେ ଗୋଟିଏ ଫଳ ବଗିଚା—ଅଣ୍ଟାଏ ଉଚ୍ଚ ଘାସ ବଢ଼ିଛି, ମଝେ ମଝେ ଗୋଟିଏ ଗୋଟିଏ ଅପଲ୍ ଗଛ, ଫଳ ବନ୍ଧ ହୋଇଛି । ମେଘ ଭିତରୁ ବେଳେ ବେଳେ ବୋହି ଆସୁଛି ମିଠା ପାଣିଆ ଖରା—ଶୀତଳ ମୃଦୁ ମୃଦୁ ପବନରେ ତୃଣ ତରଙ୍ଗର ପ୍ରେରଣା ଦେଇ ନାଚ ଉଠୁଛି ହାଥାୱେଙ୍କ ଦ୍ୱାର ଦେଶର ପୁଷ୍ପିତ ଲତା କୁଞ୍ଜ ।

ଆଭନ୍ ନଦୀ କୂଳରେ ସେକ୍‌ସପିଅର ସ୍ମୃତି ରଙ୍ଗାଳୟ, ୧୮୭୮ ଖ୍ରୀଷ୍ଟାବ୍ଦରେ ଉନ୍ମୋଚିତ ହୋଇଛି । ଅଗ୍ନି ଦାହ ଫଳରେ ଧ୍ୱସ୍ତ ହେବା ପରେ ସେଇ ସ୍ଥାନରେ ଏବେ ରୟାଲ୍ ସେକ୍‌ସପିଅର ଥିଏଟର ନିର୍ମାଣ କରିଛନ୍ତି ଆମେରିକାନ୍‌ମାନେ । ଏଠା ଖୋଲା ରଙ୍ଗମଞ୍ଚରେ ସେକ୍‌ସପିଅର୍‌ଙ୍କ ନାଟକର ଅଭିନୟ ଦେଖିଥାନ୍ତି ପ୍ରାୟ ସାରା ଜଗତର ଯାତ୍ରୀ—ବସନ୍ତରୁ ଶରତ୍ ଶେଷ ପର୍ଯ୍ୟନ୍ତ, ପ୍ରାୟ ଆଠ ମାସ । ଶାନ୍ତ, ସୁନ୍ଦର ପଲ୍ଲୀ ପରିବେଶ; ଆଭନ୍ ନଦୀର ନୀଳ ସ୍ରୋତରେ ରାଜହଂସଟିଏ ପହଁରୁଛି—ରାଣୀଙ୍କର

ଦ୍ୱଂସ ଏ; କୂଳରେ ସେକ୍‌ସପିଅର୍‌ଙ୍କ ବିଶାଳ ମୂର୍ତ୍ତି; ପ୍ରସାରିତ ଦୃଷ୍ଟି ପକାଇ ସମସ୍ତ ଅପସୃତ୍ମ ଶ୍ରୀକୁ ମନରେ ଆଙ୍କିବାକୁ ଚେଷ୍ଟା କଲି—କିନ୍ତୁ ବାଧା ଦେଲା ତତ୍‌ପରବର୍ତ୍ତୀ ଦୃଶ୍ୟ, ସୁନ୍ଦରିତର ।

ଫେରିଲା ବେଳେ ବାନ୍‌ବେରି ସହରରେ ଅନେକ ଓ୍ୱିନ୍‌ କୋଟ୍ କାଫେରେ କଫି ପାନ କଲୁ—କଫି ସହିତ ମିଳିଥିଲା କେତେକ ବିଳାତି ମିଷ୍ଟାନ୍ନ, କେକ୍, ଖୁବ୍ ନରମ ପାଉଁରୁଟି ଓ ଲହୁଣୀ । କାଫେରୁ ଫେରି ବସ୍ ପାଖେ ଫୁଟ୍‌ପାଥ୍‌ରେ ଛିଡ଼ା ହେଲି—ଗଛରେ ପତ୍ରସବୁ ସୁବର୍ଣ୍ଣ ବର୍ଣ୍ଣର; ଚକ୍‌କର ଦେଇ ଗୋଟି ଗୋଟି ଉଡ଼ି ତଳେ ପଡ଼ୁଛି ।

ଋଗେଟି କୁକୁର ସେମିତ କଏ ସେ ବୁଲି ପାଇଥିଲା ? ଫେରୁଛି । ପେରାମ୍ବୁଲେଟରରେ ଭଉଣୀକୁ ଶୁଆଇ ଭାଇ ବୁଲାଉଛି । ପାଇନ୍‌ସବୁ ଟାଓ୍ୱାର୍ ପରି ଦିଶୁଛି; କୁହୁଡ଼ି ମାଡ଼ି ଆସିବାର ଯୋଜନା କରୁଛି, ସନ୍ଧ୍ୟା ନ ହେଉଣୁ ଆକାଶର ମୁହଁ ଉପରେ କୁହୁଳି ଉଠିଲାଣି । କେତେବେଳେ ପୁଣି ଡାକିବ, କଏ କହିବ ?

ସନ୍ଧ୍ୟାର କୌଣସି ଆୟୋଜନ ନାହିଁ, ଲାଲ୍ ଗାରଟିଏ କେଉଁଠି ପଡ଼ିନାହିଁ, ବାଟବାଉଳା କରଣ ଧାରଟିଏ ଝିଙ୍ଗିବା ତ ଦୂରର କଥା—ବେଶଭୂଷଣ ନାହିଁ, ପ୍ରସାଧନ ନାହିଁ; ସନ୍ଧ୍ୟା କେତେବେଳେ ଆସିଲା, ଗଲା; ଘୋଟି ଆସିଲା ଅନ୍ଧକାର ସଙ୍ଗେ କୁହେଳିକା, କଏ କାହାଠାରୁ ଭିନ୍ନତର ? ନିରଞ୍ଜ କଳାମ୍ବୁରୁନ ପର୍ବତମାଳା ପରି ଦିଶିଲା ଇଂଲଣ୍ଡ ।

କୌଣସି ସହରରେ ଫାର୍ଦ୍ଦିନାଣ୍ଡ ଜେମ୍‌ସ୍ ପ୍ରଥମଙ୍କ ଛବି ଦେଖି ଯାତ୍ରୀ ହସିଉଠିଲେ—କହିଲେ—

ରାଜା ଥିଲେ ସେଇ ତପଲତାର ପ୍ରାପ୍ତବଶ୍ଚିତ୍ତ କରିବାକୁ ହୋଇଥାନ୍ତା, ଶିରଟି ଦେଇ !

ବାଃରେ ଗାଇଡ୍ ଦେଖାଇଲା—ଲେମ୍ବର୍ଗରେ କାହାର ସମ୍ଭ୍ରାନ୍ତ କେନେଡ଼ିଙ୍କ ସ୍ମୃତିରକ୍ଷା କରି ହୋଇଅଛି,

ଯେଉଁଠି ଲଣ୍ଡନ ପୁଲିସ୍‌କୁ ଗୁଳି କରି ମାରି ଦେଇଛନ୍ତି ଡ଼ାକେଇତ ସବୁ ।

ଯେଉଁଠି ଦୁଇଲକ୍ଷ ପାଉଣ୍ଡ ଲୁଟ କରି ନେଇଥିବା ଡ଼ାକୁର ବିଚାର ହୋଇଛି; ମନରେ ନାନା ଜଳ୍ପନା—ଆଶା, କୁହୁକ, ଉତ୍କେଇତ ।

ଗମ୍ଭୀର ବାତାବରଣକୁ ଲଘୁ କରିଥିଲା ଗାଇଡ୍ ଗୋଟିଏ ଗୀତ ବୋଲି; ତାପରେ ଗ୍ରାଇଣ୍ଡର୍ ଯାଗଡ଼ା କଣ୍ଠରେ ଗୋଟିଏ ଗୀତ ଗାଇଥିଲା—ପ୍ରେମ ଗୀତ । ଯେ ବୁଝି ପାରିଥିଲେ ହସି ହସି ବେଦମ୍; ତାପରେ ଗାଇଡ୍ ଜଣ ଜଣ କରି ଯାତ୍ରୀଙ୍କୁ ପରାମର୍ଶ ଦେଇ ବୁଲିଲା—କେଉଁଠି ଟାକ୍‌ସି ମିଳିବ । ମୁଁ ବସ୍‌ରୁ ଓହ୍ଲାଇବା ମାତ୍ରେ ସୁରେନ୍‌କୁ ଦେଖିଲି ।

ବ୍ରମ୍‌ଲେରେ ମୋ କୋଠରୀକ ଯାଉଛି, ହଠାତ୍ ପ୍ରସାଧନ ମନ୍ଦର ଦ୍ୱାର ଖୋଲିଗଲା—ସୁନ୍ଦର ମୁହଁଟିଏ । ଅପରିଚିତକୁ ଦେଖି ମୁହଁରେ ମନକୁ ଫୁଟୁଥିବା ହସକୁ ଲୁଚାଇ ଦେଉଥିବା ବେଳେ କହିଲି—ଶାରଦା ପଦ୍ମନାଭନ୍, ନା ?

ତା ନାଆଁଟା ମୋ ମୁହଁରୁ ଶୁଣି ହଠାତ୍ ଚମକି ପଡ଼ିଲା; କିନ୍ତୁ ବୁଝିପାରିଲା—ସୁରେନ୍ କହିଛି ।

ଜ୍ୟୋତ୍ସ୍ନାର ବି. ଏ ଶ୍ରେଣୀର ସଙ୍ଗିନୀ, ଅଦ୍ୟାପି ଅବିବାହିତା; ବ୍ରିଟିଶ୍ ବିମାନର ପରିଚାରିକା ଶାରଦା; ଭ୍ରମଣ ପର୍ଯ୍ୟାପ୍ତ, ବେତନ ପ୍ରଚୁର; ତାମିଲ୍ ଭାଷିଣୀ । ଆକାଶପଥ କିପରି ଭୂପଥ ଅପେକ୍ଷା ଅଧିକ ନିରାପଦ ସେ ବର୍ଣ୍ଣନା କରୁକରୁ କହିଲା—ଆକାଶପଥର ମୃତ୍ୟୁରେ ରୋମାଞ୍ଚ ଅଛି; ସିଧାସଳଖ ପ୍ରେତଲୋକକୁ ଯାତ୍ରା; କିନ୍ତୁ ଭୂପଥର ଆକ୍‌ସିଡେଣ୍ଟରେ ବର୍ତ୍ତିଗଲେ ଜୀବନସାରା କଷ୍ଟ ।

ସୁରେନ୍ କହିଲା—ଷଣ୍ଢ଼ ଆଖାବର ଦେଖିଲେ ବା ଅଜାମୀ ହୋଇ-ଗଲେ ଏ ଦେଶର ସରକାର ପ୍ରଚୁର ସାହାଯ୍ୟ ଦେଇଥାନ୍ତି ।

ଶାରଦା ଆଲୋଚନାର ମଙ୍ଗ ମୋଡ଼ ଦେଇ ପଚାରିଲା—

ଆଜ ଭ୍ରମଣ କପରି ହେଲା ? ଅକ୍ସଫୋର୍ଡରେ ଅଜ ସେ ବାତାବରଣ ନାହିଁ ।

କହିଲ—'ଆଜ ମୋଟେ ନ ଥିଲା, କୁହୁଡ଼ି, ବର୍ଷା ।'

ତା ଉପରେ ଶାରଦା ଟିକଏ ଟିପଣୀ ଦେଇ କହିଲା—ଆଜ ଦିନ ସାରା ଏଇ ନୃତ୍ୟ; ଆବହାଓ୍ବା ଆଦୌ ଭଲ ନାହିଁ ।

କହିଲ—ହୋଇଛି, ମୂହୂର୍ତ୍ତେ ମାତ୍ର, ଅତି ନାଟକୀୟ ଭାବରେ; ହଠାତ୍ ପ୍ରସାଧାନ ଗୃହରୁ ଉଇଁ ଆସୁଥିବା ଚନ୍ଦ୍ର ପରି ଭ୍ରମ ମୂର୍ତ୍ତି ଯେତେବେଳେ ଦେଖି ପକାଇଲ ।

ତାପରେ ଭୋଜନ ଟେବୁଲ୍‌ପାଖେ ବେଶ୍ ହାସ୍ୟରୋଳ ହେଲା ।

କାଲ ଟନ୍ତରେ ମନ୍ତ୍ରଅବ ଶୀତ । ସକାଳୁ ଜୋତ୍ସ୍ନା ଦେଖିଲା—ବସାଦନ୍ତ ଜମାଟ ବାନ୍ଧିଯାଇଛି । ପ୍ରାତରାଶ ବେଳେ ପଚାରିଲା—'Shaving Ladies' କାହିଁକି ବଜ୍ଜାପିତ ? ଝିଅମାନେ କଣ ଏଠି ଖିଅର ହୁଅନ୍ତି ?

ଜୋତ୍ସ୍ନା କହିଲା—ଅନେକ ପୁରୁଷଙ୍କ ମୁହଁରେ ଦାଢ଼ି କାଣ ଉଠେ ନାହିଁ, ସେହିପରି ଅନେକ ଝିଅଙ୍କର ଉଠେ । ଏ ସବୁ କପାଳର । ଝିଅଙ୍କୁ ଖିଅର କରିବା ଲାଗି ସ୍ୱତନ୍ତ୍ର ବ୍ୟବସ୍ଥା ନାହିଁ; ତେବେ ଝିଅ ଭଣ୍ଡାରୀ ଅଛନ୍ତି । କେତେକ ପୁରୁଷ ଝିଅଙ୍କ ହାତେ କରୁଣ୍ଟା ବା ଖିଅର ହେବାକୁ ପସନ୍ଦ କରନ୍ତି । ଅବଶ୍ୟ କିଛି ଅଧିକ ମୂଲ୍ୟ ଦେବାକୁ ପଡ଼େ ।

ତାପରେ ଶାରଦାକୁ ପଚାରିଲ, 'ବିବାହ କରିବ ନାହିଁ ?'

'ସେ ବିଷୟରେ ଭାବି ନାହିଁ ।'

'ଭାବିଲେ କଣ ହୁଏ ?'

'ପ୍ରେମ ଉପରେ ମୋର ବିଶ୍ୱାସ ନାହିଁ ।'

'ନା, ପସନ୍ଦ କରିପାରୁ ନାହାନ୍ତି, କ୍ଷେତ୍ର ଅତି ବିଶାଳ ଥିବାରୁ ?'

'ପସନ୍ଦ ଅପସନ୍ଦର ପ୍ରଶ୍ନ କେବେ ଉଠିନାହିଁ ।'

'ପ୍ରେମ ଆକସ୍ମିକ, ଦୈବାତ୍ କାହା କାହା ଜୀବନକୁ ଜ୍ୟୋତିର୍ମୟ କରିଥାଏ ।'

'ପ୍ରେମ ମିଥ୍ୟା—କବି, ଔପନ୍ୟାସିକ ସେଥିରୁ ଫାଇଦା ଉଠେଇ ଥାନ୍ତି । ଜୀବନର କ୍ଷତି, ଏକ ବିରାଟ ଅପବ୍ୟୟ, ଅପଚୟ ।'

'ତାରି ମଧ୍ୟରେ ହିଁ ଆତ୍ମସନ୍ଧାନ ମିଳିଥାଏ—ସତ୍ୟର ଦର୍ଶନ ।'

'ସେସବୁ ଦର୍ଶନ ମୁଁ ବୁଝେନାହିଁ ।'

'ମାନେ ଏପରି ଲୋକ ହାତୁଡ଼ରେ ପଡ଼ିଯିବେ, ଯାହାଠାରୁ ମନକୁ ଅନ୍ୟତ୍ର କାଢ଼ି ନେଇ ପାରିବେ ନାହିଁ ।'

'ମୋ ନିଜ ଉପରେ ଯଥେଷ୍ଟ ବିଶ୍ୱାସ ରହିଛି; ମନ ମୋର ଶିକ୍ଷିତ, ପୋଖତ ।'

'କିନ୍ତୁ କେବେ ପରୀକ୍ଷିତ ହୋଇନାହିଁ; ପ୍ରେମ ଗୋଟାଏ ପରୀକ୍ଷା ।'

ସୁରେନ୍ କହିଲା—ଭାରତୀୟ ସିନେମା ହଲରେ ପ୍ରେମକାହାଣୀ ଖୁବ୍ ଚାଲେ—ନିତାନ୍ତ ଅପ୍ରାକୃତିକ ।

'ଯେଉଁମାନେ ଏସବୁ ଲେଖୁଛନ୍ତି, ହୁଏତ ସେମାନଙ୍କର ନିଜର କୌଣସି ଅନୁଭୂତି ନାହିଁ, ସମସ୍ତ ଗୋଟାଏ କାଳ୍ପନିକ ବ୍ୟାପାର ହୋଇ ଉଠିଛି । ଲୋକେ ହୁଏତ ଏସବୁ ପସନ୍ଦ କରନ୍ତି, ଭିଡ଼ ତ ଖୁବ୍ ଜମେ !'

'କେଉଁ ଲୋକେ ? ଶିକ୍ଷିତ, ବିଦଗ୍ଧ ବୁଦ୍ଧିମନ୍ତ, ହୁଏତ ରିକ୍ସାବାଲା, ଟଙ୍ଗାବାଲା—କିଜାଣି !'

ଛାପରେ କଥାର ମୋଡ ବୁଲିଗଲ ଫେସନ ଆଡେ । ଜ୍ୟୋତ୍ସ୍ନା କହିଲ—ମୁଁ ଜାଣିଶୁଣି ବାଳ କାଟି ଶ୍ରେଷ୍ଠ କରିଛି । ଏ ଯୁଗରେ ଲମ୍ବା ବାଳ ଲାଳନ କଷ୍ଟସାଧ୍ୟ, ହୁଏତ ଏକ ବୋଝ; ଧୋଇ ନ ପାରିଲେ ମଳ ଜମେ । ଏଠା ଝିଅ ଭଣ୍ଡାରୀ ଦୋକାନକୁ ଯାଇ କେଶ ସାମ୍ପୁ କରନ୍ତି । ସାମ୍ପୁ ଆରାମଦାୟକ । ଏଠା ଝିଅ ବହୁତ ରୋଜଗାର କରନ୍ତି । ପଇସା କଣ କରିବେ ? ଅନେକେ ଫେସନରେ ଖର୍ଚ୍ଚ କରିଥାନ୍ତି । ଭାରତରେ କିନ୍ତୁ ସେକେଣ୍ଡ ହାଣ୍ଡ୍‌କୁ ପସନ୍ଦ ।

କହିଲି—'ଏଠି ସେକେଣ୍ଡ କାହିଁକି, ଥାର୍ଡ ହାଣ୍ଡକୁ ବି ପସନ୍ଦ । କେତେ ବିବାଦ, କେତେ ଗୁନ୍ତମନ୍ଥ ।'

'ମୁଁ ଫେସନ୍ କଥା କହୁଛି ।'

'ନୂଆଗାଡ଼ି ଯେ କିଣି ନ ପାରିବ, ସେ ସେକେଣ୍ଡ୍ ହାଣ୍ଡ୍ କିଣିବ; ପଇସା ଥିଲେତ ହେବ !'

ଶାରଦା କହିଲା—'ମୋ ସାଥୀ ପରିଚାରିକାମାନଙ୍କର ମୋ ଡ୍ରେସ୍‌ର ଅଧେ ବି ନ ଥିବ । ସେମାନଙ୍କ ଦେଶରେ ଏ ବର୍ଷର ଫେସନ ଆର ବର୍ଷକୁ ବଦଳି ଯାଏ । ଯ ହିଁ ଚାହିଁ ଚଳନ୍ତୁ, ଏହା କେହି ଭାବେ ନାହିଁ, ଏ ଗୋଟିଏ ଦରିଦ୍ର ମନୋବୃତ୍ତି । ଗତ ବର୍ଷର ଡ୍ରେସ୍ ଫିଙ୍ଗି ଦିଅନ୍ତି । କିନ୍ତୁ ଆମର ତ କିଛି ଫୋପଡ଼ା ହୁଏ ନାହିଁ, କୋଉ କୋଉ କାଳର ଶାଢ଼ୀ ବ୍ଲାଉଜସ୍ ସବୁ ସାଇତା ହୋଇ ରହିଥାଏ ।'

ଜ୍ୟୋତ୍ସ୍ନା କହିଲା— ବୁଢୀ ମାଆର ବେନାରସୀ ପିନ୍ଧିଲେ ବି କେହି ଅପସନ୍ଦ କରିବେ ନାହିଁ । ଭାରି ଅଳସୁଆ ; ଫେସନରେ ବି ସେଇ ଅଳସୁଆମି । ଯୁଗର ଅଗ୍ରଣୀ ହେବା ତ ଦୂରର କଥା, ଯୁଗ ସଙ୍ଗେ ସେମାନେ ତାଳ ଦେଇ ଗତି କରିପାରନ୍ତି ନାହିଁ ।

ଏଠି ଯେତେ ଧନୀ ହେଲେ ବି କେହି ଅଳସରେ କାଳ କାଟେ ନାହିଁ । ବଡ଼ ଲୋକର ପୁଅ କଠିନ ପରିଶ୍ରମ କରିବାରେ ଲଜ୍ଜା ନାହିଁ ।

ନିଜ ରୋଜଗାରରୁ ନିଜେ ଖର୍ଚ୍ଚ କରିବା ଏଠି ବିଧି । ରୋଜଗାର ନାହିଁ ତ ଖର୍ଚ୍ଚ ନାହିଁ । ବାପର ପଇସା ପୁଅ ଉଡ଼ାଇ ଦେବା କଥା ଏଠି ଶୁଣା ନାହିଁ । ବଡ଼ଲୋକ ପିଲା ବୋଲି ଏଠି କେହି ଏଣ୍ଡେଇ କରେ ନାହିଁ । ସମସ୍ତେ ଶ୍ରମିକ, ସମସ୍ତେ ରଜା ।

ଘରଚଳରେ ଟିକିଏ ମାଟି ବାଣିଲେ ଲୋକେ କହିବେ — ତୁମର କଣ ନାହିଁ ? ମାଟି ବାଣୁଚ ? ଜଣେ ମାଳୀ ରଖ, ମୁଁ ଅଳ୍ପ ଟଙ୍କାରେ ଯୁଟାଇ ଦେବି । ଶ୍ରମର ସ୍ୱାଦ ସେମାନେ ଏବେ ବି ପାଇ ନାହାନ୍ତି; ଟିକିଏ ଅବସର ପାଇଲେ ଖୁସିଗପ, କଳି, ଝିମିଟି ଖେଳରୁ ମହାଭାରତ ।

ମୁଁ କହିଲି — ଶ୍ରମକୁ ଭକ୍ତି କର ଯେଉଁ ଶ୍ରୀ ଗଠିତ ତାହା ସର୍ବ-ସ୍ଥାୟୀ; ଆଦିବାସୀ ମହିଳାଙ୍କ ଶ୍ରୀ ରୌଦ୍ରରେ ମଳିନ ହୁଏ ନାହିଁ — ସାନ୍ତମତ ଲେବୃପିଟା ଦେହେଦ୍ଧ ।

କାଳିଦାସ ଶ୍ରମ ଉପରେ ହିଁ ଶ୍ରୀକୁ ଗଢ଼ିଛନ୍ତି । କଣ୍ୱମୁନିଙ୍କ ଆଶ୍ରମ ବଗିଚାରେ ପାଣି ଦେଇ ଦେଇ ଶକୁନ୍ତଳାର ହାତ କେଡ଼ା ପଡ଼ି ଯାଇଛି; କାନର ଶିରୀଷ ଫୁଲ ଗାଲର ଝାଳରେ ଲାଖି ଯାଇଛି । ଗଛ ବୁଛରେ ପାଣି ନ ଦେଇ ସାଏ ଭୁଣ୍ଡକୁ ତାର ହାତ ଯାଉ ନ ଥିଲା । ଶ୍ରମ ତାର ଫୁଲ ହୋଇ ଫୁଟୁ ଥିଲା । ତେଣୁ ଫୁଲ ଫୁଟା ଦେଖିଲେ ସେ ପ୍ରିୟସଖୀଙ୍କୁ ଡେକ ଦେଉଥିଲା । ପରିଶ୍ରମରୁ ଯେଉଁ ଆନନ୍ଦର ଜନ୍ମ, ତାହା ସର୍ବଶ୍ରେଷ୍ଠ ।

## ଗୋଟିଏ ଦୋକାନରେ (୧ । ୧୦ । ୬୭)

ଟିଡ଼ା ସ୍ଲାକ୍ସ, ପ୍ରିଣ୍ଟ ନାଲି ସ୍ୱେଟର, କାନରେ ନୋଳି; ଦେହକଣା ଜଡ଼ାରେ ଜାଲି ଓ କଣ୍ଠା, ଆଖିରେ କଳା, ଓଠରେ ଲିପଷ୍ଟିକ ପାଦରେ ହାଇହିଲ ସ୍ଲିପର — ଶାରଦା ପଦ୍ମନାଭମ୍, ତା ସହିତ ଜ୍ୟୋସ୍ନା, ଚକ୍ଷୁଧାନ ପ୍ରାପ୍ତ ସେହ୍ୱପଣ; କେବଳ ହାତରେ କାଚ, କେଶ କୁଞ୍ଚିତ, ସ୍ୱେଟର ରହିତ । ସପିଙ୍ଗ୍ ଟ୍ରଲି ଫୁଟ୍ପାଥରେ ଚଲାଇ ଦୁହେଁ ବାହାରିଲେ

ଦୋକାନକୁ; ଏଠା ଦୋକାନ ହିଁ ବଜାରଣ। ସ୍ତର ଦେଖିବା ଲାଗି ମୁଁ ମଧ୍ୟ ଚଲି ସେମାନଙ୍କ ସଙ୍ଗେ ।

ଦୋକାନ ଦ୍ୱାରରେ ଲିଖିତ—'ଖାଦ୍ୟ ଦୋକାନକୁ କୁକୁର ଅଣନାହିଁ', 'ସମସ୍ତଙ୍କ ଲାଗି ଏ ଦୋକାନରେ ଉପହାର ରହିଛି;' 'ଆଜି-ଠାରୁ ସଞ୍ଚୟ କର, ଆମ ସଙ୍ଗେ କ୍ରିସ୍‌ମାସ ଉତ୍ସବରେ ଯୋଗ ଦିଅ'; 'ଏବେ ଯାହା ଦେବ ଦିଅ, ନ ଦେଲେ ନ ଦିଅ ।'

ଫଳ, ମାଂସ—ଗୋ ଶୂକର, ମେଷ କୁକ୍‌କୁଟ, ଭିନ୍ନ ଭିନ୍ନ ଅଂଶ ଅଲଗା କଟା ହୋଇ ରଖା ହୋଇଛି, କଲିଜା ମଧ୍ୟ । ତାପରେ ବିଭିନ୍ନ ପଣିବା, ପାଉଁରୁଟି, ବିସ କୁଟ, ଫଳରସ, ମଶଲାମିଶିଲି, ତେଲ; ଶାରଦା ଟ୍ରଲି ଠେଲି ବୁଲୁଥାଏ, ଜ୍ୟୋସ୍ନା ଜିନିଷ ପସନ୍ଦ କରି ରଖୁଥାଏ, ବେଳେ ବେଳେ ଶାରଦା ସଙ୍ଗେ ବାହାର କରି । ଜିନିଷରେ ଟ୍ରଲି ପୂରିଗଲା । ତାପରେ ଶାରଦା ଟ୍ରଲିକୁ ଗୋଟିଏ କାଉଣ୍ଟରରେ ଭିଡ଼ି କଲା; ଦୋକାନୀ (ଜଣେ ଯୁବତୀ) ଜିନିଷଠିକ ଓଜନ କରି ଆଉ ପାଖେ ଥୋଇଲା । କାଉଣ୍ଟିଂମେସିନରେ ହିସାବ କଲା । ଜୋସ୍ନାର ବ୍ୟାଗ ଥିବା ଟ୍ରଲିରେ ସବୁ ସଜାଡ଼ି ରଖିଲା । ତାପରେ ଜୋସ୍ନା ପାଞ୍ଚପାଉଣ୍ଡ ନୋଟ ବଢ଼ାଇ ଦେଲା; ଦୋକାନୀ ଦାମ ନେଇ କିଛି ଖୁଚୁରା ଫେରାଇ ଦେଲା ।

ତାପରେ ଟ୍ରଲିକୁ ଭିଡ଼ି ଦୁହେଁ ବୁଲିଲେ—ମଗ୍ଣ ଲାଗିଥିବା ଦୁଇଟି ଗଜା ଦାମୁଡ଼ି ଧରି ! ସେଥିପାଇଁ ତେଲ ଉବା ଓ କର୍ନ ଫ୍ଲେକ୍‌ସହିତ ଧଣ ମୁଁ ସେମାନଙ୍କ ପଛେ ପଛେ ବୁଲିଲି, ଟ୍ରଲିରେ ଜାଗା ହେଲା ନାହିଁ ବୋଲି ।

## ଗ୍ରିନ୍‌ଓ୍ୱିଚ (୧ । ୧୦ । ୬୨)

ପଛରେ ଜୋସ୍ନା, ଶାରଦା ଓ ପିଲମାନେ, ଆଗରେ ମୁଁ । ସୁରେନ୍ ତା ହିଲ୍‌ମାନ୍ କାର୍ ଡ୍ରାଇଭ୍ କରି ବୁଲାଇଲା ।

ଶନିବାର ଛୁଟି; ଗାଡ଼ିରେ ରାସ୍ତା ଜାମ୍, ହାତେ ହାତେ ବ୍ୟାଗ୍, ସଉଦା କରିବା ପାଇଁ ଲୋକ ଭେଳା ଭେଳା ହେଉଛନ୍ତି । ସକାଳର

ଝଗଡ଼ିଆ ପାଗ ଆଜ ନାହିଁ, ଝିପ୍ ଝିପ୍ ବର୍ଷା, କ୍ରମେ ମୋଟା ହେଉଛି ତାର ଧାର, ଗଛ ଦୁଖଉଛନ୍ତି।

ବ୍ରମ୍‌ଲେ ହାଇଷ୍ଟ୍ରିଟ୍‌ର ମେଡ଼୍‌ହର୍ଷ୍ଟ ଡ଼ିପାର୍ଟ୍‌ମେଣ୍ଟ ଷ୍ଟୋର ! ଯାର ଉପର ମହଲାରେ ଏଚ୍. ଜି. ୱେଲ୍‌ସ୍ ଜନ୍ମ ହୋଇଥିଲେ, ଶୁଣିଲି। ମନେ ମନେ ନମସ୍କାର କଲି।

ପଛଆଡ଼ୁ ଜୋସ୍ନ ନାଆଁ ଧରି ଡାକୁଥାଏ—ସୁରେନ; ଘଣ୍ଟ ପରମଗୁରୁ ନୁହନ୍ତି, ଦେବତା ନୁହନ୍ତି, ସଖା। ସୁରେନ୍ ବି ସ୍ତ୍ରୀର ନାମ ଧରି ଡାକୁଥାଏ।

ବ୍ଲାକ୍ ହିଥ୍ ପ୍ରାନ୍ତର ମଧ୍ୟରେ ଆମେ ଗଲୁ—ମାଇଲ୍ ମାଇଲ୍ ସୁନ୍ଦର ଘାସ, ଗଡ଼ିଯିବାକୁ ମନ ହେଉଛି। ତାପରେ ଗ୍ରୀନ୍‌ୱିଚ୍ ପାର୍କରେ ଧାଡ଼ି ଧାଡ଼ି ଓକ୍ ଗଛ। ଗୋଟିଏ ଛୋଟ ପାହାଡ଼ ଉପରେ ଗ୍ରୀନ୍‌ୱିଚ୍ ଅବ୍‌ଜରଭେଟୋରି—ଇଂଲଣ୍ଡର ପ୍ରାଚୀନତମ ବୈଜ୍ଞାନିକ ଅନୁଷ୍ଠାନ—୧୬୭୫, ଜୁନ୍ ୨୨ ତାରିଖରେ ସ୍ଥାପିତ। ନଷ୍ଟ ବାରୁଦ ବିକ୍ରୀ କରି (୫୨୦ ପାଉଣ୍ଡ, ଏକ ପେନ୍‌ସ) ଏହାର ପ୍ରାଥମିକ ଖର୍ଚ୍ଚ ତୁଲାଇବାକୁ ପଡ଼ିଥିଲା।

ଏଠାର ପ୍ରଥମ ଜ୍ୟୋତିର୍ବିଦଙ୍କ ନାମ ରେଭେରେଣ୍ଡ ଜନ୍ ଫ୍ଲାମ୍‌ଷ୍ଟିଡ଼୍; ତାପରେ ଏଡ଼୍‌ମଣ୍ଡହେଲି ଏଠି ବହୁ ଗ୍ରହନକ୍ଷତ୍ର ପର୍ଯ୍ୟବେକ୍ଷଣ କରିଥିଲେ। ଗୋଟିଏ ଧୂମକେତୁ ଏହି ଜ୍ୟୋତିର୍ବିଦଙ୍କ ନାମରେ ନାମିତ ହୋଇଥିଲା। ସେ ପ୍ରଥମେ ଗ୍ରୀନ୍‌ୱିଚ୍‌ରେ ଏକ ବିରାଟ ଟେଲିସ୍କୋପ୍ ସ୍ଥାପନ କରିଥିଲେ।

୧୮୮୪ ଖ୍ରୀଷ୍ଟାବ୍ଦରେ ୱାସିଂଟନ୍ ଡ଼ି. ସିରେ ଜ୍ୟୋତିର୍ବିଦମାନଙ୍କର ଗୋଟିଏ ସମ୍ମିଳନୀ ବସିଲା—ଏହା ଗ୍ରୀନ୍‌ୱିଚ୍‌ର ମକର ହାନ୍ତକୁ ଶୂନ ଡ଼ିଗ୍ରୀ ହିସାବରେ ଗ୍ରହଣ କରିଥିଲା।

ଗ୍ରୀନଓ୍ୱିଚ୍‌ର ମେରିଡିଆନ ଲାଇନ—ନିମ୍ନରେ ଓ ଗୋଲାର୍ଦ୍ଧ—ସୁରେନ କହନ୍ତି—ପାଦ ରଖନ୍ତୁ—ଦୁଇ ଗୋଲାର୍ଦ୍ଧରେ; ଅଦ୍ଭୁତ ପୁଲକ ଅନୁଭବ କଲି ।

ଛାପରେ ବୁଲି ଦେଖିଲି ଗାଲିଲିଓ, କୋପରନିକସଙ୍କ ଛବି, ବିଭିନ୍ନ ପ୍ରକାର ଘଣ୍ଟା (ବାଲୁକା ଘଣ୍ଟା—ଏକ ଘଣ୍ଟା, ଅଧଘଣ୍ଟା, ପନ୍ଦର ମିନିଟରେ ବାଲି ତଳକୁ ଖସି ଆସୁଛି), ପୁରାତନ ଟେଲିସକୋପ,ପ୍ରାଚୀନ ପଞ୍ଜିକା ସବୁ । ସୁନ୍ଦର ଘାସ ପଡିଆ ଉପରେ ନୌକଲେଜ ସୌଧର ମନୋରମ ଦୃଶ୍ୟ ଆକର୍ଷଣ କରି ନେଉଥାଏ । କଳ କଳ ଧ୍ୱନିରେ ବହି ଚାଲିଥାଏ ଟେମ୍‌ସ ନଦୀ ।

## କଟିସାର୍କ

'କଟିସାର୍କ' ପଣ୍ୟବାହୀ, ପାଲଟଣା ଜାହାଜ ମାତ୍ର ନୁହେ, ନୁହେ ଅତୀତର ଏକ ଶାଣ୍ଡି ପାଣ୍ଡୁଲିପି କମ୍ବା ଦରଭୁଲା ସ୍ୱପ୍ନ । ଏହା ବ୍ରିଟିସ୍ ନୌଗୌରବର ମୂର୍ତ୍ତି ପ୍ରତୀକ ।

ସେ ଦିନର ଅକ୍ଳାନ୍ତ କର୍ମୀ ସତେ ଯେପରି ବିଶ୍ରାମ ନେଉଛି, ସ୍ମୃତି ବହନ କରିଛନ୍ତି ଶରଶଯ୍ୟା । ଟେମ୍‌ସ ନଦୀର ତୀର, ଲଣ୍ଡନ ବନ୍ଦର, ଗ୍ରୀନ୍‌ଓ୍ୱିଚ୍ ଅବଜରଭେଟରୀ, ନୌକଲେଜ, ନୌହସ୍‌ପିଟାଲ, ନୌବିଶ୍ୱବିଦ୍ୟାଳୟ, ନୌସାଦୁଘର—କଟିସାର୍କ ପରିବେଶରୁ ଖାପ୍ ଖୁଆ ହୋଇ ରହିନାହିଁ । ସେ ଯୁଗ ପୃଥିବୀର ଏକମାତ୍ର ସୁରକ୍ଷିତ ଜାହାଜ—ଲଣ୍ଡନ ନଗରର ଏବେ ଏକ ମୁଖ୍ୟ ଆକର୍ଷଣ ହୋଇଛି । ଚାରି ସାଗର-ବିହାରୀ, ପ୍ରତିପତ୍ତିଶାଳୀ ବ୍ରିଟିସ ଏହାକୁ ଯେଉଁ କଥା ଯଥାର୍ଥ ହୋଇଛି, ସେ ଯୁଗ ଅବଶ୍ୟ ଆଉ ଫେରିବ ନାହିଁ, ଜନ୍ ମେସଫିଲ୍‌ଡ୍ ଲେଖିଛନ୍ତି—

They make our passage as race of men
Earth will not see such ships as these again

ଯେପରି ଜାତିର ଇତିହାସ, ବ୍ୟକ୍ତିର ଜୀବନ କାହାଣୀ, ସେହିପରି ଗୋଟିଏ ଜାହାଜର ଇତିବୃତ୍ତ ମଧ୍ୟ ଲିପିବଦ୍ଧ ହୋଇଅଛି; ଯେପରି ଉନ୍ନତି, ବିଜୟ, ସେହିପରି ପତନ, ପରାଜୟ ଗୋଟିଏ ପୋତର ଯାତ୍ରା ପଥରେ ସମ୍ଭବ—ଏହି କାହାଣୀ ଅଳ୍ପ ଚିତ୍ତାକର୍ଷକ ନୁହେଁ ।

ଗୋଟିଏ ଯୁଗର ଅବସାନ, ଅନ୍ୟ ଏକ ଯୁଗର ଉପକ୍ରମ—ଏଇ ସନ୍ଧି ସ୍ଥଳରେ 'କଟିସାର୍କ'ର ଆବିର୍ଭାବ । ଚୀନରୁ ଚା ବେଶି ଦ୍ରୁତତମ ଗତିରେ ଲଣ୍ଡନରେ ପହଞ୍ଚିବ—ଏହି ଉଚ୍ଚାକାଂକ୍ଷା ମନରେ ପୋଷଣ କରି ଜଣେ ବ୍ୟବସାୟୀ 'ସ୍କଟ ଓ ଲିଣ୍ଟନ' କମ୍ପାନୀକୁ ଏକ ଜାହାଜ ନିର୍ମାଣ ଲାଗି ବରାଦ୍ ଦେଇଥିଲେ; ଟନ୍‌କୁ ସତର ପାଉଣ୍ଡ ଦାମ୍ ଦେବା କଥା ସ୍ଥିର ହୋଇଥିଲା; କମ୍ପାନୀଟି ନୂତନ, ଓ ତାର ଟେଣ୍ଡର୍ ନିମ୍ନତମ ଥିଲା । ଜାହାଜଟି ନିର୍ମାଣ କରୁ କରୁ ଏହା ଦେବାଳିଆ ହୋଇଗଲା । ତାପରେ 'ଡେନ୍ନି ବ୍ରଦେର୍ସ୍' ସେହି ଡକ୍‌ରେ ଏହାର ନିର୍ମାଣ ଶେଷ କରିଥିଲେ; ମୋଟରେ ଖର୍ଚ୍ଚ ହୋଇଥିଲା ୧୬୧୫୦ ପାଉଣ୍ଡ । ପୂର୍ବ ଭାରତୀୟ ସାଗୁଆନ କାଠରେ ତିଆରି, ଏହାର ଓଜନ ଥିଲା ୯୬୩ ଟନ୍, ଘଣ୍ଟାକୁ ଗତି ସତର ନଟ୍, ଏଥିରେ ୨୯ଟି ପାଲ ଲାଗିଥିଲା; ୧୮୬୯, ନଭେମ୍ବରରେ ଏହା ଯାତ୍ରାରମ୍ଭ କଲା, କିନ୍ତୁ ପ୍ରଥମ ଯାତ୍ରାରେ ହିଁ ଭାରତମହାସାଗରରେ ଝଡ଼ର ସମ୍ମୁଖୀନ ହେଲା । ସାଂଘାଇରୁ ଲଣ୍ଡନ ଆସିବାକୁ ଏହାକୁ ୧୧୭ ଦିନ ଲାଗି ଯାଇଥିଲା ।

ପାଲଜାହାଜର ଅସ୍ତକାଳ; ବାଷ୍ପୀୟ ପୋତର ପ୍ରତିଯୋଗିତାରେ କଟିସାର୍କ ଛିଡ଼ା ହୋଇପାରି ନ ଥିଲା, ଟିକେଟ୍ ମୂଲ୍ୟ, ବିଶେଷ ବୋଝବାର ଭଡ଼ା ବହୁତ ତଳକୁ ଖସିଗଲା । ତା ପରେ ଯାତ୍ରୀ ହେଉ ନ ଥିଲେ । ମଟର ଯୁଗରେ ଶଗଡ଼ ଗାଡ଼ିରେ ଯେପରି । ଏଇ ସମୟରେ ବେଢ଼ ଉପରେ କୋରଡ଼ା ପରି ସୁଏଜ କେନାଲ ଖୋଲିଲା, ବାଷ୍ପୀୟ ଜାହାଜମାନଙ୍କ ଯାତ୍ରାପଥ ବହୁତ କମିଗଲା । କିନ୍ତୁ ହାଓ୍ବାର ଗତି ପଥରେ ପାଲଜାହାଜର ଗତି, ହାଓ୍ବାର ମର୍ଜି ଉପରେ ଏହା ଜାହାଜକୁ ନିର୍ଭର କରିବାକୁ ପଡ଼ୁଥିଲା; ଉତ୍ତମାଶା ଅନ୍ତରୀପ ବାଟେ ପୂର୍ବ ପରି ବୁଲି ବୁଲି ବହୁ ବିଳମ୍ବରେ ପାଲଜାହାଜ ଲଣ୍ଡନରେ ପହଞ୍ଚୁଥିଲା । ଚୀନର ଚା ବାଣିଜ୍ୟକୁ ବାଷ୍ପୀୟ

ଜାହାଜ ପ୍ରଗମାନାରେ ଅଧିକାର କରିନେଲା । 'କଟି ସାର୍କ' ଅଷ୍ଟ୍ରେଲିଆରୁ ଇଂଲଣ୍ଡକୁ ପଶମ ବୋହିଲା (୧୮୮୦ରୁ ୧୮୯୫ ପର୍ଯ୍ୟନ୍ତ) । ତାପରେ ଏହି ଜାହାଜ ପଡ଼ିଲା ପର୍ତ୍ତୁଗୀଜଙ୍କ ହାତରେ, ଏହାର ନାମ ବଦଳି ହେଲା 'ଫେରେରା' । ୧୯୨୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସେମାନେ ଏହାକୁ ବିଭିନ୍ନ ପଣ୍ୟ ବହନ କାର୍ଯ୍ୟରେ ଲଗାଇଲେ । ତାପରେ ଉତ୍ତମାଶା ଅନ୍ତରୀପର କାପଟେନ ଡାଓମ୍ୟାନ୍ ସେମାନଙ୍କଠାରୁ ଏହାକୁ ଖରିଦ କରିନେଲେ । ୧୯୩୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଉପକୂଳ ବାଣିଜ୍ୟ କାର୍ଯ୍ୟରେ ଏହା ଲାଗିଥିଲା । କାପ୍‌ଟେନ୍‌ଙ୍କ ମୃତ୍ୟୁପରେ ତାଙ୍କ ବିଧବା ସ୍ତ୍ରୀ ଏହାକୁ 'ଟେମସ୍ ନଟିକାଲ୍ ଟ୍ରେନିଂ' କଲେଜକୁ ଦାନ କଲେ । ତାପରେ 'ମେରିଟାଇମ୍ ନ୍ୟାସନାଲ୍ ମ୍ୟୁଜିଅମ୍'କୁ ଏହା ପ୍ରଦତ୍ତ ହେଲା ।

ସେ କାଳ ଜାହାଜ ଓ ବାଣିଜ୍ୟର ଏକ ଧାରଣା ଜଗତ୍‌ବାସୀଙ୍କୁ ଦେବା ଲାଗି ଏହାର ରକ୍ଷଣାବେକ୍ଷଣ ଚେଷ୍ଟା ହେଲା । କିନ୍ତୁ ରଖିବା ଲାଗି ଜାଗା ଦେବ କିଏ ? ଏଇ ଅକାମୀ ଜାହାଜକୁ ମରାମତି କରିବାକୁ ଟଙ୍କା ଆସିବ କୁଆଡ଼ୁ ? ଏହିପରି ନାନା ସମସ୍ୟା; କିନ୍ତୁ ସଦିଚ୍ଛା, ସଦୁଦ୍ୟମ ବ୍ୟର୍ଥ ହୁଏ ନାହିଁ, ବ୍ୟବସାୟ ବୁଦ୍ଧି ଥିଲେ ଅର୍ଥାଭାବ ଘଟେ ନାହିଁ ।

୧୯୫୭, ଜୁନ ୨୫ ତାରିଖରେ ସାଧାରଣ ଦର୍ଶକଙ୍କ ଲାଗି ଏହା ଉନ୍ମୋଚିତ ହେଲା । ପ୍ରାୟ ସାତବର୍ଷ ମଧ୍ୟରେ ପରିଦର୍ଶକଙ୍କ ସଂଖ୍ୟା ହୋଇଥିଲା କୋଡ଼ିଏ ଲକ୍ଷ; ଯାତ୍ରୀ ପିଛା ଟିକେଟର ମୂଲ୍ୟ ଦୁଇ ସିଲିଙ୍ଗ; ମୋଟ ଆଦାୟ ହୋଇଥିଲା ଅଢ଼େଇଲକ୍ଷ ପାଉଣ୍ଡ । ଏବେ ଏହା ମଧ୍ୟରେ ନୌକଲେଜର ରହି କ୍ଲାସ ହେଉଛି । ଛାତ୍ର ସଂଖ୍ୟା ତିନିଶହରୁ ଅଧିକ ।

ଗାଢ଼ ରଙ୍ଗରେ ରଙ୍ଗୀନ, ପୂର୍ବ ସ୍ମୃତି ସ୍ମରଣ କରାଇବା ଲାଗି କଟିସାର୍କର ଏକ ପାର୍ଶ୍ୱରେ ଜମା ହୋଇଛି ଚା, ଅନ୍ୟ ପାର୍ଶ୍ୱରେ ପଶମ । ଏହି ପଣ୍ୟବାହୀ ପୋତର ବିଭିନ୍ନ କାପଟେନମାନଙ୍କ ଜୀବନୀ ଲିପିବଦ୍ଧ ହୋଇଛି, ସ୍ଥାନେ ସ୍ଥାନେ ଉଲ୍ଲିଖିତ ହୋଇଛି ଜାହାଜର ଇତିହାସ; ଫ୍ଲରେନସ ନାଇଟିଙ୍ଗେଲ, କ୍ଲିଓପାଟ୍ରା, ଗାରିବାଲ୍‌ଡିଙ୍କ କାଷ୍ଠ ମୂର୍ତ୍ତି ପ୍ରଦର୍ଶିତ ହୋଇଛି ।

ନାବକମାନଙ୍କ ଖାଇବା ଟେବୁଲ, ଶୋଇବା ଘର, ଦୋମହଲା ଶଯ୍ୟା ଦେଖି ଦେଖୁ ଥରେ ବୁଲିଦେଲି ଟେମସ ଆଡେ—ପ୍ରବଳ ବର୍ଷା, ତା ମଧ୍ୟରେ ବୁଲୁଛି ଦୁଇଟି ଜାହାଜ ।

'କଟିସାର୍କ' ନିଜେ ଗତିହୀନ, କିନ୍ତୁ ଗତିଶୀଳ କରାଇ ଦଉଛି ମନୁଷ୍ୟର ମନକୁ—ଦୂର ଅତୀତକୁ; ସାତ ସମୁଦ୍ର ଓ ତେର ନଦୀ ଉପରେ ବ୍ରିଟିଶ ଏକାଧିପତ୍ୟର ଶ୍ରେଷ୍ଠ ସ୍ମାରକ ଏ—ଗୌରବ ମଧୁର—ଯେତେବେଳେ ଦୁର୍ଦ୍ଧର୍ଷ ବ୍ରିଟିଶ ହୋଇଥିଲେ ନମସ୍ୟ ସାରା ଜଗତର ।

## ନ୍ୟାସନାଲ ମେରିଟାଇମ୍ ମ୍ୟୁଜିୟମ—

ଏ ଯାଦୁଘରଟି ନ ଦେଖିଲେ ନୌଶକ୍ତିରେ ସେକାଳେ ସର୍ବଶ୍ରେଷ୍ଠ, ବୃହତ୍ତମ ସାମ୍ରାଜ୍ୟର ଅଧିକାରୀ ଇଂରେଜଙ୍କୁ ବୁଝି ହେବ ନାହିଁ । ଏ କେତେ ବଡ଼ ଘରୁଆ, ସ୍ୱ ଘରର କୋଉ କଣରେ କଣ ନାହିଁ ! ବଡ ଘର ପିଲା, ପିଲା ପରି ଏଣେ ତେଣେ ଜିନିଷପତ୍ର ଅବହେଳାରେ ଫିଙ୍ଗି ଫୋପାଡ଼ି ଦେଇ ନାହିଁ, ସବୁ ସଜାଡ଼ି ରଖିଛି; ଏ ଗୋଟିଏ ବଡ଼ ଘରୁଆ । ଯେ କଷ୍ଟ କରିଛି, ଏ ଜାତି କୃତଜ୍ଞତାର ସହିତ ତାକୁ ସ୍ମରଣ କରିଛି, କେଉଁ ଦିଗଟି ବାଦ୍ ପଡ଼ି ଯାଇନାହିଁ । ଯେ କୌଣସି ଦିଗରେ ମନୁଷ୍ୟ କୃତିତ୍ୱ ଅର୍ଜନ କରିପାରେ, ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇପାରେ ।

ତୃଣମୟ ବିସ୍ତୃତ ପ୍ରାଙ୍ଗଣ. ମଝେ ମଝେ ତୋପ୍, ସେସବୁ ପ୍ରାଙ୍ଗଣରେ ସେ ଯୁଗର ନୌକମାଣସବୁ ସଜ୍ଜିତ । ଆମେ ଯାଦୁଘରେ ପ୍ରବେଶ କଲୁ ।

ଦ୍ୱିତୀୟ ମହାଯୁଦ୍ଧର ଦୁଇବର୍ଷ ଆଗରୁ ଏହା ଉନ୍ମୋଚିତ ହୋଇ-ଥିଲା—ସମୁଦ୍ର, ନୌବାହିନୀ ଓ କୁଶଳ ନାବକମାନଙ୍କ ଜୀବନ କାହାଣୀରେ ପ୍ରାସାଦଟି ଭରପୂର; ଏ ଯାଦୁଘରେ ୩୬୦୦ ଅଏଲ୍ ପେଣ୍ଟିଂ, ୯୦୦ ଜାହାଜର ନମୁନା, ସତରଶ ଜାହାଜର ଯନ୍ତ୍ରପାତି, ୮୯୦ଟି ନାବକ ପୋଷାକ, ୩୫୦ଟି ତରବାରି, ୩୫୦୦ ମେଡାଲ୍, ପଚିଶ ହଜାର ପାଣ୍ଡୁଲିପି, ଦୁଇଲକ୍ଷ ଫଟୋ ଓ ଅଗଣିତ ପ୍ରକାଶିତ ପୁସ୍ତକ ସଂରକ୍ଷିତ ହୋଇଅଛି ।

ହେନେରି, ଓ ନାଭିଗେଟରଙ୍କ ପର୍ତ୍ତୁଗୀଜ୍ ଆବିଷ୍କାରକ ଦଳ ଯେଉଁ ଜାହାଜରେ ପଞ୍ଚଦଶ ଶତାବ୍ଦୀରେ ଉତ୍ତମାଶା ଅନ୍ତରୀପରେ ପହଞ୍ଚି-ଥିଲେ, କ୍ୟାପ୍ଟେନ୍ କୁକ୍ କିପରି ବିଶ୍ୱପରିକ୍ରମା କରିଥିଲେ, ଟ୍ରାଫାଲ୍‌ଗାର୍ ଯୁଦ୍ଧରେ ନେଲ୍‌ସନ ଯେଉଁ ପୋଷାକ ପରିଧାନ କରିଥିଲେ, 'ଭିକ୍ଟୋରି' ଜାହାଜରେ ଆହତ ହୋଇ ଯେ କପରି ପ୍ରାଣତ୍ୟାଗ କରିଥିଲେ, ଏଠି ସୁବର୍ଣ୍ଣାକ୍ଷରରେ ଲିପିବଦ୍ଧ ବା ଚିତ୍ରିତ ହୋଇ ରହିଅଛି ।

ଯୁଦ୍ଧଜାହାଜ, ସବ୍‌ମେରିନ୍, ଯାତ୍ରୀ ଜାହାଜ, ପଣ୍ୟ ଜାହାଜ, ମତ୍ସ୍ୟଶିକାରୀ ଜାହାଜ, ଟ୍ରାଫାଲ୍‌ଗାର୍ ଯୁଦ୍ଧରେ ଅଂଶ ଗ୍ରହଣ କରିଥିବା ଜାହାଜର ନାମ ଓ ନମୁନା, ଏୟାର୍ କ୍ରାଫ୍ଟକ୍ୟାରିଅର୍, ଲାଇଫ୍ ବୋଟ୍, କୋଡ଼ିଏଟି ତୋପ ସଜ୍ଜିତ ଯୁଦ୍ଧ ଜାହାଜ, ରାଜବଂଶୀୟମାନଙ୍କ ବିନୋଦନ ଲାଗି ବ୍ୟବହୃତ ନୌକା, ଡ୍ରେକ, ଆଡ୍‌ମିରାଲ୍ ଜନ୍ କାନ୍, ଭର୍ନନ୍, ବେଲ୍ଲଙ୍କର ବ୍ୟବହୃତ ପୋଷାକ, ସପ୍ତମ ଓ ଅଷ୍ଟମ ହେନେରି, ପ୍ରଥମ ଏଲିଜାବେଥଙ୍କ ଛବି, ଫ୍ରାନ୍‌ସିସ୍ ଆରମଡାର ପରାଜୟର ଚିତ୍ର, ସି ଅଷ୍ଟ୍ରୋଲେବ, ସ୍ୟାଣ୍ଡ୍‌ଗ୍ଲାସ୍, କମ୍ପାସ୍, ଘଣ୍ଟା ପ୍ରଭୃତି ଯନ୍ତ୍ରପାତି, ବହୁ ଚାର୍ଟ, ଗ୍ଲୋବ୍, ନୌ ଅଭିଧାନ, ନୌ ଜ୍ଞାନକୋଷ, ମାନଚିତ୍ର, ନୌ ଡକେଇତି, ମେରୁ ଯାତ୍ରା, ପୋତାଶ୍ରୟ, ନୌ ବିଦ୍ରୋହର ଛବି, ଟର୍ପେଡୋ, ଲାଇଟ ହାଉସ୍, ବହୁବିଧ ଲଙ୍ଗର୍, ଟେଲିସ୍କୋପ୍, କାଲ୍‌କୁଲେଟର୍, ନାବିକମାନଙ୍କର ବ୍ୟବହୃତ ବ୍ୟାଜ, ଟୋପି, ବିଭିନ୍ନ ଯୁଗରେ ବିଭିନ୍ନ ପ୍ରକାର ପୋଷାକ,—ଧଳା ଟ୍ରାଉଜର୍, ନାଲ ଜାକେଟ, ପେଟିକୋଟ୍ କିମ୍ବା ଧୂସର ଜାକେଟ୍, ପନ୍ଦରଟି ପିତଳ ବୋତାମଥିବା ଓ୍ୱେଷ୍ଟକୋଟ୍ କିମ୍ବା ନାଲ ଜାକେଟ୍, ବେକରେ କଳା ସିଲ୍‌କ୍ ରୁମାଲ—ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ବ୍ୟବହୃତ ନାନା ପ୍ରକାର କମାଣ, ବନ୍ଧୁକ, ପାଲ ଜାହାଜରୁ ବାଷ୍ପୀୟ ଜାହାଜ ପର୍ଯ୍ୟନ୍ତ ଜାହାଜର ବିକାଶ, ଥରେ ମାତ୍ର ଆଖି ବୁଲାଇଦେଇ ମନ ନେତ୍ର ସାର୍ଥକ କଲି ।

### ଗ୍ରୀଟ୍ ଓ୍ୱେଲ୍—

ଅପରାହ୍ଣ; କେଣ୍ଟ୍‌ର ସବୁଜ ଗ୍ରାମାଞ୍ଚଳ ଉଜ୍ଜ୍ୱଳ ହୋଇ ଉଠିଛି ରୌଦ୍ରରେ । ତୃଣମୟ ଉଚ୍ଚ ଓ ନିମ୍ନଭୂମି—ବନସ୍ପତିର ଗଣ୍ଡିରେ, ଗୃହର

ସ୍ଥାନମାନଙ୍କରେ ଶିଶିର ଜମିଛି । ପଥ ଗହଳ ଭେଦ ଦୃଷ୍ଟି ଦୂରକୁ ଯାଇ ପାରୁନାହିଁ । ଘରମାନଙ୍କରେ ମାଡ଼ିଛି ଆଇଭି ଓ ଭର୍ଜିନିଆ ଲତା; ବନ ଗହନ ମଧ୍ୟରେ ଆଲୋକର ବହୁଧାରା, ବହୁ ବର୍ଣ୍ଣ; ପ୍ରାନ୍ତର ପରେ ପ୍ରାନ୍ତର, ପାହାଡ଼ର ତଳେ ତଳେ ହରିଦ୍ୱଳୟର ଗାଢ଼ ଶ୍ୟାମଳିମା; ମନ ପ୍ରାଣ ଉଠୁଥାଏ କି ଅପୂର୍ବ ଆନନ୍ଦରେ; ଆମେ ଚାର୍ଟୱେଲ ରେ ପହଞ୍ଚିଲୁ ।

ଉଇଣ୍ଟସନ ଲିଓନାର୍ଡ ସ୍ପେନସର ଚର୍ଚ୍ଚିଲଙ୍କ ଗ୍ରାମ ଗୃହ, ଏକାକୀ; ଗୃହ ଚତୁର୍ଦ୍ଦିଗରେ ତାଙ୍କର ପାଞ୍ଚଶ ଏକର ଜମି—ଯାହା ଚର୍ଚ୍ଚିଲ ନିଜେ ଖର୍ଦ୍ଦି କରିଥିଲେ । ଚର୍ଚ୍ଚିଲ ! ତାଙ୍କ ପ୍ରତି ମୋର ଶ୍ରଦ୍ଧା ନଥିଲା, କାରଣ ଭାରତର ସ୍ୱାଧୀନତା ବିପକ୍ଷରେ ଥିଲେ ସେ—ପହିଲା ନମ୍ବର ସାମ୍ରାଜ୍ୟ-ବାଦୀ; ଦ୍ୱିତୀୟ ମହାଯୁଦ୍ଧରେ ମନେ ମନେ ବାଞ୍ଛୁଥିଲି—ତାଙ୍କର ପରାଜୟ, ପତନ । କିନ୍ତୁ ତାଙ୍କ ଦେଶାତ୍ମବୋଧ, ଦୃଢ଼ସଙ୍କଳ୍ପ, ଅସୀମ ସାହସ, ଅଧ୍ୟବସାୟ ଓ କ୍ରିୟାଶୀଳ ବ୍ୟକ୍ତିତ୍ୱ ମୋତେ କ୍ରମେ ଆକର୍ଷଣ କରି ନେଇଥିଲା ।

'ଆମେ ଆତ୍ମ ସମର୍ପଣ କରିବୁ ନାହିଁ'—ଏଇ ଦୃଢ଼ୋକ୍ତିରେ ସେ ଇଂରେଜ ମନରେ ଭରି ଦେଇଥିଲେ ଗଭୀର ଆତ୍ମବିଶ୍ୱାସ; ଚର୍ଚ୍ଚିଲ,ଯେ ଇଂରେଜ ଜାତିକୁ ଉଦ୍ବୁଦ୍ଧ କରି ସଂଗ୍ରାମକୁ ପ୍ରେରଣ କରିଥିଲେ—ଯେପରି ଅହଙ୍କାରୀ, ସେହିପରି ନମ୍ର, ଯେପରି ଭଦ୍ର ସେହିପରି ରୁକ୍ଷ, ଯେପରି ରାଜଭକ୍ତ ସେହିପରି ଜନପ୍ରିୟ—ଚର୍ଚ୍ଚିଲ୍—ଯେ ପରାଜୟ ଓ ଗ୍ଲାନିରୁ ଇଂଲଣ୍ଡକୁ ରକ୍ଷା କରିଥିଲେ; ସେ ଦିନର ଜଣେ ସୈନିକ, ଐତିହାସିକ, ଔପନ୍ୟାସିକ, ବକ୍ତା, ସାମ୍ବାଦିକ, କୂଟନୀତିଜ୍ଞ; ଚର୍ଚ୍ଚିଲ୍ ନାମରେ ଇଂଲଣ୍ଡ ଏବେ ବି ଗର୍ବିତ ହୁଏ । ଚର୍ଚ୍ଚିଲ, ଯେ ପାର୍ଲାମେଣ୍ଟରେ ପାଖ ଷାଠିଏ ବର୍ଷ କଟାଇଥିଲେ, ଯେ କୋଡ଼ିଏ ଥର ନିର୍ବାଚନରେ ଛିଡ଼ା ହୋଇ ଦଶର ଥର ଜିଣିଥିଲେ, ଜୀବନସାରା ନାନା ରାଜନୀତିକ କାର୍ଯ୍ୟରେ ବ୍ୟସ୍ତ ରହି ମଧ୍ୟ ଦୁଇ ଡଜନ୍ ପୁସ୍ତକ ଲେଖିବାକୁ ସମର୍ଥ ହୋଇଥିଲେ । ତାଙ୍କ ପ୍ରତି ଶ୍ରଦ୍ଧାରେ ମୋର ମସ୍ତକ ଅବନତ ହୋଇ ପଡ଼ୁଥିଲା । ଯଦି ବା ତାଙ୍କ ରାଜନୀତିର ଧାର ଧାରୁ ନଥିଲି ମୁଁ ।

୧୮୭୪ ଖ୍ରୀଷ୍ଟାବ୍ଦ, ନଭେମ୍ବର ୩୦ ତାରିଖରେ ତାଙ୍କର ଜନ୍ମ । ପିଲାଦିନେ ସେ ହୋଇଥିଲେ ଶିକ୍ଷକମାନଙ୍କର ଏକ ସମସ୍ୟା । ପାଠଘର ଶୂନ୍ୟ, ବଦ୍‌ମାସିଆଙ୍କ ଶିରୋମଣି । ଶତ ଚେଷ୍ଟା କରିବାରୁ ପ୍ରଧାନ ଶିକ୍ଷକ ତାଙ୍କୁ ଜବତ୍ କଲେ, କ୍ରୋଧରେ ସେ ଶିକ୍ଷକଙ୍କ ଟୋପିଟି ଭିଡ଼ି ଆଣି ପାଦରେ ଚକଟି ଦେଇଥିଲେ । ପାଠ ନହେଲେ ବି ଶାଠରେ ସେ ହାସେ ସ୍କୁଲର ସବୁ ପିଲାଙ୍କୁ ଟପି ଯାଇଥିଲେ ।

ଘୋଷା ବଳଦ; ଲଗ ଲଗ ତିନିବର୍ଷ ସେ ଫେଲ୍ ହେଲେ; ତାପରେ ରୟାଲ୍ ମିଲିଟେରି କଲେଜରେ ଭର୍ତ୍ତି ହେଲେ । ସେତେବେଳେ ତାଙ୍କ ଶ୍ରେଣୀର ଛାତ୍ର ସଂଖ୍ୟା ଥିଲା ୧୫୦; ସେମାନଙ୍କ ମଧ୍ୟରେ ସେ ଅଷ୍ଟମ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇଥିଲେ ।

ତାପରେ ସେ ସୈନିକ ହୋଇ ଭାରତକୁ ଆସିଲେ, ସମ୍ବାଦିକ ହୋଇ ଦକ୍ଷିଣ ଆଫ୍ରିକା ଗଲେ, ବୋଆର୍ ଜେଲରୁ ଖସି ପଳାଇଲେ, ସେତେବେଳେ ବୋଆର୍ ଶାସନକର୍ତ୍ତା ବିଜ୍ଞାପନ ପ୍ରଚାର କରିଥିଲେ—ଗ୍ଲେଟ ଗ୍ଲେଟ ଦାଢ଼ି, ନାକରେ କଥା କହେ, ଖନା—ଯେ ଧରାଇ ଦେବ ପଚିଶ ପାଉଣ୍ଡ ପୁରସ୍କାର ପାଇବ ।

ବୋଆର୍ ଜେଲ୍‌ରୁ ପଳାଇ ଆସିପାରି ଥିବାରୁ ଜଣେ ଜାତୀୟ ବୀର ହିସାବରେ ଇଂଲଣ୍ଡରେ ତାଙ୍କର ପ୍ରତିଷ୍ଠା ହେଲା । ଯୁଦ୍ଧ ସାମ୍ବାଦିକ ହିସାବରେ ମଧ୍ୟ ସେ ସୁନାମ ଅର୍ଜନ କଲେ ।

୧୯୦୧ରେ ପାର୍ଲାମେଣ୍ଟରେ ପ୍ରଥମ ବକ୍ତୃତା ଦେଲାବେଳେ ତାଙ୍କ ଗୁଣ୍ଡ ଶଙ୍କାରେ ଥରି ଉଠିଥିଲା; ତୁଣ୍ଡରୁ ବଚନ ବାହାରି ନଥିଲା । କିନ୍ତୁ ପରେ ସେ ଲେଖି ମୁଖସ୍ଥ କରି ବକ୍ତୃତା ଦେଲେ; କ୍ରମେ ସେଥିରେ ଓଜସ୍ୱିତା ଓ ଆତ୍ମବିଶ୍ୱାସ ଫୁଟି ଉଠିଲା । କୌଣସି ସନ୍ଥ ମଠର ଲାଗି ଲେଖିଥିବା ଗୋଟିଏ 'ମଟୋ' ସେ ଜୀବନରେ ଅନୁସରଣ କରିଥିଲେ—

ଯୁଦ୍ଧେ —ସଂକଳ୍ପ
ପରାଜୟେ —ପ୍ରତିରୋଧ

ବଜଟପ୍ସ —ଉଦାରତା
ଶାନ୍ତିରେ — ଶୁଭେଚ୍ଛା ।

ଦ୍ୱିତୀୟ ମହାଯୁଦ୍ଧ ଶେଷ ହେବାର ମାତ୍ର ଅଶୀ ଦିନ ପରେ ନିର୍ବାଚନ ହେଲା; ସେ ହାରିଲେ, କାଳଜୟୀ ହେବାର ଅପୂର୍ବ ସୁଯୋଗ ତାଙ୍କୁ ମିଳିଗଲା । ସେ ଲେଖି ବସିଲେ—History of the world-war II—୧୯୪୮ରୁ ୧୯୫୪ ମଧ୍ୟରେ ଛଅଖଣ୍ଡ ଖଣ୍ଡରେ ଏହା ପ୍ରକାଶିତ ହେଲା, ତାଙ୍କୁ ଏ କାର୍ଯ୍ୟରେ ସାହାଯ୍ୟ କରିବା ଲାଗି ବହୁ ବିଦ୍ୱାନ୍; ଐତିହାସିକ, ଗବେଷକ, ସମ୍ପାଦକ ଚ୍ଚର୍ଟହ୍ୱେଲ୍‌ରେ ଚୂଣ୍ଡ ହୋଇଥିଲେ । ସେକ୍ରେଟେରୀମାନେ ଛଅଖଣ୍ଡ ସିଫ୍‌ଟରେ କାମ କରୁଥିଲେ । ଦିନେ ଦିନେ ସେ ଅ଼ାଠ ହଜାର ଶବ୍ଦ ଡାକିବାକୁ ସମର୍ଥ ହେଉଥିଲେ ।

ପେଣ୍ଟିଂ କରିବା ତାଙ୍କ ଶେଷ ଜୀବନର ଏକ ବିନୋଦନ ଥିଲା । ପ୍ରାକୃତିକ ଦୃଶ୍ୟ ଅଙ୍କନ କରିବାକୁ ସେ ଭଲ ପାଉଥିଲେ, ଥରେ ବର୍ଲିଂଟନ୍ ହାଉସରେ ତାଙ୍କର ୬୨ ଗୋଟି ଛବିର ଗୋଟିଏ ପ୍ରଦର୍ଶନୀ ହୋଇଥିଲା । ଏହାକୁ ଦେଖିବା ଲାଗି ପ୍ରାୟ ଦେଢ଼ଲକ୍ଷ ଦର୍ଶକ ଆସିଥିଲେ ।

'ନୋବେଲ୍'ପୁରସ୍କାର ପ୍ରାପ୍ତି ପରେ ସେ କହିଥିଲେ—'ବିଚାରକମାନେ ମୋତେ ପୁରସ୍କାର ଦେଇ ବିଶ୍ୱରରେ କିଛି କ୍ଷତି କରି ନାହାନ୍ତି ତ ? ଆଗରୁ ଅବଶ୍ୟ ଦୁଇଜଣ ଇଂରେଜ ପାଇଥିଲେ—ରୁଡ୍‌ୟାର୍ଡ୍ କିପ୍‌ଲିଙ୍ଗ୍, ବାର୍ନାର୍ଡ଼ସ, ଏହି ପୂର୍ବସୂରୀମାନଙ୍କ ସମାସ୍କନ୍ଧ ହୋଇ ଛିଡ଼ା ହେବାର ଯୋଗ୍ୟତା ମୋର ନାହିଁ । ତେବେ କିପ୍‌ଲିଙ୍ଗଙ୍କ ସହିତ ଶବ୍ଦର ସାମ୍ୟ ଯଥେଷ୍ଟ ।

ତାଙ୍କ ସାଫଲ୍ୟର ଗୁପ୍ତ ରହସ୍ୟ କଣ ବୋଲି ଜଣେ ପଚାରିବାରୁ ସେ କହିଥିଲେ—ବସିବାର କିଛି ବାଟ ଥିଲେ ଛିଡ଼ା ହୁଅ ନାହିଁ, ଶୋଇବାର କିଛି ଉପାୟ ଥିଲେ ବସ ନାହିଁ ।

ତାଙ୍କ ଜୀବନୀ ଚିନ୍ତା କରୁ କରୁ ଗ୍ଲେନ୍‌ର ଉତ୍ତୁଙ୍ଗ ସବୁଜ ପ୍ରାଚୀର ପାଖେ ଯାଇ ଛିଡ଼ା ହେଲି; ବୁଢ଼ା ବୁଢ଼ା ଓକ୍ ସବୁ —ତଳିରେ ଅଙ୍କିଲା

ମରି ଗଣ୍ଡିରେ ଜମିଛି ଭେଲଭେଟ୍ ଶିଉଳି, ସତେ ବା ସବୁଜ ରସ ଝରି ପଡ଼ୁଛି ଗହଳ ପତ୍ର କୁଞ୍ଜରୁ! ଏ ପ୍ରକୃତ ନା ଅଙ୍କିତ ?

ପାହାଡ଼ ଉପରେ ଚର୍ଚ୍ଚିଲଙ୍କ ଘର—ଘର ଆଗରେ କେତେ-କଣ ଲଗାଇଛି, ନିକୁଞ୍ଜ କୁଟୀର ଯେପରି । ଘର ମୂଳରୁ ଗଡ଼ାଣିଆ ଲମ୍ବି ଯାଇଛି ଘାସ ପଡ଼ିଆ, ଗୋଟିଏ ଲମ୍ବ ପୁଷ୍କରିଣୀ କୂଳପାଏ! ପୁଷ୍କରିଣୀ ମଧ୍ୟରେ ଦ୍ୱୀପ, ଦ୍ୱୀପକୁ ସେତୁ ନିର୍ମିତ । ଦ୍ୱୀପରେ ଗୋଟିଏ ଓକ୍, ଗୋଟିଏ ଫିର୍ ଗଛ; ତା ମୂଳରେ ବସିବା ଲାଗି ଚୌକି, ପୃଷ୍ଠ ପଟରେ କ୍ଷୁଦ୍ର ଶୈଳରେ ବନସ୍ପତି, ଆକାଶକୁ ଡାଳ ପତ୍ର କି ଲାଗିଛି !

ପୁଷ୍କରିଣୀରେ ପହଁରୁଛନ୍ତି କେତୋଟି ରାଜହଂସ, କଳା, ମଣିଷ ଦେଖିଲେ ଥଣ୍ଟ ଟେକ କରି ଗୋଡ଼ାଉଛନ୍ତି । ଚର୍ଚ୍ଚିଲ ଏହି ହଂସସବୁ ଅଷ୍ଟ୍ରେଲିଆରୁ ଉପହାର ପାଇଥିଲେ

ଗୋଲାପ ଉଦ୍ୟାନ ଫୁଲଭରା; ନାନା ଜାତି ନାଲ୍ ଫୁଲ ତାର ଧଡ଼ି ସ୍ୱରୂପ ହୋଇଅଛି, ସବୁଜ ପ୍ରାନ୍ତର ମଧ୍ୟରେ । ଫଳଦିଆ ଜେନିଆ ଆଖିକି ବନ୍ଦୀ କରି ନେଉଛି—ଅସ୍ତେ ମୁକ୍ତ ହୋଇ ଦୃଷ୍ଟି ଧାଇଁଯାଉଛି ଐତିହାସିକ ଅରଣ୍ୟକୁ ଓ ସୁବିସ୍ତୃତ ଶ୍ୟାମଳ କେଦାରକୁ ଚୁମ୍ବି ଚୁମ୍ବି ।

ପ୍ରାନ୍ତରର ମଧ୍ୟ ଭାଗରେ ଗୋଟିଏ ସୂର୍ଯ୍ୟଘଣ୍ଟା, ଘଡ଼ି ତଳେ କପୋତ କପୋତୀଙ୍କ ସମାଧି ଦିଆ ହୋଇଛି (୧୯୩୬ ରେ) । ଖୋଦିତ ହୋଇଛି ଶିଳାଲେଖ—କବିତା ପଦେ ।

ଗୋଲାପ ଉଦ୍ୟାନର କୋଣରେ ଘରଟିଏ; ସେଇଠି ବସି ଦୃଷ୍ଟି ପକାଇଲେ ମାଇଲ ମାଇଲ ନିମ୍ନ ଭୂମି ଅଂଶ—ମନକୁ ସବୁଜର ସ୍ୱପ୍ନ ପଶି ଆସେ ଜୁଆରିଆ ହୋଇ । ଛୋଟ ଛୋଟ ଗିରି ଶୈଳ, ଦୂରବର୍ତ୍ତୀ ଗ୍ରାମ—ଦୃଷ୍ଟିରୋଧକ ଗୋଟିଏ ହେଲେ ବୃକ୍ଷ କେଉଁଠି ନାହିଁ ।

ଚର୍ଚ୍ଚିଲଙ୍କ ସନ୍ତରଣପୁଷ୍କରିଣୀ ପାଖେ ପହଞ୍ଚିଲି । ତଟାଣରେ ଶିଉଳି ବସିଛି—ବେଶ୍ ଗୋଟିଏ ନାଲ ଅସ୍ତରଣ । ସେଥିରେ ଏବେ କେହି

ସ୍ନାନ କରୁନାହାନ୍ତି; ଉପରୁ ଗୋଟିଏ କ୍ଷୀଣ ଜଳଧାର ଆସି ପଡ଼ୁଛି ବେଳେ, ସ୍ନାନ ପୁଷ୍କରିଣୀରୁ ଗୋଟିଏ ଧାର ମଧ୍ୟ ତଳ ବୃହତ୍ ପୁଷ୍କରିଣୀରେ ଯାଇ ପଡ଼ୁଛି ।

ପ୍ରଶସ୍ତ ଓ ସୁକାର୍ଣ୍ଣ, ସବୁଜ, ପୀତ ଓ ଲୋହିତ ପତ୍ରର ବିଚିତ୍ର କୁଞ୍ଜ ମଧ୍ୟରେ ଆଉ ଗୋଟିଏ ଜଳାଧାର; ସୁବର୍ଣ୍ଣ ଓରଫେ ମାଛ ପହଁରୁଛନ୍ତି; ଆକାରରେ ବୃହତ୍ । ଜଳାଧାର ପାଖରେ ପାଖରେ କାଜ୍‌ସବର ମଧ୍ୟ ଖାଦ୍ୟ ରଖା ଯାଇଛି ।

ଗୋଧୂଳି କିରଣ ଏଇ ଉଦ୍ୟାନ, ପ୍ରାନ୍ତର ଓ ତାର ପରିପାର୍ଶ୍ୱକୁ ସଜାଇଛି ଏକ ନୂତନ ସ୍ୱପ୍ନଲୋକ ଶୈଳୀରେ; ପାତଳ କୁହୁଡ଼ି ଓ ସବୁଜ ସ୍ତରେ ସ୍ତରେ ଅସ୍ତଗଗନର ଅପରୂପ ଲୀଳା, ସାହିତ୍ୟିକ ଓ ଚିତ୍ରକର ଚର୍ଚ୍ଚିଲଙ୍କୁ ଯେବେ ଦେଇଥିଲା ପ୍ରେରଣା ।

ଚର୍ଚ୍ଚିଲଙ୍କ ଗୃହ ଏବେ ହୋଇଛି ଗୋଟିଏ ଯାଦୁଘର, ଚର୍ଚ୍ଚିଲଙ୍କ ପେଣ୍ଟିଂ, ପୁସ୍ତକ, ବ୍ୟବହୃତ ଦ୍ରବ୍ୟସମ୍ଭାରରେ ଭରପୂର । ଚର୍ଚ୍ଚିଲଙ୍କ ଷ୍ଟୁଡିଓ ଗୃହ ଏବେ ସାଧାରଣଙ୍କ ଲାଗି ଉନ୍ମୋଚିତ ହୋଇନାହିଁ । ୧୯୬୪ ରୁ ଚର୍ଚ୍ଚିଲଙ୍କ ଗୃହରେ ଗୋଟିଏ ଅତିଥି ଦସ୍ତଖତ ଖାତା ଚାଲି ଆସୁଅଛି । ଅତିଥି ବିଦାୟ ବେଳେ ଏଥିରେ ଠିକଣା, ଆଗମନ ଓ ବିଦାୟକାଳ ଲେଖିଯାନ୍ତି ।

ଥରେ କ୍ଲେଡ୍ ହର୍ସ, ବ୍ରୁଞ୍ଜ ମଡେଲଟି ଚର୍ଚ୍ଚିଲଙ୍କୁ ତାଙ୍କର ଜଣେ ଶିଳ୍ପୀ ବନ୍ଧୁ ଉପହାର ଦେଇଥିଲେ । ଚର୍ଚ୍ଚିଲ୍ ଅଶ୍ୱପ୍ରିୟ; ଚାର୍ଟୱେଲ୍‌ରେ ସେ ସୁନ୍ଦର ସୁନ୍ଦର ଅଶ୍ୱ ପାଳନ କରୁଥିଲେ । ଗୋଟିଏ ଅଶ୍ୱର ନାମ ଥିଲା 'କଲୋନିଷ୍ଟ' । ସେ ଦୌଡ଼ ପ୍ରତିଯୋଗିତାରେ ତେରଥର ଜୟଲାଭ କରିଥିଲା ଓ ଚର୍ଚ୍ଚିଲ ତେର ହଜାର ପାଉଣ୍ଡ ଲାଭ କରିଥିଲେ ।

ଶ୍ୱେତ ସୁବର୍ଣ୍ଣ 'ଗ୍ରଇନା ପ୍ଲେଟ୍' ଫ୍ରାନସର ରାଜା ନେପୋଲିଅନ୍ ତୃତୀୟଙ୍କର । ୧୮୭୧ରେ ଏକ ପ୍ରଜାବିପ୍ଳବରେ ଫ୍ରାନ୍ସର ଟିୟୁଲେରିଜ୍ ରାଜବାଟି ଦଗ୍ଧୀଭୂତ ହୋଇଥିଲା । ତାହା ପୂର୍ବରୁ ଜନୈକ

ନିଲାମ କରା ହୋଇଥିଲା । ସେତେବେଳେ ଚର୍ଚ୍ଚିଲ୍‌ଙ୍କ ବୃଦ୍ଧା ମାଆ ଜେନେରେମ୍ ପ୍ୟାଲେସରେ ଥିଲେ ଓ ଏଇ ପ୍ଲେଟ୍‌ସବୁ ନିଲାମ ଧରିଥିଲେ ।

କାଚର କୁକୁଡ଼ାଟି ଡଲ୍ଲର ଡଗଲ୍ ଲେଡ ଚର୍ଚ୍ଚିଲଙ୍କୁ ଉପହାର ଦେଇଥିଲେ । ନେପୋଲିଅନ ଓ ତାଙ୍କ ସେନାପତିଙ୍କ ଛବିଗୁଡ଼ିକ ଲର୍ଡ ବେକନ୍‌ଙ୍କ ଉପହାର । କାର୍ପେଟ୍‌ଟି ପାରସ୍ୟର ସାହାଙ୍କ ଉପହାର (୬୯ ବର୍ଷ ଜନ୍ମ ଦିବସରେ); ସେତେବେଳେ ଚର୍ଚ୍ଚିଲ ଟେହେରାନରେ ଥିଲେ । 'ଟେପେଷ୍ଟ୍ରି ଚେୟାର୍'ଟି ଯୁଦ୍ଧରେ ଉଦ୍ଧାରପ୍ରାପ୍ତ ବ୍ୟକ୍ତିମାନେ ଚର୍ଚ୍ଚିଲଙ୍କୁ ଉପହାର ଦେଇଥିଲେ; ବହୁ କ୍ଷତ ଓ କ୍ଷତିରୁ ପୃଥିବୀକୁ ରକ୍ଷା କରିଥିବା ଯୋଗୁଁ ।

ଅନ୍ୟ ଏକ ଗୃହରେ ଚର୍ଚ୍ଚିଲଙ୍କ ବାଲ୍ୟ ବୟସର ବହୁ ଫଟୋ, ଡ୍ରେସ୍, ଟ୍ରଫି, ଅନେକର ଡକ୍ଟରେଟ୍ ଡଗ୍ରୀ ପତ୍ର, ଜର୍ମାନ ବୋମାମାଡ଼ ବେଳେ ଚର୍ଚ୍ଚିଲ ବନ୍ଧୁକ ଧରି ବାହାରିବା ଓ ଗୋଟିଏ ଶିଶୁ ସଙ୍ଗେ ଆଳାପ କରିବା ଛବି, ପାର୍ଲାମେଣ୍ଟର ସଭ୍ୟ ହେବାଠାରୁ ବ୍ରିଟେନର ପ୍ରଧାନମନ୍ତ୍ରୀ ହେବା ପର୍ଯ୍ୟନ୍ତ ନାନା ଫଟୋ, ତାଙ୍କ ପିତା ଓ ପୁତ୍ର କନ୍ୟାଙ୍କର ଛବି, ତାଙ୍କ ଜନ୍ମସ୍ଥାନ ବ୍ଲେନ୍‌ହିମ୍ ପାଲେସ୍‌ର ଛବି ପ୍ରଦର୍ଶିତ ହୋଇଅଛି । ସାଉଦି ଆରବର ରାଜା ତାଙ୍କୁ ଗୋଟିଏ ସ୍ୱର୍ଣ୍ଣ ଖଡ଼ଗକୋଷ ଉପହାର ଦେଇଥିଲେ । ଯୁଦ୍ଧକାଳର ମିଳିତ ଶକ୍ତିମାନଙ୍କର ସ୍ୱତନ୍ତ୍ର ପତାକା ୧୯୪୪, ଜୁନ୍ ପାଞ୍ଚ ତାରିଖରେ ଇଟାଲୀର ରାଜଧାନୀ ରୋମ୍ ନଗରୀରେ ଉଡ଼ିଥିଲା; ତାହା ଏହି କୋଠରୀକୁ ମଣ୍ଡନ କରିଅଛି ।

'ସିଂହ'ଟି ଲେକ୍‌ସମର୍ଭିଲବାସୀ ଉପହାର ଦେଇଥିଲେ । ସେଣ୍ଟ ଗୁଡ଼ିକ ଲେଡ଼ି ଚର୍ଚ୍ଚିଲଙ୍କ ଉପହାର । ବୈଠକ ଘର, ଭୋଜନାଳୟ ଟେବୁଲ ଓ ଶଯ୍ୟା ପୂର୍ବପରି ସଜ୍ଜିତ । ଯେଉଁ ଚୌକିରେ ସେ ବସୁଥିଲେ, ଯେଉଁସବୁ ଟେବୁଲରେ ଲେଖୁଥିଲେ, ଅଧିକାଂଶ ଲେଖା ଲେଖିଥିଲେ, ସେ ସବୁ ସୁରକ୍ଷିତ ହୋଇଅଛି ।

ପାଠାଗାରଟି ବିପୁଳ; ଚର୍ଚ୍ଚିଲଙ୍କ ପ୍ରଶସ୍ତ ଦୃଷ୍ଟି ଓ ରୁଚି ବୈଚିତ୍ର୍ୟର ପରିଚୟ ଏଥିରୁ ମିଳିଥାଏ । ଏହି ଗୃହ ତ୍ୟାଗ କରି ସେ ୧୯୬୪,

ଅକ୍ଟୋବର ମାସରେ ଲଣ୍ଡନ ଯାତ୍ରା ଚାଲି ତାଙ୍କର ପ୍ରିୟ ଗ୍ରୀଟ୍‌ଓ୍ୱେଲକୁ ସେ ଆଉ ଫେରି ନାହାନ୍ତି । ୧୯୭୫, ଅଗଷ୍ଟ ୨୦ ତାରିଖରେ ୯୯ ବର୍ଷ ବୟସରେ ସେ ଇହଧାମ ତ୍ୟାଗ କଲେ । ଜନ୍ ମେସଫିଲ୍ଡ ଲେଖିଛନ୍ତି—

"So when canvulsion came of direst need,
when in a mess of Nations overthrown,
this England stood at bay, and stood alone,
his figure, then commanding, stood as stone".

ଗ୍ରୀଟ୍‌ଓ୍ୱେଲରୁ ଫେରିବା ବେଳକୁ ଚେଷ୍ଟନଟ ଉପରେ ଗୋଧୂଳିର ତେଜ ଆଉ ନଥିଲା; ସନ୍ଧ୍ୟାର ଯାଦୁ କରୁ ଆଲୁଅ ମେଘ ଖଣ୍ଡରେ; ଘନ ବନ ଉପରେ ଘଡ଼ିଏ ଅସ୍ଥିର ଗତି; ମାଉଣ୍ଟ ଉଡ଼ା ପକ୍ଷୀ ଝାଙ୍କର ଅନୁଭୂତ ପରସ୍ପରକୁ ବର୍ଣ୍ଣନା କରୁଥିଲେ । ବଂଶଗତ ସଂଳାପ ବିପୁଳ କୋଳାହଳରେ ପରିଣତ ହୁଏ, ଏଇ ଚେତନାରେ କେହି ସଙ୍କୁଚିତ ହେଉ ନଥିଲେ, ଆଶ୍ଚର୍ଯ୍ୟ, ଏ ବାକ୍‌ଚାତୁରୀ ଦେଶରେ !

ଫେରିଲାବେଳକୁ ପଡ଼ୋଶୀ ବୁଢ଼ୀ ଓ୍ୱେଷ୍ଟୱୁଡ୍ ପୁଡ଼ିଂ ଦେଇ ଯାଇଛି—କେକ୍, ଦୁଧ, ଚେରି, ପିଚର୍, ଇତ୍ୟାଦିର ପୁଡ଼ିଂ ଆଜିଏ ମୋ ଲାଗି । ଅତିଥି ଜନ ସାମାନ୍ୟ ପରିଚୟ; ମୁଁ ଏତେ ଶ୍ରଦ୍ଧା ଓ ସ୍ନେହର ପାତ୍ର ଯେପରି କ ନୁହେ, ମୋର ମନେ ହେଲା ।

ଆଜି ମାଛ ଭଜା, ଆଳୁଭଜା, ବିନ୍ ଭଜା, ଶେଷରେ ଏଇ ପୁଡ଼ିଂ ! ପୁଡ଼ିଂ ନାଆଁ ଶୁଣି ଶେଯରୁ ଉଠିଆସିଲେ ସଞ୍ଜୟ, କହିଲେ— ମାଆ, ଆମେ ପୁଡ଼ିଂ ଖାଇବୁ । ବାପ ମାଆ କହନ୍ତି ନା ଶୁଣିବନ୍ତା । 'ତୁମର ରାତି ଭୋଜନ ଶେଷ ହୋଇ ଯାଇଛି; କାଲି ଖାଇବ,' ଯେତେ କାନ୍ଦିଲେ ବୋଝାଇଲେ ନ ହେଲା ! ଯେମିତି ପିତା, ତେମିତି ମାତା । ଶେଯରେ ସଞ୍ଜୟ କାନ୍ଦି କାନ୍ଦି କହୁଥିଲା—ମାଆ, କାଲି ପୁଡ଼ିଂ ଦେବାକୁ ଯେପରି ଭୁଲି ନ ଯାଅ !

# ଗୋପୀବାବୁ

ଏମ୍. ଆର୍. ବଲସେଭର୍ ଭଦ୍ର ଉଦୟଙ୍କର ସୁପରିଚିତ । ସେ ଟ୍ୱିକେନହାମ, ମିଡଲସେକ୍ସରେ ଥାନ୍ତି । ମୋତେ ଓ ଜ୍ୟୋତ୍ସ୍ନା ସୁରେନ ଭେଣ୍ଟଙ୍କୁ ଲଞ୍ଚ ନିମନ୍ତ୍ରଣ କରିଛନ୍ତି । 'ବଲସେଭର' ମାନେ ଗ୍ରାମ ମୁଖ୍ୟ; ସେ କଙ୍କଣୀ; ଘର ମାଙ୍ଗାଲୋରଠାରେ, ଡାକନାମ ଗୋପୀନାଥ ।

ଗୋପୀ ଫ୍ଲାଇଟ ଇଞ୍ଜିନିଅର—ସପ୍ତାହକେ ଦୁଇଦିନ ପ୍ଲେନ୍‌ରେ କଟାନ୍ତି, ଲଣ୍ଡନରୁ ନିଉୟର୍କ, ନିଉୟର୍କରୁ ଲଣ୍ଡନ ତାଙ୍କର ଯାତ୍ରା । ସେ ଯାତ୍ରୀ ବସି ଉଜାଗର ରହି ପ୍ଲେନ୍ ଚଳଚଳ ଲକ୍ଷ୍ୟ କରୁଥାନ୍ତି । ଇଞ୍ଜିନ୍ ଖରାପ ହେଲେ ପାଇଲଟ ଜାଣିବା ଆଗରୁ ସେ ଜାଣନ୍ତି । ତାଙ୍କ 'ଜେଟ୍' ଚାରିଇଞ୍ଜିନ୍‌ଯୁକ୍ତ; ଯେଉଁଟି ଖରାପ ହୁଏ, ସେ ବନ୍ଦ କରି ଦିଅନ୍ତି, ବାକି ତିନୋଟି ଚାଲୁ ରହେ । ସପ୍ତାହକେ ପାଞ୍ଚଦିନ ତାଙ୍କୁ ଅପେକ୍ଷା କରି ରହିବାକୁ ପଡ଼େ—ଗୋଟିଏ ଦିନ ନିଉୟର୍କରେ, ଚାରିଦିନ ଲଣ୍ଡନରେ । ହଠାତ୍ ଡାକରା ଆସିଲେ ସେ ଯାନ୍ତି ।

ତାଙ୍କ ସ୍ତ୍ରୀଙ୍କ ନାଆଁ ଶାଳିନୀ, ଆଧୁନିକା; ସେମାନଙ୍କର ତିନୋଟି ପିଲା—ସୀତା, ଦୀପା, ରାଜୁ । ଶାଳିନୀଙ୍କ ବାପାଙ୍କ ନାଆଁ ରାମାରାଓ, ବୟସ୍କ, କିନ୍ତୁ ପୂରା ମାତ୍ରାରେ ସତେଜ ଓ କର୍ମଠ ରହିଛନ୍ତି ।

ଫଳରସ ପାନ ପରେ ଇଂଲଣ୍ଡର ଭିକାରୀଙ୍କ କଥା ପଡ଼ିଲା । ରାଓ କହିଲେ—ଏଠି ଆମଆଡ଼ ପରି ମାଗନ୍ତା ନାହାନ୍ତି, କିନ୍ତୁ ସେମାନେ ଭିକାରୀ ନୁହନ୍ତି, ଆଉ କଣ ? ପେନ୍‌ସିଲ୍ କମ୍ବା ଦିଆସିଲ୍‌ଟିଏ ବିକନ୍ତି—ଏଠି ନିଅ, ଆମକୁ କିଛି ଦିଅ; କିଣ, ଦରକାର ଥାଉ ବା ନ ଥାଉ । ଏମାନଙ୍କୁ ଜିନିଷ ମୂଲ୍ୟର ତିନି ଗୁଣ ବା ଚାରିଗୁଣ ଦିଆ ଯାଇଥାଏ ।

କେତେଦିନ ପରେ ପୁଣି ଖାଇବାକୁ ମିଳିଲା—ଭାତ ଡାଲି ସଙ୍ଗେ ଦହି, ପକଡ଼ି, ପାମ୍ପଡ଼ । ଖିଆପିଆ ପରେ ଗୋପୀବାବୁ ଆମକୁ ଉଇଣ୍ଡସର୍ ଦୁଗ ଦେଖାଇବାକୁ ନେଲେ ।

## ଉଇଣ୍ଡ୍‌ସର ଦୁର୍ଗ

ଟେମସ୍ ନଦୀକୂଳରେ ଏକ ପାହାଡ଼ ଉପରେ ଅବସ୍ଥିତ । ନଦୀ ତଟରେ ତଟରେ ସୁଦୀର୍ଘ ପ୍ରାନ୍ତରସବୁ; ରାଜୋଦ୍ୟାନ, ଗୋଲାପ ଡାଳିଆ ଭରା; ଦୁର୍ଗ ପ୍ରାଚୀରରେ କମାଣ ଖଞ୍ଜା ହୋଇଛି, ଅବଶ୍ୟ ଅକାମୀ, କେବଳ ଗୋଟାଏ 'ସୋ'; ବକିଂହାମ୍ ପାଲେସ୍‌ର ସବୁ ଆୟୋଜନ, ଆଡ଼ମ୍ବର ଏଠି ରହିଛି, ସେହିପରି କଳା ଓ ଲାଲ୍ ପୋଷାକ ପିନ୍ଧା ଗାର୍ଡ଼ ରହିଛନ୍ତି; କାରଣ ରାଜା ବା ରାଣୀଙ୍କର ଏହା ବିଶିଷ୍ଟ ପ୍ରାସାଦ ।

ଏହା ଟାଓ୍ୱାର୍ ଅଫ୍ ଲଣ୍ଡନର ସମକାଳୀନ (ଖ୍ରୀ ୧୦୭୮); ସେତେବେଳେ ଏକ ସାଧାରଣ ଦୁର୍ଗ ଥିଲା । ଦୁର୍ବଳ ଜନ୍‌ଙ୍କ ରାଜତ୍ୱ କାଳରେ ବିପ୍ଳବୀ ବାରନ୍‌ମାନେ ଏହି ଦୁର୍ଗ ଅଧିକାର କରିଥିଲେ । ଜନ୍ ଫ୍ରାନ୍‌ସକୁ ପଳାୟନ କଲେ ଓ ତାଙ୍କ ଓ୍ୱେଲ୍‌ସ୍ ସୈନ୍ୟମାନେ ନିହତ ହେଲେ । ୧୨୧୫ ଖ୍ରୀଷ୍ଟାବ୍ଦ, ଜୁନ୍‌ ମାସର ପନ୍ଦରରୁ ତେଇଶି ତାରିଖ ତାଙ୍କ ପକ୍ଷରେ ଏକ ଅପମାନସ୍ମୃତି; ଉଇଣ୍ଡସର୍ ଦୁର୍ଗର ମାତ୍ର ଦୁଇ ମାଇଲ୍ ଦୂରରେ 'ରନିମିଡ଼୍'ରେ ତାଙ୍କୁ 'ମାଗ୍ନାକାର୍ଟା' ଦସ୍ତଖତ କରିବାକୁ ହୋଇଥିଲା । ସେ ହୋଇଥିଲେ ବାରନ୍‌ମାନଙ୍କ କ୍ରୀଡ଼ାପୁତ୍ତଳ, ନାମକୁ ମାତ୍ର ରଜା । ଏବେ ରନିମିଡ଼୍'ରେ ସେଇ ସ୍ମୃତି ସଙ୍କେତ ରଖା ଯାଇଅଛି ।

ଅଧିକାର କାଳରେ ବାରନ୍‌ମାନେ ଦୁର୍ଗର ବିଶେଷ କ୍ଷତି ଘଟାଇ ଥିଲେ । ତୃତୀୟ ହେନେରୀ ଏହା ମରାମତି କରିଥିଲେ । ସେତେବେଳେ 'ଟେଲ୍ ଅଫ୍ କେଣ୍ଟରବରୀ'ର କବି ଚସର୍ ଏହି ଦୁର୍ଗରେ ଦୁଇ ବର୍ଷ କରଣୀ କାର୍ଯ୍ୟ କରିଥିଲେ ।

ଏହି ଦୁର୍ଗ ତୃତୀୟ ଏଡ଼ଓ୍ୱାର୍ଡ଼ଙ୍କ ଜନ୍ମ ସ୍ଥାନ । ସେ ଓ ରାଣୀ ଏଲିଜାବେଥ୍ (୧ମ) ଏହାର ବିଶେଷ ଉନ୍ନତି ବିଧାନ କରିଥିଲେ ।

'ରାଉଣ୍ଡହେଡ୍'ମାନେ ବିନାଶ କରିବା ପୂର୍ବରୁ ପ୍ରଥମ ଚାର୍ଲସ୍‌ଙ୍କୁ ଏହି ଦୁର୍ଗରେ ବନ୍ଦୀ କରି ରଖିଥିଲେ । କେତେକ ବିଶିଷ୍ଟ ବ୍ୟକ୍ତି ରାଜାଙ୍କ

ଶତକରୁ ଆଣି ଅଷ୍ଟମ ହେନେରୀଙ୍କ ସମାଧି ନିକଟରେ ସମାଧି ଦେଇଥିଲେ; ସେତେବେଳେ ଘୋର ବରଫଝଡ଼, ଅନ୍ଧକାର; ତାଙ୍କୁ କୌଣସି ରାଜକୀୟ ସମ୍ମାନ ପ୍ରଦର୍ଶିତ ହୋଇ ନ ଥିଲା ।

ଦ୍ୱିତୀୟ ଚାର୍ଲସ୍ ଉଇଣ୍ଡସରକୁ ଫ୍ରାନ୍ସର ରାଜା ଲୁଇ ଚତୁର୍ଦ୍ଦଶଙ୍କ ଭର୍ସେଲସ୍ ରାଜପ୍ରାସାଦ ସହିତ ତୁଳନା କରୁଥିଲେ; ଦୁର୍ଗର ଦକ୍ଷିଣରେ ସେ ଏକ ସୁଦୀର୍ଘ ପ୍ରାନ୍ତର ନିର୍ମାଣ କରି ମଧ୍ୟ ମଧ୍ୟେ ଏଲ୍ମ୍ ବୃକ୍ଷ ରୋପଣ କରିଥିଲେ । ସେ ସବୁ କଟା ହୋଇ ଏବେ ଚେଷ୍ଟନଟ୍ ଓ ପ୍ଲେନ୍ ବୃକ୍ଷ ରୋପିତ ହୋଇଅଛି ।

ରାଣୀ ଭିକ୍ଟୋରିଆଙ୍କ ସମୟରେ ଉଇଣ୍ଡସର୍ ହୋଇଥିଲା ମୁଖ୍ୟ ରାଜବାଟି । ରେଲ୍‌ୱେ ନିର୍ମାଣ ଫଳରେ ଏଠୁ ଶାସନ ଚଳାଇବା ତାଙ୍କ ପକ୍ଷେ ସୁବିଧାଜନକ ହୋଇଥିଲା । ପ୍ରିନ୍ସ ଆଲବର୍ଟ ମଧ୍ୟ ଗ୍ରାମ ପରିବେଶ ମଧ୍ୟରେ ରହିବାକୁ ଅଧିକ ପସନ୍ଦ କରୁଥିଲେ । କିନ୍ତୁ ଏଇଠି ଟାଇଫଏଡ୍ ରୋଗରେ ତାଙ୍କର ମୃତ୍ୟୁ ହୋଇଥିଲା ।

ଦ୍ୱିତୀୟ ମହାଯୁଦ୍ଧ ବେଳେ ଉଇଣ୍ଡସରରେ ରାଜ ପରିବାର ଆଶ୍ରୟ ନେଇଥିଲେ । ପାହାଡ଼ ମୂଳରେ ପଞ୍ଚମ ଜର୍ଜଙ୍କ ସମାଧି ରହିଛି । ସେ ହାଉସ୍ ଅଫ୍ ଉଇଣ୍ଡସରର ପ୍ରଥମ ସମ୍ରାଟ । ରାଣୀ ଏଲିଜାବେଥ୍ ଦ୍ୱିତୀୟ ସେହି ପୈତୃକ ପରମ୍ପରା ରକ୍ଷା କରି ଆସିଛନ୍ତି । ୧୯୫୨ର ଘୋଷଣା ଅନୁସାରେ ସେ ଓ ତାଙ୍କ ପରିବାର ଲୋକେ ଉଇଣ୍ଡସର ପ୍ରାସାଦ ଓ ପରିବାରର ଅନ୍ତର୍ଭୁକ୍ତ ।

ରାଣୀ ଏଲିଜାବେଥ୍ ୨ୟ ସେତେବେଳେ ଦୁର୍ଗ ମଧ୍ୟରେ; ଆମେ ପ୍ରବେଶ ଅନୁମତି ପାଇଲୁ ନାହିଁ । କେବଳ ବାହାରୁ ତାର ପ୍ରାକୃତିକ ପରିବେଶର ଗୁରୁଗୌରବ ହୃଦୟରେ ଅନୁଭବ କରି ଫେରି ଆସିଲୁ । ବାଟରେ 'ରିଚମଣ୍ଡ' ହୋଟେଲ୍‌ରେ ଶେଷ ସାକ୍ଷାତ୍ ହେଲା ଏୟାର ହୋଷ୍ଟେସ୍ ଶାରଦା ପଦ୍ମନାଭମଙ୍କ ସହିତ । ଏୟାର ହୋଷ୍ଟେସ୍‌ମାନଙ୍କର ହଷ୍ଟେଲ୍ ଏଠି; ଶାରଦା ବହୁତ ସୁନ୍ଦର ସଙ୍ଗିନୀ ମେଳରେ ଆମକୁ ବିଦାୟ ନମସ୍କାର କଲା ।

## ମାଡାମ୍ ଟୁସାଉଡସ୍

କେତୋଟି ପାର ଆହାର ଖୁଣ୍ଟୁଛନ୍ତି ବର୍ଷା ନ ମାନି, ପେଟ-ବକଳିଆ। ଧୂଳି ଧୂଳି ପତ୍ରରସ୍ତୁ ଖସୁଚି; 'ହାଇଡ୍' ପାର୍କରେ ଅଣ୍ଟୁଏ ବଦଳ ଚଳଚଳଦ; ବଡ଼ ବଡ଼ ବୃକ୍ଷ ଧଳା ସଫା କରୁଛନ୍ତି ଜାନେକାଉ ଶ୍ରମିକ। ବୁଢ଼ାବୁଢ଼ୀ ସେଇ ମାଡ଼ ଅସୁନ୍ଥି, ଶୀତ। କିଛି ନ ମାନି ଦଳେ ଝିଅ ଘୋଡ଼ା ଚଢ଼ି ବୁଲୁଛନ୍ତି, ଆଉ ଦଳେ ଦୌଡ଼ୁଛନ୍ତି। ଫୁଟପାଥରେ ଫଳ ଗାଡ଼ି ଠେଲି ଠେଲି ବୁଲୁଛନ୍ତି ବିକାଳି। 'ଛ' ସପ୍ତାହ ହେଲା ନାବିକ ଧର୍ମଘଟ, ଲଣ୍ଡନରେ ଦରବଢ଼ି ନାହିଁ। କିନ୍ତୁ ସାହେବଙ୍କ ମୁଦ୍ରାର ମୂଲ୍ୟାଙ୍କନ ସଙ୍ଗେ ସଙ୍ଗେ ଭେଣ୍ଡି ବାଇଗଣର ଦର ବି ବଢ଼ିଗଲା। କୋଉଠି କେ ଉତ୍ତରୁ ସମସ୍ତେ ଜାଣନ୍ତି, କେଉଁ ସୁଧାର ଚାଲୁନାହିଁ।

ମାଡାମ୍ ଟୁସାଉଡ୍‌ସରେ ଆମେ ପହଞ୍ଚିଲୁ। ଏ ଗୋଟିଏ ଜାଗ୍ରତ ଗୌରବ ମନ୍ଦିର, ଏହା ମଧ୍ୟରେ ଆକର୍ଷଣ ଓଜନଦାର ଏବେ ପଶୁଛୁ। ଛ'ପିକେଙ୍ଗ୍ ଟିକେଟ କିଣି ଭିତରକୁ ଗଲି। ଇଂଲଣ୍ଡର ଇତିହାସ ଏଠି ମୂର୍ତ୍ତି; ଆଲ୍‌ଫ୍ରେଡ୍‌ଙ୍କଠାରୁ ରାଣୀ ଏଲିଜାବେଥ, ସପ୍ତମ ହେନ୍ରି ରାଜରାଣୀ, ଡିଜ୍‌ରେଲି, ଗ୍ଲାଡ୍‌ଷ୍ଟୋନ୍, ଲଏଡ୍ ଜର୍ଜ୍, ରାମ୍‌ସେ ମାକଡୋନାଲ୍ଡ, ମାକ୍‌ମିଲନ୍; ଚର୍ଚ୍ଚିଲ୍; ଅଟ୍‌ଲି ପ୍ରଭୃତି ନେତା, ଡ୍ରେକ୍‌ଙ୍କ ପରି ଦୁଃସାହସୀ, ନେଲ୍‌ସନଙ୍କ ପରି ନୌସେନାପତି, ୱେଲିଂଟନଙ୍କ ପରି ସ୍ଥଳ ସେନାପତି, ବର୍କଙ୍କ ପରି ବାଗ୍ମୀ, ସାର୍ ଓ୍ୱାଲ୍‌ଟର୍ ସ୍କଟ୍, ମାକ୍‌ଲେ ଏଚ୍., ଜି. ୱେଲସ, ଜର୍ଜ ବାର୍ନାଡ଼ଶ, ରବର୍ଟ ବର୍ନସ, ରୁଡ୍‌ୟାର୍ଡ କିପଲିଙ୍ଗ, ଥୋମାସ ହାର୍ଡି; ଲର୍ଡ ବାଇରନ୍, ଚସର୍, ମିଲ୍‌ଟନ, ସେକ୍ସପିଅର, ଡିକେନ୍‌ସଙ୍କ ପରି ଲେଖକଙ୍କୁ ଏଠି ମହମରେ ମୂର୍ତ୍ତି କରାଯାଇଛି। ତାଛଡ଼ା କମନ-ୱେଲ୍‌ଥ ଦେଶମାନଙ୍କର ନେତା — ଗାନ୍ଧି, ଜବାହର ଲାଲ ନେହରୁ, ଲାଲ ବାହାଦୁର ଶାସ୍ତ୍ରୀ ଓ କମ୍ୟୁନିଷ୍ଟ ନେତା ଲେନିନ, ଷ୍ଟାଲିନ, ମାଓସେତୁଙ୍ଗ ଓ ଆମେରିକାର ସଭାପତି ଅବ୍ରାହାମ୍ ଲିଙ୍କନ, ୱାସିଂଟନ, ଆଇଜେନ୍‌ହୋଭର, କେନେଡ଼ି; ଜନ୍‌ସନ୍‌ଙ୍କୁ ମୂର୍ତ୍ତିମନ୍ତ କରାଯାଇଛି। ଇଂଲଣ୍ଡର ଲୋକେ ଜାଗ୍ରତ ଇତିହାସରୁ କପରି ପ୍ରେରଣା ପାଇବେ, ସେଥିଲାଗି ଏଇ ଯାଦୁଘରର ଆୟୋଜନ, ଇତିହାସକୁ ରକ୍ତମାଂସ ଦେଇ ଜୀବନ୍ତ କରିବା

ଲାଗି ଏ ଚେଷ୍ଟା ପ୍ରକୃତରେ ସଫଳ ହୋଇଥିଲା । କୃଷ୍ଣଚନ୍ଦ୍ର ମଧୁସୂଦନଙ୍କର ପଦେ କବିତା ମନେ ପଡ଼ଗଲା—

ଜାତି ଇତିହାସ ଜାତିର ନିର୍ଝର
ଚିର୍ଦ୍ଦ ବହେ ସଦା ଜାତି ପ୍ରାଣଧାର
ସେ ଧାରରୁ ଯାର ପିଉଛି ସେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।

## ମି. ବୌଲ୍‌ଟନ୍—ଓଡ଼ିଆ ଅଧ୍ୟାପକ

ଆଜ ଗୋପୀବାବୁ ମୋର ଗାଇଡ଼୍; ସେ ପଚାରିଲେ ମୋତେ ଲଣ୍ଡନ ବିଶ୍ୱ ବିଦ୍ୟାଳୟକୁ ଯିବାଗଲେ ଓ ତାଙ୍କ ବନ୍ଧୁ ପାଖର ଭିତରୁ ପି. ଏସ୍. ନେଁଆଙ୍କ ସଙ୍ଗେ ପରିଚିତ କରାଇଦେଲେ । ବିଶ୍ୱବିଦ୍ୟାଳୟ ପାଠାଗାର ବୁଲି ଦେଖି ଦେଖି ଭାରତୀୟ ଭାଷାର ଓଡ଼ିଆ ସେକ୍-ସନ୍‌ରେ ମି. ବୌଲ୍‌ଟନଙ୍କ ସହିତ ସାକ୍ଷାତ ହୋଇଗଲା । ସେ ଏବେ ଲଣ୍ଡନ ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ, ମୋ ଗ୍ରନ୍ଥଙ୍କର ଗ୍ରାହ । ବିଜୟ ପ୍ରସାଦ ମହାପାତ୍ର ଲଣ୍ଡନରେ ଥିଲାବେଳେ ତାଙ୍କୁ ଓଡ଼ିଆ ଶିଖାଇ ଥିଲେ । ପଢ଼ି ପଢ଼ି ସେ ଏଇ ଭାଷାରେ ବିଶେଷଜ୍ଞ ହୋଇ ଉଠିଛନ୍ତି—ଫକୀର ମୋହନଙ୍କ ଉପରେ ଥିସିସ୍ ଲେଖିଛନ୍ତି; ଏତେ ସୁନ୍ଦର ଓଡ଼ିଆ କୌଣସି ଇଂରେଜ ମୁହଁରୁ କେବେ ଶୁଣି-ନାହିଁ, ଉଚ୍ଚାରଣ ସ୍ପଷ୍ଟ । ମୋତେ କହିଲେ—'ଏଠି କାହା ସଙ୍ଗେ କଥା ହେବି ? ଅଭ୍ୟାସ ନାହିଁ, ନଇଲେ ଆହୁରି ପ୍ରାଞ୍ଜଳ ଭାବେ ଓଡ଼ିଆ କହିପାରନ୍ତି ।'

ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ବୌଲ୍‌ଟନଙ୍କ ଶ୍ରଦ୍ଧା ଦେଖି ମନେ ହେଲା—ସେ ବୋଧେ ପୂର୍ବ ଜନ୍ମରେ ଓଡ଼ିଆ ଥିଲେ । ଓଡ଼ିଆ ପଢ଼ିବାକୁ ତ ପିଲା ନାହାନ୍ତି । ତାଙ୍କୁ ବେଳେ ବେଳେ ବଙ୍ଗଳାକ୍ଳାସ୍ ଦିଆଯାଏ । କିନ୍ତୁ ବଙ୍ଗଳା ପଢ଼ିବା ବା ପଢ଼େଇବାରେ ତାଙ୍କର ଆନନ୍ଦ ନାହିଁ । ଓଡ଼ିଆ ଭାଷାକୁ ସେ ଗଭୀର ସମ୍ମାନ

ଦେଉଥିବା ଦେଖି ମୋ ଗ୍ରନ୍ଥ କୁଣ୍ଠେ ମୋଟ ହୋଇଗଲା । ମନେ ହେଲା—ସେ ମୋର ଆତ୍ମୀୟ; ବିଦେଶୀ ମୁଖରେ ଓଡ଼ିଆ ଭାଷା ବଡ଼ ମଧୁର ଶୁଣାଗଲା । ଦେହ ମୋର ଶିହରି ଉଠିଲା, ଏଇ ସ୍ୱତନ୍ତ୍ର ମାଧୁର୍ଯ୍ୟର ଆସ୍ୱାଦ ପାଇ ।

ବୌଲଟନ୍‌ଙ୍କ ଦୃଷ୍ଟିରେ ଫକୀରମୋହନଙ୍କ ଆତ୍ମଚରିତ ଖଣ୍ଡିଏ ଅଦ୍‌ଭୁତ ପୁସ୍ତକ; ଓଡ଼ିଆ ଭାଷାରେ ବ୍ରିଟିସ୍ ଶାସକଙ୍କ ଅଜ୍ଞତା, ଫକୀର-ମୋହନଙ୍କ ସୁଯୋଗ ଗ୍ରହଣ ଓ ଉମ୍‌ପଡ଼ା ପ୍ରଜାମେଳି ଦମନ ତାଙ୍କୁ ବଡ଼ କୌତୁକପ୍ରଦ ବୋଧ ହେଉଥିଲା ।

"Well, ପ୍ରଜାମାନେ, ତୁମ୍ଭେମାନେ କହୁଛ—ରାଜାଙ୍କ ସହିତ ତୁମ୍ଭମାନଙ୍କର ଯେଉଁ ବିବାଦ ଚାଲୁଅଛି, ଦେବାନ ଫକୀରମୋହନ ବାବୁ ମଧ୍ୟସ୍ଥ ହୋଇ ସେ ଗୋଳମାଳ ନିଷ୍ପତ୍ତି କରିଦେବେ ?"

ଚାରି ପାଞ୍ଚ ଜଣ ସରଦାର ପଧାନ ଏକ ସଙ୍ଗରେ ପାଟି କରି କହିଲେ "ଦେବାନ୍‌ବାବୁ ଯଦି ଗୋଳମାଳ ନିଷ୍ପତ୍ତି କରିଦେବେ, ତେବେ ଆପଣ କି ସକାଶେ ଏତେ ବର୍ଷା ତୋଫାନରେ କଟକରୁ ଧାଇଁ ଆଇଲେ ?"

ସାହେବ ବୁଝି ନ ପାରି ଫକୀରମୋହନଙ୍କ ମୁହଁକୁ ଚାହିଁଲେ । ଫକୀରମୋହନ ବୁଝାଇଲେ—ଏମାନେ କହୁଛନ୍ତି କି' ଦେବାନବାବୁ ଆମ୍ଭମାନଙ୍କ ମାମଲା ନିକାଶ କରିଦେବେ । ଆପଣ ଏ ବର୍ଷା ତୋଫାନରେ କଟକରୁ ଆସି କଷ୍ଟ ପାଉଛନ୍ତି କାହିଁକି ?

ବୌଲଟନ୍ ଆତ୍ମଚରିତରୁ ଏ କଥା ଉଦ୍ଧାର କରି ହସି ହସି ଗଡ଼ି ଯାଉଥାନ୍ତି । ତାଙ୍କ ମୁହଁରୁ ଏ ସବୁ ଶୁଣିବାକୁ ବଡ଼ ମଜା ଲାଗୁଥାଏ; ଆମେ ଲଣ୍ଡନର ଫୁଟ୍‌ପାଥ୍‌ରେ ଚାଲିଥାଉ, ଖଣ୍ଡିଏ ମାତ୍ର ଛତା; ମଝିରେ ମୁଁ, ଗୋଟାଏ ପଟେ ଗୋପୀବାବୁ, ଆର ପଟେ ବୌଲଟନ୍, ସେ ଜାଣି ଶୁଣି ଛତାଟି ଗୋପୀବାବୁଙ୍କ ଆଡ଼କୁ ଆଣେଇ ଦେଉଥାନ୍ତି । ନିଜେ ଗୋଟାପଣେ

ଉଦା; ଛଡା ସେଧା କଲେ କହନ୍ତି—ଆମ ଦେଶ ବର୍ଷା, ସେଥିରେ ବାଧିବ ନାହିଁ । ଆଶ୍ଚର୍ଯ ମନ୍ତବ୍ୟ !

ମୁଁ ଇଂରେଜଙ୍କ ସାଧୁଚାରୀତାର ପ୍ରଶଂସା କରିବା ବୌଲଟନ୍ କହିଲେ—ଆମ ଜାତିର ମର୍ମ ତୁମେ କଣ ଜାଣ ?

ଟାକ୍‌ସିବାଲା ଅପରିଚିତ ବିଦେଶୀକୁ ବୁଲେଇ ବୁଲେଇ ନିଏ, ବେଶୀ ପଇସା ଆଦାୟ କରିବ ବୋଲି ।

ସ୍ତେବ ଜନିଷ ବିକ୍ରୀ ଏଠି ବେଶ୍ ଚାଲେ—କଣ ନା ଗିର୍ଜାରେ ଦିଏ ମାଗଣା ମିଳୁଥିବା ବାଇବଲ୍; ଡକାଳ ଗିର୍ଜା ନାମରେ ଲେଖକ 'Lady chatterly's lover', ବାଜ୍ୟାପ୍ତ ଉପନ୍ୟାସ ।

ପ୍ରସ୍ତାବ ଦେଲି—ଚାଲ, Tower of london ଦେଖି ଆସିବା । ବୌଲଟନ୍ କହିଲେ—ରାଜମୁକୁଟର ହୀରା ଦେଖି ଯିବା ଇଚ୍ଛା ମୋର ନାହିଁ; କାରଣ ଏ ଦେଶର ରାଜାମାନଙ୍କ ଅତ୍ୟାଚାର ମୋର ମନେ ପଡ଼ିଯିବ । ଅଷ୍ଟମ ହେନେରୀ 'ଉଟୋପିଆ'ର ଲେଖକ ସାର୍ ଟମାସ୍‌ମୁର୍‌ଙ୍କୁ କି ନିଷ୍ଠୁର ଭାବରେ ହତ୍ୟା କରିଛନ୍ତି ! ସାର୍ ଓ୍ୱାଲଟର୍ ରାଲେ ମଧ୍ୟ ସେହିପରି ଦୁର୍ଭାଗ୍ୟର ସମ୍ମୁଖୀନ ହୋଇଛନ୍ତି; ସେଇସବୁ ଅତ୍ୟାଚାରର ଇତିହାସ କଣ ଏବେ ଲେଖା ହେଲଣି ? ଜ୍ଞାନ ଗରିମାର ପୂଜା ଏ ଦେଶରେ କାହିଁ ? ସବୁଠୁ ଧନ, ଧନର ଅର୍ଚ୍ଚନା ଚାଲିଛି, ବ୍ରିଟିଶ୍ ଗୋଟାଏ ବଣିକ୍ ଜାତି ।

## ଫୋକ୍‌ଲୋର୍ ସୋସାଇଟି

ବୌଲଟନ୍ ସୋସାଇଟିର ସେକ୍ରେଟେରୀଙ୍କ ସହିତ ପରିଚିତ କରେଇ ଦେଲେ, ସେ ମୋତେ ପାଠାଗାରଟି ଦେଖାଇଲେ । ଏହି ସୋସାଇଟି ୧୮୭୮ ଖ୍ରୀଷ୍ଟାବ୍ଦରେ ସ୍ଥାପିତ; ସମଗ୍ର ଜଗତର ନାନା ପୁସ୍ତକ ସଂଗୃହୀତ—ଭୂତପ୍ରେତ ବିଶ୍ୱାସ, ଯାଦୁବିଦ୍ୟା, ପ୍ରାଚୀନ ଔଷଧ ପ୍ରୟୋଗ, ଜନ୍ମୋତ୍ସବ, ମୃତାତ୍ମା ପୂଜା, ମେଳା ମେଳଣ, ଧର୍ମୋତ୍ସବ;

ବିବାହୋତ୍ସବ, ପାନଯାତ୍ରା, ବ୍ରତ ଉପବାସ, କ୍ରୀଡ଼ା କୌତୁକ, ଢଗଢମାଳି ପ୍ରବଚନ, ଧାଁଧିଆ, ଲୋକକଥା, କିମ୍ବଦନ୍ତୀ, ଲୋକକଳା, ଗ୍ରାମ୍ୟ ଶିଳ୍ପ, ଲୋକ ନାଟ୍ୟ, ଲୋକସ୍ମୃତି, ଲୋକନୃତ୍ୟ, ନୃତତ୍ତ୍ୱ, ସମାଜତତ୍ତ୍ୱ ଆଦି ବିଷୟରେ ।

'ଫୋକ୍‌ଲୋର୍' ପତ୍ରିକା ଏହି ସୋସାଇଟି ତରଫରୁ ପ୍ରକାଶିତ ହୁଏ । ବର୍ଷକେ ଦଶଥର ଅଧିବେଶନ ହୋଇଥାଏ, ମାସର ତୃତୀୟ ବୁଧବାର (ଅକ୍ଟୋବରରୁ ଜୁନ୍) ଦିନ । ସେଥିରେ ପ୍ରବନ୍ଧ ପାଠ ଓ ଆଲୋଚନା ହୋଇଥାଏ । ଏ ବର୍ଷର କାର୍ଯ୍ୟକ୍ରମରେ ରହିଛି—'ବ୍ରିଟେନରେ ମାୟାମୟ ଅରଣ୍ୟ', 'ଏସେକ୍ସର ଡାହାଣୀ ତତ୍ତ୍ୱ', 'ପାରମ୍ପରିକ ଲୋକାଚାର ଓ ସ୍ୱପ୍ନ', 'କେଲ୍‌ଟିକ ଲୋକସ୍ମୃତି' ଇତ୍ୟାଦି । ଫୋକ୍‌ଲୋର ସୋସାଇଟିର ପାଠାଗାର ଓ ଅଫିସ ଲଣ୍ଡନ ବିଶ୍ୱବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ ।

ସମୟ ପ୍ରାୟ ଗୋଟାଏ, ପ୍ରବଳ ବର୍ଷା; ପଦାକୁ ବାହାରିବାର ଉପାୟ ନାହିଁ । ବୈଲ୍‌ଟନ୍ ମୋତେ ବିଶ୍ୱବିଦ୍ୟାଳୟ କାଫେରେ ଖୁଆଇଲେ— ଟମାଟୋ ଝୋଳ, ଅଣ୍ଡାଭଜା, ମାଛଭଜା, ପାଚିଲା କଦଳୀ ।

ବୁଲି ବୁଲି ଗୋଡ଼ ହାତ ଭିଜି ହେଉଥାଏ । ସେଇ ଅବସ୍ଥାରେ 'ଇଙ୍ଗ୍ଲିସ୍ ଫୋକ୍ ଡ୍ୟାନ୍‌ସ୍ ଆଣ୍ଡ ସଙ୍ଗ୍ ସୋସାଇଟି' ଦେଖିଗଲୁ । ଏହାର ସଭ୍ୟ ସଂଖ୍ୟା ପ୍ରାୟ ପାଞ୍ଚ ହଜାର । ସମିତି ତରଫରୁ ଗୋଟିଏ ମୁଖପତ୍ର ପ୍ରକାଶ ପାଏ— ପ୍ରତ୍ୟେକ ଖଣ୍ଡର ଦାମ୍ ବାର ସିଲିଙ୍ଗ୍; ଲୋକ ସାହିତ୍ୟ ସଙ୍ଗୀତ ଓ ନୃତ୍ୟ ସମ୍ବନ୍ଧୀୟ ପାଠଣୀୟ ପୁସ୍ତକ ଏଠି ବିକ୍ରୀ ହୁଏ, ନୃତ୍ୟ ଗୀତ ଶିକ୍ଷା ଦେବାର ଉପଯୁକ୍ତ ବ୍ୟବସ୍ଥା ରହିଅଛି, କେତେକ ପୁସ୍ତକ କିଣି ଗୋଟିଏ ଟାକ୍ସିରେ ଆମେ ଟେମ୍‌ସ ନଦୀ କୂଳରେ ପହଞ୍ଚିଲୁ ।

## ଟେମ୍‌ସ୍ ନଦୀରେ ଜଳଯାତ୍ରା

ଲଣ୍ଡନ ଟାୱାର୍ ବନ୍ଦ; ନଦୀ କୂଳେ କୂଳେ ନାନା ଆକୃତିର କମାଣ— ଭରତପୁର ଦୁର୍ଗର କମାଣ, ଚାଇନା ଓ ତୁର୍କିର କମାଣ, ବର୍ମାର

ଦେଶ ଜୟ କରି ଇଂରେଜ ଛଡ଼ାଇ ଆଣିଥିବା କମାଣସବୁ, ଅବଶ୍ୟ ଏବେ ଅକାମିକା, ଇଂରେଜ ଶକ୍ତି ଓ ସାମର୍ଥ୍ୟର ସ୍ମୃତି ସ୍ୱରୂପ ରଖା ଯାଇଅଛି, ଟିକେଟ୍ କରି ଗୋଟିଏ ଗ୍ରୀନ ଜାହାଜରେ ବସିଲୁ । ଟାୱାର୍ ଉପରେ ଇଉନିଅନ୍ ଜାକ୍ ଫର ଫର ହୋଇ ଉଡ଼ୁଥାଏ ।

ରାଣୀଙ୍କର ହଂସସବୁ ଟେମସ୍‌ରେ ପହଁରୁଥାନ୍ତି; ସି-ଗଲ୍ ଉଡ଼ୁଥାନ୍ତି ମୁଣ୍ଡ ଉପରେ । ଦିଶୁଥାଏ ସେଣ୍ଟପଲ୍ ଗୀର୍ଜା, ସାମ୍ନା ପୋଲ ଉପରର ଟ୍ରେନ୍, ବକ୍ଷରେ ବନ୍ଧା ନୌକା, ଆକାଶରେ ଉଡ଼ାଜାହାଜ, ଉଠୁଥାଏ ଉଭୟ ତୀରବର୍ତ୍ତୀ କାରଖାନାର ଧୂମ । ଗୋଥିକ୍ ଶୈଳୀରେ ନିର୍ମିତ ସୌଧମାନଙ୍କର ଛାୟା ନାଚୁଥାଏ, ନାଚୁଥାଏ ଟେମ୍ସର ତରଙ୍ଗମାଳାରେ ।

ସନ୍ଧ୍ୟା; ଓ୍ୱାଟରଲୁ ବ୍ରିଜ୍, ସେଲ୍ ହାଉସ୍, ପାର୍ଲାମେଣ୍ଟ ଗୃହ, କ୍ଲକ୍ ଟାଓ୍ୱାରରେ ବିଗବେନ ଘଣ୍ଟା, କେତେ ଟ୍ରେନିଂସିପ, କେତେ ପାସେଞ୍ଜର୍ ଜାହାଜ, କ୍ଲିଓପାଟ୍ରାର ଛୁଞ୍ଚି (ସ୍ମୃତି ସ୍ତମ୍ଭ)—ସନ୍ଧ୍ୟାର ରକ୍ତିମ ଅଭାରେ ସ୍ୱପ୍ନମୟ ଦିଶୁଥାଏ— ନାଚୁଥାଏ ଆଖି ଆଗରେ ଇଂଲଣ୍ଡର ଐଶ୍ୱର୍ଯ୍ୟର, କ୍ଷମତାର ଧନ, ନୀଳ, ଗଙ୍ଗା, ମିସିସିପି ମିଶିଯାଇଥିଲେ ଯେତେବେଳେ ଟେମ୍ସ ସଙ୍ଗେ, ଜୀବନର ନିୟାମକ ଧନେ ଥିଲା ଏଇ ନଦୀ, ଗଣୁଥିଲା କେତେ କେତେ ଦେଶ ଓ ଜାତିର ଜାତକ ।

## ଓ୍ୱେଷ୍ଟ ମିନିଷ୍ଟର ଆବେ

ଏଇଠି ଆମର ଜାହାଜ ଲାଗିଲା; ଭୂଇଁ ତଳ ରାସ୍ତାରେ ଯାଇ ଆମେ ଓ୍ୱେଷ୍ଟ ମିନିଷ୍ଟର ଆବେର ଉଠିଲୁ—ପ୍ରଥମେ ଦେଖିଲୁ ପ୍ରଥମ ଓ ଦ୍ୱିତୀୟ ମହାଯୁଦ୍ଧରେ ଜଳ ଓ ସ୍ଥଳ ଭାଗରେ ମୃତ ସୈନିକମାନଙ୍କର ସ୍ମୃତି ଫଳକ, ଗୌରବୋଜ୍ଜ୍ୱଳ, କୃତଜ୍ଞ ଜାତିର ସ୍ମରଣରେ ଅଶ୍ରୁଳ ।

୧୦୬୫ ଖ୍ରୀଷ୍ଟାବ୍ଦରେ ନିର୍ମିତ; ଏହାର ନବ ଶତତମ ବାର୍ଷିକ ଉତ୍ସବ ପାଳିତ ହୋଇଅଛି । ପ୍ରତି ସକାଳେ ଓ ସନ୍ଧ୍ୟାରେ, ଏଠି ସମୂହ ପ୍ରାର୍ଥନା ହୁଏ । ବର୍ଷର ଭାଷା—ଗୋଟିଏ ଜାତି; ଜାତି ଜାତି ମଧ୍ୟରେ

ଥିବା ବୈଷମ୍ୟ ଦୂର କରିବାକୁ ହେବ— ମୈତ୍ରୀର ବନ୍ଧନରେ ସବୁ ମନୁଷ୍ୟଙ୍କୁ ବାନ୍ଧିବାକୁ ହେବ— ଏ ବର୍ଷ ଏଇ ଉଦ୍ୟମ ଚର୍ଚ୍ଚ ତରଫରୁ କରାଯିବ ।

ଦୁଇଟି ସମୃଦ୍ଧ ପ୍ରାର୍ଥନା ବୋଲା ହେଲା, ଗୁରୁଗମ୍ଭୀର ବାତାବରଣ ମଧ୍ୟରେ ।

"ହେ ଈଶ୍ୱର, ହେ ପିତା, ଯେତେ ପୃଥିବୀବାସୀ, ଆମର ରକ୍ତ ଏକ; ଗୋଷ୍ଠୀ, ଜାତି, ବର୍ଣ୍ଣ, ସ୍ୱାର୍ଥପରତା ଯୋଗୁଁ ଆମେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଅଛୁ । ଆମେ ଦୁଃଖିତ, ଅନୁତପ୍ତ; ପ୍ରେମ ଓ ବିଶ୍ୱାସ ଯୋଗେ ତୁମର ସମୀପବର୍ତ୍ତୀ ହୋଇଅଛୁ । ତୁମ ପୁତ୍ର, ତ୍ରାଣ କର୍ତ୍ତା ଜସସ୍ ଆମକୁ ଗୋଟିଏ ଜାତିରେ ଏକତ୍ରିତ କରନ୍ତୁ ।"

"ହେ ଈଶ୍ୱରଙ୍କର ପବିତ୍ର ସତ୍ତା, ଆମ ଅନ୍ତରରେ ଗଭୀର ପ୍ରୀତି ଦିଅ—ପ୍ରତ୍ୟେକ ମନୁଷ୍ୟକୁ ଆମେ ଭାଇ ଭାବରେ ଦେଖୁଁ, ସମସ୍ତଙ୍କ ମଧ୍ୟରେ ଯିଶୁଖ୍ରୀଷ୍ଟଙ୍କୁ ଅନୁଭବ କରୁଁ ।"

ପ୍ରଥମ ମହାଯୁଦ୍ଧରେ ମୃତ ଅଜଣା ସୈନିକର ସ୍ମୃତିକୁ ସମ୍ମାନ ଦିଆ ଯାଇଛି; ଏ ଗୋଟିଏ ଜାତୀୟ ଶ୍ମଶାନ, ଇଂଲଣ୍ଡର ବିଶିଷ୍ଟ ବ୍ୟକ୍ତି-ମାନଙ୍କ ସ୍ମୃତିରେ ମହିମାନ୍ୱିତ; ସେ ପାଖେ ରାଜା ମହାରାଜା, ଏ ପାଖେ କବି, ବୈଜ୍ଞାନିକ, ନେତା, ସେନାପତି, ଆବିଷ୍କାରକ, ଉଦ୍ଭାବକ, ତ୍ୟାଗୀମାନଙ୍କର ସମାଧି । ଧର୍ମ ସହିତ ମିଶି ରହିଛି ଦେଶପ୍ରୀତି, କାବ୍ୟକଳାରେ ଫୁଟି ଦିଶୁଛି ସାର୍ବଜାତୀୟ ମହତ୍ତ୍ୱ ମହିମା—ଜୀବନ ମୃତ୍ୟୁକୁ ମହନୀୟ କରୁଛି, ଅତୀତ ଉପରେ ଅଶ୍ରୁରେ ଅନ୍ତରର ଅର୍ଘ୍ୟ ଢାଳି ଦେଇଛି ।

ଓଡ଼ିଶାର ଜାତୀୟ ଶ୍ମଶାନ ଆଂଶିକ ଭାବରେ ସତ୍ୟ ଚଉରା, ଦୀର୍ଘ ଅତୀତ ଏଥିରେ ନାହିଁ; କିନ୍ତୁ ଯାହା ଅଛି ତାକୁ ଆକର୍ଷଣୀୟ କରିବାର ବେଳ କଣ ଆସିନାହିଁ ?

ବୌଲ୍‌ଟନ ବିଦାୟ ପୂର୍ବରୁ ମୋ ଅନୁରୋଧରେ ଡାଇରି ଖାତାରେ ଲେଖିଲେ—

ମୁଁ କାର୍ଡ଼ିଫ ସହରରେ ଜନ୍ମ ଗ୍ରହଣ କଲି । ଆଜ ମୋର ବନ୍ଧୁ କୁଞ୍ଜବିହାରୀ ଦାଶ ଆମ ବିଶ୍ୱବିଦ୍ୟାଳୟକୁ ଆସିଛନ୍ତି । ତାଙ୍କ ସଙ୍ଗେ ଦେଖା ହୋଇଛି ବୋଲି ମୁଁ ଖୁବ ଖୁସି ହୋଇଛି । କିଛି ଦିନ ତାଙ୍କ ଜଣେ ଗୁରୁଙ୍କର ବହି ପଢ଼ୁଥିଲି । ସେ ବହିର ନାଁ 'ଓଡ଼ିଆ କାବ୍ୟଧାରା'; ମୁଁ ବର୍ତ୍ତମାନ ଫକୀରମୋହନ ସେନାପତିଙ୍କ ଜୀବନ ଓ ସାହିତ୍ୟ ବିଷୟରେ ଥିସିସ୍ ଲେଖୁଛି । ସେଥିପାଇଁ ମୁଁ ସେ ବହି ପଢ଼ିଲି । ବୋଧ ହେଉଛି ଯେ ସେ ପ୍ରକାର ଗବେଷଣା ମୂଳକ ବହି ଓଡ଼ିଆରେ ଆଉ ନାହିଁ ।

ଡାକ୍ତର କୁଞ୍ଜବିହାରୀ ଦାଶ ଫୋକ୍ ଲିଟରେଚର୍ ସୋସାଇଟି ଦେଖିବାକୁ ଆସିଛନ୍ତି । ସେ ଏ ପର୍ଯ୍ୟନ୍ତ ଓଡ଼ିଆ ଫୋକ୍ ଲିଟରେଚର୍ ବିଷୟ ଅନେକ ବହି ଲେଖିଛନ୍ତି । ଓଡ଼ିଆ ପଲ୍ଲୀଗୀତ ସଞ୍ଚୟ କରି ସେ ଗୋଟାଏ ଅତି ମୂଲ୍ୟବାନ୍ କାମ କରି ସାରିଛନ୍ତି ।

ଦୁଃଖର ବିଷୟ, ଏଇ କଥା ଲେଖି ମୁଁ ଅନେକ ଭୁଲ କରିଛି । ସେଥିପାଇଁ ପାଠକ ମହାଶୟ ମୋତେ କ୍ଷମା କରିବେ ବୋଲି ମୋର ପ୍ରାର୍ଥନା ।

ଜନ୍ ବୌଲଟନ୍
3rd october, 1966

ବୌଲଟନ୍‌ଙ୍କର ଓଡ଼ିଆ ଲେଖିବାର ଅଭ୍ୟାସ ନାହିଁ । ସେ ଦୃଷ୍ଟିରୁ ତାଙ୍କର ଭୁଲ୍ କେହି ବାଛି ବସିବେ ନାହିଁ । ଜଣେ ଇଂରେଜ ଯେ ଓଡ଼ିଆ ଭାଷାକୁ ଏପରି ଅଧ୍ୟୟନ କରି ପାରିଛି, ଏହା ପାଠକଙ୍କୁ ଅବଶ୍ୟ ଅଭିଭୂତ କରିବ, ଓଡ଼ିଆ ଭାଷାର ଭବିଷ୍ୟତ ବିଷୟରେ ଓଡ଼ିଆଙ୍କୁ ଆଶ୍ୱାନ୍ୱିତ କରିବ ।

## ଇପିଂଗ୍ ଜଙ୍ଗଲ (୪ । ୧୦ । ୬୬)

ଲଣ୍ଡନରୁ କାମ୍ବ୍ରିଜ୍ ଯାତ୍ରା କଲୁ । ଇଂଲଣ୍ଡ ପ୍ରକୃତିର ଭ୍ରୂ କୁଞ୍ଚିତ, ଅଶ୍ରୁଧାରା ବିଗଳିତ; କୁହୁଡ଼ି ମଧ୍ୟରେ ଝଟକ ଦିଶୁଥାଏ ବେଳେ ବେଳେ ଗୋଟାଏ କପର ବିଚ୍, ତାମ୍ରଳ ପତ୍ର, ହଥର୍ଣ୍ଣ ବାଡ଼ର ଲାଲ୍ ଲାଲ୍ କୋଳି

ସବୁ, ଅନେକ ଗଳି, ଛକ, ଡିପାର୍ଟମେଣ୍ଟ ଷ୍ଟୋର, ପାର୍କ, ରେଷ୍ଟୁରାଣ୍ଟ, ବ୍ୟାଙ୍କ୍, କାରଖାନା, ସ୍କୁଲ୍, କଲେଜ, ଅତିକ୍ରମ କରି 'ଓ୍ୱାଲ୍‌ଥାମ୍‌ଷ୍ଟୋ' ସହରରେ ପହଞ୍ଚିଲୁ । ସ୍କୁଲ ଛାତ୍ରମାନେ ଏକା ପ୍ରକାର ଡ୍ରେସ୍ ପିନ୍ଧିଥାନ୍ତି । ସୂର୍ଯ୍ୟ କେଉଁଠି ଆତ୍ମଗୋପନ କରିଛନ୍ତି, ଜଣାଯାଉ ନ ଥାଏ—ମେଘ ପଟଳ ଦେଖିଲେ କେବେ କେବେ ବର୍ଷା ଯାଉଥାଏ ଗୋଟିଏ ଧଳା ଚକ୍ର—ଲୁଚି ଲୁଚି ପାରୁନାହିଁ ଏଇ ବିପୁଳ ଜ୍ୟୋତିଷ୍କ ପ୍ରତିଭା ।

ଇପିଙ୍ଗ୍ ଜଙ୍ଗଲ; ଓକ୍, ବର୍ଚ୍ଚର ଡାଳେ ଡାଳେ କୁହୁଡ଼ି ବୁଲୁଛି । ରଙ୍ଗୀନ୍ ଓକ୍, ପତ୍ରଝଡ଼ା ଦେଖିବାକୁ ପାଉଛି । କଏ ବା ଏକଦମ୍ ଝାଟି; ମଝେ ମଝେ ଗ୍ରେଟ ଗ୍ରେଟ ପୋଖରୀ, ଗୋଟାକେତେ କଇଁଫୁଲ ଫୁଟିଛି, ମୃଗ, କୃଷ୍ଣସାର, କୋକଣିଆଳ, ବା ରାବିଟ୍ ଆମ ବସ୍ ଆଗରେ ଚାଲି ଯାଉଛନ୍ତି । ମାଟିରେ ଜମିଛି ଶିଉଳି, ସେଥିପରି ବଡ଼ ବଡ଼ ଗଛର ଗଣ୍ଡିରେ ବି, ଦୁଇ ବୃକ୍ଷ ମଧ୍ୟବର୍ତ୍ତୀ ଶୂନ୍ୟସ୍ଥାନକୁ ପୂରଣ କରି ଦେଇଛି କୁହୁଡ଼ି—ସୂର୍ଯ୍ୟର ଜ୍ୟୋତିର୍ବିନ୍ଦୁ ନିଭେ, ପୁଣି ଫୁଟି ଉଠେ, ନୀଳ, ଶ୍ୟାମଳ, କଜ୍ଜଳ ପରିବେଶରେ ।

ଆମେ 'ଇପ୍‌ପିଙ୍ଗ୍' ଟାଉନରେ ପହଞ୍ଚିଲୁ, ଏହା ଏସେକ୍ସ୍ କାଉଣ୍ଟିର ଅନ୍ତର୍ଗତ; ଗୋଲାପ, ଗେଣ୍ଡୁ ଓ ଡାଲିଆ ଭରା, କାହା କାହା ଘରେ ମାଡ଼ିଛି ରଙ୍ଗୀନ୍ ଆଇଭି ।

ବୁଦୁବୁଦିକିଆ ଗଛ, ଗମ୍ଭୀର; କଟା ଗହମର ମୂଳ, ଡାମରାକୁଆ କଣ ଝୁଣ୍ଟି ଖାଉଛନ୍ତି । ଆମେ 'ଡ୍ୟୁ ଟାଉନ୍'ରେ ପହଞ୍ଚିଲୁ; ଲଣ୍ଡନ ସ୍ଲମ୍‌ରୁ ଏଠିକି ଲୋକ ଉଠି ଆସୁଛନ୍ତି; ପ୍ରଶସ୍ତ ଜାଗାରେ ତୋଳିଛନ୍ତି ଘର; ମାଣ ମାଣ ଡାଲିଆ ଓ ଗୋଲାପ ଫୁଲ ଚାଷ କରା ଯାଇଛି । ଫୁଲର ସହର ଏ; ସୁସ୍ଥ, ସୁନ୍ଦର ପିଲା, ଗାଲରେ ଆପଲ୍ ରଙ୍ଗ ।

'ବିସ୍‌ପିସ୍' ଷ୍ଟ୍ରାଟ୍‌ଫୋର୍ଡ଼' ସହର—ଷ୍ଟ୍ରାଟ୍ ମାନେ ଗୋ ଅଶ୍ବ, ଫୋର୍ଡ଼ ମାନେ ପାରିହେବା ଘାଟ; ସହର ନାମରୁ ହିଁ ଏହାର ପୂର୍ବ କାର୍ଯ୍ୟ

ସୂଚିତ ହୋଇଥାଏ । ଧାବମାନ ଦୃଷ୍ଟି ହଠାତ୍ ନିବଦ୍ଧ ହୋଇଗଲା ଗୋଟିଏ ଘର ଉପରେ—ଚାଳ ଘର ! ଆଧୁନିକ ସଭ୍ୟତାର ପ୍ଲାବନ ମଧ୍ୟରେ ଅତୀତର ଏ ଚେନାଟି ଉଭିଯାଇ ନାହିଁ, ରଖା ଯାଇଛି ।

ଗମ୍ଳାରରେ କେତେକ ନଢ଼ାଗଦା ମଗ୍ନ ହେବାର ଦେଖିଲି । ହଳଦିଆ ବଣ ଫୁଲର ଗୋଟିଏ ଗମ୍ଳାର, ବାଡ଼ରେ ଶିରିଷ ଫୁଲ ପରି ଫୁଟିଛି ଏ କି ଫୁଲ ? ପ୍ରଜାପତି ଉଡ଼ି ଜମେଇଛନ୍ତି; ତୃଣପ୍ରେମୀ, ବୃକ୍ଷ-ଲତା ପ୍ରେମୀ ଇଂରେଜଙ୍କୁ ମନେ ମନେ ନମସ୍କାର କଲି ।

ଫୁଟ୍‌ପାଥ୍‌ରେ ବୁଲୁଛନ୍ତି ବୁଢ଼ାସବୁ—ପିନ୍ଧା ଗାଳ ପ୍ୟାଣ୍ଟ୍, ହାତରେ ବାଡ଼ି, ମୁହଁରେ ଚୁରୁଟ୍ । ଆମେ 'ଉଇଲ୍ଲି' ସହରରେ ପହଞ୍ଚିଲୁ । ଗ୍ରେଟ୍ ଗ୍ରେଟ୍ ଟାଇଲି ଘର, ଫୁଲ୍‌ଫୁଲିଆ ପବନରେ ସୂର୍ଯ୍ୟମୁଖୀ ମୁଣ୍ଡ ଟେକାରୁଛି; 'କେୟୁନ୍ଡନ୍' ଗ୍ରାମ; 'କ୍ୟୁନସ୍ ହିଲ' ଗ୍ରାମ, କେତୋଟି ଚାଳଘର ମୋ ଦୃଷ୍ଟିକୁ ଟାଣି ରଖିଥିଲା ଅଦୃଶ୍ୟ ହେବା ଯାଏ, ପଲ୍ଲ ପଲ୍ଲ ମେଷ ଚରୁଛନ୍ତି—ଖଡ଼ି ପଥରର ପାହାଡ଼ ଉପରେ । ଛିଡ଼ା ହୋଇଛି ଗୋଟିଏ ମୃତ ବନସ୍ପତି; ଆମେ 'ନିଉପୋର୍ଟ' ଗ୍ରାମରେ ପହଞ୍ଚିଲୁ; ଟିଉଡର୍ ଯୁଗର କେତୋଟି ଗୃହ ରକ୍ଷା କରାଯାଇଛି ଏଠି । 'ସାଫ୍ରନ୍ ୱାଲ୍‌ଡନ୍' ସହରରେ ଆମ ଗାଡ଼ି ଛିଡ଼ା ହେଲା; ଗଛମାନଙ୍କରେ ମାଡ଼ିଛି ବଣ ଲତା, ଦଳ ଦଳ ବାପୁଆ ଚଢ଼େଇ ଉଡ଼ିଗଲେ ଢଗ୍‌ବଳପୁର କୁମ୍ଭଡ଼ ଭିତରକୁ, ଚା ଖାଇବା ଲାଗି ରେଷ୍ଟୁରାଣ୍ଟରେ ପଶିଲୁ ।

ଏ ରେଷ୍ଟୁରାଣ୍ଟଟି ଅତି ପ୍ରାଚୀନ; ମାଲିକ ଏହାର ଇତିହାସ ଛପାଇ ଛନ୍ତି—ଚତୁର୍ଦ୍ଦଶ ଶତାବ୍ଦୀରେ ଏହାର ଆରମ୍ଭ, ସେକ୍ସପିଅର୍ ଏଠି ଚା ପାନ କରିଥିଲେ ବୋଲି ଜନଶ୍ରୁତି ପ୍ରଚଳିତ ।

ଇତିହାସ ବେଶ୍ ଚମକାଉଛି; ବିଦେଶୀ ଯାତ୍ରୀଙ୍କ ପ୍ରତି ଏ କମ୍ ଆକର୍ଷଣ ନୁହେ । ସବୁବେଳେ ଭିଡ଼ ଜମିଛି । ରେଷ୍ଟୁରାଣ୍ଟକୁ ଲାଗି ମାର୍କେଟ; ଟମାଟୋ, କାକୁଡ଼ି, ଆଦି କେତେ ତାଜା ପରିବା, ଆପଲ୍, ଅଙ୍ଗୁର, ପିଚ୍, ଆଦି ଫଳ, ଡାଲିଆ, ଗୋଲାପ ପ୍ରଭୃତି ଫୁଲ ବିକ୍ରୀ ହେଉଛି । ଗୋଟିଏ ପରିବା ଚିହ୍ନି ନ ପାରି ଜଣେ ସ୍ତ୍ରୀ ଲୋକକୁ ପଚାରିଲି—ଏ କଣ ?

'King's finger,

ଏ ଦେଶ ସାଧାରଣ-ତନ୍ତ୍ରର ଜନ୍ମଭୂମି ହେଲେ ହେଁ ରାଜାଙ୍କୁ ଭୁଲି ପାରିନାହିଁ, ସାଧାରଣ ଫୁଲ ଫଳରେ ବି ରାଜାଙ୍କ ସ୍ମୃତି ରଖା ହୋଇଛି !

ହାପ୍ଟନ୍ ଓ୍ୱାଲ୍ଟନ୍ ଗୋଟିଏ ବୃହତ୍ ଆଧୁନିକ ଗ୍ରାମ କିମ୍ବା ଛୋଟ ସହର; କାଲି, ଗହମ, ବୁଟ, ଆଦି ଉତ୍ପନ୍ନ ହୁଏ । ଏଠି ଗୋଟିଏ ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ରହିଛି, ରୋମାନ୍‌ମାନେ ଯେ ଦିନେ ଏ ଦେଶର ଭାଗ୍ୟ ନିର୍ମାତା ଥିଲେ, ତା'ର ସ୍ମାରକ ।

'ହ୍ୱାଇଟ୍ ଓମ୍' ଗ୍ରାମ; ଏଠି ମୋଟରେ ୧୨୦ଟି ଘର ରହିଛି । ଭୂମିପଟେ ଗମ୍ଭୀର, ନାନା ଫୁଲ, ଫଳ, ଓ ଫସଲ ଉତ୍ପାଦିତ ହେଉଛି । ଦଳେ କଳା ହଂସ ଚରୁଛନ୍ତି । ଗ୍ରାମ ପରି ଗ୍ରାମର ମଶାଣିଟି ନାନା ପୁଷ୍ପରେ ଆକର୍ଷଣୀୟ ହୋଇ ଉଠିଛି ।

## କାଂବ୍ରିଜ୍

'କାମ୍' ନଦୀ ସହରକୁ ଘେରି ରହିଛି; ନଦୀ ନାମରୁ ସହର ନାମ ଗଢ଼ି ଉଠିଛି; ଗଙ୍ଗୁଆ ପରି ଛୋଟ ନଦୀଟିଏ, କିନ୍ତୁ ପୂର୍ଣ୍ଣତୋୟା । ଛୋଟ ଛୋଟ ପିଲାମାନେ କାମ୍ବ୍ରିଜ୍ ହା. ସ୍କୁଲକୁ ଯାଉଥାନ୍ତି । ଆମେ କାମ୍ ନଦୀର ବ୍ରିଜ୍ ଟି ହେଉ ଲଙ୍ଘନ କରି କାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପଶିଲୁ । ପୁଷ୍ପ, ଫଳ, ପ୍ରାନ୍ତର । ଓକ୍, ଉଇଲୋ, ଆଇଭି—ପ୍ରଥମ ଦୃଷ୍ଟି ପାତରେ ହିଁ କାମ୍ବ୍ରିଜ୍ ଆପଣାର ହେଲାପରି ଲାଗିଲା ।

ଇଂଲଣ୍ଡରେ ବିଜ୍ଞାନ ଓ ସୁପ୍ରତିଷ୍ଠିତ ବିଦ୍ୟାଶିକ୍ଷାର ଏହା ଏକ ମୁଖ୍ୟ କେନ୍ଦ୍ର । ଯେତେ ଆଧୁନିକ ହେଲେ ବି ପ୍ରାଚୀନ ରୀତିକୁ ଏଠା ଅଧ୍ୟାପକ ବା ଅନ୍ତେବାସୀମାନେ ଛାଡ଼ି ପାରି ନାହାନ୍ତି । ଧର୍ମ ଏହାର ମୂଳପିଣ୍ଡ ହୋଇ ରହିଛି । ଏହା ଏକ ଆବାସିକ ବିଶ୍ୱବିଦ୍ୟାଳୟ, ଏକ ଦିଗରେ ଧର୍ମ, ଅନ୍ୟ ଦିଗରେ ବିଜ୍ଞାନର ପ୍ରାଧାନ୍ୟ ରହିଛି; ଆଙ୍ଗ୍ଲିକାନ୍ ଚାପେଲ୍‌ରେ

ପ୍ରାର୍ଥନା ଚାଲିଛି । ଗିର୍ଜାଲଗା 'ଚାପେଲ୍‌ର' ଗ୍ଲେହାଉଣ୍ଡ୍ ଦୃଷ୍ଟି ଆକର୍ଷଣ କରେ ।

ଆମେ ଇଉନିଭରସିଟି ଆରମ୍ସ୍ ରେଷ୍ଟୁରାଣ୍ଟରେ ଭୋଜନ କଲୁ— ବଡ଼ ତୃପ୍ତିକର । ତାପରେ ଆମେ ପ୍ରାଚୀନତମ 'ପିଟର୍‌ସ୍ କଲେଜ୍', କଲେଜ୍ ଅଫ୍ ଓ୍ୱେଷ୍ଟମିନିଷ୍ଟର, ଜେମ୍‌ସ୍ କଲେଜ୍, କଇସ୍ କଲେଜ୍, ଚର୍ଚ୍ଚିଲ କଲେଜ୍ ପ୍ରଭୃତି ପରିଦର୍ଶନ କଲୁ । ଓଜ୍ ଟେଷ୍ଟରୁ ମଝ ଝିପୁଥାଏ, ଝିପୁଥାଏ ଅବାରିତ ଧାରାରେ ବର୍ଷା । ତଥାପି କାମ୍ବ୍ରିଜ୍ ମୁହୂର୍ତ୍ତିଟି ସ୍ମରଣରେ ଏବେ ପ୍ରୀତିପ୍ରଦ ମନେ ହୁଏ ।

## ଆମେରିକାନ୍ ସିମେଣ୍ଟରୀ

ଗମ୍ଭୀରରେ ଆଣ୍ଠୁଏ ଉଚ୍ଚ ଘାସ, ମଝିରେ ପଡ଼ି କଳା ଛାଇଳ କଣ୍ଟାଗାଛ ଚରୁଥାନ୍ତି । ସମାଧି ମନ୍ଦିର ନିକଟରେ ବସ୍ ଅଟକିଲା । ଦ୍ୱିତୀୟ ମହା ଯୁଦ୍ଧରେ ଜର୍ମାନ୍ ସବ୍‌ମେରିନ୍ ଓ ଇଉବୋଟ୍ ଆକ୍ରମଣରେ ଗଣି ଗଣି ବ୍ରିଟିସ୍ ଜାହାଜ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଥିଲା । ବ୍ରିଟେନରେ ଖାଦ୍ୟାଭାବ ଘଟିଲା । ସେତେବେଳେ ଆମେରିକା ନୌବାହିନୀ ଆକାଶବାହିନୀ ଏହି ଦେଶକୁ ବିଶେଷ ସାହାଯ୍ୟ ଦେଇଥିଲେ, ତା ଫଳରେ ବହୁ ଆମେରିକାନ୍ ସୈନିକଙ୍କୁ ମୃତ୍ୟୁର ସମ୍ମୁଖୀନ ହେବାକୁ ହୋଇଥିଲା । ତା ବ୍ୟତୀତ ରଣାଙ୍ଗନରେ ମଧ୍ୟ ବହୁ ଆମେରିକାନ୍ ପ୍ରାଣ ବଳି ଦେଇଥିଲେ । ଦ୍ୱିତୀୟ ମହାଯୁଦ୍ଧ କାଳରେ ମୃତ ଆମେରିକାନ୍‌ମାନଙ୍କ ସ୍ମୃତି ଏହି ସମାଧି କ୍ଷେତ୍ରରେ ସଂରକ୍ଷିତ । କାନ୍ଥର ଏ ପାଖରେ ଫାୟାର୍ ପ୍ଲାଣ୍ଟ ଓ ଆଇଭି, ଆର ପାଖରେ ମୃତମାନଙ୍କର ନାମ ଖୋଦିତ ହୋଇଛି ।

ଜଳାଧାରର ଚତୁର୍ଦ୍ଦିଗରେ ଏକ ଭୂଭି, ଓଲେ ଚୀରେ ନାନା ବର୍ଣ୍ଣର ଫୁଲ; ଗୋଟିଏ ଦୀର୍ଘ ପତାକାସ୍ତମ୍ଭ ରହିଅଛି । ଏଥିରେ ପଞ୍ଚାଶଟି ନକ୍ଷତ୍ର ଚିହ୍ନିତ ଆମେରିକାର ପତାକା ଉଡ଼େ । ଜଳାଧାର ସାମ୍ନାରେ ଗୋଟିଏ ଚାପେଲ୍, ସେଥିରେ ଗୋଟିଏ କ୍ରସ୍, କ୍ରସ୍ ଦୁଇପାଖେ ମହମବତୀ ଜଳୁଛି । କ୍ରସ୍ ଉପରେ ଲେଖା ଅଛି—

He restoreth my soul
He remarketh me to lie down
in green pastures.

ନିମ୍ନ ଉପତ୍ୟକାକୁ ସମ ପ୍ରସାରିତ ତୃଣ ପ୍ରାନ୍ତର ଉପରେ ଅଗଣିତ ପ୍ରସ୍ତର କ୍ରସ୍, ପ୍ରତ୍ୟେକ ସୈନ୍ୟର ନାମଧାମ, ଜନ୍ମମୃତ୍ୟୁ କାଳ ତା ଉପରେ ଖୋଦିତ। ଉପତ୍ୟକାର କୁହୁଡ଼ି, ଦୀର୍ଘ ଓକ୍, ସିକାମୋର୍, ଶ୍ୟାମଳ ପ୍ରାନ୍ତର; ବାତାସର ସ୍ପନ୍ଦିତ କରୁଣ, ଗମ୍ଭୀର; ମର୍ମ ସ୍ପର୍ଶ କରେ।

ଆମେ 'ଆଭନ୍' ନଦୀ ତୀରବର୍ତ୍ତୀ 'ନିଉଲଣ୍ଡସ୍' ଗ୍ରାମରେ ପହଞ୍ଚିଲୁ। ମାଣ ମାଣ ବନ୍ଧାକୋବି ଚାଷ କରାଯାଇଛି। ଗାଇଡ୍ ଏଇ ନଦୀକୁ ଉପଲକ୍ଷ୍ୟ କରି କହିଲେ—

Some people cruise in it, Some booze
( get drunk ) & Some snooze in it.

ଯାତ୍ରୀମାନେ ଏ କୌତୁକ କଥାରେ ହସି ଉଠିଲେ।

ସ୍ୱୟଂ ଚାଳିତ ଗାଡ଼ିରେ ତିନିମାଇଲ୍ ଦୂରରୁ ମାଟି ବୁହା ହୋଇ ଯାଉଛି ଇଟା କାରଖାନାକୁ। ଗୋଟିଏ ପପ୍‌ଲର୍ ବଣ, ତାପରେ ବଡ଼ ବଡ଼ ଚେଷ୍ଟନଟ୍ ଗଛ, ଓଲ ରାସ୍ତାରେ ଦୁଇଜଣ ସାଇକେଲ୍‌ରେ କୁଆଡ଼େ ଯାଉଛନ୍ତି ? ଅଭନ୍ ନଦୀର ରାଜହଂସ ଅଣ୍ଟ ସିଧାକରି ଗୋଡ଼ାଉଛି ଗୋଟିଏ କୌତୁକକାରୀ ପିଲାକୁ। 'ବେଡ଼ଫୋର୍ଡ' ସହରରେ ଆମେ ପହଞ୍ଚିଲୁ—ଦ୍ୱାରେ ଦ୍ୱାରେ କପର୍‌ବିଚ୍ ଓ ବନ୍ୟଚେରି, ଆପଲ୍ ଘରରେ ଡାଳ ନଇଁ ପଡ଼ିଛି।

ତିନି ହଜାର ଏକରର 'ଓବୋର୍ଣ୍ଣ' ପାର୍କ—ବିସ୍ତୃତ ତୃଣପ୍ରାନ୍ତର, ବାଇସନ୍, ରବଟ୍, କୃଷ୍ଣସାର ଦଳ ଦଳ ହୋଇ ଚରୁଛନ୍ତି, ବର୍ଷାକୁ ଭ୍ରୂକ୍ଷେପ ନ କରି। ପାର୍କର ସବୁ ରାସ୍ତାରେ ବୁଢ଼ା ବୁଢ଼ା ଓକ୍ ଆଉ ଚେଷ୍ଟନଟ୍, ଛୋଟ ଛୋଟ ଝରଣା, ଶ୍ୟାମଳ ତୃଣ ପ୍ରାନ୍ତର ଉପରେ ମନ୍ଦ

ନଦୀ ଫୁଲ ଓ ଆକର୍ଷଣୀୟ ଦୃଶ୍ୟକୁ ପଛରେ ପକାଇ ଆମେ 'ଓବାର୍ଣ୍ଣ ଆବେ'ରେ ପହଞ୍ଚିଲୁ ।

## ବେଡ୍‌ଫୋର୍ଡ଼ର ଡିଉକ୍

'ଓବର୍ଣ୍ଣ ଆବେ'ସ୍ଥଳରେ ଗୋଟିଏ ମଠ ଥିଲା, ରାଜା ଅଷ୍ଟମ ହେନେରୀଙ୍କ ବିବାହ ସଂପର୍କରେ ପ୍ରତିକୂଳ ମତ ପ୍ରକାଶ କରିଥିବାରୁ ରାଜଦ୍ରୋହ ଅପରାଧରେ ଏହାର ମହନ୍ତଙ୍କୁ ମଠ ପାର୍ଶ୍ୱବର୍ତ୍ତୀ ଗୋଟିଏ ଓକ୍ ଗଛରେ ଫାଶି ଦିଆ ହୋଇଥିଲା । ତାପରେ ଏହା ଅର୍ଲ ବା ଡ୍ୟୁକ୍ ପ୍ରାସାଦ ଓ ସାମୟିକ ଭାବେ ରାଜପ୍ରାସାଦ ରୂପେ ବ୍ୟବହୃତ ହେଉଥିଲା । ଏ ଦେଶର ଅନ୍ୟ କେତେକ ସାମନ୍ତ ଗୃହ ପରି ଏହା ଏବେ ଏକ ଯାଦୁଘର ରୂପେ ପ୍ରଦର୍ଶିତ ହେଉଅଛି ।

ଘୋର ବର୍ଷା; ରାସ୍ତାରେ ପାଣି ସୁଅ ଛୁଟିଛି । ଏ ବର୍ଷାରେ ଶୀତରେ ଗୋଟିଏ ସାମନ୍ତ ଗୃହ ଦେଖି ନ ଗଲେ କ୍ଷତି କଣ ? କିନ୍ତୁ ବର୍ଷା ବା ଶୀତ ଉଲ୍ଲଙ୍ଘନରେ ମୋ ବ୍ୟସ୍ତାନ ଆପତ୍ତି କରୁଛି କିଏ ? ଖରାଦିନେ ଖରା ବର୍ଷା ଦିନେ ବର୍ଷା ସ୍ୱାଭାବିକ; କିନ୍ତୁ ଅଳସ ପ୍ରକୃତିର ଅଭିଯୋଗ କରେ, ଋତୁ ବଦଳୁଛରେ । ନିଜ ଉପରେ ରାଗି ବର୍ଷାତିଟି ମୁଣ୍ଡରେ ଚଢାଇ (କାରଣ ଟୋପି ନାହିଁ) ମୁଁ ରାଇଡ୍ ପଛେ ପଛେ ଚାଲିଲି ।

ପ୍ରିନ୍ସ ଆଲବର୍ଟଙ୍କ ବେଡ଼ଚେୟାର, ରାଣୀ ଭିକ୍ଟୋରିଆଙ୍କ ଶୋଇବା ଘର, ଟିଉଡର ବଂଶର ବିଭିନ୍ନ ରାଜା, ସ୍ପେନ୍‌ର ରାଜା ଫିଲିପ୍ ଓ ତାଙ୍କ ରାଣୀ, ସ୍ପାନିସ୍ ଆର୍ମଡ଼ାର ବିଜୟିନୀ ରାଣୀ ଏଲିଜାବେଥ ; ବେଡ୍‌ଫୋର୍ଡର ଡ୍ୟୁକ୍‌ମାନଙ୍କର ଛବି, ନଗ୍ନ ଉପତ୍ୟକାରେ ଅଙ୍କନରତ ଜଣେ ଶିଳ୍ପୀ, ଉଷା, ସନ୍ଧ୍ୟାଦି ପ୍ରାକୃତିକ ଦୃଶ୍ୟ, ରାଜବଂଶର ରେକର୍ଡପତ୍ର, ଫଟୋ, ସପ୍ତଦଶ ଶତାବ୍ଦୀର ଚୁଇନାପ୍ଲେଟ୍, ସୁନା ରୁପାର ବାସନ, ସିଂହାସନ, କାଣ୍ଡେଲଷ୍ଟାଣ୍ଡ, ନାନା ଉପାଦେୟ ପୁସ୍ତକର ଗୋଟିଏ ଲାଇବ୍ରେରୀ ବୁଲି ଦେଖିଲୁ । ପକ୍ଷୀ ଓ ପୁଷ୍ପ ସମ୍ପର୍କୀୟ କେତେକ ଦୁର୍ଲ୍ଲଭ ପୁସ୍ତକ ଏଠି ପ୍ରଦର୍ଶିତ ହୋଇଛି । ସୁପ୍ରସିଦ୍ଧ ଲେଖକ

ଦାର୍ଶନିକ ବେଟ୍ରାଣ୍ଡ ରସେଲ ଏହି ଡିଉକ୍ ବଂଶୀୟ; ଏହି ବଂଶରୁ କେତେକ ଇଂଲଣ୍ଡର ପ୍ରଧାନମନ୍ତ୍ରୀ, ରାଷ୍ଟ୍ରଦୂତ ହୋଇଛନ୍ତି । ଧନ ସମ୍ପଦ, ପଦ ମର୍ଯ୍ୟାଦା, ଉନ୍ନତ ରୁଚି ଓ ସୌନ୍ଦର୍ଯ୍ୟବୋଧ ଯୋଗୁଁ ଏହି ବଂଶର ସାମନ୍ତମାନେ ଇଂଲଣ୍ଡରେ ସର୍ବତ୍ର ସମ୍ମାନିତ ।

ବର୍ଷା ଛାଡ଼ି ଯାଇଥିଲା, ଓବର୍ଣ୍ଣ ପାର୍କରୁ ହେନ୍, ବାଇସନ୍ ଦେଖି ଦେଖି ଆମେ ସରଳ ରୋମାନ ମାର୍ଗରେ ଫେରିଲୁ; ଚକ୍ ଝଣ୍ଡ ପାହାଡ଼ ଶ୍ରେଣୀ, ବର୍ଷା ଝରନ୍ତ କୁହୁଡ଼ିର ଗହ୍ୱର, ତା ମଧ୍ୟରେ ଆମେ ପ୍ରାଚୀନ ରୋମାନ୍ ଚର୍ଚ୍ଚ 'ସେଣ୍ଟ ଆଲ୍‌ବାନସ୍' ଦେଖିଲୁ ।

## ଏଣ୍ଡିଆ ଅଫିସ୍ ଲାଇବ୍ରେରୀ (୫. ୧୦. ୬୭)

ମି: ୱେଲ୍‌ଟନ୍ ମୋତେ ବୁଲେଇ ନେବାର କଥା ହୋଇଥିଲା । ନିର୍ଦ୍ଦିଷ୍ଟ ସମୟରେ ସେ ଲଣ୍ଡନର ଭାରତୀୟ ନୌ ଅଫିସ୍‌କୁ ଆସିଲେ । ବୁଲି ବୁଲି ଯାଇ ଆମେ ଏଣ୍ଡିଆ ଅଫିସ୍ ଲାଇବ୍ରେରୀରେ ପହଞ୍ଚିଲୁ ।

ତୋରଣରେ ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟ ନିର୍ମାତା କ୍ଲାଇଭ୍‌ଙ୍କ ସ୍ପର୍ଦ୍ଧିତ ମୂର୍ତ୍ତି; ଏକ ସ୍ଥାନରେ ସେ ମୋଗଲ ସମ୍ରାଟ ସାହାଆଲମ୍‌ଙ୍କ ଠାରୁ ବଙ୍ଗଳା, ବିହାର, ଓଡ଼ିଶା ଦେୱାନୀ ଗ୍ରହଣ କରୁଛନ୍ତି । ଅନ୍ୟତ୍ର ପଲାସୀ ଯୁଦ୍ଧ, ଓ ବିଜୟୀ ବ୍ରିଟିସ୍ ମୂର୍ତ୍ତି । ଭାରତ ଇତିହାସର କେତୋଟି କରୁଣ ଅଧ୍ୟାୟ ପ୍ରାଣକୁ ମୁହୂର୍ତ୍ତେ ବେଦନାର୍ତ୍ତ କରିବାକୁ ଲାଗିଲା ।

ଏହି ଅଫିସ୍ ଦେଖିବା ଲାଗି ଶାସନ ବିଭାଗର ଅନୁମତି ନେବାକୁ ପଡ଼େ; କେବଳ ଲାଇବ୍ରେରୀଟି ଉନ୍ମୁକ୍ତ ।

ଏଣ୍ଡିଆ ଅଫିସ୍ ଓ ଲାଇବ୍ରେରୀ ୧୮୦୧ ଖ୍ରୀଷ୍ଟାବ୍ଦରେ ଇଷ୍ଟ ଏଣ୍ଡିଆ କମ୍ପାନୀ ଦ୍ୱାରା ସ୍ଥାପିତ; ୧୮୫୮ରେ ବ୍ରିଟିସ ସରକାରଙ୍କ ହସ୍ତାନ୍ତରିତ ହୋଇଥିଲା । ଏହା ଡିପାର୍ଟମେଣ୍ଟ ଅଫ୍ ଷ୍ଟେଟ୍ ଦ୍ୱାରା ପରିଚାଳିତ ହେଉଥିଲା । ଭାରତର ସ୍ୱାଧୀନତା ପରେ ଏହାର ସ୍ୱରୂପ ବଦଳି ଯାଇଛି ଓ ସେକ୍ରେଟେରି ଅଫ୍ ଷ୍ଟେଟ୍ ଫର୍ କମନ୍‌ୱେଲ୍‌ଥ୍ ଦ୍ୱାରା ପରିଚାଳିତ ହେଉଛି ।

ପୁସ୍ତକାଗାରରେ ପ୍ରାୟ ଅଢ଼େଇ ଲକ୍ଷ ଛପା ବହି ଅଛି । ସେଥି-ମଧ୍ୟରୁ ପଞ୍ଚସ୍ତରି ହଜାର ଇଂରେଜୀ ଓ ଅବଶିଷ୍ଟ ଇଉରୋପୀୟ ଭାଷାର; ବାକିତକ ସଂସ୍କୃତ, ପ୍ରାକୃତ ଓ ଅନ୍ୟାନ୍ୟ ପ୍ରାଦେଶିକ ଭାଷାର । କୋଡ଼ିଏ ହଜାର ଭାରତୀୟ ଭାଷାର ପାଣ୍ଡୁଲିପି ମଧ୍ୟରେ ଓଡ଼ିଆ ପାଣ୍ଡୁଲିପି ସଂଖ୍ୟା ମାତ୍ର ପଚୁଶ ଖଣ୍ଡ—କଳା ବାଳ ଖରେ ଲାଲକନା ବନ୍ଧା ହୋଇ ପୋଥି ସବୁ ରଖା ହୋଇଛି । ଏଠି ଊନବିଂଶ ଶତାବ୍ଦୀର ବହୁ ଦୁଷ୍ପ୍ରାପ୍ୟ ଛପା ଓଡ଼ିଆ ବହି ମଧ୍ୟ ରହିଛି । କିନ୍ତୁ ଲାଇବ୍ରେରୀଟି ସ୍ଥାନାନ୍ତରିତ ହେଉ ଥିବାରୁ ସେସବୁ ଦେଖିବା ସମ୍ଭବ ହେଲା ନାହିଁ ।

ପେଣ୍ଟିଂ, ଛବି ଓ ଫଟୋ ବିଶେଷ ଭାବେ ଦୃଷ୍ଟି ଆକର୍ଷଣ କଲା । ଏଠି ଏକହଜାର ପେଣ୍ଟିଂ, ପନ୍ଦରଶ ଭାରତୀୟ ଛବି, ପ୍ରାକୃତିକ ଇତିହାସ ଅନ୍ତର୍ଭୁକ୍ତ ଚାରି ହଜାର ଡ୍ରଇଂ, ଊନବିଂଶ ଶତାବ୍ଦୀର ବହୁ ଫଟୋ, ନାନା ମନ୍ଦିରର ଚିତ୍ର, ବହୁ ଆଲ୍‌ବମ୍, ଇଷ୍ଟ ଇଣ୍ଡିଆ କମ୍ପାନୀର ଯାବତୀୟ ରେକର୍ଡ଼ ପତ୍ର, ମାନଚିତ୍ର, ଭାଇସ୍‌ରୟମାନଙ୍କ ସରେଇ କାଗଜ ପତ୍ର ସଂରକ୍ଷିତ ହୋଇଅଛି । ପାଠାଗାର ଦେଖିଲା ପରେ ଲାଇବ୍ରେରିୟାନ୍ ମି. ସଟନ୍‌ଙ୍କ ସହିତ ସାକ୍ଷାତ୍ କଲି । ଭାରତ ସମ୍ପର୍କରେ ସେ ନାନା ସମ୍ବାଦ ପଚାରିଲେ ଓ ବିଦାୟବେଳେ କେତେକ ଛବି ଉପହାର ଦେଲେ—ଗୋଟିଏ ହଳଦିବସନ୍ତ, ସୁରଟ ରାଗିଣୀ, ମେଘ ମଲ୍ଲାର (ବର୍ଷାରେ କୃଷ୍ଣଙ୍କ ନୃତ୍ୟ, ଗୋପୀମାନଙ୍କ ଗୀତ), ହିନ୍ଦୋଳ ରାଗ (ଦୋଳିରେ ପ୍ରିୟ ଓ ପ୍ରିୟା), ମାଳବିକା ରାଗିଣୀ, ରାଜକନ୍ୟାଙ୍କ ସମକ୍ଷରେ ସହଚରୀ ପ୍ରାଙ୍ଗଣରେ ଗୋଟିଏ ସର୍ପକୁ ବିନାଶ କରିବା ଇତ୍ୟାଦି, ଊନବିଂଶ ଶତାବ୍ଦୀର ଛାପାସବୁ, ଏବେ ଦୁଷ୍ପ୍ରାପ୍ୟ ।

ମି: ବୌଲ୍‌ଟନ୍ ପ୍ରଶ୍ନ କଲେ—ଛବି ଗ୍ରାହକତାର କି ପ୍ରମାଣ ପାଇଲେ ଯେ ମି. ସଟନ୍ ଏସବୁ ଆପଣଙ୍କୁ ଉପହାର ଦେଲେ ? ମୋର ମନେହୁଏ, ଏ ଅତି ମୂଲ୍ୟବାନ୍ ଉପହାର !

'ପ୍ରକୃତରେ ମୁଁ ଛବିକାର ନୁହେଁ, ଗୋଟିଏ ଗାର ସିଧା-ଲେଖି ଜାଣି ଆସେ ନାହିଁ । ବରଂ, ଆମ୍ଭରେ ହିଁ ମୋର ଡ୍ରଇଂ

ଶିକ୍ଷା ଶେଷ ହୋଇଥିଲା । କିନ୍ତୁ ଜଣେ ଗ୍ରାହକ ମୁଁ, କଳା ଭଲ-ଘରେ ବୁଝେ ବା ନ ବୁଝେ ।'

ତାପରେ ଦଶ ନମ୍ବର ଡାଉନିଂ ଷ୍ଟ୍ରିଟ୍—ଗୋଟିଏ ଗାର୍ଡ ବନ୍ଧୁକ ହସ୍ତରେ ପହରା ଦେଉଥାଏ, ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କ ବାସ-ଭବନ । ଗୋଟିଏ ମୁହୂର୍ତ୍ତ ଦୃଷ୍ଟି ପକାଇ ଆମେ ଜେମ୍‌ସ୍ ପାର୍କରେ ପ୍ରବେଶ କଲୁ—ପ୍ଲେନ୍ ଟ୍ରି, ବଡ଼ ବଡ଼ ଓକ୍, ଲାଇଲେ, ତୃଣପ୍ରାନ୍ତରର ମଝେ ମଝେ ।

ଏହି ପାର୍କଟି ବକିଂହାମ୍ ପାଲେସ୍‌ରୁ ହର୍ସଗାର୍ଡ ପାରେଡ୍ ଗ୍ରାଉଣ୍ଡ ପର୍ଯ୍ୟନ୍ତ ବିସ୍ତୃତ । ଆଗେ ଗୋଟାଏ ଖାଲ ଥିଲା, ପଙ୍କପାଣି ଜମି ରହୁଥିଲା । ଏବେ ତାକୁ ଗୋଟିଏ ସୁନ୍ଦର ହ୍ରଦରେ ପରିଣତ କରାଯାଇଛି । ତା'ର ଖଣ୍ଡରେ ଖଣ୍ଡରେ ନାନା ବର୍ଣ୍ଣର ଫୁଲ ବୃକ୍ଷ ହୋଇଛି, ହ୍ରଦରେ ରାଜହଂସ, ମାଳଶ୍ରୀବାଯୁକ୍ତ ଇଂରେଜ ପାତିହଂସ ଓ ସିଗଲ୍‌ମାନେ ଶତ ଶତ ସଂଖ୍ୟାରେ ସନ୍ତରଣ କରୁଛନ୍ତି ।

ଲଣ୍ଡନ ସହରର ଗୋଟିଏ ଫୁସଫୁସ୍ ଏ । ଅବସର ସମୟରେ ଭିଡ଼ ଜମେ । ଖାଦ୍ୟ ଯୋଗାଇବା ଲାଗି ସ୍ଥାନେ ସ୍ଥାନେ ରେସ୍ତୋରାଁ । ଯାତ୍ରୀଙ୍କ ଦୟା ଉପରେ ନିର୍ଭର କରି ଚଳନ୍ତି ସହସ୍ର ସହସ୍ର ପାରା । ଅକର୍ମା, ଅଳସ । ରୋଗ ବିସ୍ତାର କରୁଛନ୍ତି ବୋଲି ସେମାନଙ୍କୁ ମାରି ନିପାତ୍ କରିଦେବା କଳ୍ପନା ହେଉଛି ।

ବୌଲଟନ ଏଠି ମୋତେ ମ୍ୟାଣ୍ଡ୍ରେଭିଚ୍, ଟମାଟୋରସ ଓ କଫି ଖୁଆଇଲେ । ଫେରିଲା ବେଳେ ନାନା ସୈନିକ ଓ ସେନାପତିମାନଙ୍କ ସ୍ମୃତିମନ୍ଦିର ଦେଖିଲୁ । ବୌଲ୍‌ଟନ କହିଲେ—ଇଂରେଜ ତରୁଣ ସୈନ୍ୟ ବିଭାଗକୁ ବଡ଼ ବିଭାଗ ମନେ କରେ; ସୈନ୍ୟବିଭାଗରେ ପଶିବା ତାର ଏକ ଉଚ୍ଚାକାଂକ୍ଷା; ଏ ଦେଶ ସୈନିକର ପୂଜା କରେ, କବି ଲେଖକଙ୍କ ସ୍ମୃତି କ୍ୱଚିତ୍ ଦେଖିବାକୁ ମିଳେ । ଏହା କହୁ କହୁ ସେ ମୋତେ ହର୍ସ-ଗାର୍ଡସ୍ ପାରେଡ଼ ସ୍ମୃତି ସ୍ତମ୍ଭ ନିକଟକୁ ନେଇଗଲେ । ପ୍ରଥମ ମହା-ଯୁଦ୍ଧର ମୃତ ଅଶ୍ୱାରୋହୀ ସୈନିକଙ୍କ ସ୍ମୃତି ଏଠି ରଖାହୋଇଛି,

୧୯୧୮ ନଭେମ୍ବର ଏଗାର ତାରିଖରେ ଏଠି ଅସ୍ତ୍ର ବିରତି ଘୋଷଣା କରାଯାଇଥିଲା, ସେହି କାଳରୁ ଏ ପର୍ଯ୍ୟନ୍ତ ବାର୍ଷିକ ସ୍ମୃତି ଉତ୍ସବ ପାଳିତ ହୋଇଆସୁଛି । ଲୋକେ 'ପପି'ଫୁଲ (ନାଲି, ମଝିରେ କଳା)ର ବ୍ୟାଜ୍ ଅଜ୍ଞାତନାମା ସୈନିକର ସ୍ମୃତିସ୍ତମ୍ଭରେ ଅର୍ପଣ କରିଥାନ୍ତି । ଯୁଦ୍ଧବେଳେ ଟ୍ରେଞ୍ଚ୍ ନିକଟରେ ଏହି ସବୁ ଫୁଲ ଫୁଟିଥିଲା, ଏବେ ଇଂଲଣ୍ଡରେ ଏହା ପ୍ରତୀକାତ୍ମକ ଭାବେ ବ୍ୟବହୃତ ।

ବକିଂହାମ୍ ପ୍ରାସାଦ, ତାର ଅଳ୍ପ ଦୂରରେ ମନ୍ତ୍ରୀଙ୍କ ପ୍ରାସାଦ, ନୌବିଭାଗ—ଏଠି ଦୁଇଜଣ ଅଶ୍ୱାରୋହୀ ସୈନିକ—କଳା ପ୍ୟାଣ୍ଟ, ଲାଲ୍ କୋର୍ଟ, ହେଲ୍‌ମେଟ ପିନ୍ଧି—ଉନ୍ମୁକ୍ତ ତରବାରି ହସ୍ତରେ ସେମାନେ ଛିଡ଼ା ହୋଇଛନ୍ତି । ଏମାନଙ୍କ ବ୍ୟତୀତ ଭିତରେ ଅନେକ ଜଗୁଆଳୀ ସୈନିକ ରହିଛନ୍ତି । ତାପରେ ଆକାଶବାଣୀ ଅଫିସ୍, ହୋମ୍ ଅଫିସ୍, ପ୍ରିଭିକାଉନ୍‌ସିଲ୍, କାବିନେଟ୍ ଅଫିସ୍ ପୃକମ୍, ଓ ମିଲଟେରି ବାରକ୍, ଡିଟେକ୍‌ଟିଭ୍ ଅଫିସ୍, ପାର୍ଲିମେଣ୍ଟ । ଏ ସମସ୍ତ ଅଞ୍ଚଳକୁ ହ୍ୱାଇଟ୍ ହଲ୍ କହନ୍ତି ।

ହୌଲ୍‌ଟନଙ୍କର ଷ୍ଟାଫ୍ ମିଟିଂ; ଭୂଇଁତଳ ଟ୍ରେନ୍‌ରେ ବସାଇ ଆଣି ମୋତେ ବ୍ରିଟିସ୍ ମ୍ୟୁଜିୟମ୍‌ରେ ପହଞ୍ଚାଇ ଦେଲେ ।

୧୯୧୧ କପିରାଇଟ୍ ଆଇନ୍ ଅନୁସାରେ ଇଂଲଣ୍ଡରେ ପ୍ରକାଶିତ ପତ୍ରିକା, ପୁସ୍ତକ ଖଣ୍ଡିଏ ଖଣ୍ଡିଏ ଜମା ହୋଇ ଆସୁଅଛି—ଦାନ, କ୍ରୟ ଓ ବିନିମୟରେ ଏହି ଯାଦୁଘରର ଆକାର ବଢ଼ିଚାଲିଛି । ପ୍ରତିବର୍ଷ ନୂତନ ଦ୍ରବ୍ୟ ସମ୍ଭାର ଯୋଗୁଁ ପ୍ରାୟ ମାଇଲଏ ସେଲ୍‌ଫ ସ୍ଥାନ ଆବଶ୍ୟକ ହୋଇଥାଏ । ସମ୍ବାଦପତ୍ର, ପାଠାଗାର, ମାନଚିତ୍ରାଗାର, ସଙ୍ଗୀତାଗାର, ପାଣ୍ଡୁଲିପି ବିଭାଗ, ମାଗ୍ନାକାର୍ଟା; ବାଇବଲ୍‌ର ହିବ୍ରୁ, ଆରବୀ, ପାରସୀ ସଂସ୍କରଣ, ବହୁ ରେକର୍ଡ଼, ସିଲ୍, ପ୍ରାଚୀନ କବିମାନଙ୍କ ହାତଲେଖା, ସେକ୍‌ସପିଅରଙ୍କ ଦସ୍ତଖତ ଥିବା ଦଲିଲ୍, ନେଲ୍‌ସନ୍‌ଙ୍କ ପ୍ରଦତ୍ତ ଟ୍ରାଫଲ୍-ଗାର ଯୁଦ୍ଧର ବିବରଣୀ, ରୁବେନ୍‌ସ, ରେମ୍‌ବ୍ରାଣ୍ଟ୍, ରାଫେଲ୍, ମାଇକେଲ୍ ଆଞ୍ଜେଲୋଙ୍କ ଛବି ଓ ପେଣ୍ଟିଂ, ଖ୍ରୀ. ପୂ. ତିନି ହଜାର ବର୍ଷ ତଳର

ଇଜପ୍‌ଟର ମୂର୍ତ୍ତି, ମମି, ସମାଧି ସନ୍ନିତ ଉତ୍ସୃଷ୍ଟ ଦ୍ରବ୍ୟସମ୍ଭାର, ପ୍ରସ୍ତର ଲେଖ, ମାର୍ଜାର, କୁମ୍ଭୀର, ବସ୍ତ୍ରତଣ୍ଡ ପ୍ରଭୃତି ପବର ଶାବମାନଙ୍କ ମମି, ସାର୍ଗନ୍ ପ୍ରାସାଦର ମନୁଷ୍ୟ ମସ୍ତକ ଓ ପକ୍ଷଯୁକ୍ତ ବୃଷଭର ମୂର୍ତ୍ତି, ଅସୁର ନାସିର୍‌ପାଲ୍‌ଙ୍କ ମନୁଷ୍ୟ ମସ୍ତକଯୁକ୍ତ ସିଂହ, ସୁମେରୀୟ, ବେବିଲୋନୀୟ, ଆସିରୀୟ, ଫୋନେସୀୟ, ଗ୍ରୀସୀୟ, ମିଶରୀୟ ଓ ଆରବୀୟ ନାନା କଳା ଓ ଭାସ୍କର୍ଯ୍ୟ ସଙ୍କେତରେ ଅକ୍ଷରକୁ ମୂର୍ତ୍ତି କରିବା ଉଦ୍ୟମ ହୋଇଅଛି । ବୋଧହୁଏ ହସ୍ତକଳା ଓ ଭାସ୍କର୍ଯ୍ୟର ଏ ଗୋଟିଏ ମଧୁଚକ୍ର; ଜଗତ ଉଦ୍ୟାନର ଯାବତୀୟ ମଧୁ ସଂଗୃହୀତ ହୋଇ ଯେପରି କି ଏହି ଚକ୍ରରେ ସଞ୍ଚିତ କରାଯାଇଛି । ଏତେ ଅଳ୍ପ ସମୟରେ କଣ ବା ଦେଖିବ ? ଟିକିଏ ଆଖି ବୁଲାଇ ଦେଇ ଆସି ଓଡ଼ିଆ ପାଣ୍ଡୁଲିପି ବିଭାଗରେ ବସିଲି ।

ଜଗନ୍ନାଥ ଭାଗବତ, ଚନ୍ଦ୍ରକାବ୍ୟଚନ୍ଦ୍ରୋଦୟ, ରାମାୟଣ, ରାଧାକୃଷ୍ଣ କେଳି କଥା, ସ୍କନ୍ଦ ପୁରାଣ, ଗଙ୍ଗା ମାହାତ୍ମ୍ୟ ପ୍ରଭୃତି କେତେ ଖଣ୍ଡି ପାଣ୍ଡୁଲିପି ରହିଅଛି । 'ଦାର୍ଢ୍ୟତାଭକ୍ତି' ପୋଥି ଶେଷରେ ଲେଖାଅଛି— ମାର୍ଗଶିର ଶୁକ୍ଳ ଦ୍ୱିତୀୟା ଭୃଗୁବାସରେ କଳିଙ୍ଗା ଗ୍ରାମରେ ବସିଣ ସାଇରେ ଥାଇ ରାମଦାସେ ଏ ପୋସ୍ତକ ଲେଖା ସମ୍ପୂର୍ଣ୍ଣ କଲେ । ଅପ୍ରକାଶିତ ପାଣ୍ଡୁଲିପି ନାହିଁ ।

ଛପା ଓଡ଼ିଆ ପୁସ୍ତକର ତାଲିକା ଏ ପର୍ଯ୍ୟନ୍ତ ପ୍ରସ୍ତୁତ ହୋଇ ନାହିଁ । ଖୋଜି ଦେଖିଲି—ଊନବିଂଶ ଶତାବ୍ଦୀର ବହୁ ଗୌଣ କବିଙ୍କର ପୁସ୍ତକ ସଂଗୃହୀତ ହୋଇ ରହିଅଛି । ବିଂଶ ଶତାବ୍ଦୀରେ ଆମେ ସେମାନଙ୍କ ନାମ ଭୁଲି ଯାଉଛୁ । ଉତ୍କଳରେ ହୁଏତ ଏ ସବୁ ଦୁର୍ଲ୍ଲଭ ।

ପାଠାଗାରରେ ଖ୍ରୀଷ୍ଟିୟାନ୍ ଧର୍ମପୁସ୍ତକର ବହୁ ଓଡ଼ିଆ ଅନୁବାଦ ରହିଅଛି, ଶ୍ରୀରାମପୁରରେ ଛପା । ୧୮୧୧ ଖ୍ରୀଷ୍ଟାବ୍ଦରେ ପାଦ୍ରୀଙ୍କ ହାତରେ ଓଡ଼ିଆ ଭାଷାର ସ୍ୱରୂପ ଜାଣିବା ଲାଗି ଗୋଟିଏ ପଂକ୍ତି ଉଠାଇଲି—

ଈଶ୍ୱରର ସମସ୍ତ ବାକ୍ୟ—ବିଶେଷରେ ମନୁଷ୍ୟର ପ୍ରାଣ ଓ କାର୍ଯ୍ୟର ସାଧନା—ଅରେ ଯେ ଯାହା ପ୍ରକାଶ କରିଅଛନ୍ତି ଅର୍ଥାତ୍ ଧର୍ମପୁସ୍ତକ –

ତାହାର ପ୍ରଥମ ଭାଗ ସମ୍ବନ୍ଧରେ ମୋ ଶହର ବ୍ୟବସ୍ଥା
ଯିଶର ବବରଣୀ
ଗୀତାଦ । ଭବଷ୍ୟତ୍ର ବାକ୍ୟ
ଏବଶ ଭାଷାରେ ତର୍ଜମା ହୋଇଲା ।
ଶ୍ରୀରାମପୁରଠାରେ ଛପା ହେଲା
ଶନ ୧୮୧୧ ଶାଲ

"ଯେମନ୍ତ ଆମ୍ଭେ ମୋ ଶହକୁ କହିଥିଲୁଁ ତେମତ ଯେଉ ପ୍ରତ୍ୟେକ ସ୍ଥାନର ଉପରେ ତୁମ୍ଭର ଗୋଡ଼ର ତାଳୁଆର ବକ୍ଷେପ ହେବ ସେ ପ୍ରତ୍ୟେକ ସ୍ଥାନକୁ ଆମ୍ଭେ ତୁମ୍ଭମାନଙ୍କୁ ଦେଇଅଛୁଁ । ଏ ଅରଣ୍ୟ ପୁଣି ଲବୋନନର ମହାନଦୀ ଫରାତ ନଈକ ଖତ୍ତୀମାନଙ୍କର ସମସ୍ତ ଦେଶ ପୁଣି ସୂର୍ଯ୍ୟର ଅସ୍ତ ଯିବାର ସ୍ଥାନର ଉପରେ ମହାସମୁଦ୍ର ପର୍ଯ୍ୟନ୍ତ ତୁମ୍ଭମାନଙ୍କର ସୀମା ହେବ । ତୁମ୍ଭର ଆୟୁଷର ସମସ୍ତ ଦନରେ କେହି ତୁମ୍ଭର ସମ୍ମୁଖରେ ଠିଆ ହେବାକୁ ପାରବ ନା ଆମ୍ଭେ ଯେମନ୍ତ ମୋ ଶହର ସଙ୍ଗତ ଥିଲୁଁ ତେମତ ତୁମ୍ଭର ସଙ୍ଗତ ହେବ । ଆମ୍ଭେ ତୁମ୍ଭର ପ୍ରତ ଶିଥିଲ ହେବା ନା ପୁଣି ତୁମ୍ଭକୁ ତ୍ୟାଗ କରବା ନା ।"

ନୂଆ ଓଡ଼ିଆ ଛପା ଅକ୍ଷର ତଆର ହେବା କାଳ । କେତେକ ଅକ୍ଷର ବହୁ ଚେଷ୍ଟା କର ପଢ଼ ପାରଲି ନାହିଁ । 'ଯେମନ୍ତ, ତେମନ୍ତ' ସ୍ଥାନରେ 'ଯେମତ, ତେମତ', 'ଯେଉଁ ସ୍ଥାନରେ' ଯେଉ', 'ଠିଆ' ସ୍ଥାନରେ 'ଠିଆ', 'କରବ ନାହିଁ', ସ୍ଥାନରେ 'କରବାନ', 'ଶିଥିଳ' ସ୍ଥାନରେ 'ଶିଥିଲ', 'ଫରାତ୍' ପ୍ରଭୃତ ପାରସୀ ଶବ୍ଦର ପ୍ରୟୋଗ ଭାଷାତାତ୍ତ୍ୱିକମାନଙ୍କୁ ସେ କାଳର ଭାଷା ସମ୍ପର୍କରେ ଆଲୋଚନା କରବା ଲାଗି ପ୍ରରୋଚତ କରବ, ମୋର ବଶ୍ୱାସ ।

ମହାନ୍ ପ୍ରସାଦ ଠାକୁରଙ୍କ Oriya and English vocabulary (ଶ୍ରୀରାମପୁର, ୧୮୧୧), 'ଗୀତାମୃତ ସହିତ ଚରଣ' (ଲେଖକଙ୍କ ନାମ ଉଲ୍ଲିଖିତ ହୋଇନାହିଁ), କେହି କେହି ନ ଜାଣିବ

(ଧର୍ମପୁସ୍ତକ)ଲେ·ଖଆମାସ୍ (୧୮୭୮,) ଚତୁର୍ଭୁଜ ପଟ୍ଟନାୟକଙ୍କ 'କାବ୍ୟ-କୁସୁମ' (୧୮୮୦); ହରମୋହନରାୟ ଚୂଡ଼ାମଣିଙ୍କ ଅସ୍ତ୍ରନାଳୀୟ ପଦ୍ୟାବଳୀ (୧୮୭୯), ବଲ୍ଲଭ ପଟ୍ଟନାୟକଙ୍କ କାଳିଦାସ (ରଘୁବଂଶ), ୧୮୭୮, ମଧୁସୂଦନ ଷଣ୍ଢଙ୍କ ବେତାଳ ପଞ୍ଚବିଂଶତି, ଈଶାନ ଚନ୍ଦ୍ର ବସୁଙ୍କ ଗୀତ ମଞ୍ଜରୀ, ଚନ୍ଦ୍ରନାଥ ବସୁଙ୍କ ଅଖ୍ୟାନ ମଞ୍ଜରୀ, କ୍ଷେତ୍ରମୋହନ ରାୟଙ୍କ 'ଗୀତା ମାଣ୍ଡ କ ଅଣ୍ଡିବ' ଗଳ୍ପ ପୁସ୍ତକ, ୨୮ ପୃଷ୍ଠା, ୧୮୯୩, ସବୁ ଗଢ଼ାଇ ଦେଇଗଲା । ଗଳ୍ପ ପୁସ୍ତକଟି ବାଲେଶ୍ୱର ଜିଲାର ସେ କାଳ ବନ୍ଦୋବସ୍ତକୁ ଲକ୍ଷ୍ୟ କରି ରଚିତ ।

୧୮୭୮ରେ ଗୌରୀଶଙ୍କର ରାୟଙ୍କ ସଙ୍କଳିତ ଲାବଣ୍ୟବତୀ, ଗଦାଧର ତ୍ରିପାଠୀଙ୍କ ଇଂଲଣ୍ଡର ଇତିହାସ (୧୮୭୫), ରାସବିହାରୀ ନାୟକଙ୍କ 'ନାରୀକେଳୋତ୍କର୍ଷଣ', ମିଲ୍ଟର ଓ ରଘୁନାଥ ମିଶ୍ରଙ୍କ 'ଓଡ଼ିଆ ଭାଷା-ବିଧାନ' ମୋର ଦୃଷ୍ଟି ବିଶେଷ ଭାବେ ଆକର୍ଷଣ କରିଥିଲା ।

ଏ. ଷଟନଙ୍କ 'ଇତିହାସ ସାର ସଂଗ୍ରହ', ୧୮୭୬ରେ ଛପା, ମୂଲ୍ୟ ଦୁଇଅଣା । ଐତିହାସିକ ଦୃଷ୍ଟିରୁ ଏହା ଏକ ଅଳ୍ପ ମାଳିକା । କିନ୍ତୁ ଓଡ଼ିଆ ଭାଷାରେ ଓଡ଼ିଶାର ଇତିହାସ ରଚନାର ଇତିହାସରେ ଏହା ଏକ ମାଇଲ୍ ଖୁଣ୍ଟ, ଅସ୍ୱୀକାର କରିହେବ ନାହିଁ । ଊନବିଂଶ ଶତାବ୍ଦୀର ଗଦ୍ୟ ସାହିତ୍ୟ ଶୈଳୀ ବିଚାର ଲାଗି ଏଥିରୁ ଦୃଷ୍ଟାନ୍ତ ଦିଆଯାଇ ପାରେ—

'ଯେପରି ନାନା ଦୂରସ୍ଥିତ ପର୍ବତରେ ନାନା ପାଣି ଧାର ଉତ୍ପନ୍ନ ହୋଇ ପଡ଼ନ୍ତେ ସେମାନଙ୍କର ସ୍ରୋତସବୁ ମିଶି ଏକ ବଡ଼ ବଡ଼ ନଦୀ ହୋଇ ଅଗାଧ ସମୁଦ୍ରକୁ ବହିଯାଏ ତେପରି ଏହି ଦେଶ ପୁଣି ଅନ୍ୟ ଦେଶର ନଦୀ ସ୍ୱରୂପ ଚରିତ ଜାଣିବ ।'

ପ୍ରାଚ୍ୟ ପୁସ୍ତକ ପାଣ୍ଡୁଲିପିର ଗ୍ରନ୍ଥାଗାରିକ ଜ୍ୱେଲପ୍ ନିଜ ହାତରେ ଉପର ମହଲରୁ ପୁସ୍ତକସବୁ ବୋହି ଆଣି ମୋତେ ସାହାଯ୍ୟ କରନ୍ତି । ତାଙ୍କ ମହାନୁଭବତା ନିକଟରେ ମୁଁ ଋଣୀ ।

ପାଞ୍ଚଟା ବେଳକୁ ମ୍ୟୁଜିୟମ୍ ବନ୍ଦ । ଦେଖା ଅସମ୍ପୂର୍ଣ୍ଣ; ମନ ଦୁଃଖରେ ପୁସ୍ତକଗୁଡ଼ିକ ଫେରାଇ ଦେଲି । କାଉଣ୍ଟରରେ ଅପେକ୍ଷା କରି ଛୁଡ଼ା ହେଲି । ବୌଲ୍ଟନ ! ବାଃ ଠିକ୍ ସମୟରେ ପହଞ୍ଚିଛନ୍ତି ।

ଲଞ୍ଚ୍, ଗାଡ଼ିଭଡ଼ା; ସେ ମୋ ଲାଗି ଢେର ଖର୍ଚ୍ଚ କରୁଛନ୍ତି । ମନ କଷ୍ଟ କରିବେ ବୋଲି କିଛି କହିପାରୁ ନାହିଁ । କିପରି ତାଙ୍କର ଏ ଋଣ ଶୁଝିବି ? ମନେ ପଡ଼ିଲା—ତାଙ୍କର ପୁଅ କଥା - ରାଲ୍ଫ ! ତା ଲାଗି ଗୋଟିଏ ଖେଳଣା କିଣିଦେବି ।

ବୌଲ୍ଟନ କହିଲେ—‘ଦୋକାନ ବନ୍ଦ’
‘ନା, ଚାଲ ଖୋଜିବା ।’

ଗୋଟିଏ ଖେଳଣା ଦୋକାନରେ ପଶିଲୁ—ହସ, କୌତୁକ, ବ୍ୟଙ୍ଗ ! ବୌଲ୍ଟନ କହିଲେ—ଏଟା Shop of jokes ! ଏ ଚଳିବ ନାହିଁ ।

‘ଯାହା ଚଳିବ, ସେଥିରୁ ଗୋଟିଏ କିଣ; ମୁଁ ତୁମ ପୁଅକୁ ଦେଖି ନାହିଁ, ସେ କଣ ଭଲ ପାଏ, କିଛି ଜାଣେ ନାହିଁ ।’

ତାପରେ ବୌଲ୍ଟନ ଗୋଟାଏ ମଟର ଗାଡ଼ି ଧରିଲେ - ତା ମାନେ କଥା ରକ୍ଷଣକୁ ଯାହା ଗୋଟାଏ ନେଲେ ହେଲା ।

କହିଲି—ଆମ ଆଡ଼ ମଫସଲି ପିଲା ମଟର ଗାଡ଼ିରେ ଖେଳନ୍ତି । ଆଟମ୍ ଯୁଗର ପିଲା ଏହାକୁ କଣ ପସନ୍ଦ କରିବ ? ଏଇଟା କେତେ ଗ୍ରେଟ୍, ଦାମ୍ ଦୁଇସିଲିଙ୍ଗ୍ ମାତ୍ର ! ଆଉ ଗୋଟାଏ କିଛି ବାଛ ।

ଶେଷକୁ ସେ ଗୋଟାଏ ବସ୍ କଣ୍ଡକ୍ଟର ମୁଣି ଓ ଟିକେଟ୍ କାଟିବା କଳ ବାଛିଲେ—ଏଥିରେ ରାଲଫ୍ ଖୁସି ହେବ ।

କହିଲି—ଆପଣଙ୍କୁ ତ ଆଗେ ଟିକେଟ୍ ଦେବ । କେତେ ପଇସା ଗଣିବେ ମିଛ ମିଛକିଆ ବସ୍‌ରେ ବସି !

ସେ କହିଲେ—ମିଛ ବସ୍ତୁକୁ ମିଛ ପଇସା !

ଏସ୍କାଇଲେଟରରେ ପାତାଳ ପୃଷ୍ଠକୁ ଯାଇ ରେଲ୍‌ଗାଡ଼ିରେ ଗଲୁ । ପୁଣି ଉପରକୁ ଉଠିଲୁ । ବୌଲ୍‌ଟନ୍ ଦେଖାଇ ଦେଲେ—ହେନେରୀ ଆଇର୍‌ଭିଙ୍ଗଙ୍କର ମୂର୍ତ୍ତି—ଜନ୍ମ ୧୮୩୮, ମୃତ୍ୟୁ ୧୯୦୫; ସେକ୍ସପିଅରଙ୍କ ନାଟକର ଜଣେ ବଡ଼ ଅଭିନେତା ! ଆଉ ମୂର୍ତ୍ତିଟି ଦେଖୁଛ ? ଗାରିକ୍, ସେ ବି ଜଣେ ନାମଜାଦା ଅଭିନେତା; ଡକ୍ଟର ଜନ୍‌ସନ୍‌ଙ୍କ ସମସମୟର ଲୋକ । ତାଙ୍କ ନାମାନୁସାରେ ଲଣ୍ଡନର ପ୍ରସିଦ୍ଧ 'ଗାରିକ୍ ଥିଏଟର୍ ହାଉସ୍' ନାମିତ; ସେକ୍ସପିଅର୍‌ଙ୍କ ନାଟକ ଅଭିନେତାମାନଙ୍କର ଅନ୍ୟାନ୍ୟ ମୂର୍ତ୍ତି ଇତସ୍ତତଃ ରଖା ଯାଇଛି ।

କଥା ହେଉଁ ହେଉଁ ସେଣ୍ଟ ମାର୍ଟିନ୍ ଗିର୍ଜା ପାଖେ ପହଞ୍ଚିଲୁ; ଟାୱାର୍ ପର ଆକାଶ ଭେଦ କରୁଛି ଏହାର ଉଚ୍ଚତମ ଅଗ୍ରଭାଗ । ହଜାର ହଜାର ବାୟୁ ଚଢ଼େଇଙ୍କ ଆଶ୍ରୟ ସ୍ଥଳ । ସନ୍ଧ୍ୟାକାଶକୁ କୋଳାହଳରେ ଉଚ୍ଛୁଳାଇ ଦେଉଥାନ୍ତି ।

ତାପରେ 'ଭିକ୍ଟୋରିଆ' ଷ୍ଟେସନରେ ମୋତେ ପହଞ୍ଚାଇ ବୌଲ୍‌ଟନ ଫକୀରମୋହନଙ୍କ କଥା ଗପି ଲାଗିଲେ—ତାଙ୍କ ଅଦ୍ଭୁତ ଆତ୍ମ ଚରିତ ଓ ଛ'ମାଣ ଆଠ ଗୁଣ୍ଠର ମହତ୍ତ୍ୱ । ତାଙ୍କ ମତରେ ଫକୀରମୋହନ ଯେତେବେଳେ ଉପନ୍ୟାସ କଣ ଜାଣି ନ ଥିଲେ—ସେ ଭଲ ଉପନ୍ୟାସ ଲେଖିଥିଲେ । 'ପ୍ରାୟଶ୍ଚିତ୍ତ' ଲେଖିଲା ବେଳକୁ ସେ ଉପନ୍ୟାସ ବିଷୟରେ ସଚେତନ; କିନ୍ତୁ ସେଥିରେ ସେ ସଫଳ କଳାକାର ହୋଇପାରି ନାହାନ୍ତି । ତାଙ୍କ ତୁଣ୍ଡରୁ ଲଣ୍ଡନ ସହରରେ ଏ ସବୁ ଶୁଣିବାକୁ ଖୁବ୍ ଭଲ ଲାଗୁଥାଏ ।

ତାପରେ ସେ କହି ବୁଲିଲେ—ବଗଲା ବଗଲୀ, ଧୂଳିଆ ବାବା, ରାଣୀପୁଅ ଅନନ୍ତା କଥା, ଚରିତ୍ର ଚିତ୍ରଣରେ ତାଙ୍କର ଅଭିନବତ୍ୱ; କିନ୍ତୁ ଭଲ ଯେ ସେ ମିଛକୁ ଭଲ—ନିସ୍ପୃହ, ଅକର୍ମଣ୍ୟ—ସାନ୍ତାଣୀ, ଶାରିଆ, ଭଗିଆ ! ତେଣୁ ପରେ 'ଯେଷାକୁ ତେଷା' ଉପରେ ତାଙ୍କର ବକ୍ତବ୍ୟ

ଜନ୍ମିଛନ୍ତି । ମାଧ ମହାନ୍ତିଙ୍କ ଝିଅ ବାପ ଉପରେ ଉପଯୁକ୍ତ ପ୍ରତିଶୋଧ ନେଇଛନ୍ତି ।

ଏତିକି ବେଳେ ଗାଡ଼ି ଛାଡ଼ିଦେଲା; ଆଉ ଆଳାପ ଆଲୋଚନାକୁ ଭ୍ରୂକ୍ଷେପ ନ କରି । ମୁଁ ଭାବି ବସିଲି—ବୌଲ୍‌ଟନଙ୍କ କଥା—ସାହେବ ଦେହ, ଓଡ଼ିଆ ପ୍ରାଣ । ଓଡ଼ିଆ ସାହିତ୍ୟକୁ ବିଶ୍ୱଦରବାରରେ ପରିଚିତ କରେଇବା ଲାଗି ସେ ଦୃଢ଼ ପ୍ରତିଜ୍ଞ । ପ୍ରଥମେ ତାଙ୍କ ଦୃଷ୍ଟିରେ ପଡ଼ିଛନ୍ତି ସେ ଦିନର ହତଭାଗ୍ୟ, କିନ୍ତୁ ଆଜିର ପରମ ଭାଗ୍ୟବାନ ଫକୀର-ମୋହନ !

## ଇଂଲଣ୍ଡର ଶେଷ ଦିନ (୭ । ୧୦ । ୭୭)

ପ୍ରାତଃରାଶ ବେଳେ ଟେବୁଲ୍ ପାଖେ ପରସ୍ପର କଥାଭାଷା ବେଶ୍ ଜମିଛି । ସଞ୍ଜୟ ଗୋଳମାଳ କଲାରୁ ଜୋସ୍ନା ଧମକ ଦେଲା—ସେମିତି ହେଲେ ଇସ୍କୁଲକୁ ଛାଡ଼ିବି ନାହିଁ । ପିଲାଙ୍କୁ କଠୋର ଶାସ୍ତି ଏ !

ସଞ୍ଜୟ କାନ୍ଦ କାନ୍ଦ କହିଲା, ମୁଁ ଆଉ ଗୋଳମାଳ କରିବି ନାହିଁ, ମତେ ସ୍କୁଲକୁ ପଠା ।

ଆମ କାଳ ଏ କାଳ ମଧ୍ୟରେ କି ତଫାତ୍ ! ଆମେ ମାଡ଼ ଭୟରେ ଗାତରେ ଲୁଚୁଥିଲୁ; ଦିନେ ସ୍କୁଲ ଛୁଟି ହେଲେ କି ଆନନ୍ଦ ! ଏବେ ପାଠ ପଢ଼ା ଆଉ ଖେଳ ମଧ୍ୟରେ ମଧୁର ସମନ୍ୱୟ ଆଣା ଯାଇ ପାରିଛି । କିନ୍ତୁ ସେତେବେଳେ ସ୍କୁଲ ଥିଲା ଗୋଟାଏ ଜେଲ୍ ।

କଥା ପଡ଼ୁ ପଡ଼ୁ ଜୋସ୍ନା ତାର ବଧୂ ଜୀବନର କରୁଣ କାହାଣୀ ଗାଇ ବସିଲା । ସେ ଆଧୁନିକା, କିନ୍ତୁ ତାକୁ ପ୍ରାଚୀନର ଅଭିନୟ କରିବାକୁ ପଡ଼ୁଥିଲା । ଏକୁଟିଆ କୁଆଡ଼େ ଯିବାକୁ ମନା । ଛୁଆଁ କାରିବା ଲାଗି ବାରମ୍ବାର ତାଗିଦ୍ ଦିଆ ଯାଉଥିଲା । ପଡ଼ୋଶିମା ଅଶିକ୍ଷିତା; ଆସିଲେ ଶାଢ଼ୀ ଅଳଙ୍କାର କଥା ପକାନ୍ତି, କେଉଁ ଖଣ୍ଡିଏ ଖବରକାଗଜ ମଧ୍ୟ ପଢ଼ନ୍ତି ନାହିଁ ।

ବେଶିଲ ସହର, ସୁରେନ୍‌ର ବାପା, ଜ୍ୟୋତ୍ସ୍ନାର ଶ୍ୱଶୁର ଜଣେ ନାମଜାଦା ଜମିଦାର ଥିଲେ । ଜମିଦାରୀ ଉଠିଗଲା ଶୁଣି ସେ ଜମିକୁ ଘୃଣା କରି ଦେଇଥିଲେ; ଝିଅ ବାହା ଦେଲାବେଳେ ତାକୁ ଯୌତୁକରେ ସୁନାଆଣି କରି-ଦେଇଥିଲେ, ମୋ ଲାଗି ମଧ୍ୟ ଅନେକ ଅଳଙ୍କାର ଗଢ଼ା ହୋଇଥିଲା— ବେଶ ମୋଟା ମୋଟା । ନ ପିନ୍ଧିଲେ ଶାଶୂ ଶ୍ୱଶୁର ଦୁଃଖ କରୁଥିଲେ— ବୋଧେ ବୋହୂ ମନକୁ ପାଉନାହିଁ !

ତାଙ୍କ ଘରେ ସବୁ ତରକାରୀ ଭଜା ଘିଅରେ ରନ୍ଧା । ପୋଷଣ ବେଳେ ମୋତେ ଦିଆ ହୋଇଥିଲା ଘିଅଭଜା ବାଦାମ୍, ଗରମ୍ ଦୁଧ । ସ୍ୱାସ୍ଥ୍ୟ ଡାକ୍ତରୀ ଔଷଧ, ସିଆଡ଼େ ଘିଅଭଜା ଖାଇବା ଅର୍ଥ କଣ ? ହାକୁଣୀ ପରି ବଡ଼ଘର ମାଇପୀଗୁଡ଼ାକ, ଘିଅ ଖାଇ ଚୁଲିପାରୁ ନାହାନ୍ତି, କାମଦାମ କରିବେ କେମିତି ?

ଆମେ ପିଲାଙ୍କୁ ମିଠା ନ ଦେଲେ ସେଠା ଲୋକେ ହସନ୍ତି । ବହୁତ ନ ଖାଇଲେ ଭାବନ୍ତି—ବୋଧେ ତା ଲାଗି ଖାଦ୍ୟ ହେଲା ନାହିଁ ।

ଅଶିକ୍ଷିତା ସ୍ତ୍ରୀ କିଛି ଭାବନ୍ତି ନାହିଁ, କିଛି କରନ୍ତି ନାହିଁ ।

ମୁଁ କହିଲି—ଶିକ୍ଷିତା ? ଏମାନଙ୍କ ମଧ୍ୟରୁ ଅଧିକାଂଶ ଶାଢ଼ୀ ଅଳଙ୍କାର କଥା ଭାବନ୍ତି । ଗାଆଁ ମାଇପେ କଳି କଲେ ଖୁବ୍ ତର୍ଜନଗର୍ଜନ, ଖୁବ୍ ଅଶ୍ଳୀଳ କଥା; ଦି ଦିନ ପରେ ପୁଣି ମିଳିମିଶି ଚଳନ୍ତି ! କିନ୍ତୁ ଶିକ୍ଷିତାଙ୍କ ମୁହଁ ଫୁଲାଫୁଲି ବେଳେ ବେଳେ ସାରା ଜୀବନକୁ ରହିଯାଏ ।

ଜ୍ୟୋତ୍ସ୍ନା କହିଲା— ଅଶିକ୍ଷିତା କିଛି ଶିଖିବାକୁ ଚେଷ୍ଟା କରେ ନାହିଁ— ଖାଲି ରାମାୟଣ, ମହାଭାରତ !

'ସେଥିରେ କଣ ଶିଖିବା ଲାଗି ନାହିଁ ? ଜଣେ ଜଣେ ଅଶିକ୍ଷିତାଙ୍କର ଅସମ୍ଭବ ଧୈର୍ଯ୍ୟ, ସହଣିକ ଶକ୍ତି, ଅତିଥିସେବା, ଉତ୍କୃଷ୍ଟ ସଭ୍ୟତାର ଲକ୍ଷଣ ।'

'ମୋ ଶାଶୂ ପରିବାରରେ ସମସ୍ତଙ୍କ ଲାଗି ସବୁ କଣିବେ, ନିଜଲାଗି କିଛି ନୁହେଁ; ସମସ୍ତଙ୍କ ଖିଆପିଆ ସୁଝିବେ, ନିଜେ ଯାହାତାହା ଖାଇବେ ।'

'ସେ ସର୍ବଶ୍ରେଷ୍ଠ ଶିକ୍ଷାର ପ୍ରଥକ, ଇଂରେଜୀ ନ ଜାଣିଥିଲେ କଣ ହେଲା ? ପରର ସୁଖ ଦୁଃଖକୁ ଯେ ନିଜର କରିପାରେ, ପରଦୁଃଖ ତାଡ଼ିବା ଲାଗି ଯାହାର ହୃଦୟ ଉଦ୍ବେଳ, ସେ ଶେଖୀ ହୋଇପାରେ, କିନ୍ତୁ ସେ ଯେ ମହାପ୍ରାଣୀ, ଏହା ସ୍ୱୀକାର କରିବାକୁ ହେବ ।'

ସୁରେନ୍ ମୋର ବନ୍ଧୁ, ପତ୍ନୀକାଠକ ଏଣ୍ଡ୍ରୋକୁ ପାର୍ସଲ୍ କରି ଦେଇଛି । ଖରାଟିଆ ଗାଡ଼ । ସଞ୍ଜପୁ ସ୍କୁଲରେ; ଭାବକ ମାଆଣିଖା କଥାରେ ବିଦାୟ ଦେଲି— ବାଇ ବାଇ । ଶେଷକୁ ହୋଷ୍ଟ ବିଦାୟ ଦେଲି— ଭାଇନା, କିଛି ଅପରାଧ କରିଥିଲେ କ୍ଷମା କରିବେ, ନମସ୍କାର' (ମୋତେ 'ଭାଇନା' ବୋଲି ଡାକିବା ଲାଗି ସେ ବଡ଼ ଅଫିସୀ ଉପରୁ ନିର୍ଦ୍ଦେଶ ପାଇଥିଲା) । ତାପରେ ସୁରେନ୍ ମୋତେ 'ମାଉଣ୍ଟ ରୟାଲ' ହୋଟେଲ୍‌ରେ ଥୁଉଦେଇ ବିଦାୟ ନେଲା ।

ଲଣ୍ଡନର ଏ ଗୋଟିଏ ପ୍ରଥମ ଶ୍ରେଣୀ ହୋଟେଲ; ଆମେରିକାନ୍ ଏକ୍ସପ୍ରେସ୍ ଟୁର୍‌ର ଆମ ଦଳଟି ଏଠି ଥାଉ । ଆମ ଗାଇଡ୍ ଜାକୋବ ମୋତେ ଅନ୍ୟମାନଙ୍କ ସହିତ ପରିଚିତ କରାଇ ଦେଲେ ।

ଲଞ୍ଚ୍ ଖାଇଲା ବେଳେ ସେ ମୋତେ ପଚାରିଲେ— କୁକୁଡ଼ା ମାଂସ ତ ଖାଉଛ, ଗୋରୁ ଘୁଷୁରି ମାଂସ କାହିଁକି ଖାଉନାହଁ ?

କହିଲି— ଏ ଗୋଟିଏ ପରମ୍ପରା; 'ଗୋ'କୁ ଆମେ ମାତା ପରି ପୂଜା କରୁ । ଯେତେ ଆଧୁନିକ ହେଲେ ବି ପରମ୍ପରା କଏ ଛାଡ଼ୁଛି ? ଶୁକ୍ରବାର ଦିନ କାଥୋଲିକ୍‌ମାନେ ମାଂସ ଖାନ୍ତି ନାହିଁ; ଇଂରେଜମାନେ ତେର ନମ୍ବର ଘରେ ନ ରହିବା ଭିତରେ କିଛି ଯୁକ୍ତି ଅଛି ?

ଟୁର୍ ନମ୍ବର ୬୨୯; ପ୍ରାୟ ଦୁଇଟା ବେଳେ ଆମେ ବସ୍‌ରେ ବସିଲୁ—ପଚିଶ ଜଣ ଯାତ୍ରୀ; ପିଲାମାନେ ହାତରେ ବ୍ୟାଗ୍ ଧରି ସ୍କୁଲରୁ

ଫେରୁଥାନ୍ତି । ଲଣ୍ଡନରୁ ବିଦାୟ ବେଳେ ଦୁଃଖ ଆସୁନାହିଁ; କାରଣ ଆଖି ଆଗରେ ଛିଡ଼ା ହୋଇଛି ଇଉରୋପ ।

ଲଣ୍ଡନରୁ କଲ୍‌ଚେଷ୍ଟର ପ୍ରାୟ ଷାଠିଏ ମାଇଲ୍ ଦୂର । ବାଟରେ ଗମ୍ଭୀର ବଣ, ଘାସ ପଡ଼ିଆ, ଗାଆଁ; ସବୁ ଟାଇଲ ଘର; ଗୋରୁ ଗାଈ ବାଡ଼ଘେରା ଖେତରେ ଚରୁଛନ୍ତି । କୁହୁଡ଼ି ଘୋଟି ଆସୁଛି, ତା ସହିତ ବର୍ଷା; 'ରେଡ଼୍ ଲାୟନ୍' ହୋଟେଲରେ ମଧ୍ୟାହ୍ନଭୋଜନ ହେଲା—ପ୍ରେସ୍ ନାମକ ସମୁଦ୍ର ମତ୍ସ୍ୟ, କଞ୍ଚା ପରିବା ଝୋଳ, ଆପଲ୍, ଆଇସ୍ କ୍ରିମ୍, କୋକୋ ।

'କଲ୍‌ଚେଷ୍ଟର୍' ସହରରୁ 'ହାରୱିଚ୍' ବନ୍ଦର ପ୍ରାୟ ଉଣେଇଶ ମାଇଲ୍ ଦୂର, ବସ୍‌ରେ ଅଧଘଣ୍ଟାଏ ଲାଗେ । ଅନ୍ଧାର, କୁହୁଡ଼ି, ବର୍ଷା ମଧ୍ୟରେ କୌଣସି ଦୃଶ୍ୟ ଆଉ ଉପଭୋଗ କରି ହେଲା ନାହିଁ । ଦେଖାଗଲା ହାରୱିଚ୍ ବନ୍ଦରର ଆଲୋକମାଳା, ତା ମଧ୍ୟରେ ଛିଡ଼ା ହୋଇଥାଏ ଷ୍ଟିମର୍ ସବୁ, ଛୁଟିଥାଏ ଟ୍ରେନ୍; କେନାଲର ଧାରେ ଧାରେ ଲମ୍ବା ଲମ୍ବା ମାଲ୍ ଗୋଦାମ ସବୁ । ଲଞ୍ଚ; କେନାଲରେ ଖାଲି ଜାହାଜ । କଷ୍ଟମ୍‌ସ୍ ଅଫିସ୍‌ରେ ଆମର ପାସ୍‌ପୋର୍ଟ ଚେକ୍ ହେଲା; ଧାଡ଼ି ଦେଇ ଛିଡ଼ା ହେବାକୁ ପଡ଼ିଥିଲା ଅନ୍ୟ କେତେକ ଯାତ୍ରୀଙ୍କ ସହିତ ଆମକୁ । ଶୀତରେ ମଞ୍ଜ ଥରୁଥାଏ ! ଶେଷକୁ 'ଆର୍ନ୍‌ହେମ୍' ଜାହାଜରେ ପଶିଲୁ ଆମେ—ପ୍ରତ୍ୟେକଙ୍କ ଲାଗି ଗୋଟିଏ ଗୋଟିଏ ସ୍ୱତନ୍ତ୍ର କୋଠରୀ ।

'ଆର୍ନ୍‌ହେମ୍' ହଲଣ୍ଡର ଗୋଟିଏ ସହର, ଜର୍ମାନମାନଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ୧୯୪୪ରେ ସେଠି ବ୍ୟୋମଯାନରୁ ବ୍ରିଟିଶ ମିତ୍ରପକ୍ଷର ସୈନ୍ୟମାନେ ଜର୍ମାନମାନଙ୍କ ସହିତ ଯୁଦ୍ଧକରି ବୀରତ୍ୱର ପରିଚୟ ଦେଇଥିଲେ । ଜାହାଜଟିର ନାମ କରଣରେ ସେଇ ଘଟଣାର ସ୍ମୃତିରକ୍ଷା କରାଯାଇଛି । ୧୯୪୭ ଖ୍ରୀଷ୍ଟାବ୍ଦରୁ ଏଇ ଯାତ୍ରୀ ଜାହାଜଟି ଇଂଲଣ୍ଡର 'ହାରୱିଚ୍' ଓ ହଲଣ୍ଡର 'ହୁକ୍' ବନ୍ଦର ମଧ୍ୟରେ ଯାତାୟାତ କରୁଛି । ଏଥିରେ ସାଢ଼େ ଛ'ଶହ ଯାତ୍ରୀ ବସିବାର ବ୍ୟବସ୍ଥା ରହିଛି । ପାଞ୍ଚହଜାର

ଟନ୍ ଓଜନର ଜାହାଜଟିଏ, ଲମ୍ବ ୮୬୭ ଫୁଟ, ଓସାର ୫୨ ଫୁଟ୍—ଏଥିରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ମାତ୍ର ରହିଛି ।

ମୋତେ ତଳ ମହଲରେ କ୍ୟାବିନ୍ ଟିଏ ମିଳିଛି, ପ୍ରଥମ ଶ୍ରେଣୀ—ଗୋଟିଏ ଚୌକି, ଗୋଟିଏ ଗଦିପକା ଖଟ; ଚଟାଣରେ କମ୍ବଳ ଗାଲିଚା ବିଛା; କାନ୍ଥରେ ଦର୍ପଣଟିଏ, ଗୋଟିଏ କାଚ ପାଣି ସୁରେଇ, ଗୋଟିଏ କାଚ ଗ୍ଲାସ, ଖଣ୍ଡିଏ ତଉଲିଆ, କୋଠରିଟି ଜାହାଜର ଗୋଟିଏ କଣରେ—ତେଣୁ ଗୋଲ କାଚ ଝରକା ଭିତରେ ସମୁଦ୍ରର ଦୃଶ୍ୟ ଦେଖି ହେଉଛି—ଅନ୍ଧକାର, କେବଳ ଫେନ ଓ ଆକାଶର ନକ୍ଷତ୍ରପୁଞ୍ଜ, ମଧ୍ୟେ ମଧ୍ୟେ ଖଦ୍ୟୋତ ।

ଦୁର୍ଘଟଣାର ସମ୍ଭାବନା ହେଲେ ଜାହାଜର ହୁଇସିଲ୍ ୬ଥର ଧୀରେ ଧୀରେ ଓ ଥରେ ଖୁବ୍ ଜୋରରେ ବାଜେ । ତକିଆ ପାଖେ ରଖା ହୋଇଥିବା ଲାଇଫ୍ ବେଲ୍ଟ ପିନ୍ଧି ଯାତ୍ରୀମାନଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାତ୍ରା କରିବାକୁ ନିର୍ଦ୍ଦେଶ ଆସେ ।

ଡାଲ ଘର ମୁଣ୍ଡ ଉପରେ ଗୋଟିଏ ଫ୍ୟାନ; ତଳକୁ ମୋଡ଼ିଲେ ବନ୍ଦ ହୁଏ; ଡାହାଣକୁ ମୋଡ଼ିଲେ ଥଣ୍ଡା ଓ ବାଆଁକୁ ମୋଡ଼ିଲେ ଗରମ ପବନ ଆସେ ।

ବ୍ରିଟିସ୍ ଚ୍ୟାନେଲ୍ ଅତିକ୍ରମ କରି ଜାହାଜ ଉତ୍ତରସାଗରକୁ ଚାଲିଲା, ମଧ୍ୟେ ମଧ୍ୟେ ଉଚ୍ଚ ଝରକାରୁ ଲକ୍ଷ୍ୟ କରୁଥାଏ ତାର ଫେନିଳ ଗତିପଥ—ନୀଳ କଜ୍ଜ୍ୱଳ ଜଳ—ଦିଗନ୍ତ ବିସ୍ତୃତ । ରାତି ପ୍ରାୟ ଦଶଟା ହେବ; କ୍ୟାବିନ୍ ବତି ଲିଭାଇ ଦେଇ ଝରକା ପାଖେ ବସିରହିଲି, ସକାଳ ହେବା ପର୍ଯ୍ୟନ୍ତ । ଏତେ ଦୀର୍ଘ ସମୁଦ୍ରଯାତ୍ରା ଜୀବନରେ କେବେ ହୋଇ ନଥିଲା । ସମୁଦ୍ର ପୀଡ଼ା ଟିକେ ହେଲେ ଅନୁଭବ କରିନାହିଁ ।

ଅନ୍ୟ ଜାହାଜମାନଙ୍କର ଆଲୋକମାଳା ଦିଶିଲା; ଧାଡ଼ି ଧାଡ଼ି ଲୋହିତ ଆଲୋକ, ତେଣିକି ନ ଯିବା ଲାଗି ସୁଦୂର ସଙ୍କେତ । କୁହୁଡ଼ି ନାହିଁ, ଆକାଶରେ ମେଘ ମଧ୍ୟ ନାହିଁ । ଗୁଲଗୁଲିଆ ଚତୁର୍ଦ୍ଦିଗରେ ମଧ୍ୟେ

ମଧ୍ୟେ ଫେନ ଉଚ୍ଛ୍ୱଳ ହୋଇ ଉଠୁଥାଏ—ଏ ସମୁଦ୍ର କେଡ଼େ ସମତଳ ! ହୁକ୍ ବନ୍ଦର; ବେଳା ପ୍ରଶସ୍ତ, ବାଲୁକାମୟ, କିନ୍ତୁ ଲହରୀ ବନ୍ଧୁର ନୁହେଁ, ଦଳ ଦଳ ସିଗଲ୍ ଉଡ଼ୁଛନ୍ତି, ସୂର୍ଯ୍ୟ ଉଇଁଲେ, ସମୁଦ୍ରକୁ ସୁବର୍ଣ୍ଣମୟ କରି । ଆମେ ଜାହାଜରୁ ଓହ୍ଲାଇ 'ହୁକ୍'ର 'ପାସୁର' ନାମକ ରେସ୍ତୋରାକୁ ଗଲୁ । ରେସ୍ତୋରାଁ ସାମ୍ନାରେ ଆମେରିକାନ୍ ଏକ୍ସପ୍ରେସ୍ ବସ୍ ଆସି ଅପେକ୍ଷା କରିଥିଲା—ତାର ଦେଶରେ ହଲାଣ୍ଡର ଗୋଟିଏ ସୁନ୍ଦରୀ ଯୁବତୀ, ଫ୍ରକ୍‌ଟିଏ ପିନ୍ଧିଛି; ମୁଣ୍ଡରେ ଟୋପି, ଧଳା ଓ ଫିକା ଲାଲ୍ 'କାରନେସନ' ଫୁଲ ସ୍ତବକ ମଧ୍ୟରୁ ସ୍ତବକଟିଏ ଉପହାର ଦେଇ କହିଲା— Welcome to Holland; ପ୍ରଫୁଲ୍ଲ ମନରେ ଆମ୍ଭେମାନେ ହଲାଣ୍ଡରେ ପ୍ରବେଶ କଲୁ ।

ହଲାଣ୍ଡ—ହଲାଣ୍ଡ ଗୋଟିଏ ଶ୍ରେଷ୍ଠ ଦେଶ; ଏହାର ଅଧିକାଂଶ ଭୂମି ନଦୀ ଓ ସମୁଦ୍ର ପତ୍ତନର ନିମ୍ନରେ । 'ଜୁଇଡର' ଉପସାଗରରେ ବନ୍ଧ ନିର୍ମାଣ କରାଯାଇ ଉଇଣ୍ଡମିଲ୍ ପମ୍ପ ସାହାଯ୍ୟରେ ପାଣି ଖଲାସ୍ କରାଯାଇଥିଲା । ଦିନେ ଯେଉଁଠି ସମୁଦ୍ରର ତରଙ୍ଗ କ୍ରୀଡ଼ା କରୁଥିଲା ଏବେ ସେଠି ସୁନ୍ଦର ଉଦ୍ୟାନ, ବ୍ୟାଙ୍କ୍, କଲେଜ ବା ରେସ୍ତୋରାଁ ବିରାଜମାନ । ଏବେ ବି ପମ୍ପ ସାହାଯ୍ୟରେ ଜଳ ଖାଲାସ କରିବାକୁ ହୁଏ, ନଇଲେ ଅଧିକାଂଶ ନିମଗ୍ନ ହୋଇଯିବ । ଡଚ୍‌ମାନେ ଯୁଗ ଯୁଗ ଧରି ସମୁଦ୍ର ସହିତ ସଂଗ୍ରାମ କରି ଆସିଛନ୍ତି, ଲାଭ କରିଛନ୍ତି ଅଦ୍ଭୁତ ବିଜୟ, ସମଗ୍ର ମାନବ ସମାଜର ଗୌରବ ବୃଦ୍ଧି କାରୀ । ପୃଥିବୀରେ ଘୋର ଅସାଧ୍ୟ ସାଧକମାନଙ୍କ ମଧ୍ୟରେ ଡଚ୍ ଜାତିର ନାମ ରହିଛି ।

ବାଲୁକାମୟ ହଲଣ୍ଡର ବେଳାଭୂମି ଦୁଇଶ ମାଇଲ୍ ବିସ୍ତୃତ; ଏହା ହୋଇଛି ପଶ୍ଚିମ ଇଉରୋପର ଖେଳ ପଡ଼ିଆ ।

## ସହଯାତ୍ରୀ

ଆମେରିକା ଛାଡ଼ି ଆସିଲି, କିନ୍ତୁ ବିଦେଶ ଭ୍ରମଣର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଆମେରିକା ମୋତେ ଛାଡ଼ି ପାରିଲା ନାହିଁ । ମୋ ସଙ୍ଗୀ ସଙ୍ଗିନୀ ତ

ମଟ୍ରେ ଆମେରିକାନ୍, ଅଧେ ବାସ୍ତୁ ନାରୀ—ତରୁଣୀ, ବୃଦ୍ଧା; ଜଣେ ବୃଦ୍ଧ ଡାକ୍ତର ଓ ତାଙ୍କ ସ୍ତ୍ରୀ । ଡାକ୍ତର ପାର୍କିନ୍ସ ଗ୍ରସ୍ତଛନ୍ତି, ସ୍ୱର କ୍ଷୀଣ, ଭାଷା ଅବୋଧ, ଜନ୍ମ ପ୍ରାପ୍ତ ଅସ୍ତି, ଜୀବନକୁ ଚଳନ୍ତ ରଖିବା ଲାଗି ସେ ଆସିଛନ୍ତି ।

ଏ ଦଳରେ ଜଣେ ହେଲେ ମେଉଳ ରଙ୍ଗ ବ୍ୟକ୍ତି ନାହାନ୍ତି, ଅଧିକାଂଶ ବୟସ୍କା—ମାର୍କିନ ଗ୍ରାଜୁଏଟ୍; ଖାଇପିଇ ଆରାମ କରିବା, ନାଚ ଥିଏଟର ଦେଖିବା, ସଉଦା କରିବା ଅଧିକାଂଶଙ୍କର ପାହାନ୍ତିଦେଶ୍ୟ । ଗୁରୁତର ଭାବେ କାହାକୁ ସାଂସ୍କୃତିକ ଚିନ୍ତା କରିବାର ଦେଖୁନାହିଁ । ବ୍ୟବସାୟୀ, ଚାକିରିଆ, ସାଧାରଣ ସଂସାରୀସବୁ । ଗାଇଡ୍ ମି. ଜାକୋବ ଯାତ୍ରୀମାନଙ୍କ ମନୋବୃତ୍ତିକ ସ୍ପର୍ଶୀ କାର୍ଯ୍ୟ କରୁଛନ୍ତି । କଫି ଖାଇବା କମ୍ବା ସଉଦା କରିବା ଲାଗି ଯେତେ ସମୟ ଦେଉଛନ୍ତି ମିଉଜିୟମ୍, ବା ପ୍ରାଚୀନ କୀର୍ତ୍ତି ଦେଖିବା ଲାଗି ଦେଉନାହାନ୍ତି ।

ଏକ୍ସପ୍ରେସ ବସ୍ରେ ପ୍ରତିଦିନ ସିଟ୍ ବଦଳୁଥାଏ, ଆଗବାଲା ପଛକୁ ପଛବାଲା ଆଗକୁ ଆସୁଥାନ୍ତି, ଏହି ପରିବର୍ତ୍ତନ ଯୋଗୁଁ ପରସ୍ପର ସହଜ ସୁଯୋଗ ମିଳୁଥାଏ । ମୋର ପ୍ରଥମ ଦିନର ସଙ୍ଗୀ କାରେନ୍ ହଗସ୍, ତାଙ୍କ ଘର ନେବ୍ରାସ୍କା ରାଜ୍ୟର ଲିଙ୍କନ୍ ସହରରେ । 'ଲ' ଅଫିସରେ କିରାଣି କାମ କରି କିଛି ଟଙ୍କା ଜମାଇ ସେ 'ଲ' ପାସ୍ କରିବାକୁ ସମର୍ଥ ହୋଇଛନ୍ତି, ଜମି ସଂକ୍ରାନ୍ତ ଆଇନରେ ବିଶେଷଜ୍ଞ; ଏବେ ପ୍ରାକ୍ଟିସ୍ କରିବେ । ସ୍ୱୋପାର୍ଜିତ ଅର୍ଥରେ ସେ ଇଉରୋପ ଭ୍ରମଣ କରି ଆସିଛନ୍ତି ।

ତାଙ୍କ ବାପା ସୈନ୍ୟ ବିଭାଗରେ କାର୍ଯ୍ୟ କରୁଥିଲେ; ବର୍ମା ରଣକ୍ଷେତ୍ରରେ ଜାପାନୀମାନଙ୍କ ସହିତ ସେ ଯୁଦ୍ଧ କରିଛନ୍ତି । ଏବେ ପେନ୍ସନ୍ରେ ଚଳନ୍ତି । ତାଙ୍କର କୋଡ଼ିଏ ଏକର ଜମି ଅଛି । ତାକୁ ପ୍ରତିବର୍ଷ ଗୋଟିଏ ଡାଇରି ଫାର୍ମ ପଟା ନିଏ, ଘାସ ଜନ୍ମାଇବା ଲାଗି । କାରେନ୍ର ଗୋଟିଏ ଭାଇ ଅଛି—ହାସ୍କଲ୍ । ତା ଶିକ୍ଷାର ଅଧା ବ୍ୟୟ ତା ବାପା ବହନ କରିଥାନ୍ତି । ବାକି ଅଧେ ସେ ନିଜେ ରୋଜଗାର

କରେ । ତିନି ମାସ ଗ୍ରୀଷ୍ମ ଛୁଟିରେ ସେ ଯାହା ଅର୍ଜନ କରେ, ସେଥିରେ ତାର ଛ’ ମାସ ଚଳିଯାଏ ।

ଘର ବାହାର ସଙ୍ଗୀ ମୋର ଜେଜାବାପା, ତାଙ୍କ ଘର ମିଚିଗାନ୍ ପ୍ରଦେଶରେ । ତାଙ୍କର ଚାରୋଟି ପୁଅ—ଜଣେ ପେନ୍‌ସିଲଭାନିଆରେ, ଜଣେ ଫିଲଡେଲଫିଆରେ, ଜଣେ ବଷ୍ଟନରେ ଓ ସେ ନିଜେ ଡେଟ୍ରଏଟ୍‌ରେ ଅଛନ୍ତି । ଦୁଇଟି ଝିଅଙ୍କ ବିବାହିତା । ଅନ୍ୟ ପୁଅମାନେ ଘରସଂସାର କରିଛନ୍ତି; କିନ୍ତୁ ସେ ?

ବଡ଼ ହେବେ ନାହିଁ, ସ୍ଥିର କରିଛନ୍ତି; ପରିବାର ନିଷ୍ପନ୍ଦନ ଲାଗି ଚେଷ୍ଟା ହେଉଥିବା ବେଳେ ତାଙ୍କୁ ବଡ଼ାନ୍ତୁ କାହିଁକି ? କୁଳରେ କେହି ନ ରହିଲେ କଣ କ୍ଷତି ? କାହା କୁଳ ବା ଅନନ୍ତକାଳ ଧରି ଗଡ଼ି ଆସୁଛି ? କିଏ ଚାରି ହଜାର ବର୍ଷର ବଂଶଲତା ସ୍ଥିର କରିପାରିବ ?

‘ଆପଣଙ୍କର କିଛି ଅସୁବିଧା ହୁଏ ନାହିଁ ?’

“କଣ ଅସୁବିଧା ? ରେଷ୍ଟୁରାଣ୍ଟରେ ଖାଏ, ନିଜଞ୍ଜାଳୀ ଜୀବନ । ଏ ଦେଶରେ ପୁରୁଷମାନେ ବହୁ ସଂଖ୍ୟାରେ ଯୁଦ୍ଧରେ ମରନ୍ତି; ସ୍ତ୍ରୀ ଲୋକ ପ୍ରଚୁର—୩୫ ବର୍ଷରୁ ୫୦ ବର୍ଷ ବୟସ୍କା, କିଛି ଚେଷ୍ଟା କରିବାକୁ ହେବ ନାହିଁ, ଅବିବାହିତ ଜାଣିଲେ ସେମାନେ ଭ୍ରମ ପିଛୁ ଲାଗିବେ । ଏକରୁ ଅଧିକ ବାଉ ହେବା ବେଆଇନ ।

ଅବିବାହିତାର ଜୀବନ ଏଠି ସୁଖମୟ, ପିଲାଛୁଆଙ୍କ ଚିନ୍ତା ନାହିଁ, ଯୁଆଡ଼େ ଯେତେବେଳେ ଇଚ୍ଛା, ଛୁଟିଲି । ଫୁର୍ତ୍ତିମୟ ଜୀବନ ।

ମୋର ନିଜର ଖଣ୍ଡିଏ ଘର ଅଛି । ମୁଁ ସରକାରୀ ଚାକିରି କରେ, ଆର୍ମି ଟ୍ରକ୍ ମରାମତି କାରଖାନାରେ । ଭିଏଟ୍‌ନାମ ଯୁଦ୍ଧ ଯୋଗୁଁ ଏବେ ରୋଜଗାର ଭଲ ହୁଏ । କିନ୍ତୁ ମୁଁ ପ୍ରାୟ କିଛି ସଞ୍ଚୟ କରେ ନାହିଁ । ସବୁ ଖାଇପିଇ ଉଡ଼ାଇ ଦିଏ—କିଛି ସ୍ତ୍ରୀଙ୍କ ପିଛୁ ବି ଉଡ଼ିଯାଏ ।

ମୋର ପରବର୍ତ୍ତୀ ସଙ୍ଗିନୀ ମିସେସ୍ ରେଡ଼ ମର୍ଫି, ତାଙ୍କ ଘର ନିଉୟର୍କ ଷ୍ଟେଟ୍, ଲଇଫ୍ ମାଗାଜିନ୍‌ର ଟେଲେଟାଇପ୍ ବିଭାଗରେ କାମ କରନ୍ତି । ମୋ ସାମ୍ନାରେ ବସିଛନ୍ତି ମେସ୍ ସିମ୍ପସନ୍, ତା ଘର ପେନସିଲ-ଭାନିଆରେ; ଟେଲିଫୋନ୍ ଅପରେଟର୍; କୃଷ୍ଣକେଶୀ, ସୁନ୍ଦରୀ ଯୁବତୀ । ନିଜ ହାତବୁଣା କଲ୍ ସ୍ୱେଟର୍‌ଟିଏ ସେ ପିନ୍ଧିଛନ୍ତି, ତାର ବୋତାମ ସୂତା ସେ ହାତରେ ଖଞ୍ଜା କରୁଛନ୍ତି । ଏବେ ସାନ ଭଉଣୀ ଲାଗି ସେ ସ୍ୱେଟର୍‌ଟିଏ ବୁଣୁଛନ୍ତି, କ୍ରିସ୍‌ମାସ୍‌ରେ ଉପହାର ଦେବେ । ତାଙ୍କୁ ଦୁଇବର୍ଷ ହୋଇଥିବା ବେଳେ ବାପା ମରିଥିଲେ; ମାଆ ବିଭା ହୋଇଥିଲେ ଜଣେ ୭୫ ବର୍ଷର ବୁଢ଼ାଙ୍କୁ । ବର୍ଷକ ପରେ ସେ ମଧ୍ୟ ଇହଧାମ ତ୍ୟାଗ କଲେ । ତାପରେ ମାଆ ଆଉ ବିଭା ହେବା କଳ୍ପନା କରି ନାହାନ୍ତି ।

ମୋର ଅନ୍ୟ ଏକ ସଙ୍ଗିନୀର ନାମ ମେରି ରସେଲ୍, ଅବିବାହିତା, ବୟସ୍କା, ଘର ନିଉଜେର୍ସି; ତାର ରାଜଧାନୀ ଟ୍ରେଣ୍ଟନ୍; ଟ୍ରେଣ୍ଟନର ଷାଠିଏ ମାଇଲ ଦୂରବର୍ତ୍ତୀ ବର୍ଲିଙ୍ଗ୍‌ଟନର ମେକାନିକ୍ସ ନ୍ୟାସନାଲ୍ ବ୍ୟାଙ୍କ୍‌ର ମ୍ୟାନେଜର । ୧୨୮ ବର୍ଷ ତଳେ ଏ ବ୍ୟାଙ୍କ୍‌ଟି ସ୍ଥାପିତ । ୪୧ ନିୟୁତ ଡଲାର ଏହାର ମୂଳଧନ । ହାଇସ୍କୁଲରୁ ଗ୍ରାଜୁଏଟ୍ ହେବା ପରେ ୨ ବର୍ଷ ବ୍ୟାଙ୍କିଂ ଟ୍ରେନିଂ ନେବାକୁ ହୁଏ । କିନ୍ତୁ ରସେଲଙ୍କୁ ଟ୍ରେନିଂ ନେବାକୁ ହୋଇ ନାହିଁ । ବ୍ୟାଙ୍କ୍‌ରେ ୧୦ ବର୍ଷ ଚାକିରି କଲା ପରେ ଅଭିଜ୍ଞତାର ଜୋର୍‌ରେ ସେ ମ୍ୟାନେଜର ହୋଇ ପାରିଛନ୍ତି ।

କାର୍ କିଣାଳି ଏହି ବ୍ୟାଙ୍କ୍‌ରୁ ଟଙ୍କା ଉଧାର କରେ, ଇନ୍‌ଷ୍ଟଲ୍‌-ମେଣ୍ଟରେ ଶୁଝେ । ଏହି ବ୍ୟାଙ୍କ୍‌ରେ କାର୍ ଇନ୍‌ସୁରେନ୍‌ସ କରାଯାଏ । ଆକ୍‌ସିଡେଣ୍ଟ ହେଲେ ବ୍ୟାଙ୍କ୍ କ୍ଷତିପୂରଣ ଦିଏ । ସେହିପରି ଘର ତୋଳିଲେ ବା କିଣିଲେ ଏହି ବ୍ୟାଙ୍କ୍‌ରୁ ଟଙ୍କା କରଜ କରିବାକୁ ହୋଇଥାଏ । ଇନ୍‌ସୁରେନ୍‌ସ କରିଥିଲେ ଘର ପୋଡ଼ିଗଲେ ବା ବୋମା ମାଡ଼ରେ ବିନଷ୍ଟ ହେଲେ ବ୍ୟାଙ୍କ୍ କ୍ଷତିପୂରଣ ଦିଏ । ସ୍ୱାସ୍ଥ୍ୟ ଇନ୍‌ସୁ-ରେନ୍‌ସ ଏହି ବ୍ୟାଙ୍କ୍‌ରେ କରାଯାଏ । ଦେହ ଖରାପ ହେଲେ ଡାକ୍ତରଖାନାରେ ରୋଗୀର ବ୍ୟୟ ଭାର ବ୍ୟାଙ୍କ୍ ବହନ କରିଥାଏ ।

ରସେଲ୍ ମୋତେ ପରିଚିତ କରାଇ ଦେଇଥିଲେ ତାର ସଙ୍ଗିନୀ ମେଷ ବର୍ସାସୀ ସଙ୍ଗେ । ତନୁପାତଳୀ, ଛୋଟିଆ ଗୋରା ଦେହର ନାଳ ଶିରାସବୁ ରିଲିଫ୍ ମାନଚିତ୍ରର ନଦୀ ପରି ଦିଶୁଛି । କେଶ ରଙ୍ଗାଯାଇଛି ଶୁଭ୍ର ରଙ୍ଗରେ, ଯୁବତୀ ହେଲେ ବି ଦିଶୁଛି ବୁଢ଼ୀ ପରି । ଅଙ୍ଗୁଠି ଲମ୍ବା ନଖ ପଲିସ୍ ଲଗାଇ ନାଲ୍ କରିଛି, ଓଠ ବି ସେହିପରି ଗାଢ଼ ନାଲ । ଆଖିପତାରେ ଗୋଟିଏ କ୍ଷୀଣ କୃଷ୍ଣ କେଶର ରେଖା । ପତା ତଳେ ନାଳ ରଙ୍ଗ । ଡାହାଣ ହାତରେ ଗୋଟିଏ ସୁନା ଖଡ଼ୁ, ଅନାମିକାରେ ଗୋଟିଏ ମୁଦି, ବାଁ ହାତରେ ସୁନା ଘଡ଼ିଟିଏ । ଅତ୍ୟାଧୁନିକ କବିତା ପଢ଼ି ହେଲେ ବେଳେ ଅସ୍ପଷ୍ଟ ହୁଏ ତାର ଗତି, ତଥାପି ଶୈଳୀର ସ୍ୱାତନ୍ତ୍ର୍ୟ ସେ ଜାହିର୍ କରି ଚାଲିଛି । 'ବାଇଣ୍ଡିଂ ମେସିନ୍' କାରଖାନାର ଜଣେ କର୍ମୀ, ଆଂଶିକ ଭାବେ ଶିକ୍ଷକା, ବୁକ୍‌କିପିଂ ଶିକ୍ଷା ଦିଏ ।

ଆମ ଡ୍ରାଇଭରଙ୍କ ନାମ ବ୍ରୁଇନେଜ୍ ଆଣ୍ଡ୍ରେଜ୍ ଓ୍ୱେଲେନ୍ । ସେ ଜଣେ ଡଚ୍; ଫରାସୀ ଭାଷାରେ ଯତ୍‌ସାମାନ୍ୟ କଥା କହିପାରନ୍ତି । ଭଲ ଇଂରେଜୀ ଓ ଜର୍ମାନ୍ ଜାଣନ୍ତି । ଘରେ ବୃଦ୍ଧ ପିତା, କିନ୍ତୁ ବାର୍ଦ୍ଧକ୍ୟ ତାଙ୍କୁ ଅଚଳ କରି ନାହିଁ । ସରକାରଙ୍କ ବାର୍ଦ୍ଧକ୍ୟ ପେନ୍‌ସନ୍ ଉପଭୋଗ କରନ୍ତି । ବୟସ ଅଶୀ ଉପରେ ହେଲେ ବି ଗୃହବାସ କାର୍ଯ୍ୟ କରିବାକୁ ସମର୍ଥ ।

ମି: ଓ୍ୱେଲେନ୍ ମାଟ୍ରିକ୍ ପାସ୍ କଲା ପରେ ପ୍ରଥମେ ଜାହାଜ ଇଞ୍ଜିନ୍ କାରଖାନାରେ କାମ ପାଇଲେ । ତାପରେ ଡ୍ରାଇଭିଂ ଲାଇସେନ୍‌ସ ପାଇ ଆମେରିକାନ୍ ଏକ୍‌ସପ୍ରେସ୍ କମ୍ପାନୀରେ କାମ କରି ଆସୁଛନ୍ତି— ଲୋଭନୀୟ ବେତନ, ପ୍ରଥମ ଶ୍ରେଣୀ ହୋଟେଲରେ ଦ୍ରବ୍ୟ ଭୋଜନ; ଜୀବନ ତାଙ୍କର ଇଉରୋପର ଦେଶେ ଦେଶେ, ଚହବଳ ଘୂରିବୁଲେ ବାରମ୍ବାର ।

ବସ୍ ଆମର ଚାଲିଲା— ଏ ପଟେ ମାଣିକଗୁଚ୍ଛ ଗେଣ୍ଡୁ ଆଉ ଗୋଲାପ, କେତେ ଅଚିହ୍ନା ଅଜଣା ଫୁଲ; ହଲାଣ୍ଡକୁ ଉଦ୍ୟାନ ଦେଶ କୁହାଯାଏ ।

ଗ୍ରିନ୍ ହାଉସ୍ ଗୋଟିଏ ପ୍ରଶସ୍ତ କାଚଘର; ଏଇ ଘରେ ଟମାଟୋ, ଲୁଟ୍ସ୍, ଭମ୍ ଇତ୍ୟାଦି ଫସଲ ବର୍ଷସାରା କରାହୁଏ, ତାହାର ଚାହିଦା ଯଥେଷ୍ଟ ଅଛି। ଇଙ୍ଗଲେଣ୍ଡ ଓ ଆମେରିକାରେ ଏପରି ବହୁତ ଗ୍ରୀନ୍‌ହାଉସ୍ ଦେଖିଛୁ।

ରାସ୍ତାସବୁ ଝାଟି; ଦୁଇ ପ୍ରାନ୍ତରେ ଗାଢ଼ ସବୁଜ; ଅଧିକାଂଶ ସ୍ତ୍ରୀ ପୁରୁଷ ସାଇକଲ୍ ଚଢ଼ି ଧାଉଁଛନ୍ତି— ଏ ଗୋଟିଏ ସାଇକଲ୍ ଦେଶ।

ଜାଇଲେ, ଏଭର୍ ଗ୍ରିନ୍, ଚେଷ୍ଟନଟ୍, ବାର୍ଚ, ଓକ୍ ଗଛଗୁଡ଼ିକର ବୋଇ ଛୁଇଁ ହୋଇଚନ୍ତି; ଆକାଶ ନିର୍ମଳ, ରଶ୍ମି ଉଜ୍ଜ୍ୱଳ, ରାସ୍ତାରେ ଗାଡ଼ି ଭିଡ଼ ନାହିଁ; ଆମେ 'ଡ଼ାନ୍‌ହାଗ' ସହରରେ ପହଞ୍ଚିଲୁ—ହଲଣ୍ଡ ରାଜଧାନୀର ଗୋଟିଏ ମୁଖ୍ୟ ଅଞ୍ଚଳ; ସେଣ୍ଟେଣ୍ଟର୍, କାବନେଟ୍ ହଲ୍, ଯାଦୁଘର, ପିକ୍‌ଚର୍ ଗାଲେରୀ ଦେଖିଲା ପରେ ଆନ୍ତର୍ଜାତିକ ସୌଧରେ ପହଞ୍ଚିଲୁ। ଏହାର ଅନ୍ୟନାମ ଶାନ୍ତିସୌଧ; ଦେଶ ଦେଶ ମଧ୍ୟରେ ବିବାଦ ଉପସ୍ଥିତ ହେଲେ ଏହି ସୌଧରେ ବସି ତାର ମୀମାଂସା ହେଉଥିଲା। ପ୍ରଥମ ମହାଯୁଦ୍ଧ ପୂର୍ବରୁ ଆମେରିକାର ଦାନରେ ଏହା ନିର୍ମିତ ହୋଇଥିଲା।

ତାପରେ ଆମେ 'ଆମଷ୍ଟେଲ୍' ନଦୀ ତୀରରେ ଅବସ୍ଥିତ 'ଆମଷ୍ଟାର୍‌ଡ଼ାମ୍', ସହରରେ ପହଞ୍ଚିଲୁ। ଏହା ହିଁ ହଲଣ୍ଡ ରାଜଧାନୀର ମୁଖ୍ୟକେନ୍ଦ୍ର। ଟ୍ରାମ୍ ଚାଲିଛି, ସିଟ୍ ଗୁଡ଼ିକ ବସ୍ ସିଟ୍ ପରି; ପ୍ରତି ବସ୍ ବା ଟ୍ରାମ୍ ମଝିରେ ମେଲ୍ ବକସ୍ ଲଗିଛି।

ଏ ସହର ସମୁଦ୍ରର ବାରଫୁଟ୍ ନିମ୍ନରେ ଅବସ୍ଥିତ, ଏହି ସହରରେ ପ୍ରାୟ ୧୦୦ କେନାଲ, ୬୦୦ ସେତୁ ରହିଛି। ଏହା ସେତୁ ସହର ନାମରେ ପରିଚିତ। 'ଉତ୍ତରର ଭେନିସ୍' ବୋଲି କେହି କେହି କହିଥାନ୍ତି। ଉତ୍ତର ରାଇନ୍ ନଦୀ ଉପତ୍ୟକାର ଏହା ମୁଖ୍ୟ ବନ୍ଦର; ସତୁରି ହଜାର ଟନ୍ ଓଜନର ଜାହାଜ ନର୍ଥ ସି କେନାଲ ବାଟେ ଏହି ସହରରେ ପ୍ରବେଶ କରୁଛି। ଏହି କେନାଲ୍ ଅତି ଗଭୀର। କୂଳରେ ଜାହାଜ ତିଆରି ଓ ମରାମତି କାରଖାନା, ଚମଡ଼ା, ରବର, କାଗଜ,

ପ୍ଲାଷ୍ଟିକ୍ କାରଖାନାସବୁ । ଇଞ୍ଜେଡୌପ୍ଡି ମାର୍କେଟର ତୋରଣ ଦ୍ୱାର, ଆନ୍ତର୍ଜାତିକ ବାଣିଜ୍ୟର ଏକ ମୁଖ୍ୟ କେନ୍ଦ୍ର; ଷୋଡଶ ଶତାବ୍ଦୀରୁ ହୀରକ ବ୍ୟବସାୟ କେନ୍ଦ୍ର ହିସାବରେ ଏହା ବିଶ୍ୱ ବିଖ୍ୟାତ ହୋଇ ଆସିଛି ।

ଆମେ ଶଡଶଜ. ପି: କୁଇଜ ନାମକ ବୋଟ୍‌ରେ ବସିଲୁ, ଏହି ଜଳାର୍ଣ୍ଣବ ସହର ପରିକ୍ରମା ଲାଗି । ବୋଟର ଗୁଡ଼ିକ କାଚରେ ତିଆରି, ଉପରେ ଖୋଲା ପଡ଼ୁଥାଏ, କିନ୍ତୁ କାଟୁନ ଥାଏ । ପଦ୍ମଫୁଲ ବଜାରଟିଏ ଆଖିରେ ପଡ଼ିଲା, ସେଇଠୁ ପରେ ସେଇଠୁ ପାର ହୋଇ ଚାଲିଲା ଆମର ନୌକା, ସୌଧ ପରେ ସୌଧ ପଛରେ ପଡ଼ି ରହିଲା । ବାତାୟନର ବାକସ୍ ଉଦ୍ୟାନରେ କେବେ କେବେ ଲାଗି ଯାଉଥିଲା ଆଖି ।

୧୬୦୭ ଖ୍ରୀଷ୍ଟାବ୍ଦରେ ନିର୍ମିତ ଆମାଷ୍ଟାର୍ ଡ୍ୟାମ୍ ବିଶ୍ୱବିଦ୍ୟାଳୟ ବ୍ୟତୀତ ଆଉ ତିନିଗୋଟି ବିଶ୍ୱବିଦ୍ୟାଳୟ ଏହି ସହରରେ ରହିଛି ।

କେନାଲର ଦୁଇପାଖେ ଚାଲିଛି ଅଗଣିତ ମଟର, ସାଇକେଲ୍, ଆମ ବୋଟ୍ ଉପରେ ଆସି ବସିଲେ କେତୋଟି ପାରା, ଆମ ସହିତ ପ୍ରତିଯୋଗିତା କରି ଲାଗିଲେ ହରିଦ୍ରା ରଙ୍ଗର ଥଣ୍ଡ, ନୀଳକଣ୍ଠ କେତୋଟି ବତକ, ସାମ୍ନାରେ ଉଡ଼ୁଥାନ୍ତି ସିଗଲ୍ ଦଳ ।

'ବାଁ ପଟେ ପଡ଼ିଲା ଲମ୍ ବ୍ରାଣ୍ଡ୍' ନାମକ କଳାକାରଙ୍କ ଘର; ଅଭାବ ଅନାଟନରେ ପଡ଼ି ମାତ୍ର ପଚିଶ ଗିଲ୍‌ଡରରେ ସେ ଗୋଟିଏ ଛବି ବିକିଥିଲେ; ସେଇ ଛବିର ଦାମ୍ ଏବେ ହୋଇଛି ଏକ ନିୟୁତ ଡଲାର୍ ।

ଡାହାଣ ପଟେ 'ଟାଓ୍ୱାର୍ ଅଫ୍ ଟିଅରସ୍'; ପଞ୍ଚଦଶ ଶତାବ୍ଦୀରୁ ଡଚ୍ ବଣିକ୍‌ମାନେ ବାଣିଜ୍ୟ ବ୍ୟବସାୟ ଉଦ୍ଦେଶ୍ୟରେ ଏଠୁ ସୁଦୂର ବିଦେଶକୁ ଜଳଯାତ୍ରା କରୁଥିଲେ, ଦୀର୍ଘ ବିରହଶଙ୍କାରେ ସେମାନଙ୍କ ସ୍ତ୍ରୀମାନେ ଏଠି ରୋଦନ କରୁଥିଲେ; ଏଇ ଦୁର୍ଗର ନାମ ସେହି କାଳରୁ 'ଟାଓ୍ୱାର୍ ଅଫ୍ ଟିଅର୍‌ସ୍' ରହି ଆସିଛି ।

ଚତୁର୍ଦ୍ଦଶ ଶତାବ୍ଦୀର ଗୋଟିଏ ପୁରାତନ ଚର୍ଚ୍ଚ ଏଠି ରହିଛି, ଗୋରୁ ଚର୍ମରେ ତିଆରି ।

ତାପରେ ପଞ୍ଚଦଶ ଶତାବ୍ଦୀର 'କ୍ଲକ ଟାଓ୍ୱାର୍', ସପ୍ତଦଶ ଶତାବ୍ଦୀର ଡଇଣ୍ଡ ମିଲ୍, ସେତୁ ଓ କାଷ୍ଠ ଗୃହ, ଆମାଷ୍ଟାର୍ ଡାମ୍‌ର ଏକମାତ୍ର ଡିପାର୍ଟମେଣ୍ଟ ଷ୍ଟୋର୍, ମୃତ ସୈନିକର ସ୍ମୃତି ମନ୍ଦିର ଦେଖିବା ପରେ ଆମେ ଅଠରକ୍ଷଣ ଫୁଟ୍ ଗଭୀର ହାର୍‌ବର୍, ଭସା ଡକ୍, ନିର୍ମିତ ହେଉଥିବା ଗୋଟିଏ ବାଣିଜ୍ୟ ଜାହାଜ ବୁଲି ଦେଖିଲୁ । ଏହି ହାର୍-ବର୍‌ରେ ବର୍ଷକୁ ପ୍ରାୟ ଆଠ ହଜାର ଜାହାଜ ଯାତାୟାତ କରନ୍ତି ।

ବିଶ୍ୱ ପ୍ରସିଦ୍ଧ ଶିଳ୍ପୀ ରେମ୍‌ବ୍ରାଣ୍ଡଙ୍କ ଜନ୍ମସ୍ଥାନ ହଲଣ୍ଡର ବୃହତ୍ତମ ନଗର (ଲୋକସଂଖ୍ୟା ପ୍ରାୟ ଦଶ ଲକ୍ଷ), ଆମାଷ୍ଟାର ଡାମ୍ ଅପେକ୍ଷା ସହଜେ ଗ୍ରହିବାକୁ ପଡ଼ିଲା—ଆଗରେ ଗଛଗହଳ ଗମ୍ଭୀର ଗୋଚରଣ ଭୂମି; ମଧ୍ୟେ ମଧ୍ୟେ ଗୋଟାଏ ଗୋଟାଏ ଡଇଣ୍ଡ ମିଲ୍, ଗ୍ରୀନ୍ ହାଉସ୍ ବା ଟଙ୍କେ । ସ୍ୱାସ୍ଥ୍ୟଶ୍ରୀ, ସ୍ଫୁର୍ତ୍ତି ପ୍ରଫୁଲ୍ଲତା, ବେଶ ଭୂଷଣରୁ ଲୋକଙ୍କ ସମୃଦ୍ଧିର ପରିଚୟ ମିଳେ ।

ମୋଆସ୍ ନଦୀ କୂଳରେ 'ଇଟର୍ ଡାମ୍ ସହର' । ୧୯୪୦ ଖ୍ରୀଷ୍ଟାବ୍ଦରେ ଜର୍ମାନ୍‌ମାନେ ବୋମା ବର୍ଷଣ କରି ଏହାର ନବେ ଭାଗ ଗୃହ ଧ୍ୱଂସ କରିଥିଲେ । ମିତ୍ରଶକ୍ତି ଚାର ପ୍ରତିଶୋଧ ସ୍ୱରୂପ ଜର୍ମାନୀର ଡ୍ରେଷ୍ଟର ସହର ସମୂଳେ ଧ୍ୱଂସ କରିଥିଲେ । ନଗରଟି ସମ୍ପୂର୍ଣ୍ଣ ରୂପେ ପୁନର୍ନିର୍ମିତ ହୋଇ ଅଛି ।

ଲଞ୍ଚ ଟାଇମ୍; ସ୍କୁଲରୁ ପିଲାମାନେ ଫେରୁଛନ୍ତି । ଜଣେ ଛାତ୍ରୀ ଗୋଟିଏ ଛକ ଜାଗାରେ ପିଲାଙ୍କ ଯିବା ଆସିବା ସୁବିଧା ଲାଗି ଲାଲ୍ ପତାକା ଦେଖାଇ ଆବଶ୍ୟକ ହେଲେ ଗାଡ଼ି ଅଟକାଇ ଦେଉଛି । ଆମେ 'ଜାଲ୍ ଜାଲ୍' ରେସ୍ତୋରାଁ ସାମ୍ନାରେ ଅଟକିଲୁ । ଚାରିପାଖ ଶହଶହ ରଙ୍ଗ ଗାଲିଚ୍ଛ । ତଳେ କୃତ୍ରିମ ଝରଣାରେ ରଙ୍ଗୀନ ଉପଳ; ସ୍ତମ୍ଭମାନଙ୍କରେ ଝୁଲୁଛି ଫୁଲକୁଣ୍ଡ, ପ୍ଲାଷ୍ଟିକ ଲତା; ଫୁଲ ଆଲୋକ ଓ ଆଧୁନିକ ଦ୍ରବ୍ୟ ସମ୍ଭାରର ସଜାସଜରେ ରେସ୍ତୋରାଁଟି ଅଦ୍ଭୁତ ଭାବେ ଉଦ୍ଭାବମୟ ହୋଇ ଉଠିଛି । ଡିମ୍ବ, ମାଂସ, ଫଳ, ମାଛ ଓ ନାନା ଜାତିର ସୁସ୍ୱାଦୁ ଦ୍ରବ୍ୟ ଖାଇବାକୁ ମିଳିଲା; ଇଉରୋପର ପ୍ରଥମଶ୍ରେଣୀ ରେସ୍ତୋରାଁ

ମଧ୍ୟରେ ଏଇଟି ପ୍ରଥମ ହେବାକୁ ଯୋଗ୍ୟ । ଏଇ ଦେଶର ମୁଦ୍ରାର ନାମ ଗିଲଡ଼ର; ଏକ ଗିଲ୍‌ଡ଼ର = ୨୮ ସେଣ୍ଟ୍ ।

ବଇନ୍ ନଦୀକୁ ହଲଣ୍ଡରେ 'ମୋଆସ୍' କହନ୍ତି । ରଟରଡ଼ାମ୍ ନଗରର ପ୍ରାଧାନ୍ୟ ଏଇ ନଦୀ ଯୋଗୁଁ; ଏହା ଏକ ଉତ୍କୃଷ୍ଟ ପ୍ରାକୃତିକ ବନ୍ଦର, ହୀରା ବ୍ୟବସାୟ ଏକ ପ୍ରଧାନ ବ୍ୟବସାୟ । ହୀରା କଟା ଦେଖିବା ନିର୍ଘଣ୍ଟ ମଧ୍ୟରେ ଥିଲା, କିନ୍ତୁ ବୃଦ୍ଧ ଗାଇଡ୍ ଶ୍ରାନ୍ତ, ରେସ୍ତୋରାଁରେ ଦେଢ଼-ଘଣ୍ଟା କଟିଲା । ତାପରେ ସିଧା ସଳଖ ସୁପ୍ରଶସ୍ତ 'ହଲଣ୍ଡ ଡ଼ିପ୍' (ନଦୀ) ପାର ହୋଇ କିଛି ଦୂର ଅଗ୍ରସର ହେଲା ପରେ ବେଲ୍‌ଜିୟମ୍‌ରେ ପ୍ରବେଶ କଲୁ ।

## ବେଲ୍‌ଜିୟମ୍

ପଶ୍ଚିମ ଇଉରୋପର ମାତ୍ର ଚବିଶ ହଜାର ସ୍କୋୟାର ମାଇଲର ଦେଶଟିଏ, ମାତ୍ର ଏତେ ଅଳ୍ପ ପରିମିତ ସ୍ଥାନରେ ବାରଗୋଟି ପ୍ରସିଦ୍ଧ ସହର ରହିଅଛି । ରାଜଧାନୀ ବ୍ରୁସେଲସରୁ କୌଣସି ଦୂରବର୍ତ୍ତୀ ସ୍ଥାନ ତିନିଘଣ୍ଟାରୁ ଅଧିକ ଲାଗେ ନାହିଁ । ଉତ୍ତରାଞ୍ଚଳ ଶିଳ୍ପ ସମୃଦ୍ଧ, ଦକ୍ଷିଣ ପାର୍ବତ୍ୟ, ଅରଣ୍ୟସଂକୁଳ । ଆଣ୍ଟୱେର୍ପ ଏହାର ମୁଖ୍ୟ ବନ୍ଦର ।

ଏ ଦେଶରେ ତିନୋଟି ଭାଷା କଥିତ—ଫ୍ଲାମିସ୍, ଫରାସୀ, ଓ ଜର୍ମାନ୍ । ଏଠି ଫ୍ରାଙ୍କ୍ ମୁଦ୍ରା ପ୍ରଚଳିତ, କିନ୍ତୁ ଫରାସୀ ଫ୍ରାଙ୍କ୍‌ରୁ ଏହା ଭିନ୍ନ; ୧ ଡ଼ଲାର୍ = ୫୦ ଫ୍ରାଙ୍କ୍ । ଏ ଦେଶରେ ଗୃହଗୁଡ଼ିକର ସଂଖ୍ୟା ଅନେକ ବେଶୀ—ମଦ୍ଯଭଡ଼ମବ; ଛାତିରେ ଅଙ୍କା ହେଲା ପରି ହୋଇଛି । କେଉଁଠି ଟିକିଏ ଖାଲି ଜାଗା ନାହିଁ । ଏହା ଦାରିଦ୍ର୍ୟର ଆବାସ ନୁହେଁ, ଅଭିଜାତର ପ୍ରାଚୀନତା ପ୍ରୀତି ମନେହୁଏ । ଗାଇଡ୍ ଯାତ୍ରୀମାନଙ୍କୁ ଦେଖାଇ କହିଲା—ଏସବୁ ଚମତ୍କାର ଘର, ଶୀତରେ ଉଷ୍ମ, ଗ୍ରୀଷ୍ମରେ ଶୀତଳ । ଆଗେ ଏହିପରି ଘରେ ଆମ ପିତୃପିତାମହ ରହୁଥିଲେ ।

ଉରବନ୍ ସହର; ଆଗେ ଜଜମାନେ ଏଠି ହୀରା ବ୍ୟବସାୟ କରୁଥିଲେ । ହେଁଗସ୍ତ ମହାଯୁଦ୍ଧ ବେଳେ ସେମାନେ ଲଣ୍ଡନ ପଳାଇଗଲେ ।

ଏବେ ଲଣ୍ଡନ ଆମାଷ୍ଟାର ଡାମ୍ ପରି ସ୍ପାଗ ବ୍ୟବସାୟର ମୁଖ୍ୟ କେନ୍ଦ୍ର ହୋଇଅଛି । ଏହା ଏକ ଶ୍ରେଷ୍ଠ ବନ୍ଦର, ସେଲ୍‌ଡ ନଦୀ କୂଳରେ ଅବସ୍ଥିତ । ଉଚ୍ଚା ପଡ଼ଥିବାରୁ ନଦୀ ଜର୍ଦ୍ଧମାତ୍ର ଦେଖାଯାଉଛି ।

ରାସ୍ତା ଧାରରେ ବେଲ୍‌ଜିଅମ ରାଜପ୍ରସାଦ ଓ ତାପରେ ଚତୁର୍ଦ୍ଦଶ ଶତାବ୍ଦୀରେ ନିର୍ମିତ ଡ଼ଉକ୍‌ଙ୍କ ପ୍ରାସାଦ, ଟାଉନ୍‌ହଲ୍ ଓ ଦ୍ୱିତୀୟ ମହାଯୁଦ୍ଧର ମୃତ ସୈନ୍ୟଙ୍କ ସ୍ମୃତିସ୍ତମ୍ଭ ଦେଖିଲି । ଏଠୁ ସମଗ୍ର ବ୍ରୁସେଲ୍‌ସ୍ ସହରର ବହୁଳାଂଶ ଦୃଷ୍ଟିଗୋଚର ହୁଏ ।

ଏହି ନଗରର ଲୋକସଂଖ୍ୟା ଦଶଲକ୍ଷରୁ ଅଧିକ । ପଥ ସୁପ୍ରଶସ୍ତ, ସୌଧ ଉଚ୍ଚ । ଲୋକେ ଅବସ୍ଥାପନ୍ନ । ଦେଶଟି କ୍ଷୁଦ୍ର ହେଲେହେଁ ଦିନେ ଏହାର ସାମ୍ରାଜ୍ୟ ବିପୁଳ ଥିଲା । ବେଲ୍‌ଜିଆନ୍ କଙ୍ଗୋର ଖଣିଜ ସମ୍ପଦରେ ଦିନେ ବ୍ରୁସେଲସ୍ ଓ ଆଣ୍ଟୱର୍ପ ପରି ନଗର ନିର୍ମିତ ହୋଇଥିଲା ।

ଆମ ଦଳରେ କେତେକ ବ୍ୟବସାୟୀ ଅଛନ୍ତି— ବ୍ୟବସାୟ ଧନ୍ଦା ଛାଡ଼ି ଆସିଛନ୍ତି; ଅଧିକାଂଶ ସୁଖୀଲୋକ, ଅସୁବିଧା ବୁଝିବାକୁ ଓ ସାହାଯ୍ୟ କରିବାକୁ ପ୍ରସ୍ତୁତ । ସେମାନେ ଭାରତ ବିଷୟରେ ଜାଣିବାକୁ ଆଗ୍ରହାନ୍ୱିତ, ଭାରତଭ୍ରମଣ ଅନେକଙ୍କର ଉଚ୍ଚାକାଂକ୍ଷା । ତଥାପି ସାମାନ୍ୟ ଅପ୍ରୀତିକର ଘଟଣାଟିଏ ଘଟିଲା । ଜଣେ ବ୍ୟବସାୟୀ ଦିଲ୍ଲୀରେ ଗୋଟିଏ ବ୍ୟବସାୟ କଥା ମୋତେ ପଚାରି ବସିଲେ; ଜୀବନରେ ଥରେ ଦୁଇଥର ଦିଲ୍ଲୀ ଦେଖିଛି । ସେଠା ବ୍ୟବସାୟ କଥା କହିବି କିପରି ? କିଛି ଉତ୍ତର ଦେଇ ନ ପାରିବାରୁ ସେ ମହାଶୟ କ୍ଷୁଣ୍ଣ ହୋଇ କହିଲେ—ସବୁ ବିଷୟରେ ଜ୍ଞାନ ଥିବା ଉଚିତ ।

ମୁଁ ଉତ୍ତର ଦେଲି—ଯାହା କହୁଛନ୍ତି ଯଥାର୍ଥ; କିନ୍ତୁ ଆପଣ ସବୁ ବିଷୟରେ ଜ୍ଞାନ ହାସଲ କରିଛନ୍ତି କି ? ଟି: ଏସ୍: ଇଲିଅଟ୍ କେଉଁଠି ଜନ୍ମ ହୋଇଥିଲେ ? ହୁଇଟ୍‌ମ୍ୟାନ୍, ମାର୍କଟ୍ୱେନ୍, ଏଡ୍ଗାପାଉଣ୍ଡଙ୍କର କିଛି ଲେଖା ପଢ଼ିଛନ୍ତି କି ? କଲମ୍ବିଆ ବିଶ୍ୱବିଦ୍ୟାଳୟରେ ବର୍ତ୍ତମାନ

କ ଗବେଷଣା ଗ୍ରନ୍ଥ ? ବ୍ୟବସାୟୀ ନିରୁତ୍ତର, ମନରେ ଆଘାତ ଦେଇ ଥିବାରୁ କ୍ଷମା ମାଗିଲେ ।

ବେଲ୍‌ଜିୟମ ଲେମ୍‌ନ ସୁନାମ ରହିଛି । ଗୋଟିଏ ଦୋକାନରେ ଆମ ଦଳର ସ୍ତ୍ରୀ ଲୋକମାନେ ପଶିଲେ, ପଶିଲେ ଯେ ପଶିଲେ, ବାହାରିବାକୁ ମନ ନାହିଁ, ଯେତେ ଇଚ୍ଛା ଜିନିଷ ଆବୋରି ବସିଲେ, କିନ୍ତୁ ଏଣେ ପୁଅ ମୁଣ୍ଡକୁ ତେଣେ ତେଲ ଘଡ଼ିକ ଆଶା; ଏଣେ ପଇସା, ତେଣେ ସୁଟ୍‌କେଶରେ ଜାଗା, ପୁଣି ବାଟରେ ଆହୁରି ଅନେକ କିଛି କିଣିବାକୁ ପଡ଼ିବ; ଏଇ ଦ୍ୱନ୍ଦ୍ୱ ଭିତରେ ଅନିଚ୍ଛା ସତ୍ତ୍ୱେ କେତେକ ଜିନିଷ ଛାଡ଼ିବାକୁ ହେଲା । ତଥାପି ସେଇ ମୁହୂର୍ତ୍ତରେ ଦୋକାନୀର ଭାଗ୍ୟ ଖୋଲି ଯାଇଥିଲା—ପ୍ରାୟ ପାଞ୍ଚଶ ଡଲାରର ଜିନିଷ ବିକ୍ରୀ ହୋଇଗଲା ।

ହୋଟେଲ ମେଟ୍ରୋପୋଲ, ୧୮୭ ନମ୍ବର କୋଠରୀ; ପ୍ରଥମ ଶ୍ରେଣୀର ବିପୁଳ ସମ୍ଭାର ମଧ୍ୟରେ ସୁନିଦ୍ରାରେ ରାତିଟି କଟିଗଲା; ପ୍ରାତଃ-କାଳରେ ଅଳ୍ପୋଷ୍ଣ ଜଳରେ ଆସାର ସ୍ନାନ କଲି; ପ୍ରାୟ ସାଢ଼େ ସାତଟା ବେଳେ ହୋଟେଲ୍ ବୟ ଲିଫ୍‌ଟରେ ସୁଟ୍‌କେସ୍‌ସବୁ ତଳକୁ ବୋହି ନେଇ ବସ୍‌ରେ ନଦିଲା ।

ଆମେ ସବୁ ବସ୍‌ରେ ବସିଲୁ ପରେ ଆମ ଗାଇଡ୍ ଜାକୋବ ଭାଷଣ ଦେଲେ— ତୁମେସବୁ ଡାଇଜ ଫୁଲ ପରି ସତେଜ ଦିଶୁଛ, ନିଶ୍ଚୟ କାଲି ସୁନିଦ୍ରା ଯାଇଥିବ ।

ଆମେରିକା ସଙ୍ଗେ ବେଲ୍‌ଜିଅମ୍‌କୁ ତୁଳନା କରନାହିଁ । ତାର ଗଗନଚୁମ୍ବୀ ଏ ଦେଶରେ ନାହିଁ । କିନ୍ତୁ ତୁମ ଦେଶ ନୂତନ, ଏ ଦେଶ ଅତି ପୁରାତନ । ଏହାର ପ୍ରାଚୀନ ଇତିହାସ ଅଛି; ତାର ଗୌରବ ଘେନି ଏ ଦେଶବାସୀ ଗର୍ବ କରନ୍ତି, ଏ କଥା ମନେ ରଖିବାକୁ ପଡ଼ିବ ।

ଆମେରିକାର ଅନେକ ଜିନିଷ ମୁଁ ଭଲ ପାଏ ନାହିଁ, ସେହିପରି ଏଠାର ଅନେକ ଜିନିଷ ତୁମକୁ ଭଲ ଲାଗି ନ ପାରେ । ସମାଲୋଚନା

ଦୃଷ୍ଟିରେ ସବୁ ଦେଖନାହିଁ; ତା ହେଲେ ବହୁତ କଷ୍ଟ ହଗଇବ; ଆଖି କାନ ଖୋଲି ରଖ, ମନ ମଥ ।

ଫରଷିତ ଅରଣ୍ୟ, ବନସ୍ପତିମୟ; ସତେ କି ପବିତ୍ର ଶାନ୍ତି ସୃଷ୍ଟ ହୋଇଛି ! କୁହୁଡ଼ିର ଘନ ସମୁଦ୍ର ମଧ୍ୟରେ କେତେବେଳେ ଝଟି ଯାଉଛି ସୂର୍ଯ୍ୟଙ୍କର ଫାଳେ, ତରୁଡାଏ କମ୍ବା ରୁପା ସୂତା ପରି ଖିଏ । କୁହୁଡ଼ି ଶୀତର ଅଗ୍ରଦୂତିକା ପରି ଆସିଛି; ତା ମଧ୍ୟରେ ଛୁଡ଼ା ହୋଇଛି ସ୍ଥାନେ ସ୍ଥାନେ ଝାଟି, ନିକଟ ଭବିଷ୍ୟତର ରୁଦ୍ର ରୁକ୍ଷତାର ଇଙ୍ଗିତ ଦେଇ ।

ଆମେ 'ନାମିଓ' ସହରରେ ପହଞ୍ଚିଲୁ; 'ସାମ୍ବେ' ଓ 'ମ୍ୟୁଜଜ' ନାମକ ଦୁଇଟି ନଦୀର ସଙ୍ଗମ ସ୍ଥଳରେ ଏହା ଅବସ୍ଥିତ । କୋଇଲା ଲାଗି ବିଶେଷ ପ୍ରସିଦ୍ଧ ଏହି ଖଣି ସହର ମହାଯୁଦ୍ଧ ବେଳେ ଧ୍ୱସ୍ତ ହୋଇ ଯାଇଥିଲା । ଏବେ ପୁନର୍ନିର୍ମିତ ହୋଇ ଅଛି । ମ୍ୟୁଜଜ୍ ନଦୀର ଶୂନ୍ୟାଂଶ କୁହୁଡ଼ି ଭରା, ଚନ୍ଦ୍ରାଲସ ସ୍ରୋତ ସୂର୍ଯ୍ୟାଲୋକରେ ପତ୍‌କଞ୍ଚର ଉଜ୍ଜ୍ୱଳ ଦିଶୁଥାଏ ।

ଯାଇନ୍, ମପ୍‌ଲାର୍, କପରନ୍ତି କ୍ରମେ ପରସ୍ପର ଠାରୁ ଅଲଗା ବାର ହେଲେଣି । କୁହୁଡ଼ିର ଯବନିକା ଗୋଟିକ ପରେ ଗୋଟିଏ ଖସି ପଡ଼ୁଛି— ସୂର୍ଯ୍ୟ ଉଜ୍ଜ୍ୱଳତର । ନିକଟ ହୋଇଥିଲା ଦୂର; ଏବେ ଦୂର ଦିଶୁଛି ନିକଟରେ, ହ୍ରଦ ପୁଷ୍କରଣୀରୁ ଉଠୁଚି ବାଷ୍ପ, ତା ମଧ୍ୟରେ ଦଳ ଦଳ ରାଜହଂସ ହେଁରୁ ଛନ୍ତି । ଦଳେ ମାଛରଙ୍କା ପରି କି ପକ୍ଷୀ ମାଛ ଟଲି ମାରୁଛନ୍ତି ।

ଗହମ ବୁଣା ଲାଗିଛି; ସ୍ଥାନେ ସ୍ଥାନେ ଗଛ ଜୋଇ ଗଲାଣି । ସମୁଦ୍ର ତୀରବର୍ତ୍ତୀ ସ୍ଥାନ, ଶୁଣିଲି, ଏ ଅଞ୍ଚଳରେ ବରଫ ପଡ଼େ ନାହିଁ, ଗହମ ଫସଲ ନଷ୍ଟ କଲଇଲ ।

ଘର ଗୋଟି ଗୋଟିକଆ, ଏକାଠି ଗୁଡ଼ାଏ ଘରର ଗ୍ରାମ ଦିଶୁ-ନାହିଁ । ଆମେ 'ମାଉ' ସହରରେ ପହଞ୍ଚିଲୁ । ଏଠା ଲେଭଲ୍ କ୍ରସିଂରେ ଆମ କଟକ ଷ୍ଟେସନ ପରି ଘଣ୍ଟା ବାଜେ, ଲାଲ୍‌ବତି ଜଳେ, ବିଦ୍ୟୁତ୍

ବେଲ୍ଟରେ ଗୋଟିଏ ଦଣ୍ଡ ଉଠେ; ଦେଖି ବଡ଼ ଲାଗିଲା । ଆମେରିକା ରାସ୍ତାରେ ଯେମିତି ଏଠେ ସେହିପରି ଡାହାଣ ପଟେ ଗାଡ଼ି ଚାଲୁଥାଏ, ଇଂଲଣ୍ଡ ବା ଏଣ୍ଡିଆରେ ଠିକ୍ ତାର ବିପରୀତ ।

'ଲସ୍ ଭେଗସ୍' ରେଷ୍ଟୁରାଣ୍ଟରେ କଫି ପାନ କରି ଆମେ ପୁଣି ଚାଲିଲୁ; ଆକାଶରୁ ଖସି ପଡ଼ୁଥିବା ଲଙ୍କା ଉଡ଼ାଜାହାଜଟିଏ ପ୍ରଦର୍ଶିତ ହୋଇଛି । ଗ୍ରେଟ୍ ଗ୍ରେଟ୍ ପାହାଡ଼ର ଧାଡ଼ି ଧାଡ଼ି ପାଇନ୍ ଦେଖୁ ଦେଖୁ ଆମେ ବେଷ୍ଟୋନ୍ ସହରରେ ପହଞ୍ଚିଲୁ । ୧୯୪୪ ଡିସେମ୍ବର; ଏଠି ଆମେରିକାନ୍ ଓ ଜର୍ମାନ୍ ମାନଙ୍କ ମଧ୍ୟରେ ପ୍ରଚଣ୍ଡ ଯୁଦ୍ଧ ହୋଇଥିଲା । ଆମେରିକାନ୍ ପୋଷାକ ପରିଧାନ କରି ଜର୍ମାନ୍ ମାନେ ବ୍ୟୋମଯାନରୁ ଅବତରଣ କରିଥିଲେ । ସ୍ଥାନୀୟ ଶାସନକର୍ତ୍ତା ବନ୍ଦୀ ହୋଇଥିଲେ; ଆତ୍ମସମର୍ପଣ ଲାଗି ଆମେରିକାନ୍ ମାନଙ୍କୁ ଆହ୍ୱାନ କରା ଯାଇଥିଲା; ତାର ଉତ୍ତରରେ ଆମେରିକାନ୍ ସେନାପତି—Surrender but not to you. ଜର୍ମାନ୍ ସେନାପତି ଏହାର ସ୍ପଷ୍ଟୀକରଣ ନେଇଥିଲେ; ତା ପୂର୍ବରୁ ବହୁ ବେଲ୍‌ଜିଆନ ଓ ଆମେରିକାନ୍ ସୈନ୍ୟ ନିହତ ହୋଇଥିଲେ । ଏଠା ଯୁଦ୍ଧ ଅତି ଭୟାବହ ହୋଇଥିଲା; ଏଥିରେ ମୋଟ ୭୬୮୯୦ ଜଣ ଆମେରିକାନ୍ ସୈନ୍ୟ ଜୀବନ ହରାଇଥିଲେ । ଇତିହାସରେ ଆଉ କୌଣସି ଗୋଟିଏ ଯୁଦ୍ଧରେ ଏତେ ଆମେରିକାନ୍ ସୈନ୍ୟ ନିହତ ହୋଇ ନାହାନ୍ତି । ଲକ୍‌ସେମ୍‌ବର୍ଗ ସହରରେ ପ୍ରତ୍ୟେକ ସୈନ୍ୟଙ୍କର ସ୍ୱତନ୍ତ୍ର ସମାଧି ରଖା ଯାଇଛି । ଆମେରିକାନ୍ ଜେନେରାଲ୍ ପାଟନ୍ କହିଥିଲେ—ଯୁଦ୍ଧରେ ଯଦି ମୋର ମୃତ୍ୟୁ ହୁଏ, ମୋ ସମାଧିକୁ ଆମେରିକାନ୍ ସୈନ୍ୟମାନଙ୍କ ସମାଧିର ପାଖାପାଖି ରଖିବ । ତାଙ୍କ ଇଚ୍ଛା ପାଳିତ ହୋଇଅଛି ।

ଅଣ୍ଟୱର୍ପ ବନ୍ଦର ଅଧିକାର ଜର୍ମାନୀର ଲକ୍ଷ୍ୟ ଥିଲା; ତେଣୁ ମିଉଜ୍ ଓ ରାଇନ୍ ନଦୀ ଓ ବନ୍ଦରକୁ ଯାଇଥିବା ସମସ୍ତ ପଥ ଜର୍ମାନ୍ ବାହିନୀ ଅଧିକାର କରିଥିଲା । ଘୋର ଅନ୍ଧକାର ଓ କୁଜ୍‌ଝଟି ମଧ୍ୟରେ ଏହି ଭୟାବହ ଯୁଦ୍ଧ ହୋଇଥିଲା; ଜର୍ମାନ୍ ମାନେ ଭୂଷାର ପୋଷାକ ପରିଧାନ କରି ଯୁଦ୍ଧ କରୁଥିବାରୁ ଆମେରିକାନ୍ ମାନେ ସେମାନଙ୍କୁ ଦେଖି ପାରି ନଥିଲେ;

ଆମେରିକାନ୍ ମାନଙ୍କର ଭୂଷାର ପୋଷାକ ନ ଥିଲା, ସେମାନଙ୍କ ରକ୍ଷା ଦୁର୍ଗ ଭଙ୍ଗେ ପଡ଼ିଥିଲା । ତେଣୁ ଅକଳ୍ପନୀୟ ସଂଖ୍ୟାରେ ସେମାନେ ମୃତ୍ୟୁ ମୁଖରେ ପଡ଼ିଥିଲେ ।

ବେଲ୍‌ଜିଅନ୍ ମାନେ ସେତେବେଳେ ପ୍ରାପ୍ତ ନିରସ୍ତ୍ର; ତଥାପି ସେମାନେ ଆମେରିକାନ୍ ମାନଙ୍କ ସହିତ ମିଶି ଯୁଦ୍ଧ କରିଥିଲେ; ନିଜ ଖାଦ୍ୟରୁ ଅର୍ଦ୍ଧେକ ଦେଇ ଥିଲେ; ପୀଡ଼ିତ ଓ ଆହତର ଚିକିତ୍ସା କରିଥିଲେ । ଏହା ଏକ ଐତିହାସିକ ଯୁଦ୍ଧ, 'ବାଟଲ୍ ଅଫ୍ ବଲଜ୍' ନାମରେ ପ୍ରସିଦ୍ଧ ।

ପାଞ୍ଚବର୍ଷକାଳ ବେଲଜିଅମ୍ ଅଧିକାର କଲେ ବି ଜର୍ମାନ୍ ମାନେ ବେଲ୍‌ଜିଅନ୍ ମାନଙ୍କୁ ପରାଧୀନ କରି ପାରି ନଥିଲେ, ତୃସ୍ ପୂରି ବେଷ୍ଟାନ୍ ସହର, ଆଣ୍ଟୱେର୍ପ ବନ୍ଦର ଅଧିକାର କରିବାକୁ ଅସମର୍ଥ ହୋଇଥିଲେ । ଏହି ଯୁଦ୍ଧ ଲାଗି ସେମାନଙ୍କୁ ଫ୍ରାନ୍‌ସରୁ ଖାଦ୍ୟ ଆଣିବାକୁ ପଡ଼ୁଥିଲା ।

ଆମ ବାମ ହାତରେ ବୃକ୍ଷ ଲତା ମଣ୍ଡିତ ମାର୍ଡ଼ସନ ପର୍ବତଘାଟି, ଏହାକୁ ଅଧିକାର କରିବାକୁ ରୋମାନ୍ ଯୁଗରୁ ଏ ପର୍ଯ୍ୟନ୍ତ ବହୁ ଯୁଦ୍ଧ ହୋଇଛି; ତାର ଏକ ଶ୍ରେଷ୍ଠ ପାହାଡ଼ 'Hill of Heroism' ନାମରେ ପରିଚିତ । ଏଠି ଆମେରିକାନ୍ ମାନେ ରଣକ୍ଷେତ୍ରରେ ଆତ୍ମୋତ୍ସର୍ଗ କରିଥିଲେ—'ବୀର ରକ୍ତ ପିଣ୍ଡେ ଗଢ଼ା ଯାଇ ମାଟି' ଏହି ଭୂମି ମଧ୍ୟରେ ସତ୍ୟ । ବେଲଜିଅନ୍ ମାନେ ଏହି ସ୍ଥାନର କିଛି ମୃତ୍ତିକା ନେଇ ସମ୍ମାନିତ ବନ୍ଧୁମାନଙ୍କୁ ଉପହାର ଦେଇଥିଲେ । ଯେଉଁଠୁ ମୃତ୍ତିକା ନିଆ ଯାଇଥିଲା ସେହି ସ୍ଥାନରେ ୧୯୬୦ରେ ଗୋଟିଏ ସ୍ମୃତିମନ୍ଦିର ନିର୍ମିତ ହୋଇଥିଲା ।

ଏହା ଗୋଟିଏ ବହୁ କୋଣଯୁକ୍ତ ମନ୍ଦିର; ଏହା ଉପରେ 'ବାଟଲ୍ ଅଫ୍ ବଲ୍‌ଜ୍'ର ଇତିହାସ ସୁବର୍ଣ୍ଣ ଅକ୍ଷରରେ ଖୋଦିତ ହୋଇଅଛି । କୋଣମାନଙ୍କରେ ଆମେରିକାର ଅଟତାଳିଶ ଗୋଟି ରାଜ୍ୟର ନାମ,

ସେହିସବୁ ରାଜ୍ୟରୁ ପ୍ରାଣୋତ୍ସର୍ଗ କରିଥିବା ସୈନ୍ୟମାନଙ୍କର ନାମ ମଧ୍ୟ ଲେଖାଥିତ ହୋଇଛନ୍ତି ।

ସୌଧ ଉପରୁ ବେଲ୍‌ଜିଅମ୍‌ର ଦୃଶ୍ୟ ଦେଖି ହୁଏ—ଚତୁର୍ଦ୍ଦିଗରେ ଶ୍ୟାମଳ ଭୂମିଭୂମି, ଶସ୍ୟକ୍ଷେତ୍ର; କୁତ୍ସିତ ଅଦ୍ୟାପି ଘୁଞ୍ଚି ନାହିଁ । ୧୯୪୪, ୧୭ ତାରିଖରେ ଏଠି ଯେଉଁ ରକ୍ତନଦୀ ପ୍ରବାହିତ ହୋଇଥିଲା, ମୃତ୍ତିକାରେ ସମ୍ଭାବ୍ୟ ଆଚ୍ଛନ୍ନ ହୋଇଥିଲା ତାର ଇତିହାସ ସ୍ମୃତିମନ୍ଦିର କହେ ।

ପଥର ପ୍ରତ୍ୟେକ ମାଇଲରେ ଗୋଟିଏ ପ୍ରସ୍ତର ଫଳକ—ଆମେରିକାନ୍ ସୈନ୍ୟ ପ୍ରତ୍ୟେକ ମାଇଲ୍ ପ୍ରବଳ ଶତ୍ରୁ ବିରୁଦ୍ଧରେ କପରି ଅଗ୍ରଗତ କରିଥିଲେ ତାର ସ୍ମୃତି ଏ ।

## ଲକ୍‌ସେମ୍ ବର୍ଗ

ଲକ୍‌ସେମ୍‌ବର୍ଗ ୟୁରୋପର ଗୋଟିଏ ଅତି କ୍ଷୁଦ୍ର ଦେଶ, ଓଡ଼ିଶାର ଯେ କୌଣସି ଜିଲାଠାରୁ ଏହାର ଭୂମି ପରିମାଣ ଯଥେଷ୍ଟ କମ୍—ଆକାରରେ ଏହା ଏକ ହଜାର ବର୍ଗ ମାଇଲ୍ ମାତ୍ର; ଲୋକସଂଖ୍ୟା ତିନି ଲକ୍ଷ । ଏତିକ ମାତ୍ର ଲୋକଙ୍କ ମଧ୍ୟରେ ତିନିଗୋଟି ଭାଷା ପ୍ରଚଳିତ—ଫରାସୀ, ଜର୍ମାନ୍ ଓ ଏକ ଗୋଳିଆ ମିଶା ସ୍ଥାନୀୟ ଭାଷା—ତାର ସ୍ୱତନ୍ତ୍ର ସାହିତ୍ୟ ନାହିଁ କିମ୍ବା ସେ ଭାଷାରେ ସମ୍ବାଦ ପତ୍ର ପ୍ରକାଶିତ ହୁଏ ନାହିଁ ।

ଲକ୍‌ସେମ୍‌ବର୍ଗର ରାଜଧାନୀ ‘ଲକ୍‌ସେମ୍‌ବର୍ଗ’—ଏହାର ଲୋକସଂଖ୍ୟା ପଞ୍ଚସ୍ତରି ହଜାର ମାତ୍ର । ସମଗ୍ର ଦେଶ କେତୋଟି ସହରରେ ବିଭକ୍ତ । ଏ ଦେଶରେ ପଲ୍ଲୀ ନାହିଁ—ପୃଥିବୀର ଏହା ପୂରାପୂରି ଏକ ସହର ଦେଶ; ଲୁହା କାରଖାନାରେ ଭରା; ଇସ୍ପାତ ଉତ୍ପାଦନରେ ଏହା ସପ୍ତମ ସ୍ଥାନ ଅଧିକାର କରିଅଛି । ପୃଥିବୀର ସମୃଦ୍ଧ ରାଜ୍ୟ ମଧ୍ୟରେ ଅନ୍ୟତମ ।

ଲକ୍‌ସେମ୍‌ବର୍ଗ ଏକ ଦୁର୍ଗରାଜ୍ୟ, ପର୍ବତ ପ୍ରାଚୀର ପରିବେଷ୍ଟିତ; ପର୍ବତ ଉପରେ କାନ୍ଥ ନିର୍ମିତ, ମୋଜେଲ୍ ନଦୀ ଏହାର ପ୍ରାକୃତିକ ପରିଖା । ପର୍ବତ ଉପରେ ନିର୍ମିତ ‘ହୋଟେଲ୍ ରେଷ୍ଟୁରାଣ୍ଟ’ କଥାରେ ଛୁଞ୍ଚା

ହୋଇ ଜଣେ ସାଥୀ ବର୍ଣ୍ଣନା କରୁଥିଲେ—ହିଣ୍ଡସ୍ ମହା ଯୁଦ୍ଧର କାହାଣୀ; ସେ ସେତେବେଳେ ସୈନିକ ଥିଲେ । ଲକ୍‌ସେମ୍‌ବର୍ଗ ରଣକ୍ଷେତ୍ରରେ ଜର୍ମାନ୍‌ମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ; ଏଇ ଯୁଦ୍ଧରେ କପରି ତାଙ୍କର କେତେକ ପ୍ରିୟ ବନ୍ଧୁ ପ୍ରିୟ କରୁ କରୁ ମଳ ପଡ଼ିଥିଲେ, ସେ ଘଟଣା ମନେ କରି ତାଙ୍କ ଚକ୍ଷୁ ଅଶ୍ରୁସିକ୍ତ ହୋଇଥିଲା । ଏ ପାଖେ ପର୍ବତ ଘାଟି, ପୁରାତନ ଦୁର୍ଗର ଭଗ୍ନାବଶେଷ, ଆମ ପାଖେ ବିସ୍ତୃତ ଆଧୁନିକ ନଗର, ଆକାଶଦର୍ଶୀ ସୌଧ, ଯାନର ଜୁଆର ଚାଲିଛି ।

'ହୋଟେଲ୍'ରେ ଲଞ୍ଚ୍ ଖାଇଲୁ—ଭୋଜନ ପୂର୍ବରୁ ବନ୍ଧୁମାନେ ପରସ୍ପରକୁ ମଦ୍ୟ ଅର୍ପଣ କରିଥିଲେ—ଠାକୁରଙ୍କୁ ଭୋଗ ଦେଖାଇଲା ପରି; ମୋର ତ ଜଳ, ମୁଁ କାହାକୁ ଅର୍ପଣ କରିବ ?

ଭୋଜନ ପରେ ଆମେ ମୃତ ସୈନିକ ସ୍ମୃତି ଦର୍ଶନ କରିଗଲୁ । ଚ୍ୟାପେଲ୍ ହାଉସ୍ ଗୋଟିଏ ଅପୂର୍ବ, ତଳ ଗ୍ଲାସରେ ଖ୍ରୀଷ୍ଟଙ୍କର ସ୍ୱର୍ଗ ମୂର୍ତ୍ତି, ପ୍ରତୀକାତ୍ମକ; ସ୍ୱର୍ଣ୍ଣ ରଙ୍ଗରେ ରଞ୍ଜିତ । ଦ୍ୱାରରେ ଖୋଦିତ ହୋଇଛି —'Here is enshrined the memory of 'alour and Sacrifice !'

ବୃହତ୍ ପ୍ରାଚୀରସବୁ ନିର୍ମିତ ହୋଇଛି—ତା ଉପରେ ଯୁଦ୍ଧର ମାନଚିତ୍ର ଅଙ୍କିତ, ନୌ, ଆକାଶ ଓ ସ୍ଥଳ ବାହିନୀର କୃତିତ୍ୱ ବର୍ଣ୍ଣିତ, ମୃତ ଆମେରିକାନ୍ ସୈନ୍ୟମାନଙ୍କ ନାମ ଲିଖିତ; ୧୯୪୫, ମଇ ଆଠ ତାରିଖରେ ଜର୍ମାନୀର ପତନ ପର୍ଯ୍ୟନ୍ତ ପ୍ରତ୍ୟେକ ଆମେରିକାନ୍ ସୈନିକର ସ୍ମୃତି ରକ୍ଷିତ ହୋଇଛି—ଗୋଟିଏ ଗୋଟିଏ ମାର୍ବଲ କ୍ରସ୍, ଗୋଟିଏ ସୁବିସ୍ତୃତ ଶ୍ୟାମଳ ପ୍ରାନ୍ତରରେ; ଜେନେରାଲ୍ ପାଟନ୍‌ଙ୍କ ସ୍ମୃତି ସେମାନଙ୍କ ମୁହାଁମୁହିଁ ହୋଇ ରହିଛି; ଜଣେ ଜଣ ସୈନିକର ସ୍ମୃତି ଏହି ଅଗଣିତ କ୍ରସ୍ ମଧ୍ୟରେ ବାହ୍ନ ହୋଇ ପଡ଼ୁଛି, ତାରକା ଚିହ୍ନିତ । ଏହି ସୁବିଶାଳ ଶ୍ମଶାନର ମଧ୍ୟେ ମଧ୍ୟେ ପୁଷ୍ପୋଦ୍ୟାନ, ପୃଷ୍ଠ ପଟରେ ଓକ୍ ଓ ପାଇନ୍ ଅରଣ୍ୟ; ଚତୁର୍ଦ୍ଦିଗରେ ମଧ୍ୟ ଆରଣ୍ୟକ ପରିବେଶ, ଜନବସତିର ସଙ୍କେତ ନାହିଁ; ପ୍ରକୃତି ଯେପରି କ ମାରବରେ ଅର୍ଘ୍ୟ ଢାଳିଯାଉଛି—ପର ଲାଗି

ଯେଉଁମାନେ ଅକାତରରେ ଜୀବନ ଉତ୍ସର୍ଗ କରିଯାଇଛନ୍ତି, ସମସ୍ତ କ୍ଷତ, ଦୁଃଖ ନିଜେ ବରଣ କରି ନେଇଛନ୍ତି, ପୃଷ୍ଠ ପଟରେ ଅଗଣିତଙ୍କୁ ସୁଖୀ ଓ ଅକ୍ଷତ ରଖିବା ଲାଗି ।

## ଜର୍ମାନୀ

ଲକ୍ସେମ୍‌ବର୍ଗର ପର୍ବତ ପ୍ରାଚୀର ଧାରେ ଧାରେ ଆମ ବସ୍ ଗ୍ଲଲା । ଶରତର ରଙ୍ଗ ବୈଚିତ୍ର୍ୟ ଅରଣ୍ୟର ପତ୍ରେ ପତ୍ରେ; ସବୁଜ, ଶାନ୍ତ, ସୁନ୍ଦର ଚତୁର୍ଦ୍ଦିଗ । ଗମ୍ଭୀରଜଳା, କିନ୍ତୁ କ୍ଷୀଣାଙ୍ଗୀ 'ମୋଜେଲ୍' ନଦୀ ଅତିକ୍ରମ କରି ଆମେ ଜର୍ମାନୀରେ ପ୍ରବେଶ କଲୁ; ଅଭିନନ୍ଦନ ଜଣାଇଲା ଜର୍ମାନୀ ସୁବର୍ଣ୍ଣ ହାସ୍ୟରେ—ଅଗଣିତ ସୂର୍ଯ୍ୟମୁଖୀ ଜାଣ ତାର ତୋରଣ ଦ୍ୱାରରେ ହିଁ ଫୁଟିଛି ।

କ ସ୍ତେମାଞ୍ଚକର ଭାବର ସ୍ପର୍ଶ ପାଇ ଦେହ କମ୍ପରି ଶିହରି ଉଠିଲା—ସୁପ୍ରସିଦ୍ଧ ଲେଖକ ଥୋମାସ୍ ମାନ୍, ଗୀତିକବି ହ୍ୱାନ୍‌ରିକ୍‌ହାନ୍, 'ସିଦ୍ଧାର୍ଥ'ର ଲେଖକ ହର୍‌ମ୍ୟାନ୍ ହେସ୍, କବି ରେନେର୍ ମେରିଆ ରିଲକେଙ୍କ କଥା ମନେ ପଡ଼ି; ତତ୍ପରେ ପରି ଚମକି ଉଠିଲି ହେରଡରଙ୍କ କଥା—ସେ 'ଶକୁନ୍ତଳା' ନାଟକକୁ ପଶ୍ଚିମର ଆତ୍ମା ବୋଲି ବର୍ଣ୍ଣନା କରିଥିଲେ । ମନରେ ପ୍ରଭାତ ପରି ଝଲସିପଡ଼ିଲା ଶକୁନ୍ତଳା ସମ୍ପର୍କରେ ଗେଟେଙ୍କର ସେଇ ଅମର ବାଣୀ—Wouldst thou the earth & heaven itself in one name combine.'

ଭାରତୀୟ ନାଟକର 'ସୂତ୍ରଧର'କୁ ସେ 'ଫାଉଷ୍ଟ'ରେ ଅବତାରଣା କରି ଥିଲେ, ନାଟକର ଉପକ୍ରମଣିକା ରୂପେ ।

ମନେ ପଡ଼ିଲା ଜର୍ମାନ୍ ଦାର୍ଶନିକ ସୋପେନ୍‌ହାଓ୍ୱାର୍‌ଙ୍କ କଥା, ଯେ ଉପନିଷଦ୍ ସମ୍ପର୍କରେ ଲେଖିଥିଲେ—ସେ ସବୁ ମୋ ଜୀବନର ଆଶ୍ୱାସନା, ମୃତ୍ୟୁର ମଧ୍ୟ ।

ସେ ବେଦକୁ ମାନବିକ ଜ୍ଞାନର ଶ୍ରେଷ୍ଠ ଭଣ୍ଡାର ଓ ଅହିଂସାକୁ ଶ୍ରେଷ୍ଠ ଭାରତୀୟ ବାଣୀ ରୂପେ ଗ୍ରହଣ କରିଥିଲେ ।

ମନେ ପଡ଼ିଲା ବେଦେ ଗାୟକ ମାକ୍ସମୁଲରଙ୍କ କଥା । ତାଙ୍କ ପରି ମନୀଷୀଙ୍କ ଯୋଗୁଁ ଭାରତୀୟ ତତ୍ତ୍ୱ ଜର୍ମାନୀରେ ଦୃଢ଼ଭାବେ ପ୍ରତିଷ୍ଠିତ ହୋଇଥିଲା—ଜର୍ମାନୀ ହୋଇଥିଲା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନର ମିଳନ ଭୂମି ।

ତାପରେ କି ଭୟଙ୍କର ଚିନ୍ତାରେ ହୃଦୟ ଥରି ଉଠିଲା ମୋର; ଦ୍ୱିତୀୟ ମହାଯୁଦ୍ଧ, ହିଟଲର୍, ଗ୍ୟାସ୍ ଚେମ୍ବର୍ ।—ଜୁଇର ଜୀବନକୁ ନେଇ ଲାଗିଥିଲା ଯେଉଁ ନିଷ୍ଠୁର ପଶୁଖେଳ ।

ଅପରାହ୍ଣ ଖରା ସଙ୍ଗେ ନାଲି କୁହୁଡ଼ି ମିଶି ବିଚିତ୍ର ରଙ୍ଗ ସୃଷ୍ଟି କରିଥାଏ, ଖଣ୍ଡିଏ ଜଙ୍ଗଲ ପଛେ ଗମ୍ଭୀର, କିଏ ଗୋଟିଏ ବାଡ଼ିଲଗା ବ୍ରସ୍‌ରେ ଦୁଆଡ଼ୁ ଶୁଖିଲା ପତ୍ର ଠେଲାଉଛି । ନାଳ କୂଳରେ କିଏ ମଟର ସାଇକେଲ ରଖି ଛିଡ଼ା ହୋଇଛି; ପଛେ ଡାମରକୁଆ ବସି ମନ୍ତ୍ରଣା କରୁଛନ୍ତି, ଦଳେ କୂଟମନ୍ତ୍ରୀଙ୍କ ପରି ।

ଭଙ୍ଗାରୁଜା ଘର ସ୍ଥାନେ ସ୍ଥାନେ ଛିଡ଼ା ହୋଇଛି । ଯୁଦ୍ଧ ପରେ ପଶ୍ଚିମ ଜର୍ମାନୀର ଅସମ୍ଭବ ଆର୍ଥିକ ଉନ୍ନତି ହେଲେହେଁ ଦୁର୍ଦ୍ଦଶା ସମ୍ପୂର୍ଣ୍ଣ ରୂପେ ଲୁଚିପାରି ନାହିଁ । ପଥଧାର ବନ୍ୟ ବେଶ ।

ଆକାଶ ଧୂମାଚ୍ଛନ୍ନ; ଆମେ ପଛେ ପରେ ଦୁଇଟି କାରଖାନା ସହରରେ ପହଞ୍ଚିଲୁ—ବାଉସ୍ ଓ ଅଟୋବାନ୍; ବୋମା ମାଡ଼ରେ ଏସବୁ ଧ୍ୱସ୍ତ ହୋଇ ଯାଇଥିଲା, ଏବେ ପୁନର୍ନିର୍ମିତ ହୋଇଅଛି ।

ରାସ୍ତା ଧାରରେ ପାହାଡ଼ମାଳା; ବୃକ୍ଷସବୁ ରୋପିତ; ଏକସମାନ ହୋଇ ଉଠିଛି; ରୋପଣରେ ଜ୍ୟାମିତିକ ପରିମାପ ଦୂରରୁ ଲକ୍ଷ୍ୟ କରି ହୁଏ, ମାନ୍‌ହିମ୍ ସହରରେ ଗାଡ଼ି ଅଟକିଲା । ବନ୍ଧୁମାନେ କଫି ଖାଇବାକୁ ଗଲେ; ମୁଁ ବସ୍ ପାଖରେ ଛିଡ଼ା ହୋଇ ଚାରିଆଡ଼ର ଦୃଶ୍ୟ ଦେଖିଲି; ଘୋର ଜଙ୍ଗଲ, ତା ମଧ୍ୟରେ ସୂର୍ଯ୍ୟ ଅସ୍ତ ହୋଇ ଯାଉଥାନ୍ତି; ସଙ୍ଗେ ସଙ୍ଗେ କୁହୁଡ଼ି ଘୋଟି ଆସୁଥାଏ, ଜଙ୍ଗଲ ଉପରେ ଆଉ ଏକ ଜଙ୍ଗଲ ପରି । ଏ

ଅଞ୍ଚଳଟି ଆମେରିକାନ୍ ଜୋନ୍‌ର ଅନ୍ତର୍ଭୁକ୍ତ ଥିଲା । ଏବେ ଆମେରିକାନ୍ ସୈନ୍ୟ ରହୁଛନ୍ତି, କିନ୍ତୁ ପଶ୍ଚିମ ଜର୍ମାନୀର ଶାସନ କର୍ତ୍ତୃତ୍ୱ ଚଳେ ।

ମାଇନ୍ ନଦୀର ଦୁଇପଟେ ଶିଳ୍ପ ସହର ସବୁ ଗଢ଼ିଉଠିଛି । ଏହି ନଦୀ ଅତିକ୍ରମ କରି ଆମେ 'ବେନ୍‌ସିମ୍' ସହରରେ ପହଞ୍ଚିଲୁ—'କର୍-ହୋଟେଲ'ରେ ରହିଲୁ । ଛତୁ, ମଟର ସିଝା, ହାଟ୍ ଗାଜରଶିଝା, ଡିମ୍ବ, ଚିକେନ୍ ସୁପ, ଗ୍ଲାସେ ଦୁଧ ଓ କେକ୍ ଆଇସ୍‌କ୍ରିମ ମିଳିଲା; ଜଳ ନାହିଁ । ମାଗିଲାରୁ ବସ୍ତୁ କହିଲା—ଏଠି ପାଣି ଖ୍ରୁବ୍ ଖରାପ, ମଣିଷମାନେ ପିଅନ୍ତି ନାହିଁ । ତୁମକୁ ଶୋଷ ହେଲେ ଦୁଧ ବା କଫି ପିଅ । କଫି କପ୍‌କୁ ୭୦ ପେଣ୍ଟ ପଡ଼ିଲା—ଆମ ହିସାବରେ ପ୍ରାୟ ପାଞ୍ଚ ଟଙ୍କା । କିଛି ଖର୍ଚ୍ଚବାର୍ଚ୍ଚ କରିବା ପାଇଁ ଏଠି ଡଲାର ଭଙ୍ଗାଇ ମାର୍କ ମୁଦ୍ରା ଅଣିଲି, ୧ ଡଲାର = ୩ ମାର୍କ, ୮୦ ପେନି । ହୋଟେଲଟି ରାଜପଥ ମଝିରେ ଅବସ୍ଥିତ । ରାତି ସାରା ଗାଡ଼ି ଚାଲୁଥାଏ । ଜର୍ମାନ୍‌ମାନେ ରାତିରେ କଠୋର ପରିଶ୍ରମ କରିଥାନ୍ତି । କଠୋର ପରିଶ୍ରମ କରିବା ଶକ୍ତିର ନାମ ପ୍ରତିଭା— 75% persipiration, 25% inspiration ) । ଏଠା ଲୋକଙ୍କର ବିଶ୍ୱାସ ।

ସେଥିଲାଗି ସେମାନେ ପୃଥିବୀରେ ବଡ଼ ହୋଇଛନ୍ତି, ଦେଶଟା ଭାଙ୍ଗି ଚୂରମାର୍ ହୋଇଗଲେ ବି ଅଳ୍ପଦିନ ପରେ ଗଢ଼ା ହୋଇଯାଉଛି । ଏ ଦେଶକୁ ପ୍ରବଳତର ଶତ୍ରୁ ଧୂଳିରେ ମିଶାଇ ଦେଇପାରେ । କିନ୍ତୁ ଏ ଦେଶର ମନକୁ ସେ ଭାଙ୍ଗି ପାରିବ ନାହିଁ ।

୯ । ୧୦ । ୭୭ –ଆଜି ବସ୍‌ରେ ସମସ୍ତେ ଆସି ବସିଲାବେଳକୁ ପ୍ରାୟ ପନ୍ଦର ମିନଟ୍ ଡେରି, ଯେତେ କହିଲେ ବି କେତେଜଣ ମୋଟେ ସାବଧାନ ହେଉ ନ ଥାନ୍ତି । ବିଶେଷତଃ ସ୍ତ୍ରୀ ଲୋକମାନଙ୍କ କିଛି କହି ହେଉ ନ ଥାଏ । ଗାଡ଼ିରେ ବସିଲା ପରେ ଜାକୋବ ପଚାରିଲେ—ସମସ୍ତେ ରୁମ୍ ଚାବି ମ୍ୟାନେଜରଙ୍କୁ ଫେରାଇ ଦେଇ ଆସିଛ ? ପଛେଟ୍ ଭିତରୁ ବାରୁ ଶୁଣାଗଲା—ଜଣେ ଫେରାଇ ନାହିଁ । ସେ ଚାବି ଫେରାଇ ଆସିଲା ବେଳକୁ ଆଉ କିଛି ଡେରି ହେଲା ।

ଆମେ କୃତ୍ରିମ ପେଟ୍ରୋଲ୍ ଉତ୍ପାଦନ କାରଖାନା ପାଖେ ପହଞ୍ଚିଲୁ । କୋଇଲାରୁ 'ତେଲ' ଉତ୍ପାଦନ କରାଯାଏ । ପ୍ରାକୃତିକ ଓ କୃତ୍ରିମ ପେଟ୍ରୋଲ ମଧ୍ୟରେ କୌଣସି ଗୁଣଗତ ତାରତମ୍ୟ ନାହିଁ । ଯୁଦ୍ଧ ଆରମ୍ଭ ହେବା ପରେ ମଧ୍ୟ ପ୍ରାଚ୍ୟର ତେଲ ଯୋଗାଣ ବନ୍ଦ ହୋଇଯିବ, ହିଟ୍ଲର ଏହା ଜାଣି ପ୍ରଚୁର ତେଲ ସରବରାହ କରିଥିଲେ । ଏହି ତେଲ ଉତ୍ପାଦନ ଲାଗି ଓଡ଼ିଶାର ଦରିଦ୍ର ରାଜକୋଷରୁ କିପରି ଲକ୍ଷ ଲକ୍ଷ ଟଙ୍କା ବରବାଦ୍ କରାଯାଇଥିଲା, ସେ କଥା ମୋର ମନେ ପଡ଼ିଲା ।

ଗୋଟିଏ ଟନେଲ୍ ଭିତରେ ଆସି, ଆମେ ହାଇଡେଲ୍‌ବର୍ଗ ସହରରେ ପହଞ୍ଚିଲୁ । ଏହାର ମଧ୍ୟ ଭାଗରେ 'ନେକର' ନଦୀ ପ୍ରବାହିତ, ସୁଜଳା, ସୁନାବ୍ୟା, ଏହା ରାଇନ୍ ନଦୀରେ ମିଶିଛି । ଏହା ଉପରେ ନିର୍ମିତ ରୋମାନ୍ ଯୁଗର ସେତୁ ଗେଟେଙ୍କ ଲେଖାରେ ଜୀବନ୍ତ ହୋଇଅଛି ।

୧୯୯୬ରେ ହାଇଡେଲବର୍ଗ ଗୋଟିଏ ଗ୍ରାମ ମାତ୍ର ଥିଲା । ମାଛ ଧରା ଗ୍ରାମବାସୀମାନଙ୍କର ପ୍ରଧାନ ଜୀବିକା ଥିଲା; ଏବେ ଏଇ ନଗରର ଲୋକସଂଖ୍ୟା ଦୁଇଲକ୍ଷ ।

ହାଇଡେଲ୍‌ବର୍ଗ କାସଲ୍ ଥରେ ଜର୍ମାନ ରାଜାମାନଙ୍କର ଏକ ଶାସନ ପୀଠ ଥିଲା । ଚତୁର୍ଦ୍ଦଶ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସେମାନେ ଏ ଅଞ୍ଚଳ ଶାସନ କରୁଥିଲେ । ଏହାର ଶେଷ ରାଜା ଫ୍ରାନସ ସମ୍ରାଟ ଲୁଇ ଚତୁର୍ଦ୍ଦଶଙ୍କ ଜ୍ୱାଇଁ, ସେ ଅପୁତ୍ରିକ ହୋଇ ପ୍ରାଣତ୍ୟାଗ କଲେ । ଲୁଇ ଜ୍ୱାଇଁଙ୍କ ରାଜ୍ୟ ଅଧିକାର ଲାଗି ସୈନ୍ୟ ପ୍ରେରଣ କରିଥିଲେ । ନଗରଟି ଧ୍ୱଂସ ପ୍ରାପ୍ତ ହୋଇଥିଲା । ସପ୍ତଦଶ ଶତାବ୍ଦୀ ପରେ ଏହା ପୁନର୍ଗଠିତ ହେଲା ।

ବାଟରେ କର୍ନ ମାର୍କେଟ୍, ମାଡୋନାଙ୍କ ମୂର୍ତ୍ତି, ହର୍କୁଲାସ ମୂର୍ତ୍ତି, ଗୋଥିକ୍ ଶୈଳୀର କାଥୋଲିକ୍ ଚର୍ଚ୍ଚ, କେତେ ସେକେଣ୍ଡ ହାଣ୍ଡ୍

ବ୍ରୁକ୍‌ସପ ଅତିକ୍ରମ କରି ଆମେ ହାଇଡେଲବର୍ଗ ବିଶ୍ୱବିଦ୍ୟାଳୟରେ ପହଞ୍ଚିଲୁ ।

ପଥ ଅପ୍ରଶସ୍ତ; କୁହୁଡ଼ିରେ ପ୍ରାୟ କିଛି ଦିଶୁ ନଥାଏ । ଇଲ୍‌ସ୍‌ ଜଣେ ଜର୍ମାନ ନାରୀ, ଭଲ ଇଂରେଜୀ କହୁଥାନ୍ତି । ସେ ଆମକୁ ବିଶ୍ୱ-ବିଦ୍ୟାଳୟ ଅଞ୍ଚଳଟି ବୁଲାଇ ଦେଖାଇଲେ ।

ଜର୍ମାନୀର ଏହା ପ୍ରାଚୀନତମ ବିଶ୍ୱବିଦ୍ୟାଳୟ, ୧୩୮୬ ଖ୍ରୀଷ୍ଟାବ୍ଦରେ ଏହାର ଶୁଭାରମ୍ଭ ହୋଇଥିଲା, ଜର୍ମାନ, ଫ୍ରେଞ୍ଚ, ସ୍ପାନିସ୍, ଋଷିୟାନ, ଡଚ୍, ପର୍ତ୍ତୁଗୀଜ, ଗ୍ରୀକ୍ ଇତ୍ୟାଦି ଆଠ ଗୋଟି ଭାଷାର ଅଧ୍ୟୟନ ବ୍ୟବସ୍ଥା ଏହି ବିଶ୍ୱବିଦ୍ୟାଳୟରେ ରହିଅଛି । ଏହାର ଛାତ୍ର ସଂଖ୍ୟା ପ୍ରାୟ ବାର-ହଜାର । ବିଜ୍ଞାନ ଶିକ୍ଷା ଲାଗି ଏହା ବିଶେଷ ପ୍ରସିଦ୍ଧ । ସର୍ବଭେଦୀ ଗାମ୍ମା ରଶ୍ମି ଏହିଠାରେ ଉଦ୍‌ଭାବିତ ହୋଇଥିଲା । ରୁଡଲଫ୍ ମୋସ୍‌ବୟର୍ ସେଥିଲାଗି ନୋବେଲ୍ ପୁରସ୍କାର ଲାଭ କରିଥିଲେ । ବାଇସାଇକଲ୍ ମଧ୍ୟ [illegible] ଏହି ବିଶ୍ୱବିଦ୍ୟାଳୟ ଉଦ୍‌ଭାବନ କରିଥିଲା । ରବିବାର ଯୋଗୁଁ ସବୁ ବିଭାଗ ବନ୍ଦ । ବିଶ୍ୱବିଦ୍ୟାଳୟର ବାହାର ଚେହେରା ଦେଖି ଆମେ ଫେରିଲୁ । କୁହୁଡ଼ିରେ ଅକୃତି ସବୁ ଝାପ୍‌ସା ଦିଶୁଥାଏ; ତା ମଧ୍ୟରେ ଜାକୋବ ଶଡ୍ଲେଇ ଦେଉଥାନ୍ତି ଲିଣ୍ଡେନ୍‌ଟ୍ରି; ବସ୍ ଗାଡ଼ିର ମଝିରେ ଚାଲିଲି—ଗେଣ୍ଡୁ ଫୁଲ ଖେତ, ଶୋରିଷ ଖେତ, ମକ୍‌କା, ବିଟ୍‌, ଗାଜର୍‌, କୋବି, ଅବି ଫସଲ; ମଝେ ମଝେ ପୁଞ୍ଜ ପୁଞ୍ଜ ପପ୍‌ଲାର୍‌ କମ୍ବା ପାଇନ୍‌ ଜଙ୍ଗଲ୍‌, ସ୍ଥାନେ ସ୍ଥାନେ ବିସ୍ତୃତ ପାଦପ; ବାର୍ଦ୍ଧକ୍ୟ ଅଙ୍ଗେ ଅଙ୍ଗେ; ସମସ୍ତେ ଉଷ୍ମ ବସ୍ତ୍ରରେ ଶରୀର ଆବୃତ କଲାବେଳେ ଏମାନେ ଉଲଗ୍ନ, ଯୋଗୀ ପରି ନିସ୍ପୃହ; ତୁଷାର ମରୁଭୂମିର ତୃଷ୍ଣା ଯେପରି ମୂର୍ତ୍ତ ହୋଇ ଏକ ଏକ ଅରଣ୍ୟରେ ।

ଅସ୍ପଷ୍ଟ ଅକୃତି ସବୁ ଦୃଷ୍ଟିସୀମା ମାତ୍ର ସ୍ପର୍ଶ କରି ଦେଇ ଦୌଡ଼ୁଛନ୍ତି । ଝରଣା ଦିଶୁଛି କୁହୁଡ଼ି ତରଳ ଝରଣା ପରି ।

ଆମେ 'ବାଡେନ୍' ସହରରେ ପହଞ୍ଚିଲୁ; ରେସ୍ତୋରାଁର ଦ୍ୱାର ଦେଶରେ ଗୋଟିଏ ପୁଲ୍‌, ଫୁଆରା ଉଠୁଛି; ଟ୍ରାଉଟ୍ ମାଛ ଖେଳୁଛନ୍ତି

ଗୋଟିଏ ସବୁଜ ପ୍ରାନ୍ତର, ଏଭରଗ୍ରିନ୍ ଝାଡ଼, ମଝେ ମଝେ ଫାମ୍ହାଉସ୍, ରେଡ୍ 'ହ' ଗୁଳ୍ମ, ଜାଲ ଫଳ । ରେସ୍ତୋରାଁରେ ଖଣ୍ଡେ ହେଲେ ଇଂରାଜୀ ପୁସ୍ତକ ବା ପାମ୍ଫଲେଟ୍ ନାହିଁ; ସବୁ ଜର୍ମାନ୍ ।

କୁହୁଡ଼ି ଘୁଞ୍ଚୁ ନାହିଁ, ଟିକିଏ ଦୂରକୁ ଅପସରି ଯାଉଛି ମାତ୍ର । ଆମେ ବ୍ଲାକ୍ ଫରେଷ୍ଟରେ ପହଞ୍ଚିଲୁ । ଅରଣ୍ୟର ଶ୍ରୀ ମାଳ ପାଂଶୁଳ, ମଝେ ମଝେ ବହୁ ଶୃଙ୍ଗଯୁକ୍ତ ପର୍ବତ, ଅରଣ୍ୟ ସଙ୍କୁଳ; ଶୃଙ୍ଗେ ଶୃଙ୍ଗେ ପାଦ ଦେଇ କୁହୁଡ଼ି ଧାଇଁଛି ଯେପରି ଏକ ଉନ୍ମାଦାସାର୍, ହଠାତ୍ ଜୀବନ ପାଇ ! ଏଇ ଅରଣ୍ୟ ମଧ୍ୟରେ ବାଡେନ୍ ସହର; ଏଠି ଗୋଟିଏ ବିଶ୍ୱବିଦ୍ୟାଳୟ ଅଛି । ଏଇ ସହରର ଅଳ୍ପ ଦୂରରେ ରାଇନ୍ ନଦୀ, ନଦୀ ତୀରେ ତୀରେ ବହୁ ଫୁଲ ଫଳ ବଗିଚା, ପଦ୍ମ ପଦ୍ମ ଲମ୍ବାକାନା ଘୁଷୁରି ଚରୁଛନ୍ତି, କୁହୁଡ଼ି ମେଘ ହୋଇ ପାଇନ୍ ବନରେ ବୁଲୁଛି ।

ପର୍ବତର ପ୍ରସ୍ତରସବୁ ଶିଉଳରେ ଶ୍ୟାମକୃଷ୍ଣ, ଲଣ୍ଡା ଲଣ୍ଡା ଗୋଟାଳିଆ ପାହାଡ଼ର ବର୍ଣ୍ଣ ମଧ୍ୟ କୃଷ୍ଣ; ଏକ ପ୍ରକାର ପାଇନ୍ ଗଛ ଏଠି ଅଛି, ତାର ପତ୍ର ଗାଢ଼ ସବୁଜ, ସବୁଜ ଓ କୃଷ୍ଣବର୍ଣ୍ଣର ବାହୁଲ୍ୟ ଯୋଗୁଁ ଏହି ଅରଣ୍ୟର ନାମ ବୋଧେ ବ୍ଲାକ୍ ଫରେଷ୍ଟ ହୋଇଥିଲା ।

ପାଇନ୍ ଗାଢ଼ ସବୁଜ ଓ କଳା ଦିଶୁଥିଲା ବେଳେ ଅନ୍ୟ ବୃକ୍ଷ ସବୁ ପକ୍ୱ ପତ୍ରରେ ରଙ୍ଗୀନ୍ ହୋଇ ଉଠିଛନ୍ତି । ବସ୍ ପାହାଡ଼ ଉପରକୁ ଉଠିଲା; ଉପତ୍ୟକାରେ ମେଘର ଆଭାସ ଖେଳି ବୁଲୁଥାଏ । ସ୍ତର ପରେ ସ୍ତର ଅରଣ୍ୟ ଓ ପର୍ବତ ଲଙ୍ଘନ କରି ବସ୍ ଉଠୁଥାଏ, ମଝେ ମଝେ ରେସ୍ତୋରାଁ, ଖେଳ ପଡ଼ିଆ, ହୋଟେଲ୍ସବୁ, ଦୋକାନ; ଝରକା ତଳକୁ ପୁଷ୍ପିତ ଲତା ଓହଳି ପଡ଼ୁଛି । ପାହାଡ଼ ଶ୍ରେଣୀ ମଧ୍ୟରେ ଛୋଟ ଛୋଟ ସହର ସବୁ ଲଙ୍ଘନ କରି ଆମେ ହୋଟେଲ 'ଆଲ୍ଡର୍ ପୋଷ୍ଟ'ରେ ପହଞ୍ଚିଲୁ । ଝରକାରେ କେଉଁଠି ମକ୍କା ଫୁଲ କେଉଁଠି ବା ପ୍ଲାଷ୍ଟିକ୍ ଫୁଲସବୁ ସଜା ହୋଇଛି । ପ୍ରତ୍ୟେକ ଟେବୁଲ୍ ଉପରେ ଗୋଟିଏ ଗୋଟିଏ ଗୋଲାପ ଗୁଚ୍ଛ ଫୁଲଦାନୀରେ ରଖା ହୋଇଛି ।

ଲଞ୍ଚରେ ଆକ୍ତୁରକଣ୍ଠା ପ୍ରଧାନ । ପରିବେଷଣକାରୀ କହୁଥିଲେ – ଏଇ ଆମ ଜର୍ମାନ୍ ବ୍ରେଡ୍; ବୟ୍‌ମାନେ ପ୍ରାୟ ଇଂରାଜୀ ବୁଝୁ ନଥାନ୍ତି । ଖାଲି 'ଗୁଥ୍ ଗୁଥ୍' (good) କହୁଥାନ୍ତି । ଗାଇଡ୍ ବୁଝେଇଲା ପରେ ମୋ ଲାଗି ସବା ଶେଷରେ ଦୁଇଟି ଡିମ୍ବ, କଟୁ ବଟ୍, ମଟରଦାନା ଓ ଗିଲାସେ ଦୁଧ ଆସିଲା ।

ତାପରେ ପୁଣି ଆମେ ଚାଲିଲୁ; ପାଇନ୍ ବନର ମଧ୍ୟେ ମଧ୍ୟେ ଟାଇଲଘର, କେଉଁଠି କଖାରୁ ଲତା ମାଡ଼ୁଛି; ପାଚିଲା କଖାରୁସବୁ ଗଡ଼ୁଛି । ଆପଲ୍‌ରେ ଗଛ ଭାଙ୍ଗି ପଡ଼ୁଛି ଯେମତ । ଆମେ ଲିବରେଜ୍ ମିଚେଲ୍ ଗ୍ରାମ ଓ ସେଓଜ ଗ୍ରାମ ଅତିକ୍ରମ କରି ସ୍ୱିଜର୍‌ଲ୍ୟାଣ୍ଡରେ ପ୍ରବେଶ କଲୁ ।

## ସ୍ୱିଜର୍‌ଲାଣ୍ଡ

ସ୍ୱିଜର୍‌ଲାଣ୍ଡ ଓଡ଼ିଶାର ପ୍ରାୟ ଏକ ଚତୁର୍ଥାଂଶ—୧୫୯୫୦ ସ୍କୋୟାର୍ ମାଇଲ୍ । ଏହାର ଲୋକସଂଖ୍ୟା ପ୍ରାୟ ୪୦ ଲକ୍ଷ । ଏହା ଜର୍ମାନ, ଫରାସୀ ଓ ଇଟାଲୀୟ ସଂସ୍କୃତିର ମିଳନ ସ୍ଥଳ । ଏଠି ଚାରିଗୋଟି ଭାଷା ପ୍ରଚଳିତ—ଜର୍ମାନ୍, ଫ୍ରେଞ୍ଚ, ଇଟାଲୀୟ ଓ ରୋମାନଜ୍; ପ୍ରଥମ ତିନିଗୋଟି ଭାଷା ଅଫିସିଆଲ୍; ସେମାନଙ୍କୁ ସ୍ୱିଜର୍‌ଲ୍ୟାଣ୍ଡରେ ସମ ଆସନ ପ୍ରଦାନ କରା ଯାଇଛି । ଚତୁର୍ଥଟି କଥିତ—ତାର ଦୁଇଗୋଟି ଉପଭାଷା ରହିଅଛି—ସମ୍‌ସେଲ୍ଭା ଓ ଲଡିନ୍ । ଏହି ଦେଶରେ ଚାରିଗୋଟି ମୁଖ୍ୟ ନଗର—ଜୁରିଚ୍, ଜେନେଭା, ବେସେଲ୍ ଓ ବର୍ନ । ପ୍ରତ୍ୟେକ ନଗରର ଲୋକସଂଖ୍ୟା ଏକ ଲକ୍ଷରୁ ଅଧିକ । ବର୍ନ ସୁଇଜରଲଣ୍ଡର ରାଜଧାନୀ ।

୧୮୧୪ ଖ୍ରୀଷ୍ଟାବ୍ଦରେ ସୁଇଜରଲେଣ୍ଡ ଫ୍ରାନ୍ସ କବଳରୁ ମୁକ୍ତ ହେଲା । ଭିଏନା କଂଗ୍ରେସରେ ଇଉରୋପୀୟ ଶକ୍ତିମାନେ ସ୍ୱିସ୍ ସ୍ୱାଧୀନତା ଓ ନିରପେକ୍ଷତାକୁ ସ୍ୱୀକୃତି ପ୍ରଦାନ କରିଥିଲେ । ଆଲପସର ଘାଟି ଜଗି ରହି ସ୍ୱାଧୀନ ସ୍ୱିସ୍ ବରଂ ବୃହତ୍ ଶକ୍ତିମାନଙ୍କର ସ୍ୱାର୍ଥ ସାଧନ କରି-ପାରିବ—ସେମାନଙ୍କ ମନରେ ଏଇ ବିଶ୍ୱାସ ଜନ୍ମିଥିଲା । ତାପରେ ସ୍ୱିସ୍ ସ୍ୱାଧୀନତାରେ କୌଣସି ଇଉରୋପୀୟ ପ୍ରବଳ ଶକ୍ତି ହସ୍ତକ୍ଷେପ କରିନାହାନ୍ତି ।

ସ୍ୱିସ୍‌ମାନେ ଇଉରୋପରେ ସବୁଠାରୁ ଅଧିକ ସୁଖ ଶାନ୍ତିରେ ବାସ କରୁ-ଅଛନ୍ତି ।

ସମସ୍ତ ଦେଶଟି ୨୨ଟି ଭାଗରେ ବିଭକ୍ତ; ପ୍ରତ୍ୟେକ ବିଭାଗକୁ କାଣ୍ଟନ୍ କହନ୍ତି; ସ୍ୱିସ୍‌ମାନେ କେନ୍ଦ୍ର ଶାସକ ହସ୍ତରେ ସମସ୍ତ ଶକ୍ତି ନିହିତ କରିବାର ବିରୋଧୀ । ପ୍ରତ୍ୟେକ କାଣ୍ଟନ୍ ବହୁ ପରିମାଣରେ ସ୍ୱାୟତ୍ତଶାସନ ଉପଭୋଗ କରେ ।

ସ୍ୱିଜର୍‌ଲଣ୍ଡର ଅଧିକାଂଶ ଅଞ୍ଚଳ ପାର୍ବତ୍ୟ; ଏକ ଚତୁର୍ଥାଂଶ ପ୍ରାୟ ବନ୍ଧ୍ୟ । ଦେଶ ଯେପରି ଖାଦ୍ୟ ଦିଗରୁ ସ୍ୱାବଲମ୍ବୀ ହୋଇ ପାରିବ, ସରକାର ବିଶେଷ ଦୃଷ୍ଟି ଦେଇଥାନ୍ତି । ସମଗ୍ର ଦେଶରେ ପ୍ରାୟ ଦୁଇଲକ୍ଷ କୋଡ଼ିଏ ହଜାର ଫାର୍ମ ରହିଅଛି । ଅଧାଅଧି ଫାର୍ମ ବାର ଏକରରୁ କମ୍ । ପଚିଶ ଏକର ଜମି ଥିଲେ ଏଠି ଗୋଟିଏ ପରିବାର ସ୍ୱଚ୍ଛନ୍ଦ ଭାବରେ ଚଳିପାରେ ।

'ମଣ୍ଟବ୍ଲେନା' ସ୍ୱିସ୍ ଆଲ୍‌ପସର ଉଚ୍ଚତମ ଶୃଙ୍ଗ; ପାହାଡ଼ ଉପରୁ ଗୋଡ଼ କାଢ଼ି ରାସ୍ତା ହୋଇଛି । ମାଟିଥିବା ଅଞ୍ଚଳମାନଙ୍କରେ ଜଳସେଚନ କରିଯାଇ ବିସ୍ତୃତ ଭାବେ ଅଙ୍ଗୁର ଚାଷ କରି ଯାଉଛି । ଅଙ୍ଗୁରରୁ ନାନାବିଧ ମଦ୍ୟ ପ୍ରସ୍ତୁତ ହୁଏ । ସ୍ୱିଜର୍‌ଲଣ୍ଡର ଗାଈ ମଇଁଷି ପରି ଧୂସର କଳା, ତାର ଶିଙ୍ଗ କଟାଯାଏ ନାହିଁ । ପୃଥିବୀର ଖାଦ୍ୟ ବଜାରରେ ସ୍ୱିସ୍ ଛେନାର ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି । ଏ ଦେଶରେ ଶୀତ ଦୀର୍ଘ, ଗ୍ରୀଷ୍ମ ସ୍ୱଳ୍ପକାଳ ସ୍ଥାୟୀ; ଗାଈଗୋରୁ ବର୍ଷକେ ଛ'ମାସ ଗୁହାଳରେ ବନ୍ଧା ହୋଇ ରହନ୍ତି । ଗ୍ରୀଷ୍ମ ଓ ଶରତରେ ଗୋପାଳମାନେ ଗାଈଙ୍କୁ ପାହାଡ଼କୁ ଚରାଇ ନିଅନ୍ତି । ଇଉରୋପୀୟ ଲୋକ-ସାହିତ୍ୟରେ ଏ ଦେଶର ଗାଈଆଳ ଗୀତର ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି । ଆନ୍ତର୍ଜାତିକ ରେଡ଼କ୍ରସ୍ ଓ ଆନ୍ତର୍ଜାତିକ ଶ୍ରମିକର କେନ୍ଦ୍ର ଅନୁଷ୍ଠାନ ଜେନେଭାରେ ଅବସ୍ଥିତ ।

ଏ ଦେଶର ଗଗନ ପବନ ନିର୍ମଳ । ରେଲ୍‌ଗାଡ଼ି କୋଇଲାରେ ଚଳେ । ବାକି ସମସ୍ତ କଳ କାରଖାନା ବିଦ୍ୟୁତ୍ ଚାଳିତ । ଯାତ୍ରୀ

ବ୍ୟବସାୟ ଏ ଦେଶର ମୁଖ୍ୟ ବ୍ୟବସାୟ । ଯାତ୍ରୀଙ୍କ ଲାଗି ହୋଟେଲ୍, ରେସ୍ତୋରାଁ ଓ ଦୋକାନବଜାର ଖୋଲା ଯାଇଛି—ସମସ୍ତ ଦେଶକୁ ସଜେଇ ଦିଆ ହୋଇଛି—ଗଛବୃଛ, ଘାସ ଓ ଫୁଲରେ । କୋଉଠି କିଛି ରୁକ୍ଷ କର୍କଶ, ମଳିନ ଅପରିଚ୍ଛନ୍ନ ଆଖିରେ ପଡ଼େ ନାହିଁ । ସମସ୍ତ ଦେଶଟି ହୋଇଛି ଶରୀର ସ୍ୱାସ୍ଥ୍ୟ ନିବାସ; ଗୋଟିଏ ସହସ୍ରଦଳ ପଦ୍ମର ଚିର ବିକଚ; ସୌନ୍ଦର୍ଯ୍ୟଲକ୍ଷ୍ମୀ ତା ମଧ୍ୟରେ ହିଁ ଲୀଳା କରୁଛନ୍ତି ।

ଘୋ ଘଣ୍ଟାଶିଳ୍ପ ବିଶ୍ୱପ୍ରସିଦ୍ଧ କିନ୍ତୁ ବଜାରରେ ଯେ କୌଣସି ଦୋକାନର ଗ୍ୟାରେଣ୍ଟି ଗ୍ରହଣୀୟ ନୁହେ ; ଠକାମିରେ ପଡ଼ିବାର ସମ୍ଭାବନା ପଦେ ପଦେ ।

ସ୍ୱିସ୍ ମାନେ ଜଗତକୁ ଚକୋଲେଟ୍ ଖୋଇ କମ ପଇସା ଟାଣି ନେଇ ପାଉନାହାନ୍ତି । ଚଷମାକାଚ, ଜୋତା, ପ୍ୟାକିଂ କରିବା ଯନ୍ତ୍ର, ସର୍ଭେ କରିବା ଯନ୍ତ୍ର, କୃଷି ଯନ୍ତ୍ରପାତି, ଟାଇପି ରାଇଟର୍, ଛପାକଳ ଆଦି ଦ୍ରବ୍ୟ ଓ ଯନ୍ତ୍ର ଉତ୍ପାଦନ ଯୋଗୁଁ ସ୍ୱିଜର୍ଲଣ୍ଡ ଏକ ଶିଳ୍ପ ପ୍ରଧାନ ଦେଶ ହୋଇ ଉଠିଛି । ଏ ଦେଶରେ କୌଣସି ଖଣିଜ ଦ୍ରବ୍ୟ ନାହିଁ ତୁଳା ବା ପଶମ ଉତ୍ପାଦିତ ହୁଏନାହିଁ । ବାହାରୁ ସେ ସବୁ ଆମଦାନି କରି କାରଖାନାରେ ବ୍ୟବହାର କରିବାକୁ ହୁଏ । ଶତକରା ପଚାଶଜଣ ଲୋକ କଳ କାରଖାନାରେ କାର୍ଯ୍ୟ କରନ୍ତି; ଏକଚତୁର୍ଥାଂଶରୁ କମ୍ଲୋକ କୃଷି କାର୍ଯ୍ୟ କରିଥାନ୍ତି ।

ସ୍ୱିଜରଲଣ୍ଡ ଏକ ଜଳ ରାଜ୍ୟ; ରାଇନ୍, ରୋନ୍ ପ୍ରଭୃତି ନଦୀ ଏହି ଦେଶରୁ ବାହାରିଛି; ବହୁ ହ୍ରଦ, ପୁଷ୍କରଣୀ ରହିଛି । ବନଶୀ ପକାଇ ମାଛ ମାରିବା ଏକ ବିନୋଦନ; ମାଛମରା ଏକ ପ୍ରଧାନ ବ୍ୟବସାୟ; ରେନ୍ବୋ ଟ୍ରାଉଟ୍, ପର୍ଚ୍ଚ, ବ୍ରକେଟ୍ ଓ ଓମ୍ବର ପ୍ରଭୃତି ନାନା ଜାତିର ମତ୍ସ୍ୟ ଧରା ହୋଇଥାଏ ।

ଯାତ୍ରୀଙ୍କୁ ନୌକାରେ ବୁଲାଇ ଦୃଶ୍ୟ ଦେଖାଇବା ମଧ୍ୟ ଏକ ବ୍ୟବସାୟ; ସ୍ୱିସ୍ ହ୍ରଦରେ ହଠାତ୍ ଝଡ଼ ଉଠେ, ଯାତ୍ରୀ ବିପନ୍ନ ହେବାର ସମ୍ଭାବନା । ସେପରି ନିପୁଣ ଚାଳକ ନ ହେଲେ ଝଡ଼ କବଳରୁ ବର୍ତ୍ତି

ଆସିବା ଅସମ୍ଭବ । ପର୍ବତ ଆରୋହଣ, ଶୀତକାଳରେ ସ୍କି, ସ୍କେଟିଂ କ୍ରୀଡ଼ା ଲାଗି ବହୁ ବ୍ୟକ୍ତି ସ୍ୱିଜରଲଣ୍ଡ ଆସିଥାନ୍ତି ।

ରାଜ୍ୟରେ ଦୁଇଶ ପଚାଶ ଗୋଟି ଉଷ୍ଣ ପ୍ରସ୍ରବଣ ଅଛି । ଏଥିରେ ସ୍ନାନ କରିବା ଲାଗି ଡାଇବେଟିସ୍, ରକ୍ତଚାପ, ଗଣ୍ଠିବାତ ରୋଗୀ ଆସିଥାନ୍ତି । ବର୍ଷସାରା ଏବେ ପାର୍ଥୀଙ୍କ ଭିଡ଼ ଲାଗି ରହିଛି—ସ୍ୱିଜରଲଣ୍ଡ 'ଭ୍ରମଣକାରୀର ସ୍ୱର୍ଗ' ବୋଲି ବିଜ୍ଞାପିତ ।

## ରାମ୍ ରେନ୍‌ଫଲ୍

'ସେଫ୍ ହ ଉଜେନ୍' ସହର ଅତିକ୍ରମ କରି ଆମେ ରାଇନ୍ ନଦୀର ଏହି ଜଳପ୍ରପାତ ନିକଟରେ ପହଞ୍ଚିଲୁ । 'ରାଇନ୍'ର ଗୋଟିଏ ଦ୍ୱୀପ ଉପରେ ବସି ଶତହେରଜ ଦୂରରୁ ପ୍ରପାତଟି ଦେଖିବାର ବ୍ୟବସ୍ଥା ହୋଇଛି । ପ୍ରପାତର ସ୍ରୋତ ପାହାଡ଼ହାର ଗୁଡ଼ିଏ ଭାଗରେ ବିଭକ୍ତ; କିନ୍ତୁ କୌଣସିଟି ଚାଳିଶ ଫୁଟ୍‌ରୁ ଅଧିକ ଉଚ୍ଚ ନୁହେଁ । ଗାଢ଼ ନୀଳ ନିର୍ମଳ ଜଳ, ଗଭୀର ଜଳରେ ସନ୍ତରଣ କଲେ ବି ଟ୍ରାଉଟ୍ ସବୁ ଦେଖାଯାଉଥାନ୍ତି ।

ମେଘୁଆ ପାଗ, ଜଳବିନ୍ଦୁର ଏକ ଧୂଳିଆ କୁହୁଡ଼ି ଉଠୁଥାଏ । ସିଗଲସବୁ ଉଡ଼ୁଥାନ୍ତି । ଦ୍ୱୀପର ଏକ ନିର୍ଜନ କୋଣରେ ବସି ମୁଁ ଦେଖୁଥାଏ—ନଦୀ ତୀରବର୍ତ୍ତୀ ପାହାଡ଼ ଉପରେ ରେସ୍ତୋରାଁ, ଝରକାର ଲାଲଫୁଲ, ଜଳରେ ପ୍ରତିଫଳିତ ଆଲୋକମାଳା, ଦ୍ୱୀପର ନାନା ପୁଷ୍ପ ଗୁଳ୍ମ ଓ ବୃକ୍ଷ ବହୁଳ ବନସ୍ପତି, ଶୁଣୁଥାଏ ଗୁଣ୍ଡୁଚିର ଅଭିନନ୍ଦନ ସ୍ୱର ବା ପ୍ରପାତର ମନ୍ଦାକ୍ରାନ୍ତା ।

ଜର୍ମାନ୍ ଏକ ମାର୍କର ରେଜା ମୋ ପାଖରେ ଥାଏ । ଏଠି ତାକୁ କୌଣସିମତେ ଖର୍ଚ୍ଚ କରିବାକୁ ହେବ । ତେଣୁ ଭୋକ ନ ଥିଲେ ବି ଖାଇଲି । ରାଇନ୍ ପ୍ରପାତ ଦୃଶ୍ୟର କିଛି ଛବି ପୋଷ୍ଟକାର୍ଡ କିଣିଲି । ପ୍ରପାତ ଦେଖି ଫେରୁ ଫେରୁ ମୋର ପନ୍ଦର ମିନିଟ ଡେରି ହୋଇଗଲା । ମୋତେ ଖୋଜି ଆଣିବା ଲାଗି ଡ୍ରାଇଭର ରାଇନ୍ ଦ୍ୱୀପକୁ ଯାଇଥିଲେ, ପୁଣି ତାଙ୍କୁ ଡାକିଆଣିବା ଲାଗି ଆଉ ଜଣେ ଗଲେ ।

ପ୍ରପାତ ଦର୍ଶନ ପରେ ପୁଣି ଆମ୍ଭେମାନେ ଜର୍ମାନୀରେ; ତାପରେ ସୁଇଜରଲାଣ୍ଡରେ, ପୁଣି ଜର୍ମାନୀରେ ଓ ଶେଷକୁ ସୁଇଜରଲାଣ୍ଡରେ ପ୍ରବେଶ କଲୁ । ବାରମ୍ବାର ପାସ୍‌ପୋର୍ଟ ଚେକ୍ ବଡ ବିରକ୍ତିକର । ଥରେ ଜର୍ମାନ୍ ଅଫିସର୍ ମୋ ପାସପୋର୍ଟ ଘଡ଼ିଏ କାଳ ରଖିବାରୁ ମନରେ ବିଶେଷ ଶଙ୍କା ହୋଇଥିଲା, ଜାଣେଁ ତ ମୋତେ ଅଟକାଇ ଥିଲେ—ଆଜି ପାସ୍‌ପୋର୍ଟ ଫେରିବ ନାହିଁ, ତୁମେ ଘରକୁ ଫେରିପାରି ପାରିବ ନାହିଁ ।

କିଛି ଦୂର ଗଲାପରେ ଆମେ ପୁଣି ରାଇନ୍ ନଦୀ ଅତିକ୍ରମ କଲୁ, ସ୍ରୋତ ପ୍ରଖର । ଗୋଟିକ ପରେ ଗୋଟିଏ ସୁନ୍ଦର୍ ଗ୍ରାମ ପଡ଼ିଲା, ବୁଦୁବୁଦିକିଆ ପାହାଡ଼ ତଳେ; ବାଡ଼ରେ ଆମ ଆଡ଼ ପରି ଖଟଗଡା, ଏ କି ଫଳ ? ନାରଙ୍ଗ ? କ୍ଷୁଦ୍ରା ? ଅବିକଳ ନାରଙ୍ଗ ପରି ବସ୍ତୁଟି, ଖଟା, ଲୋକେ ଅଗ୍ରାହ୍ୟ କରନ୍ତି ।

ସ୍ୱିଜରଲଣ୍ଡର ଅଗଣିତ ପାହାଡ଼—ତରଙ୍ଗ ପରେ ତରଙ୍ଗ ଯେପରି ଉଠୁଛି—ତା ମଧ୍ୟରେ ସନ୍ଧ୍ୟା ହେଲା; କିନ୍ତୁ ତାର ସୁବର୍ଣ୍ଣ ଶ୍ରୀ ଏ ପାଖେ ଭଲେ ହେଲେ ଫୁଟିଲା ନାହିଁ; କେବଳ ଏଠି ସେଠି କେତୋଟି ଛିଟା, ପ୍ରକୃତ ରାଣୀଙ୍କର ହାତ ଛୁଆଁ ଲାବଣ୍ୟ; ପାଇନ୍ ବନରେ ଇତସ୍ତତଃ ଉଜ୍ଜ୍ୱଳ ପାଟଳ ଆଭା, ତଥାପି ପ୍ରାଣକୁ ମୋର ଅପୂର୍ବ ପ୍ରଫୁଲ୍ଲତାରେ ଉଜ୍ଜ୍ୱଳ କରିଦେଲା । ଦୁଇ ସଖୀ ହସାହସି ହୋଇ, ପ୍ରିୟ ପ୍ରିୟା କାନ୍ଧରେ ହାତ ପକାପକି ହୋଇ ବୁଲୁଛନ୍ତି; ସୂର୍ଯ୍ୟମୁଖୀ ମୁଣ୍ଡ ନୁଆଁଉଛି, ଦୁର୍ଦ୍ଦିନ ସନ୍ଧ୍ୟାରେ ଅବସନ୍ନତର ।

## ଜୁରିଚ୍

ଜୁରିଚ୍‌ରେ ଯୁ ଖାଇଲୁ, କିଛି ସୁଇସ୍ ମୁଦ୍ରା ଭଙ୍ଗାଇ ରଖିଲୁ । ସୁଇଜରଲଣ୍ଡରେ ଫ୍ରାଙ୍କ୍ ଚଳେ, ଏକ ଡଲାର୍ = ୪.୫୦ ଫ୍ରାଙ୍କ୍ ।

ଜୁରିଚ୍ ଏ ଦେଶର ବୃହତ୍ତମ ନଗର; ଲୋକସଂଖ୍ୟା ଚାରିଲକ୍ଷରୁ କିଛିଟା ଅଧିକ । ଏହା ସୁଇସ୍ ସଂସ୍କୃତିର କେନ୍ଦ୍ର; ଏହାର ପ୍ରାକୃତିକ

ଶ୍ରୀ ଅତ୍ୟନ୍ତ ମନୋରମ, ଏ ପାଖେ ଜୁରିଚ୍ ହ୍ରଦ, ଆଉପାଖେ ପାହାଡ଼ ଶ୍ରେଣୀ, 'ଲିମ୍ମଟ' ନଦୀ ସହରର ମଧ୍ୟ ଭାଗରେ ପ୍ରବାହିତ ।

ପାଲବନ୍ଧା ନୌକାସବୁ ଜୁରିଚ୍ ହ୍ରଦରେ ଚାଲିଛି । କୂଳ କୂଳେ ପାର୍କ ଲମ୍ବିଛି, ମଧ୍ୟେ ମଧ୍ୟେ ଜଙ୍ଗଲେ, ଓକ୍ । ଭ୍ରମଣକାରୀ ଦଳ ରହିଛନ୍ତି । ଦଳ ଦଳ ଲୋକ ହ୍ରଦ କୂଳରେ ଭ୍ରମଣ କରୁଛନ୍ତି । ହ୍ରଦ ଜଳ ଉପରେ କୁହୁଡ଼ି ଭାସୁଛି; ସନ୍ଧ୍ୟା ପରେ ଗୋଟାଏ ଲାଲ ମେଘ କୁଆଡ଼ୁ ବାହାରିଚ—ପୁଲାଏ ଅଦ୍ଭୁତ ଅଙ୍କୁର ପରି ।

ପର୍ବତ ଉପରକୁ ସହର ଉଠିଛି; ଘର ଉପରେ ମାଡ଼ିଛି ଆଇଭି, ରଙ୍ଗୀନ୍ ପତ୍ରସ୍ପ ବନସ୍ପତି, ସ୍ଥାନେ ସ୍ଥାନେ ଏଭରଗ୍ରୀନ୍; କେଉଁଠି କେମିତି ଗୋଟିଏ ଗୋଟିଏ କପର ପ୍ଲାଣ୍ଟ । ସହରରେ ଶୋଭାପାଇଁ ଗ୍ରାମୀଣ ପରିବେଶ ସୃଷ୍ଟି କରାହୋଇଛି, ଲୋକମାନଙ୍କର ଯେପରି ଭ୍ରମଣ ମନୋବୃତ୍ତି ରହିଛି, ଭ୍ରମଣ ଲାଗି ସେହିପରି ପ୍ରଶସ୍ତ, ସୁନ୍ଦର କ୍ଷେତ୍ର ମଧ୍ୟ ପ୍ରସ୍ତୁତ କରାଯାଇଛି ।

ଜୁରିଚ୍ ସହର ଦୀର୍ଘକାଳ ଜର୍ମାନ ଅଧିକାରରେ ଥିଲା । ଜର୍ମାନ୍ ସମ୍ରାଟ ଚାର୍ଲ୍‌ମାନ୍ ସ୍ୱୟଂ ଏଠାରେ ବାସ କରିଥିଲେ । ତାଙ୍କର ସବୁ ପ୍ରାଣୀରେ ସମଭାବ ଏକ ଜନଶ୍ରୁତିରେ ପରିଣତ ହୋଇଅଛି । ସେ ମନୁଷ୍ୟ ପଶୁ, ପକ୍ଷୀ, ସରୀସୃପ ସମସ୍ତଙ୍କ ପ୍ରତି ସୁବ୍ୟବହାର କରିବେ ବୋଲି ସଂକଳ୍ପ କରିଥିଲେ । ଥରେ ଗୋଟିଏ ସର୍ପ ଆସି ଘଣ୍ଟି ବଜାଇଲା । ସମ୍ରାଟ ସର୍ପର ଅନୁସରଣ କରି ଦେଖିଲେ ଯେ ଗୋଟିଏ ଗୋଧି ସର୍ପର ଡିମ୍ବ ଉପରେ ବସିଅଛି । ସେ ତତ୍‌କ୍ଷଣାତ୍ ଗୋଧିକ ବିନାଶ କରିବା ଲାଗି ଆଦେଶ ଦେଲେ । କୃତଜ୍ଞ ସର୍ପ ତା ଆରଦିନ ପୁଣି ଘଣ୍ଟି ବଜାଇ ସମ୍ରାଟଙ୍କୁ ଗୋଟିଏ ଅମୂଲ୍ୟ ରତ୍ନ ଉପହାର ଦେଇଥିଲା ।

ଜୁରିଚ୍ ପାର ହୋଇ ଆମେ ଦୁଇ ପାହାଡ଼ ଶ୍ରେଣୀ ମଧ୍ୟରେ ଗତି କଲୁ । ଲୁକେରନ୍ ହ୍ରଦରେ ପାହାଡ଼ର ଛାଇଛାଇଆ ଶ୍ରୀ, କୁହୁଡ଼ି ଘୋଟିଛି, ଜମାଟ ବାନ୍ଧିଛି ଅନ୍ଧକାର ସହିତ ମିଶି—ଯେତେ ଯେପରି ଏକ ଦାନବର ଅବତାର—ଆକାଶକୁ ଲାଗିଛି ତାର ମସ୍ତକ ।

## ପାଲେସ ହୋଟେଲ

ଲୁଜେରନର ଏଇ ହୋଟେଲରେ ଦୁଇଦିନ ରହିଲୁ । 'ନାମ୍ ବଡ଼ା ଦର୍ଶନ ଥୋଡ଼ା' ନୁହେ, ପ୍ରକୃତରେ ଏ ଗୋଟିଏ ପ୍ରାସାଦ; ମାତ୍ର ତ୍ରି' ବର୍ଷ ହେଲା ସ୍ଥାପିତ । ପ୍ରତିବର୍ଷ ମାର୍ଚ୍ଚ ପନ୍ଦରଠାରେ ଖୋଲେ, ଅକ୍ଟୋବର ୩୧ ତାରିଖରେ ବନ୍ଦ ହୋଇଯାଏ । ତା ପରେ ଯେଉଁମାନେ ଶୀତ କାଳରେ କ୍ରୀଡ଼ା ବିନୋଦନ ଲାଗି ଆସନ୍ତି, ସେମାନେ ପର୍ବତ-ଚୂଡ଼ାର ହୋଟେଲରେ ରହନ୍ତି । ମୋଟ ଉପରେ ଯାତ୍ରୀଙ୍କ ଲାଗି ଏ ପ୍ରାସାଦ । ଆଧୁନିକ ରାଜକୀୟ ସୁଖସ୍ୱାଚ୍ଛନ୍ଦ୍ୟ ଭୋଗ କରିବାର ସମସ୍ତ ବ୍ୟବସ୍ଥା ଏଥିରେ ରହିଛି, ମାର୍ବଲ ଚଟାଣ, ମାର୍ବଲ ସୋପାନ, ଅଟୋ-ମାଟିକ୍ ଲିଫଟ୍, ପ୍ରତ୍ୟେକ କୋଠରୀରେ ଫୋନ୍, ଭବ୍ୟ ଶଯ୍ୟା; ଟେବୁଲ୍, ଚୌକି, ଅଲମାରି, କାନ୍ଥ ଦର୍ପଣ, ଟେବୁଲ୍ ଲାଇଟ୍, କାର୍ପେଟ୍ ତ ସାଧାରଣ କଥା; କିନ୍ତୁ ତାର କଳା ପାଠକ ଦୃଷ୍ଟି ଆକର୍ଷଣ କରେ । ଉଷ୍ଣ ଶୀତଳ ବାରି, ରାଜକୀୟ ଖାଦ୍ୟପେୟ ବାସନକୁସନ, ଟେବୁଲ୍ ସଜ୍ଜା, ଗୃହସଜ୍ଜା, ବୟମାନଙ୍କ ଚାକଚକ୍ୟ ଏବେ ବି ମୋର ମନେ ପଡ଼େ । ଜଣକର ଗୋଟିଏ ଦିନ ରହଣିକୁ ଖାଦ୍ୟ ପାନୀୟ ବ୍ୟତୀତ ଦେୟ ସାତ ଏକୋଇଶ ଡଲାର୍ ।

ଘରର ଚାରି କୋଣରେ ଚାରିଟା ଆଲୋକ; ସବୁ ଗୁଡ଼ିକ ନ ଲିଭାଇଲେ ନିଦ ହେବନାହିଁ । ସ୍ୱିଚ୍ ଖୋଜି ବନ୍ଦ କରୁ କରୁ କଲିଂବେଲ୍‌ଟି ଟିପି ହୋଇଗଲା । ରାତି ଏଗାରଟା । ମୁହୂର୍ତ୍ତକ ମଧ୍ୟରେ ଅଟୋମାଟିକ୍ ଲିଫ୍ଟରେ ଉଠିଆସି ଛିଡ଼ା ହେଲା, ସାମ୍ନାରେ ଏକ ସ୍ୱିସ୍ ସୁନ୍ଦରୀ— ଅର୍ଦ୍ଧସ୍ନାତା ସାଗରକୀ ଯାଦୁକରୀ ମନ୍ତ୍ର ବଳରେ ଉଠି ଆସିଲା ପରି । ପଚାରିଲା—

'ମତେ ଡାକିଲେ ?'

'ଡାକିବା ଉଦ୍ଦେଶ୍ୟ ନ ଥିଲା; ସ୍ୱିଚ୍ ଖୋଜୁ ଖୋଜୁ ଭୁଲ ହୋଇଗଲା; କ୍ଷମାକର ।'

ନିଦ୍ରୋତ୍ଥିତା ମୁଖ ଅଳସେଇ ଧୀରେ ଚନ୍ଦ୍ରା ମଧୁର କଣ୍ଠରେ କହିଲା—

‘ସେ କଷ୍ଟ ଭୁଲିଲେ; ଏବେ ଫେରି ଯାଇପାରେ ?’

‘ଧନ୍ୟବାଦ ।’

ପ୍ରାତରାଶ ପରେ ହ୍ରଦ କୂଳକୁ ବୁଲି ବାହାରିଲି, ଏକୁଟିଆ । ସୁନ୍ଦର ସୁନ୍ଦର ସ୍ଥାନରେ ଏବେ ମନ୍ଦିର ବା ଚର୍ଚ୍ଚ ନିର୍ମିତ ହେଉନାହିଁ, ହେଉଛି ରେସ୍ତୋରାଁ; ପଗପୂର୍ବ ମାନବର ଯୁଗ ଏ; ମାନବର ଉପଭୋଗ ଲାଗି ସର୍ବାଙ୍ଗୀନ ବ୍ୟବସ୍ଥା ରହିଛି ଚତୁର୍ଦ୍ଦିଗରେ; ହ୍ରଦ ମଧ୍ୟସ୍ଥ ‘ସବାଜ୍’ ହୋଟେଲ୍ ମାନବକୁ ପ୍ରକୃତିର ପ୍ରତ୍ୟକ୍ଷ ସ୍ପର୍ଶ ଦେବା ଲାଗି ଉଦ୍ଦିଷ୍ଟ ।

ହ୍ରଦ କୂଳେ କୂଳେ ଧାଡ଼ି ଧାଡ଼ି କଷ୍ଟାନିଆନ୍ ଗଛ—ଏହାର ଫୁଲ ଲାଲ୍, କେଣ୍ଡା କେଣ୍ଡା ହୋଇ ଫୁଟେ । ଛତାପରି ଡାଳସବୁ ରହିଛି, ପତ୍ର ଓସାରିଆ, ପାଚି ତଳେ କୁଢ଼େଇ ହୋଇ ପଡ଼ିଛି ।

ଡାହୁକ ପରି କୃଷ୍ଣାଭ ପକ୍ଷୀ ସବୁ ହ୍ରଦରେ ସନ୍ତରଣ କରୁଛନ୍ତି । ମୁଣ୍ଡରେ ତାଙ୍କର ଧଳା ଧଳା ରାମାନନ୍ଦୀ ଟିକା; କିନ୍ତୁ ବୈଷ୍ଣବଙ୍କ ପରି ନିରାମିଷ କିମ୍ବା ଅହିଂସ୍ର ସେମାନେ ନୁହନ୍ତି । ବେଶ୍ ଯୋଦ୍ଧା । ସିଗଲ୍-ମାନଙ୍କୁ ମାରି ଘଉଡ଼ାଇ ଦେଉଛନ୍ତି । ସିଗଲ୍ ହଂସପରି, କିନ୍ତୁ ଆକାରରେ କ୍ଷୁଦ୍ରତର; ଶ୍ୱେତ; ହଂସ ଚଞ୍ଚୁଠାରୁ ସିଗଲ୍‌ର ଚଞ୍ଚୁ କିଞ୍ଚିତ୍ ସରୁ । ଡେଣା ଫଡ଼ ଫଡ଼ କରି କେତେବେଳେ ସେମାନେ କୂଳରେ ମୁହୂର୍ତ୍ତେ ସ୍ନାନ କରୁଛନ୍ତି, କେତେବେଳେ ମାଛକୁ ବକ ପରି ଧ୍ୟାନ କରୁଛନ୍ତି । ବିଦ୍ୟାର୍ଥୀର ଏଇ ଦୁଇଟି ଲକ୍ଷଣ ସେମାନଙ୍କଠାରେ ବିଦ୍ୟମାନ ।

ଯାତ୍ରୀ ଦେଖିବା ମାତ୍ରେ ସେଇ ଟିକାକଟା ପକ୍ଷୀ ଆଉ ସିଗଲ୍ ଧାଡ଼ି ଦେଉଛନ୍ତି ଖାଦ୍ୟ ଆଶାରେ । ଆଶ୍ରମ ପକ୍ଷୀ ପରି ନିର୍ଭୟ, ପୋଷା ପକ୍ଷୀ ପରି ପରନିର୍ଭରଶୀଳ । ବନ୍ୟତାର ମାଧୁର୍ଯ୍ୟ ସେମାନଙ୍କର ନାହିଁ; କାକଳୀ ମନମୁଗ୍ଧକର ହେଉନାହିଁ; ସେଥିରେ ପୂରି ରହିଛି

ମାଗନ୍ତାର ବାଲୁକା, କିଂକର୍ତ୍ତବ୍ୟବିମୂଢ଼ତା ହାହତୋଽସ୍ମି ଭାବ । ଜୀବନର ପ୍ରାଚୁର୍ଯ୍ୟ କିଏ ହରଣ କରି ନେଇଛି,—ଶିଲ୍‌ଟନ ପଟେଗ୍ରାଫଙ୍କ ବାଣୀସବୁ ।

ରୁଷାର ସ୍ରୋତରୁ ଏକ ହ୍ରଦ ଜାତ ହୋଇଅଛି । ସୂର୍ଯ୍ୟ ଅଦୃଶ୍ୟ; କିନ୍ତୁ ପିଲାତସର ସାମାନ୍ୟ ଆଭାସ ହ୍ରଦରେ ପ୍ରତିଫଳିତ ହୋଇଅଛି । ପାଇନ୍ ସବୁ ଗୋଥିକ୍ ଶୈଳୀର ଚର୍ଚ୍ଚ ପରି ଦିଶୁଛନ୍ତି ।

ପେଟ୍ରୋଲ୍ ଚାଳିତ ଯନ୍ତ୍ରରେ ନୌକା ଖୋଲା ହେଉଛି । ମୁଁ କୂଳେ କୂଳେ ଆଗେଇ ଚାଲିଲି; ଆମ ଆଡ଼ ଦଣ୍ଡା ବାଲୁଙ୍ଗା ପରି ଏ କ ଘାସ ପଡ଼ିଆରେ ଅଜମା ଉଠିଛି—ଫଳରୁ ତାର ବାଲୁଙ୍ଗାର ଶିଢ ବାହାରିଛି । ମହା ମହା ବନସ୍ପତି, ଝାଟି ଝୁଙ୍କି ପଡ଼ିଛି ହ୍ରଦର କୁହୁଡ଼ି ଭିତରକୁ । ପପ୍‌ଲର୍‌ର ଗୁଚ୍ଛ ନାନା ଭାବେ ବଙ୍କ ହୋଇ ଲହରରେ ଦୋହଲୁଛି, ଖେଳୁଛି । ହ୍ରଦ ହଂସମସ୍ତ, କ୍ଷଣେ ବିଲୀନ ହୋଇ ପରକ୍ଷଣରେ ପ୍ରସ୍ଫୁଟିତର ରୂପେ ଦୋଳି ଦୋଳି ଆସୁଛନ୍ତି ଆଗକୁ ।

ସ୍ତମ୍ଭୋପରି ଏକ ମସ୍ତକ—ଏ 'ଆର୍‌ନୋଲ୍ଡ ଓଟ୍'ଙ୍କର, ଓଟ୍ ସ୍ୱିଜରଲଣ୍ଡର ଜାତିପ୍ରେମୀ ଓ ଲେଖକ (୧୮୪୦—୧୯୧୦)

କୂଳେ କୂଳେ ଗୁଚ୍ଛ ଗୁଚ୍ଛ ଦୀର୍ଘ ତୃଣ, ପାଣ୍ଡୁର ଫୁଲକେଣ୍ଡା ପବନରେ ଆନ୍ଦୋଳିତ । ନୀଳକଣ୍ଠ ହଂସସବୁ ହ୍ରଦୋତ୍‌ଥିତ ପ୍ରସ୍ତରଖଣ୍ଡ ଉପରେ ବସୁଛନ୍ତି; କେତେବେଳେ ହ୍ରଦ ଜଳକୁ ଲମ୍ଫ ପ୍ରଦାନ କରି ଦୀର୍ଘ ତୃଣର ଧାରେ ଧାରେ ଖେଳି ବୁଲୁଛନ୍ତି । ପ୍ରସ୍ତରିତ ତୀରରେ ବାଜି ହ୍ରଦର ତରଙ୍ଗ ଲପ୍ ଲପ୍ ଶବ୍ଦ କରୁଛି । ଚିନ୍ତିତର ଲଲାଟ ପରି କୁଞ୍ଚିତ ହୋଇଛି ସ୍ଥାନେ ସ୍ଥାନେ, ଅନୁରାଗଭର ଆଦରଣୀୟ ମୁଖ ପରି ଚିତ୍ତାକର୍ଷକ ହୋଇଛି ପୂର୍ବବତ । କେଉଁଠି ବିସ୍ମୟ କେଉଁଠି ଶାନ୍ତି, କେଉଁଠି କେବଳ ଜଟିଳତା, ବିଭ୍ରାନ୍ତ କ୍ରୀଡ଼ା କରୁଛି ।

ଏକ ବୟସ୍କ ଉଇଲୋ, ତା ଏକ ବନ୍ୟଲତା ଲତାଇଛି ସର୍ବାଙ୍ଗରେ; ତରୁଣୀ ଭାର୍ଯ୍ୟା ପୂର୍ଣ୍ଣ ଅଧିକାର ସାବ୍ୟସ୍ତ କଲା ପରି ବୟସ୍କ, ବଶୀଭୂତ ସ୍ୱାମୀ ଉପରେ; ଡାଳେ ଡାଳେ ତାର ପକ୍ଷୀର ବସା; ଆମ

ଦେଶରେ ଯେପରି ବର୍ଷାକାଳ ଲଗ, ଏଠି ସେହିପରି ଶୀତର ଦାଉରୁ ରକ୍ଷା ପାଇବା ଲାଗି ପକ୍ଷୀମାନେ ବସା ନିର୍ମାଣ କରନ୍ତି ।

କୂଳେ କୂଳେ ବହୁ ପାର୍କ, ପୁଞ୍ଜି ପୁଞ୍ଜିତ ଓକ୍, ମୂଳେ ମୂଳେ ଫର୍ନ୍ ପଥ । ରବର ବୁଟ୍ ମାଡ଼ି ଝିଅଟିଏ, ପୁଅଟିଏ ପାଣିରେ ଖେଳୁଛନ୍ତି । ପୁଅର ହାତ କଟି ଯିବାରୁ ସେ ରକ୍ତ ଲୁଚି ଦେଉଛି, ଆମେ ଯେପରି ହାତ କଟିଗଲେ ପାଟିରେ ଆଙ୍ଗୁଠି ଦେଇ ରକ୍ତ ବନ୍ଦ କରୁ । ଧୂସର ହଂସ କୂଳକୁ ଆସି ପଥରରୁ ଶିଉଳି ଖାଉଛନ୍ତି । କେତେ ମଧୁ ଶୁଭ୍ର ହୋଇଛି ସେମାନଙ୍କ ମନରେ ।

ବନ୍ଦର ପାର, ଭୂମିର ଗୋଟିଏ ରେଖା ପଶି ଯାଇଛି ହ୍ରଦ ଭିତରକୁ । ସେଇ ଅନ୍ତରୀପର ରଙ୍ଗୀନ୍ ବୃକ୍ଷସବୁ ହ୍ରଦ ତରଙ୍ଗରେ ଅପୂର୍ବ ମାୟା ସୃଷ୍ଟି କରିଛନ୍ତି । ଗାଢ଼, ପ୍ରଶସ୍ତ ହ୍ରଦ । ସମସ୍ତ ସହର ଉଣା ଅଧିକେ ଏହାର ସ୍ପର୍ଶ ପାଉଛି, ଭ୍ରମଣକାରୀଙ୍କ ଯୋଗୁଁ ସହର ତଳ ଉତ୍ସବ ଶ୍ରୀ ଧାରଣ କରିଛି; ନାନା ପୁଷ୍ପ ଆଲୋକ ସଜ୍ଜିତ ।

ରାସ୍ତାପଟେ ପପ୍ଲାର୍, ମଝିରେ ପ୍ରାନ୍ତର; ତାର କେନ୍ଦ୍ର ସ୍ଥଳରେ ଗୋଲାପକୁଞ୍ଜ; ରାଜହଂସ ଛୁଆଙ୍କୁ ନେଇ ତଟରେ ଡେଣା ସଜାଡ଼ୁଛନ୍ତି; ବିଭିନ୍ନ ବର୍ଣ୍ଣର ଗେଣ୍ଡୁସବୁ ଗୁଚ୍ଛ ଗୁଚ୍ଛ ଫଳିଛନ୍ତି । ସ୍ଥାନେ ସ୍ଥାନେ ସୂର୍ଯ୍ୟମୁଖୀ, ପାର୍କ ଘାସର ଧାରେ ଧାରେ ଗାଢ଼ ନୀଳ, ଲାଲ୍ ଫୁଲ ଧାଡ଼ି—ବିବିଧ ବର୍ଣ୍ଣର ଇନ୍ଦ୍ରଧନୁ ଛଟା ଛିଟିକି ପଡ଼ୁଛି ଚତୁର୍ଦ୍ଦିଗକୁ । ପକ୍ଷୀ ବସିଗଲା ଭଳି ଜଳ ବୋଟ୍ ସବୁ ଦୋଳୁଛି ଦୋଳୁଛି; କଷ୍ଟାଲିଆନ୍‌ରେ ବସିଛନ୍ତି ଦଳେ ଘରଚଟିଆ ।

ବାଟରେ ଦଶ ବର୍ଷର ଗୋଟିଏ ପିଲା ସହିତ ସାକ୍ଷାତ୍ ହେଲା— ନାଆଁ କୋଲ୍‌ଟନ୍ ରେଲ୍‌ଟାନ୍ । କମ୍ୟୁନିଷ୍ଟମାନେ ହଙ୍ଗେରୀ ଅଧିକାର କଲାବେଳେ ଗୋଟିଏ ପରିବାର ସ୍ୱିଜରଲାଣ୍ଡକୁ ପଳାଇ ଆସିଥିଲେ । ଏଇ ପିଲାଟିକୁ ଗୋଟିଏ ସନ୍ତାନହୀନ ସ୍ୱିସ୍ ପରିବାରରେ ଛାଡ଼ି ଯାଇଛନ୍ତି ।

ବୁଲି ବୁଲି ଗୋଟିଏ ମ୍ୟୁଜିଅମ୍ ଦୋକାନରେ ପହଞ୍ଚିଲି । ପୃଥିବୀର ପୁରାତନ ଦ୍ରବ୍ୟ ସଂଗ୍ରହ କରି ସାଇତିବା ଦୋକାନର କାମ । ମ୍ୟୁଜିଅମ୍ ଏସବୁ କିଣନ୍ତି । ଖ୍ରୀଷ୍ଟ ମୂର୍ତ୍ତି, ବୌଦ୍ଧ ଓ ଜୈନ ମୂର୍ତ୍ତି, ବହୁ ଗ୍ରୀକ୍ ଓ ମିଶରୀୟ ଦେବତାଙ୍କ କାଷ୍ଠ ମୂର୍ତ୍ତି, ବହୁ ପୁରାତନ ଚୌକି, ଟେବୁଲ୍, ରନ୍ଧା ବାସନ, ବହୁ ପ୍ରାଚୀନ ଛବି ବିକ୍ରୟ ଉଦ୍ଦେଶ୍ୟରେ ରଖା ଯାଇଛି । ଦାମ୍ ମୋ କଳ୍ପନାର ବାହାରେ ।

ରଜତଶୁଭ୍ର ଲୁଜର୍ଣ୍ଣ ହ୍ରଦର ଜଳ ଉଚ୍ଛଳେ ବସି ଯାଉଛି । ରାଜହଂସ ନୌକା ଉପରେ ବସି ଡେଣା ଶୁଖାଉଛନ୍ତି । ଶତାଧିକ କଳାପକ୍ଷୀ ପାଣିକୁଆ ପରି ବୁଡ଼ ମାଛ ଧରୁଛନ୍ତି; ଆହୁଲ ମାରି ନୌକା ଚଳାଉଛନ୍ତି ଦୁଇଟି ତରୁଣୀ । ରୌପ୍ୟ ରଶ୍ମିରେ ଚକ୍ ଚକ୍ କରୁଛି ସେମାନଙ୍କ ମୁହଁ, ସଦ୍ୟଫୁଟା କହ୍ଲାର ପରି । ଝଲମଲ କରୁଛି ହ୍ରଦର ଏକାଂଶରେ କେତୋଟି ରଶ୍ମି ରେଖା । ନାନା ଶୈଳୀର ସୌଧ, କାପେଗ୍‌ଟମ୍ କାସଲ୍, ମାଉଣ୍ଟ୍ 'ପିଲାଟସ୍' 'ଓରଓସ୍' ନଦୀ—ବିଭିନ୍ନ ଦିଗକୁ ଦୃଷ୍ଟି ମୋର ଅକୃଷ୍ଟ ହେଉଛି ।

## 'ପିଲାଟସ୍' ଆରୋହଣ

ଆଜି ଲଞ୍ଚ୍‌ରେ ଛତୁ ଓ ଛେନାର ଏକ ବିଚିତ୍ର ପିଷ୍ଟକ ଖାଇବାକୁ ମିଳିଲା । ଏ ଦେଶର ପାହାଡ଼େ ପାହାଡ଼େ ବହୁତ ଛତୁ ଫୁଟେ ।

ଲଞ୍ଚ୍ ପରେ ସ୍ୱିସ୍ ସାଢ଼େ ତେଇଶି ଫ୍ରାଙ୍କ୍ (ଦୁଇ ପାଉଣ୍ଡ ବା ଛ'ଡଲାର୍) ଦେଇ ଟିକେଟ୍ କିଣିଲି । ବସ୍‌ରେ କିଛି ଦୂର ଯିବାପରେ ଲିଫ୍‌ଟରେ ଉଠିଲି । ତାପରେ ଏରୋକାର୍ ବା କେବଲ୍‌କାର୍‌ରେ ଟପ ଉପରକୁ ଉଠିବାକୁ ହେଲା ।

ଦୁଇଶ ଫୁଟ୍ ଉପରେ ଦୁଇଟି ତାରରେ ମାତ୍ର ଗାଡ଼ି ଝୁଲିଥାଏ । ପାଦ ତଳେ ଆମର ପାଇନ୍ ବନ, ଝୋରର ନଦୀ ଶଯ୍ୟା, ହ୍ରଦ, ଗାଢ଼ ସବୁଜ ପ୍ରାନ୍ତର । ପାହାଡ଼ ପାହାଡ଼ ଛନ୍ଦାଛନ୍ଦି, ଧୂଆଁଳିଆ ମାଇଲ୍ ଉପରେ ମେଞ୍ଚାଏ ଧଳା କୁହୁଡ଼ି ଭାସି ଯାଉଛି । ମୁଣ୍ଡ ଉପରେ ପ୍ଲେନ୍

ଉଡ଼ୁଛି; ଆଗରେ ବସିଥିବା ସଙ୍ଗିମା କହୁଛି—ଥରେ କେବଲ କାର୍ ସଙ୍ଗେ ପ୍ଲେନ୍‌ର ଧକ୍‌କା ହୋଇଥିଲା । ଏ କଥା ଶୁଣି ଦେହ ଶୀତେଇ ଉଠିଲା ମୋର ।

କେବଲ୍ କାର୍‌ରେ ଅଧଘଣ୍ଟାଏ ଗଲା ପରେ ଆମେ ପୁଣି ଲିଫ୍‌ଟରେ ଉଠିଲୁ—ମାଉଣ୍ଟ୍ ପିଲଟସ୍‌ର ଅଗ୍ରଭାଗ—ଫଟା, ଭଙ୍ଗା ବନ୍ଧୁରିତ, ଇତସ୍ତତଃ ରନ୍ଧ୍ରଯୁକ୍ତ, ରଶ୍ମି ସ୍ନିଗ୍ଧ ଦୁଗ୍ଧବର୍ଣ୍ଣର କୁଜ୍‌ଝଟୀ ମଧ୍ୟରେ ଘନ ନୀଳ ପାହାଡ଼ ଶୃଙ୍ଗ, ତୁଷାର ମୁକୁଟିତ । କୋଇଲି ପରି କଳା କଳା ପକ୍ଷୀ ସବୁ ଉଡ଼ୁଛନ୍ତି ଖିଅଲି ଆନନ୍ଦରେ । ଉଚ୍ଚତମ ଶୃଙ୍ଗ ଉପରକୁ ସୋପାନ ସବୁ ଉଠିଛି—ଉଠି ଦେଖିଲି ଗୋଟାଏ କନ୍ଦର, ବହୁ ଗବାକ୍ଷଯୁକ୍ତ ; ତଳକୁ ଚାହିଁବାମାତ୍ରେ ମୁଣ୍ଡ ବୁଲାଇଲା । ପାହାଡ଼ଟା ସିଧା ତଳକୁ ଖସି ଯାଇଛି । ଅନ୍ୟ ଏକ ଗବାକ୍ଷରେ ଦେଖିଲି ସ୍ୱଚ୍ଛ ନୀଳାକାଶ, ସୂର୍ଯ୍ୟରଶ୍ମିର ଗୋଟାଏ ପ୍ରପାତ ଜୁଡ଼େଇ ହୋଇ ପଡ଼ୁଛି, ଏକ ରନ୍ଧ୍ରଯୁକ୍ତ ଶୃଙ୍ଗ ଉପରେ । ଅନ୍ୟ ଏକ ବରଫ ପାହାଡ଼ ଉପରେ ମେଘସବୁ ଶୃଙ୍ଗ ହୋଇଛନ୍ତି; ସାମୟିକ । କେଉଁଠି ବା ବିଶ୍ୱକର୍ମା ନୀଳ ନୀଳ ଶୃଙ୍ଗ ଉପରେ ଶ୍ୱେତ ବର୍ଣ୍ଣର ତମ୍ବୁ ପକାଉଛନ୍ତି । ତାପରେ ପାଇନ୍ ଉପତ୍ୟକାରୁ ମାଡ଼ି ଆସିଲା କୁହୁଡ଼ି, ଗିଳିଗଲା ଶୃଙ୍ଗ ପରେ ଶୃଙ୍ଗ—ପାହାଡ଼ ସଂସାର ।

ତଳ ପାହାଡ଼ର ରେସ୍ତୋରାଁରେ ସଙ୍ଗିମା ଲେମୋନେଡ ଲଞ୍ଚ ମୋତେ କଫି ଖୁଆଇଲା । ଏବେ କାର୍ ବା କେବଲ କାର୍ ବ୍ୟତୀତ ଛନୋଟି ଏଲକ୍‌ଟ୍ରି ଟ୍ରେନ୍ ଚାଲେ ପର୍ବତ ଚୂଳରୁ ତଳକୁ ଓ ତଳୁ ଉପରକୁ । ଆମେ ଟ୍ରେନରେ ବସିଲୁ । ବାଁ ପାଖେ ରନ୍ଧ୍ର, ବୃଦ୍ଧବୁଦ୍ଧିକିଆ ଘାସ, ନାଲ୍, ନୀଳ୍ ବଣୁଆ ଫୁଲ; ଲମ୍ବା ଲମ୍ବା ପାହାଡ଼ ଶୃଙ୍ଗ, ତୁଷାରର ଶଙ୍ଖ ମଲମଲ ତାଜମହଲ, ଡାହାଣରେ ପାଇନ୍ ବନ, କୁହୁଡ଼ିର ବାମ୍ଫ ଗଳି ଗଳି ଯାଉଛି ପତ୍ର ସନ୍ଧିରେ । କେଉଁଠି ବା କୁହୁଡ଼ିର ଗୋଟାଏ ବନ୍ୟା, କିନ୍ତୁ ଊର୍ଦ୍ଧ୍ୱକୁ ତାର ଗତି ।

ଗାଈମାନଙ୍କ ବେକରେ ବଡ଼ବଡ଼ ଘଣ୍ଟି । ଟୁଣୁ ଟୁଣୁ ଶବ୍ଦ କରେ ; ଟନେଲ୍ ପରେ ଟନେଲ୍ ଲଙ୍ଘି ଗାଡ଼ି ଆମର ଚାଲିଥାଏ, ମଧ୍ୟେ ମଧ୍ୟେ

ଷ୍ଟେସନ । ଗୋଟିଏ ପାର୍ବତ୍ୟ ଷ୍ଟେସନରେ ଛିଡ଼ା ହୋଇ ପିଲାଟସ୍‌କୁ ଅନାଇଲି—ସନ୍ଧ୍ୟାର ଦି ଖଣ୍ଡି ମେଘ ପରସ୍ପର ସହିତ ହାତ ମିଳାଉଛନ୍ତି, ଦୁଇ ବନ୍ଧୁ ଭଳି । ସେମାନଙ୍କ ମଧ୍ୟରେ ଶୃଙ୍ଗ—ଭ୍ରୁକ୍ଷା ଓ ଭୁଷାର ଭର୍ତ୍ତି ।

ଶେଷ ଷ୍ଟେସନରେ ଓହ୍ଲାଇ ଆମେ ଗୋଟିଏ ଷ୍ଟିମ୍ ବୋଟ୍‌ରେ ଚଢ଼ିଲୁ । ହ୍ରଦ ପରେ ହ୍ରଦ ପଡ଼ିଲା—ଲଜାର୍ନ, ଜସ୍‌ବର୍ଣ୍ଣ, ଲ୍ୟୁଜେରନ୍—ଗାଢ଼ ନୀଳ ଜଳ, ଦୁଇଆଡ଼େ ଏକ ପରେ ଅନ୍ୟ ମଧୁର ମଧୁର ବସ୍ତି ସବୁ ସନ୍ଧ୍ୟାର ପ୍ରାଙ୍ଗଣରେ ଜଗି ହୋଇଛନ୍ତି । ପଶ୍ଚିମ ଆକାଶ ସ୍ୱପ୍ନ ବୁଣି ଚାଲିଛି, ପାହାଡ଼ର ଜଳସଣି ଉପରେ । ଆକାଶରେ ମେଘ, ପ୍ରାନ୍ତରରେ କୁହୁଡ଼ି, ସହିର ଅନ୍ଧକାର ସହିତ ସନ୍ଧି କରି ମାଡ଼ି ଆସୁଛନ୍ତି; ସନ୍ଧ୍ୟାର ସେଇ କେତୋଟି ରଙ୍ଗୀନ୍ ରଶ୍ମି ପେନ୍ସିଲ୍‌କୁ ଗ୍ରାସ କରିବା ଲାଗି, ଚଳାଇବା ଲାଗି ଏକ ଚକ୍ରବର୍ତ୍ତୀ ଶାସନ ।

ଏଠି ବୃକ୍ଷପୁଞ୍ଜ, ସେଠି ଭଗ୍ନ ବନ୍ଧୁର ଶିଳାକନ୍ଦର, କେଉଁଠି ବା ପୁଷ୍ପୋଦ୍ୟାନ, ଧୂମଳ ଗିରି ଶୃଙ୍ଗେ, ଶୃଙ୍ଗେ; ଜସ୍‌ବର୍ଣ୍ଣ ହ୍ରଦରେ ସନ୍ଧ୍ୟାର କ୍ରମ ପରିବର୍ତ୍ତିତ ରୂପ ଦେଖି ଦେଖି ଚାଲିଥାଏ । ତାପରେ ହ୍ରଦରେ ପ୍ରସ୍ତୁତର ଅଂଶରେ ପ୍ରବେଶ କଲା ଆମ ବୋଟ୍ ! କୁଞ୍ଜ ସଦୃଶ ସଙ୍କୀର୍ଣ୍ଣ ଗିରିମାଳା; ଉଚ୍ଚ ଉଚ୍ଚ ଶୃଙ୍ଗ ଯେଉଁ କୁହୁଡ଼ି ପଠାଇଛନ୍ତି, ସେ ସବୁ ଧୋଟି ଆସୁଚି, ନାନା ବିଚିତ୍ର ସୈନ୍ୟବାହିନୀ ଭଳି । ତଥାପି ସନ୍ଧ୍ୟାର ସେଇ କେତୋଟି ସ୍ମିତବଦନ୍ କାଢ଼ ନାହିଁ । ଆକାଶକୁ ନ ଚାହିଁ ହ୍ରଦ ଦର୍ପଣରେ ଦେଖୁଥିଲି ସେଇ ସ୍ମିତ ବଦନ୍ ; ନିଜର ଅନ୍ତରକୁ ଅନାଇ ଦେଖିଲି ଜଳୁଛି ଚନ୍ଦ୍ରଉଦୟା ପରି, ଯାହାକୁ ଜଞ୍ଜାଳ ନିଭାଇ ପାରିନାହିଁ, ଈର୍ଷା ଫସାଇ ଗ୍ରାସ କରି ପାରିନାହିଁ ।

## ସୁଇସ୍ ସାମାଜିକ ଉତ୍ସବ

ରାତ ନ'ଟା ; 'ଷ୍ଟାଡ଼୍‌କେଲର୍' ରେସ୍ତୋରାଁରେ ପହଞ୍ଚି ଆସନ ଗ୍ରହଣ କଲୁ । ଷ୍ଟୋଭ୍ ଜଳୁଥାଏ । ସେଥିରେ ତରଳ ସୁଇସ୍ ଛେନା ଗରମ କରି ହେଉଥାଏ ; କିଛି ସମୟ ପରେ ତରଳ ଛେନା ଓ ପାଉଁରୁଟି ଖଣ୍ଡସବୁ ପାଖରେ ରଖାଗଲା—ଏଥିରେ ଭୋଜନ ଅନୁକୂଳ ହେବ ।

ଫର୍କରେ ପାଉଁରୁଟି ଧରି ଛେନାରେ ବୁଡ଼ାଇବାକୁ ହେବ । ଗାଳିକି ନେଇଁ ନେଇଁ ଯାହାର ଖସି ପଡ଼ିବ, ତାକୁ ଶାସ୍ତି ଦିଆଯିବ । ସ୍ୱିଜରଲଣ୍ଡର ସାମାଜିକ ନିୟମ ଏ । ଅବଶ୍ୟ ସବୁ ମଜା, ଆନନ୍ଦର ସୁଯୋଗ ସୃଷ୍ଟି କରିବା ଲାଗି ଉଦ୍ଦିଷ୍ଟ । ତେଣୁ ଶାସ୍ତିକୁ କେହି ପୀଡ଼ାଦାୟକ ମନେ କରନ୍ତି ନାହିଁ ।

ପ୍ରଥମେ ଭୁଲ୍ କଲେ ଜଣେ ବୟସ୍କା ମହିଳା—କ୍ୟାଥେରିନ୍ ନେପଲ୍ । ତା ପ୍ରତି ସାମାଜିକମାନଙ୍କର ଦଣ୍ଡାଦେଶ ହେଲା, ପାରମ୍ପରିକ ପ୍ରଥା ଅନୁସାରେ । ସେ ପରିଚିତ ବା ଅପରିଚିତ ଅଗଣିତ ଗଣ୍ଡରେ ଚୁମ୍ବନ ଦେବ । ବଡ଼ କଠୋର, ଅସ୍ୱାଦ୍ୟ ମେ । ଏହିପରି ଦୁଇ ତିନି ବୟସ୍କାଙ୍କ ଚୁମ୍ବନ ଖାଇ ଗଣ୍ଡ ମୋର ପିଣ୍ ପିଣେଇ ଉଠିଲା ।

ଆଜି ଜଣେ ସର୍ଗାଙ୍କର ଜନ୍ମଦିନ; ସେ କଥା ରେସ୍ତୋରାଁ କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆ ହୋଇଥାଏ । ସେ ଏକ ସ୍ୱତନ୍ତ୍ର ପିଷ୍ଟକର ବ୍ୟବସ୍ଥା କରିଥାନ୍ତି, ଯହିଁରେ ଝସ୍ ପୋତା ହୋଇଥାଏ । ଜନ୍ମଦିନ ଗୀତ ବୋଲା ହେଲା ପରେ ସେଇ ପିଷ୍ଟକ ସମସ୍ତଙ୍କୁ ପରିବେଷିତ ହେଲା ।

ତିନିଶ ଲୋକ ଖାଇ ବସିଛନ୍ତି, ଅଧିକାଂଶ ବିଦେଶୀ ଭ୍ରମଣକାରୀ; ଏତେ ଲୋକଙ୍କୁ ଏକାବେଳକେ ପରିବେଷଣ କରିବା ଲାଗି ବହୁତ ବୟ୍ ଆବଶ୍ୟକ; ସେ ସବୁ ରେସ୍ତୋରାଁରେ ନାହାନ୍ତି । ସମସ୍ତଙ୍କ ବରାଦ୍ ଅନୁଯାୟୀ ଖାଦ୍ୟ ଯୋଗାଇବା ଲାଗି ଘଣ୍ଟା ଘଣ୍ଟା ବିତିଯାଉଛି । ଅବଶ୍ୟ କେହି ତରବର ନୁହେଁ । ସମସ୍ତେ ମଉଜ କରିବାକୁ ଆସିଛନ୍ତି । କେବଳ ରସନା ପରିତୃପ୍ତି ନୁହେଁ, କର୍ଣ୍ଣନନ୍ଦନ ମନୋରଞ୍ଜନ ବ୍ୟବସ୍ଥା ହୋଇ ଅଛି

ପଛରେ କେତେକ ସ୍ୱିସ୍ ଲୋକସଙ୍ଗୀତ ବୋଲା ହେଲା; ସେଥି ମଧ୍ୟରେ ଗୋପାଳ ସଙ୍ଗୀତ ମୁଖ୍ୟ । ଗୋପାଳର କଳକଳା ଘଣ୍ଟି,

ଗାଣ୍ଡି ବେକର ଘଣ୍ଟି ବାଦ୍ୟ ସଙ୍ଗେ ତାର ନୃତ୍ୟ ବିଶେଷ ରୁଚିକର ହୋଇ ଥିଲା ।

ତାପରେ ମିସ୍ ତରୁଣୀମାନେ ନାନା ନୃତ୍ୟ ଦେଖାଇଲେ; ସେମାନଙ୍କ ମଧ୍ୟରୁ ଜଣେ ବାଲି ହୋଇ ପଡ଼ୁଥାଏ; ଯେପରି ରୂପବତୀ, ସେହିପରି ପ୍ରତିଭାଶାଳିନୀ । ସେ ଜର୍ମାନ୍, ଫ୍ରେଞ୍ଚ୍, ଇଟାଲ୍, ଇଂରେଜୀ, ସ୍ୱିସ୍ ପ୍ରଭୃତି ବହୁ ଇଉରୋପୀୟ ଭାଷାରେ ଗୀତ ଗାଇ ଜାଣେ, କଣ୍ଠ ସୁମଧୁର; ହାବ୍‌ଭାବ୍ ଅପୂର୍ବ । ସେ ଏକୁଟିଆ ଅନେକକ୍ଷଣ ରଙ୍ଗମଞ୍ଚକୁ ଜମେଇ ରଖିଥିଲା ।

ବାଉଜଣ ଆମେରିକାନ୍ ସ୍ତ୍ରୀ ପୁରୁଷଙ୍କୁ ରଙ୍ଗମଞ୍ଚକୁ ଡାକି ନେଇ ସେ ସ୍ୱିସ୍ ଗୀତ ଶିଖାଇଥିଲା । ତାର ଆଶୁକବିତ୍ୱ ଅଛି । ତେଣୁ ମିଚିଗାନ୍, କାଲିଫର୍ଣ୍ଣିଆ, ଆଇଡାହୋ, କଲରାଡୋ, ନର୍ଥକାରୋଲାଇନା ପ୍ରଭୃତି ରାଜ୍ୟକୁ ଉପଲକ୍ଷ୍ୟ କରି ଗୋଟିଏ ଗୋଟିଏ ଗୀତ ଗାଇ ଯାତ୍ରୀମାନଙ୍କୁ ଚକିତ କରି ଦେଇଥିଲା । ଶେଷରେ ଏକ ସୁଗନ୍ଧି ଧରି ସ୍ପ୍ରେକର୍ ସମସ୍ତଙ୍କ ମୂର୍ଦ୍ଧାରେ ଲଗାଇଥିଲା । ତା ପରେ ସେ ଗାଇଲା । ଅନ୍ୟମାନେ ପାଳି ଧରିଲେ, ବେହେଲା ବଜାଇ ମଝେ ମଝେ ନାନା ମୁଖଭଙ୍ଗୀ କରି ଦର୍ଶକମାନଙ୍କ ମନୋରଞ୍ଜନ କରୁଥାଏ—ଜଣେ ବୃଷଭବେଶ ଧରି ଦର୍ଶକଙ୍କ ମଧ୍ୟରେ ପଶି କାହା ଦେହରେ ଶିଙ୍ଘ ଲଗାଇଲା, କାହାକୁ ଗୁଞ୍ଚି ବେଶ୍ କୌତୁକ ସୃଷ୍ଟି କଲା । ମଦ୍ୟପାନ ଅବାଧିତ ଭାବେ ଚାଲିଥାଏ; ଆଖି ଢ଼ଳ ଢ଼ଳ, କଣ୍ଠ ତରଳ; ଅକାରଣ ହାସ୍ୟରୋଳ ଉଠୁଥାଏ, ବେଳେ ବେଳେ ଦର୍ଶକଙ୍କ ବଗିଚା ପୂରୁଥାଏ । ନାନା ମଜା ମଧ୍ୟରେ ସ୍ୱିସ୍ ସାମାଜିକ ଉତ୍ସବ ଓ ଭୋଜନ ଶେଷ ହେଲା । ସେମାନେ ଜୀବନକୁ କିପରି ସ୍ୱାଦ୍ୟ, ଉପଭୋଗମୟ କରି ରଖିଛନ୍ତି, ତାର କିଞ୍ଚିତ୍ ପରିଚୟ ଏଠି ମିଳିଲା । ଜଳ ନାସ୍ତି । ବିଶେଷ ଶୋଷ ହେବାରୁ ମିସ୍ ମଦ୍ୟ କୋହାକିସ୍ୱର୍ଗ କିଞ୍ଚିତ୍ ପାନ କଲି । ଏଥିରେ ନିଶା ହୁଏନାହିଁ । ଏଠା ପିଲାମାନଙ୍କୁ ଏହା ଦିଆଯାଏ ।

ହୋଟେଲ୍‌ରେ ପହଞ୍ଚିଲା ବେଳକୁ ରାତିବାରଟା । ମୋ କୋଠରି ଝରକାଟି ଜାଣ ଲୁଜେରନ୍ ହ୍ରଦ ଉପରକୁ ଝୁଲି ପଡ଼ିଛି । ଝରକା

ପାଖରେ ମୁହୂର୍ତ୍ତେ ବସି ଏହି ପାହାଡ଼ୀ ନଗରର ଆଲୋକମାଳାକୁ ଲକ୍ଷ୍ୟ କଲି; ହ୍ରଦରେ ଲିପିବଦ୍ଧ ହୋଇଛି ଯେତେ ବା ଏକ ଅପୂର୍ବ କବିତା ।

ହ୍ରଦ ମଧ୍ୟସ୍ଥ ରେସ୍ତୋରାଁର ଘାଟ ଉପରେ ସିଗଲ୍ ଓ ହଂସ-ମାନଙ୍କ କଳଧ୍ୱନି ଶୁଣୁ ଶୁଣୁ ନିଦ ଆସିଗଲା । ମନ ଭିତରେ ରାତିଆର କ୍ରୀଡ଼ା କରୁଥିଲା ଭୂଦ୍ରାଭର, ବରଫରେ ମୀନାକରା ଟିଶଶିଖର ସବୁ, ଚଳ ଚଞ୍ଚଳ ହ୍ରଦ, ଜଙ୍ଗମ କୁଜଘଟୀ ଓ ଜଙ୍ଗଲୀ ମେଢାଏବୁ । ତେଣୁ ନିଦ୍ରା ହୋଇଥିଲା ନାନା ପ୍ରକୃତି ସ୍ୱପ୍ନରେ ରଙ୍ଗୀନ୍ ।

ସୂର୍ଯ୍ୟୋଦୟ ପୂର୍ବରୁ ଉଠି ଅନାଇଲି—'ଲୁଜେରନ୍' ନଗର ପର୍ବତ ମୂଳରେ ଗୋଟିଏ ଧନୁ ଆକାରରେ ରହିଛି; ତାର ଦୁଇ ଅଗ୍ରଭାଗ ହ୍ରଦ ଭିତରକୁ ପଶି ଆସିଛି; ପିଙ୍ଗଳ କୁହୁଡ଼ିରେ ଦରଦଜା ଗିରିଚୂଡ଼ା, ଶାନ୍ତ ସ୍ନିଗ୍ଧ ଦୃଶ୍ୟ ପଟରେ ଜଳପକ୍ଷୀଙ୍କ ଯାତାୟାତ ଯାନଚଞ୍ଚଳ ନଗର, ଘୁରି ଘୁରି ଆସି ହ୍ରଦ ଉପରେ ଶେଷ ଦୃଷ୍ଟି ଟିକାଇ ବସ୍‌ରେ ବସିଲି ।

ବାଟରେ ଗୋଟିଏ ସ୍ମୃତିଫଳକ ପଡ଼ିଲା, ବେଲ୍‌ଜିୟମ୍ ରାଜାଙ୍କ ସ୍ତ୍ରୀ । ରାଣୀ କାର୍ ଆକ୍‌ସିଡେଣ୍ଟରେ ଏଇଠି ମୃତ୍ୟୁମୁଖରେ ପଡ଼ି-ଥିଲେ । ତାଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ରାଜା ଏହା ନିର୍ମାଣ କରିଥିଲେ ।

ବହୁ ବଡ଼ ବ୍ରୁସ୍ ଧରି ମେହେନ୍ତରମାନେ ରାସ୍ତାଘାଟ ଘଷିମାଜି ଚକ୍ ଚକ୍ କରୁଛନ୍ତି, ପାତଳା ପଥର ଓଲାଉଛନ୍ତି । ଜଣେ ବୁଢ଼ୀ ପିଠିରେ ଗୋଟିଏ ଲୁଗାପଟା ବାନ୍ଧି କୁଆଡ଼େ ଯାଉଛି, ଆମ ଆଡ଼େ ବୁଲା ବଳାଇ ଦେଲା । ଲେକ୍ ଲୁଜେରନ୍ ଲୁଚିଗଲା; ପୁଣି ଦିଶିଲା, ଦୁଇ ପାହାଡ଼ର କୁହୁଡ଼ି ଦେମାଳ ମଧ୍ୟରେ ସୂର୍ଯ୍ୟ ଦେଖାଦେଲେ—ଗୋଛା ଗୋଛା ରୁପା ଫିତା ପରି ହ୍ରଦ ଉପରକୁ ଲମ୍ବି ଆସୁଥାଏ ସୂର୍ଯ୍ୟରଶ୍ମି,

ପ୍ରାତଃ ଶିଶିରରେ ଆର୍ଦ୍ର ମିଗଲ୍‌ର୍ ଡେଣାକୁ ଶାଣିତ କରି ନୂତନ ପଙ୍‌କ୍ତିରେ ।

ଖଣ୍ଡିକିଆ ପଥରର ପାହାଡ଼ ଗଜାସବୁ ତରଙ୍ଗ ସୃଷ୍ଟି କରନ୍ତି ହ୍ରଦ ପ୍ରାନ୍ତରରେ । କେତୋଟି ଗଛ ବୁଦାରେ ଗୋଟିଏ ଦ୍ୱୀପ, ସେଥିରେ ଗୋଟିଏ ରେସ୍ତୋରାଁ, ବୋଧେ ଜଳଯାତ୍ରୀମାନେ ହ୍ୱିସ୍କି କଫି ପାନ କରୁଥିବେ ।

ମସ୍ତ ଦେଖନ୍ତି ଗୋଟିଏ ପଟଚିତ୍ର ପ୍ରଦର୍ଶନୀ ଚାଲି ହୋଇଛି । ଉଦ୍‌ଘାଟକ ବିଶ୍ୱକର୍ମା, ଖେଳି ଯାଉଛି, ଆଗେ ଆଗେ ନୂତନ ନୂତନ ଦୃଶ୍ୟପଟ; କାହିଁରେ ତୂଳୀ ଗଭୀର ଭାବେ ସ୍ଖଳିତ କାହିଁ ବା ରଙ୍ଗ ଫିକା, ତୂଳୀ ବୁଲିଛି ବା ନ ବୁଲିଛି—ଗ୍ରାମ ଶ୍ମଶାନର ସମାଧିସବୁ; ସହରକୁ ମୁଣ୍ଡାଇ ଥିବା ପାହାଡ଼, ପାଇନ୍ ଅରଣ୍ୟ, ସବୁଜ ଫ୍ରେମ୍ ବନ୍ଧା ଦର୍ପଣ ପରି ତୁଷାର ସ୍ରୋତର ହ୍ରଦ; ମେଘର ପାଟ ପଗଡ଼ି ବାନ୍ଧିଛି କେଉଁ ପାହାଡ଼, କାହାର ତାଳୁର ଚନ୍ଦା ଲୁଚିନାହିଁ ଘନ କୁହୁଡ଼ିରେ; ଘୁଅନ୍ତି ଓ୍ୱାଟେଲନ୍ ଲେକ, ଜ୍ୟୁରିଚ୍ ଲେକ୍—ନବୀନ ନବୀନତର ଖିଆଲ ତୁଳିରେ ମେଘ ଅଉ କୁହୁଡ଼ିର ମାୟା—ଶିଳ୍ପର ସୂଚୀ ପତ୍ରରେ ନଥିବା ବହୁ ଛବି ଦେଖି ଦେଖି ଗ୍ରେସ୍‌ଲ ରେସ୍ତୋରାଁରେ ପହଞ୍ଚିଲୁ ; ଏହା ପାହାଡ଼ ଉପରେ ଗୋଟିଏ ହ୍ରଦକୂଳରେ ଅବସ୍ଥିତ; ହ୍ରଦର ପୃଷ୍ଠପଟରେ ପାହାଡ଼ ଉପରେ ପାହାଡ଼, ମେଘ ଉପରେ ମେଘ; ରଶି ନାହିଁ; ତାର ଉଜ୍ଜ୍ୱଳ ରଙ୍ଗ ଶୃଙ୍ଗେ ଶୃଙ୍ଗେ, ଅନ୍ୟ ଏକ ପାହାଡ଼ ଶ୍ରେଣୀରେ କୁହୁଡ଼ି ଆଉ ଖରାର ଏକ ଧୂସର ଉଜ୍ଜ୍ୱଳ ରଙ୍ଗ ଲିପି ହୋଇ ରହିଛି; ହ୍ରଦରେ କ୍ଷୁଦ୍ର ଦ୍ୱୀପଟିଏ, ଦୁଇଗୁଚ୍ଛି ବୃକ୍ଷ, ଗୋଟିଏ କୁଞ୍ଜ ସୃଷ୍ଟି କରିଛି, ଗୋଟିଏ ପାଲବନ୍ଧା ନୌକା ଆଗେଇଛି ସେଇ ଆଡ଼େ । ତୁଷାର ସ୍ରୋତର ପଥ ପାହାଡ଼େ ପାହାଡ଼େ ଦିଶେ । ମନ ହୁଏ ଅଟକି ଯାନ୍ତୁ କେତୋଟି ଦିନ ଏଠି । କିନ୍ତୁ 'ରୁକ୍‌ନା ତେରା କାମ୍ ନେହିଁ ଚଲ୍‌ନା ତେରା କାମ୍'—ଦୌଡ଼ କେବଳ ଦୌଡ଼ ।

## ଲାଇଚେନ୍ ଷ୍ଟାଇନ—

ଏହା ସ୍ୱିଜରଲାଣ୍ଡ ଓ ଅଷ୍ଟ୍ରିଆର ମଧ୍ୟବର୍ତ୍ତୀ ଗୋଟିଏ ସ୍ୱାଧୀନ ଦେଶ । ଇଉରୋପୀୟ ଦେଶମାନଙ୍କ ମଧ୍ୟରେ କ୍ଷୁଦ୍ରତମ—ଭୂମି ପରିମାଣ ୬୧ ବର୍ଗ ମାଇଲ୍ ମାତ୍ର । ଆଲ୍ପସ୍ ପାହାଡ଼ ମଧ୍ୟରେ ଏହା ଅବସ୍ଥିତ । ଏଇ ଦେଶରେ ଜଣେ ରାଜା ଅଛନ୍ତି, ସେ ସମ୍ବିଧାନ ମାନି ଚଳନ୍ତି ।

ଏ ଗୋଟିଏ ବିଚିତ୍ର ରାଜ୍ୟ, ଏଠି ଦେଶରକ୍ଷା କରିବାଲାଗି ସୈନ୍ୟ ବାହିନୀ ନାହିଁ, ଅପରାଧ ନାହିଁ, ଅପରାଧୀ ନାହାନ୍ତି, ଜେଲ୍ ନାହିଁ । ୧୮୬୮ ଖ୍ରୀଷ୍ଟାବ୍ଦରୁ ଏ ଦେଶର ସୈନ୍ୟ ବାହିନୀର ବିଲୋପ କରି ଯାଇଛି । ଏହାର ଶେଷ ସୈନିକ ୯୩୧ରେ ନିଜ ଗୃହରେ ପ୍ରାଣତ୍ୟାଗ କରିଅଛି ।

ପୁଲିସ୍ ବିଭାଗରେ ମାତ୍ର ୨୨ ଜଣ ଲୋକ ଅଛନ୍ତି, ଗୋଟିଏ କୁକୁର ଅଛି, ଯାନବାହନ ଚଳାଚଳ ଦେଖିବା ପୁଲିସର କାର୍ଯ୍ୟ । ଗୋଟିଏ ଉଚ୍ଚ ପର୍ବତ ଉପରେ ରାଜପ୍ରାସାଦ ଅବସ୍ଥିତ ।

ଲାଇଚେନ୍ ଷ୍ଟାଇନ୍‌ର ମୋଟ ଲୋକସଂଖ୍ୟା, ୧୯୫୦୦ ସେମାନେ ଜର୍ମାନ୍‌ଭାଷା କହନ୍ତି; 'ଭାଡୁଜ୍' ଓ 'ଗୃନ୍' ବୋଲି ଏ ଦେଶରେ ଦୁଇଟି ମାତ୍ର ସହର ଅଛି । ଏ ଦେଶରେ ୭୨୨୭ଟି ଗାଈ ଅଛନ୍ତି । ଗ୍ରୀଷ୍ମକାଳରେ ପାହାଡ଼ ଉପର ବରଫ ତରଳି ଯାଏ, ତାପରେ ଘାସ ଉଠେ । ଗୋପାଳମାନେ ଗାଈଗୋଠ ଧରି ପାହାଡ଼ ଉପରକୁ ଉଠନ୍ତି । ଛୋଟ ଛୋଟ କୁଡ଼ିଆ ସବୁ ପାହାଡ଼ ଉପରେ ତିଆରି ହୁଏ । କୁଟା ବା ନଡ଼ାଗଦା ମଧ୍ୟ ହୁଏ; ଏହାପରେ ଗୋଟିଏ ସ୍ଥାୟୀ ଗ୍ରାମ ତିଆରି ହୋଇଯାଏ, ଗୁହାଳ ଦୁଆର କ୍ରସ୍ ଉପରେ ଲେଖାଥାଏ—I. H. S (In Hoc Signo)—ଗୋଗୋଷ୍ଠ ଉପରେ ଅଶୀର୍ବାଦ । ରବିବାର ଦିନ ତଳ ଉପତ୍ୟକାର ଚର୍ଚ୍ଚରେ ପ୍ରାର୍ଥନା ନ ହୋଇ ପାହାଡ଼ ଉପରେ ହୁଏ । କାରଣ ଗାଈଙ୍କୁ ପାହାଡ଼ରେ ଛାଡ଼ି ଗୋପାଳମାନେ ଚର୍ଚ୍ଚକୁ ଯାଇ ପାରନ୍ତି ନାହିଁ । ଶରତର ଶୀତଳ ପବନ ବୋହିବା ମାତ୍ରେ ସେମାନେ ଗୋଗୋଷ୍ଠ

ଘେନି ଉପତ୍ୟକାକୁ ଅବତରଣ କରନ୍ତି, ଗୋଟିଏ ପଟୁଆରରେ; ଗୋରୁଙ୍କ ମୁଣ୍ଡରେ ମୁକୁଟ, ଗଳାରେ ମାଳା ଓ ବେକରେ ଘଣ୍ଟି । ଏହି ଅବତରଣ ଉତ୍ସବକୁ 'ଅଲ୍ପ ଆବ୍‌ଫାହାଟ' କହନ୍ତି ।

ଲିଚେନ୍ ଷ୍ଟାଇନ୍ ପବିତ୍ର ରୋମାନ୍ ସାମ୍ରାଜ୍ୟର ଅଂଶ ବିଶେଷ ଥିଲା, ତାପରେ କ୍ଷୁଦ୍ର କ୍ଷୁଦ୍ର ଜମିଦାରୀରେ ବିଭକ୍ତ ହେଲା । ୧୮୧୫ରୁ ୧୮୬୬ ପର୍ଯ୍ୟନ୍ତ ଏହା ଜର୍ମାନୀ ଯୁକ୍ତରାଷ୍ଟ୍ରର ଅନ୍ତର୍ଭୁକ୍ତ ହୋଇ ରହିଥିଲା । ୧୮୬୬ରେ ଏହା ଏକ ସ୍ୱତନ୍ତ୍ର ଦେଶ ରୂପେ ପ୍ରତିଷ୍ଠିତ ହେଲା । ପ୍ରଥମ ଓ ଦ୍ୱିତୀୟ ମହାଯୁଦ୍ଧରେ ଏହାର କୌଣସି କ୍ଷତି ହୋଇ ନାହିଁ । 'ଭାଡୁଜ୍' ଏହାର ରାଜଧାନୀ ।

ଏହି ଦେଶର ବସ୍ତ୍ରଶିଳ୍ପ ପ୍ରସିଦ୍ଧ । ରାଜା ନିଜେ ଜଣେ ବ୍ୟବସାୟୀ । ତାଙ୍କର ଗୋଟିଏ କାରଖାନା ଅଛି । ସେଠି କ୍ଷୁଦ୍ରରୁ କ୍ଷୁଦ୍ରତମ ଗଣନାଯନ୍ତ୍ର ଉତ୍ପାଦିତ ହୁଏ—ପକେଟରେ ନେଇ ହେବ ।

ଏ ଦେଶରେ କଳା ଓ ଲାଲ୍ ଜାତୀୟ ଅଙ୍ଗୁର ଉତ୍ପାଦିତ ହୁଏ । ପକ୍ଷୀମାନେ ପାଚିଲା ଅଙ୍ଗୁର ଖାଇଯାନ୍ତି । ସେମାନଙ୍କୁ ଘଉଡ଼ିବା ଲାଗି ଅଙ୍ଗୁର ବଗିଚାର ମାଲିକମାନେ ବାଣ ଫୁଟାଇଥାନ୍ତି । ଗଛ ପାଚିବା ମାତ୍ରେ ଲୋକେ ଦଳ ଦଳ ହୋଇ ଅଙ୍ଗୁର ତୋଳିଯାଆନ୍ତି । ଏଠା ଅଙ୍ଗୁରରୁ 'ଭିନ୍‌ରେଜ' ନାମକ ମଦ୍ୟ ପ୍ରସ୍ତୁତ ହୋଇଥାଏ ।

ଡାକ ଆୟ ଏ ଦେଶର ଗୋଟିଏ ବଡ଼ ଆୟ । ଅଧିବାସୀଙ୍କୁ ଆୟର ଦୁଇରୁ ସାତ ଭାଗ ଆୟକର ଦେବାକୁ ହୋଇଥାଏ । ଏ ଦେଶର ସ୍ଥାୟୀ ଅଧିବାସୀ ହେବାକୁ ହେଲେ ପଚିଶ ହଜାର ଡଲାର୍ (ଏକ ଲକ୍ଷ ସୁଇସ୍ ଫ୍ରାଙ୍କ୍) ଦେବାକୁ ହୁଏ । ଏହି ବିପୁଳ ଦେୟ ଯୋଗୁ ବିଦେଶୀ ସଂଖ୍ୟା ବିଶେଷ ବୃଦ୍ଧି ଲାଭ କରୁନାହିଁ ।

ରାଜଧାନୀ ଭାଡୁଜର ଲୋକ ସଂଖ୍ୟା ମାତ୍ର ଚାରି ହଜାର । ଏହା ସମୁଦ୍ର ପତ୍ତନର ୧୪୮୦ ଫୁଟ ଉପରେ ଅବସ୍ଥିତ । କାସ୍ଟଲ୍ ଭାଡୁଜ ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ, ଏକ ଉଚ୍ଚ ପର୍ବତ ଉପରେ ଅବସ୍ଥିତ ।

ଏଥିରେ ରାଜା ରହନ୍ତି । ପାର୍ଲିମେଣ୍ଟରେ ପ୍ରସ୍ତାବ ଓ ରାଜାଙ୍କ ଅନୁମୋଦନ କ୍ରମେ ପାଞ୍ଚ ଜଣ ସଦସ୍ୟଙ୍କୁ ନେଇ ସରକାର ଗଠିତ ହୁଏ । ଯେଉଁମାନେ ସ୍ୱିଜରଲାଣ୍ଡରେ ସେହିପରି ଏହି ଦେଶର ସ୍ତ୍ରୀମାନଙ୍କର ଭୋଟ ଦେବାର ଅଧିକାର ନାହିଁ । ପାର୍ଲିମେଣ୍ଟର ସଦସ୍ୟ ସଂଖ୍ୟା ପନ୍ଦର ଜଣ । ଚାରିବର୍ଷରେ ଥରେ ନିର୍ବାଚନ ହୋଇଥାଏ । ଏହି ଦେଶରେ ଛଅଗୋଟି ରାଜନୈତିକ ଦଳ ଅଛି । ଶତକଡ଼ା ୯୭ ଜଣ କାଥୋଲିକ ଧର୍ମାବଲମ୍ବୀ । ଦୁଇଟି ସହର ଛଡ଼ା ଏ ଦେଶରେ ଏଗାରଟି ଗ୍ରାମ ଅଛି । ଏଠି ବେକାରି ସମସ୍ୟା ନାହିଁ ବା ଦାରିଦ୍ର୍ୟ ନାହିଁ । ଭିକ୍ଷାବୃତ୍ତି ନାହିଁ ।

ରାଜାଙ୍କ ପ୍ରାସାଦ ଉପରେ ରହିଛି ଗୋଟିଏ ବିଖ୍ୟାତ ଯାଦୁଘର । ଏଥିରେ ରୁଞ୍ଚ, ରୁବେନସ, ରେମ୍ବ୍ରାଣ୍ଡ, ଭ୍ୟାନ ଡାଇକଙ୍କର ସୁପ୍ରସିଦ୍ଧ ଛବି ସଂଗୃହୀତ ହୋଇ ରହିଛି ।

## ଅଷ୍ଟ୍ରିଆ

ବେଶୀ ଭାଗ ପାହାଡ଼ିଆ ଭୂଇଁ, ଅନୁର୍ବର; ଅଷ୍ଟ୍ରିଆ ଦରିଦ୍ରତର ଦେଶ; ଆଲ୍‌ପସ୍ ପର୍ବତ ଉପରେ ଷ୍ଟୁବେନ୍ ଘାଟି ପାରି ହୋଇ ଆମେ ଯାତ୍ରା କଲୁ—ସାମ୍ନାରେ ଏକ ଶୃଙ୍ଗ, ବିଗତ ବର୍ଷର ତୁଷାର ଅଦ୍ୟାପି ଜମି ରହିଛି । ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ପାଇନ୍, ପର୍ବତଟିର ବହୁଳାଂଶ ତରୁ ତୃଣ ଶୂନ୍ୟ । ମାସକ ପରେ ଏ ଘାଟି ତୁଷାରଚ୍ଛନ୍ନ ହୋଇଯିବ । ପାହାଡ଼ୀ ଝରଣା ଉପରେ ସେତୁ ନିର୍ମିତ ହେଉଛି । ଏଇ ଝରଣା ଶିଳା ବନ୍ଧୁର ଶଯ୍ୟାରେ ଗତି କରି ଚାଲିଛି, ଆମର ଯାତ୍ରାସଙ୍ଗୀନ ହୋଇ । ପାହାଡ଼ ଉପରେ ଓ ତଳେ କାଷ୍ଠଗୃହର ଗ୍ରାମସବୁ; ଝରଣାଟିର ନାମ 'ଇନ୍'; ଅଷ୍ଟ୍ରିଆକୁ ଗଢ଼ିଛି ସେ, ମାତୃସମା ।

ଅଷ୍ଟ୍ରିଆରେ ସିଲିଂ ମୁଦ୍ରା ଚଳେ; ଏକ ଡଲାର୍ = ୨୫ ସିଲିଂ । ଲିନ୍‌ଡେକ୍ ସହରରେ କଫିପାନ ପରେ କେତେ ଡଲାର୍ ଅଷ୍ଟ୍ରୀୟ ସିଲିଂ ଭଙ୍ଗାଇ ରଖିଲି ।

ଇନ୍ ନଦୀ ଏବେ ବିପୁଳଜଳା; ପ୍ରଖରସ୍ରୋତା; ତାର କୂଳେ କୂଳେ ମକ୍‌କା, କନ୍ଦମୂଳ, ବିଟ୍, ଗାଜର, ପ୍ରଭୃତି ଫସଲ ହୋଇଛି ।

ଘୋଡ଼ା ମକ୍‌କା ଗାଡ଼ ଭିଡ଼ ଭିଡ଼ ଗୃଲୁଛନ୍ତି । ଇନ୍ ନଦୀ ନାମରୁ ଇନସ୍‌ବ୍ରୁକ୍ ନଗରର ନାମକରଣ କରାହୋଇଛି । ଏହାର ଲୋକସଂଖ୍ୟା ଲକ୍ଷ୍ୟାଧିକ । ଚତୁର୍ଦ୍ଦିଗରେ ଉଚ୍ଚ ପର୍ବତଶ୍ରେଣୀ । ପ୍ରାୟ ସନ୍ଧ୍ୟା, ହୋଟେଲ 'ମେରିଆ ଟେରେସିଅନ୍‌ରେ' ଯାଇ ରହିଲୁ । ଅଷ୍ଟ୍ରିଆର ରାଣୀ ମେରିଆ ଟେରେସିଆଙ୍କ ନାମରେ ଇନ୍‌ସ୍‌ବ୍ରୁକ୍‌ର ଗୋଟିଏ ଗଳି ଓ ରେସ୍ତୋରାଁ ନାମିତ । ନାନା ଉପାଦେୟ ଖାଦ୍ୟ ମଧ୍ୟରେ ଏଠି ହରିଣମାଂସ ଖାଇବାକୁ ମିଳିଥିଲା ।

## ସୁବର୍ଣ୍ଣ ଛାତ

ପଞ୍ଚଦଶ ଶତାବ୍ଦୀରେ ଅଷ୍ଟ୍ରିଆର ସମ୍ରାଟ ମାକ୍‌ସିମିଲିନଙ୍କ ଦ୍ୱାରା ନିର୍ମିତ । ଥରେ ସମ୍ରାଟଙ୍କ ଖିଆଲ ହେଲା—ପ୍ରାସାଦର ଛାତଟିକୁ ସୁବର୍ଣ୍ଣରେ ନିର୍ମାଣ କରିବା ପାଇଁ । ସେତେବେଳେ ଅଷ୍ଟ୍ରିଆର ଆକାର ବିରାଟ, ଧନ ସମ୍ପଦ ଅକଳନ୍ତି । ସମ୍ରାଟ ତିନିହଜାର ଗୃଶହ ସୁନାପାତିଆ ଦିଆ ଟାଇଲ୍ ଏହି ସୌଧର ଲଗାଇଥିଲେ । ଏବେ ତାହା ସେହିପରି ରହିଅଛି । କାନ୍ଥରେ ସମ୍ରାଟ, ଯୋଦ୍ଧା ଓ ଦରବାରର ନର୍ତ୍ତକନର୍ତ୍ତକୀ ମାନଙ୍କର ଚମତ୍କାର ଫ୍ରେସ୍‌କୋ ଅଙ୍କିତ ହୋଇ ରହିଅଛି ।

ଅନ୍ୟ ଦର୍ଶନୀୟ କୀର୍ତ୍ତି ମଧ୍ୟରେ ୧୪୬୦ ଖ୍ରୀଷ୍ଟାବ୍ଦରେ ଗଥିକ୍ ଶୈଳୀରେ ନିର୍ମିତ ନଗରର ପ୍ରାଚୀନତମ ଟାଓ୍ୱାର୍, ସେଣ୍ଟ ଓ ଜାକୋବଙ୍କ ପାରିସ୍ ଚର୍ଚ୍ଚ (ଏଥିରେ ପ୍ରସିଦ୍ଧ ଶିଳ୍ପୀ ଲ୍ୟୁକାସ୍ କ୍ରାନାକ୍‌ଙ୍କର ଗୋଟିଏ ଛବି ସଂରକ୍ଷିତ), ସମ୍ରାଟ ମାକ୍‌ସିମିଲିନ୍‌ଙ୍କ ନିର୍ମିତ କୋର୍ଟ ଚର୍ଚ୍ଚ (୧୫୫୩-୧୫୬୩) ଦେଖିଲୁ । ଶେଷୋକ୍ତ ଚର୍ଚ୍ଚରେ ସମ୍ରାଟ ଆଣ୍ଠୁ ମାଡ଼ି ବସି ପ୍ରାର୍ଥନା କରୁଥିବା ମୂର୍ତ୍ତି ଓ ତାଙ୍କ ସତ୍‌କର୍ମର ଚବିଶଗୋଟି ଦୃଶ୍ୟ ମାର୍ବଲ୍ ପ୍ରସ୍ତରରେ ଖୋଦିତ ହୋଇଅଛି । ସମ୍ରାଟଙ୍କ ସମାଧି ଚତୁର୍ଦ୍ଦିଗରେ ପୂର୍ବବର୍ତ୍ତୀ ଅଷ୍ଟ୍ରିୟ ରାଜାମାନଙ୍କ ବ୍ରୋଞ୍ଜମୂର୍ତ୍ତି ନିର୍ମିତ ହୋଇ ରହିଅଛି ।

୧୮୦୯ ଖ୍ରୀଷ୍ଟାବ୍ଦର ମୁକ୍ତିଯୋଦ୍ଧାମାନଙ୍କର ମୂର୍ତ୍ତି ଏହି ପବିତ୍ର ଜାତୀୟ ପୀଠରେ ନିର୍ମିତ ହୋଇ ରହିଅଛି । ଗୋଟିଏ ରୌପ୍ୟ ଗୃପେଲ୍

ମଧ୍ୟରେ ସମ୍ରାଟ ଆର୍କ ଫର୍ଡିନାଣ୍ଡ ଦ୍ୱିତୀୟ ଓ ତାଙ୍କ ରାଣୀଙ୍କ ସମାଧି ରହିଅଛି । ଷୋଡ଼ଶ ଶତାବ୍ଦୀର ବାଦ୍ୟ ଯନ୍ତ୍ରଟି ଏବେ ମଧ୍ୟ ଚର୍ଚ୍ଚରେ ବ୍ୟବହୃତ ହୁଏ ।

ମ୍ୟୁଜିଅମ୍ ଫର୍ଡିନାଣ୍ଡିୟମ୍‌ରେ ନାନା ପ୍ରାଗୈତିହାସିକ ଉପାଦାନ, ଛବି ମୂର୍ତ୍ତି, ପେଣ୍ଟିଂ, ମେଡ଼ାଲ୍ ଓ ସ୍ୱର୍ଣ୍ଣଜଦ୍ରବ୍ୟ ପ୍ରଦର୍ଶିତ । ମାକ୍ସିମିଲିୟନଙ୍କ ଅସ୍ତ୍ରାଗାର ଇଉରୋପୀୟ ସଂରକ୍ଷିତ ଅସ୍ତ୍ରାଗାର ମଧ୍ୟରେ ସର୍ବଶ୍ରେଷ୍ଠ । ସେଣ୍ଟ ଆନ୍ନାଙ୍କ ସୌଧ ୧୭୦୬ ଖ୍ରୀଷ୍ଟାବ୍ଦରେ ନିର୍ମିତ । ବାଭେରିଆ ଆକ୍ରମଣରୁ ଯେଉଁମାନେ ଅଷ୍ଟ୍ରିୟାକୁ ରକ୍ଷା କରିଥିଲେ, ଏହା ସେହି ଜାତୀୟ ବୀରମାନଙ୍କ ସ୍ମାରକ ହୋଇ ରହିଅଛି । ୧୮୦୮ରେ ହୋଇଥିବା ଯୁଦ୍ଧର ଗୋଟିଏ ଚମତ୍କାର ପେଣ୍ଟିଂ ଏହି ପ୍ରସାଦରେ ରଖା ହୋଇଅଛି । ହଫ୍‌ବର୍ଗ ପାଲେସ୍ ମଧ୍ୟ ମାକ୍ସିମିଲିୟନ୍‌ଙ୍କ ଦ୍ୱାରା ନିର୍ମିତ । ଅଗ୍ନି ଓ ଭୂକମ୍ପରେ ଏହାର ଅନେକାଂଶ ଧ୍ୱସ୍ତ ହୋଇଥିଲା । ରାଣୀ ମେରିଆ ଥେରେସିଆ ଏହାକୁ ପୁଣି ନିର୍ମାଣ କରିଥିଲେ, ଏଥିରେ ବହୁ ଫ୍ରେସ୍କୋ ଅଙ୍କିତ, ବହୁ ଛବି ଓ ପେଣ୍ଟିଂ ସଂରକ୍ଷିତ ।

ଏହା ବ୍ୟତୀତ ସ୍କିମିଂ ଷ୍ଟେଡ଼ିଅମ୍, ଆଲ୍‌ପାଇନ୍ ଜୁ, ଅଲିମ୍ପିକ୍ ଭିଲେଜ୍ ମଧ୍ୟ ବିଶେଷ ଦର୍ଶନୀୟ ।

## ଉଚ୍ଚତମ ସେତୁ

ଦୁଇ ପର୍ବତ ମଧ୍ୟରେ ପ୍ରବାହିତ ଇନ୍ ନଦୀ ଉପରେ ଏହା ନିର୍ମିତ । ଏହାର ଉଚ୍ଚତା ୭୨୪ଫୁଟ୍ । ପାଞ୍ଚ କଂକ୍ରିଟ୍ ସ୍ତମ୍ଭ ଉପରେ ସେତୁଟି ନିର୍ମିତ ହୋଇଅଛି ।

ପ୍ରାର୍ଥନା ବେଳେ ଆମେ ବାସିଲିକା ଚର୍ଚ୍ଚରେ ପହଞ୍ଚିଲୁ । କାନ୍ଥରେ ଅପୂର୍ବ ଫ୍ରେସ୍କୋ; କେତେକ ମୂର୍ତ୍ତି ସୁବର୍ଣ୍ଣ ମଣ୍ଡିତ । ପ୍ରାଙ୍ଗଣରେ ବହୁ ସମାଧି ରହିଅଛି । କାରୁକାର୍ଯ୍ୟ ଅନବଦ୍ୟ ।

ଚର୍ଚ୍ଚରୁ ଫେରି ବସ୍‌କୁ ଆସିଲାବେଳେ ଆଲ୍‌ପ୍‌ସ୍‌କୁ ଥରେ ଅନାଇଦେଲି । ମଧ୍ୟ ଭାଗର ଚଳନ୍ତ ମେଘ ମଧ୍ୟରେ ତୁଷାର ଶୃଙ୍ଗ ସୁସ୍ପଷ୍ଟ ।

ଶୃଙ୍ଖଳତାର ଗମ୍ଭୀର ବ୍ୟକ୍ତିତ୍ୱ ଯେଉଁ ସକାଳର ଶାନ୍ତ ଶ୍ରୀ ମଧ୍ୟରେ ଅଲ୍‌ପସ୍‌ ନିଜକୁ ପ୍ରତିଷ୍ଠିତ କରିପାରିଛି ।

ପର୍ବତକୁ ଉଠୁ ଉଠୁ 'ଇନ୍‌ସ୍‌ବ୍ରୁକ୍‌' ନଗର ଆମ ସଙ୍ଗେ ଲୁଚକାଳି ଖେଳି ଖେଳି ଲୁଚିଗଲା । ଇନ୍‌ନଦୀ କିନ୍ତୁ ଅଦ୍ୟାପି ଆମର ସଙ୍ଗିନୀ, ତାର ଉତ୍ସ ଆଲ୍‌ପସ୍‌ ପର୍ବତ ମାଳାରେ ।

ଗାଛଡ଼ର୍ ଧୂମ ପରି ଉଠୁଥାଏ କୁହୁଡ଼ି, ଗିରିଶିଖ ପାଇନ୍‌ ବନରୁ । ଚୋଟିଏ ବଳଦ ଯୋଗୁ ଶଗଡ଼ ବାଲକୁ ଖତ ବୋହିନେବାର ଦେଖିଲି । ଇନ୍‌ନଦୀ କୂଳ ଲାଗି ଗୋଟି ଗୋଟିକିଆ ଘର, ଛୋଟ ଛୋଟ ଗ୍ରାମ, ଦ୍ୱାରେ ଦ୍ୱାରେ କୁଟାଗଦା, ଗଦା ମଝିରେ ଚୋଟାଏ କାଠ ଦଣ୍ଡ । ତାକୁ ଆଶ୍ରୟ କରି କୁଟାଗଦା ଠିଆ ହୋଇ ରହିଛି, ବତାସରେ ଖସି ପଡ଼ନାହିଁ । ଗ୍ରାମରେ ଗୋଟିଏ ଗୋଟିଏ ଛୋଟ ଛୋଟ ଚର୍ଚ୍ଚ, ସମାଧି ପ୍ରାଙ୍ଗଣ, ପୁଷ୍ପୋଦ୍ୟାନ । ଆମେ ବ୍ରେନାର୍‌ ପାସ୍‌ରେ ପହଞ୍ଚିଲୁ ।

ଏଠି ଆମ ପାସ୍‌ପୋର୍ଟ ଚେକ୍‌ ହେଲା । ଆମେ ଅଷ୍ଟ୍ରିଆରୁ ଇଟାଲୀରେ ପଶିଲୁ । ବ୍ରେନାର୍‌ ଏକ ଇଟାଲୀୟ ସହର । ଏହାର ଭାଷା ଜର୍ମାନ୍‌ । ଜାକୋବ ସାବଧାନ କରିଦେଲେ— ଇଟାଲୀର ଜଳ ଧାତୁ ମିଶ୍ରିତ, ସ୍ୱାସ୍ଥ୍ୟ ପକ୍ଷେ କ୍ଷତିକାରକ । ମଦ ଖୁବ୍‌ ସସ୍ତା । ଶୋଷ ହେଲେ ପାଣି ନୁହେଁ, ମଦ ପିଇବାକୁ ହେବ ।

ଆଉ ଗୋଟିଏ କଥା ମନେ ରଖିବ— ବୁଲା ଦୋକାନ ବା ହାଟ ଦୋକାନଙ୍କଠାରୁ କିଛି କିଣିବ ନାହିଁ । ସୁନା ପରି ଏଠି ବହୁତ କିଛି ଚକ୍‌ଚକ୍‌ ଦିଶେ । କିନ୍ତୁ ସେସବୁ ସୁନା ନୁହେ । ଯାହା ଘଡ଼ି ପରି ଦିଶେ ତାହା ଘଡ଼ି ନୁହେ । ବେଶ ଶସ୍ତା; କିନ୍ତୁ ଶସ୍ତାର ତିନି ଅବସ୍ଥା ।

ବାଟରେ ଗୋଟିଏ ଗାଡ଼ି ଆକ୍‌ସିଡେଣ୍ଟ ଯୋଗୁ ଆମ ବସ୍‌ କିଛି କାଳ ଅଟକି ରହିଲା । ଦୁଇ ପଟେ ଉଚ୍ଚ ପର୍ବତ, ମଝିରେ କ୍ଷୀଣ ପଥ । ପାଇନ୍‌ ବନରେ ବର୍ଷାର ଗମ୍ଭୀର ମର୍ମର ଅଶ୍ରୁସିକ୍ତର ଅପେକ୍ଷା ମଧ୍ୟରେ କଣ୍ଟର୍ ଅସ୍ୱସ୍ତି ଆଣେ । ଗୋଟିଏ ଗୋଟିଏ ଗାଡ଼ି ଛୁଡ଼ା ହେଉଁ ହେଉଁ

ଲାଇନ୍ ପ୍ରାୟ ଲମ୍ବିଲାଣି ଏକ ମାଇଲ୍ । କାହାର କି ସର୍ବନାଶ ହୋଇଛି କେହି କହିପାରୁ ନାହାନ୍ତି । କହିଲେ ବା ଇଟାଲୀୟ ଭାଷା ବୁଝିବ କିଏ ?

ବାଟରେ ଦେଖିଲୁ— ଗୋଟିଏ କାର୍ ଭାଙ୍ଗି ଛତୁ ହୋଇ ଯାଇଛି । କେତୋଟି ପାର୍ଟ ଏଠି ସେଠି ପଡ଼ିଚି । ଇଞ୍ଜିନ୍ ପାଖରୁ ଗୋଟିଏ ରକ୍ତଧାର ବୋହି ଯାଇଚି । ଗାଡ଼ି ଭିତର ରକ୍ତମୟ । ଡ୍ରାଇଭର କଣ ଷତ ହୋଇଚି ଜଣାଯାଉନାହିଁ । ପୁଲିସ୍ ଜମିଛନ୍ତି । ଫାଦର୍ ଆସିଛନ୍ତି ଶେଷ କୃତ୍ୟ କରିବା ଲାଗି ।

'ଇସାର୍କୋ' ନଦୀ ଧାରେ ଧାରେ ପାଇନ୍ ବନରେ ଆମେ ଯାତ୍ରା କଲୁ—ପାହାଡ଼ରେ ଖଣ୍ଡ ଖଣ୍ଡ ଚଳ କୁହୁଡ଼ିର ଶ୍ରୀ । କେଉଁଠି ବା କୁହୁଡ଼ିର ଧୂଆଁ ବାଟବଣା ହେଲା ପରି ବୁଲୁଛି ପାହାଡ଼ର କାନ୍ଧାରେ କାନ୍ଧାରେ । ତା ଉପରେ ତା ଉପରେ ଟେଙ୍ଗା ହେଲା ପରି ରହିଛି ସବୁ ପାହାଡ଼; ଗୋଟିଏ ବାଙ୍କ ବୁଲିଲେ ଖୋଲିଯାଏ ନୂଆ ନୂଆ ଦୃଶ୍ୟପଟ, ଚିତ୍ରମୟ ଚିତ୍ରଶାଳା । ଇସାର୍କୋ ନଦୀ ସେହିସବୁ ଦୃଶ୍ୟକୁ ତାନ ରୂପ ଦେଇ ବହୁଛି ସଧୀର ପତନ ଛନ୍ଦେ, କାହିଁ ଅବା ପ୍ରଚଣ୍ଡ ପ୍ରପାତେ, ଶିଳାସ୍ରୋତ ଆଘାତେ ଆଘାତେ, ମନ ମୋର ସୃଷ୍ଟିଶୀଳ ହୋଇଉଠେ ।

ଇସାର୍କୋ ପ୍ରସାରେ ବଢ଼େ; ଗ୍ରାମ ହୋଇ ଉଠେ ସହର; ସହର ନଗର, ଫସଲ ଖେତ ଦୀର୍ଘତର ହୋଇ ଉଠେ; ଉତ୍ତୁଙ୍ଗ ପର୍ବତ ପରି ଉପତ୍ୟକା ତଳୁ ଯେତେ ଉଠୁଚି କୁଜ୍ଝଟି । ଇଟାଲୀୟ 'ବ୍ରୁନିକୋ' ସହରରେ ଅବସ୍ଥିତ 'ଜୁର୍‌ପୋଷ୍ଟ' ରେସ୍ତୋରାଁରେ ଆମେ କଫି ପାନ କଲୁ । ପ୍ରସିଦ୍ଧ ଶିଳ୍ପୀ ମାଇକେଲ ପାଚେର୍‌ଙ୍କ ଜନ୍ମସ୍ଥାନ ଏ । ଏହି ସହରର ଉତ୍ତରରେ ରୁଷ ର ସ୍ରୋତ ପ୍ରବାହିତହୁଏ । ସାମ୍ନାରେ ଆମ 'ଡୋଲମାଇଟ୍' ପର୍ବତ ମାଳା । ଘୋର ବର୍ଷା ଓ କୁହୁଡ଼ିରେ କିଛି ଦିଶୁନାହିଁ । ଗୋଟାଏ ଗୋଟାଏ ପାଖ ଶୃଙ୍ଗ ଧୂଆଁଳିଆ ଚେହେରା ଯେମିତି ନାଚି ନାଚି ପଳେଇ ଯାଉଚି; ତୁଷାର ମୁକୁଟିତ; ବର୍ଷା ସ୍ରୋତରେ ଶିଥିଳ । ଝରଣାରେ ଗୋଳି ପାଣିର ବନ୍ୟା ।

ଆମେ 'କର୍‌ଟିନା' ସହରରେ ପହଞ୍ଚିଲୁ। ଏହାର ସ୍ଥାୟୀ ଲୋକ-ସଂଖ୍ୟା ପ୍ରାୟ ଛ'ହଜାର। କିନ୍ତୁ ଗ୍ରୀଷ୍ମକାଳରେ ଏଠି ବହୁ ଯାତ୍ରୀ ଭିଡ଼ ହୁଏ। ସ୍କି, ଅଲିମ୍ପିକ୍ ଓ ଧମାଧମ୍ ସ୍କେଟିଂ ଖେଳହୁଏ।

ଏହି ସହରର ଆଲେକ୍ସା ପାଲେସ୍ ହୋଟେଲ୍‌ରେ ଲଞ୍ଚ୍ ଖାଇଲୁ—ସ୍ପାଘେଟି (ମଇଦାରେ ତିଆରି ଜଅ ନାଳ ଆକୃତିର କଣ୍ଟା) ଟମାଟୋ ଝୋଳ ଓ ଛେନାଗୁଣ୍ଡ, ତାପରେ ଚିକେନ୍, ଶେଷକୁ ଗୋଟିଏ ଗୋଟିଏ ଫଳ ଟୋକେଇ—ଅଙ୍ଗୁର, ଆପଲ୍, ପିଅର୍ ଭବ। ଏଠି ଫଳ ଖୁବ୍ ସ୍ୱାଦୁ। ମଦ ମଧ ସେହିପରି। ସାଥୀମାନେ ପ୍ରଚୁର ପାନ କଲେ। ମୁଁ ପିଇଲି ପାଣି—ମାନେ ମିନେରାଲ୍ ୱାଟର୍, ଅଧ ବୋତଲକୁ ଦୁଇଶ 'ଲିର'!

ଅଷ୍ଟ୍ରିଆର ପାହାଡ଼ ମାଳାରେ ପୁଣି ଆମର ବସ୍ ଗଳିଲା; ପ୍ରବଳ ବର୍ଷା; ଆବଳ ଝରଣାରେ ସ୍ଫଟିକ ସ୍ୱଚ୍ଛ ତୁଷାର ମଳନ; କୁହୁଡ଼ି, ବଉଦ, କିଏ ତଳେ, କିଏ ବା ଉପରେ। ବସ୍‌ରେ ଗୋଟିଏ କବିତା ଲେଖିଲି—

## ଆଲ୍‌ପସେ ବର୍ଷା ଝରେ

ଆଲ୍‌ପସେ ବର୍ଷା ଝରେ
ମୋତେ କିମ୍ପା ଅନ୍ୟମନା କରେ ?
ମନେ ପଡ଼େ କଦମ୍ବ କାନନ
ମାଲତୀର କୁଞ୍ଜ
ନବମଲ୍ଲିକାର ମାଳା
ଯେତେ ଯେତେ ବିରହିଣୀର ଅଶ୍ରୁ ଅର୍ଘ୍ୟ;
ଏ ଦେଶର ବରବର୍ଣ୍ଣୀ ନାଗରିକା
ଚିତ୍ତ ସ୍ପନ୍ଦନ କଣ ଚିହ୍ନିକାଏ ତାରେ ?
ବର୍ଷା କାଳ ନୁହେଁ ଏଥି ପ୍ରୀତି ଉଦ୍ଦୀପକ।
ପାଇନ ବନରେ ବର୍ଷା ଝରେ
'ମେଘଦୂତ' ମୋର ମନେ ପଡ଼େ।

ମନେ ପଡ଼େ ମଉସୁମୀ ଘଟ୍ଟାର
ମହ୍ଲାର ରାଗିଣୀ
ଡାହୁକର ମନ୍ଦାକ୍ରାନ୍ତା
ଭେକ ସପ୍ତସ୍ୱର
ନିର୍ଜନ ସେ ଅନ୍ଧ ରଜନୀରେ
ବୃଷ୍ଟିଶୀଳ ଆଷାଢ଼ର ପ୍ରବଚନ ଢାଳେ;
ବର୍ଷଣର ପ୍ରଥମ ଆସାର ସିକ୍ତ —
ପୃଥିବୀର ବାସ୍ନା ଆଜି ମୋର ମନେ ପଡ଼େ
ଆଲ୍ପସେ ଯେବେ ବର୍ଷା ଝରେ ।

ମନେ ପଡ଼େ ବନ୍ୟା ଆଜି
ନଦୀ ହ୍ରଦ ସରୋବର କରେ ଏକାକାର
ଭାଙ୍ଗେ ଘର
ଆସେ ପୁଣି ତା ଉପରେ ଜୁଆରେ ଜୁଆରେ
ବରଫ ଘନାଇ
ଅଜାଦଳ ପଞ୍ଜୁରି ଠଳି ଅସଂଖ୍ୟ କଙ୍କାଳ
ଆଖିରୁ ନ ଶୁଖୁଁ ଲୁହ ଏକ ବିୟୋଗରେ
ହଇଜାରେ ଆନ ଠଳି ପଡ଼େ;
ଶକୁନର ପଟ୍ଟାଳ
କେତୋଟି ମୁମୂର୍ଷୁ ଆଖି
ହନୁ ହାଡ଼
ଚୋପର ଚଞ୍ଚୁର କାଟି
ନାଚେ ଆଗେ
କେତେ କେତେ ଆଖି ଲୁହ
ମୋ ଆଖିରେ ଟଳମଳ କରେ
ଆଲ୍ପସେ ଯେବେ ବର୍ଷା ଝରେ ।

ବର୍ଷୁଅଛି ପ୍ରାତଃକାଳୁ
ଝରୁଅଛି ଅଜସ୍ର ଝରଣା
ତୁଷାର ଶୃଙ୍ଗର ବର୍ଷା
ମୋତେ କିଂପା କରେ ଅନ୍ୟମନା ?
ଡୋଲ୍‌ମାଇଟ୍‌ ପରବତମାଳ
ବରନାର୍ଡ଼ ଘାଟି-
କୁହୁଡ଼ ପାଇନ୍ ବନ ଅନ୍ଧକାରେ
ଘୋର ବର୍ଷା ଉଠିଅଛି ମାତି
ଧସି ପଡ଼େ ଶୃଙ୍ଗ ପରେ ଶୃଙ୍ଗ
ପ୍ରକୃତି ପୂଜାରୀ କାହିଁ ହୁଏ ପଥଭ୍ରଷ୍ଟା
କେଉଁ 'ବଏନ୍ଟର୍‌' କାବ୍ୟ କରେ ଅନ୍ୟମନା ?
କେଉଁଠି କେତେ 'ଦାନ୍ତେ' ନିର୍ବାସନ
'ଗାଲିଲିଓ' ଅପମାନ ମୋର ମନେ ପଡ଼େ
ଆଲ୍‌ପସେ ଯେବେ ବର୍ଷା ଝରେ ।

ପତ୍ରହୀନ ତରୁ ଡାଳ
ଗୋଷ୍ପହୀନ ପର୍ବତ କଙ୍କାଳ
ବନ୍ଧୁରିତ ପାଷାଣ କାନ୍ତାର
ଧୂମ୍ର ମେଦୁରିତ ଶୈଳ ସୋପାନେ ସୋପାନେ
ବଜ୍ରାଘାତେ ଝଞ୍ଜାର ପ୍ରହାର
ତୁଷାର-କୁଜ୍‌ଝଟି ପରେ
ଝର୍ଝର ନିର୍ଝର
ଅସରନ୍ତି ବର୍ଷା ସଙ୍ଗେ
ଶରତର ଅବଶେଷ ପତ୍ରରାଶି ଝରେ
ମୋତେ କ'ପା ଅନ୍ୟମନା କରେ ?

ମନେ ପଡ଼େ ପାହାଡ଼ସବୁ ପାଇଅଛୁ ଝରି
ଅଖିତକୁ ଅଶ୍ରୁସିକ୍ତ କରି
ପାହାଡ଼ସବୁ ଅଶ୍ରୁ ହୋଇ ଝରନାକି
ଶୁଖିଅଛୁ ମରୁଭୂମି ମନେ
ପାହାଡ଼ସବୁ ଜଳୁଅଛୁ ପ୍ରଚ୍ଛକାରଘାନ
ଭଙ୍ଗା ଫଟା ଦଦରା ଜୀବନେ
ଏ ଶୃଙ୍ଗରୁ ସେ ଶୃଙ୍ଗକୁ ବର୍ଷା ଧାଏଁ
ପାଇନି ବଳରେ
ଅନ୍ତର ସେତେକ ବର୍ଷା
ମନେ କାଂପା ଅଶ୍ରୁ ହୋଇ ଝରେ ?

ଆଲପସ୍ ପର୍ବତମାଳାରେ ଦୁଇ ପାହାଡ଼ ମଧ୍ୟରେ 'ପିଆଭ୍' ବନ୍ଧ କରି ପ୍ରବାହିତ ନଦୀଜଳକୁ ଅଟକାଇ ରଖା ହୋଇଥିଲା । ବନ୍ଧ ତଳେ ଘରଦ୍ୱାର ଓ ଗୃହବାସ କରି ଲୋକେ ପରମ ସୁଖରେ ରହୁଥିଲେ । ଦିନେ ହଠାତ୍ ସେ ବନ୍ଧ ଭାଙ୍ଗିଗଲା । ଲୋକେ ଭାସିଗଲେ । କେତେ ବା ମାଟି ପଥର ତଳେ ପୋତି ହୋଇଗଲେ । ଅଳ୍ପ କେତେଜଣ ବଞ୍ଚିଥିଲେ ବୃକ୍ଷ ଶାଖାକୁ ଆଶ୍ରୟ କରି, କେବଳ ଏଇ ଦୁର୍ଘଟଣାର ସନ୍ଦେଶ ଦେବା ଲାଗି । ସୌଧସବୁ ନିର୍ମୂଳ, ଭୂଲୁଣ୍ଠିତ, ଗ୍ରାମ ନିଶ୍ଚିହ୍ନ । ବୃଦ୍ଧ ବୃଦ୍ଧା, ଯୁବକ, ଯୁବତୀ, ବାଳୁତ—ହତଭାଗ୍ୟ, ହତଭାଗିନୀମାନଙ୍କର ସମାଧି ରଚିତ ହୋଇଛି, ଉପତ୍ୟକାର ଏକ ପ୍ରାଙ୍ଗଣରେ, ଅଜଣା ଆଖିରୁ ଅଶ୍ରୁ ଝରାଇବା ଲାଗି ।

ସମୃଦ୍ଧ ଗ୍ରାମର ଛବିଟିଏ କିଏ ଦେଖାଇଲା—'କି ଥିଲା ଏ ରାଜ୍ୟ, କି ହୋଇଛି ଆଜି'! ମନେ ପଡ଼ିଲା ଓଡ଼ିଶାର ବନ୍ୟା, ହଳେଇପାଇ, ଦୁର୍ଦ୍ଦଶାଗ୍ରସ୍ତ ଗ୍ରାମାଞ୍ଚଳ କଥା—ସ୍ଥଳ ଉପରେ ବର୍ଷି ଲୋକ ଭାସି ଯିବା, ଉପାସ ଭୋକରେ ବୃକ୍ଷରେ ବସି ରହିବା, ଅଖାଦ୍ୟ ଖାଇବା, ହଇଜା ହେବା ଇତ୍ୟାଦି ।

ଆଲ୍ପସ୍ ପାହାଡ଼ ତଳେ ଗୋଟିଏ ହ୍ରଦ—ଲେକ୍ ଅଫ୍ ଥନ୍ । ମେଘ ଉଠେ ଲହରେ ଲହରେ; କୁହୁଡ଼ି ଜମାଏ ବଳ ପାହାଡ଼ର ମଝିଭାଗେ, ଯେଉଁଠି କଟୁ ଉଜ୍ଜ୍ୱଳତା ଅଛି, ଆକ୍ରମଣ କରିବା ଲାଗି । ଭେଲ୍‌ଭେଟ୍ ଶିଳ୍ପକଳତା ପର୍ବତ ଶିଖରୁ ଝରଣା ଝରିଆସେ ହ୍ରଦକୁ ।

ହଦଷ୍ଟରବର୍ତ୍ତୀ ଇଟାଲୀୟ୍ କର୍ମି ଦୋକାନରୁ ଷ୍ଟାମ୍ପ୍ କିଣିଲି । ଆଉ ଖଣ୍ଡିଏ କାର୍ଡ଼କୁ ଟିକେଟ୍ ଦିଅ ବୋଲି କହିବାରୁ ସେ ବୁଝି ପାରିଲା ନାହିଁ । ରାଗିଯାଇ ନୋଟ୍ ଫେରାଇ ଦେଉଥିଲା । ପରାଜୟର ଗ୍ଲାନି ଦେଖି ଫେରିବାକୁ ଦୁଃଖ ଲାଗିଲା । କହିଲି—

ମୁଁ ହୁଏତ ବୁଝାଇ ପାରୁନାହିଁ । କିନ୍ତୁ ନ ବୁଝି ପାରିବାରେ କଣ ତୁମର ଦୋଷ ନାହିଁ ? ଯାହାର ଧୈର୍ଯ୍ୟ ନାହିଁ, ସେ ବ୍ୟବସାୟ କରି ପାରିବ କିପରି ? ତାପରେ ଦୁଃଖ ପ୍ରକାଶକରି ସେ ମୋତେ ଟିକଟ୍ଟି ଦେଲା ।

ତା ପରେ ଆମେ ସମତଳ କ୍ଷେତ୍ରରେ ପ୍ରବେଶ କଲୁ; ସଫା ପାଗ, ଟିକିଏ ହେଲେ କୁହୁଡ଼ି ନାହିଁ; ମେଘ, କୁହୁଡ଼ି ଓ ପର୍ବତର ଦୁର୍ଗ ଭିତରେ ଦୀର୍ଘକାଳ ବନ୍ଦୀ ଥିଲୁ ଯେପରି; ମୁକ୍ତ ହେଲା ପରେ ସେଇ ବନ୍ଦୀକୁ ଖୋଲା ପବନ, ଛୋଫା ଆଲୁଅ ଯେମିତି ଲାଗେ, ମତେ ସେମିତି ଲାଗିଲା, ପୃଥିବୀରୁ ଆକାଶ ଯାଏ ଚୁମିଗଲା ମୋର ମନ, ପ୍ରାଣ ଶୋଧି କରି ସେଇ ଶ୍ରୀକୁ । ଭେନିଟୋ ସହରର ଦୁଇଟି ସୌଧ ମଧ୍ୟରେ ସନ୍ଧ୍ୟା ଦେଖିଲି, ତା'ର ଖଣ୍ଡିତ ଶ୍ରୀ, ଇତସ୍ତତଃ ବିଚ୍ଛିନ୍ନ ପ୍ରକାଶ; ସହର ଭିତରେ ବହୁତ କେନାଲ, ସ୍ଥାନେ ସ୍ଥାନେ କେନାଲ୍‌ରେ କୃତ୍ରିମ ପ୍ରପାତ ସୃଷ୍ଟି କରା ହୋଇଛି । 'ପିଆପି' ନଦୀ ପାର ହେଲା ପରେ ଦୂରରୁ ଜଳାର୍ଣ୍ଣବ ମଧ୍ୟରେ 'ଭେନିସ୍' ସହରର ଆଲୋକମାଳା ଦିଶିଲା ।

## ଇଟାଲୀ ଓ ଭେନିସ୍—

ହେ ଲାବଣ୍ୟମୟୀ ଇଟାଲି,
ତୁମେ କଳାର ଉତ୍ସ
ପୃଥିବୀର ଉଦ୍ୟାନ,
ପ୍ରକୃତିର ଲୀଳାନିକେତନ
ତୁମ ମରୁଭୂମିର ବି ତୁଳନା ନାହିଁ
ତୁମ ଅନାବନା ଛୋଟବୁଛ ସୁନ୍ଦର,
ତୁମ ଅଳଆଗଦା ଅନେକ ଦେଶର
ଉର୍ବର ଭୂମି ଅପେକ୍ଷା ଅଧିକ ଧନଶାଳୀ ।
ତୁମ ଧ୍ୱଂସ ଗର୍ବର
ତୁମର ଧ୍ୱଂସାବଶେଷ ଗୌରବର
ତାର ପବିତ୍ର ଶ୍ରୀ କେହି ଲିଭାଇ ନ ପାରେ ।

—ବାଇରନ୍—

ରୋମାଣ୍ଟିକ୍ କବିଙ୍କ ବର୍ଣ୍ଣନାରେ କିଛି ଅତିରଞ୍ଜନ ଥାଇ ପାରେ, କିନ୍ତୁ ଏହା ସତ୍ୟର ଦୂରବର୍ତ୍ତୀ ନୁହେ । ଇଟାଲି ଏକ ପ୍ରାଚୀନ ଦେଶ, ରୋମ୍ ଏକ ପ୍ରାଚୀନ ନଗରୀ; ରୋମାନ୍ ସଂସ୍କୃତିର ସ୍ମୃତି ସଙ୍କେତ ଏ ଦେଶର ପ୍ରାୟ ସର୍ବତ୍ର ବିଦ୍ୟମାନ । ଯେପରି ମୁକ୍ତିର ମଧୁର ଆସ୍ୱାଦ, ସେହିପରି ଦାସତ୍ୱର ତିକ୍ତ ଅଭିଜ୍ଞତା ଇଟାଲିୟମାନେ ଅନୁଭବ କରି ଆସିଛନ୍ତି । ବାଇଜାନ୍ଟାଇନ୍, ଜର୍ମାନ୍, ସ୍ପେନୀୟ ଓ ଅଷ୍ଟ୍ରିୟମାନେ ଦୂରବର୍ତ୍ତୀ ରାଜଧାନୀରୁ ଇଟାଲିକୁ ଶାସନ କରିଛନ୍ତି । ଜର୍ମାନ୍‌ମାନେ ପୋପ୍‌ଙ୍କ କ୍ଷମତା ସୀମିତ କରିବାକୁ ଚେଷ୍ଟା କରିଛନ୍ତି । ଫଳରେ ଗୃହଯୁଦ୍ଧ ଓ ତା ପରେ ଇଟାଲୀ ପାଞ୍ଚ ଭାଗରେ ବିଭକ୍ତ ହୋଇ ଯାଇଅଛି—ମିଲନ୍, ଫ୍ଲୋରେନସ୍, ଭେନିସ୍, ନେପଲସି, ଓ ସିସିଲି ରାଜ୍ୟ । ତା ପରେ ନେପୋଲିଅନ୍ ଏ ଦେଶ ଅଧିକାର କରି-ଛନ୍ତି । ୧୮୪୮ ଓ ତତ୍ପରବର୍ତ୍ତୀ ବର୍ଷମାନ ବିପ୍ଳବର ଯୁଗ; ମାଜ୍ଜିନି ଓ ଗାରିବାଲ୍ଡି ବିପ୍ଳବର ନେତୃତ୍ୱ ନେଇଛନ୍ତି । ଦୀର୍ଘ ସଂଗ୍ରାମ ପରେ ଇଟାଲି ସ୍ୱାଧୀନତା ଲାଭ କରିଛି । ୧୮୬୭ ଖ୍ରୀଷ୍ଟାବ୍ଦରେ ଭେନିସ୍ ଇଟାଲିରେ ମିଶିଛି ।

ଏହି ନଗରୀର ପ୍ରାଚୀନ ନାମ ଭେନେସିଆ; ଏହାର ଅର୍ଥ—'ଆସ, ବାରମ୍ବାର ଆସ ।' ଯେତେଥର ଆସିବ ଏଠି ନୂଆ ନୂଆ ଜିନିଷ ଦେଖିବ, ଦେଖିବ ନୂତନ ଶ୍ରୀ । ନେପୋଲିଅନ୍ ଭେନିସ୍‌ର ନୌ ଶକ୍ତିକୁ ସଂପୂର୍ଣ୍ଣ ରୂପେ ଧ୍ୱଂସ କରିଥିଲେ ।

ଭେନିସ୍‌କୁ 'ଅଜ୍ରିୟାଟିକ୍' ସମୁଦ୍ରର ରାଣୀ ଆଖ୍ୟା ଦିଆଯାଇ ଅଛି । ରୋଜର୍‌ସ୍ ବୋଲି ଜଣେ ପ୍ରାଚୀନ କବି ଲେଖିଛନ୍ତି—

'ସମୁଦ୍ରରେ ଗୋଟିଏ ନଗରୀ ଅଛି ।
ଏହାର ପଥ ପ୍ରଶସ୍ତ ଓ ଅପ୍ରଶସ୍ତ
ଏହା ମଧ୍ୟକୁ ସମୁଦ୍ର ଜୁଆରରେ ଆସେ
ଭଟ୍ଟାରେ ଫେରିଯାଏ
ଲୁଣି ସମୁଦ୍ରର ବନ୍ୟ ଗୁଳ୍ମ
ଏହାର ପ୍ରାସାଦର ମାର୍ବଲକୁ
ଚୁମ୍ବନ କରେ ।'

ଭେନିସ୍‌ର ଇତିହାସ ରୋମାଞ୍ଚକର । ଏହି ନଗରୀ ଦ୍ୱୀପାନ୍ତରିତ ରୋମାନ୍‌ମାନଙ୍କ କୀର୍ତ୍ତି । ସେମାନଙ୍କ ବଂଶଧରମାନେ ବାଣିଜ୍ୟ ବ୍ୟବସାୟ କରି କ୍ରମେ ଧନୀ ଓ କ୍ଷମତାଶାଳୀ ହୋଇଥିଲେ । ସେତେବେଳକୁ ପ୍ରାୟ ସମଗ୍ର ଇଉରୋପ ଅନ୍ଧକାରାଚ୍ଛନ୍ନ ।

ପଞ୍ଚମ ଶତାବ୍ଦୀରେ ହୁନ୍‌ମାନେ ଭେନିସ୍ ଆକ୍ରମଣ କରିଥିଲେ । ସପ୍ତମ ଶତାବ୍ଦୀରେ ଏହା ଏକ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟ ଓ ସାଧାରଣତନ୍ତ୍ର ରୂପେ ଛିଡ଼ା ହେବାକୁ ସମର୍ଥ ହୋଇଥିଲା । ଡୋଜେ ବା ମାଜିଷ୍ଟ୍ରେଟ୍, ଏହାର ମୁଖ୍ୟ ଥିଲେ, ସେ କ୍ଷମତାରେ ଯେ କୌଣସି ନରପତିଙ୍କର ସମକକ୍ଷ ଥିଲେ । ନବମ ଶତାବ୍ଦୀରେ ଅଜ୍ରିୟାଟିକ୍ ସମୁଦ୍ର କୂଳରେ ସୁନ୍ଦରପୂର୍ଣ୍ଣ ଡୋଜେ ପ୍ରାସାଦ ନିର୍ମିତ ହୋଇଥିଲା । ତା'ପରେ ଭେନିସ୍ ବହୁ ରାଜ୍ୟ ଜୟ କରିବାକୁ ସମର୍ଥ ହୋଇଥିଲା, ଏହା ହୋଇଥିଲା ଭୂମଧ୍ୟ-ସାଗରର ବୃହତ୍ତମ ସାଧାରଣତନ୍ତ୍ର । 'ରିଅଲ୍‌ଟୋ' ସେତୁ ଏବେ ସେହି ବିପୁଳ ସାମ୍ରାଜ୍ୟ ଓ ସମୃଦ୍ଧିର ମୂକସାକ୍ଷୀ ରୂପେ ରହିଅଛି ।

ଭେନିସ୍‌କୁ ବରୁଣର ରାଜ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଶତାଧିକ ଦ୍ୱୀପ ଉପରେ ଏହା ନିର୍ମିତ । ପ୍ରସ୍ତର ଓ କାଷ୍ଠ ଦ୍ୱୀପ, କେନାଲ୍ ହିଁ ଏହାର ରାଜପଥ, ବସ୍ ବା ଟ୍ରକ ନୁହେଁ, ବହୁ ସଂଖ୍ୟାରେ ଏଥିରେ ଯାତ୍ରା କରିଥାଏ ଷ୍ଟିମବୋଟ୍ ଓ ଗଣ୍ଡୋଲା । ଏହି ନଗରର ପରିବେଶ ଭିନ୍ନ; ଅନ୍ୟ ନଗରର ଦୃଶ୍ୟ ସହିତ ଏହାର ସାମଞ୍ଜସ୍ୟ ଅଳ୍ପ; ଜଳାବଧିରୁ ବିପୁଳ ସୌଧସବୁ ଆକାଶ ଚୁମ୍ବି ଉଠିଛନ୍ତି—ମାର୍ବଲ ପ୍ରାସାଦ, ତଳ ମହଲା ତାର ଜୁଆରରେ ଜଳପୂର୍ଣ୍ଣ ହୁଏ ।

ଏଠି ଅଶ୍ୱ ନାହାନ୍ତି, ଅଶ୍ୱବାହୀ ଯାନ ନାହିଁ । ଅନ୍ୟ କୌଣସି ଜୀବଜନ୍ତୁ ନାହାନ୍ତି । କେବଳ ଜଳପକ୍ଷୀଙ୍କର କଳନାଦ ଶ୍ରୁତ ହୁଏ । ଏଠି ଧୂମ ବା ଧୂଳି ନାହିଁ, କର୍ଦ୍ଦମ ଥାଇପାରେ । ନଗରସାରା ସେତୁମୟ । ପ୍ରାୟ ଚାରିଶତ ସେତୁ ରହିଅଛି । ସେଥିମଧ୍ୟରେ 'ରିଆଲଟୋ' ମାର୍ବଲ ସେତୁ ସର୍ବଶ୍ରେଷ୍ଠ । ୧୫୦ଟି କେନାଲ ପଥ ମଧ୍ୟରେ 'ଗ୍ରାଣ୍ଡ' କେନାଲ ବୃହତ୍ତମ । ଏହାର ଦୁଇପାଖେ ପ୍ରାୟ ଦୁଇଶତ ମାର୍ବଲସୌଧ ରହିଅଛି । 'ଏସ ମେରିଆ ଡେଲ୍ଲା ସାଲ୍ୟୁଟ୍' ନାମକ ଷୋଡ଼ଶ ଶତାବ୍ଦୀରେ ନିର୍ମିତ ଚର୍ଚ୍ଚ ଏହାର ଶ୍ରୀ ବୃଦ୍ଧି କରିଅଛି । କୌଣସି ଦୁରାରୋଗ୍ୟ ରୋଗରୁ ନଗରବାସୀଙ୍କୁ ଅବ୍ୟାହତ ଦେବା ଲାଗି ଏକ ମାନସିକ ସ୍ୱରୂପ ଏହା ନିର୍ମିତ ହୋଇଥିଲା ।

ଭେନିସ୍‌ର ଲୋକସଂଖ୍ୟା ପ୍ରାୟ ତିନିଲକ୍ଷ ତିରିଶ ହଜାର । ଇଟାଲୀରୁ ଏଇ ଗୋଟିଏ ମାତ୍ର ପଥ ସଂଯୁକ୍ତ ହୋଇଛି ଭେନିସ୍‌ର ଦ୍ୱୀପ-ମାଳାକୁ । ଦୁଇପଟେ ସୁବିପୁଳ ହ୍ରଦ; ରାସ୍ତାର ଠାଲେ ଠାଲେ ବର୍ଷା ଜଳ ଜମିଛି, ଆଲୋକମାଳା ଜଳରେ ପ୍ରତିଫଳିତ ହୋଇ ତରଙ୍ଗରେ ଛିନ୍ନବିଛିନ୍ନ ହେଉଛି । ସୁପ୍ରଶସ୍ତ ରାଜପଥରେ ଯାଇ ଆମେ 'ପାର୍କ' ହୋଟେଲ୍‌ରେ ପହଞ୍ଚିଲୁ । ଏଠି ସାରାଦିନ ପାଗ ଭଲଥିଲା । କିନ୍ତୁ ରାତିକୁ ବର୍ଷାରମ୍ଭ ହୋଇଗଲା । 'ଗଣ୍ଡୋଲା'ରେ ଆଲୋକମାଳା ଭୂଷିତ ବନ୍ଦର ଓ ଭେନିସ୍ ନଗରର ଦୃଶ୍ୟ ଦେଖିବା ବନ୍ଦ ହେଲା । ଅପ୍ରତ୍ୟାଶିତ ଭାବେ ଏହିପରି ଅନେକ ଶୁଭକାର୍ଯ୍ୟ ବନ୍ଦ ହୋଇଥାଏ । ଦୁଃଖ ମନରେ ହୋଟେଲରେ

ପଶିଲି, ଜଣେ ଇଟାଲିଆନ୍ ମୋ କୋଠରୀର ଦ୍ୱାର ଖୋଲିଲି । ପଚାରିଲି— ଇଂରାଜୀ ଜାଣ ?

କହିଲି—ନୋ, ଇଟାଲିଆନୋ ।

ଏବେ ସମସ୍ତ କପରି କରିବ ? କହ୍ୟୁଁଲେ ଟାର୍ଟ୍, ଭିଲ୍ ଓ ମାଟନ୍ ହଅନ, ଧଳା ଓ ଲାଲ୍ ମଦ୍ୟ; ତାରତମ୍ୟ ତ ଜାଣେ ନାହିଁ; ଭଦ୍ରତାରେ 'ଭିଲ୍' ଗ୍ରହଣ କଲି । ବନ୍ଧୁ କ୍ୟାମ୍ପବେଲ୍ କହିଲେ—ନେଲ ହଁ, ଖାଅ ନାହିଁ । ଭୂତ ପରି ସଙ୍ଗେ ସଙ୍ଗେ ମୁଣ୍ଡକୁ ଧରି ପକାଇବ । ଟିକିଏ ଓଠରେ ଲଗାଇ ଥୋଇଦେଲି । କେତେ ଅଶ୍ଳୀ ପରିହାସ ହସ ଖୁସି ଲଗିଲି । ସେ ସବୁ ବୁଝିବାର କ୍ଷମତା ମୋର ନ ଥିଲା । ନୀରବ ଦ୍ରଷ୍ଟା ହୋଇ ବସିଥାଏ । କିଏ ହସ ମୁଖରେ ଚାହିଁଦେଲେ ମୁଁ ସହାନୁଭୂତିସୂଚକ ହସ ଟିକିଏ ହସି ଦେଉଥାଏ, ଏକାକତ୍ୱରେ କରୁଣ ।

ବର୍ଷା ଓ ଝଞ୍ଜାର ଭୟ, ଗଣ୍ଡିକାଳ; ଗଣ୍ଡୋଲାଯାତ୍ରା ନିଶ୍ଚୟ ବିପଦ-ଜନକ । ପ୍ରସ୍ତାବ ହେଲା—ଚାଲ, 'ବସ୍ବୋଟ୍'ରେ ଟିକିଏ ବୁଲିଆସିବା । ସତେ ମ, ଗଣ୍ଡୋଲା ବା ସାପୁଆ ଡଙ୍ଗାରେ ଟଳ ମଳ ହୋଇ ଭିଜି ନଈ ପାରି ହେବାର ଅନୁଭୂତି କଣ ମୋର ନାହିଁ ? 'ବସ୍ବୋଟ୍'ରେ ଯାତ୍ରା-ପ୍ରସ୍ତାବ ମୋର ମନର ଅନୁକୂଳ ହେଲା । ସଙ୍ଗୀ ସଙ୍ଗିନୀମାନଙ୍କ ମଧ୍ୟରୁ ଅଧେ ଗଲେ, ଅଧେ ରହିଲେ ।

ଦୁଇ ପାଖେ ବଡ଼ ବଡ଼ ସୌଧ, ଭିତରେ ପାଣି ପଶେ ନ ପଶେ । ବୋଟ୍ ଆମକୁ ନେଇ ଜେଟିରେ ଓହ୍ଲାଇ ଦେଲା । ପୁରାତନ ରାଜବାଟି; ପାଖରେ ତାର ରେସ୍ତୋରାଁ, ବଡ଼ ଚକ୍‌ଚକିଆ । ଦଳ ଦଳ ଲୋକ ରେସ୍ତୋରାଁ ଦୁଆରେ ବସିଛନ୍ତି, ପିଉଛନ୍ତି; କାନରେ ସଙ୍ଗୀତ ବାଜୁଚି, ମଦ ପରି ଉତ୍ତେଜକ । ଆଖିସବୁ ଚଞ୍ଚଳ; ଜଣେ କଣ୍ଢେଇ ହୋଇ ପଡ଼ିଛି, ମୁହଁଯାକ ରକ୍ତ । କେବେ କେବେ ବଳବଳଉଛି; ଲୋକେ ତାକୁ ଧରି ଧରି କରି ବସ୍‌ବୋଟ୍‌କୁ ନେଉଛନ୍ତି ।

ରାତି ଏଗାରଟା; ଏକୋଜ ଫେରିବାକୁ ଡର ଲାଗୁଥାଏ, ବାଟ ଭୁଲିବାର ଭୟ—ଜଳାର୍ଣ୍ଣବ, ଅନ୍ଧକାର, ବର୍ଷା, ମଦ୍ୟପ । କାହାକୁ କହି

ପଶୁରିବାର ଉପାୟ ନାହିଁ । ସାଥୀଙ୍କୁ କହିଲେ—ଚାଲ, ଫେରିଯିବା; ସେ ହସିଲେ; କ୍ଳାନ୍ତ ? ଅନ୍ତତଃ ବଜାରରେ ଦୁଇଟି ଘଣ୍ଟା କଟାଇବା ଦରକାର; ସଙ୍ଗିମା ବୁଢ଼ୀ ନବୀନା ଯୁବତୀ ମତ ଏ ପ୍ରସ୍ତାବରେ ନାରାଜ; ଇଟାଲୀୟ ଗୀତ ଓ ବାଦ୍ୟ ନାଦରେ ? ନା, ନିଶାଭୋଜନରେ ।

ଓଃ, କେଡ଼େ ଏକାକୀ ମୁଁ ! ବନ୍ଧୁବାନ୍ଧବଙ୍କଠାରୁ କେତେ ଦୂରରେ ! ମାଷ୍ଟରବାପା ଶିକ୍ଷକ, ନିବୃତ୍ତିମାର୍ଗାବଲମ୍ବୀ । ବିଳାସମନ୍ଦିର ମୋ ପକ୍ଷେ ନିଷିଦ୍ଧ ଗୃହ; ନିଜେ ଯାଇନାହିଁ, ଅନ୍ୟଙ୍କୁ ମନା କରନ୍ତି—ନିଷ୍ଠୁର ।

ତା ପରଦିନ ପ୍ରାତଃସ୍ନାନ ପରେ ପାର୍କ ହୋଟେଲ୍‌ର ଘରପଟେ ବୁଲିଲି । ଗଣ୍ଡୋଲାରେ ପରିବା ବୁହାହୋଇ ଆସୁଥାଏ—କୋବି; କମଳା ଲେମ୍ବୁ ଜାତୀୟ ଏକ ଫଳ, ପିଚ୍‌ଫଲ୍, ଟମାଟୋ, ଜୁକିନି (ଜହ୍ନୀପରି ଗୋଟିଏ ଫଳ), କଖାରୁ; ଅଙ୍ଗୁର୍, ପିଅର୍, ଆପଲ୍ । କୌଣସି କୌଣସି ଗଣ୍ଡୋଲାରେ କେବଳ ମଦ୍ୟ ବୋତଲହିଁ ଭର୍ତ୍ତି । ମାଳ ପ୍ୟାଣ୍ଟ ପିନ୍ଧା ନାଉରୀ ଅଦ୍ଭୁତ ମାରି ଗଣ୍ଡୋଲା ବାହୁଛନ୍ତି । ଖବର କାଗଜ ଗୋଟାଏ ଧରି ଜଣେ ଡ଼ାକ ଡାକ ଯାଉଛି ।

'ଏଟ୍‌ଗଟ୍' ନାମକ ବୟ୍‌ବୋଟ୍‌ରେ ବସି ଆମେ ଭେନିସ୍ ବୁଲି ବାହାରିଲୁ; ବୁଲୁଛି ଗୋଟିଏ କୁକୁର; ମୁହଁରେ ତାର ତୁଣ୍ଡି; କାଳେ ଅଖାଦ୍ୟ ଖାଇଦେବ ବୋଲି ଗୃହସ୍ଥ ଏ ବ୍ୟବସ୍ଥା କରିଛି । ଏଠି ବନ୍ୟ କୁକୁର ନାହାନ୍ତି । କିନ୍ତୁ କୁକୁର ତା ପ୍ରକୃତି ଛାଡ଼ୁଛି କେଉଁଠି ? କିଛି ନ ଖାଇ ପାରିଲେ ବି ସେ ଶୁଙ୍ଘି ଶୁଙ୍ଘି ମୁହଁ ମାରି ଯାଉଛି; 'ଅଘ୍ରାଣଂ ଅର୍ଦ୍ଧଭୋଜନଂ !'

ଆମେ 'ରବେଷ୍ଟୋ ଇଷ୍ଟେସନ୍' ନାମକ କାଚ କାରଖାନାରେ ପହଞ୍ଚିଲୁ । ଦୁଇଟି ଚୁଲିରେ କାଚ ଜିନିଷ ସବୁ ତିଆରି ହେଉଥାଏ । ଲୁହା ଛଡ଼ରେ ଜଳନ୍ତା କାଚପିଣ୍ଡ ଧରି କାରିଗର ଆମ ସାମ୍ନାରେ ଗୋଟିଏ ସିଂହ ଓ ଗୋଟିଏ ଫୁଲଦାନି କରି ଦେଖାଇଲା । କାରଖାନାକୁ ଲାଗି ଗୋଟିଏ ଦୋକାନ—ଏଥିରେ ନାନା ରଙ୍ଗର କାଚ ଖେଳଣା;

ଫେଜାଣ୍ଟ, ବକ, ବୁଲ୍‌ବୁଲ୍ ଆଦି ପକ୍ଷୀ, ବିବିଧ ଶୈଳୀର ମଦ ଗିଲାସ, ସିଗାରେଟ୍ ଧୂଆଁ ଝଡ଼ା, ନାନା ଅଳଙ୍କାର, ଝାଡ଼ ଆଲୋକମାଳା; ଆଧୁନିକ ଗୃହ ସଜେଇବାର ନାନା ଉପକରଣ ପ୍ରଦର୍ଶିତ ହୋଇଅଛି । ଇଣ୍ଟେରିଅରରେ ଉଚ୍ଚ ଶିଳ୍ପ କାଚ ଦ୍ରବ୍ୟର ସୃଜ୍ୟୋତ ଅଛି ।

ଆମେ 'ସେଣ୍ଟମାର୍କ'ସ୍କୋୟାରରେ ଆସି ପହଞ୍ଚିଲୁ । 'ଆଡ୍ରିଆଟିକ ସମୁଦ୍ର; ତା ମଧ୍ୟରେ ସେଣ୍ଟଜର୍ଜ ଚର୍ଚ୍ଚ ଏକ ଅଦ୍ଭୁତ କୀର୍ତ୍ତି, ସ୍ୱପ୍ନରେ ଦର୍ଶନ; ମର୍ତ୍ତ୍ୟରେ ଏପରି ଥାଏ ବୋଲି ବିଶ୍ୱାସ ହେବ ନାହିଁ । ଜଳରେ ଏହାର ଅନେକାଂଶ ଡୁବି ରହିଛି, ଚତୁର୍ଦ୍ଦିଗରେ ଉତ୍କ୍ଷିପ୍ତ ତରଙ୍ଗ ।

ନିକଟରେ 'ଡୋଜେସ' ପାଲେସ୍ ସମୁଦ୍ରକୁ ମୋହିଁ ରହିଛି । ସେକ୍ସପିଅର ଏ ପାଲେସ୍ ହୁଏତ ଦେଖିଥିବେ । ଏଠି 'ମର୍ଚ୍ଚେଣ୍ଟ ଅଫ୍ ଭେନିସ୍'ର କଳ୍ପନା କରିଥିବେ । ଵଚର ସାଇଲକ୍ !

ତାପରେ ଆମେ ସେଣ୍ଟମାର୍କ କାଥେଡ୍ରାଲ୍ ଦେଖିଲୁ । ପ୍ରାଙ୍ଗଣରେ ଆଡ୍ରିୟାଟିକ୍ ସମୁଦ୍ରର ଜଳ ଭର୍ତ୍ତି । ପଟା ପଡ଼ିଛି । ତା ଉପରେ ଚାଲି ଚାଲି ଯାଇ ଆମେ ଚର୍ଚ୍ଚରେ ପଶିଲୁ । ପାରା ସବୁ କାନ୍ଧରେ ମୁଣ୍ଡରେ ବସୁଛନ୍ତି । କେହି କେହି ଏ ଦୃଶ୍ୟର ଫଟୋ ଉଠାଉଛନ୍ତି ।

ଏକାଦଶ ଶତାବ୍ଦୀରେ ଏହି କାଥେଡ୍ରାଲ୍ ନିର୍ମିତ, ପ୍ରାଚୀନ ମୋଜାଇକ୍ କାମ କେତେକ ସ୍ଥାନରେ ଅକ୍ଷୁଣ୍ଣ ରହିଅଛି । କାଥେଡ୍ରାଲ୍ ମାଡୋନା ଓ ସନ୍ନ୍ୟାସୀ, ଜନ୍ କ୍ରିଷ୍ଟୋଫର୍ ଓ ସନ୍ନ୍ୟାସୀବୃନ୍ଦ; ମାଡୋନା ଓ ଶିଶୁ, ଆଡାମ୍ ଇଭ୍, ଅପୋଲୋ ଓ ଡାଫନେ, ନରକରୁ ମହାତ୍ମାମାନଙ୍କର ଉଦ୍ଧାର; ସ୍ୱର୍ଗ ସମୁଦ୍ରର ରାଣୀ ଭେନସ୍, ମାର୍ସ୍ ଓ ନେପ୍‌ଚୁନ୍, ବିଭିନ୍ନ ସନ୍ନ୍ୟାସୀମାନଙ୍କର ଶହୀଦ୍ ହେବା ଆଦି ବହୁ ଫ୍ରେସ୍କୋରେ ଭରା ।

ଆର୍ସେନାଲ୍ ମ୍ୟୁଜିଅମ୍‌ରେ 'ବୁସେନ୍‌ଟାଓ୍ୱାର' (୧୭୨୮) ନାମକ ବିଶ୍ୱ ପ୍ରସିଦ୍ଧ ପୋତ ସଂରକ୍ଷିତ ହୋଇଅଛି । ସୁବର୍ଣ୍ଣ ଓ ଭେଲ୍-

ଭେଟ୍‌ରେ ଏହା ସୁସଜ୍ଜିତ ଓ ସ୍ଥାନେ ସ୍ଥାନେ ବହୁମୂଲ୍ୟ ମଣିମୁକ୍ତା ଖଚିତ ହୋଇଥିଲା । ଏଥିରେ ୮୪ଟି ସୁବର୍ଣ୍ଣ ଆହୁଲା ଲାଗିଥିଲା । ୧୬୮ ଜଣ ନାବିକ ଆହୁଲା ମାରୁଥିଲେ । ଦିନେ ଏହା ଭେନିସର ଅକଳ୍ପନୀୟ ସମୃଦ୍ଧି ଓ କୌଶଳର ପ୍ରତୀକ ଥିଲା ।

ସାନ୍ ମାର୍କୋ ଲାଇବ୍ରେରୀ ଷୋଡ଼ଶ ଶତାବ୍ଦୀର ଇଟାଲୀୟ କବି ପେଟ୍ରାର୍କଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଜୀବନର ଶେଷ ଦଶ ବର୍ଷ ସେ ଏହି ନଗରରେ କଟାଇ ଥିଲେ ଓ ତାଙ୍କ ସଂଗୃହୀତ ଯାବତୀୟ ପାଣ୍ଡୁଲିପି ଏହି ପାଠାଗାରକୁ ଦାନ କରିଥିଲେ ।

ଡୋଗେସ୍ ପାଲେସ୍ ଓ ଲାଇବ୍ରେରୀ ମଧ୍ୟରେ ଦୁଇଟି କଳାମଣ୍ଡିତ ପ୍ରସ୍ତରର ସ୍ତମ୍ଭ ଅଛି । ଦ୍ୱାଦଶ ଶତାବ୍ଦୀରେ କନଷ୍ଟାଣ୍ଟିନୋପଲ୍‌ରୁ ଅଣା ହୋଇଥିଲା; ଗୋଟିକରେ ପକ୍ଷଯୁକ୍ତ ସିଂହ, ପଞ୍ଝାରେ ଯୀଶୁଙ୍କ ବାଣୀ । ଅନ୍ୟ ସ୍ତମ୍ଭର ଚୂଳରେ ଗୋଟିଏ କୁମ୍ଭୀର; ତା ପୃଷ୍ଠରେ ଭେନିସ୍‌ର ସାଧାରଣତନ୍ତ୍ରର ମୁଖ୍ୟ ପୃଷ୍ଠପୋଷକ ସେଣ୍ଟ ଥିଓଡର୍—ତାଙ୍କ ହାତରେ ତରବାରୀ ଆଉ ଢାଲ । ଥିଓଡ଼ର୍ ସିରିଆର ଜଣେ ସାହସୀ ସୈନିକ, ଶହୀଦ୍ ହୋଇଥିଲେ ।

ଆଡ୍ରିଆଟିକ୍ ସମୁଦ୍ରରେ ଆମ ବସ୍‌ବୋଟ୍ ଫେରିଲା—ନୀଳ ଲହରୀର ଶିରେ ଶିରେ ସୂର୍ଯ୍ୟରଶ୍ମି ନୃତ୍ୟ କରୁଥାଏ । ଆମେ ନାଳରେ ପଶିଲୁ । ଲହରୀ-ଚଞ୍ଚଳ ଜଳରେ ସୌଧଶିର ଉଦ୍ୟାନ, କୂଳ ସୌଧର ରଙ୍ଗୀନ୍ ଆଇଭି ଲତା ନାଚୁଥାଏ ।

ମାଆ କୋଳରେ ଗୋଟିଏ ପିଲା । କାମେରା ଧାରଣୀ ମେମ୍ସ ରସେଲ ତାକୁ ଗେଲ କଲା, କିନ୍ତୁ ସେ ଟିକିଏ ହେଲେ ଚାହିଁଲା ନାହିଁ । ମାଆ ହସେଇବାକୁ ଚେଷ୍ଟା କଲା—ହସଟି ଫଟୋରେ ଉଠୁ, ଏଇ ତାର ଇଚ୍ଛା । କିନ୍ତୁ ପିଲାଟି ହସିଲା ନାହିଁ । କେବଳ ପାଟି ପାକୁ ପାକୁ କଲା । ପ୍ରେରଣାହୀନ ହସର କି ମୂଲ୍ୟ ? କାହିଁକି ଜବରଦସ୍ତି କଢ଼ି ଫୁଟେଇବାକୁ ଚେଷ୍ଟା କରୁଛ ?

ଭେନିସ୍‌ରୁ ଭଦାସ୍ମ ମୁହୂର୍ତ୍ତରେ ଗୋଟିଏ 'ମନିବ୍ୟାଗ୍ ମଣିଷ' ଦେଖିଲି । ମୁଣ୍ଡରେ ମନିବ୍ୟାଗର ଟୋପି, ମନିବ୍ୟାଗ ଝୁଲୁଛି ତାର କାନରେ, ଅଣ୍ଟାରେ, ଗୁଡିରେ, ପିଠିରେ, ଯେ ଗାଡି କରୁଛି—ଡଲାରକୁ ଛ'ଟି; ଖୁବ୍ ଶସ୍ତା ।

'ପୋ' ନଦୀ ଅତିକ୍ରମ କରି ଆମେ 'ଫେରାର୍' ସହରରେ ପହଞ୍ଚିଲୁ । 'ଶାଲଟବାକ' ରେସ୍ତୋରାଁରେ କଫିପାନ କଲୁ । ଏ ଅଞ୍ଚଳରେ କଣ୍ଟା କଣ୍ଟା ଉଇଲୋ, ପପ୍‌ଲର୍ ଅଛି; ପାଇନ୍ ବିରଳ । 'କାଷ୍ଟେଲ୍ଲୋ' ସହର ଗୋଟିଏ 'କାସଲ୍'କୁ କେନ୍ଦ୍ର କରି ଗଠିତ ହୋଇ-ଥିଲା । କାସଲ୍‌ର ଗୃହ ପାଖେ ଗଡ଼ଖାଇ ।

ଗଛମୂଳେ ଶଗଡ଼ ଶଗଡ଼ ଆପଲ୍ ଝଡ଼ି ପଡ଼ିଚି । ଗମ୍ଭୀରବ୍ୟାପୀ ଅଙ୍ଗୁର ଓ ଆପଲ୍ ବଗିଚା, ସେଥିପାଇଁ ପିଅର୍ ଓ ପିଚ୍ । ଭାଇନ୍‌ୟାର୍ଡ଼ ଲାଲ୍ ପତ୍ରଭରା, ଝଡ଼ିଯିବାର ପୂର୍ବାଭାସ ।

ଫେନ୍ ସାହାଯ୍ୟରେ ନାଳ ଖୋଳା ହୋଇ ବନ୍ଧାରେ ମାଟି ପଡ଼ୁଛି । ନାଳ ବନ୍ଧରେ ଗଛସବୁ ଲଗିଛି ।

ଆମେ 'ପାଡୁଆ' ସହରରେ ପହଞ୍ଚିଲୁ; ଏହା ପ୍ରାଚୀନ ଭେନେସିଆର ରାଜଧାନୀ ଥିଲା, ଏବେ 'ଭେନିସ୍' ପ୍ରଦେଶର ଅନ୍ତର୍ଗତ । ପ୍ରାଚୀନ ସୌଧସବୁ ଏବେ ବି ମୁଣ୍ଡ ଟେକିଛି । ସେଣ୍ଟ ଆନ୍ଥୋନି ଚର୍ଚ୍ଚର କାରୁ କଳା ଅପୂର୍ବ; ବହୁ ଧର୍ମାତ୍ମକ ଚିତ୍ର ଏଥିରେ ସନ୍ନିବେଶିତ ହୋଇ ରହିଛି, ସେଣ୍ଟ ଆନ୍ଥୋନିଙ୍କ ଅସ୍ଥି ଅଦ୍ୟାପି ସୁରକ୍ଷିତ । ଆନ୍ଥୋନି ୧୧୯୫ ଖ୍ରୀଷ୍ଟାବ୍ଦରେ ଲିସ୍‌ବନ୍‌ରେ ଜନ୍ମଗ୍ରହଣ କରିଥିଲେ । ସେ ଧର୍ମ ଲାଗି ଜୀବନରେ ସମସ୍ତ ତ୍ୟାଗ ସ୍ୱୀକାର କରିଥିଲେ ।

ପାଡ଼ୁଆର ଲୋକସଂଖ୍ୟା ସତୁରି ହଜାର । ୧୨୨୨ ଖ୍ରୀଷ୍ଟାବ୍ଦରୁ ଏଠି ଗୋଟିଏ ବିଶ୍ୱବିଦ୍ୟାଳୟ ଚାଲି ଆସୁଅଛି । ଜଳବାୟୁ ସମଶୀତୋଷ୍ଣ; ଜହ୍ନି କାକୁଡ଼ି ପରି ଅଙ୍ଗୁର ଲତା ମାଡ଼ିଛି । ଆମ ଡାହାଣ ପଟେ ଆଲ୍‌-ପସ୍‌ର ଗୋଟି ଗୋଟିକିଆ ପାହାଡ଼, କିନ୍ତୁ ବାଁ ପଟ ଏକଦମ୍ ସମତଳ ।

ଆମେ 'ବଲୋନା' ନଗରରେ ପହଞ୍ଚିଲୁ । ଏହା ଏକ ଅତି ପ୍ରାଚୀନ ସହର; ରୋମାନ୍ ମାନଙ୍କର ରାଜଧାନୀ ଥିଲା । ରୋମାନ୍ ସହର ଭାବରେ ମଧ୍ୟ ଖ୍ୟାତି ଅର୍ଜିଥିଲା । ଏହାର ବିଶ୍ୱବିଦ୍ୟାଳୟ ଇଉରୋପରେ ପ୍ରାଚୀନତମ ବୋଲି କୁହାଯାଏ (୧୦୭୦) । ତ୍ରୟୋଦଶ ଶତାବ୍ଦୀରେ ୧୦ ଦଶହଜାର ଛାତ୍ର ଅଧ୍ୟୟନ କରୁଥିଲେ । ସେ ଯୁଗରେ ମଧ୍ୟ ଏହି ବିଶ୍ୱବିଦ୍ୟାଳୟରେ କେତେକ ଅଧ୍ୟାପିକା ଥିଲେ । ସେମାନଙ୍କ ମଧ୍ୟରେ ସୁଖ୍ୟାତି ଅର୍ଜନ କରିଥିଲେ ନଭେଲ୍ଲା ଆଣ୍ଡ୍ରିଆ (ଚତୁର୍ଦ୍ଦଶ ଶତାବ୍ଦୀ) । ସେ ଅତି ସୁନ୍ଦରୀ ଥିଲେ । କାଳେ ଛାତ୍ରମାନଙ୍କର ମନ ବିଚଳିତ ହେବ, ସେଥିଲାଗି ସେ ପରଦା ଆଢୁଆଳରେ ରହି ପାଠ ପଢ଼ାଉଥିଲେ ।

'ବଲୋନା' ଯେପରି ପ୍ରାଚୀନ; ସେହିପରି ଆଧୁନିକ ସହର । ସ୍ୱୟଂଚାଳିତ ବିଦ୍ୟୁତ୍ ଆଲୋକ ଯାନବାହନର ଗତି ନିୟନ୍ତ୍ରଣ କରେ । ଗ୍ରେନ୍ ଗ୍ରେନ୍ ପାହାଡ଼ରେ ଅଙ୍ଗୁର ଚାଷ ହୋଇଛି । ଜଣେ ହଳରେ ହଳ ବୁଲାଉଛି । ଜଙ୍ଗଲରେ ଘୋଡ଼ା ଯୋଚି ହୋଇଛନ୍ତି; ଲଙ୍ଗଳଟି ଅବଶ୍ୟ ଆଧୁନିକ ।

ବଲୋନାର ସନ୍ଧ୍ୟା ଆମ ଶରତ ସନ୍ଧ୍ୟା ପରି ଆଡ଼ମ୍ବରପୂର୍ଣ୍ଣ, ପାହାଡ଼ ପରିବେଶରେ; ସତେ କିଏ ଆଜି ଥରେ ଦୃଷ୍ଟି ବୁଲାବ, ଗୋଧୂଳି ଶ୍ରୀ ଭରି ଏଇ ଅନୁଚ ପାହାଡ଼ ମାଳାରେ ? ତେଣୁ ସନ୍ଧ୍ୟାର ଉତ୍କ୍ରମା ମାଖି ନିଏ ମୋର ମନରେ, ଅଗଣିତ ସନ୍ଧ୍ୟା ମଧ୍ୟରେ ତାହା ଯେପରି ଝଟକି ପାରିବ ।

ତାପରେ ଦିନ ଆଜି ମାଟିର ପାହାଡ଼ ସବୁ ପଡ଼ିଲା । ଜାକୋବ କହିଲେ—ଏପିପ୍ନିଜ୍ । କୁହୁଡ଼ି ମାଡ଼ି ଆସୁଥାଏ, ତା ମଧ୍ୟରେ ସନ୍ଧ୍ୟାର ଶେଷ କେତୋଟି ସୁବର୍ଣ୍ଣରେଖା—ଆହା ମୁହୂର୍ତ୍ତକ ମଧ୍ୟରେ ଲୁଚିଗଲା, ବଦଳିଗଲା ଆକାଶର ମାନଚିତ୍ର । ଅନ୍ଧକାର ଘନତର ହେଲା ମେଘ ଆଉ କୁହୁଡ଼ିରେ । ଆମେ 'ଟସକାନି' ପ୍ରଦେଶରେ ପ୍ରବେଶ କଲୁ, ପଥରେ ଲଙ୍ଘନ କଲି 'ଆର୍ନୋ' ନଦୀ ।

ମିସ୍ 'ମେରି ସିମୋନି' ମୋ ପଛରେ ବସି ପିଲାଦିନର ଗୀତଟିଏ ଗାଇଲେ । ଇଟାଲୀୟ ଖେଳଣା ମୂଷା 'ପେପିନ୍ସ୍' ବିଷୟରେ ।

‘ହେ ମୂଷୀ ପେପିନ୍‌ସ୍
ତୁ ଆମ ଘର ଛଡ଼ ବାହାର ଯା
ଆଜି କାହା ଘରେ ରହ ।
ତୁ ମୋ ସୁନାଝିଅକୁ ଡରଉଚୁ
ମୋ ଛେନା ଚାଇ ଦେଉଚୁ
ମୋ ମଦ ପିଇ ଦେଉଚ
ପେପିନ୍‌ସ୍, ହେ ପେପିନ୍‌ସ୍
ତୁ କାହିଁକି ସବୁବେଳେ ମୋ ପାଖେ ଅଛୁ ?’

ସିମୋନାର କଣ୍ଠସ୍ୱର ମଧୁର । ଗାଇଲାବେଳେ ତା ମୁଖଭଙ୍ଗୀ ବିଶେଷ ଆକର୍ଷଣୀୟ ହୋଇଉଠେ । ଅଭିନେତ୍ରୀ ?

ମେରି କହିଲା—ମୁଁ ହାଇସ୍କୁଲ ରଙ୍ଗମଞ୍ଚରେ ନାଚୁଥିଲି । ମୋ ଅଭିନୟ ଛାତ୍ରମାନେ ଖୁବ୍ ପସନ୍ଦ କରୁଥିଲେ । ହାଇସ୍କୁଲ ଛାଡ଼ିବା ପରେ ପରେ ବ୍ୟାଙ୍କରେ ପଶିଲି । ସେ ସୁଯୋଗ ଆଉ କାହିଁ ?

ମେରି ପୁଣି ଥରେ ଗାଇଲା—

Pepins, o little mouse
Wo’nt you go away ?
you scare my girl
you eat my cheese……

ଦେଖିଲି—ମେରି କଜଳକଆ ମୂଷା କଣ୍ଢେଇଟିଏ କିଣିଛି ଭେନିସରୁ । ପିଲାଦିନେ ଏଇ ଗୀତଟି ଗାଇ ମାଆ ତାକୁ ଶୁଆଇ ଦେଉ-ଥିଲା । ପଚାରିଲି—

ଏ କୁଣ୍ଢେଇର ଆଖ ଆଉ କାହିଁକି ?
ଅନ୍ୟ କେଉଁ କୁଣ୍ଢେଇ ତୁମ ମନରେ ନାହିଁ ?
ମେରି କହିଲା—
You mean mother’s son-in-law !
ତାପରେ ଦୁହେଁ ଖୁବ୍ ହସିଲୁ ।

'ମେଗ୍ଗି, ସତ କହ, କାହିଁକି 'ମାଆଙ୍କର କୋଳି' ଏ ପର୍ଯ୍ୟନ୍ତ ହୋଇ ନାହାନ୍ତି ?

କାହିଁକି ?'

ମେଗ୍ଗି ମୋ କଥାକୁ ନାନାଭାବେ ଏଡ଼ିଲା ପରେ କହିଲି— ସ୍ତ୍ରୀଙ୍କୁ ବିଶ୍ୱାସ କରାଯାଇ ପାରେ—ଜୀବନରେ ଜଣକୁ ଭଲ ପାଇଥିଲି; କିନ୍ତୁ···' ଟିକିଏ କରୁଣ ଭାବରେ ମେଗ୍ଗି କହିଲି—ଶେଷ ମୁହୂର୍ତ୍ତରେ ସେ ତାର ମତ ବଦଳାଇଲା !' 'ଏବେ ଆଉ ଜଣକୁ ଭଲ ପାଉଛି । କାହାକୁ କିଛି କହିନାହିଁ, କିଛି ଯୋଜନା ମଧ୍ୟ କରିନାହିଁ, ଭଗବାନ୍ ଦୟା କଲେ ଆଗାମୀ ୫ ସପ୍ତାହରେ ବିଭାଘର ହେବ ।'

## ଫ୍ଲରେନ୍ସ—

ଜଣେ କବି ଲେଖିଛନ୍ତି—

ବହୁ ସୁନ୍ଦର ନଗର ପୃଥିବୀରେ ଅଛି;
କିନ୍ତୁ ଫ୍ଲରେନ୍ସର ତୁଳନା କାହିଁ !
ପବିତ୍ରତମ ରଶ୍ମିର ଜନ୍ମ ସେ;
ଅନ୍ଧକାର ମଧ୍ୟରେ ଯେତେବେଳେ ଏହାର
ସୃଷ୍ଟି ହେଲା,
ସେତେବେଳେ କି ସୁନ୍ଦର ଆଲୋକ
ବିଚ୍ଛୁରିତ ହୋଇଥିଲା !

ଫ୍ଲରେନ୍ସର ପ୍ରାକୃତିକ ଅବସ୍ଥିତି ମନୋହର; ଚତୁର୍ଦ୍ଦିଗରେ କ୍ଷୁଦ୍ର ବୃହତ୍ ପର୍ବତମାଳା, ନଗରର ମଧ୍ୟ ଭାଗରେ 'ଆର୍ନୋ' ନଦୀ; ବହୁ ସେତୁ ନଗରର ଉଭୟ ଅଂଶ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରି ଅଛି ।

ମହାକବି 'ଦାନ୍ତେ'ଙ୍କ ଜନ୍ମସ୍ଥାନ ହିସାବରେ ଫ୍ଲରେନ୍ସ ଜଗତ୍ ବିଖ୍ୟାତ । କିନ୍ତୁ ଏହି ନଗର ତାଙ୍କ ପ୍ରତିଭାକୁ ଚିହ୍ନିପାରି ନାହିଁ !

ଶତ୍ରୁ ଘୃଣା ଓ ଧର୍ମାନ୍ଧତାର ଶିକାର ହୋଇଥିଲେ ସେ । ୧୩୦୧ ଖ୍ରୀଷ୍ଟାବ୍ଦରେ ତାଙ୍କୁ ନିର୍ବାସନ ଓ ମୃତ୍ୟୁ ଦଣ୍ଡାଦେଶ ହୋଇଥିଲା । ତାଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରା ହୋଇଥିଲା । ଫ୍ଲରେନ୍ସରେ ପ୍ରବେଶ କଲାବେଳେ ଏଇ ଘଟଣା ଯେପରି କି ଆଖି ଆଗରେ ନାଚିଗଲା—କି ଏକ ଜ୍ୱାଳା ମର୍ମକୁ ଉତ୍ପୀଡ଼ିତ କଲା । ଦାନ୍ତେ ଯେଉଁ ଗୃହରେ ବାସ କରୁଥିଲେ ତା ଅଦ୍ୟାପି ଅକ୍ଷୁର୍ଣ୍ଣ ଅବସ୍ଥାରେ ଅଛି । କିନ୍ତୁ ମହାକବି ବାସ କରୁଛନ୍ତି ଫ୍ଲରେନ୍ସବାସୀମାନଙ୍କ ଅନ୍ତଃକରଣରେ । ଦାନ୍ତେଙ୍କ କାଳରେ ଏହି ନଗରର ସର୍ବାଙ୍ଗୀନ ଉନ୍ନତି ହୋଇଥିଲା; ବହୁ ପ୍ରାସାଦ, ଦୁର୍ଗ, ଟାୱାର, ଚର୍ଚ୍ଚ ତ୍ରୟୋଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିଲା ।

ଅନ୍ୟ କେତେକ ମହାପୁରୁଷ ମଧ୍ୟ ଆବିର୍ଭୂତ ହୋଇ ଏହି ନଗରକୁ ମହାତୀର୍ଥରେ ପରିଣତ କରିଥିଲେ; ଗାଲିଲିଓ, ବୋକାସିଓ, ପେଟ୍ରାର୍କଙ୍କ ପ୍ରତିଭା ଇଟାଲୀର ସୀମା ମଧ୍ୟରେ ଆବଦ୍ଧ ହୋଇ ରହିପାରି ନାହିଁ ।

ସବୁ ପ୍ରାୟ ଏଇ ନଗରରେ ଅବିକୃତ, ଅପରିବର୍ତ୍ତିତ ଅବସ୍ଥାରେ ରହିଅଛି । ଆକ୍ରମଣକାରୀ କିଛି ଭାଙ୍ଗି ଚୁର୍ଣ୍ଣ କରିଦେଇନାହିଁ, ଧର୍ମାନ୍ଧତା ମଧ୍ୟ କିଛି ନଷ୍ଟଭ୍ରଷ୍ଟ କରି ପାରିନାହିଁ । ଏହି ନଗରର ଅପ୍ରଶସ୍ତ ରାଜପଥରେ ଭ୍ରମଣ କଲାବେଳେ ଗୌରବମୟ ଅତୀତ ସାମ୍ନାରେ ଜୀବନ୍ତ ହୋଇ ଛିଡ଼ା ହୁଏ, ଅତୀତ, ନାନା ସ୍ଥାପତ୍ୟ, କଳା ଓ ଭାସ୍କର୍ଯ୍ୟରେ ଭାସ୍ୱର ସେ । ଉନ୍ନତ ସଂସ୍କୃତି ଯୋଗୁଁ 'ପଶ୍ଚିମ ଇଉରୋପ'ର 'ଏଥେନ୍ସ' ନାମରେ ପରିଚିତ ସେ ! କିନ୍ତୁ ଏଥେନ୍ସ ଧ୍ୱସ୍ତ, ଫ୍ଲରେନ୍ସ ପ୍ରାଚୀନ ଓ ଆଧୁନିକ ରୂପରେ ସମ୍ପୃକ୍ତ ।

ଏଇ ନଗରର ଲୋକସଂଖ୍ୟା ପ୍ରାୟ ଅଢ଼େଇ ଲକ୍ଷ । ଚତୁର୍ଦ୍ଦଶ ଶତାବ୍ଦୀରେ ନିର୍ମିତ ଗୋଟିଏ ପ୍ରାଚୀନ ସେତୁକୁ ଛାଡ଼ି ଜର୍ମାନ୍‌ମାନେ ୧୯୪୪ରେ ଫ୍ଲରେନ୍ସର ସମସ୍ତ ପ୍ରବେଶପଥ ଓ ସେତୁ ଧ୍ୱଂସ କରି ଦେଇଥିଲେ; ମିଳିତ ମିତ୍ର ଶକ୍ତିକୁ ଏଠି ଅଟକାଇ ରଖିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା ।

ଫ୍ଲରେନ୍‌ସ କଳାର ନଗର । ଏଠି ଦଶଗୋଟି ଜାଗାରୁ ଚିତ୍ର ସଂଗ୍ରହାଳୟ ରହିଅଛି । ଇଟାଲୀୟ ପେଣ୍ଟିଂ ଫ୍ଲରେନ୍‌ସରେ ହିଁ ଆରମ୍ଭ ହୁଏ । ଏହାର ପ୍ରାଥମିକ ପ୍ରସିଦ୍ଧ ଶିଳ୍ପୀ 'ସିମାବୁଏ' 'ଜିଓଟୋ' । ଚତୁର୍ଦ୍ଦଶରୁ ଷୋଡ଼ଶ ଶତାବ୍ଦୀ ଇଟାଲୀର କଳାର ସୁବର୍ଣ୍ଣ ଯୁଗ । ମାଇକେଲ୍ ଆଞ୍ଜେଲୋ, ରଫେଲ୍ ଓ ଲିଓନାର୍ଡୋ ଭିଞ୍ଚିଙ୍କ କଳାଯୋଗୁଁ ଫ୍ଲରେନ୍‌ସ ଓ ଇଟାଲୀ ବିଶ୍ୱଜଗତର ଶ୍ରେଷ୍ଠତ୍ୱ ଲାଭ କରିଥିଲା ।

ଯୁଗ ଯୁଗର ପଳାତକ ସୌନ୍ଦର୍ଯ୍ୟକୁ ଧରି ରଖିଛନ୍ତି ଏ ସବୁ ଚିତ୍ରାଳୟ । କେତୋଟି ରଙ୍ଗ୍, ଶିଳ୍ପୀମାନେ ଫୁଙ୍କିଦେଇ ପାରୁଛନ୍ତି ଆମର ଜଞ୍ଜାଳଗ୍ରସ୍ତ, ପଳାତକ ଚଞ୍ଚଳ ମନରେ; ଦୂରତାର ଅନ୍ତରାୟ ନାହିଁ; କାଳ, ଧର୍ମ, ଜାତି, ଗୋଷ୍ଠୀ ବର୍ଣ୍ଣର ଅନ୍ତରାୟ ମଧ୍ୟ ନାହିଁ । ସଂସ୍କୃତି ଏକ ସାର୍ବଜନୀନ ତୀର୍ଥ; ସେଥିରେ ସ୍ନାନ କରି ପ୍ରାଣ ପରିପୂର୍ଣ୍ଣ ହୋଇ ଉଠିଲା, ଭଲପାଇ ବସିଲି ଏଇ ନଗରୀକୁ—କିନ୍ତୁ ତାର ପ୍ରାଣ ପ୍ରାଚୁର୍ଯ୍ୟଭରା ପ୍ରୀତି ବହନ କରିବାର ଶକ୍ତି ମୋର ନାହିଁ, କେବଳ ଅକ୍ଷମ ଚକ୍ଷୁ ବୁଲାଇ ଆଣିଲି; ଯାହା ପ୍ରାଣ ସ୍ପର୍ଶ କଲା, ତାକୁ ମନରେ ସାଉଁଟି ରଖିବାକୁ ଚେଷ୍ଟା କଲି ।

ମାର୍ବଲ୍‌ଖଣି ଲୁଣ୍ଠିତ ହୋଇ ଆସିଛି ଏ ନଗରକୁ; ମାର୍ବଲର ମୂର୍ତ୍ତି ଚତୁର୍ଦ୍ଦିଗରେ; 'ପର୍‌ସୁସ୍ ଅସ୍', ଡାହାଣ ହାତରେ ତାର ଉନ୍ମୁକ୍ତ ଖଡ଼୍‌ଗ, ବାଁ ହାତରେ ମେଡୁସାର ଛିନ୍ନ ମସ୍ତକ, ପାଦତଳେ ମେଡୁସାର ମୃତ ଦେହ ।

ଚେଲିଚର୍ମ ବୃଦ୍ଧ, ହାସ୍ୟମୁଖ । ଅପରିଚୟର ଦ୍ୱିଧା ଆସେ ନାହିଁ; ମୁହୂର୍ତ୍ତକେ ଏକାନ୍ତ ନିଜର ହୋଇଯାଏ । ବାର୍ଦ୍ଧକ୍ୟକୁ ଭ୍ରୂକ୍ଷେପରେ ଉଡ଼ାଇ ଦେଇଛି ସେ, ଦୁର୍ବଳତାକୁ ଜୟ କରିଛି ତାର କ୍ରିୟାଶୀଳ ହାସ୍ୟରେ, ।

ତା ବ୍ୟଞ୍ଜିତ ଶଯ୍ୟାମୟ ଭଙ୍ଗୀରେ ଯୌବନବତୀ ଉଲଗ୍ନା ଭେନସ୍, ମେଡିସିର ରାଜକୁମାରୀ, ଉର୍ବିନୋର ରଜା ରାଣୀ, ସାନ୍ ରୋମାନୋ ଯୁଦ୍ଧ, ଆମ୍ଭ ଛବି ଅଙ୍କନରତା ଶିଳ୍ପୀମ ।

ଆଞ୍ଜେଲୋଙ୍କ ଅସମ୍ପୂର୍ଣ୍ଣ ବ୍ରୁଟସ୍ ମୂର୍ତ୍ତି ସୁପ୍ରସିଦ୍ଧ । ଦେଶର କଲ୍ୟାଣ ଲାଗି ନିଜ ସ୍ୱାର୍ଥ ବଳିଦେବାର ସଙ୍କଳ୍ପ ଅଧରରେ ଶାଣିତ । ତାଙ୍କର ଉଲଗ୍ନ ବିରାଟ ଡେଭିଡ୍ ମୂର୍ତ୍ତି ପ୍ରାଚୀନ ଓ ଆଧୁନିକ ଯେ କୌଣସି ମୂର୍ତ୍ତି ଅପେକ୍ଷା ଶ୍ରେଷ୍ଠତର ବୋଲି ମୂର୍ତ୍ତିତତ୍ତ୍ୱବିତ୍ ସମାଲୋଚକମାନେ କହିଥାନ୍ତି । ଏହା ବନ୍ଦୀ ଆତ୍ମାର ପ୍ରତୀକ; ବିପୁଳ ଆକୃତି, ଆନୁପାତିକ ସୌଷ୍ଠବ, ଗତି ଓ ନିସ୍ପ୍ରାଣତା ଅପୂର୍ବ ।

ମାଇକେଲ୍ ଆଞ୍ଜେଲୋ କଳା ଦୃଷ୍ଟିରୁ ମାନବ ଶରୀର ବିଷୟରେ ସମସ୍ତ ଜ୍ଞାନ ହାସଲ କରିଥିଲେ । ଲରେଞ୍ଜୋ ଡି ମେଡିସିଙ୍କ ମୂର୍ତ୍ତି ତାଙ୍କର ଏକ ଶ୍ରେଷ୍ଠ କୃତିତ୍ୱ ହିସାବରେ ଧରାଯାଏ ।

'ସାନ୍ତାକ୍ରୋସ୍ ଚର୍ଚ୍ଚ'କୁ ଇଟାଲୀର 'ଓ୍ୱେଷ୍ଟ ମିନିଷ୍ଟର ଆବ୍ବେ' ଆଖ୍ୟା ଦିଆଯାଇ ଥାଏ । ଏଠି ଇଟାଲୀସ୍ଥ ମହାପୁରୁଷ—ଦାନ୍ତେ, ମେକିଆଭେଲି, ଗାଲିଲିଓ ପ୍ରଭୃତିଙ୍କ ସମାଧି ଅଛି । ମୃତ୍ୟୁ ପୂର୍ବରୁ ମାଇକେଲ୍ ଆଞ୍ଜେଲୋ ଏହି ଚର୍ଚ୍ଚରେ ସମାଧି ଦେନିବା ଇଚ୍ଛା ପ୍ରକାଶ କରିଥିଲେ । ୯୦ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା, ସାନ୍ତାକ୍ରୋସ୍‌ରେ ୧୫୭୦ରେ ତାଙ୍କ ସମାଧି ମନ୍ଦିର ନିର୍ମିତ ହେଲା ।

ପରିଶେଷରେ ଆମେ ପିଟ୍ଟି ଗାଲେରୀ ପରିଦର୍ଶନ କଲୁ । ୧୪୫୦ ଖ୍ରୀଷ୍ଟାବ୍ଦରେ ଲ୍ୟୁ । ପିଟ୍ଟି ନାମକ ଫ୍ଲୋରେନ୍ସର ଜଣେ ଧନଶାଳୀ ବ୍ୟକ୍ତି ଏହି ପ୍ରାସାଦ ନିର୍ମାଣ କରିଥିଲେ । ଫ୍ଲୋରେନ୍ସ ୧୮୬୫ରୁ ୧୮୭୧ ପର୍ଯ୍ୟନ୍ତ ଇଟାଲୀସ୍ଥ ରାଜାଙ୍କ ରାଜଧାନୀ ଥିଲା, ସେତେବେଳେ ଏହା ରାଜପ୍ରାସାଦ ରୂପେ ବ୍ୟବହୃତ ହୋଇଥିଲା । ଛବି ଓ ପେଣ୍ଟିଂସବୁ ମୁଖ୍ୟତଃ ରାଜାମାନଙ୍କ ସଂଗ୍ରହ । ଯେପରି ସଂଖ୍ୟାରେ ବହୁ, ଗୁଣାତ୍ମକ ଦୃଷ୍ଟିରୁ ସେହିପରି ଉଚ୍ଚଶ୍ରେଣୀର । ଶତ ଶତ ବର୍ଷ ଧରି ମେଡ଼ିସି ରାଜବଂଶ ଏହିସବୁ ଛବି ସଂଗ୍ରହ କରିଥିଲେ । ଛ'ଟି ବଡ଼ ବଡ଼ ହଲ୍‌ରେ ଛବିସବୁ ସଂଗୃହୀତ ହୋଇଅଛି । ପ୍ରଥମ ହଲ୍‌ର ନାମ 'ହଲ୍ ଅଫ୍ ଇଲିଆଡ୍'—ଜୁପିଟରଙ୍କ ଚତୁର୍ଦ୍ଦିଗରେ ଦେବତାମାନେ ଉଭା ହୋଇଛନ୍ତି । ଗ୍ରୀକ୍ ଓ

ହ୍ରଞ୍ଜନ୍ ଯୁଦ୍ଧରେ ଯୋଗ ନ ଦେବା ଲାଗି ଜୁପିଟର୍ ସେମାନଙ୍କୁ ଆଦେଶ ଦେଉଛନ୍ତି ।

ଅନ୍ୟ ପାଞ୍ଚୋଟି ହଲ୍‌ରେ 'କାସିନୋ'ଙ୍କ ବିବିଧ ଗୁଣ ମୂର୍ତ୍ତି । ସାଟାର୍ଣ୍ଣ ଉଭକଙ୍କର ବିଗ୍ନରବୁଦ୍ଧି, ଜୁପିଟର୍ ତାଙ୍କର ଶାସନଶକ୍ତି ଓ କ୍ଷମତା, ମାର୍ସ୍ ଯୁଦ୍ଧ ସାମର୍ଥ୍ୟ ଓ ବିଜୟ, ଆପୋଲୋ ତାଙ୍କ କଳା ଓ କବିତା ପ୍ରୀତି, ଭେନସ୍ ତାଙ୍କ ଲୋକପ୍ରୀତି ।

'ମାଡୋନା'ଙ୍କ ମାତୃମୂର୍ତ୍ତି ବହୁତ ବିଚିତ୍ର ପ୍ରକାରେ ପରିବେଷିତ ହୋଇଛି । ସେ ରାଣୀ, ସେ ଦେବୀ; ସେ ପୂଜିତା ଓ ପୂଜାରିଣୀ । ସେ ନିଜ ଶିଶୁକୁ ପୂଜା କରୁଛନ୍ତି । ଇଉରୋପର ସମସ୍ତ ଚିତ୍ରାଳୟରେ ମାଡୋନା ଓ ଶିଶୁ । ମଧ୍ୟଯୁଗୀୟ ଶିଳ୍ପୀଙ୍କର ସେ ଏକାନ୍ତ ଧ୍ୟେୟ ଥିଲେ ।

ପିଟି ରାଜବାଟୀରେ ଜଣେ କବିଙ୍କର ଗୋଟିଏ ଛବି ଦେଖିଲି— ତାଙ୍କ ନାଆଁ ଆରେଟିନୋ । ସେ ସମସାମୟିକ ସମସ୍ତ ବିଶିଷ୍ଟ ବ୍ୟକ୍ତିଙ୍କର ଦୋଷ ବାଛୁଥିଲେ; ଯେତେ ମହତ୍ ବ୍ୟକ୍ତି, ମହାବୀର, ମହାକବି ହୁଅନ୍ତୁ ପଛକେ ତାଙ୍କ ତୁଣ୍ଡରୁ କାହା ବିଷୟରେ ଅବକୃତ ପ୍ରଶଂସା ଶୁଣା ଯାଉ ନ ଥିଲା । ଯିଶୁଖ୍ରୀଷ୍ଟଙ୍କ ବିଷୟରେ ପଚାରିବାରୁ ସେ କହିଥିଲେ—ମୁଁ ତାଙ୍କ ବିଷୟରେ କିଛି ଜାଣେ ନାହିଁ, ତେଣୁ କିଛି କହୁ ନାହିଁ ।

ଆମେ ଫେରିଲା ବେଳେ ଜାକୋବ ବାଟରେ ପଞ୍ଚଦଶ ଶତାବ୍ଦୀର ଗୋଟିଏ ଗଳି ଦେଖାଇଥିଲେ; ଏଥିରେ ଅଧିକାଂଶ ପରିବାରର ଘର ସଂରକ୍ଷିତ ହୋଇଅଛି ? କୃଶତ୍ତ କାହାର କୁଳ ବୁଡ଼ିଛି ।

ତା ପରେ ବାଟରେ ରୁପା ତାରକଣି କାରଖାନା ଦେଖିଲୁ— ଗଡ଼ୁ, ଥାଳିଆ, ଫୁଲଦାନୀ, ହାର, ନାନାବିଧ ଅଳଙ୍କାର, ପାନିଆ, ବ୍ରସ୍, ଦର୍ପଣ, ଗ୍ଲାସ୍, ଡବା, ମୂର୍ତ୍ତି (ମାଡୋନା ଓ ଶିଶୁ), ବଣି ଡାଳୀ, ହଂସ, ବତକ, କୁକ୍‌କୁଟ, ଫେଜାଣ୍ଟ, ବନ୍ଧୁକ, କଣ୍ଟାଗ୍ମୁଚ, ଛୁରି; ଆମ

ତାରକସିର ସଙ୍କଟା ଏଠେ ନାହିଁ, କ ବୈଚିତ୍ର୍ୟ ଓ ଔଜ୍ଜ୍ୱଲ୍ୟରେ ଆଖି ଝଲସି ଯାଉଛି । ଯୁଗ ରୁଚି ଅନୁସାରେ ଏମାନେ ଦ୍ରବ୍ୟ ନିର୍ମାଣ କରୁଛନ୍ତି ।

ଅ୍ୟାଙ୍ଗ୍ଲୋ ଆମେରିକାନ୍ ହୋଟେଲରେ ରହିଲୁ; ଏହି ହୋଟେଲରୁ କେତେକ ବହି, ଛବିକାର୍ଡ଼ କିଣିଲି; ହୋଟେଲ୍ ପୋଷ୍ଟ ଅଫିସ୍ ସେସବୁ ଭାରତକୁ ପାର୍ସଲ୍ କରିଦେଲା ।

ସକାଳୁ 'ଆର୍ନୋ' ନଦୀ କୂଳେ କୂଳେ ଯାତ୍ରା କଲୁ, ରଙ୍ଗିନ ଚିତ୍ରକ, ପ୍ରାଚୀନ ଗଳି, ବିଚିତ୍ର କାରୁକାର୍ଯ୍ୟ, ଟାୱାର୍, ଯାଦୁଘର, ପାଠାଗାର, ଷ୍ଟୁଡ଼ିଓ ଉପରେ ଅତୃପ୍ତ ଦୃଷ୍ଟି ପକାଇ; 'ଆର୍ନୋ' କୂଳର ପାହାଡ଼ସବୁ ରବିରଶ୍ମିରେ ଉଜ୍ଜ୍ୱଳ; କେତୋଟି ଚପଳ ବାନ୍ଦୁ ଖସି ଆସି କଇଁଚକନ୍ଥା ଡେଙ୍ଗକୁ କୁତୁକୁତୁ କରୁଥାନ୍ତି—ନଦୀ ହସି ହସି ଯେପରି କ କହୁଥାଏ—ସବୁ କୌତୁକ, କୌତୁକମୟ—ଯେ ଏତିକ ସତ୍ୟ ହୃଦୟଙ୍ଗମ କରିପାରି ନାହିଁ, ତା ପକ୍ଷେ ଜୀବନ ଭାର—ମହାଭାର ।

ସହର କେତୋଟି ଶ୍ୱେତ ବାନ୍ଦ ପରି ଦିଶୁଛି, ପାହାଡ଼ ମୂଳେ ମୂଳେ ଆମେ 'ଟାଇବର୍' ନଦୀ ତଟରେ ପହଞ୍ଚିଲୁ—ମାନଚିତ୍ରର ସେଇ ଟାଇବର, କବିତାର ସେଇ ଟାଇବର ମନକୁ ବହୁ ପ୍ରାଚୀନ ସ୍ୱପ୍ନରେ ରଙ୍ଗୀନ୍ କରିଦେଲା; ଇତିହାସର ଏ ଏକ ନଦୀ, ବହୁ ଯୁଦ୍ଧର ମୂକସାକ୍ଷୀ; ଆଖିରେ ପିଇଗଲା ପରି ଲାଗିଲା ତାର ଦୃଶ୍ୟ—ସ୍ୱଚ୍ଛ ସନ୍ଧ୍ୟାଟିଏ, ନୀଳାମ୍ବରର ଶ୍ରୀ, ସାରଲ୍ୟ ଓ ସୌକୁମାର୍ଯ୍ୟ ଭରା, କନ୍ଦ୍ର ପ୍ରୀତି ଟଳମଳ କରୁଥାଏ ତାର ଆଖିରେ, ଲୁହ ହୋଇ ଝରିଯିବ ଯେପରି କ । ତାର ବଚନସ୍ତ ମଧୁର, ସ୍ୱତଃ ସ୍ଫୂର୍ତ୍ତି ଶ୍ରୀ ଦେଖି ଦେଖି ଆମେ ଐତିହାସିକ ରୋମ୍ ନଗରୀରେ ପ୍ରବେଶ କଲୁ । ଫୁଟ୍‌ପାଥ୍‌ରେ ଗଦା ଗଦା ଅଙ୍ଗୁର ବିକ୍ରୀ ହେଉଥାଏ । ଅଲିମ୍ପିକ୍ ଭିଲେଜ୍, ମୁସୋଲିନୀଙ୍କ ନିର୍ମିତ ସେତୁ, ଷ୍ଟେଡ଼ିଅମ୍ ଦେଖି ଦୁଇ ପାଖ ସୌଧ ଉପରେ ଆଖି ବୁଲାଇଲି, କେତେ ଅତି ପ୍ରାଚୀନ, କେତେ ଏକାନ୍ତ ନବୀନ—ପ୍ରମାଣ କରେ—ରୋମ୍ ଗୋଟିଏ

ଦିନରେ ତିଆରି ହୋଇନାହିଁ—ଯୁଗ ଯୁଗର ସାଧନା ନିଷ୍ଠା ଗଢ଼ିଛି ଏହି ବିପୁଳ ରୋମ୍ ନଗରୀକୁ ।

ଦିପଟେ ଖଜୁରି ଆଉ 'ପାମ୍'—ତା ଉପରେ ବୁଲୁଥାଏ ସନ୍ଧ୍ୟାର ଲଘୁ ଚନ୍ଦ୍ରିକା—ସବୁଜ ଉପରେ କି ରଙ୍ଗ ଲାଗିଛି ଠିକ୍ ବାରି ହେଉ ନ ଥାଏ—ବୋଧେ କରୁଣ ରଙ୍ଗ, ଗୋଧୂଳି ବିଦାୟସ୍ୱର; ତଥି ଏତେ ବ୍ୟାକୁଳ ହେଉଛି କାହିଁକି ?

ହୋଟେଲ୍ 'ମାଇକେଲ୍ ଆଞ୍ଜେଲୋ'ରେ ରହିଲୁ, ମାର୍ବଲ ନିର୍ମିତ । ପାଞ୍ଚତାଲାରେ ମୋଟେ ଗୋଟିଏ ରୁମ୍ ମିଳିଥିଲା । ଟମାଟୋ ଝୋଳ ଓ ଟାଇବର୍ ନଦୀର 'ରେନ୍‌ବୋ ଟ୍ରାଉଟ୍' ଓ ପ୍ରଚୁର ଫଳ ଖାଇବାକୁ ମିଳିଲା ଡିନାର୍‌ରେ । ରାତି ପାଞ୍ଚଟାରେ ଉଠି ରୋମ୍ ଆକାଶକୁ ଅନାଇ ରହିଲି—ଗୋଟିଏ ଗୋଟିଏ ନକ୍ଷତ୍ର ଇତସ୍ତତଃ; ଚଳମେଘରେ ଲୁଚି ପୁଣି ଫୁଟି ଦିଶୁଥାଏ—ରାସ୍ତା ପ୍ରାୟ ଯାନବାହନ ଶୂନ୍ୟ ।

ଟାଇବରର ସକାଳଟି ମନରେ ଆଙ୍କିନେଲି, ଲଲ୍ କରଣର ଝୋଟିରେ; କିନ୍ତୁ ସ୍ୱପ୍ନ ମୋର ଚୂର୍ଣ୍ଣ ବିଚୂର୍ଣ୍ଣ ହେଲା ମୁହୂର୍ତ୍ତେ ମୁହୂର୍ତ୍ତେ ଯାନର ମୁହୁର୍ମୁହୁ ଝଙ୍କାରରେ ।

## ରୋମ୍

ମେଣ୍ଢା ଗୁହାଳରୁ ସହର । ସହରରୁ ଉଚ୍ଚ ପ୍ରସ୍ତର ପ୍ରାଚୀର-ଘେରା ନଗର, ନଗରରୁ ରାଜ୍ୟ ଓ ରାଜତନ୍ତ୍ର, ରାଜତନ୍ତ୍ରରୁ ସାଧାରଣ ତନ୍ତ୍ରରେ ପରିଣତ ହୋଇଥିଲା—ତାର ସାମ୍ରାଜ୍ୟ ବିସ୍ତୃତ ହୋଇଥିଲା ଦିଗେ ଦିଗେ । ରୋମ୍ ହୋଇଥିଲା 'ପ୍ରାଚୀନ ପୃଥିବୀ'ର ରାଜଧାନୀ—କେତେ ସଭ୍ୟତାର ସ୍ରୋତ ଏଠି ପ୍ରବାହିତ ହୋଇଛି, ପରସ୍ପରକୁ ପ୍ରଭାବିତ କରିଛି, ତାର ଇୟତ୍ତା ନାହିଁ; ଏହା ଗର୍ଭମୁଖର ହୋଇଛି ବା ବିଲୀନ ହୋଇଛି; କେତେଖଣ୍ଡ ଭଙ୍ଗା ଦଦରା ଉପଲଖଣ୍ଡ ଛଡ଼ା ତାର ପରିଚୟ ଦେବାକୁ ଆଉ କିଛି ନାହିଁ ।

ଖ୍ରୀ:ପୂର୍ବ ୭୫୩ରେ ରୋମୁଲସ୍‌ଙ୍କ ଦ୍ୱାରା ରୋମ୍ ପ୍ରତିଷ୍ଠିତ ହୋଇଥିଲା ବୋଲି ଜନଶ୍ରୁତି ପ୍ରଚଳିତ । ରାଜତନ୍ତ୍ର ସାଧାରଣତନ୍ତ୍ରରେ ପରିଣତ ହେବା ପରେ ବର୍ବରଗଲ୍‌ମାନେ ଏହି ରାଜ୍ୟକୁ ଧ୍ୱଂସ କରିଥିଲେ । ତାପରେ ରୋମ୍ ପୁନରୁତ୍ଥିତ ଓ ସ୍ପେନ୍, ଇଜିପ୍ଟ ମାସିଡୋନିଆ; କାର୍‌ଥେଜ୍, ଆରେବିଆ, ଆର୍‌ମେନିଆ ଏସିଆ ମାଇନର୍, ବ୍ରିଟେନ୍, ଗ୍ରୀସ୍, ଇଟାଲି ସିସିଲି, ସିରିଆ, ଟିଉନିସ୍ ପ୍ରଭୃତି ଦେଶ ତାର ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଏକଛତ୍ର ଶାସନ ପ୍ରତିଷ୍ଠିତ କରିବାକୁ ଚେଷ୍ଟା କରି ଜୁଲିଅସ୍ ସିଜର୍ ନିହତ ହୋଇଥିଲେ; କିନ୍ତୁ ରାଜତନ୍ତ୍ର ପୁଣି ପ୍ରବର୍ତ୍ତିତ ହୋଇଥିଲା ।

ରୋମାନ୍ ସମ୍ରାଟ ନେରୋ ରୋମ୍‌କୁ ଦଗ୍ଧ କରି ଖ୍ରୀଷ୍ଟିୟାନ୍‌ଙ୍କ ନାମରେ ଅଠା ବୋଳିଥିଲେ ବୋଲି ଜନଶ୍ରୁତି ଅଛି । ତାଙ୍କର ରାଜତ୍ୱରେ ରୋମ୍ ପୁନର୍ନିର୍ମିତ ହେଲା । ତାଙ୍କ ପ୍ରାସାଦ ସୁବର୍ଣ୍ଣ ମଣ୍ଡିତ ହୋଇଥିଲା ।

ପ୍ରାୟ ଚାରିଶତ ବର୍ଷକାଳ ଇଟାଲିରେ ରୋମାନ୍ ଶାସନ ପ୍ରଚଳିତ ଥିଲା; କ୍ଷମତାଲିପ୍ସା ଓ ଗୃହବିପ୍ଳବରେ ରୋମ୍ ଧ୍ୱଂସ ପାଇଲା । ତାପରେ ବାଇଜାଣ୍ଟାଇନ୍ ଶାସନ ପ୍ରବର୍ତ୍ତିତ ହେଲା । ପରେ ଏହା ସମ୍ରାଟ ଚାର୍ଲ୍‌ମାନ ଓ ସମ୍ରାଟ ନେପୋଲିଅନ୍‌ଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା ।

ଖ୍ରୀଷ୍ଟିୟାନ୍ ଧର୍ମର ପ୍ରଚାର ମୁଖ୍ୟତଃ ରୋମାନ୍‌ମାନେ ହିଁ କରାଇଥିଲେ । ତ୍ରୟୋଦଶ ଶତାବ୍ଦୀରୁ ପୋପ୍‌ଙ୍କ ଶକ୍ତି ବୃଦ୍ଧିଲାଭ କରିଥିଲା —ଇଉରୋପରେ ରୋମ୍ ହୋଇଥିଲା ଖ୍ରୀଷ୍ଟିୟାନ୍ ଧର୍ମର ରାଜଧାନୀ, ନାନା ଧର୍ମକୀର୍ତ୍ତି ଓ ସ୍ମୃତି ମନ୍ଦିରରେ ରୋମ୍ ଭରପୂର ହୋଇଥିଲା; ଏହା ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଇଟାଲିରେ ସାଂସ୍କୃତିକ ଅଭ୍ୟୁଦୟର ମୁଖ୍ୟ କେନ୍ଦ୍ର ଥିଲା । ଧର୍ମ, ଇତିହାସ ବା କଳା ଯେ କୌଣସି ଦିଗରୁ ବିବେଚନା କଲେ ଇଟାଲି ହୋଇଥିଲା ଇଉରୋପର ସର୍ବଶ୍ରେଷ୍ଠ ଦେଶ ।

## ରୋମାନ୍ କୀର୍ତ୍ତି

ପ୍ରାୟ ସତରଶ ବର୍ଷ ତଳେ ରୋମାନ୍ କାନ୍ଥ ନିର୍ମିତ ହୋଇଥିଲା—ଏହା ବାର ମାଇଲ ଲମ୍ବ । ଏଥିରେ ଚଉଦଟି ତୋରଣ ରହିଛି; ସେହି କାନ୍ଥ ଓ ତୋରଣ ରୋମ୍‌କୁ ଏକ ଦୁର୍ଗରେ ପରିଣତ କରିଛି । କାନ୍ଥର ଚତୁର୍ଦ୍ଦିଗରେ ଆଧୁନିକ ରୋମ୍ ସହର ପ୍ରସାରିତ । ରୋମାନ୍‌ମାନେ ରୋମ୍ ଦୁର୍ଗକୁ ପର୍ବତ ଉପରେ ନିର୍ମାଣ କରିଥିଲେ—ତୋରଣ ଅତିକ୍ରମ କଲାପରେ ବସ୍ ପର୍ବତ ତଳକୁ ଗଡ଼ିଗଲା ପରି ଲାଗେ । ସେ କାଳ ରୋମାନ୍ ପାର୍କ ଏବେ ବି ରୋମ୍‌ର ବୃହତ୍ତମ ପାର୍କ—କୌଣସି ଶାସନକର୍ତ୍ତା ଏହାକୁ ଅବହେଳା କରି ନାହାନ୍ତି, ମନେ ହୁଏ; ପ୍ରାଚୀନ ନୂତନର ଅଦ୍ଭୁତ ମିଳନ ଘଟିଛି, ଏଇ ଉଦ୍ୟାନରେ ।

## ଫୋରମ୍ ରୋମାନମ୍

ପଛକାଳେ ଏଠି ବଜାର ବସିଥିଲା । ତାପରେ ଏହାର ପ୍ରାଧାନ୍ୟ ବୃଦ୍ଧି ଲାଭ କଲା—ସିନେଟ୍ ବୈଠକ ବସିଲା, ମନ୍ଦିର ନିର୍ମିତ ହେଲା, ସ୍ମୃତି ସୌଧ ସ୍ଥାପିତ ହେଲା, ବୀରମାନଙ୍କ ବ୍ରୋଞ୍ଜ୍ ଓ ମାର୍ବଲ ମୂର୍ତ୍ତିରେ ସ୍ଥାନଟି ପ୍ରକୃତିର ତୀର୍ଥ କ୍ଷେତ୍ର ହୋଇ ଉଠିଲା; ପୃଥିବୀର କେତେ ଦେଶର ଭାଗ୍ୟ ଏହି ସ୍ଥାନରେ ହିଁ ନିର୍ଣ୍ଣୀତ ହୋଇଥିଲା । ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଏହା ରୋମାନ୍‌ମାନଙ୍କ ରାଜନୈତିକ ଓ ଧର୍ମଜୀବନର କେନ୍ଦ୍ରସ୍ଥଳ ଥିଲା । ତାପରେ ଏହି ସ୍ଥାନ ଅବହେଳିତ ଓ ପରିତ୍ୟକ୍ତ ହେଲା; ଏଠା ମାର୍ବଲରେ ଗଢ଼ା ହେଲା ଅନ୍ୟ ସ୍ଥାନରେ ଚର୍ଚ୍ଚ, ଏଠା ମାର୍ବଲ ପୋଡ଼ା ହୋଇ ହେଲା ଅନ୍ୟ ପ୍ରାସାଦର ମଶଲା । ଶେଷକୁ ଏଠି ସହରର ଯାବତୀୟ ଆବର୍ଜନା ସ୍ତୂପୀକୃତ ହେବାକୁ ଲାଗିଲା; 'ଫୋରମ୍ ରୋମାନମ୍' ହେଲା, 'କ୍ୟାମ୍ପୋ ଭାକ୍‌ସିନୋ'—ମାନେ ଗୋ ଚାରଣ ଭୂମି ।

ଉନବିଂଶ ଶତାବ୍ଦୀରେ ଏହା ପରିଚ୍ଛନ୍ନ ହୋଇ ଭ୍ରମଣକାରୀଙ୍କ ଲାଗି ଉନ୍ମୁକ୍ତ ହୋଇଛି ମାତ୍ର । ଛିଡ଼ା ହୋଇଛି 'ରୋଷ୍ଟ୍ରାସ୍'—ସେ କାଳର ବାଗ୍ମୀମାନଙ୍କ ବକ୍ତୃତା ମଞ୍ଚ, ଯାହା ଉପରେ ଛିଡ଼ା ହୋଇ ମାର୍କ ଆଣ୍ଟୋନି ଜୁଲିଅସ୍ ସିଜରଙ୍କ ହତ୍ୟାକାରୀମାନଙ୍କ ଉପରେ

ପ୍ରତିଶୋଧ ନେବା ଲାଗି ଜନତାକୁ ଉତ୍ତେଜିତ କରିଥିଲେ । ତାଙ୍କ ପ୍ରାଣ ତ୍ୟାଗ ସେତେବେଳେ ଜୁଲିଅସ୍ ସିଜରଙ୍କ ମୃତଦେହ ପଡ଼ି ରହିଥିଲା ।

ଜୁଲିଅସ୍ ସିଜର ମନ୍ଦିର ଖ୍ରୀ. ପୂ ୪୨ରେ ନିର୍ମିତ ହୋଇଥିଲା, ଯେଉଁଠି ତାଙ୍କ ଶବକୁ ଦଗ୍ଧ କରା ଯାଇଥିଲା ।

'ହାଉସ୍ ଅଫ୍ ଭେଷ୍ଟାଲସ୍' ରୋମର ମୁଖ୍ୟ ବଳାସମନ୍ଦିର । ଏହି ପ୍ରାସାଦରେ ଅଖଣ୍ଡ ଦୀପ ଜଳେଇ ରଖିବାର ବ୍ୟବସ୍ଥା ହୋଇଥିଲା । ଛ'ରୁ ଦଶ ବର୍ଷ ବୟସ୍କା କୁମାରୀମାନେ ଏହାକୁ ଜଗି ରହୁଥିଲେ । ଦୀପ ଲିଭିଗଲେ ବା କାହାରକୁ ସେଥିରୁ କେହି ନିଆଁ ନେଇଗଲେ କୁମାରୀମାନଙ୍କୁ ଶାସ୍ତି ଦିଆ ହେଉଥିଲା । ସେମାନଙ୍କ ମଧ୍ୟରୁ କାହାର ଚରିତ୍ର ନଷ୍ଟ ହେଲେ ତାକୁ ଜୀବନ୍ତ ସମାଧି ଦିଆ ହେଉଥିଲା । ଏହି କୁମାରୀମାନେ ନଗରରେ ବିଶେଷ କ୍ରୀଡ଼ା ଦର୍ଶକ ମଣ୍ଡଳୀରେ ସମ୍ମାନ ଜନକ ଆସନ ଲାଭ କରୁଥିଲେ ।

ତାପରେ ସମ୍ରାଟ ଅଗଷ୍ଟସ୍‌ଙ୍କ ସମୟରେ ନିର୍ମିତ ରୋମାନ୍ ଥିଏଟର ଦେଖିଲୁ । ଏହାର ତୋରଣଟି ପ୍ରାଚୀନତମ । ଏହାର ମୁକ୍ତ ପ୍ରାଙ୍ଗଣରେ ବଣ ହଜାର ଦର୍ଶକ ବସି ଥିଏଟର ଦେଖିବାର ବ୍ୟବସ୍ଥା ଥିଲା ।

ରୋମାନ୍ ଆରିନାର ଦାସ ଓ ସିଂହ ମଧ୍ୟରେ ଯୁଦ୍ଧ, ବୀର ବୀର ମଧ୍ୟରେ ମଲ୍ଲଯୁଦ୍ଧ ବା ତରବାରି ଯୁଦ୍ଧ ଯେପରି ଉପଭୋଗ୍ୟ, ସେପରି ଭୟଙ୍କର ଥିଲା । ଯୁଦ୍ଧରେ ବିଜୟୀ ହେଲେ ଦାସକୁ ବଞ୍ଚିବାକୁ ଦିଆ ଯାଉଥିଲା ନଚେତ୍ ସିଂହ ତାକୁ ମାରି ଖାଉଥିଲା । ଏ ନିଷ୍ଠୁର ଦୃଶ୍ୟ ଦେଖିବା ଲାଗି ଜନ ଗହଳି ସଙ୍କୁଚିତ ହେଉ ନ ଥିଲା, ଆଶ୍ଚର୍ଯ୍ୟ ।

ଏବେ ଏକ ଗୋଲାକାର ବିପୁଳ ନିର୍ମାଣ; ଉଚ୍ଚ ସ୍ତମ୍ଭସବୁ ଛିଡ଼ା ହୋଇଛି, ଲୋକେ ମାର୍ବଲ୍ ହରଣଚାଲ କରୁଛନ୍ତି ।

ରୋମାନ୍ ଘୋଡ଼ା ଦୌଡ଼ ପ୍ରତିଯୋଗିତା ସ୍ଥାନ, ରୋମାନ୍ ଜେଲ, ଟାଇବର୍ ଉପରେ ନିର୍ମିତ ରୋମାନ୍ ସେତୁ, ରୋମାନ୍ କାସଲ୍ ଦେଖି ରୋମାନ୍ କାନ୍ଥ ଧାରେ ଧାରେ ଯାଇ ଗୋଟିଏ ରୋମାନ୍ ତୋରଣ

ଅନ୍ତର୍ଗମ କଲୁ । ଗ୍ରନ୍ଥା କହେ ବହୁ 'ଅମ୍ପେନ୍ଗ ସାଇନ୍'—ତଳ ଡାଳ ମେଲିଛି, ସର୍ପ ସରୁ ପଥ । ଆମେ ଗୋଟିଏ ରୋମାନ୍ ମଶାଣିରେ ପଡ଼ଞ୍ଚଲୁ । ଖ୍ରୀଷ୍ଟିଆନ୍ ମଶାଣି କହିଲେ ଯାହା ବୁଝାଏ ଏ ଠିକ୍ ସେଇଆ ନୁହେ । ଏହା ଗୋଟିଏ ଚର୍ଚ୍ଚ, ଚର୍ଚ୍ଚକୁ ଲଗି ଗୋଟିଏ ବହୁ ତଳବିଶିଷ୍ଟ ସୌଧ, କନ୍ତୁ ଯୁ ଭିତରେ ମଣିଷ ବାସ କରିବେ ନାହିଁ । ଏହା ମୃତଙ୍କ ଲଗି ଉଦ୍ଦିଷ୍ଟ । କାନ୍ଥମାନଙ୍କରେ ଶବାଧାର ଖୋପସବୁ—ଯେଉଁମାନେ ଧର୍ମ ଲଗି ଆତ୍ମହତ୍ୟା କରିଛନ୍ତି, ଖୋପରେ ସେଇମାନଙ୍କ ଶବ ଥିଲା । ସେମାନଙ୍କ ମଧ୍ୟରେ ଡୋମିଟିଲ୍ଲା, ନେରଅସ୍, ଆଚିଲଅସ୍ ପ୍ରଭୃତି ପ୍ରସିଦ୍ଧ ଶହୀଦମାନଙ୍କ ଶବ ଆବଦ୍ଧ ହୋଇଅଛି ।

ରୋମାନମାନେ ପ୍ରଥମେ ଖ୍ରୀଷ୍ଟିଆନ୍ ଧର୍ମପ୍ରତି ଅସହିଷ୍ଣୁ ଥିଲେ । ଡୋମିଟିଲ୍ଲା ଜଣେ ଖ୍ରୀଷ୍ଟିଆନ୍ ନାରୀ; ବିଧର୍ମୀ ରୋମାନ୍‌ମାନଙ୍କ ଦ୍ୱାରା ନିପୀଡ଼ିତା ହୋଇ ଶେଷରେ ସେ ମୃତ୍ୟୁ ବରଣ କରିଥିଲେ ।

ରୋମାନ୍‌ମାନେ ଏକ ଶବ ଉପରେ ଅନ୍ୟ ଶବ ସ୍ଥାପନ କରୁଥିଲେ; ତାପରେ ତା ଉପରେ ଟାଇଲ ବା ମାର୍ବଲ ପଥର ଯୋଡ଼ିଦେଉଥିଲେ । ଶବାଧାର ଉପରେ ମୃତ ବ୍ୟକ୍ତିଙ୍କ ନାମ ଲିଖିତ ବା ମୂର୍ତ୍ତି ଖୋଦିତ ହେଉଥିଲା । କୌଣସି ସୁଗନ୍ଧ ଦ୍ରବ୍ୟ ବା ପୁଷ୍ପ ଶବ ଉପରେ ରଖାଯାଉଥିଲା । ଦୀପଟିଏ ଜାଳି ଦିଆ ହେଉଥିଲା । ଏବେ ସମାଧି ମଧ୍ୟରେ ପୁଷ୍ପୋଦ୍ୟାନ; କାହାର କାହାର ବଂଶଧର ପ୍ରଦୀପ ବା ବୈଦ୍ୟୁତିକବର୍ତ୍ତି ଜାଳି ରଖୁଛନ୍ତି । ଦୁଇଟି ମାର୍ବଲ ପ୍ରସ୍ତରର ବୃହତ୍ ଶବାଧାର ଦେଖିଲି; ତା ଉପରେ ଗ୍ରୀକ୍ ଓ ଲାଟିନ୍ ଭାଷାରେ ଶିଳାଲେଖ ଲିଖିତ ହୋଇଅଛି ।

ସୌଧର ତଳ ସ୍ତରରେ ଫ୍ରେସ୍କୋ ଅଙ୍କିତ—ଗୋଟିଏ ମାଳା, ଫୁଲ ଗୁଚ୍ଛ, ପକ୍ଷୀ, ଜଣେ ଅଖ୍ରୀଷ୍ଟିଆନ୍ ସ୍ତ୍ରୀକି ହରାଇ ବଡ଼ ବିଷଣ୍ଣ ହୋଇ ପଡ଼ିଛି; ଖ୍ରୀଷ୍ଟିଆନ୍ ହେଲା ପରେ ସ୍ୱର୍ଗରେ ସେ ତାର ସ୍ତ୍ରୀ ସହିତ ମିଳିତ ହୋଇଅଛି ।

ଜଣେ ଖ୍ରୀଷ୍ଟିଆନ୍ ନାରୀ ଦେହରେ ପ୍ରଜାପତିର ଡେଣା ଲଗିଛି । ପ୍ରେମର ପ୍ରଭାବରେ ନନ୍ଦନ ବନକୁ ଉଡ଼ିଯାଇ ସେ ତାର ପ୍ରଣୟୀ ସହିତ ମିଳିତ ହୋଇଛି, ନନ୍ଦନ ବନରୁ ଫୁଲ ତୋଳି ସେ ଗୁଚ୍ଛ ଭରୁଛି ।

ଜଣେ କୃଷକ ବାଡ଼ରେ ଲଣ୍ଡନ୍‌ଟିଏ ଝୁଲାଇ ଯାଉଛନ୍ତି । ବେଣ-କୋନ୍‌ର ତିନିଜଣ ସନ୍ତ୍ର ବାଳକଙ୍କର ଚିତ୍ର ଏବଂ ଫ୍ରେସ୍କୋ ମଧ୍ୟରେ ରହିଅଛି । ଭଗବାନ ନଗର ଆପଦରେ ସହାୟ ହୁଅନ୍ତି ଏସବୁ ତାର ଦୃଷ୍ଟାନ୍ତ । ବାଳକ ତିନିଜଣ ଅଗ୍ନିଶିଖାରୁ, ଡାନିଏଲ୍ ସିଂହ କବଳରୁ, ନୋଆ ବନ୍ୟାରୁ, ଜୋନା ରାକ୍ଷସ କବଳରୁ, ସୁସାନ୍ନା ଅନ୍ୟାୟ ଅଭି-ଯୋଗରୁ ଭଗବାନଙ୍କ କୃପାରୁ ନଗର ରକ୍ଷା ପାଇଛନ୍ତି, ତାହା ଅଙ୍କିତ ହୋଇଅଛି ।

ତର୍ଚ୍ଚର ବସସ୍ ଆମକୁ ଏଇ ମୃତ ଅତୀତ ମଧ୍ୟରେ ବୁଲାଇ ଆଣିଲେ—ପାଞ୍ଚ ମାଇଲ୍ ବ୍ୟାପୀ ଟନେଲ୍, ମହଲା ମହଲା ବ୍ୟାପୀ ଏଇ ଅପୂର୍ବ ଶ୍ମଶାନ; ସଂସାର କି ନଶ୍ୱର ! ସେ ଦିନର ରାଜା, ଯୋଦ୍ଧ, ଯୋଗୀ, ଧର୍ମାନ୍ଧ ସମସ୍ତେ ଅତୀତ ଗର୍ଭରେ ଲୀନ ଯାଇଛନ୍ତି । ଛୁଡ଼ା ହୋଇଛି ମାତ୍ର ଏଇ ଅନ୍ଧକାର ଗହ୍ୱର; ସଦା ଜାଗ୍ରତ ରହିବା ଲାଗି ଜୀବନକୁ ଏ ଯେପରି କି ଏକ ଆହ୍ୱାନ

## ତ୍ରିବୋଲୀ

ବନ୍ଧୁମାନେ ସଉଦା କରିଗଲେ, କେତେକ ହୋଟେଲରେ ବିଶ୍ରାମ ନେଲେ । ସେଇ ସଉଦା —ବହି, ପାମ୍ପଲେଟ୍, ପିକ୍‌ଚର କାର୍ଡ । ସେସବୁ ହୋଟେଲ୍, ରେସ୍ତୋରାଁରେ ପ୍ରାପ୍ୟ ମିଳିଥାଏ । ଏକୁଟିଆ ଯିବା ଦୁଃସାହସ, ତଥାପି ରୋମାନ୍ କୀର୍ତ୍ତି 'ତ୍ରିବୋଲି' ମୋତେ ଆକର୍ଷଣ କରି ନେଲା; ନିଜେ ସ୍ୱାଧୀନ ଭାବରେ ବୁଲି କରି ଦେଖିବା ଲୋଭ ସଙ୍ଗେ ପଥହରା ହେବା ଶଙ୍କା ମଧ୍ୟ ଅଳ୍ପ ନ ଥାଏ ।

ତ୍ରିବୋଲି ପାହାଡ଼ ଉପରେ ଅବସ୍ଥିତ, ରୋମ୍‌ଠାରୁ ପ୍ରାୟ ୫୦ ମାଇଲ ଦୂରବର୍ତ୍ତୀ; ହୋଟେଲ ମାଇକେଲ୍ ଆଞ୍ଜେଲୋରୁ ଟାକ୍ସିରେ ଯାଇ ତ୍ରିବୋଲି ବସ୍ ଧରିବାକୁ ହେଲା । ବସ୍ ଭଡ଼ା ୨୮ ଶହ ଲିରା । ଆମ ଗାଇଡ୍ ଜଣେ ଇଟାଲୀୟ ମହିଳା, ଇଂରେଜୀ, ଫରାସୀ ଓ ଡଚ୍ ତିନୋଟି ଭାଷା ଜାଣେ । ବାଁ ହାତରେ ତାର କାଚ, ଗୋଟିଏ ଘଡ଼ି,

ଡାହାଣ ହାତରେ ପତାକା । ପତାକାକୁ ଘୁଞ୍ଚି ଘୁଞ୍ଚି ଯିବାକୁ ପଡ଼େ, ଦଳଛଡ଼ା ହେବାର ଶଙ୍କା ପଦେ ପଦେ ।

ଗାଇଡ୍‌କୁ ପଚାରିଲି—କେତେବେଳେ ଫେରିବା ?
'କାଲି ସକାଳ ନ'ବରୁ !'
ସହଯାତ୍ରୀମାନେ ହସି ଉଠିଲେ ।

ବାଟରେ କୋବି, ଟମାଟୋ, ଚାଳଙ୍ଗ ଫସଲ, କେତେ ଉଦ୍ୟାନରେ ରଙ୍ଗୀନ୍ ଫାୟାର୍ ପ୍ଲାଣ୍ଟ, କରବୀର ଫୁଲ, କେଉଁଠି ବା ଅଙ୍ଗୁର ଉଦ୍ୟାନ । ଜଳ ସ୍ତର ହୋଇ ସମାନ କରାଯାଇଛି, ବଳଦ ଖୋଜିଲେ ଗୋଟିଏ ଗଛ କମ୍ବା ଖାଲ ଢିପ କେଉଁଠି ନାହିଁ।

'ସିବୋଲି ମାର' ଗ୍ରାମରେ ପହଞ୍ଚିଲୁ । ଏହା ଗନ୍ଧକ ଉତ୍ପାଦନ ଲାଗି ପ୍ରସିଦ୍ଧ; ଏହା ନିକଟରେ ଗୋଟିଏ ମାର୍ବଲ ଖଣି ଅଛି । ଇଟାଲି ମାର୍ବଲର ଏକ ଭଣ୍ଡାର; ଦେଶରେ ଏହାର ବ୍ୟବହାର ପ୍ରଚୁର, ପ୍ରାଚୀନ ଚର୍ଚ୍ଚ, ଚ୍ୟାପେଲ୍, ବେସିଲିକା, ରାଜପ୍ରାସାଦରୁ ଆଧୁନିକ ରେସ୍ତୋରାଁ ପର୍ଯ୍ୟନ୍ତ ସବୁ ମାର୍ବଲରେ ତିଆରି । ବହୁ ପରିମାଣରେ ଇଟାଲୀୟ ମାର୍ବଲ ବିଦେଶକୁ ରପ୍ତାନି ହୋଇଥାଏ ।

'ନେପୋଲି' ନାମକ ଅନ୍ୟ ଏକ ଗ୍ରାମ ପାରି ହେଲା ପରେ ବସ୍ ଉତ୍ତରିଲା, ଆମେ ଏକ ପାର୍କରେ ପ୍ରବେଶ କଲୁ; ପୋଖରୀରେ ଲାଲ୍ ମତ୍ସ୍ୟ ଭରା; କୂଳେ କୂଳେ ତାର ଅଲିଭ୍ ଗଛ, ଫଳ ଭାରେ ଜାମୁ କୋଳି ପରି ଦୂରରୁ ଦିଶେ; ତା'ପରେ ପଡ଼ିଲା ଗୋଟିଏ ସାଇପ୍ରସ୍ ବଣ, ତିନିଶ ବର୍ଷର ବୁଢ଼ା ବୁଢ଼ା ସାଇପ୍ରସ୍ ଏ ବଣରେ ଅଛନ୍ତି, ପଲ୍ଲବ-ଛଡ଼ା; ସ୍ଥାନେ ସ୍ଥାନେ ପାଇନ୍, ଏକାନ୍ତ ନିର୍ଜନ; ଡେଙ୍ଗା ଡେଙ୍ଗା କାଣ୍ଡ ଛିଡ଼ା ହୋଇଛି, ଚେନା ଚେନା ମୋଜାଇକ୍ ଚଟାଣ; ହ୍ରଦ ମଝିରେ ସେଇ ଦ୍ୱୀପରେ ବସି ଥରେ ଦାର୍ଶନିକମାନେ ଦର୍ଶନ ଚର୍ଚ୍ଚା କରୁଥିଲେ, ଭାରତର ନାଳନ୍ଦା, ତକ୍ଷଶୀଳା ପରି ଏହା ପ୍ରସିଦ୍ଧ ଥିଲା ।

ରୋମାନ୍ ସମ୍ରାଟ ଆଡ୍ରିଆନୋଙ୍କ ରାଜବାଟି ଏଠି ଥିଲା, କୁହାଯାଏ । ବର୍ବରମାନଙ୍କ ଆକ୍ରମଣରେ ଏହା ଧ୍ୱସ୍ତ ହୋଇଥିଲା । ଭଙ୍ଗା କାନ୍ଥ, ଚଟାଣ, ଭଗ୍ନ, ଜୀର୍ଣ୍ଣ, ବିକଳାଙ୍ଗ ମୂର୍ତ୍ତି ଦେଖି ଆମେ ପାହାଡ଼ ଉପରକୁ ଉଠିଲୁ ।

## ଟିବୋଲି କାସଲ୍

ଯେଉଁମାନେ ଟିବୋଲିର ଭଗ୍ନାବଶେଷ ଦେଖିବାକୁ ଆସନ୍ତି, ସେମାନେ ଟିବୋଲି କାସଲ୍ ନ ଦେଖି ଫେରନ୍ତି ନାହିଁ । ଏହା ଏକ ଦୁର୍ଗପରି, ଉଚ୍ଚ ପର୍ବତ ଉପରେ ନିର୍ମିତ, ଥରେ ସାମନ୍ତଙ୍କର ପ୍ରାସାଦ ଥିଲା, ଏବେ କେଉଁ ବଂଶଧର ଜୀବିତ ନାହାନ୍ତି । କିନ୍ତୁ ପ୍ରାସାଦ ବା ଉଦ୍ୟାନ ଅବହେଳିତ ନୁହେଁ; ଗୋଟିଏ ଝରଣା ଦୁର୍ଗ ପ୍ରାସାଦକୁ ଦେଇଛି ଅପୂର୍ବ ଶ୍ରୀ । କେଉଁଠି ପ୍ରପାତ; କେଉଁଠି ଫୁଆରା, କେଉଁଠି ଖରସ୍ରୋତା, କେଉଁଠି ଧୀର ମନ୍ଥର ରୂପରେ ଝରଣାକୁ ଛାଡ଼ି ଦିଆଯାଇଛି, ଆପେନାଇନ ପର୍ବତରୁ ସମତଳ କ୍ଷେତ୍ରକୁ ସୋପାନ କ୍ରମେ ଖସିଥିବା ନାନା ଗୁଳ୍ମ ଲତା କୁଞ୍ଜିତ, କାକଳି ମୁଖରିତ ଉଦ୍ୟାନରେ । ବୃଦ୍ଧ ବନସ୍ପତି; ଫଳବୃକ୍ଷ, ପୁଷ୍ପଗୁଳ୍ମ, ସବୁଜ ପ୍ରାନ୍ତର, ଫୁଆରାରେ ଇନ୍ଦ୍ରଧନୁ; ପ୍ରପାତର କଳ କଳ, ପତ୍ରର ମର୍ମର । ଜଳ ଧାରେ ଧାରେ ବହୁ ଗ୍ରୀକ୍ ପୌରାଣିକ ଦେବତା ସନ୍ନିବିଷ୍ଟ । ଝରଣାର ଶଯ୍ୟାରେ ଶିଉଳିର ଏକ ବହଳ ଆସ୍ତରଣ ।

ସପ୍ତଦଶ ଶତାବ୍ଦୀର ଅତ୍ୟୁଚ୍ଚ ଏଇ କାସଲ୍‌ର ଏକ କୋଣରେ ସୂର୍ଯ୍ୟାସ୍ତ ଲୀଳା ଦେଖି ବସିଲୁ—ଗହ୍ୱର; ପ୍ରାନ୍ତର; ଜନପଦ ଉପରେ ବିସ୍ତୃତ, ରକ୍ତାଭ ମେଘପୁଞ୍ଜରେ ସଂକ୍ରମିତ, ଲୋହିତ ଗୋଲାର୍ଦ୍ଧ ଦେଖୁ ଦେଖୁ ଖସିଗଲା ତଳକୁ, କିନ୍ତୁ ତାର ସୁବର୍ଣ୍ଣ ତେଜ ମୃତ୍ୟୁପରେ ମହାତ୍ମାଙ୍କ ମହିମା ପରି ଉଜ୍ଜ୍ୱଳତର ହେବାକୁ ଲାଗିଲା ।

ଏଇ କାସଲ୍‌କୁ କେନ୍ଦ୍ରକରି ଗଢ଼ି ଉଠିଥିଲା ଏକ ମେଡେଇଭ ଗ୍ରାମ; ପାହାଡ଼ର ଅର୍ଦ୍ଧଭାଗରେ, ଏବେ ବଢ଼ି ବଢ଼ି ସେ ହୋଇଛି ସହର ।

ମଧ୍ୟାହ୍ନ ଭୋଜନ ଲାଗି ଅବକାଶ ନଥିଲା । କ୍ଷୁଧା ଖୁବ୍, ତୃଷା ମଧ୍ୟ । ଏ ଉଭୟ ଦୂର କରିବା ଲାଗି ଅଙ୍ଗୁର କିଣି ବସିଲି—କିଲୋକୁ ଦୁଇଶହ ଲିରା ମାତ୍ର (୬ ଶହ ଲିରା—୧ ଡଲାର) । କିଣିବା-ବେଳେ ଅମନଯୋଗ ଦେଖି ଦୋକାନୀ (ଜଣେ ସ୍ତ୍ରୀ ଲୋକ) ଗୋଟିଏ ପଚା ପେଣ୍ଡା ପୁଡ଼ିଆରେ ଭର୍ତ୍ତି କରିଦେଲା । ଦୋକାନୀଙ୍କ ଏ ମନୋବୃତ୍ତି ମୁଁ ଜାଣେ । ତେବେ ଇଟାଲୀର ନୈତିକ ଚରିତ୍ର ଉନ୍ନତତର ହୋଇଥିବ, ଏ ଧାରଣା ଥିଲା । ମୁଁ ଜାଣି ସୁଦ୍ଧା ବଦଳାଇବାକୁ କହିଲି ନାହିଁ । କିଏ ଦେବ ଏତେ ? ସେ ଫୋପାଡ଼ନ୍ତା, ନଇଲେ ମୁଁ ଫୋପାଡ଼ନ୍ତି । କେତେ ଖାଇବ ?

ବହୁ ବସ୍, ବହୁ ଗାଇଡ୍ ପତାକା ଟେକି ବୁଲୁଛନ୍ତି । କେତେ-ବେଳେ ଏ ଦଳରୁ ସେ ଦଳରେ, ସେ ଦଳରୁ ଆଉ ଏକ ଦଳରେ ମିଶିଗଲି, ଜାଣେ ନାହିଁ । ବାଟବଣା ହୋଇ ବହେ ଏଣେ ତେଣେ ବୁଲିଲି, ମୋତେ ଛାଡ଼ି କିଏ ଆମ ବସ୍ ଚାଲିଗଲା ?

ନମ୍ବରଟି ଭାଗ୍ୟକୁ ମନେଥିଲା; କୌଣସିମତେ ବସ୍‌ଟି ପାଇ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇଲି—ଉଃ !

## ଭାଟିକାନ୍ ସିଟି

ଭାଟିକାନ୍ ସିଟିରେ ମହାମାନ୍ୟ ପୋପ୍‌ଙ୍କର ଆସ୍ଥାନ; ଟାଇବର ନଦୀର ଦକ୍ଷିଣ କୂଳରେ ଗୋଟିଏ ପାହାଡ଼ ଉପରେ ଏହା ଅବସ୍ଥିତ, ପ୍ରାଚୀନ ନବୀନ ବହୁ ପ୍ରାସାଦର ସମାବେଶ ଘଟିଛି ଏଠି । ଚତୁର୍ଦ୍ଦିଗ ଉଚ୍ଚ ପ୍ରାଚୀର ବେଷ୍ଟିତ, ଗୋଟିଏ ଦୁର୍ଗ ମଧ୍ୟରେ ପ୍ରବେଶ କଲା ପରି ଲାଗେ ।

ଭାଟିକାନ୍ ସିଟି ଏକ ହଜାର ସ୍କୋୟାର ମାଇଲବ୍ୟାପୀ । ସହର ମଧ୍ୟରେ ଏହା ଏକ ସ୍ୱତନ୍ତ୍ର ସହର ଭଳି ରହିଛି । ଏହାର ଶାସନସଂସ୍ଥା ସ୍ୱତନ୍ତ୍ର ଭାବରେ ଚାଲିଛି; ୧୯୨୯ ଚୁକ୍ତି ଅନୁସାରେ ଏହାର ଆଭ୍ୟନ୍ତରୀଣ ଶାସନରେ ହସ୍ତକ୍ଷେପ କରିବାର ଅଧିକାର ରୋମ

ବା ଇଚ୍ଛାଧୀନ ଶାସକଙ୍କର ନାହିଁ । ଧର୍ମ ସ୍ୱାଧୀନ, ଜ୍ଞାନଚର୍ଚ୍ଚା ନିରର୍ଗଳ ଭାବରେ ଚାଲିଛି ଏଠି । ପୋପ୍ ପୃଥିବୀରେ ଏକ ଶ୍ରେଷ୍ଠ ନୈତିକ ଶକ୍ତି ରୂପେ ଶାନ୍ତି ଲାଗି କାର୍ଯ୍ୟ କରି ଚାଲିଛନ୍ତି ।

ଭାଟିକାନ୍ ସହରର ଲୋକସଂଖ୍ୟା ପ୍ରାୟ ଏକ ହଜାର, ଏଥି ମଧ୍ୟରୁ କେତେକ ପୁଲିସ, କେତେକ ସେବାଇତ, କେତେକ ଧର୍ମଜିଜ୍ଞାସୁ । ପୁଲିସ୍ ଶକ୍ତି ବହୁଭାଗରେ ବିଭକ୍ତ, ସହରରେ ଶାନ୍ତିରକ୍ଷା ସେମାନଙ୍କ ପ୍ରଧାନ କର୍ତ୍ତବ୍ୟ । ଲୋଡ଼ା ହେଲେ ଏଇ ସହରକୁ ରକ୍ଷା କରିବା ଲାଗି କେତେକ ସୈନ୍ୟ ରହିଛନ୍ତି । ଏମାନଙ୍କ ଛଡ଼ା ପ୍ରାସାଦରେ ଶୃଙ୍ଖଳା ରକ୍ଷା ଲାଗି କେତେକ ଜଗୁଆଳି ପୁଲିସ୍ ଅଛନ୍ତି । ସେମାନେ ସମସ୍ତେ ସ୍ୱିଜରଲଣ୍ଡର, ପରମ୍ପରା କ୍ରମେ ସ୍ୱିସ୍‌ମାନେ ପୋପ୍‌ଙ୍କ ପାଖେ କାର୍ଯ୍ୟ କରିଆସୁଛନ୍ତି; ଷୋଡ଼ଶ ଶତାବ୍ଦୀର ରଙ୍ଗୀନ ଡ୍ରେସ ମଧ୍ୟ ସେମାନେ ପିନ୍ଧୁଛନ୍ତି; ଉନ୍ମୁକ୍ତ ଖଡ଼୍‌ଗ ଧରି ବିଭିନ୍ନ ସ୍ଥାନରେ ପହରା ଦେଉଛନ୍ତି । ଭାଟିକାନ୍‌ରେ ପ୍ରବେଶ ଲାଗି କାହାରି ଅନୁମତି ନେବାକୁ ପଡ଼େ ନାହିଁ । ଏଠି ସ୍ୱତନ୍ତ୍ର ଡାକ ଟିକଟ ଚାଲେ ।

ଗୋଲାକାର ପ୍ରାଚୀର, ବୃହତ୍ ବୃହତ୍ ସ୍ତମ୍ଭ ସରୁ ସରୁ ଇଟା, ବିପୁଳ ବ୍ରଞ୍ଜ୍ କବାଟ; ସୁବର୍ଣ୍ଣ ଚର୍ଚ୍ଚର ନମୁନା ସବୁ, ପୁରାତନ ହସ୍ତୀଦନ୍ତର କ୍ରସ୍, ସୁନା ରୂପାର କ୍ରସ୍, ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ଗ୍ରୀକ୍ ଭାଷାର ବାଇବଲସବୁ, ପୋର୍ସିଲେନ୍ ଫୁଲଦାନି, ମୋଜାଇକ୍ ଟେବୁଲ; ଭର୍ଜିଲ୍‌ଙ୍କ ପାଣ୍ଡୁଲିପି, ଦାନ୍ତେଙ୍କ ଡିଭାଇନା କମେଡିଆ; ଟେରାକୋଟା ଘଟ, ସିଲ୍, ମୁଦ୍ରା, ଅଳଙ୍କାର ବିଧର୍ମୀଙ୍କୁ ଶାସ୍ତି ଦେବାର ଅସ୍ତ୍ରସବୁ ବୁଲି ଦେଖିଲି । ପାଠାଗାର ଏପରି ଭାବେ ସଜ୍ଜିତ ହୋଇଛି ଯେ ବାହାରକୁ ତାର ବିପୁଳ ଅସ୍ତିତ୍ୱର ଧାରଣା ମିଳେ ନାହିଁ । ଯାଦୁଘରେ ନେପ୍‌ଚୁନ୍, ଜୁପିଟର୍ ଆଦି ବହୁ ଦେବାଦେବୀ, ସକ୍ରେଟିସ୍, ପ୍ଲେଟୋ, ସଫୋକ୍ଲିସ୍, ଇଉରିପାଇଡ଼ସ୍, ପେରିକ୍ଲିସ୍‌ଙ୍କ ମୂର୍ତ୍ତି ସଜ୍ଜିତ ।

ଦାନ୍ତେ, ଭର୍ଜିଲ୍, ପେଟ୍ରାର୍କ, ବୋକାଚିଓ ଫ୍ରେସକୋରେ ଥିଲେ । ଅଧିକାଂଶ ଛବି ଧର୍ମାତ୍ମକ; ବାଇବେଲ୍‌ର କାହାଣୀସବୁ ଚିତ୍ରିତ;

ହୋଇଅଛି । ଈଶ୍ବର ସ୍ବର୍ଗରୁ ପୃଥିବୀକୁ ଅଲଗା କରୁଛନ୍ତି । ଧାର୍ମିକ ଧର୍ମ ଲାଗି ଶହୀଦ ହେଉଛି । ପାପୀ ଦଣ୍ଡିତ, ପୁଣ୍ୟବନ୍ତ ପୁରସ୍କୃତ ହେଉଛି । ବର୍ଣ୍ଣିନି, ସଙ୍ଗଲେ, ରାଫେଲ ପ୍ରମୁଖ ଶିଳ୍ପୀ ଚର୍ଚ୍ଚକୁ ମଣ୍ଡନ କରିଛନ୍ତି । ଚର୍ଚ୍ଚ ଦେଖିଲାବେଳେ ବେଶି ମନେପଡ଼େ ମାଇକେଲ ଆଞ୍ଜେଲୋଙ୍କ କଥା । ସୁଦୀର୍ଘକାଳ ଏଠି ଫ୍ରେସ୍କୋ ଆଙ୍କି ଆଙ୍କି ତାଙ୍କ ବେକ ଭାଙ୍ଗି ଯାଇଥିଲା । ତାଙ୍କ ନାମ ଏଦେଶର ମୁହଁରେ ମୁହଁରେ । ତେଣୁ ତାଙ୍କର ସଂକ୍ଷିପ୍ତ ପରିଚୟ ନ ଦେଇ ରହିପାରିଲି ନାହିଁ ।

## ମାଇକେଲ ଆଞ୍ଜେଲୋ

ମାଇକେଲ ଆଞ୍ଜେଲୋ ଷୋଡ଼ଶ ଶତାବ୍ଦୀର ଶିଳ୍ପୀ, ଏକାଧାରରେ କବି, ଭାସ୍କର । ସେ ଜୀବନରେ ସ୍ବାଧୀନ ଭାବରେ କଳା ଚର୍ଚ୍ଚା କରିବାର ସୁଯୋଗ ପାଇ ନ ଥିଲେ । କେବଳ ପେଟ ପୋଷିବା ପାଇଁ ବରାଦ ହୋଇଥିବା ମୂର୍ତ୍ତି ବା ଛବି ତାଙ୍କୁ ଗଢ଼ିବାକୁ ବା ଅଙ୍କିବାକୁ ହୋଇଥିଲା । ଜୀବନ ବଞ୍ଚାଇବା ଲାଗି ସେ ରାଜା, ଡ୍ୟୁକ୍ ବା ପୋପ୍‌ଙ୍କର ଆଶ୍ରୟ ଗ୍ରହଣ କରିଥିଲେ । କିନ୍ତୁ ଅଭାବର ତାଡ଼ନାରେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ବ୍ୟତିବ୍ୟସ୍ତ ହେଉଥିଲେ । ବହୁ ଯଶଅସହିଷ୍ଣୁ ଶତ୍ରୁ ନାନା ଦ୍ବନ୍ଦ୍ବ ଉଠାଇ ତାଙ୍କ ସୌନ୍ଦର୍ଯ୍ୟପ୍ରବଣ ମନକୁ ନଷ୍ଟଭ୍ରଷ୍ଟ କରିବାକୁ ଚେଷ୍ଟା କରିଥିଲେ ।

ଜୀବନକାଳ ମଧ୍ୟରେ ତାଙ୍କ ପ୍ରତିଷ୍ଠା ଆଲ୍‌ପସ୍ ଅତିକ୍ରମ କରି ସମଗ୍ର ଇଉରୋପରେ ବ୍ୟାପ୍ତ ହୋଇଥିଲା । ସେ କାଳର ଶ୍ରେଷ୍ଠ ଶିଳ୍ପୀ ରାଫେଲ୍ ତାଙ୍କ ପ୍ରତିଭାକୁ ନମସ୍କାର କରିଥିଲେ ।

ରାଫେଲ୍‌ଙ୍କ ସଂପର୍କରେ ଆଞ୍ଜେଲୋ କହିଥିଲେ—'କଳା ବୋଲି ଯାହା କିଛି ରାଫେଲ୍‌ଙ୍କର ଅଛି, ସେ ତାହା ମୋଠାରୁ ପାଇଛନ୍ତି । କିନ୍ତୁ ନିଜର ଡେଣାରେ ଜୋର୍ ନଥିଲେ ଏ ଜଗତରେ ଲୋକ ଅନେକ ଦୂର ଉଡ଼ି ଯାଇ ନ ପାରେ ।'

ଜୀବନରେ ସେ ପ୍ରଚୁର ସମ୍ପତ୍ତି କମେଇ ଥିଲେ, ସବୁ ପରିବାରର ଉପଭୋଗରେ ଲାଗିଥିଲା । ତାଙ୍କ ସ୍ତ୍ରୀ ହୀରାମୁଦି ପିନ୍ଧିଥିବା ବେଳେ,

ଭାଇମାନେ ମହା ଅସୁବରେ କାଳ କାଟୁଥିବା ବେଳେ ରୋମ୍‌ରେ ଏକାକୀ ଘୋର ଦାରିଦ୍ର୍ୟ ଓ ଦୁଃଖରେ ତାଙ୍କୁ ଜୀବନ ଯାପନ କରିବାକୁ ହୋଇଥିଲା । କଳା ପ୍ରତି କୌଣସି ବିଶ୍ୱସ୍ତ ରହିବାକୁ ଚେଷ୍ଟାକରି ସେ ଦାରିଦ୍ର୍ୟ ଓ ଦୁଃଖ ବରଣ କରିଥିଲେ । ୧୯୬୪ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହେଲା ।

ପୋପ ଦ୍ୱିତୀୟ ଜୁଲିଏସ୍‌ଙ୍କ ଦ୍ୱାରା ନିପୀଡ଼ିତ ହୋଇ ସେ ରୋମ୍‌ରୁ ଫ୍ଲରେନ୍‌ସକୁ ପଳାୟନ କରିଥିଲେ । ଜୁଲିଏସ୍ ବାରମ୍ବାର ଲୋକ ପଠାଇଲେ । କିନ୍ତୁ କିଛି ଫଳ ହେଲା ନାହିଁ । ଶେଷରେ ପୋପ୍ ଫ୍ଲରେନସ୍‌ର ଡିଉକଙ୍କ ନିକଟକୁ ଚିଠି ଲେଖିଲେ । ଡିଉକ୍ ଶିଳ୍ପୀଙ୍କୁ ଡକାଇ କହିଲେ—'ତୁମେ ଯେଉଁ ଠାଣ ଧରିଛ, ଫ୍ରାନ୍‌ସର ସମ୍ରାଟ ଅଖଣ୍ଡ କ୍ଷମତାଶାଳୀ ପୋପ୍‌ଙ୍କ ବିରୁଦ୍ଧରେ ତା ଧରି ପାରନ୍ତେ କି ନା ସନ୍ଦେହ, ତୁମେ ଯଦି ନ ଯାଅ ପୋପ୍ ଫ୍ଲରେନ୍‌ସ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବେ ।'

ଡିଉକ୍‌ଙ୍କ ଚେଷ୍ଟା ଫଳରେ ମାଇକେଲ ଆଞ୍ଜେଲୋ ବଲୋନାରେ ପୋପ୍‌ଙ୍କ ସହିତ ସାକ୍ଷାତ୍ କଲେ । କିନ୍ତୁ ଅନୁଦାର ପୋପ୍ ତାଙ୍କ ବେକରେ ଜାଣ ପାଳିଦଉଡ଼ି ପକାଇ କ୍ଷମା ମାଗିବାକୁ ବାଧ୍ୟ କଲେ । ଘୃଣିତ ଘଟଣା ଦୁଃଖରେ ଶିଳ୍ପୀ ଏହା ଲେଖି ଯାଇଛନ୍ତି ।

'ଶିଳ୍ପୀ ପକ୍ଷରେ ନିଜ ଜୀବନ ଅପେକ୍ଷା ଶିଳ୍ପ ବଡ଼'— ଏହା ନିଜ ରକ୍ତ ଓ ଅଶ୍ରୁରେ ସେ ଆଙ୍କି ଯାଇଛନ୍ତି । ସେ ଚିରନ୍ତନ ବର୍ଷ ତଳର ଶିଳ୍ପୀ । କିନ୍ତୁ ତାଙ୍କ ଛବି, ମୂର୍ତ୍ତି ବା ଫ୍ରେସ୍କୋ ସଦ୍ୟ ଶେଷ ହେଲା ପରି ଜଣାଯାଏ; ପ୍ରତିଭାର ଚୂଡ଼ାନ୍ତ ସ୍ୱାକ୍ଷର ସନ୍ଦେହ ।

## ସେଣ୍ଟ ପେଟର୍‌ସ୍ ଚର୍ଚ୍ଚ (୧୬ । ୧୦ । ୬୭)

ଆଜି ରବିବାର; ଦୋକାନପାଟ ବନ୍ଦ । ବନ୍ଧୁମାନେ ଚର୍ଚ୍ଚକୁ ବାହାରିଲେ । ମୁଁ ମଧ୍ୟ ଚାଲିଲି ବିଶ୍ୱ ପ୍ରସିଦ୍ଧ ସେଣ୍ଟ ପେଟର୍‌ସ ଚର୍ଚ୍ଚକୁ ।

ନେବେ ଯେଉଁମାନଙ୍କୁ ରୋମ୍ ଦାହ ଲାଗି ଦାୟୀ କରିଥିଲେ, ସେଥିମଧ୍ୟରୁ ପୁଣ୍ୟାତ୍ମା ସେଣ୍ଟପେଟର୍ ଜଣେ । ସେ ରୋମର ବିଶପ୍ ଥିଲେ; ଖ୍ରୀଷ୍ଟିଆନ୍ ଧର୍ମ ରକ୍ଷା ଲାଗି ଶହୀଦ ହୋଇଥିଲେ । ତାଙ୍କ ସ୍ମୃତିରକ୍ଷା ଲାଗି ଏ ଚର୍ଚ୍ଚ ଓ ପୃଥିବୀର ବିଭିନ୍ନ ଦେଶରେ ବହୁ ଚର୍ଚ୍ଚ ନିର୍ମିତ ହୋଇଅଛି । ଏହା ପୃଥିବୀର ବୃହତ୍ତମ ଚର୍ଚ୍ଚ; ଷୋଳ ହଜାର ଲୋକ ଏକାବେଳକେ ଏହା ମଧ୍ୟରେ ପ୍ରାର୍ଥନା କରିପାରିବେ । ଏହା ସମୃଦ୍ଧତମ ମଧ୍ୟ । ଚବିଶ କ୍ୟାରେଟ୍ ସୁନା ବହୁ ପରିମାଣରେ ଗୃହରେ ବ୍ୟବହୃତ ହୋଇଅଛି । ବିଶୁଦ୍ଧ ବ୍ରୋଞ୍ଜର ଏକଶତ ଫୁଟ ଉଚ୍ଚ ସ୍ତମ୍ଭ ଏଥିରେ ରହିଅଛି । ଏହାର ପବିତ୍ର ବ୍ରୋଞ୍ଜ ଦ୍ୱାର ପଚିଶ ବର୍ଷରେ ଥରେ ଫିଟେ । ଏହି ମୁକ୍ତିର ଦ୍ୱାର ବାଟେ ଯାଇ ଚର୍ଚ୍ଚରେ ପ୍ରାର୍ଥନା କରିବା ଲାଗି ବହୁ ଯାତ୍ରୀ ସମାଗମ ହୋଇଥାଏ । ଏହି ଚର୍ଚ୍ଚରେ ୧୨୧ଟି ପ୍ରଦୀପ ଅହୋରାତ୍ର ଜଳୁଥାଏ । ଏଠି ମୋଟରେ ୩୯୦ ଗୋଟି ମାର୍ବଲ ମୂର୍ତ୍ତି ଅଛି— ଏହା ରାଜା, ପୋପ୍, ଶହୀଦ୍ ଓ ସନ୍ନ୍ୟାସୀମାନଙ୍କର, ଏହା ଭାଟିକାନ୍‌କୁ ଲାଗି ରହିଛି । ଏଠି ପୋପ୍‌ମାନଙ୍କର ଅଭିଷେକ ହୁଏ । ପୂର୍ବକାଳରେ ଏଠି ରାଜାମାନ୍ ଓ କେତେକ ସମ୍ରାଟଙ୍କ ଅଭିଷେକ ମଧ୍ୟ ହୋଇଥିଲା । ପୋପ୍‌ମାନଙ୍କ ସମାଧିକ୍ଷେତ୍ର ଏଇଠି; ମାଇକେଲ୍ ଆଞ୍ଜେଲୋଙ୍କ ମୂର୍ତ୍ତି ବିଶେଷ ଆକର୍ଷଣୀୟ ହୋଇ ରହିଛି । ଅଣ୍ଟୁମାଡ଼ି ବସି ପ୍ରାର୍ଥନା କରୁଥିବା ସେଣ୍ଟପେଟରଙ୍କ ମୂର୍ତ୍ତି ରହିଅଛି ।

ଢନ-ଢନ-ଢନ—ଠିକ୍ ନ'ଟା ବେଳେ ସେଣ୍ଟପେଟର୍‌ସ୍ ଘଣ୍ଟା ବାଜିଉଠିଲା । ପୋପ୍ ଦଶମ ପାୟସଙ୍କ ସମାଧି ପାଖରେ ଆମେ ଯାଇ ଛିଡ଼ା ହେଲୁ । ମୁଣ୍ଡ ଉପରେ ଚମତ୍କାର ଫ୍ରେସ୍କୋ, ସାମ୍ନାରେ ଏ କାହାର ସମାଧି ? ଚିହ୍ନିବାର ଯୋଗ୍ୟ ହୋଇଛି, ବତିଟିଏ ଜଳୁଛି । ଭାରିଆଡ଼େ ଅଗଣିତ ମହମବତୀ । ପ୍ରିଷ୍ଟ ଆସି ଲାଟିନ୍ ଭାଷାରେ କଣ ମନ୍ତ୍ର ବୋଲିଲେ; ପବିତ୍ର ଜଳ ବିତରଣ କଲେ ଓ ନିଜେ ପାନ କଲେ । ତାପରେ ଅନ୍ୟ କେହି ଜଣେ ନାନା ମନ୍ତ୍ର ବୋଲି ଊର୍ଦ୍ଧ୍ୱକୁ ଦୃଷ୍ଟି ଦେଇ ଭଗବାନଙ୍କୁ ଜଣାଉଥାନ୍ତି—ଯେପରି ଆମ ପଣ୍ଡା 'ଆହେ ଜଗନ୍ନାଥ ମହାପ୍ରଭୁ', 'ଆହେ ଆଖଣ୍ଡଳମଣି', 'ଭକ୍ତର ମନୋବାଞ୍ଛା ପୂର୍ଣ୍ଣକର

ପ୍ରଭୁ' ବୋଲି ଡାକନ୍ତି, ଠିକ୍ ସେହିପରି । ଘଣ୍ଟି ବାଜୁଥାଏ । ଲୋକେ ପଦେ ପଦେ କହୁଥାନ୍ତି—'ଆମେନ'

ପ୍ରାର୍ଥନା ଶେଷ ହେଲା, ବାକ୍ସ ବୁଲିଲା—ଯାତ୍ରୀମାନେ ସେଥିରେ କିଛି କିଛି ପକାଇଲେ । ପ୍ରାୟ ଦୁଇଘଣ୍ଟା ପରେ ଆମେ ପଦାକୁ ଆସିଲୁ । ପ୍ରଚଣ୍ଡ ବର୍ଷା । ଭୂମଧ୍ୟ ସାଗରରୁ ମେଘ ମାଡ଼ି ଆସୁଥାଏ । ପ୍ରବଳ ଘଡ଼-ଘଡ଼ ଢେଉ । ବାରଣ୍ଡାରେ ଚର୍ଚ୍ଚର ସ୍ତମ୍ଭକୁ ଆଉଜି ଛିଡ଼ା ହୋଇ ରହିଲି - ପାଣି ଛିଟାଉଥାଏ ।

## ପୋପ୍ ଦର୍ଶନ

ଭାଟିକାନ୍ ଚର୍ଚ୍ଚ୍ ସାଧାରଣ୍ୟ ହୋଇଯାଇଛି । ବାରଟାବେଳେ ପୋପ୍ ଦର୍ଶନ ଦେବେ; ଆଶୀର୍ବାଦ କରିବେ । ପ୍ରାୟ ଏକଘଣ୍ଟା ଅପେକ୍ଷା କରି ରହିଲୁ, ଅପେକ୍ଷା ବିରକ୍ତିକର; ବର୍ଷା ଧୈର୍ଯ୍ୟ ଲୋପ କରୁଛି । ଛଦେ ଲାଗି ଦେଇ 'ରୋମ ଅମେରିକାନ୍' ଖବରକାଗଜ ଖଣ୍ଡିଏ କିଣି-ଥାଏ, ପୃଥିବୀରେ କଣ ଘଟୁଛି ଏ ମଧ୍ୟରେ କିଛି ଜାଣି ନାହିଁ, ପୃଥିବୀ ଘୂରୁଛି ତା ବାଟରେ, ଆମେ ଘୂରୁଛୁ ଆମ ବାଟରେ ।

ସେଇ କାଗଜ ଖଣ୍ଡି ପଢ଼ିଲି ତ ଯାହା ହେଲି, ତାକୁ ମୁଣ୍ଡରେ ଦେଇ ଅସରଏ ତ ଅସରା ବର୍ଷା ସମ୍ଭାଳି ନେଲି ।

ଚର୍ଚ୍ଚର ଏସ ସ୍ତମ୍ଭ ପାଖରେ ଖ୍ରୀଷ୍ଟିୟାନ ମହର୍ଷି ମହାତ୍ମାମାନେ ଛିଡ଼ା ହୋଇଛନ୍ତି । ଛିଡ଼ା ହୋଇଛନ୍ତି ଯାତ୍ରୀ । ଇଟାଲୀ ବିଶେଷତଃ ରୋମ ଇଉରୋପର 'ଧର୍ମକ୍ଷେତ୍ର' । ଏବେ ବି ପୃଥିବୀର ଲୋକେ ପ୍ରାୟ ତାକୁ ସେଇ ଦୃଷ୍ଟିରେ ଦେଖୁଛନ୍ତି । ପୋପ୍‌ଙ୍କ ପ୍ରତି ଖ୍ରୀଷ୍ଟିୟାନ ଜଗତର ପ୍ରଗାଢ଼ ଭକ୍ତି ରହିଛି ।

ମେଘ ମୁହଁ କୁହୁଳାଉଛି । ଯେଉଁଠି ଆମେ ଛିଡ଼ା ହୋଇଥିଲୁ, ପୃଷ୍ଠ ପଟରୁ ସେଠି ଚର୍ଚ୍ଚର ଦରଜାଟି ଖୋଲିଲା । ମାଡ଼ିଆସିଲା ବନ୍ୟାପରି ଏକ ଜନସ୍ରୋତ । ତା ତୋଡ଼ରେ ଚଢ଼ି ହୋଇ ଯାଇ ଆମେ ପୂରାପୂରି

ବର୍ଷାର ସମ୍ମୁଖୀନ ହେଲୁ । ସାମ୍ନା ଛତମସ୍ତ । ଭାଟିକାନ ସହରର ଭୃତ୍ତାପ୍ତ ତଳର ଏକ ନିର୍ଦ୍ଦିଷ୍ଟ ବାତାୟନରେ ଦେଖାଦେଲେ ଖ୍ରୀଷ୍ଟିୟାନ୍ ଜଗତର ଶ୍ରେଷ୍ଠ ଧର୍ମପୁରୁଷ ପୋପ୍ । ଇଟାଲୀୟ ଭାଷାରେ ସେ ଯାତ୍ରୀ-ମାନଙ୍କୁ ଯେଉଁ ଆଶୀର୍ବାଦ କଲେ ତାର ସାରମର୍ମ ଏଇ—

ଈଶ୍ୱର ସମସ୍ତଙ୍କ ମଙ୍ଗଳ କରନ୍ତୁ

ଈଶ୍ୱର ତୁମ୍ଭମାନଙ୍କର ମଙ୍ଗଳ କରନ୍ତୁ ।

ମାଇକ୍ରୁ ଗୁରୁଗମ୍ଭୀର ସ୍ୱରରେ ଏ ଧ୍ୱନି ଭାସି ଆସୁଥାଏ । ଇଟାଲୀୟମାନେ ତାର ପୁନରୁକ୍ତି କରୁଥାନ୍ତି । ପୋପ ହାତ ଟେକିଥାନ୍ତି, ଆଶୀର୍ବାଦ ଭଙ୍ଗୀରେ, ସାଦା ପୋଷାକ, ମୁଣ୍ଡରେ ତାଙ୍କର ଟୋପି । ରବିବାର ଛଡ଼ା ପ୍ରତି ବୁଧବାର ଦିନ ବ୍ୟକ୍ତିଗତ ଭାବେ ପୋପ୍‌ଙ୍କ ଆଶୀର୍ବାଦ ମିଳେ ଏହି ପୀଠରୁ । ତା ବ୍ୟତୀତ ପୋପ୍ ଆଶୀର୍ବାଦ କରିଥାନ୍ତି 'ସୁବର୍ଣ୍ଣ ଗୋଲାପ'କୁ । ସେ ଏକ ସୁବର୍ଣ୍ଣ ଗାଛ । ସେଥିରୁ ଗୋଲାପ ଓ ସୁବାସିତ ଜଳ ବୃଷ୍ଟି କରାହୋଇଥାଏ—ସମ୍ରାଟ ବା ରାଜାଙ୍କ ଉପରେ—ଏକ ସ୍ୱତନ୍ତ୍ର ଉତ୍ସବରେ ପ୍ରତି ପାଞ୍ଚ ବର୍ଷରେ ଥରେ ।

ଗୁରୁ ଗମ୍ଭୀର ନାଦରେ ପୁଣି ଭାଟିକାନ୍ ଘଣ୍ଟା ବାଜି ଉଠିଲା । ପୋପ୍ ଅଦୃଶ୍ୟ ହେଲେ । ଜନତାର ସ୍ରୋତରେ ମୋ ସଙ୍ଗୀ ସଙ୍ଗିନୀମାନେ କିଏ କୁଆଡ଼େ ଗଲେ । ରହିଲେ ମାତ୍ର 'ସାଲୀ' ଓ 'ଜୋଆନ୍ ମେରିଆ' । ମୁଁ ସେ ଦୁଇ ଜଣଙ୍କୁ ଦୁଇ ଆଖି ମନେକରି ବୁଲିଲି । ଜୋଆନ୍ ପିନ୍ଧିଥାଏ ଲାଲ ସ୍ୱେଟର—ତା'ରି ଉପରେ ମୋ ଦୃଷ୍ଟି; ଅଧଘଣ୍ଟାଏ ବର୍ଷାରେ ଜନ୍ତୁ ଭୁଲିଲା ପରେ ଦେହକୁ ମୁହଁ ବୁଲାଇ ସାଲୀ ମୋତେ ପଚାରିଲା—ବାଟ ଜାଣ ?

ଦୁଃଖରେ ହସି ପକାଇଲି—ଆରେ ମୁଁ ଯେ ତୁମକୁ ଭରସା କରି ବୁଲିଛୁ ।

ଆମେ କାହିଁ ଥିଅ, ଅଧୁନିକା, ବହୁତ ବୁଲିଛ । ତୁମେ ମୋତେ ଓଲଟି ପଚାରୁଛ କଣ ?

ଭିନ୍ନ ଭିନ୍ନ ସ୍ଥାନଗୁଡ଼ାକୁ ସେମାନେ ପଚାରୁଥାନ୍ତି, କଣ ବୁଝୁଥାନ୍ତି, ଦୌଡ଼ୁଥାନ୍ତି । ପୁଣି ପଚାରୁଥାନ୍ତି । ଅଧଘଣ୍ଟାଏ ଭୂଆଁ ବୁଲାଇ ପରେ— ପହଞ୍ଚିଲୁ, ଯୋଉଠୁ ବାହାରିଥିଲୁ । ଝିଅ ଦୁଇଟି ନିରାଶ ଦୀର୍ଘଶ୍ୱାସ ପକାଇଲା ବେଳେ ବୁଝିଲି—ଏମାନଙ୍କ ନେତୃତ୍ୱ ମୋତେ ହିଁ ନେବାକୁ ହେବ । ବୁଲି ବୁଲି ଗୋଟିଏ ଘୋଡ଼ାଗାଡ଼ି ଯୋଗାଡ଼ କଲି । ଗାଡ଼ିବାଲା ଇଟାଲୀୟ ଗୀତ ଆରମ୍ଭ କରିଦେଲା । ହସି ହସି କହିଲି—ବିପଦର କଷ୍ଟ ହେଲେ ମାଧୁର୍ଯ୍ୟ ଅଛି ।

ରୋମ୍ ନଗରୀର ଏ ବର୍ଷା, ଝିଅମାନଙ୍କ ସହିତ ଏ ଘୋଡ଼ାଗାଡ଼ି ଚଢ଼ା ଦୀର୍ଘକାଳ ମନେ ରହିବ ।

ଟିକଏ ବାଟ, ଗାଡ଼ିବାଲା ପହଞ୍ଚାଇ ଦେଲା । ଆମଠାରୁ ନେଲା ଦୁଇ ହଜାର ଲିରା ।

## ଟ୍ରିଭି

ଏହା ଗୋଟିଏ ସ୍ୱଚ୍ଛଝରଣା, ଗାଢ଼ ନୀଳ ଜଳ । 'ନେପଚ୍ୟୁନ୍' ଏଠି ପ୍ରଧାନ ଠାକୁର, ସେ ବରଦାତା । ଏଠି ତିନୋଟି ମୁଦ୍ରା ପକାଇବାକୁ ହୁଏ, ତିନୋଟି ବର ବାଞ୍ଛା କରିବାକୁ ହୁଏ । ପ୍ରଥମ ଇଚ୍ଛା ସମସ୍ତଙ୍କର ସମାନ—ରୋମ୍‌କୁ ପୁଣି ଥରେ ଫେରିବାକୁ ହେବ ।

ଦ୍ୱିତୀୟ ଇଚ୍ଛା—ଅର୍ଥ ବା ପ୍ରେମ । ତୃତୀୟ—ଯେ କୌଣସି ସାଫଲ୍ୟ କାମନା । ଜୋଆନ୍ ମେରୀକ ପଚାରିଲି —ତୋର କ ଇଚ୍ଛା ? ପ୍ରଥମଟି ଜାଣେ, ପଚାରୁ ନାହିଁ । ଦ୍ୱିତୀୟଟି ସବୁ କୁମାରୀ ଗୁପ୍ତ ରଖନ୍ତି, ତୁ ରଖିବୁ । ତୃତୀୟଟି କଣ ?

ମେରୀ କହିଲା—ଇଚ୍ଛା ପ୍ରକାଶ କରିବା ମନା, କଲେ ଫଳେ ନାହିଁ, ଲୋକ ବିଶ୍ୱାସ ।

କହିଲି—ବେଲ୍‌ଜିଆନ୍, ଡଚ୍, ଜର୍ମାନ୍ ମୁଦ୍ରା ତ ପକାଇଲୁ । ତୋର ଅଦରକାରୀ ବୋଲି । ଇଚ୍ଛା କିପରି ଫଳିବ ?

ମେଷ୍ଟ କହିଲା—ବିଶ୍ୱାସ ଟଳମଳ, ଖାଲି ବୌଦ୍ଧିକତାରେ ଚଳାଇବା କଥା । ଇଚ୍ଛା ଯଦି ଏତେ ସହଜରେ ପୂର୍ଣ୍ଣ ହୋଇଥାନ୍ତା, ଲୋକେ କାର୍ଯ୍ୟ କରନ୍ତେ କାହିଁକି ? କାର୍ଯ୍ୟର ଫଳ ବା କିଏ ଦିଅନ୍ତା ?

## ରୋମ୍ (୧୭ । ୧୦ । ୭୭)

କାଲି ରାତିରେ ଦଳର ସମସ୍ତେ ଅନ୍ୟ ଏକ ହୋଟେଲକୁ ଖାଇବାକୁ ଗଲେ । ଏମିତି ତ ବର୍ଷା, ଦ୍ୱିପ୍ରହରେ ଶୀତାତପ, ମଜଲିସ ସଙ୍ଗୀତ, ମଦ୍ୟପାନ, ରାତିଜାଗରଣ ଅନଭ୍ୟସ୍ତ ବ୍ୟକ୍ତିକୁ ଅସୁବିଧାଜନକ । ବିଶ୍ରାମ ଓ କିଛି ଲେଖାଲେଖି କରିବା ଇଚ୍ଛାରେ ରହିଲି । କିନ୍ତୁ ଦୁର୍ଭାଗ୍ୟ, ହୋଟେଲର ଆଲୁଅ ନିଭିଗଲା, ଆମ ହୋଟେଲରେ ଜଣେ ଦି ଜଣ ଦୀର୍ଘ-କାଳ ଲିଫ୍ଟରେ ଅଟକି ରହିଥିଲେ ।

ସକାଳୁ ବନ୍ଧୁମାନେ କହିଲେ—ଆପଣ ଗଲେ ନାହିଁ, କାଲି ରାତିରେ ଖୁବ୍ ମଜା ହେଲା । କହିଲି—ଆମ ଜୀବନ ଯାହା, ଏ ମଉଜ ଆମକୁ ରୁଚେ ନାହିଁ । ଆମ ଭୋଜିଭାତ, ମଉଜ ମଜଲିସ୍ ସାମୟିକ । କିନ୍ତୁ ଏ ଦେଶରେ ଗୋଟିଏ ନିତ୍ୟନୈମିତ୍ତିକ ଘଟଣା । ପାନ ସଙ୍ଗେ ଏଠି ଗାନର ଭଲ ମେଳ, ଗାନ ସଙ୍ଗେ ନର୍ତ୍ତନର । ସୁଖସ୍ୱପ୍ନ ଦେଖି ସୁନିଦ୍ରା ଯାନ୍ତି ଏମାନେ । ଦେଶ, ଗ୍ରାମ, ଗୃହର, ନାନା ଚିନ୍ତା ମୋ ମନରେ । ଏମାନଙ୍କ ସଙ୍ଗେ ମନ ଖୋଲି ହସି ପାରୁଛି କୋଉଠି ? ସାମାନ୍ୟ ହସ କଥାରେ କରତାଳି ଦେଇପାରିବି କିପରି ? ଏମାନଙ୍କର ଧନ ଅଛି, ତାକୁ ଭୁଞ୍ଜି ମଉଜୀ ମନ ବି ତିଆରି ହୋଇଛି; ମଉଜ ଏକ ଆଶୈଶବ ଅଭ୍ୟାସ । ମଉଜ ବିନା ଜୀବନ ଏଠି ଭାରଗ୍ରସ୍ତ । କିନ୍ତୁ 'ଚିର ହା ହା ମୟ ଏ ଛାର ଜୀବନ', କିଛି ମଉଜ ମିଳିଲେ ମୋ ଆଖିରେ ଆସେ ଅଶ୍ରୁ ।

ରୋମ୍‌ରୁ ବିଦାୟ ନେଇ ଭୂମଧ୍ୟସାଗର କୂଳେ କୂଳେ ଆମେ ଚାଲିଲୁ । ବର୍ଷା; କାଚ ଝରକାରେ ବାମ୍ପ ଜମିଛି, କିଛି ଦିଶୁନାହିଁ । ସମୁଦ୍ରରେ ସେପରି ତରଙ୍ଗ ନାହିଁ, ସାମୁଦ୍ରିକ ଜନ୍ତୁ ପରି ପଡ଼ିରହିଛନ୍ତି ମେଘ । କୂଳରେ କେଉଁଠି ବାଲିବନ୍ତ, ଅନ୍ୟତ୍ର ପାଇନ୍‌ର ବଣ, ଖଜୁରି

ଗଛ, ପେଣ୍ଡା ପେଣ୍ଡା ହୋଇ ଝୁଲୁଛି । ଛୋଟ ଛୋଟ ତେଜ ସସ୍ତାକୁ ଜାଣ ଛୁଉଁଛନ୍ତି, ତା ସଙ୍ଗେ ପଞ୍ଝା ମିଳାଉଛନ୍ତି, ସସ୍ତାଧାରର ତେଲ ଡ଼ିମା ।

'ସିଭିଟା ଭେକ୍କିଆ' ସହରରେ ପହଞ୍ଚିଲୁ । ରୋମାନ୍ ଯୁଗରେ ଏହା ଗୋଟିଏ ବନ୍ଦର ଥିଲା ।

ସମୁଦ୍ର ଧାରର 'ପୋର୍ଟ ମାଇକେଲ୍ ଆଞ୍ଜେଲୋ' ଏବେ ଛାପାଖାନା ହୋଇଛି । ସମୁଦ୍ର କୂଳର କାଶ ଫୁଲ—ଅଙ୍ଗୁରର ଭାଡ଼, ଅଲିଭ୍ ବଗିଚା, ଗହମ ଓ ମକ୍କା କ୍ଷେତ, ସାଇପ୍ରେସ୍, ପପ୍ଲାର ଗଛ ଦେଖୁ ଦେଖୁ ହାବୁଡ଼ ଯାଉଥାଏ ଆଖି ଆଗରେ ଗୋଟିଏ ଗୋଟିଏ ଗ୍ରାମ, ଦୃଷ୍ଟି କ୍ଷଣେ ବିଶ୍ରାମ ନିଏ; ତା ପରେ ଝେପା ମାରି ଧାଏଁ, ଯେଉଁଠି ମେଘସବୁ ଉଠୁଛନ୍ତି ସେହି ଘୋଟକ ପରି, ହିପୋପୋଟାମସ୍ ପରି, ଯେଉଁଠି ଭୂମଧ୍ୟସାଗରର ଭ୍ରୂ ପରି ଦିଶୁଛି ଧ ଧାଡ଼ି ଲମ୍ବ ପାହାଡ଼ ।

ଏ ପଟେ ଛୋଟ ଛୋଟ ପାହାଡ଼, ଆର ପଟେ ସମୁଦ୍ର, ମଝିରେ ରେସ୍ତୋରାଁ—'ଆଗିପ୍'—ସେଠି ଜଳପାନ କଲୁ, ସମୁଦ୍ର ଧାରେ ଧାରେ ଦୀର୍ଘପଥ ଅତିକ୍ରମ କଲାପରେ "ରାଇଭା ଡେଲସୋଲ' ସହରରେ ପହଞ୍ଚିଲୁ, ରେସ୍ତୋରାଁର ନାମଟି ପୁର୍ଦ—ରିଷ୍ଟୋ ଆଣ୍ଡେ ଟାଉଡ୍ଲ କାଲ୍ଡ଼ା'—ପୂରା ସମୁଦ୍ର କୂଳଟାର ଲାଗେ, କନ୍ତୁ ଝାଉଁ ନାହିଁ, ଗଣି ଗଣି ଅମ୍ବ୍ରେଲା ପାଇନ୍; ଈଶ୍ୱର ଜଟା; କଣ୍ଟା କୁସୁମ, ରଙ୍ଗଣି; କରବୀର ଓ କେତେକ ଅଚିହ୍ନା ବିଦେଶୀ ଫୁଲ ଫୁଟିଛି । ଇଚ୍ଛାହୁଏ—ଏ ସମୁଦ୍ର କୂଳେ କୂଳେ କୁଆଡ଼େ ବୋଲି କୁଆଡ଼େ ଚାଲିଯିବା ଲାଗି ।

'ଏଲ୍ବା' ଦ୍ୱୀପର ପାହାଡ଼ସବୁ ଦିଶିଲା, ଦ୍ୱୀପଟି ବେଶ୍ ପାର୍ବତ୍ୟ, ମହାବୀର ନେପୋଲିଅନ୍‌କୁ ଏହି ଦ୍ୱୀପରେ ବନ୍ଦୀ କରାଯାଇ ଥିଲା । ସେ ଏଠୁ ପଳାଇ ଆସି ଫରାସୀ ସୈନ୍ୟମାନଙ୍କୁ ପୁଣି ଯୁଦ୍ଧ ଲାଗି ସଂଗଠିତ କରିଥିଲେ ।

ଦୂର ପାହାଡ଼ଟି 'ସାର୍ଡିନିଆ' ଦ୍ୱୀପର, 'କର୍ସିକା' ମୋଟେ ଦିଶୁନାହିଁ । ଗୋଟିଏ ଇଟାଲୀୟ ଗ୍ରାମରେ ପହଞ୍ଚିଲୁ—ସବୁ କୋଠାଘର ।

ପାଦରେ ଜୋତା, ସୁବସ୍ତ୍ର ପରିଧାନ କରିଛୁ—ବୁଡ଼ୀଟିଏ—ବାଆରେ ଘାସ ହାଣି ହାଣି ଯାଉଛି । ଆମ ଆଡ଼ ପର କାହାନ୍ତି । କେନାଲ ଉପରେ ଜାଲ ମେଲାଇ କଏ ରଖିଛି ? ମାଛ ଡେଇଁବ; ଶୁଖିଲାରେ ବସି ବାଳିଆ ପିଟିବା ଲୋକ ଆମ ଆଡ଼େ ସେଇଆରି ଢେର୍ ଅଛନ୍ତି ।

## ପିସା

'ଆର୍‌ନୋ' ନଦୀ ସହିତ ପୁଣି ଏଠି ସାକ୍ଷାତ୍ ହେଲା, ପିସାନଗରୀ ମଧ୍ୟରେ ପ୍ରବାହିତ । ଏକାଦଶ ଶତାବ୍ଦୀ ବେଳକୁ ଏହି ରାଜ୍ୟ ସାଧାରଣ-ତନ୍ତ୍ର ଓ ସାମୁଦ୍ରିକ ଶକ୍ତି ହିସାବରେ ପ୍ରସିଦ୍ଧ । ଏହାର ପ୍ରତାପଶାଳୀ ନୌବାହିନୀ ବହୁତ ରାଜ୍ୟଜୟ କରିବାକୁ ସମର୍ଥ ହୋଇଥିଲା । ତ୍ରୟୋଦଶ ଶତାବ୍ଦୀରେ ଜେନୋଆର ନୌବାହିନୀ ପିସାକୁ ସମ୍ପୂର୍ଣ୍ଣରୂପେ ପରାସ୍ତ ଓ ବିଧ୍ୱସ୍ତ କଲା । ପଞ୍ଚଦଶ ଶତାବ୍ଦୀରେ ଫ୍ଲୋରେନ୍‌ସ ଏହି ରାଜ୍ୟ ଅଧିକାର କରି ଥିଲା ।

## ଝୋରେ ପେଣ୍ଡେଣ୍ଟେ ବା ଲିନଂ ଟାଓ୍ୱାର

ଏହି ଅର୍ଦ୍ଧନମ୍ର ସୌଧ ଅଷ୍ଟତଳ ବିଶିଷ୍ଟ; ଏହା ୧୧୭୪ ଖ୍ରୀଷ୍ଟାବ୍ଦରେ ଆରମ୍ଭ ଓ ୧୩୫୦ରେ ଶେଷ ହୋଇଥିଲା । ସମସ୍ତ ଟାଓ୍ୱାରଟି ଶ୍ୱେତ ମାର୍ବଲରେ ନିର୍ମିତ । କିନ୍ତୁ ଭିତ୍ତି ଦବିଯିବାରୁ ଏହା ଗୋଟିଏ ବାଗକୁ ଢଳିଛି । ପ୍ରତିବର୍ଷ ୧।୨୦ଇଞ୍ଚ ଅଧିକ ଢଳୁଛି । କେବେ ଭୂଶାୟୀ ହେବ କିଏ ଜାଣେ ?

ଏହାର ଉଚ୍ଚତା ୧୭୯ ଫୁଟ୍; ଉପରୁ ସମସ୍ତ ପିସା ନଗରୀର ଦୃଶ୍ୟ ଦେଖି ହୁଏ—ଏକ ବାଗରେ ସମୁଦ୍ର, ଲିଭର୍ଣ୍ଣୋ ସହର, କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପସବୁ, ଅନ୍ୟ ବାଗରେ ସମତଳ କ୍ଷେତରେ ପ୍ରବାହିତ 'ଆର୍‌ନୋ' ନଦୀ ।

ପିସା ଇଟାଲୀୟ ଜ୍ୟୋତିର୍ବିତ୍, ଅଙ୍କ ଓ ପଦାର୍ଥତତ୍ତ୍ୱବିତ୍ ଗାଲିଲିଓଙ୍କ ଜନ୍ମସ୍ଥାନ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଯୋଗୁଁ ହାଲୁକା

ଓ ଭାରିଜିନିଷ ଏକା ସମୟରେ ଏକା ବେଗରେ ଭୂଇଁରେ ପଡ଼ିବ—ଏହି ଅବନମିତ ସୌଧରୁ ଗାଲିଲିଓ ଜନସାଧାରଣଙ୍କ ଆଗରେ ପ୍ରମାଣ କରିଥିଲେ ।

ଏକାଦଶ ଶତାବ୍ଦୀରେ ନିର୍ମିତ ଟାୱାର ନିକଟବର୍ତ୍ତୀ ଗୋଟିଏ ଗୀର୍ଜା ପିସାର ଗୌରବୋଜ୍ଜ୍ୱଳ ଦିନର ସ୍ମୃତି ଜାଗ୍ରତ କରିଥାଏ । ପିସା ବାଣିଜ୍ୟ ଓ ନୌଶକ୍ତି ଯୋଗୁଁ ବିଶେଷ ବିଭବଶାଳୀ ହୋଇଥିଲା । ସେଇ ବିଭବରୁ କିଞ୍ଚିତ୍ ଏହି ଗୀର୍ଜା ନିର୍ମାଣରେ ବ୍ୟୟିତ ହୋଇଥିଲା । ଏହି ଗୀର୍ଜା ବହୁ ରମ୍ୟ ମୂର୍ତ୍ତି ଓ ଫ୍ରେସ୍କୋର ଭଣ୍ଡାର । କୃଷ୍ଣ ଓ ଶ୍ୱେତ ମର୍ମର ପ୍ରସ୍ତର ବହୁଳ ଭାବେ ଏଥିରେ ବ୍ୟବହୃତ ହୋଇଅଛି । ସୁବର୍ଣ୍ଣ ମୋଜାଇକ୍, ନାନା ଅଳଙ୍କରଣ ଓ ସ୍ଥପତିକଳାରେ ଏହା ଅପୂର୍ବ ଶ୍ରୀ ଧାରଣ କରିଛି । ଷୋଡ଼ଶ ଶତାବ୍ଦୀରେ ଏହା ଦଗ୍ଧ ଓ ଏହାର ଫ୍ରେସ୍କୋ ବିନଷ୍ଟ ହୋଇଥିଲା । ପିସାର ଧର୍ମନିଷ୍ଠ ଅଧିବାସୀ ସ୍ୱତଃ ପ୍ରବୃତ୍ତ ହୋଇ ସରକାରଙ୍କୁ ଏକ ଲବଣକର ପ୍ରଦାନ କରିଥିଲେ । ସେହି ଅର୍ଥରେ ଫ୍ରେସ୍କୋ ପୁନରଙ୍କିତ ହୋଇଥିଲା ।

ଅଦୂରରେ ଏକ ସମାଧି କ୍ଷେତ୍ର, ଗୌରବଯୁଗର ନୌସୈନ୍ୟଙ୍କ ସମାଧିରେ ପରିବେଷ୍ଟିତ । ତାର ଗ୍ୟାଲେରୀରେ ସୁନ୍ଦର ସୁନ୍ଦର ଫ୍ରେସ୍କୋ—ମୃତ୍ୟୁର ବିଜୟ ଯାତ୍ରା—ଦାନ୍ତେଦ୍ରଷ୍ଟା ନାସ୍ତ ପ୍ରଷ୍ଠକରେ ଏହା ଅଙ୍କିତ । କେତେ ଯୁବକ ଯୁବତୀ ନିର୍ଜନ ଭାବେ ଡଙ୍ଗା ଚଳାଇଛନ୍ତି—କିନ୍ତୁ ମୃତ୍ୟୁ ବଧିର, ମୃତ୍ୟୁ ଅନ୍ଧ । ଅନ୍ୟ ଏକ ଚିତ୍ରରେ ନରକର ମୁଖ ଉନ୍ମୁକ୍ତ ହୋଇଛି—ଅବିଶ୍ୱାସୀମାନେ ସେହି ମୁଖରେ ପ୍ରବେଶ କରୁଛନ୍ତି—ଜଣେ ବିଶପ୍ ବୁଝାଉଛନ୍ତି—ପାର୍ଥିବ ଅହଙ୍କାର ବୃଥା !

ପିସା ବନ୍ଦର ବାଟେ ବସ୍ ଆମର ଚାଲିଲା । ମୁହଁ ଖରା ପଡ଼ୁଥାଏ, ସମୁଦ୍ର ଟିକିଏ ଦେଖା ଦେଇ ଲୁଚି ଯାଉଥାଏ । ତାପରେ ପୂର୍ବ ପୂର୍ବ ଭୂ-ମଧ୍ୟ ସାଗରକୁ ପାଇଲୁ ଆମେ । ବୃଷ୍ଟି ହେଉ ନଥାଏ—ରୂପା ପାତିଆ ପରି ଝକ୍ ଝକ୍ । ଅପ୍ରେଲ ପାଇନ୍ ବନ ବେଳା; ସମୁଦ୍ର ପବନ ସଙ୍ଗେ ତାର ଉଚ୍ଛ୍ୱସିତ ଖେଳା ଲୀଳା ଚାଲିଥାଏ ।

'କାରାର' ଗୋଟିଏ ଶ୍ରେଷ୍ଠ ବନ୍ଦର । ଏଠି ମାର୍ବଲ ପ୍ରସ୍ତର ଉତ୍ପାଦନ କରାଯାଏ; ସନ୍ଧ୍ୟାର ସ୍ୱର୍ଣ୍ଣ ତୋରଣ ଦର୍ଶନୀୟ । ଦୃଷ୍ଟିକୁ ରୋଧ କରିଛି ଭୂମଧ୍ୟ ସାଗରର ଏକ ପାହାଡ଼ । ଏ କି ନଗ୍ନ ? ମାନଚିତ୍ରରେ ନାମ ନାହିଁ; ବନ୍ୟା ଆସିଛି ସେଥିରେ, ମନକୁ ଚଞ୍ଚଳ, ସ୍ରୋତଶୀଳ କରେ । ଜଗତରେ ଏଇ ଭଳି ଅନାମିକାଙ୍କ ଦାନ ଅଳ୍ପ ନୁହେଁ, ବୁଝିଲେ ଜଗତକୁ ସମ୍ଭାଳି ରଖନ୍ତି ସେମାନେ, ଅତି କ୍ଷୁଦ୍ର ବୋଲି ଭୂଗୋଳ ଉଲ୍ଲେଖ ନ କରୁ, ଅତି ସାଧାରଣ ବୋଲି ଇତିହାସ କୀର୍ତ୍ତି ବର୍ଣ୍ଣନା ନ କରୁ ।

ସନ୍ଧ୍ୟା ନିଭିଗଲା । ଭୂମଧ୍ୟ ସାଗର ପ୍ରାନ୍ତ ତୀର ଏକାନ୍ତ ମୋହ ସୃଷ୍ଟି କରୁଥିଲା ଅଳ୍ପ କେତୋଟି ଶବ୍ଦରେ—ଗୀତ ଗାଉଥିବାର ପଂକ୍ତିଟିଏ ପରି, ନିର୍ଦ୍ଦିଷ୍ଟ ଅର୍ଥ ନାହିଁ, କିନ୍ତୁ ତାହା ଗାନକର ମନ ମୋର ଆନନ୍ଦରେ ଉଚ୍ଛୁଳ ଉଠେ ସେପରି ।

## ଲା ସ୍ପେଜିଆ

ଏହା ଏକ ବନ୍ଦର, ଲୋକସଂଖ୍ୟା ଲକ୍ଷାଧିକ । ଡାହାଣ ପାଖେ ପାହାଡ଼, ପାହାଡ଼ ଉପରେ ଅଙ୍ଗୁର କ୍ଷେତ, ସମୁଦ୍ର ସହର ମଧ୍ୟକୁ ପଶି ଆସିଛି, ବିଭିନ୍ନ ପ୍ରଣାଳୀରେ । ଘାଟରେ ଘାଟରେ ତାର ମୋଟା ମୋଟା ଖଜୁରି ଗଛ; ସୁବର୍ଣ୍ଣ ଫଳଭରା । ସୂର୍ଯ୍ୟୋଦୟର ପ୍ରାୟ ଏକ ଘଣ୍ଟା ପରେ 'କଫି' ରେସ୍ତୋରାଁରେ କଫି ପାନ କରି ଆମେ 'ବ୍ରାକୋ' ପର୍ବତ ଘାଟି ଉପରକୁ ଉଠିଲୁ । ଅଦ୍ୟାପି ସମୁଦ୍ର ତରଙ୍ଗରୁ ଉଷାର ରଙ୍ଗ ଆଦୌ ଲିଭି ନ ଥାଏ ।

ପାହାଡ଼ମାନଙ୍କରେ ପ୍ରଚୁର ଉର୍ବର ମାଟି, ଲୋକେ ଗୃହବାସ କରି ରହିଛନ୍ତି । କଣ୍ଟାରୁ ଫୁଲ ଫୁଟିଛି, ପାଚିଲା କଖାରୁ ସବୁ ଗଡ଼ୁଛି । ଇତସ୍ତତଃ ଖଣ୍ଡଖଣ୍ଡ କୁହୁଡ଼ି, କ୍ଲାନ୍ତ କିରଣରେ ରଙ୍ଗୀନ । ଫୁଟିଛି ବନ୍ୟ ସୂର୍ଯ୍ୟମୁଖୀ, ଝରଣାଟିଏ ଝରି ଯାଉଛି ଉଦ୍ଦାମ ଗତିରେ ।

ଏଠି ଜଣେ ଝିଅ ବାନ୍ତି କଲା । ଅନ୍ୟମାନେ ସାହାଯ୍ୟ କରିବାକୁ ପ୍ରସ୍ତୁତ । ଡ୍ରାଇଭର ବାନ୍ତି ପୋଛି ନେଇଗଲା !

ଝରଣାର ଆକାର ବଡ଼ ହୁଏ । କୁହୁଡ଼ ପାହାଡ଼ ଆରପାଖକୁ ଢେଉଁଛି । ସ୍ୱର୍ଣ୍ଣ ପାହାଡ଼ ଶୃଙ୍ଗରୁ ଜଙ୍କି ମାରି ଦେଖୁଛନ୍ତି—ସୂର୍ଯ୍ୟଆଡେ ପଡ଼ନ୍ତି କି ନାହିଁ ତାଙ୍କ ରଶ୍ମି । ଏଇ ନଦୀଟିର ନାମ 'ଟାଗେ'—ଅଷ୍ଟ ବାଙ୍କରେ ପାହାଡ଼ ମଧ୍ୟରେ ତାର ଗତି; ଏ ପାହାଡ଼ ସେ ପାହାଡ଼ ମଝିରେ ରଶ୍ମିର ମେଘ ଅଳସ ଗତିରେ ଉଠୁଛି; ଏ ପର୍ବତରେ ଖରା, ସେ ପର୍ବତରେ ଛାଇ, ମଧ୍ୟ ପାହାଡ଼ରେ ଝରଣା ଝରୁଛି, ଅନ୍ୟ ଏକ ପାହାଡ଼ରେ କୁହୁଡ଼ ଭୂଆଁ ବୁଲୁଛି, 'ସ୍ତ୍ରାକ୍କେ' ଯାଉଁଥ ଉଚ୍ଚତମ ଶିଖରରୁ ।

ଦକ୍ଷିଣର 'ନିକୋନୋଆ' ଉପସାଗରର ଗାଢ଼ ନୀଳ ଜଳ । ବନ୍ଧୁର ବେଳାଭୂମି; ସମୁଦ୍ରରେ ବିଚରଣ କରୁଛନ୍ତି ଖଣ୍ଡେ ଖଣ୍ଡେ କୁହୁଡ଼; ପାହାଡ଼ ଉପରେ ସ୍ଥାନେ ସ୍ଥାନେ ମେଘର ଜନପଦ, ଲୁଚି ଲୁଚି ପର୍ବତର ସ୍ତରେ ସ୍ତରେ ପୁଣି ଦିଶୁଛି ସାଗର, ସୁବର୍ଣ୍ଣ ରଶ୍ମିରେ ପ୍ରୀତିକର ।

ବନ ଲତା ନାନା ବର୍ଣ୍ଣର ଫୁଲରେ ଭରା, କାଞ୍ଚି ଶୃଙ୍ଗ ନଗର ମଣ୍ଡିତ, ମେଘ ବା କୁହୁଡ଼, ରଶ୍ମି, ଛାୟା, ଘନବନାଚ୍ଛନ୍ନ, ପର୍ବତାହ୍ୱାନର ଛବିଳ ଶ୍ରୀ ଶୃଙ୍ଗେ ଶୃଙ୍ଗେ ମୃଦୁ ତୈଳ୍ୟ ମୃଦୁ ଭୈ ତରଙ୍ଗିତ ।

'ସ୍ତ୍ରାକ୍କୋ' ଯାଉଁରୁ ଓହ୍ଲାଇ 'ସିଅଷ୍ଟ୍ରଲଭ୍' ସହରରେ, ତାପରେ ବଙ୍କା ଡ଼ଙ୍କା ପାହାଡ଼ିଆ କୂଳେ କୂଳେ, କେତେବେଳେ ଟନେଲ୍ ଭିତରେ ଯାଇ 'ଟାଗେ' ନଦୀ ଯେଉଁଠି ସମୁଦ୍ରରେ ମିଶିଛି, ସେଠି ପହଞ୍ଚିଲୁ । ଫେନିଳ ଅଦ୍ଭୁତ ପ୍ରୀତିର ଲୀଳା ଦେଖୁ ଦେଖୁ ସେ ଅଞ୍ଚି ଆଗରୁ ଲୁଚିଗଲା । ଆମେ ସ୍ତାଭାଙ୍ଗେ ନଗରରେ ପହଞ୍ଚିଲୁ ।

ଫୁଟପାଥରେ କମଳା ଲେମ୍ବୁ ଗଛ, ଫଳଭରା, କେଉଁଠି ବା ଢ଼ ପଟେ ଧାଡ଼ି ଧାଡ଼ି ଝଜୁରିଗଛ, ସମୁଦ୍ର ଜଳ ଛଳଛଳ କରେ ରାସ୍ତାପାଖରେ । ପର୍ବତ ଅର୍ଦ୍ଧବୃତ୍ତାକାର ହୋଇ ଘେରିଛି । ସମୁଦ୍ର ଦିଶୁଛି ଗୋଟିଏ ସ୍ଥିର ହ୍ରଦ ପରି । କୂଳରେ ବଡ଼ ବଡ଼ ପଥର ସଙ୍ଗେ ଛୋଟ ଛୋଟ ଢେଉ ଆଳାପ ଜମେଇଛି । ମେଘ ଫିଟାଇ ଏକ ଗୁଚ୍ଛ ରଶ୍ମି ଆସି ପଡ଼ୁଛି ସମୁଦ୍ରରେ,

ଅଷ୍ଟି ଭୁକ୍ତ ହୋଇଯାଉଛି ଅପେ ଅପେ । ସମୁଦ୍ର ସ୍ନାନ ଓ ସ୍ୱାସ୍ଥ୍ୟ ପରି-ବର୍ତ୍ତନ ଲାଗି ଠେକ ବହୁ ଲୋକ ଆସିଥାନ୍ତି । ଇଟାଲୀୟ ରିଭିଆରା କହନ୍ତି ସମୁଦ୍ର ତୀରବର୍ତ୍ତୀ ଏଇସବୁ ସହରକୁ ।

ସ୍ତ୍ରୀ ପୁରୁଷ ଜାମା ପିନ୍ଧିଲେଇ କରୁଛି । ଷ୍ଟ୍ରିଟରେ କଏ ଆଙ୍କୁଛ ଛବି । ରୁଗ୍‌ଣ, ବୃଦ୍ଧ, ଦୋଧେ ପର୍ଯ୍ୟଟକ, କୁକୁରଟିଏ, ଏଠି ସେଠି ମୁହଁ ମାରି ବୁଲୁଛି, ଅମେ ପୂର୍ଣ୍ଣ ଏକ ଦୀର୍ଘ ଟନେଲ ଭିତରେ ପଶିଲୁ— ବାହାରୁ ବାହାରୁ ସମୁଦ୍ର ଆମକୁ ଅଭିନନ୍ଦନ ଜଣାଇଲା, ପାହାଡ କାନ୍ଥରେ ଲତା, ଉପର ପାହାଡର ସୌଧ ଉଦ୍ୟାନରେ ଫୁଲ ।

'ନର୍ଭି' ନାମକ ସହର ସମୁଦ୍ର ଆଡ଼େ ତୀରରେ ଲମ୍ବିହୋଇ ଚାଲିଛି । ପ୍ରସାରିତ ଦେବାକୁ ଜାଗାନାହିଁ । ପୃଷ୍ଠ ପଟେ ପାହାଡ଼ ଶ୍ରେଣୀ— ଦେଉଳଆ ପାଇନ୍, ଫାସ୍ସାର ପ୍ଲାଣ୍ଟ ସ୍ଥାନେ ସ୍ଥାନେ ।

## ଜେନୋଆ

ଏହା ଏକ ପ୍ରାଚୀନ ରାଜ୍ୟ, ଷୋଡ଼ଶ ଶତାବ୍ଦୀବେଳକୁ ସାଧାରଣ-ତନ୍ତ୍ରରେ ପରିଣତ ହୋଇଥିଲା । ସିରିଆରୁ ଉତ୍ତର ଆଫ୍ରିକା ପର୍ଯ୍ୟନ୍ତ ଏହାର ସାମ୍ରାଜ୍ୟ ବିସ୍ତୃତ ଥିଲା । 'ଭେନିସ' ଦ୍ୱାରା ପରାଭୂତ ହୋଇ ଏହାର ପତନ ଘଟିଲା ।

ଆପେନାଇନ୍‌ସ ପାହାଡ଼ମାଳାର ପାଦ ଦେଶରେ ଜେନୋଆ ନଗର ଅବସ୍ଥିତ । ଅନ୍ୟ ଭାଗରେ ଭୂମଧ୍ୟ ସାଗର, କୂଳେ କୂଳେ ଲମ୍ବିଛି ସହର, ଏହାର ଲୋକ ସଂଖ୍ୟା ସାତ ଲକ୍ଷରୁ ଅଧିକ ।

ଖ୍ରୀଷ୍ଟଫର କଲମ୍ବସ୍‌ଙ୍କ ଯୋଗୁଁ ଏହା ଜଗତ୍ ପ୍ରସିଦ୍ଧ । ସେ ଏଠି ଜନ୍ମ ହୋଇଥିଲେ, ୧୪୯୨ ଖ୍ରୀଷ୍ଟାବ୍ଦରେ ଆମେରିକା ଆବିଷ୍କାର କରି-ଥିଲେ । 'ଜେନୋଆ'ବାସୀ ତାଙ୍କ ସାହସିକ ପ୍ରତିଭାକୁ ପୂଜା କରି ଆସୁଛନ୍ତି, ଜେନୋଆରେ ତାଙ୍କ ମାର୍ବଲ ସ୍ତମ୍ଭମନ୍ଦିର ନିର୍ମିତ ହୋଇଛି ।

ମାବଲ ସ୍ତମ୍ଭର ଊର୍ଦ୍ଧ୍ୱ ଭାଗରେ ଦଣ୍ଡାୟମାନ କଲମ୍ବସଙ୍କ ମୂର୍ତ୍ତି, ସାମ୍ନାରେ ତାଙ୍କ ଆମେରିକା (ନାରୀ ରୂପରେ) ଆଣ୍ଠୁ ମାଡ଼ି ବସିଛି । ତାଙ୍କ ଚାରିପାଖ ନିମ୍ନ ସ୍ତମ୍ଭ ଉପରେ ଚାରିଗୋଟି ନାରୀମୂର୍ତ୍ତି, ପ୍ରତୀକାତ୍ମକ —ଧର୍ମ, ବିଜ୍ଞତା, ଧୈର୍ଯ୍ୟ, ଭୂଗୋଳ । ତଳେ ଲେଖା ହୋଇଛି— କ୍ରିଷ୍ଟୋଫୋରୋ କଲମ୍ବୋ ।

ଜେନୋଆକୁ 'ଟାଇର ହେନ୍ନାଆନ'—ସମୁଦ୍ରର ରାଣୀ ବୋଲି କୁହାଯାଏ । ବୃହତ୍ ବୃହତ୍ ପ୍ରାସାଦ ପର୍ବତ ଉପରେ, ପର୍ବତ ଉପରୁ ସମୁଦ୍ର କୂଳକୁ ଗଡ଼ି ଆସିଛି ସହର । ସହର ମଝିରେ କଲମ୍ବସଙ୍କ ଘର— ଶ୍ଳେଟ କୋଠା ଘରଟିଏ, ଶିଉଳି ଲାଗିଛି କେତେ ଯୁଗର, କେତେ କାଳର କଳଙ୍କି ଜମିଛି, ପଲସ୍ତରା ଭିତରୁ ଇଟା ଫୁଟି ଦିଶୁଛି । ଘରର ଅଗଣିତ କ୍ଷତକୁ ଘୋଡ଼ାଇ ପକାଇଛି ଘନ ଲତା, ମାଡ଼ି ବସିଛି ପାଞ୍ଚଶତ ବର୍ଷ ତଳର ଅତୀତ ।

କଲମ୍ବସ୍ ଆମେରିକା ଆବିଷ୍କାର କରିଥିଲେ, ତାଙ୍କ ଅଣନାତି ପଣନାତିଙ୍କ ପଣନାତି ପରି ହେବେ—ଆମେରିକାବାସୀ ଆସିଛନ୍ତି ତାଙ୍କର ଏଇ ଗୃହଟି ଆବିଷ୍କାର କରିବାଲାଗି ! ଏଇ ଏକ ପୁଣ୍ୟକ୍ଷେତ୍ର, ପିତାମହଙ୍କ ପିତାମହ ବୃଦ୍ଧ ପ୍ରପିତାମହଙ୍କର, ଯେ ଆବିଷ୍କାର ଲାଗି ଜୀବନକୁ ପାଣି ଛଡ଼ାଇ ଦେଇଥିଲେ, ଯେ ଭାରତ ଆବିଷ୍କାର କରିବାକୁ ଯାଇ ଏକ ନୂତନ ଜଗତ ଆବିଷ୍କାର କରିଥିଲେ, ସମସ୍ତେ ଆମେରିକାବାସୀ, ମୁଁ ଏକମାତ୍ର ଭାରତୀୟ । ଢାଳି ଦେଉଛି ତାଙ୍କ ପାଦରେ ସମସ୍ତ ଶୁଭେଚ୍ଛାର ଅର୍ଘ୍ୟ ।

କଲମ୍ବସ୍ ସମୁଦ୍ର ଯାତ୍ରା କରିଥିଲେ ତିନୋଟି ଜାହାଜର ଭେଳାରେ —ନିନା, ପିଣ୍ଟା; ସାଣ୍ଟାମେରିଆ । ସେଇସବୁ ଜାହାଜ ଓ ସେକାଳରେ ବ୍ୟବହୃତ ନଙ୍ଗର ଅଙ୍କିତ ହୋଇଛି ଗୋଟିଏ ପାହାଡ଼ରେ, ବିବିଧ ବର୍ଣ୍ଣର ତୃଣରେ; ପୃଷ୍ଠ ପଟରେ ନାନା ଗୁଳ୍ମ ଲତାର ଏକ ବୃତ୍ତି । ନଗର-ବାସୀଙ୍କର ଏ ପ୍ରାକୃତିକ, ଚମତ୍କାର ରୁଚିକୁ ପ୍ରଶଂସା ନ କରି ରହିପାରିଲି ନାହିଁ । ନିନା, ପିଣ୍ଟା, ସାଣ୍ଟାମେରିଆ—ପାଲବନ୍ଧା ବୋଇତଙ୍କ ଭିତରେ

ଏମାନେ ଅମତ ହୋଇ ରହିଗଲେ । ମନରେ ମୋର ଅଙ୍କିତ ହୋଇ ରହିଗଲା ଏ ଦୃଶ୍ୟ ମାନଚିତ୍ର ।

କଲମ୍ବସଙ୍କ ସମୟରେ ଜେନୋଆ ଗୋଟିଏ ଶ୍ରେଷ୍ଠ ସହର ଥିଲା । ଏବେ ତାର ବାଣିଜ୍ୟ ସୌଧ, ବ୍ୟବସାୟ ପ୍ରତିଷ୍ଠାନ, ବ୍ୟାଙ୍କ, ଭଣ୍ଡାର-ଗୃହ ଲମ୍ବିଛି କେଉଁଠୁ କେଉଁଯାଏ, ବନ୍ଦର କଙ୍କାଳଗ୍ରସ୍ତ, ଜାହାଜ ଓ ନୌକା ଭିଡ଼ ଯୋଗୁଁ ଜଳ ଦିଶୁନାହିଁ ।

ପୁରୁଣା ଜେନୋଆର ଗଳି ଅତି ଅପ୍ରଶସ୍ତ, ବଜାର ଫଙ୍କାଶୂନ୍ୟ, ପ୍ରାସାଦସବୁ ପ୍ରସ୍ତର ନିର୍ମିତ, ଦୁର୍ଗ ପରି ଦିଶେ ।

କାହିଁରେ ଫିଲିଟିକ ଶୁଆର ନେଉଛି ଗୋଟିଏ ନାରୀ; ଆଉ ଜଣେ ପୁରୁଣା, ଭଙ୍ଗା ଏକ କାନ୍ଥକୁ ଅଉଜି ବସିଛି କାହିଁକି, ମାଟିଲି ଏକ ମୂର୍ତ୍ତି ଭଳି, କି ଚିନ୍ତା ତାର ମନରେ ?

ତା'ପରେ ପାହାଡ଼; ଟନେଲ୍; ଟନେଲ ପାହାଡ଼; ସମୁଦ୍ର କୂଳେ କୂଳେ ଯାଇ ଆମେ ସାଭୋନା ସହରରେ ପହଞ୍ଚିଲୁ, ପ୍ରାୟ ଗୋଟାଏ ବେଳେ । ମାଟିର ପାହାଡ଼ଟିଏ ଧସି ପଡ଼ିଛି । ରେସ୍ତୋରାଁକୁ ଯିବା ବାଟ ବନ୍ଦ । ବସ୍ ଯାଇପାରିବ ନାହିଁ, ଏଠୁ ମାତ୍ର ଶ୍ୱରମାଇଲ ଦୂର । କିନ୍ତୁ ଚଢ଼ିଯାଇବାରେ ଆମେ ଲୋକ ଏତିକ ପଦବ୍ରଜରେ ଯାଇପାରିବେ ନାହିଁ । ଉପବାସ ଅନଭ୍ୟସ୍ତ ଏମାନେ ଭୋକରେ ଆଉଟ୍ ପାଉଟ୍ ହେଲେ, କେହି କେହି ଅନ୍ୟ ଏକ ରେସ୍ତୋରାଁରେ ପଶି ଜଳଖିଆ ଖାଇଲେ ।

ଇଟାଲି ଓ ଫ୍ରାନ୍ସର ସୀମାରେ ଆମେ ଆସି ପହଞ୍ଚିଲୁ । ସମସ୍ତ ଇଟାଲୀୟ ମୁଦ୍ରା ଅମକୁ ଛେଁ କରିବାକୁ ହେବ, ଜଳଖିଆ ଖାଇବାପରେ ମୋ ପାଖେ ଆହୁରି ଦେଢ଼ ହଜାର ଲିର ଅବଶିଷ୍ଟ ରହିଲା ।

ସାତଟା ପୂର୍ବରୁ 'ମନାକୋ'ରେ ପହଞ୍ଚିବାକୁ ହେବ । ତାପରେ ସୀମାନ୍ତ ବନ୍ଦ ହୋଇଯାଏ । ଯଥାସମୟରେ ପହଞ୍ଚିନ ପାରିଲେ ବସରେ

ସାଗରଗଡ଼ କଟେଇବାକୁ ହେବ । ତେଣୁ ଟ୍ରେନରେ ପିବା କଥା ସ୍ଥିର ହେଲା । ଟ୍ରେନ୍ ଯାତ୍ରା ବଡ଼ ସୁଏନାହିଁ ।

ଗୋଟିଏ ପାର୍କ ପାଖେ ଗାଡ଼ି ଛୁଟା ହେଲା । ଜାଣୋବ ଅନ୍ୟ ଏକ ରେସ୍ତୋରାଁରେ ଲଞ୍ଚ ଠିକ୍ କଲେ । ଖିଆ ପିଆ ପରେ ସହଯାତ୍ରୀମାନେ ଲିରା ଶେଷ କରିବା କାମନାରେ କିଏ 'ଚୁୟଙ୍ଗମ', କିଏ କଣ୍ଢେଇ, କିଏ ପିକ୍‌ଚର କାର୍ଡ଼ କିଣିବାକୁ ଲାଗିଲେ । ତା'ପରେ ଆମେ ଗଲୁ ଷ୍ଟେସନ । ଡ୍ରାଇଭର ଖାଲି ବସଟି ନେଇ ଫେରିଗଲା ମନାକୋ ।

ଷ୍ଟେସନରେ ବାରମ୍ବାର ଘୋଷଣା ହେଉଥାଏ—ବିନା ଟିକେଟରେ କେହି ଯାଅ ନାହିଁ । ସେଥିରୁ ବୁଝିଲି—ଆମ ଦେଶ ପରି ଏ ଦେଶରେ ଟିକେଟ ନକରି କେତେକ ରେଲଗାଡ଼ିରେ ଯାନ୍ତି । ଅପେକ୍ଷାଗୃହରେ ଛୋଟି ଲେଖାଁଏ ବାରି ଲାଇଟ ଏକାଠି ଗୁନ୍ଥା ହୋଇଛି, ବୁଢ଼ୀଟିଏ ବାଡ଼ି ଧରି ଯାଉଛି—'କରିଧୃତଚର୍ମିତ ଶୋଭିତ ଦଣ୍ଡମ' । ମେହେନ୍ତର ବାଉଁରେ ଗ୍ଲୁଣ୍ଠୁଣି ବାନ୍ଧି ପ୍ଲାଟଫର୍ମ ଓଳାଉଛି । ଅଳିଆ ତ ନାହିଁ, ଟିକିଏ ଟିକିଏ ଧୂଳି ।

ଗାଡ଼ି ଭିଡ଼; ପ୍ରଥମ ଶ୍ରେଣୀର ଟିକେଟ କରି ଆମେ ଦ୍ୱିତୀୟ ଶ୍ରେଣୀରେ ବସିଲୁ । ମୋ କୋଠରୀର ବନ୍ଧୁମାନଙ୍କର ବ୍ୟବହାର ଭଲ । ଠାରଠାରେ କଥାଭାଷା—ମୁଁ ପଚାରୁଥାଏ; ସେମାନେ ଉତ୍ତର ଦେଉଥାନ୍ତି । ସେଥି ମଧ୍ୟରେ ଜଣେ ଡାକ୍ତରୀ ଛାତ୍ରଙ୍କ ସଙ୍ଗେ ବନ୍ଧୁତା ଜମିଲା— ଆଲ୍‌ଡୋ । ସେ ଇଟାଲୀୟ ମାଧ୍ୟମରେ ଡାକ୍ତରୀ ପଢ଼େ । କିନ୍ତୁ କିଛି କିଛି ଇଂରେଜୀ ଜାଣେ । ଏ ଡବାରେ ମୋଟ ଆଠ ଜଣଙ୍କ ମଧ୍ୟରୁ ଦି ଜଣ ବେଲ୍‌ଜିୟମର; ଜଣେ ଉରୁଗ୍ୱେ, ଜଣେ ଅର୍ଜେନଟାଇନାର, ଜଣେ ଫରାସୀ ଆଉ ମୁଁ ଭାରତୀୟ, ବାକି ଦୁଇଜଣ ଇଟାଲୀୟ । ଆଲ୍‌ଡୋ ବ୍ୟତୀତ ମୋ କଥା କେହି ବୁଝୁ ନ ଥାନ୍ତି ।

ବେଲ୍‌ଜିଅନ ଦମ୍ପତି ଖାଇବା ଲାଗି ବାଟକୁ କିଛି କିଛି ପିଅରୁ ଆଣିଥିଲେ । ପରିଚୟ । ସ୍ୱାମୀ ଛୁରୀରେ ପରି ଅଂଶତକ କାଟି ଫିଙ୍ଗିଦେଇ ସ୍ତ୍ରୀକୁ ଖାଇବାକୁ ଦେଉଥାଏ । ନିଜେ ଟିକିଏ ଟିକିଏ

ପାଟିକି ପକାଉଥାନ୍ତି । ସ୍ତ୍ରୀଟି ଅବଶ୍ୟ ସ୍ୱାମୀର ଦ୍ୱିଗୁଣ । ଦେହକୁ ବୃଦ୍ଧି ଖାଦ୍ୟ ।

ଗାଡ଼ି ପ୍ରଥମେ 'ଆଲବେଙ୍ଗା', ତାପରେ 'ଆଲସି ୨' ଷ୍ଟେସନରେ ପହଞ୍ଚିଲା । ଫେରିବାଲା ସ୍ୟାଣ୍ଡୱିଚ୍, କୋକାକୋଲା, କଫି ବିକୁଥାନ୍ତି ।

ସମୁଦ୍ର ତୀରରେ କଚ୍ଛ ବାଲି । ପିଲାଦୁଇଟି କଣ ଗୋଟାଉଛନ୍ତି ? ସିପ କମ୍ବା ଶାମୁକା ବୋଧହୁଏ । ଲୁଗା ଶୁଖେଇବା କଳ ଅନେକଙ୍କର ନାହିଁ ବୋଧେ । ପଦାରେ ଲୁଗାସବୁ ଟଣା ହୋଇଛି । ଏଠି ତ ଇଂଲଣ୍ଡ ପରି ଖରାର ଅଭାବ ନାହିଁ ।

ଗୋଟାଏ ପାହାଡ଼ ସମୁଦ୍ରକୁ ଝୁଙ୍କି ପଡ଼ିଛି । ସମୁଦ୍ର ତାକୁ କଙ୍କାଳସାର କରି ରଖିଛି । ବଜୁଲ ଝୁଲି ଝୁଲି ମାରୁଛି । ନୀଳ ସମୁଦ୍ରରେ ଲମ୍ବି ଯାଉଛି ବଜ୍ରଳ ଲହରୀର ଅନେକ ଭଙ୍ଗ; କେଉଁଠିରେ ଧୂଳା କଣା ହେଉଛି, ଯେମିତି କେଉଁଠି, ସେହିପରି ଡେଉ ଧୂବର୍ଣ୍ଣ କାଠ ।

ସାଢ଼େ ଚାରିଘଣ୍ଟା ଗାଡ଼ିରେ ବସିବାକୁ ହେଲା । ଅନ୍ଧକାର; ଆକାଶ ସହିତ ସମୁଦ୍ର ମିଶି ହୋଇଥିଲା ଏକାକାର । ମଧ୍ୟେ ମଧ୍ୟେ ଦିଶୁଥିଲା କଚ୍ଛ କଚ୍ଛ ଧାବମାନ ଆଲୁଅ, କମ୍ବା ଗାଡ଼ିର କାଚ ଉପରେ ପ୍ରତିଫଳିତ ନିଜର ପ୍ରତିବିମ୍ବ । ବଡ଼ ବିରକ୍ତ ଲାଗୁଥାଏ ! ସଙ୍ଗିନୀ ହାତକୁ ବଢ଼ାଇ ଦେଲେ ଗୋଟିଏ ପତ୍ରିକା, ଅର୍ଦ୍ଧଉଲଗ୍ନ ଛବିରେ ଭରା । ଟିକଏ ଗଡ଼ାଇ ଦେଇ ପତ୍ରିକାଟି ତାଙ୍କୁ ଫେରାଇ ଦେଲି — ଧନ୍ୟବାଦ ।

ଏଇ ସମୟରେ ଆମ କୋଠରୀରେ ପ୍ରବେଶ କଲା ଗୋଟିଏ କିଶୋରୀ, ତା ମାଆ ସହିତ । ତାର ନାମ 'ମେଲୋଡ଼ୀ' । ରୂପ ଯେପରି ସୁନ୍ଦର; କଣ୍ଠ ସେହିପରି ମଧୁର । ମେଲୋଡ଼ୀ ନାମକୁ ସାର୍ଥକ କରୁଛି

ସେ, ତାର ବାକ୍ ଛନ୍ଦର କବିତାଟେ; ବଡ ମଣିଷଙ୍କ କଥା ପରି ଆଶ୍ଚର୍ଯ୍ୟ ଅନୁଭୂତିମୟ; ଅଳ୍ପ ବୟସ୍କାର ଅପୂର୍ଣ୍ଣତାର ମାଧୁର୍ଯ୍ୟ ସ୍ତରେ ସ୍ତରେ ।

କିଛି ପ୍ରଶ୍ନ ପଚାରିଲେ ସେ ଅରମ୍ଭ କରୁଛି—well······ । ତୁମ ସ୍କୁଲରେ କେତେଜଣ ଶିକ୍ଷକ ଅଛନ୍ତି ପଚାରିଲେ ସେ ଅଙ୍ଗୁଠିରେ ଗଣୁଛି ।

ଘର ତାର ଫ୍ଲୋରେନ୍ସରେ, ବାପା ଗୋଟିଏ ଜାହାଜର କପ୍ତାନ; ମାଆ ସଙ୍ଗେ ଇଂଲଣ୍ଡରେ ସେ ଅଛି । ଇଟାଲୀୟ ଓ ଫରାସୀ ଭାଷା ପଢ଼ୁଛି, ବାର ତେର ବର୍ଷ ବୟସର କଣେ଼ାଗ୍ରାଟିଏ; ଭଲ ଗାଇ ଜାଣେ । ଇଂରେଜୀ କବିତାର ଆବୃତ୍ତି ସୁନ୍ଦର । ନିଜେ ଜଣେ କବି । ଯାହା ଲେଖିଛି ତାକୁ ମୁଖସ୍ଥ କରିଛି; କହିବା ମାତ୍ରେ ମୋ ଖାତାରେ ଲେଖିଦେଲା ।

କବିତାଟିର ସାର ମର୍ମ ହେଉଛି—

ଘୋର ବର୍ଷା, ସେଥିରେ ଭୂତ ମଧ୍ୟ ପଦାକୁ
ବାହାରିବ ନାହିଁ । ଘୋର ଘଡ଼ଘଡ଼ ଚଡ଼ଚଡ଼;
ପେଚ୍ଛାପରି ବତାସ ।
ତାକୁ କିନ୍ତୁ ବାହାରିବାକୁ ହେଲା । ସେ
କୁଆଡ଼େ ଗଲା ତୁମେ ଜାଣ ନାହିଁ କି ମୁଁ
ଜାଣେ ନାହିଁ; ପ୍ରବଳ ବଜ୍ରପାତ ମଧ୍ୟରେ ।

ଆବୃତ୍ତିର ଭଙ୍ଗୀ ତାର ନାଟକୀୟ, ମେଲୋଡ଼ି କରି ମନ୍ଦ୍ର ଭଣ ବଢାଯାଇ ନେଲା । କିନ୍ତୁ ମନରେ ଲକ୍ଷିଲେ ତା ମନର କିଛି ମେଲୋଡ଼ି, ଯାହା ଏବେ ବି ଝଙ୍କୃତ ।

ଇଟାଲୀ ଓ ଫ୍ରାନ୍ସର ସୀମା ଷ୍ଟେସନରେ ପାସପୋର୍ଟ ଚେକ୍ ହେଲା । ଫ୍ରାନ୍ସର 'ନାଇସ୍' ନଗରରେ ଆମେ ରହିଲୁ ହୋଟେଲ୍ 'ନେପୋଲିଅନ୍'ରେ । ଶୋଇଲା ବେଳକୁ ରାତି ଏଗାରଟା । ସକାଳୁ ଉଠିଲା ବେଳକୁ ଟପ୍ ଟପ୍ ବର୍ଷା ।

## ନାଇସ୍ (ଫ୍ରାନସ, ୧୯ । ୧୦ । ୬୭ )

ବର୍ଷସାରା ନାଗରିକମାନଙ୍କ ମନ ମଜେଇ ରଖିବା ଲାଗି ନାନା ଚେଷ୍ଟା ହୋଇଥାଏ । ନାଇସ୍‌ର ୧୯୬୬-୬୭ ବାର୍ଷିକ ବିନୋଦନ ସୂଚୀ ଦେଖିବାର ସୁଯୋଗ ମୋତେ ମିଳିଥିଲା—ମହାକବି ଗେଟେଙ୍କ ଫାଉଷ୍ଟ ଅଭିନୟ, ଜିସ୍‌ମାସରେ ସମୁଦ୍ର ସ୍ନାନ, ପକ୍ଷୀ ପ୍ରଦର୍ଶନୀ, ଆଲୋକ ସଜ୍ଜା ପ୍ରତିଯୋଗିତା, ଆନ୍ତର୍ଜାତିକ ସାଇକଲ୍ ପ୍ରଦର୍ଶନୀ, ପୁଷ୍ପ ପ୍ରଦର୍ଶନୀ, ବାଣ ପ୍ରତିଯୋଗିତା, ଫାନ୍‌ସି ଡ୍ରେସ୍, ଆନ୍ତର୍ଜାତିକ ମେଳା, ଆନ୍ତର୍ଜାତିକ ଟେନିସ୍ ଟୁର୍ଣ୍ଣାମେଣ୍ଟ, ସଙ୍ଗୀତ ପ୍ରତିଯୋଗିତା, ମିସ୍ ଇଉରୋପ ନିର୍ବାଚନ, ଅଶ୍ୱଧାବନ ପ୍ରତିଯୋଗିତା । ଏ ମଧ୍ୟରୁ ଗୋଟିଏ କିଛି ଦେଖିବାର ସୁଯୋଗ ଆମକୁ ମିଳିଲା ନାହିଁ । ଗୋଟିଏ ମାତ୍ର ଦିନ, କିନ୍ତୁ ପ୍ରକୃତି ବୁଝିବାକୁ ନାଗରି । ସେ ତାର ସୂଚୀ ଅନୁସାରେ କାର୍ଯ୍ୟ କରି ଚାଲିଛି—ବର୍ଷା, ପବନ ! ଆମ ସୂଚୀ ସହିତ ତାର ଅମେଳ ହେବା ଆଶ୍ଚର୍ଯ୍ୟ ନୁହେଁ ।

ବର୍ଷାତିଟି ମୁଣ୍ଡରେ ପକାଇ ଚାଲିଲି ସମୁଦ୍ର ଆଡ଼େ; ସଙ୍ଗୀ ଓ ସଙ୍ଗିନୀଙ୍କ କୋଠରୀକି 'ବେଡ଼ ଟି' ଚାଲିଛି । ଜଣେ ଟିକାକୁ ଚାହିଁ କହୁଛି—Too damp—ଅର୍ଥାତ୍ ଘରେ ବସି ରହିବା ଭଲ ।

ପାର୍କରେ ଗେଣ୍ଡୁ ଫୁଲ ଫୁଟିଛି । ତାଳ ଜାତୀୟ କିଛି ଗଛ, ଖଜୁରୀ ଗଛ ଅଧିକ । ରାଜପଥ ପରେ ରାଜପଥ ଲଙ୍ଘନ କରି ସମୁଦ୍ର କୂଳରେ ପହଞ୍ଚିଲି । ଅର୍ଦ୍ଧ ବୃତ୍ତାକାର ପର୍ବତ ସମୁଦ୍ର ଭିତରକୁ ବହୁଦୂର ପଶି ଯାଇଛି । ପାହାଡ଼ ମୂଳରେ ତଳରେ ସବୁଜ ସହର; ସମୁଦ୍ର କୂଳେ କୂଳେ ରେସ୍ତୋରାଁ, ସମୁଦ୍ରର ଠିକରେ ଠିକରେ ଏକ ସୁପ୍ରସାରିତ ଫୁଟପାଥ୍ । ଏଠି ବସି ସମୁଦ୍ର ଶ୍ରୀ ଉପଭୋଗ କରିହେବ ।

ନାଇସ୍ ଏକ ଯାତ୍ରୀ ସହର—ସ୍ୱାସ୍ଥ୍ୟକର ରିଭିଆରା । ସ୍ୱାସ୍ଥ୍ୟ ପରିବର୍ତ୍ତନ ଲାଗି ସମଗ୍ର ପୃଥିବୀର ଲୋକ ଏଠିକି ଆସିଥାନ୍ତି । ସମୁଦ୍ର ଜଳ ଗାଢ଼ ନୀଳ, ବକ୍ଷ ସମତଳ, ଆକାଶ ଓ ସମୁଦ୍ର ମେଳର ଶେଷ ରେଖା ପର୍ଯ୍ୟନ୍ତ ଦେଖି ହୁଏ । କୂଳ ବାଲୁକାବିହୀନ, ଉପଳମୟ—ଗୋଟି ଗୋଟି

କର୍ଣ୍ଣୁଳ ଜଟେଳ ଗଦା ହୋଇଛନ୍ତି । ଜୀବନ ସଂଗ୍ରାମ କରି କରି ସେମାନେ ଏଇ ଅବସ୍ଥାରେ ଆସି ପଡ଼ିଛନ୍ତି । ତରଙ୍ଗର ଆକାର ଓ ବେଗ ବୃଦ୍ଧି ସଙ୍ଗେ କେତେ ନୂଆ ତଳକୁ ଖସି ଯାଉଛନ୍ତି, କେତେ ପୁରୁଣା ଉପରକୁ ଆସୁଛନ୍ତି । ଯେ ତଳକୁ ଖସିଛି, ତାର ସଂଗ୍ରାମର ସୀମା ନାହିଁ, ଯେ ଉପରକୁ ଉଠିଛି, ସେ ମଧ୍ୟ ନିଶ୍ଚିନ୍ତରେ ବିଶ୍ରାମ କରିପାରୁ ନାହିଁ ।

ଗୋଟା ଗୋଟା ପାହାଡ଼, ମୁଣ୍ଡା ମୁଣ୍ଡା ପଥର ବାଲି ହୋଇ ଯାଇଛନ୍ତି କାଳର କୁର୍ଦ୍ଦନରେ । କୂଳେ କୂଳେ ବୁଲିଲି ସେଇ ସବୁ ଉପଳକୁ ଖୋଜି ଖୋଜି—କେତେ ଲୋହିତ, କେତେ ଧବଳ, କେତେ ନୀଳ ଧବଳ, ରକ୍ତ ଶ୍ୟାମ, ପୀତ କୃଷ୍ଣ, କେତେ ବହୁ ବର୍ଣ୍ଣ ମିଶ୍ରିତ । ଚିକ୍କଣ ଚିକ୍କଣ ଶାଳଗ୍ରାମ, ଆମଆଡ଼େ ହୋଇଥିଲେ ଖଟୁଲିରେ ନେଇ ବସାଇ ଦିଅନ୍ତେ । ଆମ ଜୀବନ ତ ଏହିପରି, ଘୋରି ହୋଇ ଯାଉଛୁ କାଳର ତରଙ୍ଗରେ, ଜାଣିପାରୁନାହୁଁ ଆମେ । ଶେଷକୁ କୋଉ ମଶାଣିରେ ପଡ଼ି ରହିବ ଖଣ୍ଡ ଖଣ୍ଡ ଅସ୍ଥି, ଲୋକେ ତା ଉପରେ ବୁଲୁଥିବେ । ଉପଳ ସହିତ ମହା ସମୁଦ୍ରର ଏ ସଂଗ୍ରାମ ଅବଶ୍ୟ ହାସ୍ୟକର, କିନ୍ତୁ ସତ୍ୟ । ତାର ଏକ ସ୍ୱତନ୍ତ୍ର ଝଙ୍କାର ଅଛି, ଯାହା ପୁରୀ ବା କୋଣାର୍କରେ ଶୁଣାଯାଏ ନାହିଁ ।

ରୂପା ଜରି ନକଟିଏ ଚିରି ସୂର୍ଯ୍ୟ ମେଘର ଘୋଡ଼ା ଦୌଡ଼ ମଧ୍ୟରେ କେବେ କେବେ ଦିଶିଯାଏ । ହାତରେ ଗୋଟିଏ ପିଚ୍ ଫଳର ବୀଜ, କେତୋଟି ଉପଳ । ମୁଁ ଫେରିଲି । ଲଞ୍ଚ୍ ପରେ ବଜାରକୁ ବୁଲିଗଲୁ । ପ୍ରାୟ ସବୁ ଦୋକାନ ବନ୍ଦ । ନାନା ବସ୍ତ୍ର, ଅଳଙ୍କାର, ମହମ ମୂର୍ତ୍ତି ଓ କୁଣ୍ଢେଇ ପ୍ରଦର୍ଶନୀ, ବହୁବିଧ ମାଂସ ମଧ୍ୟରେ ଟର୍କି ପକ୍ଷୀ ଓ ଫେଜାଣ୍ଟର ମାଂସ, ଶାମୁକାର ଶୁଖା ଶସ, କଳା ଛନ ଛନ ବାଇଗଣ ବିକ୍ରୀ ହେଉଥିବାର ଦେଖିଲି । ଜଣେ ଫରାସୀ ମହିଳା ସଙ୍ଗେ ତା ବାନ୍ଧବୀର ଅନେକ ଦିନ ପରେ ସାକ୍ଷାତ ହେଲା ବୋଧହୁଏ । ଆଳାପ କରୁ କରୁ ଦୁହେଁ ଗାଲ ଘଷାଘଷି ହେଲେ—ବନ୍ଧୁତା ପ୍ରକାଶର ଏ ଗୋଟିଏ ରୀତି ବୋଧହୁଏ ।

ବର୍ଷା ପରେ ବେ ବଡ଼ ଅସ୍ୱସ୍ତିଦାୟକ । କିନ୍ତୁ ଏ ଗୋଟିଏ ମୁହୂର୍ତ୍ତକ ହସ ମାତ୍ର, ବେଦନକୁ ଗୁହାରି ଦେବା ଲାଗି । ବର୍ଷା ବନ୍ଦ ହେଲାବେଳେ ମୋ

ଅଭିଯୋଗ ଶୁଣି ହୋଟେଲ ମାଲିକ କହିଲେ—ଏ ବର୍ଷ ଗ୍ରୀଷ୍ମ ମାସରେ ବର୍ଷା ହୋଇ ନାହିଁ; ଫସଲର ବିଶେଷ କ୍ଷତି ହୋଇଛି । ଖାଇବାରେ ବି ମରୁଡ଼ି ।

କହିଲି – ଆମ ଭ୍ରମଣ ନ ହେଉ ପଛେ ବର୍ଷା ହେଉ । ଫସଲ ସହିତ ଅସଂପୃକ୍ତ ବ୍ୟକ୍ତି ବର୍ଷା ଉପରେ ବିରକ୍ତ । ମୁଁ ସଂପୃକ୍ତ, ଅବଶ୍ୟ ଅନ୍ୟାୟ । ଅନ୍ନମୟ ପିଣ୍ଡ, ପିଣ୍ଡମୟ ବ୍ରହ୍ମାଣ୍ଡ । ମୂଳ ଫସଲ ନ ହେଲେ ମନର ଫସଲ କିଏ ଉଠେଇ ପାଇବ ?

## ମନାକୋ

ନାଇସ୍ ବନ୍ଦରରେ ଗୋଟିଏ ଆମେରିକାନ୍ ଯୁଦ୍ଧ ଜାହାଜ, ଡାହାଣରେ ସମୁଦ୍ର ବେଳା, ବାଁ ପଟେ ଚେଷ୍ଟନଟ୍ ଓ ଓକ୍ ବୃକ୍ଷ । ଆମେ ବଙ୍କା ପାହାଡ଼ରେ ବୁଲି ବୁଲି ମନାକୋରେ ପହଞ୍ଚିଲୁ ।

ମନାକୋ ଗୋଟିଏ ସ୍ୱାଧୀନ ଦେଶ; ଏହାର ଲୋକସଂଖ୍ୟା ମାତ୍ର କୋଡ଼ିଏ ହଜାର । ପ୍ରାଚୀନ କାଳରୁ ରାଜତନ୍ତ୍ର ଚାଲି ଆସୁଛି । ହଗ୍ରୋ-ଲିଂଙ୍କ ରାଜା ତୃତୀୟ 'ରେନେର୍' ବର୍ତ୍ତମାନ ରାଜତ୍ୱ କରୁଛନ୍ତି । ଜଣେ ମନ୍ତ୍ରୀ, ତିନିଜଣ ନିର୍ବାଚିତ ଲୋକପ୍ରତିନିଧି ତାଙ୍କୁ ଶାସନ କାର୍ଯ୍ୟରେ ସାହାଯ୍ୟ କରିଥାନ୍ତି । ପୃଥିବୀର ଅଧିକାଂଶ ଦେଶ ସହିତ ତାଙ୍କର କୂଟନୈତିକ ସଂପର୍କ ରହିଅଛି । ଏଦେଶରେ ମୋଟରେ ତିନିଗୋଟି ସହର ରହିଅଛି । 'ମନାକୋ' ଏହାର ରାଜଧାନୀ, 'ମଣ୍ଟିକାର୍ଲୋ' ବନ୍ଦର ।

ମନାକୋ ନାଇସ୍‌ର ମୁହାଁମୁହିଁ ହୋଇ ରହିଛି । ଏହାର ଉପସାଗର ନାମ 'ବେ ଅଫ୍ ଆଞ୍ଜେଲ୍ସ' । ପାହାଡ଼ ଉପରେ ରାଜପ୍ରାସାଦ ନିର୍ମିତ, ରାଜ-ବାଟିର 'ମେଘନାଦ' ପ୍ରାଚୀର ଉପରେ, ସାମ୍ନାରେ ବହୁ କମାଣ ସମୁଦ୍ର ଓ ନାଇସଆଡ଼କୁ ମୁହାଁଇ ରହିଛି । ରାଜବାଟୀକୁ ତିନିଦିଗରୁ ସମୁଦ୍ର ଘେରିରହିଛି । ଦୁଇ ଦିଗକୁ ପାହାଡ଼ର ଦୁଇବାହୁ ବିସ୍ତୃତ । ପାହାଡ଼ର

ଧାରେ ଧାରେ ଘର, କଳକାରଖାନା, ଯାତ୍ରୀ ଯେନ ଜଳବୋଟ୍ ସବୁ ସମୁଦ୍ରରେ ବୁଲୁଛନ୍ତି ।

ଏଠି ଗୋଟିଏ ଜଳଜନ୍ତୁସଂରକ୍ଷଣ କେନ୍ଦ୍ର ଅଛି, ଅନ୍ୟାନ୍ୟ ଜଳ-ଜନ୍ତୁମାନଙ୍କ ମଧ୍ୟରେ ସମୁଦ୍ରଅଶ୍ୱ ରହିଛନ୍ତି । ତାଛଡ଼ା ଗୋଟିଏ ଯାଦୁଘର ଓ ଚିଡ଼ିଆଖାନା ଅଛି । ଉଦ୍ୟାନରେ ପୃଥିବୀର ବହୁ ବିରଳ ବୃକ୍ଷ-ଲତା ରୋପିତ, ପାହାଡ଼ ଉପରେ ଗୋଟିଏ ଗ୍ରହନକ୍ଷତ୍ର ପର୍ଯ୍ୟବେକ୍ଷଣ କେନ୍ଦ୍ର ସ୍ଥାପିତ ହୋଇଛି ।

'ନାଇସ୍'ର ଯାତ୍ରୀ ମନାକୋ ନ ଦେଖି ଫେରିପାରେ ନାହିଁ । ଯାତ୍ରୀଙ୍କ ଲାଗି ଭଲ ଭଲ ହୋଟେଲ, ରେସ୍ତୋରାଁ ସବୁ ରହିଛି, ଅପୂର୍ବ ପ୍ରାକୃତିକ ପରିବେଶ ମଧ୍ୟରେ; ବିନୋଦନ ଲାଗି ସ୍କିଙ୍ଗ୍, ଜଳ ସ୍କେଟିଂ, ସ୍କିନ୍ ସୁଟିଂ, ସନ୍ତରଣ ଓ ନୃତ୍ୟ ସଙ୍ଗୀତର ବ୍ୟବସ୍ଥା ରହିଛି । କଥା ଅଛି— ମନାକୋରେ ଛୁଟି କେବେ ସରେ ନାହିଁ । ମନାକୋର ଶ୍ରୀ ନ ଦେଖିଲେ ଏହା କେହି ବିଶ୍ୱାସ କରିବେ ନାହିଁ ।

ଦ୍ୟୁତକ୍ରୀଡ଼ା ବାବଦରୁ ଆୟ ମନୋକୋର ମୁଖ୍ୟ ଆୟ । ୧୮୫୬ ଖ୍ରୀଷ୍ଟାବ୍ଦରେ ମଣ୍ଟକାର୍ଲୋର ପ୍ରସିଦ୍ଧ କାସିନୋ ଉନ୍ମୋଚିତ ହୋଇଥିଲା । ପାରସ୍ୟର ରାଜା ମନାକୋର ଅଭାବ ଦୂର କରିବା ଲାଗି ଏଇ ବୁଦ୍ଧି ବତାଇଥିଲେ । ପୃଥିବୀର ବଡ଼ ବଡ଼ ଜୁଆଡ଼ିମାନେ ଆସୁଛନ୍ତି, 'କାସିନୋ' ଭରିଲାଣି । ଅନୁର୍ବର ମନାକୋ ଏକ ସମୃଦ୍ଧ ରାଜ୍ୟରେ ପରିଣତ ହୋଇଛି ।

ଗୋଟିଏ କାସିନୋରେ ପଶିଲୁ; କାନ୍ଥ ଓ ଛାତରେ ଉତ୍ତେଜକ ଛବିସବୁ ଅଙ୍କିତ—ଉଲଗ୍ନ ନାରୀ, ସେ ପ୍ରେରଣା ଦିଏ ମଦ୍ୟପାନ ଲାଗି । ପାନ କ୍ରୀଡ଼ାରେ ଖେଳାଳୀକୁ ମେଳ କରେ । ଏ ଗୋଟିଏ ଗୋଟିଏ ଯନ୍ତ୍ରା ବସିଛି । ଉଣା ଅଧିକେ ପଡ଼ୁଛନ୍ତି ସମସ୍ତେ—କିଏ କୌତୁକରେ କିଏ ବା ପ୍ରକୃତରେ । ମୁଖ ବିକୃତ କରି ଫେରୁଛନ୍ତି ପ୍ରାୟ ଅଧିକାଂଶ । ଆନନ୍ଦ ଅସ୍ଥାୟୀ, ଅନୁତାପ ନିଶ୍ଚିତ ।

ପାଞ୍ଚ ଦଶ ଫ୍ରାଙ୍କ୍‌ର ( ୧ ଡଲାର—୫ ଫରାସୀ ଫ୍ରାଙ୍କ୍ ) ନୋଟ୍‌ଟିଏ ଉଡ଼ାଇଥିଲା, ହସି ହସି ମୋତେ ପଚାରିଲା—ଖେଳିବ ?

'ହଁ ବା ନା' କହିଥିଲେ ହୋଇଥାନ୍ତା । କିନ୍ତୁ ଅତିର ଖେଳ ମୋ ମୁହଁ ବନ୍ଦ ହୋଇଛି । ଜଣେ ଦାର୍ଶନିକ ପରି କହିଲି—ଏତ ମହାସାର ଜୁଆ । ଜୀବନ ଜୁଆ ତ ଅଛି । ସେଠି କେତେ ସାର ଅସାର ହୋଇଯାଏ । ଯେତେ ସାର ଦେଲେ ବି ଜମି ଉଷର ପାଲଟି ଯାଏ, ଗୋଚରକୁ ଯୋଗ୍ୟ ହୁଏ ନାହିଁ ।

ଟିକଏ କଷ୍ଟ ବୁଝି ନ ପାରି ସାଲି ବୋବା ଆଖିରେ ଚାହିଁଲା । କଲି କାନରେ ମୂଳା ଝୁଲାଇ ମୁଁ ଅନୁତପ୍ତ ହେଲି ।

ଉର୍ଜିନିଆଁ ଲଭ କରିଛି ଦୁଇ ଫ୍ରାଙ୍କ୍ । ଆଉ ଖେଳିବାକୁ ଚାହେଁ ନାହିଁ ସେ, କାଳେ ହରାଇବ ! ମି. ଶରୁର୍ଡ ଦଶ ଫ୍ରାଙ୍କ ହରାଇ ନିର୍ବେଦ ହୋଇ ବସିଛନ୍ତି । ମିସେସ୍ ହାରବର୍ଟ୍ ବୁଢ଼ୀ, ଯେ କିଛି ପାଇଛି, ଲଗେଇଥିବା ମୁଗେଇ ଦାନ୍ତରେ ହସି ହସି ଗଡ଼ି ଯାଉଛି । କେତେକ କହୁଛନ୍ତି—ସେ ଭାଗ୍ୟବତୀ; କିନ୍ତୁ ଏ ବତୀ କେତେ ଦଣ୍ଡ ଜଳିବ, କିଏ ଜାଣେ ?

ଭାଗ୍ୟଚକ୍ର ବୁଲୁଛି । ନାମଜାଦା ସେଠ, ସାହୁକାରମାନେ ବସିଛନ୍ତି, କେତେ କାଳର ଜୁଆର୍ଜୀସବୁ, ହରାଇବାର ଶଙ୍କା ତିଳାର୍ଦ୍ଧ ନାହିଁ, ହରାଇଲେ ବି ଭାଙ୍ଗି ପଡ଼ିବାର ଭୟ ନାହିଁ, ଭାଙ୍ଗିଲେ ବି ଭାଙ୍ଗିଲି ବୋଲି ଅନୁଶୋଚନା କରି ବସନ୍ତି ନାହିଁ ସେମାନେ । ଜୀବନ ଜୁଆ, ଚକ୍ରବର୍ତ୍ତୀ ଖିଆଲରେ ସମୁଦ୍ର ମଝିକି ଗଡ଼େଇ ଦେବାର ସାହସ ଅଛି ସେମାନଙ୍କର—ବୀରତ୍ୱ ।

ଆମ ସଙ୍ଗୀଙ୍କ ମଧ୍ୟରେ ଜଣେ ଅଠର ଫ୍ରାଙ୍କ୍ ଲାଭ କରିଛି—କିନ୍ତୁ ତାଙ୍କ ସ୍ତ୍ରୀ ହରାଇଛନ୍ତି ସେତିକି । ଆୟୁ ବ୍ୟୟ ସମାନ । ମେସ . ରସେଲ୍ ମୋତେ ପଚାରିଲା—ତୁମେ ଖେଳିଲ ?

କହିଲ—ମୋ ପଇସାରେ ମୁଁ ଖେଳପାରେ; କିନ୍ତୁ ଏ ପଇସା ସବୁ ଭାଇର ।

ସମୁଦ୍ରର ସବୁ ଉଦ୍ଭଟ ଗୁପ୍ତିଛନ୍ତି, ଗୋଟିଏ ମାତ୍ର ସୁବର୍ଣ୍ଣମୟ । ଅସ୍ତପୂର୍ଯ୍ୟ ଦେଖା ଯାଉ ନାହାନ୍ତି । ତାଙ୍କ ସ୍ଥାନ ପଶ୍ଚିମ ଦିଗ୍‌ବଳୟର ଏକାଂଶକୁ ଚିତଲେଖିତ କରିଛି—ତା ମଧ୍ୟରେ ପଞ୍ଚମୀ ତିଥିର କିରଣହୀନ ଚନ୍ଦ୍ର, ଗୋଧୂଳି ଲଣ୍ଠିର ଗୋଟିଏ ସୁବର୍ଣ୍ଣ ଝିର ଝରିଆସିଛି । ଆକାଶରୁ ସମୁଦ୍ରକୁ ଓ ମୋ ମନକୁ ।

'ଅମ୍ବାସାଡ଼ଓର' ରେସ୍ତୋରାଁରେ ଡ଼ିନର୍‌ ଖାଇଲୁ । ଫରାସୀ ଖାଦ୍ୟର ସେପରି କିଛି ନୂତନ ଅସ୍ୱାଦ ପାଇଲୁ ନାହିଁ । ଯେଉଁମାନେ ମଦ୍ୟପାନ କଲେ, ବସ୍ତୁ ଗୋଟାଏ ବାକ୍‌ସ ଧରି ସେମାନଙ୍କଠାରୁ ପ୍ରାପ୍ୟ ଆଦାୟ କରିନେଲା । ଖାଇସାରି କେହି ତ ମୁହଁ ଧୁଅନ୍ତି ନାହିଁ । ସ୍ତ୍ରୀମାନେ ମଦ୍ୟପାନ ପରେ ଅଧର ରଙ୍ଗାଉଥିବାରୁ କିଛି କାଳ ବିଳମ୍ବ ହେଲା ।

ରେସ୍ତୋରାଁଟି ପାହାଡ଼ ଉପରେ—ନାଇସ୍‌ ସହରର ଆଲୋକ-ମାଳା ଅଗଣିତ ମୁକ୍ତା ମଣିର ହାର ଲମ୍ବିଲା ପରି ଦିଶୁଥାଏ, ପାହାଡ଼ କାନ୍ଥ ମଧ୍ୟରେ ବଙ୍କେଇ ଡ଼ଙ୍କେଇ ଆମେ ତଳକୁ ଖସିଲୁ, ହୋଟେଲ ନେପୋଲିୟନ, ନେପୋଲିୟନଙ୍କ ବୀର ଗୌରବରେ ଭରା । ତଳମହଲାରୁ ଉପର ମହଲା ଏହି ମହାବୀରଙ୍କର ବହୁ ଛବି ରହିଛି—ଅଶ୍ୱାରୋହୀ ନେପୋଲିଅନ୍, ଯୋଦ୍ଧା ନେପୋଲିୟନ; ପରିବାର ମଧ୍ୟରେ ନେପୋଲିୟନ ଇତ୍ୟାଦି ।

## ପାରିସ୍ ପଥେ—

ସକାଳ କିରଣ ସୌଧର ଉଚ୍ଚତମ ଚୂଡ଼ାରୁ ତଳକୁ ଖସିନାହିଁ । ମୟୂରକଣ୍ଠ ପାରା କୋଠା ଦାଣ୍ଡରେ ବକ୍‌ମ୍‌ ବକ୍‌ମ୍‌ କରୁଛନ୍ତି । ସିଗଲ୍‌ ଦଳ ବାନ୍ଧି ଉଡ଼ୁଛନ୍ତି ସମୁଦ୍ର ଉପରେ । ଗୋଟିଏ ଗୋଟିଏ ଜଲବୋଟ୍‌ ଅଳସ ଭାବରେ ବୁଲୁଛି । ଆମେ ନାଇସ୍‌ରୁ ବିଦାୟ ନେଲୁ । ଏକ ପାଖେ

ପାହାଡ଼ ଅନ୍ୟ ପାଖେ ସମୁଦ୍ର—ଆଣ୍ଟିବେସ୍ ଗ୍ରାମ, ଗୋଟିଏ ଅନ୍ତରୀପ ଉପରେ ରହିଛି, ନାଇସ୍‌ର ମୁହାଁମୁହିଁ ହୋଇ । ଫୁଲର ଫସଲ ଲାଗି ଏହା ପ୍ରସିଦ୍ଧ । ତାପରେ ଆମେ ଗଲ୍ଫ ଜୁଆନ ଗ୍ରାମରେ ପହଞ୍ଚିଲୁ । ନେପୋଲିଅନ୍ 'ଏଲବା' ଦ୍ୱୀପରୁ ପଳାଇ ଆସି ପ୍ରଥମେ ଏଇଠି ପହଞ୍ଚିଥିଲେ । କାନ୍ନେସ୍ ସହର, ଛୋଟ ଛୋଟ ପାହାଡ଼ରେ ଘାସ, ବୁଦା ବୁଦା ଗୁଳ୍ମ, ସ୍ଥାନେ ସ୍ଥାନେ ଅଲିଭ୍ ବା ପାଇନ୍ । ଏଠି ବାର୍ଷିକ ସିନେମା ଉତ୍ସବ ଅନୁଷ୍ଠିତ ହୁଏ । ଏହାର ଲୋକସଂଖ୍ୟା ପଚାଶ ହଜାର । ଉପକୂଳ ବାଲୁକାମୟ, ଏଠି ସେଠି କେତେ ଅମ୍ବ୍ରେଲା ପାଇନ୍, ଖଜୁରୀଗଛ, କେତେ କରବୀର; ପାର୍କରେ ଚେଷ୍ଟନଟ୍ ନିକୁଞ୍ଜ; ପାହାଡ଼ ସବୁ ସୌଧ ମଣ୍ଡିତ; ଅଳିଆଅରମା କେଉଁଠି କେତେ ନାହିଁ । ପାହାଡ଼ ଧସି ରାସ୍ତା ବନ୍ଦ କରିଦେବ ବୋଲି ଲୌହଜାଲ ବନ୍ଧା ହୋଇଛି । ମାର୍ସେଲିସ୍‌କୁ କେତେ ଦୂରରେ ରଖି ଆମେ ଚାଲିଲୁ 'ଲିଅନ୍' ରାସ୍ତାରେ । ସ୍ୱଚ୍ଛ ରୌଦ୍ର, ଛବି ପରି ଅଙ୍କା ହୋଇଛି ଧଳା ଧଳା ସ୍ତୂପ ମେଘ ପାଳ ଲିପା ଆକାଶରେ ।

'ଲିମଗ୍' ସହରର ଅଣ୍ଡ୍ରସାଗ୍ରା ଗଳି କନ୍ଦି ଭିତରେ ଯାଉ ଯାଉ ଲକ୍ଷ୍ୟକଲି ଏହାର ଗୋଡ଼ମିଶା ନାଲ୍ ମାଟି, ସ୍ଥାନେ ସ୍ଥାନେ ଅଙ୍ଗୁର, କମଳାଲେମ୍ବୁ ବଗିଚା, ପାହାଡ଼ରେ ମୁକ୍ତ ଜଙ୍ଗଲ, ଘୋଡ଼ାଟଣା ଶଗଡ଼ରେ ଖଡ଼ ବୁହା ହୋଇ ଚାଲିଛି ପଡ଼ୁଛି, 'ବର୍ଗନୋଲ୍‌ସ୍' ସହରରେ ଝରଣାଟିଏ ବୋହୁଛି—ଫାଇବାର୍ ପ୍ଲାଣ୍ଟ ବାଡ଼ ଭିତରେ ଗମ୍ଭୀର ଗମ୍ଭୀର ବ୍ୟାପୀ ଅଙ୍ଗୁର କ୍ଷେତ । ଟ୍ରକ୍‌ରେ ଭର୍ତ୍ତି ହୋଇ କଳା ଅଙ୍ଗୁର ଯାଉଛି । ବୋଧହୁଏ କାରଖାନାକୁ, 'ସେଣ୍ଟ ମାକ୍‌ସିମିନ୍' ସହରରେ 'କଫିସ୍ତପ୍', 'ଅଣ୍ଟିକ୍ ଶପ୍'କୁ ଲାଗି ଗୋଟିଏ 'ଶିଶୁଶଯ୍ୟା' ଝୁଲୁଛି, ଡ୍ରାଗନ୍ ମୂର୍ତ୍ତି, କାରୁକାର୍ଯ୍ୟ ଚମତ୍କାର । ଗୋଟିଏ କାଠ ଘୋଡ଼ା, ଅଗ ଦୁଇଗୋଡ଼ ଉପରକୁ ଟେକି ରହିଛି; ଚମତ୍କାର କାଠକାମ କରା ଗୋଟିଏ ଦର୍ପଣ ଦେଖାଇ ମେସ୍‌କ କହିଲା—ଏ ପୁରୁଣା ଦର୍ପଣକୁ ଚାହିଁ, ଗୋଟାଏ ଯାଦୁ ଅତୀତ ଦେଖି ପାରିବ—ସେ ଯୁଗର ପରିବେଶ, ସେ ଯୁଗର ନାସ୍ତ.........

ମେଘ ବୃଷ୍ଟିଲା ପରେ ହସି ଦେଉ ପ୍ରକୃତି କଣାଷ ଦେଖିବାକୁ ଲାଗିଲା । ଶତାବ୍ଦୀକର୍ଯରେ ସେ ପଶିବାକୁ ସ୍ବଚ୍ଛନ୍ଦ ନାହିଁ, କିନ୍ତୁ ଅଳ୍ପ ପଇସାର ଖ୍ରେଟ କଣାଷ ସେ ସ୍ମାରକ ଭାବରେ ନେଇ ପାରିବ କି ନାହିଁ, ପରଖୁଛି ।

ଫୁଟ୍‌ପାଥ୍‌ରେ ପିଲାଟିଏ ଅନ୍ଧ୍‌ଣୀ ବୁଢ଼ୀଟିର ହାତ ଧରି ନେଉଛି, ବୋଧେ ବୁଲାଉଛି । ଟ୍ରାକ୍‌ରେ ନଦୀ ହୋଇ ଯାଉଛି ମଦ ବୋତଲ । ଫୁଟ୍‌ପାଥ୍‌ରେ ବଡ଼ ବଡ଼ ଓକ୍, ଚେଷ୍ଟନଟ୍, ସିକାମୋର ଗଛସବୁ; ଝଡ଼ଝ ଛଡ଼ ଟଣା ହୋଇ ସହରକୁ ଉପଦ୍ରବମୟ କରୁଛି ଯେପରି । ହୋଟେଲ୍ 'ବୋନାପାର୍ଟ' ଦୁଆରେ କେତୋଟି କାକ୍‌ଟସ୍ କୁଣ୍ଡ, ଭେଟିଏ ଭେଲ୍‌ଭେଟ୍ ଚକ୍‌କଣ କଳା ବରାଡ଼ ଶୋଇଛି ।

ବସ୍ ଅଟ୍ଟୁର ଗଞ୍ଜାରରେ ଗଲିଲା, ସୂର୍ଯ୍ୟମୁଖୀ ଶୁଷ୍କ, ମୁଣ୍ଡ ନୁଆଁଇ ଦେଇଛି । ଶୁଷ୍କ, ମଳିନ ମୁଖ ଦେଖାଇବାକୁ ସଂକୁଚିତ ଯେପରି କି ଚିରୋଲପୁଲ୍ଲ ଏଇ ଦେଶରେ ।

ଖ୍ରେଟ ଖ୍ରେଟ ଚୂନ ପାହାଡ଼, ଆଇଭି ଲତାଇଛି ଗ୍ରାମଗୃହ-ମାନଙ୍କରେ । 'ଏକ୍‌ସ—ଏନ୍—ପ୍ରୋଭ' ସହରରେ ଆମେ ପହଞ୍ଚିଲୁ । ଲୋକ ସଂଖ୍ୟା ପଚିଶ ହଜାର । ଏଠା ଜଳ ବାତରୋଗନାଶକ ।

'ଅଭିଗନନ୍' ନଗରରେ ପୋପ୍‌ଙ୍କ ପ୍ରାସାଦ ଦେଖିଲୁ, ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ । ଏବେ ହୋଇଛି ଗୋଟିଏ ଭୂତକୋଠି, ପ୍ରାସାଦ ସାମ୍ନାରେ ଜଣେ ପ୍ରସିଦ୍ଧ ସେନାପତିଙ୍କର ସ୍ମୃତିସ୍ତମ୍ଭ । ଏ ନଗରରେ ବହୁତ ଟାୱାର୍, ବହୁ କାରୁକାର୍ଯ୍ୟ ପୂର୍ଣ୍ଣ ପ୍ରାଚୀନ ସୌଧ; ତାକେ ବାଟରେ 'ରୋନ୍' ନଦୀ ପ୍ରବାହିତ ।

ମକ୍‌କା, ମାଣ୍ଡିଆ କ୍ଷେତ, କାଶଫୁଲ ଭିତରେ ଆମ ବସ୍ ଗଲିଲା । ଆକାଶରେ ପାଉଁଶିଆ ମେଘ, ମେଘ ଫୁଟାଇ ଚୋପା ଖଣ୍ଡ ଜେନ୍ଥାଟିଏ ପଡ଼ିଛି ସୋନ୍ ସ୍ରୋତରେ । ତା ପରେ 'ଭାଲେନ୍‌ସ' ସହର ପଡ଼ିଲା । 'ନୁଗାଟ୍' ଫ୍ରାନ୍‌ସର ଏକ ଜାତୀୟ ମିଷ୍ଟାନ୍ନ; ଏଠି ଗୃହେ ଗୃହେ

ପ୍ରସ୍ତୁତ ହୁଏ । ରେସ୍ତୋରାଁର ପ୍ରବେଶ ଦ୍ୱାରରେ ଗୋଟିଏ କୃତ୍ରିମ ପାହାଡ଼, ଫୁଆରା, ପୋଖରୀ, ବେକରେ ମୟୂରକଣ୍ଠୁର ରଙ୍ଗ; ବତକଟି ଖୁବ ସୁନ୍ଦର ! ବତକଗୁଡ଼ି ସେତେ ମନୋହର ଲୁହେ, ଜଳରେ ସନ୍ତରଣ କରୁଛନ୍ତି, କେତେ-ବେଳେ ପାହାଡ଼ ଉପରକୁ ଉଠି ଡେଣା ସଜାଡୁଛନ୍ତି ।

ତା ପରେ 'ରୋନ୍' ତୀରବର୍ତ୍ତୀ 'ଲିଅନ୍'ର 'କାର୍ଲଟନ୍' ହୋଟେଲ୍‌ରେ ଆସି ରହିଲୁ—କେବଳ ରାତି ବିଶ୍ରାମ; ଏଇ ସହର ବୁଲି ଦେଖିବା ଆମର ଲକ୍ଷ୍ୟ ନ ଥିଲା । 'କାର୍ଲଟନ୍'ରେ ଖୋଜି ଖୋଜି ଖଣ୍ଡେ ହେଲେ ଇଂରେଜ ବହି ବା ପତ୍ରିକା ପାଇଲି ନାହିଁ, ଇଂଲଣ୍ଡର ପଡ଼ୋଶୀ ଦେଶ ଏ । ବହୁ ଆମେରିକାନ୍, ଇଂରେଜ ଆସି ଏଇ ହୋଟେଲ୍‌ରେ ରହି ଥାନ୍ତି ।

ସକାଳେ ଆଖିରୁ ନିଦ୍ରା ଲିଭିନାହିଁ, ଆମେ ରୋନ୍ ନଦୀ କୂଳେ କୂଳେ ଚାଲିଲୁ, ଅଳ୍ପ ଦୂର ଗଲାପରେ କେଉଁ ସହରର କେଜାଣି, ସୁସଜ୍ଜିତ ବଜାରଣି ମଧ୍ୟରେ ଆମେ ପହଞ୍ଚିଲୁ; ଊଷା ଆଲୁଅରେ ରଞ୍ଜିତ ହୋଇଥାଏ ରୋନ୍ ନଦୀର ଆକାଶ; କିନ୍ତୁ ସେ ସହରର ପ୍ରାତଃ ଦୃଶ୍ୟ ଦେଖିବାର ସୌଭାଗ୍ୟ ଆମର ଘଟିଲା ନାହିଁ । ପଶିଲୁ ଏକ ଦୀର୍ଘ ଟନେଲ୍ ମଧ୍ୟରେ, ବାହାରିଲୁ ଆଲପସ୍‌ର ଶାଖା ପାହାଡ଼ମାଳାରେ; ଏଇ ସମୟରେ ଜାକୋବ ମାଇକ୍‌ରେ ପଚାରିଲା—ପ୍ୟାରିସ୍ ଗଲେ କଣ ସଉଦା କରିବ ? ଭ୍ରମଣକାରୀ ଚେକ୍ ଉପରେ ଏଠି ଶତକଡ଼ା ପଞ୍ଚମାଂଶ ବଟା ଦେବାକୁ ପଡ଼େ !

ଏଠା ଅତର ପ୍ରଭୃତି ସୁଗନ୍ଧ ଦ୍ରବ୍ୟ ଭଲ; ଟିକସ ଦେବାକୁ ପଡ଼େ ନାହିଁ, କିନ୍ତୁ କିଣି ନେଲେ ଲଣ୍ଡନ ଏୟାର୍ ପୋର୍ଟରୁ ନେବାକୁ ହେବ । ସଙ୍ଗୀ ଓ ସଙ୍ଗିନୀଙ୍କ ମଧ୍ୟରୁ କେତେକଙ୍କ କାର୍ଯ୍ୟରୁ ବୁଝାଯାଏ—ଭ୍ରମଣର ଅର୍ଥ ନାନା ଦେଶରେ ସଉଦା କଣିବା—ଯେଉଁଠି ଯାହା ଶସ୍ତା, ସୁନ୍ଦର, ମଜ୍‌ଭୁତ । ଆଜି କେତେକଙ୍କ ପକ୍ଷରେ ଏହା ହାଓ୍ୱା ପରିବର୍ତ୍ତନ ମାତ୍ର ।

ଫ୍ରାନ୍ସର ବିମାନ ବନ୍ଦରରୁ ଆମେରିକା ଯାତ୍ରା କଲେ ପଚାଶ ଫ୍ରାଙ୍କ୍ ଟିକସ ଗଣିବାକୁ ହେବ; ଇଉରୋପର ଅନ୍ୟ ଦେଶକୁ ଗଲେ ସାତ ଫ୍ରାଙ୍କ୍ ଦେବାକୁ ହେବ । ଏଠି ଖାଇବା ଖର୍ଚ୍ଚ ହାତରୁ ଦେବାକୁ ହେବ; କେବଳ ସ୍ୱଦାପ୍ତ ଝନ ଗୋଟିଏ ଶ୍ୱେକ ଦେବ । ଏଠି ଖାଦ୍ୟ ପେୟ ବ୍ୟୟ ଅନ୍ୟ ଇଉରୋପୀୟ ଦେଶ ତୁଳନାରେ ଅନେକ ବେଶୀ । ତେଣୁ ଆମେରିକାନ୍ ଏକ୍ସପ୍ରେସ୍ କମ୍ପାନୀ ଖୋଇବାର ଦାୟିତ୍ୱ ନେଇ ନାହାନ୍ତି । ବ୍ୟବସାୟ ଦୃଷ୍ଟିରୁ ପ୍ରତିକୂଳ ।

ରୋନ ନଦୀ କୂଳେ କୂଳେ ଯାଇ ତାପରେ ଆମେ ମାକୋନ୍ ସହରରେ ପହଞ୍ଚିଲୁ— ମଦ୍ୟ ଉତ୍ପାଦନ ଲାଗି ପ୍ରସିଦ୍ଧ; ପୋଖରୀରେ କଇଁ ମାଛ; ଉର୍ବର କଳାମାଟି, ସୋରିଷ, ମୂଳା, କୋବି, ଆଦି ନାନା ଫସଲ ହୋଇଛି । ଧଳା ଧୂସର, ପୂର ଫାଟି ପଡ଼ୁଛନ୍ତି ।

ଆମେ 'ଡାନ୍‌ସ୍ ସେ' ଗ୍ରାମରେ ବସ୍‌ରୁ ଓହ୍ଲାଇଲୁ, କାମେରା ଉଦ୍‌ଭାବକ ନିପ୍‌ସ୍‌ଙ୍କ ଗ୍ରାମ ଏ । ରାସ୍ତା ଧାରରେ ୧୮୬୬ରେ ତାଙ୍କର ସ୍ମୃତି ମନ୍ଦିର ନିର୍ମିତ ହୋଇଅଛି, ଅଳ୍ପ ଦୂରରେ ସମାଧି ।

ନାନା ଦୁର୍ଗ ବନାନରେ ପରିମାଣ ମନ ସବୁଜ ଉତ୍‌ଫୁଲ୍ଲତାରେ ଭରି ହୋଇ ଗଲା । 'ଡାନ୍ ସେ' କୁକୁଡ଼ା ଓ ଗେଣ୍ଡୁର ଗ୍ରାମ, ସୋରିଷ ଫୁଲର ଗ୍ରାମ, ଅଙ୍ଗୁର ଗ୍ରାମ କହିଲେ କିଛି ଅତ୍ୟୁକ୍ତି ହେବନାହିଁ । ସବୁଜର ସେଇ ଆଡ଼ମ୍ବର, ନମ୍ର କରେ ଶଢ଼ର ମନ, ଲାବଣ୍ୟରେ ନମ୍ରତା ସୁନ୍ଦର ।

'ଭଏନ୍' ସହରରେ ଗାଢ଼ ପାହାଡ଼କୁ ଉଠିଲୁ— ଭୂମି ଅନୁର୍ବର ହେଲେ ହେଁ ନାନା ସାର ଦିଆ ହୋଇ ଏଠି ଅଙ୍ଗୁର ଚାଷ ହେଉଛି । ଆଗେ ଜଣେ ଜଣେ ଶୁଣ୍ଡି ଥିଲେ, ଏବେ ଗୋଟାଏ ଗୋଟାଏ ଜାତି ଶୁଣ୍ଡି ବନିଛନ୍ତି; ମଦ ବିକି କୋଟି କୋଟି ଟଙ୍କା ଆୟ କରୁଛନ୍ତି ।

ଏଠି ଅନେକ ପ୍ରଫୁଲ୍ଲ ମୁଖ ଦେଖିବାକୁ ମିଳିଲା; ଫରାସୀ ଆଜ ଆନନ୍ଦରେ ଅଛନ୍ତି; ପେଟପୂରା ଖାଦ୍ୟ, ମନ ଭରା ପାନ, ତାନପୂରା ହସ

—ଜଞ୍ଜାଳକୁ, ଦୁଃଖକୁ ଫୁତ୍କାରରେ ଉଡ଼ାଇ ଦେଉଛନ୍ତି; ଜୀବନ ଏଠି ସ୍ଥିତିସ୍ଥାବକତାରେ ପଙ୍କିଳ ନୁହେ । ସଂସାରରେ ଶେବାଳରେ ଯାହା ଜଡ଼ତା ଅଣେ, ପଙ୍କ କରେ, ତାକୁ ମନରୁ କାଢ଼ି ଫିଙ୍ଗି ଦେଇଛନ୍ତି ଏମାନେ ।

ପଥରଆ ଭୂଇଁ, ପପଲର୍‌ରେ ମଲ୍ଲଙ୍ଗ ଉଠିଛି । ଗାଆଁ ମଝିରେ ସମାଧି କ୍ଷେତ୍ର; ଜୀବନ୍ତଙ୍କ ଭିତରେ ମୃତମାନେ ଶୋଇଛନ୍ତି । ବିଶିଷ୍ଟ ବ୍ୟକ୍ତିଙ୍କ ସ୍ମୃତି ସ୍ତମ୍ଭ ସ୍ଥାନେ ସ୍ଥାନେ; ଗ୍ରାମରେ ଆଧୁନିକ କୃଷି ଯନ୍ତ୍ରପାତି ଭର୍ତ୍ତି । କୋଉ ଦୂରବର୍ତ୍ତୀ ଗ୍ରାମର ଉଚ୍ଚ ଟାୱାର୍ ଦିଶିଯାଏ, କୋଉ ପାହାଡ଼ର ପୁରୁଣା କାସଲ୍; ଗିରି ଶିରେ ଇନ୍ଦ୍ରଧନୁ, କେବେ କେବେ ବିଦ୍ୟୁତ୍ ଝଟକ ଉଠେ; ଜେଟ୍ ଉଡ଼େ ଖର ବେଗେ, ପଦ୍ମ ପଦ୍ମ ଚରୁଛନ୍ତି ଟର୍କି; ଏ ଗ୍ରାମର ନାମ କଣ ? କୌଣସି ଜନ ମାନବ ଦେଖୁନାହିଁ; କେବଳ ଦୁଇଟି ଆଖି, କୃଷ୍ଣ ମାର୍ଜାରର ।

ଶରତର ଅନୁଶାସନକୁ ଯେଉଁମାନେ ମାନିଛନ୍ତି, ହୋଇ ଯାଇଛନ୍ତି ପକ୍ୱ, ଧୂସର । ଅବାଧ, ବର୍ଦ୍ଧିଷ୍ଣୁ ଯେଲେ ଏଭର୍‌ଗ୍ରିନ୍ । ବିପ୍ଳବ ଶିର ନୂତନ; ସେ ଧର୍ମକୁ ଯେ ମାନେ ନାହିଁ, ସେ ହୋଇଯାଏ ଗତାନୁଗତିକ, ମୃତ । ଏ ଏକ ଶିର ନୂତନ ଘୋଷା, ଉଦ୍ରେକ ସଂଗ୍ରାମରେ ମନକୁ ଅକ୍ଷତ ରଖେ; ମନ ହିଁ ଦେହକୁ ଦିଏ ତାରୁଣ୍ୟ ଓ ଶ୍ରୀ । ତାକୁ ଉର୍ଣ୍ଣିଳ କରି ରଖିବା ଏକ ଅସାଧ୍ୟ ସାଧନା ।

ଶରତ୍ ସେମାନଙ୍କୁ କହୁଛି—ଅବଶ୍ୟସ୍ତ; ନିଜର ବିଶ୍ୱାସେ କିନ୍ତୁ ସେମାନେ ଅଟଳ ।

'ଆଗ୍ଲେନ୍' ସହରରେ ପହଞ୍ଚିଲୁ । 'ଟଏଲେଟ୍' ରୁମ୍‌କୁ ଧାଡ଼ ଲାଗିଛି । ବୁଢ଼ୀଆଣୀ ଜାଲ ? ଆଶ୍ଚର୍ଯ୍ୟ; କୋଉ ମଶା ବା ମାଛି ଏଠି ଅଛନ୍ତି ? ଦୁଇ ଜଣ ସ୍କୁଲ୍ ପିଲା ହେବେ ପରି, ସାଇକେଲ୍‌ରେ ଯାଉଛନ୍ତି, ଡାହାଣ ହାତରେ ହାଣ୍ଡେଲ୍ ଧରି, ବାଁ ହାତେ ଧରି ଆଇସ୍‌କ୍ରିମ୍ ଚୁଟି ଗୁନ୍ଥି ।

ବ ଜଣ କାଥୋଲିକ୍ ଶୁକ୍ରବାରେ ଗୋମାଂସ ଖାଉଛନ୍ତି, ହସି ହସି ଜାକୋବ ଆମକୁ ଜଣାଇଲା ।

ଏହା ପରେ ଫ୍ରାନ୍ସର ଅନୁର୍ବର ମରୁଭୂମି ଅଞ୍ଚଳ ପଡ଼ିଲା, ଗୋଡ଼ ଭଙ୍ଗା ପଥର ଭର୍ତ୍ତି । ସ୍ଥାନେ ସ୍ଥାନେ ପାଣି ବନ୍ଧାଇ ରଖା ଯାଇଛି, ଜଙ୍ଗଲ ସୃଷ୍ଟି କରିବା ଚେଷ୍ଟାର ଅନ୍ତ ନାହିଁ ।

ମେଗି ରସେଲ ପଚାରିଲା—ପଶାଖେଳ ବେଳେ ତ କହୁଥିଲ, ଭାଇ ଟଙ୍କା ଅପବ୍ୟୟ କରିବ ନାହିଁ ବୋଲି; କାଲି 'ଲିଡ଼ୋ' ଦେଖିଯିବ କେମିତି ? ଦୁଇ ଘରିର ଡଲାର୍ ଖର୍ଚ୍ଚ କଲନାହିଁ, ଏବେ ୨୨ ଡଲାର୍ କାହାର ପଡ଼ିଲା କେମିତି ?

ମେଗି ମୋ କଥାର ଫାନ୍ଦରେ ମୋତେ ପକାଇଛି; ଠିକ୍ ଏ ଛଟ ପଟ ହୋଇ ମୁଁ ଖସି ଆସିଲି, ସୂକ୍ଷ୍ମ ବୁଢ଼ୀଆଣୀ ଜାଲରୁ ଡାଆଁସ ପରି । କହିଲି—କବି ବା କଳାକାରର ଜୀବନ ବଡ଼ କଠୋର । ନାନା ଅନୁଭୂତି ଅର୍ଜନ କରିବାକୁ ପଡ଼େ ସେ । ନ ହେଲେ ଜୀବନର ସ୍ୱରୂପ ହୃଦୟଙ୍ଗମ କରିବ କିପରି ? ସେଥିଲାଗି ମୁଁ ଯାଉଛି ।

ମୁଁ ଧନୀ ଲୋକ ନୁହେଁ, କିନ୍ତୁ କେତେଦିନ ହେଲା ଧନୀ ଲୋକର ଜୀବନ ଯାପନ କରି ଆସୁଛି । ଏକୁଟିଆ ପାରିସ୍ ଆସିଥିଲେ ମୁଁ ନିଶ୍ଚେ ପ୍ରଥମ ଶ୍ରେଣୀ ହୋଟେଲ୍‌ରେ ରହି ନଥାନ୍ତି । ସାମୂହିକ ବ୍ୟବସ୍ଥାର ଏକ ଅଙ୍ଗ ହୋଇ ମୁଁ ଆସିଛି, ସମସ୍ତେ ଡିନା‌ର୍‌କୁ ଯିବେ । ମୁଁ ଏଠି ଏକୁଟିଆ କଣ କରିବି ?

ମେଗି କହିଲା—ଯୁବତୀର ଉଲଙ୍ଗ ବକ୍ଷ ଦେଖିବାକୁ ଯିବାର ଏ ବ୍ୟୟକୁ ମୁଁ ଅପବ୍ୟୟ ମନେ କରେ ।

କହିଲି—ତୁମେ ତାହା ମନେ କର, କିନ୍ତୁ ଚିନ୍ତାର ବିପର୍ଯ୍ୟୟ କାହିଁ କରୁଛ । ମୁଁ ପୁରୁଷ, ରକ୍ତମାଂସର ମଣିଷ, ଯୁବତୀର ଉଲଙ୍ଗ ବକ୍ଷରୁ କିଛି ଆନନ୍ଦ ଆହରଣ କରିପାରେ; କିନ୍ତୁ ତୁମେ ସ୍ତ୍ରୀ; କଣ

ପାଇବ ? ମେଖ ମାରିବ ହୋଇଗଲା; କିନ୍ତୁ ଯୁକ୍ତି ପାଇଟିଲି ନାହିଁ । ମୋ ବକ୍ତବ୍ୟକୁ ସ୍ପଷ୍ଟତର କରିବା ଲାଗି ମୁଁ କହିଲି—

ପଚିଶ ବର୍ଷ ତଳେ ମୁଁ ବାହା କରିଥିଲି; ଘରେ ପିଲା ଛୁଆ; ଚଉଦ ବର୍ଷ ହେଲା ଶିକ୍ଷକତା କରି ଆସୁଛି । ଲାଲସାରେ ଏ ଦୃଶ୍ୟ ଦେଖି ଯାଉଛି, କାହିଁକି ମନେ କର ? ବଡ଼ଲୋକମାନେ ଏଠି କିପରି ଜୀବନ ଉପଭୋଗ କରନ୍ତି, ମନରେ ଧାରଣା ଆଣିବାକୁ ଚାହେଁ ।

ତୁମେ ତ ଲାସଭେଗାସ୍ ରେ 'ଲିଡୋ' ଦେଖିଛ, ପୁଣି ଦେଖିବାକୁ ଯାଉଛ କାହିଁକି ? ସାଧାରଣ ମଧ୍ୟବିତ୍ତ ପରିବାରର ଜଣେ ନାରୀ; ଏ ବଡ଼ଲୋକୀ ଆନନ୍ଦ ଉପଭୋଗରେ କି ନୈତିକତା ରହିଛି ?

ମୁଁ ଥରେ ଲାସ୍ ଭେଗାସ୍ ରେ ପଶା ଖେଳିଥିଲି, ହାରିଗଲି । 'ଲିଡୋ' ଦେଖା ଏଇ ମୋର ପ୍ରଥମ ।

'ୟୋନେ ନଦୀ କୂଳେ କୂଳେ ଯାଇ ଆମେ 'ସେନ୍‌ସ' ସହରରେ ପହଞ୍ଚିଲୁ । ଲୁହା ଜାଲି ଭିତରେ ମକ୍‌କା ରଖା ହୋଇଛି । ଗାଜରସବୁ ଗଦା ହୋଇଛି । ବ୍ୟବସାୟୀ ଆସି ବୋଧେ ବଲ ମୁଣ୍ଡରୁ ବୋହି ନେଇ ଯିବେ । କୁଆ ସବୁ ବଲର ଖତଗଦା ଖେଳାଇ ଖୋକ ଖାଉଛନ୍ତି । ବଜାରରେ କଖାରୁ କଟା ହୋଇ ବିକ୍ରୀ ହେଉଛି, ଫେଣା ଫେଣା ପାଚିଲା କଦଳୀ ମଧ୍ୟ ଦୋକାନରେ ରଖା ହୋଇଛି ।

କୃଷୀ ଗାଜର ଓ କନ୍ଦମୂଳ ଖୋଳି ସିଆରେ ସିଆରେ ଜମାଇ ଦେଇଛି । ଖୋଲା ସବୁଜ ପଡ଼ରେ ଜଣେ କଥାସରେ ବୁଲି ଦେଖୁଛି —କାଳେ କୋଉଠି ରହି ଯାଇଥିବ, ହାତରେ ବାଲ୍‌ଟି ଧରି ଗୋଟିଏ ଟୋକେଇ ।

ତାପରେ ଆମେ, 'ଫଁଣ୍ଟେନ୍ ବ୍ଲୁ' ସହରରେ ପହଞ୍ଚିଲୁ । ପଞ୍ଚଦଶ ଲୁଇଙ୍କ ନିର୍ମିତ, 'ଫଁଣ୍ଟେନ୍ ବ୍ଲୁ' ରାଜପ୍ରାସାଦରେ ପ୍ରବେଶ କଲୁ— ନେପୋଲିଅନ୍ ଏଥିରେ ମଝେ ମଝେ ରହୁଥିଲେ । ଏବେ ଏହା

ଗୋଟିଏ ଯାଦୁଘର । ତା'ର ପ୍ରାଙ୍ଗଣରେ ଟାଓ୍ବାର ପର କଥା କେତେଖାଣ୍ଟି ପାଇଲ୍‌ ।

କେତେ ଦିନ ପରେ ଗୋଟିଏ ଗୁଳଘର ଆଗରେ ପଡ଼ିଲୁ, କିନ୍ତୁ ଅରଣ୍ୟ ଓ ଜଙ୍ଗଲ କ୍ଷେତ୍ର ଅତିକ୍ରମ କଲାପରେ ଆମେ ପାରିସରେ ପହଞ୍ଚିଲୁ ।

## ପ୍ୟାରିସ୍‌

'ସେନ୍‌' ନଦୀ ପ୍ୟାରିସ୍‌କୁ ଦୁଇ ଭାଗରେ ବିଭକ୍ତ କରିଛି, 'ସିନ' ଲାଗି ପ୍ୟାରିସ୍‌ର ଶ୍ରୀ ଓ ସମୃଦ୍ଧି । ଏଇ ନଦୀର ଡାହାଣ ପଟେ ଯାବତୀୟ ବ୍ୟବସାୟ କେନ୍ଦ୍ର, ସବୁବେଳେ ଯାନବାହନ ଚଳାଚଳ ଓ ଗହଳଚହଳ ଲାଗି ରହିଛି । ଭିଡ଼ ଅତ୍ୟଧିକ । ବାଁ ପଟ ଅପେକ୍ଷାକୃତ ନିର୍ଜନ, କବି, ବିଦ୍ୱାନ ଓ ଶାନ୍ତିପ୍ରିୟ ବ୍ୟକ୍ତିମାନେ ଏଠି ବାସ କରିବାକୁ ଭଲ ପାନ୍ତି । 'ସିନ୍‌'ର ଦ୍ୱୀପ 'ସାଇଟ୍‌' ଓ 'ସେଣ୍ଟଲୁଇସ୍‌', ମଧ୍ୟଯୁଗୀୟ ଫ୍ରାନ୍ସର ଚାଲିଚରିତ୍ର କିଛି ପରିମାଣରେ ରକ୍ଷା କରିଛି ।

ପ୍ୟାରିସ୍‌ ନଗରୀ ୨୨ଟି ଜିଲ୍ଲାରେ ବିଭକ୍ତ । ବାଣିଜ୍ୟ ବ୍ୟବସାୟ ଦୃଷ୍ଟିରୁ ପ୍ରତ୍ୟେକ ଜିଲ୍ଲାର ସ୍ୱାତନ୍ତ୍ର୍ୟ ରହିଛି । କୋଉ ଜିଲ୍ଲାରେ ଛାପାଖାନା, ବସ୍ତ୍ର ଦୋକାନ ଅଧିକ ତ କୋଉଠି ଔଷଧ ବ୍ୟବସାୟ ଭଲ ଚାଲେ, କୋଉଠି ଯାବତୀୟ ପ୍ରାଚୀନ ଦ୍ରବ୍ୟ ମିଳେ ତ, କେଉଁଠି କୃଷି ଯନ୍ତ୍ରପାତି, ମଞ୍ଜି ବା ବିହନ ବିକ୍ରୀ ହୁଏ । ଗୋଟିଏ ଜିଲ୍ଲାରେ ଯାବତୀୟ ବ୍ୟାଙ୍କ୍‌ ଓ ସରକାରୀ ଅଫିସ୍‌ ରହିଛି । ଅନ୍ୟ ଜିଲ୍ଲାରେ ବଡ ବଡ଼ ବ୍ୟବସାୟୀ ଓ ଧନୀମାନେ ବାସ କରନ୍ତି । ପଶ୍ଚିମରୁ ପୂର୍ବ ଆଡ଼କୁ ଯାତ୍ରା କଲେ ଅପ୍ରଶସ୍ତ ଗଳିସବୁ ପଡ଼େ, ଛୋଟ ଛୋଟ ଘର—ଶ୍ରମିକମାନେ ଏଥିରେ ବାସ କରନ୍ତି ।

ଆମେ 'ଆମ୍ବାସାଡାର' ହୋଟେଲରେ ରହିଲୁ । ଭୋଜନାଳୟରେ ପ୍ରବେଶ କରିବା ମାତ୍ରେ ଦରଓ୍ବାନ୍‌ ଅଟକାଇ କହିଲା—'ଟାଇ' ?

ଅଲ୍‌ମାରୀ ଖୋଲି ଗୋଟିଏ 'ଟାଇ' ବାହାର କଲୁ—ତିନି ଡଲାର୍‌ !

ମନେ ମନେ ହିସାବ କରି କହିଲି—ଏଠି ଏ ଗୋଟାଏ କ ପାଠ ? ଆମେରିକା ଓ ଗୋଟା ଇଉରୋପ ବୁଲିଲି । କୋଉଠି ତ କେହି ଅଟକାଇ ନାହାନ୍ତି । ତିନି ଡଲାର୍ ଗଣିବ ? ହିସାବ ମନେଇ ଯାଇ ଶପା କୋଠରୀରେ ବୋତାମସବୁ ଦେଇଦେଲି । ତାପରେ ଗାର୍ଡ ମୋତେ ଛାଡ଼ି ଦେଲା ।

ବୁଢ଼ା 'ବସ୍' ମେନୁ ଧରି ହାଜର; ମୋ ବରାଦ୍ ଅନୁସାରେ ଚିକେନ୍, ବମ୍ଭଜା ଓ ଗରଡ଼ା ଝୋଳ ଆଣି ଦେଲା । ମଧୁରେଣ ସମାପୟେତ୍ । ଶେଷକୁ ଗୋଟିଏ ପିଅର୍ ଦେଲା । ଦେୟ ଚବଣ ଫ୍ରାଙ୍କ୍, ପରିବେଷଣ ଲାଗି ସ୍ୱତନ୍ତ୍ର ଭାବେ ଦେବାକୁ ହେଲା ଦୁଇ ଫ୍ରାଙ୍କ୍, ରେଜା ଫେରାଇ ଦଆନ୍ତୁଏ ନାହିଁ । ସେଥିରେ କଷ୍ଟ ରହିଲା ।

ଖାଇସାରି ବୁଲି ଗଲି ରାତି ନ'ଟା ବେଳେ । ଯାନ ଗହଳ କମି-ନାହିଁ । ଫୁଟ୍‌ପାଥ୍‌ର ବଣ୍ଟାଖମ୍ବ ମାନଙ୍କରେ ଗୋଟିଏ ଗୋଟିଏ ବାକ୍ସ ବନ୍ଧା; ପାନ୍ଥୀମାନେ ଛିଣ୍ଡା କାଗଜ ବା ଅଳିଆମଳିଆ ଏଥିରେ ପକାଇବେ ।

କେତେକ ଦୋକାନ ବନ୍ଦ ହୋଇ ଗଲାଣି । ପ୍ରଦର୍ଶନୀମଣ୍ଡପ କାଚ ଭିତରୁ ଦେଖି ହେଉଛି—ମଦନ ଯୁବତୀସବୁ ମାଦକୀୟ ଭଙ୍ଗୀରେ ଛିଡ଼ା ହୋଇଛନ୍ତି । ସମଗ୍ର ଇଉରୋପରେ ଏଇ ଏକ ପ୍ରକାର ପ୍ରଦର୍ଶନୀ । ଯାହା ଶିଳ୍ପଗତ ଯତ୍ ସାମାନ୍ୟ ତାରତମ୍ୟ ରହିଛି । ଏହି ପ୍ରଦର୍ଶନୀ ନାରୀ ମଣ୍ଡଳ ଅତିକ୍ରମ କଲେ ପ୍ରକୃତ ନାରୀର ଦର୍ଶନ ମିଳେ, ସେ ସୌଜନ୍ୟ ମାଧୁରୀରେ କିଣି ପକାନ୍ତି ।

ଗୋଟିଏ ଗୋଟିଏ ମଦନପ୍ରତିମାର ଦାମ୍ ତିନିଶରୁ ପାଞ୍ଚଶ ଫ୍ରାଙ୍କ୍, ଅବକାଶିତ ଜାକ୍ ଷ୍ଟୋର୍ ଘୃଣ୍ଣି ରହିଥାଏ । କହିଲା—ତୁମ ଦେଶରେ ନାରୀ କୋଉ ଅଭାବ ହୋଇଛନ୍ତି ଯେ ତୁମେ ମଦନ ନାରୀକି ଖୋଜୁଛ ! ଜାକ୍ କହିଲା—ଦାମ୍ କେତେ ଦେଖୁଥିଲି ।

'ଏ ଯେତେ ଦାମ୍ ସେତିକିରେ ତୁମ ବର୍ଷଦର ଖର୍ଚ୍ଚ ଚଳିଯିବ, ଅଥଚ ସେ ତୁମର ସୁଖ ଦୁଃଖ ହାନି ଲାଭ ବୁଝିବ !'

ଜାକ୍ ଟିକଏ ହସିଲ୍ । ତାପରେ ଦୁହେଁ ଗୋଟିଏ ସୁଗନ୍ଧ ଦ୍ରବ୍ୟ ଦୋକାନରେ ପଶିଲୁ—'ସ୍ପଟଲାଇନ୍ ପରଫ୍ୟୁମ୍; ପ୍ରୀତିକର ଆଲୋକ ସଜା; ସବୁ ସୁଗନ୍ଧର ଏକ ମିଳିତ ସୁରଭି କି ଅନନ୍ୟ ଆକୁଳତାରେ ଚିତ୍ତକୁ ବିମୁଗ୍ଧ କରୁଥାଏ । ଦୋକାନୀ ଆମ ହାତକୁ ଗୋଟିଏ ବୋତଲ ବଢ଼ାଇ ଦେଲେ । ଟିପି ଚିପିଲେ ଦେହରେ ଛୁଆଡ଼ ହୋଇ ପଡ଼େ । ସୁରଭି ନିଶାରେ ଭୋଳ ନ ହେଲେ କିଏ କିଣି ପାରିବ ? ଏ ଗୋଟିଏ ଥୋପ ।

କୌଣସି ସୁଗନ୍ଧ ଶିଶିର ଦାମ୍ ପାଞ୍ଚ ଡଲାର୍‌ରୁ କମ୍ ନୁହେ, କୃତ୍ରିମେ ମଧୁକର ପରି ଏଠି ନାରୀଙ୍କର ଭିଡ଼ ଜମିଛୁ—ପ୍ରିନ୍‌ସେସ୍, ମିସ୍ ଡିଅର୍, ଫେଥ୍‌ସ୍ ଲଭ୍, ଜେସ୍‌ମିନ୍, ପ୍ରିନ୍‌ସ୍ ଡିଭିକ୍, ମୋମେଣ୍ଟ ସୁପ୍ରିମ୍, ଜୟ ବାଣ୍ଡିଟ୍, ସକଂ ବୃଟ୍ ବୃଟ୍ ଆଦି କେତେ ନାଁରେ ଅଛନ୍ତି; ନବ ବିବାହିତଙ୍କୁ ଏ ସବୁ ଉପହାର ଦିଆଯାଏ, କିନ୍ତୁ ବୃଦ୍ଧାମାନେ କାହିଁକି ଆସିଛନ୍ତି ? ଓଃ ଭୁଲି ଯାଉଛି; କୁତ୍ସିତ ନ ହେଲେ ନିଜକୁ ସୁନ୍ଦର କରିବା ଲାଗି କିଏ ଚେଷ୍ଟିତ ହେବ କାହିଁକି ? ଦୁର୍ଗନ୍ଧର ହିଁ ଅଧିକ ସୁଗନ୍ଧ ଆବଶ୍ୟକ ହୋଇଥାଏ । ବାର୍ଦ୍ଧକ୍ୟ ଲୁଚାଇବା ଲାଗି ହୁଏତ ଏ ଏକ ଚେଷ୍ଟା ହୋଇପାରେ । ତାର ଆଶା ଲିଭିନାହିଁ—କାଳୋନାସ୍ତିତ ଗଚ୍ଛତ୍ୟାୟୁଃ ତଦପି ନ ମୁଞ୍ଚତ୍ୟାଶାବାୟୁଃ ।

## ନେପୋଲିଅନ୍‌ଙ୍କ ସମାଧି

'ଯୋଉ ଫରାସୀ ଲୋକଙ୍କୁ ମୁଁ ଟିକ୍ ଭଲ ପାଉଥିଲି, ତାଙ୍କର ଭିତରେ ସିନ୍ ନଦୀ କୂଳରେ ମୋତେ ସମାଧି ଦେବ ।'

ସମାଧି ମନ୍ଦିରରେ ଖୋଦିତ ହୋଇଛି ତାଙ୍କର ଏଇ ଶେଷ ଇଚ୍ଛା, ନେପୋଲିଅନ୍ ଓ୍ୱାଟରଲୁ ଯୁଦ୍ଧରେ ପରାଭୂତ ହେବାପରେ ବନ୍ଦୀ ଭାବରେ 'ସେଣ୍ଟହେଲେନା' ଦ୍ୱୀପକୁ ପ୍ରେରିତ ହେଲେ । ୧୮୨୧ ଖ୍ରୀଷ୍ଟାବ୍ଦରେ ସେହି ଦ୍ୱୀପରେ ତାଙ୍କର ମୃତ୍ୟୁ ହେଲା । ବ୍ରିଟେନ୍ ସହିତ ସାତବର୍ଷ ପରେ କାର-ବାର ପରେ ଫ୍ରାନସ୍ ସେଣ୍ଟ ହେଲେନାରୁ ତାଙ୍କ ଅବଶେଷ ଆଣିବା ଲାଗି ଅନୁମତି ପାଇଲା । ଫ୍ରାନସ୍‌ର ସମ୍ରାଟ ଲୁଇସ୍ ଫିଲିପ୍ ସମାଧି ଓ ଅନ୍ୟାନ୍ୟ

ମୃତ୍ୟୁମ୍ନୋର ସମ୍ରାଟେ ପେନ୍ ଆସିବା ଲଗି ନିଜ ପୁତ୍ରକୁ ସେଣ୍ଟ୍-ହେଲେନା ପଠାଇଲେ । ତାଙ୍କ କଫିନ୍ ଦୁଇ ମିନିଟ ଲଗି ଉନ୍ମୁକ୍ତ ହୋଇଥିଲା; ଅଶ୍ରୁପୂର୍ଣ୍ଣ ନୟନରେ ତାଙ୍କ ସେନାପତିମାନେ ଏ ଦୃଶ୍ୟ ଦେଖିଥାନ୍ତି । ୧୮୪୦, ୧୫ ତାରିଖରେ ପାରିସ୍‌ରେ ସିନ୍ ନଦୀ କୂଳରେ ତାଙ୍କୁ ପୁଣି ସମାଧି ଦିଆଗଲା ।

ଭକ୍ତର ହୃଦୟଗୋ ଏହି ହୃଦୟସ୍ପର୍ଶୀ ଦୃଶ୍ୟ ଦେଖି ବର୍ଣ୍ଣନା କରିଅଛନ୍ତି । ଗୋଟିଏ ଲୁହା କଫିନ୍‌ରେ ନେପୋଲିଅନ୍‌ଙ୍କ ଶରୀର ରଖା ହୋଇଥିଲା । ତାଙ୍କୁ ଏକ ମେହୋଗାନି ବାକ୍‌ସରେ, ସେଇ ବାକ୍‌ସକୁ ଅନ୍ୟ ଗୋଟିଏ 'ଓକ୍' ବାକସରେ ରଖା ହୋଇ ସମାଧି ଦିଆ ହୋଇଥିଲା । ନେପୋଲିଅନ୍‌ଙ୍କ ବାରଗୋଟି ବୃହତ୍ ମୂର୍ତ୍ତି—ଗୋଟିଏ ହଲ୍‌ରେ ସଜ୍ଜିତ ହୋଇ ରହିଅଛି । ଏ ସବୁ ସେହି ମହାବୀରଙ୍କ ବିଜୟ ଯୁଦ୍ଧ ଅଭିଯାନର ପ୍ରତୀକ । ଅଷ୍ଟରଲିଜ୍ ଯୁଦ୍ଧରେ ସେ ବ୍ୟବହାର କରିଥିବା ଖଡ୍‌ଗ, ଟୋପି; ଅନ୍ୟ ବେଶଭୂଷଣ ଓ ଅସ୍ତ୍ରଶସ୍ତ୍ର ସମାଧି ମନ୍ଦିରରେ ରକ୍ଷିତ ହୋଇଅଛି ।

## ଟୁଲେରିକ୍ ପ୍ରାସାଦ

ଫରାସୀ ରାଷ୍ଟ୍ରବିପ୍ଳବ ବେଳେ ଏଇ ପ୍ରାସାଦ ସାମ୍ନାରେ ରକ୍ତନଦୀ ବୋହି ଯାଇଥିଲା । ଷମ୍ରାଟ ଷୋଡ଼ଶ ଲୁଇଙ୍କ ଛ'ଶତ ସୁଇସ୍ ଗାର୍ଡ଼ଙ୍କୁ ଏଠି ନିର୍ମମ ଭାବେ ହତ୍ୟା କରା ଯାଇଥିଲା । ସମ୍ରାଟ କାତର ଭାବେ ଏଇ ପ୍ରାସାଦରୁ ପଳାୟନ କରି ବ୍ୟବସ୍ଥା ଗୃହରେ ଆଶ୍ରୟ ନେଲେ । ବିପ୍ଳବୀ-ମାନଙ୍କ ପାର୍ଲିମେଣ୍ଟ ଏହି ପ୍ରାସାଦରେ ବସିଥିଲା । ୧୭୯୩ ଜାନୁୟାରୀ ୨୧ ତାରିଖ; ଏହି ପ୍ରାସାଦ ନିକଟରେ ଗିଲୋଟିନ୍ ସ୍ଥାପିତ ହେଲା । ଏହାର ପ୍ରଥମ ଶିକାର ହେଲେ ସମ୍ରାଟ ଷୋଡ଼ଶ ଲୁଇ । ସକାଳ ୧୦ ଟା ୨୦ ମିନିଟରେ ଗୁରୁଗମ୍ଭୀର ଭାବରେ ସମ୍ରାଟ ଗିଲୋଟିନ୍‌କୁ ସୋପାନ ପଂକ୍ତି ଆରୋହଣ କଲେ । ନୃତ୍ୟ, ବାଦ୍ୟ ଓ ଆନନ୍ଦ କୋଳାହଳ ମଧ୍ୟରେ ସମ୍ରାଟଙ୍କ ଶେଷ ବାଣୀ ଉଚ୍ଚାରିତ ହୋଇଥିଲା—

ହେ ମୋର ପ୍ରିୟ ପ୍ରଜା, ମୋତେ ଯେଉଁ ଅପରାଧରେ
ଅଭିଯୁକ୍ତ କରି ଯାଉଛ, ମୁଁ ଜାଣେ ନାହିଁ ।
ମୋ ରକ୍ତରେ ଫ୍ରାନ୍ସରେ ସୁଖ ଶାନ୍ତି ବିରାଜମାନ କରୁ ।

ତାର ପର ମୁହୂର୍ତ୍ତରେ ସାନ୍‌ସନ୍ ସମ୍ରାଟଙ୍କ ରକ୍ତ ରଞ୍ଜିତ ଛିନ୍ନ ମସ୍ତକ ଆଣି ବିପ୍ଳବୀମାନଙ୍କ ସମକ୍ଷରେ ଉତ୍ତୋଳନ କଲା ।

୧୩୪୩ ଜଣ ବ୍ୟକ୍ତିଙ୍କୁ ଗିଲୋଟିନ୍‌ରେ ବିନାଶ କରି ଯାଇଥିଲା । ଚତୁର୍ଦ୍ଦଶ ଲୁଇଙ୍କ ସ୍ତ୍ରୀ ମାରୀ ଆଁତୋନେତଙ୍କୁ ମଧ୍ୟ ଏଠି ବଳି ଦିଆ ଯାଇଥିଲା । ବିପ୍ଳବୀ ନେତା ଡାନ୍‌ଟନ୍ ଓ ତାଙ୍କ ବନ୍ଧୁବର୍ଗଙ୍କ ଶିର ମଧ୍ୟ ଏଇଠି ଛିନ୍ନ ହୋଇଥିଲା । ମଦାମ୍ ରୋଲାଣ୍ଡ ଗିଲୋଟିନ୍‌ରେ ଚଢ଼ିଲା ବେଳେ କହିଥିଲେ—ମୁକ୍ତି, ତୋ ନାମରେ ପୃଥିବୀରେ କି ଭୟାବହ ପାପ କରି ନ ହୁଏ !

ଷୋଡ଼ଶ ଲୁଇଙ୍କ ରାଜତ୍ୱ କାଳରେ ବେଲି ପାରିସ୍‌ର ମେୟର୍ ଥିଲେ । ଲୋକେ ତାଙ୍କୁ ଖୁବ୍ ଘୃଣା କରୁଥିଲେ । ତାଙ୍କୁ ଗିଲୋଟିନ୍‌କୁ ନେଇ ନର୍ଦ୍ଦମାରେ ପୋତାଗଲା । ଶୀତ ଦିନ, ବର୍ଷା । ମସ୍ତକ ଆବରଣ-ହୀନ । ହସ୍ତ ପୃଷ୍ଠଦେଶରେ ବନ୍ଧା । ବେଲି ଗିଲୋଟିନ୍‌ରେ ଚଢ଼ିଲାବେଳେ ଥରୁଥିଲେ । ଜଣେ ଦର୍ଶକ ପଚାରିଲେ—ବେଲି, ତୁମେ ଥରୁଛ ? ବେଲି ଉତ୍ତର ଦେଲେ—ଖୁବ୍ ଶୀତ ହେଉଛି ବନ୍ଧୁ ।

ଦାର୍ଶନିକ ରୁବେସ୍‌ପାୟାର ! ଆତ୍ମା ଅମର, ଈଶ୍ୱରଙ୍କ ଅସ୍ତିତ୍ୱ ନିଃସନ୍ଦେହ । ତାଙ୍କର ଏଇ ଘୋଷା ୧୭୯୪ ଖ୍ରୀଷ୍ଟାବ୍ଦରେ ସୈନିକମାନେ ଅସ୍ତ୍ରଉତ୍ତୋଳନ କରି ମାଆମାନେ ପିଲମାନଙ୍କୁ ଟେକି ଧରି ଯୁବତୀମାନେ ପୁଷ୍ପ ବୃଷ୍ଟି କରି ଗ୍ରହଣ କରିଥିଲେ । ଠିକ୍ ଦୁଇମାସ ପରେ ଏ ରଙ୍ଗମଞ୍ଚର ପଟଚିତ୍ର ବଦଳି ଗଲା; ରୁବେସ୍‌ପାୟାରଙ୍କ ମସ୍ତକ ଗିଲୋଟିନ୍‌ରେ ଛିନ୍ନ ହେଲା ।

ଲାଉଭର୍ ତୋରଣରେ ସମ୍ରାଟ ଲୁଇ ଚତୁର୍ଦ୍ଦଶଙ୍କ ବିଜୟଗାଥା ପଟୁଆର ଖୋଦିତ, ଆମେ 'ଗ୍ରାଣ୍ଡ୍ ଡେ ମାର୍ସ୍'ରେ ପହଞ୍ଚିଲୁ । ଏହା ଗୋଟିଏ ପାର୍କ, ଜଗତ୍‌ପ୍ରସିଦ୍ଧ । ଏଠି 'ବାଷ୍ଟିଲେ' ଦୁର୍ଗ ପତନର

ବାର୍ଟିକୋଲୋ‌ବ ପାଳନ ହୋଇଥିଲା, ତିନି ଲକ୍ଷ ଫ୍ରାନ୍ସବାସୀ ବର୍ଷାରେ ତିନ୍ତି ତିନ୍ତି 'Vive le nation' ଧ୍ୱନି ଉଚ୍ଚାରଣ କରିଥିଲେ । ଏଠି ପ୍ରଥମେ ଆକାଶରେ ଉଡ଼ିବା ଚେଷ୍ଟା ହୋଇଥିଲା । ପଦାର୍ଥବିଦ୍ୟାବିତ୍ ଗୁର୍ଲସ୍ ବେଲୁନ୍‌ରେ ହାଇଡ୍ରୋଜେନ୍ ଭର୍ତ୍ତି କରି ଉଡ଼ିବା ଲାଗି ଉଦ୍ୟମ କରିଥିଲେ ।

## ମୋନାଲିସାର ହସ—

ସିନ୍ ନଦୀ କୂଳରେ ଲୁଭ୍ରର୍ ଯାଦୁଘର । ଏ ବିରାଟ ଯାଦୁଘରେ ଘୂରି ପାଞ୍ଚ ଘଣ୍ଟା ମଧ୍ୟରେ କଣ ବା ଦେଖିବ ? କେବଳ 'ଲିଓନାର୍ଦ୍ଦୋ ଦା ଭିନ୍‌ସି'ଙ୍କ ଛବି ଦେଖୁ ଦେଖୁ ଦିନ ଗଡ଼ିଗଲା; ତନ୍ମଧ୍ୟରେ ବିପୁଳ ଅକୃତ୍ରିମ ଓ ବର୍ଣ୍ଣସମ୍ଭାର ମଧ୍ୟରେ ଦେଖିଲି ସେଇ ଶ୍ରେଷ୍ଠ ଛବିଟି—ମୋନାଲିସାର ହସ ।

ହସନ୍ତି ସମସ୍ତେ, ତାହା ରୂପାୟିତ ହୁଏ ନାନା ପ୍ରକାରରେ କିନ୍ତୁ ଭିନ୍‌ସିଙ୍କ ପରି ହସକୁ ଏପରି ଅଲୌକିକ ଭାବେ କେହି ରୂପାୟିତ କରିପାରି ନାହାନ୍ତି । ଏଇ ହସର ସନ୍ତୋଷଜନକ ବ୍ୟାଖ୍ୟା ଏ ପର୍ଯ୍ୟନ୍ତ ହୋଇ ପାରିନାହିଁ । ଶ୍ରେଷ୍ଠ କଳାର ହୋଇଛି ଏକ ବିଶେଷତ୍ୱ; ତାକୁ ବ୍ୟାଖ୍ୟାର ସୀମା ଭିତରକୁ ଅଣାଯାଇ ପାରେ ନାହିଁ, ଯେତେ ବ୍ୟାଖ୍ୟା କଲେ ବି ଆହୁରି ବ୍ୟାଖ୍ୟା କରିବାର ଅବକାଶ ରହେ । ବ୍ୟାଖ୍ୟାରେ ବିଷୟ ହୁଏତ ଜଟିଳତର ହୋଇଯାଏ, କିନ୍ତୁ ତାର ମୂଳସୂତ୍ର ଧରା ପଡ଼େ ନାହିଁ । ଏହା ଭିନ୍‌ସିଙ୍କ ପ୍ରତିଭାରେ ଲୁକ୍କାୟିତ । ସମାଲୋଚକ ତାହା ଆବିଷ୍କାର କରି ପାରେ, କିନ୍ତୁ ତା ମଧ୍ୟରେ ବହୁତ କିଛି ଅନାବିଷ୍କୃତ ରହିଯାଏ, ଭବିଷ୍ୟତ ଲାଗି ।

'ମୋନାଲିସାର ହସ' ଆଙ୍କିବା ଲାଗି ଭିନ୍‌ସିଙ୍କୁ ଚାରିବର୍ଷ ଲାଗିଥିଲା; ଏହା ସେତେବେଳେ ଚାରି ହଜାର ସ୍ୱର୍ଣ୍ଣ ମୁଦ୍ରାରେ ବିକ୍ରୀତ ହୋଇଥିଲା; ପରେ ଫରାସୀ ସମ୍ରାଟଙ୍କ 'ଫଣ୍ଟେନ୍ବ୍ଲୁ' ପାଲେସ୍‌ରେ ରଖାହୋଇଥିଲା; ବକିଂହାମ୍‌ର ଡ୍ୟୁକ୍ ଏହା ନେବା ଲାଗି ଉଦ୍ୟମ କରି ବିଫଳ ହୋଇଥିଲେ । ତାପରେ ଏହା ନେପୋଲିଅନ୍‌ଙ୍କ ଶଯ୍ୟାଗୃହ ମଣ୍ଡନ କରିଥିଲା;

ଚାପରେ ଏକ ଯାଦୁଘରୁ ଚୋରି ହୋଇ ଯାଇଥିଲା । ୧୯୧୪ ଖ୍ରୀଷ୍ଟାବ୍ଦରେ ଏକ 'ଆଣ୍ଟିକ୍ ସପ୍'ରୁ କଣା ହୋଇ ଏବେ ଲାଉଭର୍ ମ୍ୟୁଜିଅମ୍‌ରେ ରଖା ହୋଇଅଛି; ଏହା ପୃଥିବୀର ସର୍ବଶ୍ରେଷ୍ଠ ଛବି ବୋଲି କେତେକ କଳା ସମାଲୋଚକ ମତ ପ୍ରକାଶ କରିଥାନ୍ତି ।

ବିଷାଦ ଏକ ବ୍ୟାଧି; ଅନେକ ଶିଳ୍ପୀଙ୍କୁ ଏହା ଗ୍ରାସ କରିଥାଏ । ବ୍ୟକ୍ତିଗତ ଦୁଃଖ ବେଳେ ବେଳେ କଳାକୁ ଅନୁପ୍ରାଣିତ କରେ, ଶିଳ୍ପୀ ତା ସହିତ ନିଜକୁ ଅସଂପୃକ୍ତ ରଖି ପାରନ୍ତି ନାହିଁ । ଏହା ଏକ ଦୁର୍ବଳତା । ବିଷାଦ କବଳରୁ ଭିନ୍‌ସିଙ୍କୁ ରକ୍ଷା କରିବା ଲାଗି ସଙ୍ଗୀତଜ୍ଞମାନେ ସଙ୍ଗୀତ ଗାଉଥିଲେ, କୌତୁକକାରୀମାନେ ନାନା ହାସ୍ୟକୌତୁକ କରୁଥିଲେ । ଯେପରି ଶିଳ୍ପୀ ଗତାନୁଗତିକ ଗୁମ୍ଫରେ ପଡ଼ି ନ ଯାନ୍ତି, ଅଲୌକିକ ସ୍ତରକୁ ଉନ୍ନୀତ ହୁଅନ୍ତି, ସେଥିଲାଗି ଏ ଚେଷ୍ଟା ହେଉଥିଲା । ପ୍ରକୃତରେ ମୋନାଲିସାର ହାସ ସାଧାରଣ ପର୍ଯ୍ୟାୟ ମଧ୍ୟରେ ପଡ଼ିଲା ନାହିଁ, ଏହା ଅଲୌକିକ ସ୍ତରକୁ ଉଠିଗଲା । ଜଗତର କୌଣସି ହାସ ସହିତ ଏହାର ମେଳ ନାହିଁ, ଅମେଳ ମଧ୍ୟ ନାହିଁ ।

କିନ୍ତୁ ଏ ମୋନାଲିସା କିଏ ? କେହି କେହି ଏହାକୁ ତାଙ୍କର ଜଣେ ପୃଷ୍ଠପୋଷକଙ୍କ ପେଣ୍ଟିଂ ବୋଲି ମନେ କରନ୍ତି । କିନ୍ତୁ ମୋନାଲିସା ଫ୍ଲୋରେନ୍‌ସର ଜଣେ ନାରୀ, ଶିଳ୍ପୀଙ୍କର ସୁପରିଚିତା । ତାଙ୍କର ଜନ୍ମ ୧୪୭୯ରେ; ୧୪୯୫ରେ ସେ ବିବାହ ହୋଇଥିଲେ । ତାଙ୍କର ବୟସ ଯେତେବେଳେ ୨୪ ବର୍ଷ, ଭିନ୍‌ସି ତାଙ୍କୁ ଅଙ୍କନ କରିଥିଲେ । ଜଣେ ସମାଲୋଚକ ଯଥାର୍ଥରେ ଲେଖିଛନ୍ତି—ଶିଳ୍ପୀ ଗୋଟିଏ ଜୀବନ୍ତମୁଖକୁ କେବେ ଏତେ ଉଚ୍ଚସ୍ଥାନ ଦେଇ ନାହିଁ !

'ଲାଉଭର୍' ଯାଦୁଘରୁ ସେଇ ହାସଟି ଦେଖି ମୁଁ ଫେରିଲି । ଯଦି କିଏ ମୋତେ ପଚାରେ—ଫ୍ରାନ୍‌ସରୁ କଣ ଆଣିଲ ? ତାର ଉତ୍ତର—

ମୋନାଲିସାର ହାସ ।

ଯାଦୁଘରେ ମାଇଲ୍ ମାଇଲ୍ ବୁଲି ପାଦ ଥକିଗଲା । ଗୋଟାଏ ବେଳକୁ ଶେଷ ହେଲା 'ଅମ୍ଷ୍ଟାର୍ଡ଼ାମ୍'କୁ ଟାକ୍ସିରେ ଫେରିବା ଏକ ଅପବ୍ୟୟ । ନିକଟରେ ହୋଟେଲ୍ ଖୋଜି ବସିଲି । ସିନ୍ ନଦୀ ପୋଲ ଉପରେ ଆଉ ପାଖକୁ ଗଲି; ହୋଟେଲ୍ ! 'ଏଠି କେବଳ ରହିବାର ବ୍ୟବସ୍ଥା ଅଛି, ଖାଇବାର ନାହିଁ ।' 'ହୋଟେଲ୍'ର ଏଇ ଅର୍ଥ ଆମେରିକାରେ ଚଳେ; କିନ୍ତୁ ଇଂଲଣ୍ଡ ଓ ଅନ୍ୟ କେତେକ ଦେଶରେ ଭିନ୍ନ । ମୁଁ ଗୋଟିଏ ରେଷ୍ଟୋରାଁରେ ପହଞ୍ଚିଲି ।

ମୁଁ ମଦ ପିଏ ନାହିଁ ଶୁଣି ପରିବେଷିକା ଫରାସୀ ଯୁବତୀ ହସି ହସି ଗଡ଼ିଗଲା । 'ମଣିଷ ହୋଇ ମଦ କେମିତି ନ ପିଅ ?'

'ଆମ ଦେଶରେ ଯେ ମଦ ନ ପିଅନ୍ତି, ତାଙ୍କୁ ଆମେ ଭଲ ମଣିଷ କହୁ ।' ସେ ଆହୁରି ହସିଲା—ମାନେ ସେ ତ ମଣିଷ ନୁହେଁ, ଭଲ ମନ୍ଦ କଥା ପଚାରୁଛି ? ଗୋରୁ ଘୋଡ଼ା ପାଣି ପିଅନ୍ତି, ଆଶ୍ଚର୍ଯ୍ୟ, ଏ ରେଷ୍ଟୋରାଁକୁ ଏପରି ଲୋକ କେବେ ଆସି ନାହାନ୍ତି ।'

ସେ ବାଉଁଶ ମୂଳ ପରି ପାଞ୍ଚ ହାତ ଲମ୍ବର ଗୋଟାଏ ପାଉଁରୁଟି କଚ୍ କଚ୍ କରି କାଟିଲା; ପାଉଁରୁଟି, କଞ୍ଚା କଟା ଟମାଟୋ, ଖଣ୍ଡେ ସାମନ୍ ମାଛ ଭଜା, ଟିକିଏ ଧନିଆଁ ପତ୍ର ପରି କ ପତ୍ର, ଗୋଟିଏ ଅଣ୍ଡୁ—ତାର ଜେଲ୍ସ୍—ବଟାବଟି ମସଲା କଟୁ; ଶେଷକୁ ଟିକିଏ ମିଠା ଅନ୍ନ ପାଏସ୍; ଏତିକରେ ଲଞ୍ଚ୍ ଶେଷ ହେଲା ।

ମୋ ପାଖରେ ଗୋଟିଏ ଗେଣ୍ଡା ପ୍ଲେଟ୍—ଗୋଟା ଗୋଟା ଶିଙ୍ଘା ଗେଣ୍ଡା, ତା ମୁହଁରେ ମସଲା ଗୁଣ୍ଡ ଦେଇ ଚାମୁଚରେ କାଢ଼ି ଜଣେ ଖାଉଥାଏ । ଲଞ୍ଚ୍ ବାବଦକୁ ମୋତେ ଦଶଫ୍ରାଙ୍କ୍ ଦେବାକୁ ପଡ଼ିଲା—ଅବଶ୍ୟ ଟିପ୍ସ୍ ଓ ପରିବେଷଣ ଫି ନାହିଁ । ଯୁବତୀ ମୃଦୁହାସ୍ୟରେ ପଚାରିଲା—'ଗୁଡ୍ ?' କହିଲି—ହଁ, ଧନ୍ୟବାଦ; ମନେ ମନେ ଭାବିଲି—ଖାଦ୍ୟ ନୁହେଁ, ତୁମରି ମନ ଫୁଲଣିଆ ହସ !

## ଆଇଫେଲ୍ ଟାୱାର୍

ଏହା ପ୍ୟାରିସ୍‌ର ସାବଷ୍ଟାନ୍ତ ନିର୍ମାଣ ମଧ୍ୟରେ ଉଚ୍ଚତମ ଓ ପ୍ରସିଦ୍ଧତମ । ଏହାର ସୂଚୀସୂକ୍ଷ୍ମ ଅଗ୍ରଭାଗ ପ୍ୟାରିସ୍‌ର ଆକାଶକୁ ଗମ୍ଭୀରଭାବେ ଭେଦ କରିଛି । ୧୮୮୯ ଖ୍ରୀଷ୍ଟାବ୍ଦରେ ଏହା ନିର୍ମିତ, ଏହାର ଉଚ୍ଚତା ୭୮୪ ଫୁଟ୍; ଏଲିଭେଟରରେ ଏହା ଉପରକୁ ଉଠିବା ଲାଗି ସାତ ଫ୍ରାଙ୍କ୍‌ର ଟିକେଟ୍ କିଣିବାକୁ ପଡ଼େ । ପାଗ ସଫା ଥିଲେ ଏହା ଉପରୁ ୪୨ମାଇଲ ପର୍ଯ୍ୟନ୍ତ ଦୃଶ୍ୟ ଦେଖିହୁଏ; ପ୍ୟାରିସ୍‌ର ରାସ୍ତା ଘାଟ ମାନଚିତ୍ରର ଗାର ପରି ଦିଶେ । ୧୯୧୮ରୁ ଏହି ଟାୱାର ରେଡ଼ିଓ ସମ୍ବାଦ ପ୍ରେରଣ ଲାଗି ବ୍ୟବହୃତ ହେଉଅଛି । ସେନ୍ ନଦୀ କୂଳରେ ଏହାର ଅବସ୍ଥିତି ଏହାକୁ ଏକ ସ୍ୱତନ୍ତ୍ର ଗୌରବଶ୍ରୀ ପ୍ରଦାନ କରିଅଛି ।

ଉପର ବେଳା ଆଉ କୁଆଡ଼େ ବୁଲିଯିବାକୁ ମନ ହେଲନାହିଁ । ମୁଁ କିଛି ପଢ଼ାପଢ଼ି କଲି । ସନ୍ଧ୍ୟାବେଳେ ହୋଟେଲ ପାଖ ବଜାରକୁ ଟିକିଏ ବୁଲିଗଲି । ସହରଯାକର ଲୋକେ ଏଠି ବା ଫୁଟ୍‌ପାଥରେ ! ଟିକିଏ କୋଉଠି ଠିଆ ହୋଇଯିବାର ଉପାୟ ନାହିଁ । ସଜ ଭଜା ଚିନା-ବାଦାମର ଗ୍ରାହକ ଏଠି ଅଳ୍ପ ନାହାନ୍ତି । ରେସ୍ତୋରାଁରେ ଗୋଟିଏ ହେଲେ ସିଟ୍ ଖାଲି ନାହିଁ; ପାନ ସଙ୍ଗେ ସଂଳାପ ଖୁବ୍ ଜମିଛି । ଫେରିବାଲା ଗୋଛାଏ ପେନ୍‌ସିଲ ଧରି ଦେଖାଉଛି—ନିଅ, ଗୋଟିଏ ନିଅ । ମିନତି-ଭରା ଗୁହାରୀ ତାର । କେହି ସ୍ତ୍ରୀ ଲୋକ ବାକ୍‌ସଟିଏ ଧରି ବୁଲୁଛି । ପଇସା ଗଳେଇବା ଫୋଡ଼ ଅଛି ସେଥିରେ । ବାକ୍‌ସରେ ଗୁହ, କୋଧେ କୌଣସି ଅନୁଷ୍ଠାନ ଲାଗି ଚନ୍ଦା ଆଦାୟ କରୁଛି । ଜଣେ ପୁରୁଣା ଡାକ ଟିକେଟ୍ ବିକୁଛି, ଆଉ ଜଣେ ବୁଲଉଛି ଚକ୍ର, ସାମ୍ନାରେ ତାଆସ ବିଛାଇଛି । ଲୋକେ ପଇସା ପକାଉଛନ୍ତି । କିଏ ହାରୁଛି; କିଏ ବା ଜିତୁଛି । ପୁଲିସ୍ ଆଖି ଆଗରେ ଜୁଆ ଖେଳ ଚାଲିଛି । ଜନ ଗହଳକୁ ଭ୍ରୂକ୍ଷେପ ନ କରି ଯୁବକ ଯୁବତୀ ପରସ୍ପର ଅଧରାମୃତ ପାନ କରୁଛନ୍ତି ।

## ଲିଡୋ

ରାତ୍ରିଜଣରେ ଗୋଟିଏ ଗୋଷ୍ଠୀ, ରେସ୍ତୋରାଁରେ ବସିବାମାତ୍ରେ ଗୁଚ୍ଛ ବୋତଲ୍ ସାଁପେନ୍ ଆସିଗଲା । ମୋ ଭାଗ ମୁଁ ଫେରାଇ ଦେବାକୁ ବସିଲି;

ତା ବଦଳରେ ସ୍ପେଶାଲ କୋକାକୋଲା । 'ସବୁ କୋକାକୋଲା ଖାଇବ, ଅଧ ବୋତଲେ ସାମ୍ପେନ୍ ଫେରାଇ ନେବ'—ଏହା ଘୋଷଣା କରିଗଲା, ମୋ ଗୋଷ୍ଠୀର ତିନିଜଣ ଟିକିଏ ବ୍ୟସ୍ତ ହୋଇପଡ଼ିଲେ; ସାମାନ୍ୟ କୋକାକୋଲା ସକାଶେ ଅଧ ବୋତଲେ ସାମ୍ପେନ୍ କଟିଯିବ । ସେମାନେ ଦୁଃଖିତ ହେବା ଦେଖି ମୁଁ ବୋତଲେ ପାଣି ମଗାଇଲି; ମିଳିଲା ଏକାବେଳକେ ତିନିଜଣଙ୍କର ଧନ୍ୟବାଦ ।

ତାପରେ କ୍ଲାରିଓନେଟ୍ ଓ ତାନପୁରା ବାଜିଉଠିଲା । ଆମ ବନ୍ଧୁ-ବାନ୍ଧବୀମାନଙ୍କର ପାଦ ଉଠିଲା । ସେମାନେ ଯୋଡ଼ି ଯୋଡ଼ି ହୋଇ ବାହାରି ପଡ଼ିଲେ; ଆଗରୁ ଡ୍ରେସ୍ ପିନ୍ଧି ଆସିଥିଲେ; ଉପରେ କୋଟ ଆବରଣଟିଏ ମାତ୍ର ଥିଲା ।

ରଙ୍ଗମଞ୍ଚ ଉପରେ ତ ବାଜାବାଲା; ପଚାଶ ଷାଠିଏ ଯୋଡ଼ି ଲୋକ ନାଚିବା ଲାଗି ଜାଗା କାହିଁ ? ଏକ ହଜାର ଦର୍ଶକ, ଖାଉଥାନ୍ତି, ଏଣେ ଏ ମଜା ଦେଖୁଥାନ୍ତି । ଏ ନାଚୁଆ ଦଳଟି ଖାଲି ଯୋଡ଼ି ଯୋଡ଼ି ହୋଇ ଦୋହଲି ଯାଇଲେ, ଘନ ଘନ କରତାଳି ପଡ଼ୁଥାଏ । ହସର ତୋଫାନ ଉଠୁଥାଏ । ବୁଢ଼ାଙ୍କ ସଙ୍ଗେ ଯୁବତୀଙ୍କ ନାଚ ବଡ଼ ବିଚିତ୍ର ଦିଶୁଥାଏ ।

ଯୋଉ ରଙ୍ଗମଞ୍ଚ ଉପରେ 'ଧିନା ତାକ୍ ତାଥି କଟା' ମାଦଳ ବାଜୁଥିଲା, ସେ ହଠାତ୍ କୁଆଡ଼େ ଉଭେଇ ଗଲା, ଆମ ଚଉକାସବୁ ତଳକୁ ଦବିଲା, ଆଶ୍ଚର୍ଯ୍ୟ, ଆମ ସାମ୍ନାରେ ଗୋଟିଏ ନୂତନ ରଙ୍ଗମଞ୍ଚ ଉଠିଲା । ବରଫ ବିଛା ହୋଇଛି, ତା ଉପରେ ଯୁବତୀ 'ସ୍କିଙ୍ଗ୍' ନୃତ୍ୟ ପ୍ରଦର୍ଶନ କଲେ । ଚରଣର ଲଘୁତା ଓ ନୃତ୍ୟ କୌଶଳ ମନରେ ତାକ ଆଣିଲା ।

ଲୋକଙ୍କର ଯେଉଁସବୁ ପାର୍ଥିବ ଘଟଣା ପ୍ରତି ଆକୃଷ୍ଟ, ଯାହା ବିସ୍ମୟ ଓ ରୋମାଞ୍ଚ ସୃଷ୍ଟି କରେ, ଭ୍ରମଣକାରୀର ଅବସନ୍ନ ମନକୁ ଆନନ୍ଦୋଦ୍‌ବେଳିତ କରେ, ସେହିପରି ବିଷୟସବୁ ନିଡୋରେ ବିଛା ଯାଇଛି ।

ଉଲଗ୍ନା ଯୁବତୀ ଦର୍ପଣ ସାମ୍ନାରେ ପ୍ରସାଧନରତା । ହଠାତ୍ ସେଠି ଡାକୁଦଳ ପ୍ରବେଶ କରି ଯୁବତୀକୁ ହରଣରୂଳକ୍ କରି ଭେନ ଗଲେ, ଘାଣବକ ଅତ୍ୟାଗ୍ରହର ଲାଗି ଉଦ୍ୟମ କଲେ; ପୁଲିସ ଫଉଜ ସେଠି ପହଞ୍ଚିବା ମାତ୍ରେ ଚରବାଗ ଯୁଦ୍ଧ ଆରମ୍ଭ ହୋଇଗଲା; ଧୂଳିସବାନ୍ଧୁମା ପଛଘୁଞ୍ଚା ଦେଲେ; ଆଘାତ ବଳପୂର୍ବର ଉତ୍‌ଫୁଲ୍ଲ ହେଉ ହେଉ ପୁଲିସ୍‌ମାନେ ପୁଣି ଆକ୍ରମଣ କଲେ; ଏଥର ଯୁଦ୍ଧରେ ଡାକୁ ସର୍ଦ୍ଦାର ପରାସ୍ତ ଓ ମୃତ ହେଲା । ଏ ରୋମହର୍ଷଣକାରୀ ଦୃଶ୍ୟ ଦର୍ଶକମାନଙ୍କୁ ଚମତ୍କୃତ କରେ ।

ଅନ୍ୟ ବିଷୟଟି ପ୍ରମ୍ଭ ସେକ୍ସପିୟର—ବର, କନ୍ୟା, ପରିଚାରିକା, ମଧୁଶଯ୍ୟା, କନ୍ୟା ହରଣକାରୀ ଏତିକ କହିଲେ ଏକାଙ୍କିକାର କଥାବସ୍ତୁ ସହଜରେ ଧରା ପଡ଼ିଥାଏ; ନାଟକୀୟ କୌତୂହଳ ସୃଷ୍ଟି କରିବା ଚେଷ୍ଟା ସଫଳ ହୋଇଛି; ଅଭିନୟ ଅନବଦ୍ୟ ।

ସେକ୍ସପିୟର ଗ୍ରେଭ, ତାର ରକ୍ଷିତା; ଗ୍ରାଜଲର ଏକ ଗଳି—ଗ୍ରାମୀଣ ଓ ତାର ପ୍ରେମିକା, ଆଦିବାସୀ ସର୍ଦ୍ଦାର, ଗୁଣିଆ, ନାହାକ, ଅଶ୍ୱାରୋହୀ ସୈନିକ; ପ୍ୟାରିସର ଏକ ରାତି, ଶଯ୍ୟାସୁନ୍ଦରୀ, ରାତିର ରୋମିଓ, ଅଧରାତିର ପ୍ରେମିକ, ଯୁବତୀ ଜୀବନର କାହାଣୀ କାଟି, ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦରୀ—ଏହି ସୂଚନାରୁ ବିଷୟ କିପରି ରୋମାଞ୍ଚକର ଓ ଚମକପ୍ରଦ ତାହା ଅନୁମିତ ହୋଇପାରେ ।

ଊନବିଂଶ ଶତାବ୍ଦୀର ଫରାସୀ ସାମାଜିକ ଜୀବନର ଚିତ୍ର କୌତୂହଳ ସୃଷ୍ଟି କରେ । ସେ ଦେଶର ରାଜକୁମାର, ଆମ ରାଜକୁମାର ବା ସାମନ୍ତ ସନ୍ତାନଙ୍କ ସହିତ ତାର ଯଥେଷ୍ଟ ସାମଞ୍ଜସ୍ୟ ଅଛି । ତାଙ୍କର ଅନ୍ତଃପୁର ରାଜ ପ୍ରାସାଦରେ । ତା ଛଡ଼ା ତାଙ୍କର ଅନ୍ୟ ଏକ ପୁର ରହିଛି, ପ୍ରମୋଦୋଦ୍ୟାନରେ । ଅନ୍ତଃପୁରିକା ରାଣୀ ବା ସାମନ୍ତାଣୀ ଜାଣେ—ସେଠି କ କାବ୍ୟ ଦର୍ଶନର ଚର୍ଚ୍ଚା ହୁଏ । କିନ୍ତୁ ନାରୀର, ପୁରୁଷ ପୁଅ କେତେବେଳେ କଣ କରି ପକାଉଛି ।

ତାହା ଧର୍ତ୍ତବ୍ୟ ନୁହେଁ । ସାଧାରଣ କୁଳବଧୂର ଇଜ୍ଜତମହତ କିଏ ରକ୍ଷିତ ହୋଇ ପାରୁଥିଲା ? ଯେ ତାର ଶ୍ୟେନ ଦୃଷ୍ଟିରେ ପଡ଼ିଲା, ତା ପାଠ ସରିଲା, ଆତ୍ମରକ୍ଷାର ଉପାୟ କିଏ ? ଯେ ରକ୍ଷା କରନ୍ତା ସେ ନିଜେ ହିଁ ଭକ୍ଷକ । ଝିଅ ବଡ଼ ହେଲେ ପ୍ରଥମେ ରାଜୋପଭୋଗ୍ୟା, ସମ୍ଭ୍ରାନ୍ତ ନାରୀର ମହତ୍ତ୍ୱର ଆଦର୍ଶ ହେଲେ ବି ତାକୁ ରକ୍ଷା କରିପାରୁ ଥିଲେ କେତେଜଣ ? ସହସ୍ର ଶଯ୍ୟାର ନାୟକ, ଭୀରୁ, କାମୁକ, ରାଜା ବା ସାମନ୍ତର ଉଚ୍ଚାକାଂକ୍ଷା—ବହୁ ଉପଭୋଗ; ତର୍ଷିରେ ତ ସୀମା ନାହିଁ; ନୀତି ନିୟମ କେବଳ ଦୁର୍ବଳ ଲାଗି । ସେ ତାକୁ ମାନି ଚଳେ । ଯେ ଗଢ଼େ ସେ ସେସବୁ ପ୍ରଥମେ ଭାଙ୍ଗେ । ବଡ଼ଲୋକଙ୍କର ସୁଯୋଗ ଏ । ଆଗେ କେତେକ ବଡ଼ଲୋକ ଥିଲେ; ଏବେ ବହୁ ପଇସା ଖର୍ଚ୍ଚ କରି ଜୀବନ ଉପଭୋଗ କରିବାକୁ ବ୍ୟଗ୍ରାନ୍ତ ଅନେକ ।

ଆଗେ ରାଜା ବା ସାମନ୍ତଙ୍କ ପ୍ରାଙ୍ଗଣରେ ବେଶ୍ୟା ନୃତ୍ୟ ହେଉଥିଲା, ଏବେ ସର୍ବ ସାଧାରଣ କ୍ଷେତ୍ରରେ ହେଉଛି । କିନ୍ତୁ ଲାଜୋର ସୁନ୍ଦରୀମାନେ ବେଶ୍ୟା ନୁହନ୍ତି, ସେମାନେ ବାରବିଳାସିନୀ ହୋଇପାରନ୍ତି । ସୌନ୍ଦର୍ଯ୍ୟର ଦ୍ୱାର ସର୍ବସାଧାରଣଙ୍କ ଲାଗି ଖୋଲା ହୋଇଯାଇଛି । ଆଗେ ରାଜା, ବାଦ୍‌ସାହା ବା ସାମନ୍ତମାନେ ସୁନ୍ଦରୀମାନଙ୍କୁ ବାଛି ଅନ୍ତଃପୁରକୁ ଘେନି ଯାଉଥିଲେ । ଏବେ ସେମାନେ ସିନେମାରେ, ଟେଲ୍‌ଭିଜନରେ, ରେଷ୍ଟୋରାଁରେ, ବିପଣିରେ; ବେଶ୍ୟା ନୁହନ୍ତି ସେମାନେ, ବାରବିଳାସିନୀ । ନୃତ୍ୟ ଗୀତ, କଥା ଓ କଳାରେ ସେମାନେ ପ୍ରାଣ ମଜାଇ ନେଉଛନ୍ତି ।

ଊନବିଂଶ ଶତାବ୍ଦୀର ବହୁ ଶଯ୍ୟାର ନାୟିକା, ରାଜା ବା ସାମନ୍ତ, ନାଗରିକ ବା ଗ୍ରାମୀଣମାନଙ୍କୁ ତତ୍କାଳୀନ ବେଶ ପ୍ରସାଧନରେ ରଙ୍ଗମଞ୍ଚରେ ଉପସ୍ଥାପିତ କରାଯାଉଛି । ବେଶଭୂଷଣ ବହୁଳ ଓ ବର୍ଣ୍ଣାଢ୍ୟ । ପ୍ରେକ୍ଷକୁ ଉତ୍ତେଜିତ କଲା ଭଳି ମଧ୍ୟ ଯୁଗର ଫାରସୀ ଗୀତ ଖୁବ୍ ବୋଲା ଯାଉଛି; ଯେପରି ଭଞ୍ଜ ଓ କବିସୂର୍ଯ୍ୟଙ୍କ ଗୀତ ସେ ସବୁ ସେହିପରି । ଗୀତ ଓ ମଦ୍ୟ ପ୍ରାୟ ଏକଜାତୀୟ ଦ୍ରବ୍ୟ । ଗୋଟିଏ କର୍ଣ୍ଣରେ ଅନ୍ୟଟି ମୁଖରେ ପାନ କରାଯାଏ ଯାହା, ସଙ୍ଗୀତ, ନୃତ୍ୟ ଓ ବାଦ୍ୟରେ ମନ ଝୁଲିଲା ପରି ରହେ ।

ପ୍ୟାରିସ୍‌ର 'ଶାଁମ୍ପ ସ ଇଲିସଜ୍‌'ର ଭୂଗର୍ଭରେ ଏହି ରଙ୍ଗଭୂମି, ତଳକୁ ଓହ୍ଲାଇ ଯିବାକୁ ହୁଏ । ୧୯୨୯ ଖ୍ରୀଷ୍ଟାବ୍ଦରେ ଏହି ରେସ୍ତୋରାଁରେ ଟର୍କିସବାଥ୍‌ (ସ୍ୱେଦସ୍ନାନ) ଓ ସ୍ୱିମିଂପୁଲ୍‌ ଓ ୧୯୪୫ରେ ନୃତ୍ୟଗୀତର ବ୍ୟବସ୍ଥା ହେଲା । ଏଠା ଉଲଙ୍ଗ ନୃତ୍ୟ, ଗୀତ, ଅଭିନୟ ବା 'ଲିଡୋ' ଏବେ ଜଗତପ୍ରସିଦ୍ଧ ହୋଇଅଛି । ଜଣେ ସମାଲୋଚକ ଲେଖିଛନ୍ତି— କେହି ବିଦେଶୀ ପ୍ୟାରିସ୍‌ ଆସିଲେ ମୁଖ୍ୟତଃ ଦୁଇଟି ଜିନିଷ ଦ୍ୱାରା ବିଶେଷ ଆକୃଷ୍ଟ ହୁଏ—ଗୋଟିଏ ଆଇଫେଲ୍‌ ଟାୱାର, ଅନ୍ୟଟି ଲିଡୋ । ଏହି ଲିଡୋ ପୃଥିବୀର ସର୍ବଶ୍ରେଷ୍ଠ ।

ପ୍ରତିରାତ୍ର ମଦ୍ୟ ବିକ୍ରୟ ଚାଲିଥାଏ, ତା ସହିତ 'ଲିଡୋ' ମାଗାଜିନ୍‌; ଏଥିରେ ଉଲଙ୍ଗ ଯୁବତୀମାନଙ୍କ ବିଭିନ୍ନ ନୃତ୍ୟଭଙ୍ଗୀ ପ୍ରକାଶିତ । ଜଣେ ଫଟୋଉଠାଳି ସଙ୍ଗେ ସଙ୍ଗେ ଯାତ୍ରୀମାନଙ୍କ ଫଟୋ ଉଠାଇ ଦେଉଥାଏ । ଦେୟ ଦଶର ଫ୍ରାଙ୍କ୍‌ । ଦର୍ଶକ ଉଲଙ୍ଗ ନୃତ୍ୟର ଫଟୋ ଉଠାଇବା ମନା; ନଇଲେ ହାତେ ହାତେ ଯେପରି କାମେରା, ଫିଲ୍ମ ସମେତ ଗୋଳମାଳ ସୃଷ୍ଟି ହେଉଥାନ୍ତା ।

ଯୁବତୀର ଯୌବନ ଦର୍ଶନ ଲାଗି ଯୁବକର ଯେ ଏକ ସନାତନ ବୁଭୁକ୍ଷା ରହିଛି, ତାହା ଚରିତାର୍ଥ କରି ଯାଇଛି ଏହି ଲିଡୋରେ । ଭଞ୍ଜ ଅଶ୍ଳୀଳ କବିତା ଲେଖିଗଲେ ବୋଲି ଯେଉଁମାନେ ସମାଲୋଚନା କରନ୍ତି, ସେମାନେ ଲିଡୋ ଦେଖିବା ଉଚିତ । ଜଗତର ଯୁବକ ଯୁବତୀ, ବୃଦ୍ଧ ବୃଦ୍ଧା କିପରି ଏହା ଉପଭୋଗ କରୁଛନ୍ତି, ତାହା ଦର୍ଶନୀୟ । ଭ୍ରମଣକାରୀଙ୍କ ଲାଗି ଏଇଭଳି ଆମୋଦ ପ୍ରମୋଦର ବ୍ୟବସ୍ଥା ଥିବାରୁ ପ୍ୟାରିସ୍‌ ନାନା ଦିଗରୁ ଅନାକାଂକ୍ଷିତ ହେଲେ ହେଁ ଏଠି ଏତେ ଲୋକ ଭିଡ଼ । ପନ୍ଦର ଦିନ ଆଗରୁ ଟିକେଟ ସଂଗ୍ରହ କରିବାକୁ ହୁଏ—ମୂଲ୍ୟ ୨୨ ଡଲାର୍‌ !

କାଳିଦାସଙ୍କର ଶ୍ଳୋକାଂଶ ମନେ ପଡ଼ିଲା—

ବିକାର ହେତୌ ସତି ବିକ୍ରିୟନ୍ତେ
ଯେଷାଂ ନ ଚେତାଂସି ତ ଏବ ଧୀରାଃ ।

ବକାରର ନାନା କାରଣ ଥିବା ସତ୍ତ୍ୱେ ଯାହାର ଚନ୍ଦ୍ର ନିର୍ବିକାର ରହିପାରେ, ସେ ପ୍ରକୃତରେ ସଂଯମୀ । କିନ୍ତୁ ଅନେକ ନରତ୍ସନା ଉଲଗ୍ନା ଏଇ ଯୁବତୀମାନଙ୍କୁ ରଙ୍ଗମଞ୍ଚରେ ନୃତ୍ୟ କରୁଥିବାର ଦେଖି ମୁଣ୍ଡ ସଂକୋଚରେ ତଳକୁ ନଇଁଗଲା । କିନ୍ତୁ ନର୍ତ୍ତକୀମାନଙ୍କ ମୁଖରେ ମୃଦୁ ହାସ୍ୟ, ସେମାନେ ନିର୍ବିକାର; ଲଜ୍ଜା, ସଂକୋଚ, ଦୁର୍ବଳତା ସେମାନେ ଜୟ କରିଛନ୍ତି । ସତେ ବା ମାଇକେଲ୍ ଆଞ୍ଜେଲୋଙ୍କ ମର୍ମର ନିର୍ମିତ ଗ୍ରୀକ୍ ଦେବୀ ମୂର୍ତ୍ତି । ଏମାନେ କେବଳ ଶ୍ରୀମତୀ ନୁହନ୍ତି, ଶକ୍ତିମୟୀ; କଠୁ କୁସ୍ତି କସରତ୍ ପିଟିମିଡ୍, ଅସାଧ୍ୟ ସାଧନ, ଅପୂର୍ବ ନୃତ୍ୟ ହିଲ୍ଲୋଳ ପ୍ରାଣକୁ ଉଦ୍‌ବେଳିତ କରିବାକୁ ଲାଗିଲା । ଆଦ୍ୟ ମୁହୂର୍ତ୍ତର କାମାନ୍ଧକାର ଦୂର ହୋଇଗଲା ପରେ ଅଦ୍ଭୁତ ଶିଳ୍ପ କଳା ମାଧୁରୀରେ ପ୍ରାଣ ଉତ୍ଫୁଲ୍ଲ ହୋଇ ଉଠେ । ବେଶଭୂଷଣର ବର୍ଣ୍ଣ ବୈଭବ, ଅଳଙ୍କାରର ଚାକଚକ୍ୟ, ରଙ୍ଗୀନ୍ ଆଲୋକ ସଂପାତ ମଧ୍ୟରେ ଚମତ୍କାର ରୂପଶ୍ରୀର ହିଲ୍ଲୋଳିତ ଲୀଳା ଅପୂର୍ବ ସ୍ୱପ୍ନ ବିଳାସ ସୃଷ୍ଟି କରେ; ଜୀବନ ଉତ୍ତୀର୍ଣ୍ଣ ହୁଏ, ଯୌବନ ଜୟଯୁକ୍ତ ହୁଏ । ଏତେ ରୂପ, ଏ ରୂପ କାମନାର ନୁହେଁ, ଏ ଯୌବନ ଉପଭୋଗର ନୁହେଁ—ମନକୁ ଘେନିଯାଏ କେଉଁ ବିଶ୍ୱକର୍ମାର ଶିଳ୍ପ ପୁରୀକୁ —ଯେଉଁଠି ସୌନ୍ଦର୍ଯ୍ୟ ଶକ୍ତି ସଙ୍ଗେ ହାତ ମିଳାଇଛି; ଯେ ଆରାଧନାର ସାଧନାର, ଧ୍ୟାନର, ଧାରଣାର; ସେ ଦୁର୍ବଳ କଳ୍ପନାର ନୁହେଁ, ସୁଦୃଢ଼ ବାସ୍ତବତାର; ସୁନ୍ଦରତମଙ୍କର ସହସ୍ରଦଳ ପଦ୍ମପୀଠ; ସୌନ୍ଦର୍ଯ୍ୟ ଜୀବନକୁ ଗଢ଼େ, ଭାଙ୍ଗେ ନାହିଁ; ଦୁର୍ବଳକୁ ସବଳ କରେ, ନିସ୍ପନ୍ଦକୁ ପ୍ରାଣ ପ୍ରାଚୁର୍ଯ୍ୟରେ ସ୍ପନ୍ଦିତ କରେ । ମନ କେଉଁ ସୁଦୂର ରାଜ୍ୟକୁ ଭାସିଗଲା ପରି ଲାଗିଲା— ଫେରିଲା ବେଳକୁ ଉଲଗ୍ନ ନୃତ୍ୟ ଶେଷ ହୋଇଛି—ଜଣେ ସୁନ୍ଦରଶିଖା ରୂପସୀ ନୃତ୍ୟ କରୁ କରୁ କାନ୍ଧ ଉପରୁ ବୋତାମ ଫିଟିଗଲା । ଲଜ୍ଜା, ସଂକୋଚରେ ସେ ରଙ୍ଗମଞ୍ଚ ତ୍ୟାଗ କରି ଚାଲିଗଲା ! ଉଲଗ୍ନାର ପୁଣି ଏତେ ଲଜ୍ଜା । ଏ ଦୃଶ୍ୟଟି ଅଦ୍ଭୁତ କୌତୁକ ଓ କୌତୂହଳ ସୃଷ୍ଟି କରିଥିଲା ଦର୍ଶକ ମନରେ ।

ଦୃଶ୍ୟତ, ମଦ୍ୟ, ଯୁବତୀ, ରେସ୍ତୋରାଁ ଛାଡ଼ି ରାଜ ପଥକୁ ଆସିଲୁ ପ୍ରାୟ ବାରଟା ରାତିରେ । ପାଦ ଟଳମଳ, ମନ ନିଦ୍ରାଳୁ ।

# ଡ୍ରାଇଭରଙ୍କ ବିଦାୟ

ଡ୍ରାଇଭର୍ ଆଜ ବସ ନେଇ ଫ୍ରାନ୍ସରୁ ହଲାଣ୍ଡ ଫେରିଯିବେ, ସେଠେ ଦୁଇଦିନ ପରେ ଅନ୍ୟ ଗୋଟିଏ ଦଳକୁ ନେଇ ଆସିବେ । ବିଦାୟ ପୂର୍ବରୁ ସେ କହିଲେ –'ଦୁଇ ସପ୍ତାହରୁ ଅଧିକ ହେଲା, ଆମେ ସମସ୍ତେ ଏଇ ଚଳନ୍ତା ଘରଟିର ବାସିନ୍ଦା ଥିଲେଇଁ । ଆପଣମାନେ ସମସ୍ତେ ଆରାମ୍‌ରେ ବସି ଦୃଶ୍ୟ ଦେଖୁଥିଲାବେଳେ ମୋ ମୁଣ୍ଡ ଘୂରୁ-ଥିଲା—କେମିତି ନିରାପଦରେ ଆପଣମାନଙ୍କୁ ନେଇ ଯଥା ସ୍ଥାନରେ ପହଞ୍ଚିବି । ମୋ ଅସାବଧାନତାରେ ଯେପରି କୌଣସି ବିଘ୍ନ ନ ଘଟେ । ଭଗବାନ୍‌ଙ୍କ କୃପାରୁ କେଉଁଠି କିଛି ଅସୁବିଧା ଘଟି ନାହିଁ । ସମସ୍ତେ ସୁଖରେ ଯାଇ ଯେଝା ଘରେ ପହଞ୍ଚନ୍ତୁ, ଏହାହିଁ ମୋର ଶୁଭ କାମନା ।'

କଥା ଶେଷରେ ସମସ୍ତେ କରତାଳି ଦେଲେ । ତାଙ୍କୁ ପୁରୁଷମାନେ ଆଲିଙ୍ଗନ, ଯୁବତୀମାନେ ଚୁମ୍ବନ ଦେଇ ବିଦାୟ ଦେଲେ ।

ଡ୍ରାଇଭର ଶୀତଳମସ୍ତିଷ୍କ । ଆକ୍ସିଡେଣ୍ଟ ଭୟରେ ସେ କେବେ ବସ୍‌ର ଗତି ଶିଥିଳ କରି ନାହାନ୍ତି, ଆତ୍ମପ୍ରତ୍ୟୟ ଭରା । କୌଣସିମତେ ଲକ୍ଷ୍ୟ ସ୍ଥଳରେ ଶୀଘ୍ର ପହଞ୍ଚିଯିବାର ଉଦ୍ୟମ ମଧ୍ୟ କରି ନାହାନ୍ତି । ଯାତ୍ରୀଙ୍କ ନିରାପତ୍ତା ଚିନ୍ତା ଅହରହ ତାଙ୍କ ମନରେ ।

ହୋଟେଲ୍ ବୟ୍‌ମାନେ ସୁଟ୍‌କେସ୍‌ଗୁଡ଼ିକ ଉପରୁ ତଳକୁ ତଳୁ ଉପରକୁ ନିଅନ୍ତି । ଗାଡ଼ିରେ ନଦବା ତାଙ୍କର କାର୍ଯ୍ୟ । କିନ୍ତୁ କାର୍ଯ୍ୟଗ୍ରାହୀ କଣ ସୀମା ମାନେ ? ସେ ବୟ୍‌ମାନଙ୍କ ସଙ୍ଗେ ମିଶି ଜିନିଷପତ୍ର ଗାଡ଼ି ପାଖକୁ ବୋହି ଆଣନ୍ତି । ଜିନିଷ ନଦା ହୋଇଗଲା ପରେ ସେ ଜଣ ଜଣ କରି ଯାତ୍ରୀଙ୍କୁ ବସ୍‌ରେ ଚଢ଼ାନ୍ତି, ଜଣ ଜଣ କରି ଓହ୍ଲାନ୍ତି, କହନ୍ତି Watch your steps please. ଶିଷ୍ଟାଚାର ପ୍ରତିମୂର୍ତ୍ତି, ସରଳ ସୁନ୍ଦର ବ୍ୟବହାରରେ ସେ ସମସ୍ତଙ୍କ ବନ୍ଧୁତା ଅର୍ଜନ କରି ପାରି ଥିଲେ ।

# କେନ୍ ଜାକୋବ

ଜାକୋବ ଆମ ଗାଇଡ୍, ଆଜ ବିଦାୟ ନେବେ । କାଲି ଯାତ୍ରୀ-ମାନେ ଯେଝା ଘରକୁ ଫେରିଯିବେ । ସେ ବ୍ୟବସ୍ଥା ଆଜଠାରୁ ହୋଇ ଗଲଣି । ଜାକୋବ ପିଉଛନ୍ତି, ବସି ଖୁସି ଗପ କରୁଛନ୍ତି, ଜଣେ ଆତ୍ମୀୟ ପରି । ବୟସ୍କ ବୃଦ୍ଧ, ଚର୍ମ ଲୋଳିତ, ଆଖିଦୁଇଟି ସତେଜ ରହିଛି; ପାନ ପରେ ବୃଦ୍ଧି ଯେପରି ପ୍ରାପ୍ତ ହୁଏ, ସେ ଦୁଇଟା ସେହିପରି ଜଳି ଉଠେ । ତାଙ୍କ ସହିତ ଆଜ ସୁଖାଳାପ ହେଲା—ପ୍ରାୟ ଅଧଘଣ୍ଟାଏ ।

ଜାକୋବ ଜର୍ମାନ୍ ଜାତ, ସୁଶିକ୍ଷିତ । ତାଙ୍କର ଅନ୍ୟ ଭାଇମାନଙ୍କ ପରି ଆଇନ ପଢୁଥିଲେ । କିନ୍ତୁ ଆଇନ୍ ତାଙ୍କୁ ଭଲ ଲାଗିଲା ନାହିଁ । ସେ ସୁଗନ୍ଧଦ୍ରବ୍ୟ ଉତ୍ପାଦକ କାରଖାନାଟିଏ ବସାଇଲେ । ଏଇ ସମୟରେ ହିଟ୍ଲର୍‌ଙ୍କ ଉପଦ୍ରବ ଭୟଙ୍କର ସ୍ତରରେ ପହଞ୍ଚିଲା । ଧନ ସମ୍ପଦ, ଘରଦ୍ୱାର ଛାଡ଼ି ଜାକୋବଙ୍କ ପରିବାର ବେଲ୍‌ଜିଅମ୍ ପଳାଇ ଆସିଲେ । ଭାଇମାନଙ୍କ ମଧ୍ୟରୁ କିଏ ବ୍ୟବସାୟ, କିଏ ବା ଚାକିରି କରି ରହିଲେ । କିନ୍ତୁ ଜାକୋବ ସାହସୀ, ସେ ହିଟ୍ଲର୍‌ଙ୍କୁ ନିପାତ କରିବା ଲାଗି ଫରାସୀ ସୈନ୍ୟବାହିନୀରେ ଯୋଗ ଦେଲେ । ଜର୍ମାନୀ ସହିତ ଯୁଦ୍ଧରେ ଫ୍ରାନ୍ସର ପତନ ହେଲା । ସେ ଇଂରାଜୀ ବାହିନୀରେ ଯୋଗ ଦେଲେ । ଆଫ୍ରିକାରେ ଜର୍ମାନ୍ ସେନାପତି 'ରୋମେଲ୍'ଙ୍କ ସୈନ୍ୟ ସଙ୍ଗେ ଯୁଦ୍ଧକଲେ, ବନ୍ଦୀ ହେଲେ; ରାତି ଅଧରେ ଜର୍ମାନ୍ ହାତରୁ ଖସି ପଳାଇଗଲେ, ତା ପରେ ପ୍ରାଣ ବଞ୍ଚେଇବା ଲାଗି ହୋଟେଲ୍‌ବୟ୍ ହେଲେ । ହାତରେ କିଛି ପଇସା ହେଲା ପରେ କୋଇଲା ବ୍ୟବସାୟ କଲେ । ଭଲ ଲାଗିଲା ନାହିଁ । ପ୍ରାୟ ପନ୍ଦର ବର୍ଷ ହେଲା ସେ ଆମେରିକାନ୍ ଏକ୍‌ସପ୍ରେସ୍ କମ୍ପାନୀରେ ଗାଇଡ୍ କାର୍ଯ୍ୟ କରୁଛନ୍ତି ।

ଯୁଦ୍ଧରେ କେତେ ଲୋକଙ୍କୁ ମାରିଛନ୍ତି, କିନ୍ତୁ ତାଙ୍କ ଦେହରେ କେବେ ଗୁଳି ବାଜିନାହିଁ । ଜୀବନକୁ ସେ ଗୋଟାଏ ଯୁଦ୍ଧବୋଲି ବୁଝିଛନ୍ତି । କଠୋର କଠିନ ଜୀବନ ଯାପନ କରି ଆସିଛନ୍ତି । ତେଣୁ କେଉଁ ଦୁଃଖକୁ ଏବେ ତାଙ୍କର ଭ୍ରୂକ୍ଷେପ ନାହିଁ । ନିଃସନ୍ତାନ, ନିଜଞ୍ଜାଳୀ । ସ୍ତ୍ରୀ ତାଙ୍କର ଲଣ୍ଡନରେ ବାସ କରନ୍ତି ।

ଜାକୋବ ଘର ଖୁସି ମେଜାଜ୍‌ର ଲୋକ—'ସଂସାରେ ଥିବ ଯେତେ ଧନ, ଆନନ୍ଦ କରୁଥିବ ମନ'—ଏଥିରେ ବିଶ୍ବାସୀ ସେ । ଖାଇବା ପିଇବା ମଉଜ କରିବା; ଯେତେବେଳେ ଭଗବାନ୍‌ଙ୍କ ଇଚ୍ଛା, ସେ ଘେନିଯିବେ । ଫୁଙ୍କି ଦେଲେ ପଡ଼ିଯିବେ, ଏତିକି ଚେହେରା; କିନ୍ତୁ ଖଣ୍ଡେ ଟାଙ୍ଗଣ ସେ । ମନରେ ଭର୍ତ୍ତି ହୋଇଛି ତେଜ; ଦେହଟା ଫାଉଁଲେ ଜାଣ, ଉଡ଼ୁଛି । ଏ ବାର୍ଦ୍ଧକ୍ୟରେ ଅସମ୍ଭବ କର୍ମ କ୍ଷମତା ରହିଛି ତାଙ୍କର, ଅଦମ୍ୟ ସାହସ । ମୃତ୍ୟୁ ଚିନ୍ତା ତାଙ୍କୁ ଆଦୌ ବିବ୍ରତ କରୁନାହିଁ, ଜୀବନ ନିଶାରେ ସେ ମସ୍‌ଗୁଲ୍; ବୋଧେ ଶେଷ ନିଶ୍ବାସ ଯିବା ପର୍ଯ୍ୟନ୍ତ ସେ ଏହିପରି ରହିବେ ।

ମୋତେ ପଚାରିଲେ—କିଓ, ଭାରତ ତା ଲୋକଙ୍କୁ ଖାଇବାକୁ ଖାଦ୍ୟ ଦେଇ ପାରୁନାହିଁ ?

କିନ୍ତୁ ଆମେ ତ ଖଣ୍ଡେ ମରୁଭୂମି ପାଇଛୁ । ସମୁଦ୍ରର ଲୁଣି ପାଣି ବୋହି ମଧୁର କରି ତାକୁ ବଳରେ ମଡ଼ାଇ ଫସଲ କରୁ । ମରୁଭୂମିରେ ପୋଖରୀ ଖୋଳି ସେଥିରେ ପାଣି ଭର୍ତ୍ତି କରି ମାଛ ଛାଡୁ । ମାଛ ଭୂଇଁକି ଉର୍ବର କରିଦିଏ । ତା କୂଳେ କୂଳେ ଆମେ ଗଛ ବୃକ୍ଷ ଲଗାଉଁ, ପତର ପାଚୁଆ ମଧ୍ୟ ଭୂଇଁକି ଉର୍ବର କରେ । ଜମିର ଉର୍ବରତା ବଢ଼ି ବଢ଼ି ଯାଉଛି । ଆମେ ମରୁଭୂମି ଜୟୀ ।

ଆମେ ମରୁଭୂମିରେ ଏବେ ଗହମ, ମକ୍‌କା ଆଦି ନାନା ଫସଲ ଉତ୍ପାଦନ କରୁଛୁ । 'ଜାଫା' ନାମକ ଫଳରୁ ମଦ ତିଆରି କରି ଖାଉଛୁ । ତେଲ ସଫେଇଖାନା କଳ ବସାଇଛୁ । ଶ୍ରେଷ୍ଠ ଶ୍ରେଷ୍ଠ ଯନ୍ତ୍ରପାତି ଉତ୍ପାଦକ କାରଖାନା ବସାଇଛୁ । ଆମ ଦେଶ ଏବେ ଶିଳ୍ପ ସମୃଦ୍ଧ; ଖାଦ୍ୟ ଲାଗି କାହା ପାଖରେ ଆଉ ହାତ ପତେଇବାକୁ ପଡ଼ୁନାହିଁ । ଦୁଃଖ କଷ୍ଟ କଲେ ପେଟ କାହିଁକି ଅପୋଷା ରହିବ ? ଆମ ଧାରଣା—ଭାରତର ଲୋକେ ଯଥେଷ୍ଟ ପରିଶ୍ରମ କରୁ ନାହାନ୍ତି ।

କହିଲି—ଭାରତୀୟ କୃଷକ ଅଳ୍ପ ପରିଶ୍ରମୀ ନୁହେ । କିନ୍ତୁ ପ୍ରକୃତି ଆମର ଶତ୍ରୁ ହୋଇଛି । ଘୋର ଅନାବୃଷ୍ଟି । ଜଳ ସେଚନଯୋଜନା

ଯଥେଷ୍ଟ କାର୍ଯ୍ୟକାରୀ ହୋଇ ପାରୁ ନାହିଁ । ହେଲେ ତ ବର୍ଷା ନ ହେଲେ ସେଇ କୃତ୍ରିମ ହ୍ରଦରେ ପାଣି ଜମି ରହିବ କୁଆଡ଼ୁ ? ବୈଜ୍ଞାନିକ ପଦ୍ଧତିରେ ଶସ୍ୟ ଉତ୍ପାଦନ ଚେଷ୍ଟା ହୋଇ ପାରୁନାହିଁ । ଲୋକଙ୍କପକ୍ଷେ ଅସମ୍ଭବ ଭାବେ ବଢ଼ି ଚାଲିଛି ।

'ସମୁଦ୍ରଜଳ ମଧ୍ୟ ଜଳସେଚନ କାହିଁକି କାର୍ଯ୍ୟରେ ଲଗାଉନାହାଁ ?'

'ଏବେ ନୂଆ ଯୋଜନାସବୁ କାର୍ଯ୍ୟକାରୀ ହେଉଛି । ଜଳ ଯଥେଷ୍ଟ ନ ହେଲେ ସମୁଦ୍ରରୁ ଆଣିବାକୁ ଚେଷ୍ଟା କରା ହେବ । କିନ୍ତୁ ଆମ ପିଠିରେ ଶତ୍ରୁ ଲାଗିଛନ୍ତି—ପାକିସ୍ଥାନ, ଚୀନ୍ । ଅସ୍ତ୍ରଶସ୍ତ୍ର କିଣିବାରେ ଆମର ବହୁତ ବ୍ୟୟ ହୋଇଯାଉଛି । ତାକୁ କମେଇବାର ଉପାୟ ନାହିଁ ।'

'ଆମର କୋଉ ଶତ୍ରୁ ନାହାଁ ? ଆମକୁ ତ ଚାରିଆଡ଼େ ଘେରି ରହିଛନ୍ତି । ନିପାତ କରିଦେବା ଲାଗି ସଂକଳ୍ପ କରିଛନ୍ତି । ତା ସତ୍ତ୍ୱେ ଆମେ ବଞ୍ଚିଛୁ, ବଞ୍ଚିବୁ । ଆମ ଦେଶଟି ଛୋଟ ଗୋଟିଏ ଦ୍ୱୀପ, ତା ଉପରେ ପୃଥିବୀର ସବୁ ଜାତିଙ୍କର ଦୃଷ୍ଟି ରହିଛି । ଲୋଡ଼ା ହେଲେ ସେମାନେ ମାତୃଭୂମିର ଛଳଛଳ ରକ୍ଷା ଲାଗି ଧନଦଉଲତ ଏପରିକି ଜୀବନ ଢ଼ାଳି ଦେବେ । ଆମେ ସଂଖ୍ୟାରେ ଅଳ୍ପ, କିନ୍ତୁ ଆମେ ବ୍ୟବସାୟୀ ଜାତି, ହାତରେ ଅକଳନ୍ତି ଧନ, ମୁଣ୍ଡରେ ବୁଦ୍ଧି ଅଛି; ହିଟ୍‌ଲର୍‌ଙ୍କ ଉତ୍ପୀଡ଼ନ ପରେ ଆମ ଐକ୍ୟ ଶକ୍ତି ଜାଗ୍ରତ ହୋଇ ଉଠିଛି । ଆମେ ହଟିବୁ ନାହିଁ; ଆମକୁ ପୃଥିବୀରୁ ଲୋପ କରିବାକୁ ଯେ ଚେଷ୍ଟା କରିବ ସେ ନିଜେ ଲୋପ ହୋଇଯିବ । ସ୍ତ୍ରୀ ପୁରୁଷ ସମସ୍ତେ ଏଠି ସୈନିକ, କୃଷକ ରମଣୀ ରାଇଫଲ ହାତରେ କୃଷିକ୍ଷେତ୍ରକୁ ଯାଏ । ଯୁବକମାନେ ପଣ କରିବାର ଶୁଣିଛି—ଦଶ ଜଣ ଆରବ ନ ମାରିବା ପର୍ଯ୍ୟନ୍ତ ସେ ମରିବ ନାହିଁ ।'

ଜାକୋବୀଙ୍କ ଅଗ୍ନିଗର୍ଭ ବାଣୀ ଶୁଣୁ ଶୁଣୁ ଡାଇ ଅନ୍ୟ ଏକ ଆମେରିକାନ୍ ଏକ୍‌ସପ୍ରେସ ବସ୍‌ରେ ବସିଲି । ଆଜି ଇଜ୍‌ରେଲ ଭ୍ରମଣର ଶେଷ ରାତି । ବସ୍ ଚାଲିଲା ପରେ ଜାକୋବୀ କହିଲେ—

ମୁଁ ବକ୍ତୃତା ଦେଇ ଜାଣେନାହିଁ । ତେଣୁ ମର୍ମସ୍ପର୍ଶୀ ବିଦାୟ ଭାଷଣ ଦେଇ ପାରିବ ନାହିଁ—ଭାଷଣ, ଯାହା ମର୍ମରେ ଅଗ୍ନି ଜାଳେ, ଆଖିରେ ଅଶ୍ରୁ ଆଣେ । ତେବେ ପଦେ କଥା କହିବି—ଏପରି ଗୋଟିଏ ଭ୍ରମଣକାରୀଦଳ ଏ ଋତୁରେ ମୋ ଭାଗ୍ୟରେ ଜୁଟି ନ ଥିଲା । ଯାତ୍ରୀମାନେ ନାନା ଯନ୍ତ୍ରଣା ଦିଅନ୍ତି; ନାନା ଦୁରଭ୍ୟାସର ବଶୀଭୂତ । କିଏ ଯଥା ସମୟରେ ଶେଯରୁ ଉଠେ ନାହିଁ । କିଏ ଜିନିଷ ପତ୍ର କିଣାରେ ଭୋଳ ହୋଇ ବାଟ ଭୁଲେ; କିଏ ପାସପୋର୍ଟ ବା ଟିକେଟ୍ ହଜାଇ ମୋତେ ହଇରାଣ କରେ । କିଏ ଅବାଧ୍ୟ । କିନ୍ତୁ ଆପଣମାନଙ୍କଠାରୁ ପାରିବାରିକ ସଂପର୍କର ଆନନ୍ଦ ମୁଁ ପାଇଛି । ଏହା ଭୁଲି ହେବ ନାହିଁ, ଧନ୍ୟବାଦ ।

ଗୋଟିଏ ଶ୍ରେଷ୍ଠ ରେସ୍ତୋରାଁରେ ପହଞ୍ଚିଲୁ । ଏଠି ଶେଷ ଥର ପାଇଁ ଆମେ ଏକାଠ ବସି ଖାଇବୁ; ବେଶ୍ ଗୋଟାଏ ମମତା ଲାଗି ଆସିଥିଲା । ବିଦାୟ କଥା ଭାବିଲାକ୍ଷଣି ମନ କଣ ହୋଇଗଲା ।

ରେସ୍ତୋରାଁରେ ନୃତ୍ୟଗୀତର ବ୍ୟବସ୍ଥା ଅଛି । ଜଣେ ପିଆନୋ, ଆଉ ଜଣେ ବେହେଲା ବଜାଉଛନ୍ତି । ହୋଟେଲ୍ ବୟ୍ମାନେ ସେଇ ତାଳରେ ନାଚି ନାଚି ଖାଦ୍ୟ ପରିବେଷଣ କରୁଛନ୍ତି । ଖିଆପିଆ ପରେ ଜଳତରଙ୍ଗ ବାଜିଉଠିଲା, ତା ସହିତ ଝାଞ୍ଜ, ଡ୍ରମ୍ । ଆମ ଦଳର ଯାତ୍ରୀ ଯୋଡ଼ି ଯୋଡ଼ି ହୋଇ ବାହାରି ପଡ଼ିଲେ—ବୃଦ୍ଧ ଯୁବତୀ, ଯୁବକ ଯୁବତୀ, ଜଣେ ଜଣେ ଯୁବତୀ ତିନି ଜଣ ଯୁବକ ଓ ବୃଦ୍ଧ ଜାକୋବାଙ୍କ ସହିତ ନୃତ୍ୟ କଲେ । ବୃଦ୍ଧ ବୃଦ୍ଧା ନାଚି ଉଠିଲେ, ବାଦ୍ୟ ତାଳ ଓ ସାଂପେନ୍ ଜୋରରେ ।

ଫରାସୀ 'କ୍ୟାନ୍‌କ୍ୟାନ୍' ଠାରୁ ଲଣ୍ଡୋ ପର୍ଯ୍ୟନ୍ତ ନାନା ନୃତ୍ୟ ଚାଲିବ ।

ଯାତ୍ରୀମାନଙ୍କ ମନୋରଞ୍ଜନ ଲାଗି ଜଣେ ହାସ୍ୟରସିକ ଅଣାଯାଇ-ଥାନ୍ତି । ସେ ନାନା ଗଳ୍ପ କହି ହସାଉ ଥାନ୍ତି ।

ଦର୍ଶକ ତ ଏ ଦେଶରେ କେବଳ ଦର୍ଶକ ନୁହେଁ, ଲୋଡ଼ା ହେବା ମାତ୍ରେ ସେ ଅଭିନେତା ମଞ୍ଚକୁ ଉଠି ପଡ଼େ—ଶଙ୍କା ବା ସଙ୍କୋଚ ନାହିଁ ।

ପାଞ୍ଚଜଣ ପୁରୁଷ ତା ପଛକୁ ତା ଗଣ୍ଠି ଛୁଆଁ ହୋଇଗଲେ—ଟୋପି ଖେଳ । ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ଟୋପି ଦିଆଗଲା । 'ଏକ' କହିବା ମାତ୍ରେ ସମସ୍ତେ ମୁଣ୍ଡରେ ହାତ ରଖିଲେ; 'ଦୁଇ' କହିଲେ ଆଗର ଟୋପି ପଛ ଲୋକ ପିନ୍ଧିଲା । ଏହିପରି ଏକ ଦୁଇ, ଏକ ଦୁଇ ଡାକ ଓ ଟୋପି ପିନ୍ଧା ଚାଲିଲା—କ୍ଷିପ୍ର ଗତିରେ । ପିନ୍ଧୁ ପିନ୍ଧୁ ଟୋପି ଖସିଲା । ବେଶ୍ କୌତୁକ ହାସ ସୃଷ୍ଟି ହେଲା ।

ତାପରେ ବନ୍ଦୁକ ଧରି ଦଳରୁ ବର କନ୍ୟା ବାଛିଲା । ଦୁଇଟି କନ୍ୟା, ଦୁଇଟି ବର । କନ୍ୟାମାନେ ଚୌକିରେ ବସିଲେ—ଆଖିରେ ଅବଗୁଣ୍ଠନ, ହାତରେ ଛୁଞ୍ଚି ସୂତା । ଆଗରେ ଛୁଆ ବରମାନଙ୍କ ପ୍ୟାଣ୍ଟରେ ଖଣ୍ଡେ ଖଣ୍ଡେ ଲାଲ୍ କନା ସିଲେଇ କରିବାକୁ ହେଲା । ଛୁଞ୍ଚିଫୋଡ଼ ହୋଇଯିବାରୁ ଗୋଟିଏ ବର ଚିତ୍କାର କଲା—ଯନ୍ତ୍ରଣା ଯେତିକି ନୁହେଁ, କେଳି ସେତିକି—ଇଚ୍ଛା, ସମସ୍ତେ ହସନ୍ତୁ ।

ପୁରୁଷମାନଙ୍କ 'ଲଢ଼େଇ' ଶିକ୍ଷା, 'ହାଂଗର ଉଡ଼ିବା ଉଦ୍ୟମ ଓ ଗୁଳି ଖାଇ ମୃତ୍ୟୁ'—ବେଶ୍ ଚିତ୍ତାକର୍ଷକ ହୋଇଥିଲା ।

ଘଣ୍ଟା ଏଗାରଟାରୁ କିଛି ବେଶୀ । ଶେଷ ପାନ ସାଁପେନ୍ ପରିବେଷିତ ହେଲା । ଗୀତ, ବାଦ୍ୟ, ନୃତ୍ୟ, ପାନ ମଧ୍ୟରେ ଆମେ ବିଦାୟ ନେଲୁ । କିନ୍ତୁ ପ୍ରକୃତ ନୃତ୍ୟ ଆରମ୍ଭ ହେଲା ପ୍ୟାରିସର ଫୁଟପାଥରେ; ସେଠି କେହି ଦର୍ଶକ ନ ଥିଲେ, ସମସ୍ତେ ଅଭିନେତା ବା ଅଭିନେତ୍ରୀ । ପ୍ରବଳ ବର୍ଷା, ଗୋଟାପଣେ ଓଦା ହୋଇ ଦଉଡ଼ି ଦଉଡ଼ି କୌଣସିମତେ ବସ୍‌ରେ ପଶିଲୁ; ଶର୍ଜନ ନଗରର ଶେଷ ଦର୍ଶନଲାଗି ।

ସେନ୍ ନଦୀ କୂଳେ କୂଳେ ବସ୍ ଚାଲିଲା ଯେଉଁଠି ପ୍ରସିଦ୍ଧ 'ବାସ୍ତିଲ୍' ଦୁର୍ଗ ଥିଲା (୧୭୮୯ରେ ଧ୍ୱସ୍ତ)—ଅନ୍ୟାୟ, ଅତ୍ୟାଚାରର ପ୍ରତୀକ । ତାର ଚିହ୍ନବର୍ଣ୍ଣ ନାହିଁ । ତାପରେ ଆମେ ଅପରିଚିତ ସୈନ୍ୟର ସମାଧି କ୍ଷେତ୍ର, ମୋଣ୍ଟେଲ୍ଲାନ୍, ଶାମ୍ପସ୍ ଏଲିସେଜ୍, ଆର୍କ ଡେ ଟ୍ରାମ୍ଫ୍, ଆଇଫେଲ୍ ଟାୱାର୍, ଟୁଲେରିସ୍ ଉଦ୍ୟାନ, ଲକ୍ସମ୍ବର୍ଗ ଉଦ୍ୟାନ, ଜର୍ଜ ୱାସିଂଟନ୍‌ଙ୍କ ମୂର୍ତ୍ତି, ଇଉନାଇଟେଡ୍ ଷ୍ଟେଟସ୍ ସ୍କୋୟାର୍,

ଭିୟେନା ଆଭେନ୍ୟୁ, ମୋଭି, ଅପେରା, ଥିଏଟର୍, ରଜକାର୍ଟୀ, ନାଇଟ୍ କ୍ଲବ ପ୍ରଧାନ ପ୍ରଧାନ ବଜାର ବୁଲି ଶେଷ ଲେଭ୍ରରେ ଦୃଷ୍ଟି ପକାଇଲୁ । ଆଲୋକମାଳାମଣ୍ଡୀ ପ୍ୟାରିସ୍ ନଗରୀ, ନାନା ବର୍ଣ୍ଣ ବିଚିତ୍ରିତ ପୁଷ୍ପର ମନକୁ ବର୍ଣ୍ଣାଢ୍ୟ କରିଦେଲା କରୁଣ ଆନନ୍ଦରେ—ମୋନାଲିସାର ହସ— ଯାହା ଥରେ ଆଖିରେ ପଡ଼ିଲେ ମନେ ରହେ, ହସର ସାଧାରଣ ଦେଉ-ଗାର ପରି ଲାଭଯାଏ ନାହିଁ ।

ବିଦାୟ ବେଳେ 'ପନ୍ଥାନଃ ସନ୍ତୁ ତେ ଶିବାଃ' ଭଳି ବନ୍ଧୁମାନେ ପରସ୍ପରକୁ ଶୁଭେଚ୍ଛା ଜ୍ଞାପନ କଲେ । ମୁଁ କହିଲି—

ତୁମ ଦଳର ଗାଇଡ୍ ଜର୍ମାନ୍, ଡ୍ରାଇଭର ଡଚ୍, ତୁମେ ସମସ୍ତେ ଆମେରିକାନ୍, ମୁଁ ଏକମାତ୍ର ଭାରତୀୟ । ତୁମେ ସମସ୍ତେ ସଦୟ ବ୍ୟବ-ହାରରେ ମୋତେ କିଣି ନେଇଛ । ମୁଁ ବିଦେଶୀଙ୍କ ମେଳରେ ବିଦେଶରେ ବୁଲୁଛି ବୋଲି ଭାବିବାକୁ ଅବକାଶ ପାଇନାହିଁ । ଧନ୍ୟବାଦ ।

ଷୋଡ଼ଶୀ ଜୋଆନ୍ ମେରିଆ କହିଲା—

ଓଲ୍ଡର ଦାଶ, ରୋମ୍‌ରେ ସେ ଦିନ ଘୋର ବର୍ଷା । ଗୋଟାପଣେ ଓଦା, ପଥ ହରାଇ ଏଣେତେଣେ ଦୌଡ଼ୁଥିଲି । ତୁମେ ମୋତେ ଘୋଡ଼ା ଗାଡ଼ିରେ ବସାଇ ହୋଟେଲକୁ ଆଣିଥିଲ; ମନେ ଅଛି ? ମୋର ଇଚ୍ଛା, ବିଦାୟ ବେଳେ ମୁଁ ତୁମକୁ ଗୋଟିଏ ଚୁମ୍ବନ ଦେବ ।

ଅବିବାହିତା ଯୁବତୀଠାରୁ ଏ ଚୁମ୍ବନ ନେବା ବିବାହିତ ପକ୍ଷରେ ନୈତିକ କି ଅନୈତିକ ଭାବିବା ଲାଗି ମେରିଆ ଅବକାଶ ଦେଲା ନାହିଁ । ପ୍ରସ୍ତାବ ସଙ୍ଗେ ସଙ୍ଗେ ଚୁମ୍ବନ—ବିଦାୟ ।

ସକାଳ; ଜଣ ଜଣ ହୋଇ ସଙ୍ଗୀ ଓ ସଙ୍ଗିନୀମାନେ ବିଦାୟ ନେଇଗଲେ । ଏଇ ଅନାତ୍ମୀୟମାନଙ୍କ ପ୍ରତି ମମତା କେତେ ବେଶୀରେ ହୋଇ ଆସୁଥିଲା, ବିଦାୟବେଳେ ହିଁ ଜଣାଗଲା । ହୃଦୟ ଯେପରି କି ସ୍ମୃତି ବିଦ୍ଧ, ରକ୍ତାକ୍ତ ।

ସମସ୍ତେ ଯାଇ ଯାଇ ଶେଷକୁ ରହିଲେ ମାତ୍ର ତିନିଜଣ—ମି. ଓ ମିସେସ୍ ରସେଲ୍, ମେଗି, ଜାକୋବୀ, । ଏକା ଟେବୁଲରେ ବସି ସମସ୍ତେ ଖାଇଲେ, ଶେଷ ଥର ପାଇଁ । ଖାଇଲାବେଳେ ଜାକୋବୀଙ୍କୁ କହିଲେ—ତୁମ କବ୍ଜାରୁ ଆମେ ଆଜ ମୁକ୍ତ, ତୁମ ଶୃଙ୍ଖଳାର ସେଇ କଠୋର ଘେରରୁ ସେଇ ଚଳନ୍ତ ବନ୍ଦୀଶାଳାରୁ ଆଜ ଛୁଟି ମିଳିଲା !

ମେଗି ହସି ହସି କହିଲା—ଏ ମୁକ୍ତି ଭଲ ଲାଗୁ ନାହିଁ ତ ! ଅତ୍ୟାଚାରର କବଳରୁ ତ ନୁହେଁ, ଏ ମୁକ୍ତିର ଅର୍ଥ କଣ ? ବରଂ କଷ୍ଟ-ଚ୍ୟୁତ ଆମେ ଶାନ୍ତି ଓ ଆନନ୍ଦ ଲୋକରୁ । ଜୀବନରେ କେତେଦିନ ମିଳେ ସେ ? ପୁଣି ଅଫିସ୍‌କୁ ଦଉଡ଼ଧାପଡ଼ । ଦୁଇଚାରି ଦିନ ପରେ ଗତାନୁ-ଗତିକ ଜୀବନଟା ଆରମ୍ଭ ହୋଇଯିବ ।

ଜାକୋବୀ ବେଙ୍ଗଭଜା ଗ୍ରେବାଉ ଗ୍ରେବାଉ କହିଲେ— ରେସ୍ତୋରାଁରେ ଖାଇ ଖାଇ ବିରକ୍ତି ଆସିଲାଣି । ଘରଯା ହାତ ରନ୍ଧା ଖାଇବାକୁ ମନ ହେଉଛି । ସେମିତି ମନ ଜାଣି କିଏ ରାନ୍ଧିଦେବ ? ମତେ ପଚାରିଲେ—ତୁମର କେତୋଟି ଘରଯା ?

'ତୁମର କେତୋଟି' ?

'ଆରେ ବାପ୍‌ରେ ବାପ, ଗୋଟିକୁ ସମ୍ଭାଳିବା ତ କଷ୍ଟକର, ଆଉ କେତୋଟି ?,

'ଶୁଣିଛି, ତୁମ ଭାରତରେ ଜଣେ ଜଣେ ପୁରୁଷ ଅନେକ ସ୍ତ୍ରୀ ବିଭା ହୁଅନ୍ତି ବୋଲି ?'

'ଆଗେ ରାଜା, ଜମିଦାର ଏକାଧିକ ବିଭା ହେଉଥିଲେ; ମୁସଲ-ମାନମାନେ ଏକାଧିକ ବିଭା ହେଉଥିଲେ । ସାଧାରଣଙ୍କ ମଧ୍ୟରୁ କ୍ୱଚିତ୍ କେହି ଗୋଟିକରୁ ଅଧିକ ବିଭା ହୋଇଥାନ୍ତି ।

ହସି ହସି କହିଲେ—ଆମେରିକାରେ ଏକାଧିକ ସ୍ତ୍ରୀ ବିବାହ ପ୍ରଥା ପ୍ରଚଳିତ ହେବା ଆବଶ୍ୟକ । ପୁରୁଷ ଅପେକ୍ଷା ସ୍ତ୍ରୀଙ୍କ ସଂଖ୍ୟା ଯଥେଷ୍ଟ ବେଶୀ ।

ମିସେସ୍ ରସେଲ୍ କହିଲେ—ତଥାପି ଆମ ଦେଶରେ ସ୍ତ୍ରୀ ସ୍ୱାମୀକୁ ଛାଡ଼ପତ୍ର ଦିଏ, ପୁଣି ବାହା ହୁଏ; ଜଣେ ଜଣେ ସ୍ତ୍ରୀ ଜୀବନରେ ଦଶଥର ବାହା ହେବାର ନଜିର୍ ରହିଛି ।

ଆମ ଦେଶରେ ବି ସେମିତି ନଜିର୍‌ର ସାହିତ୍ୟିକ ପ୍ରମାଣ ଦେଇ ପାରିବି । ଏହା କହି ଗୋଟାଏ ଢଗ ବୋଲି ଅର୍ଥ ବୁଝାଇ ଦେଲି—

ଅଧିଲି-ଟାକର ପଟା ପିନ୍ଧିକି
ହାତ ଧରି ଧରି ବୁଲିଲୁ ଘରି ।
'ଛଟେ ମିଶାଇ ଦେଲି ଧରି
ଲଞ୍ଜି କରି ଘରେ ପଶି ।
'କହିଲୁ ଯେବେ ପଶୁରି ଲଇଁ
କୋଢ଼ ପୂରିଗଲି ଛୋଡ଼ରି ଠାଇଁ ।'

ହଟସ୍ପରଠାରୁ ବିଦାୟ ନେଲୁ । ମନରେ ଉଦ୍‌ବେଗ, ଅନଗତର ଆଶଙ୍କା; ବର୍ଷା ତାକୁ ଟିକିଏ ବଢ଼ାଇ ଦେଇଛି; ଆଫ୍ରିକା—ଇଜିପ୍ଟ—କାଏରୋ; ମାନଚିତ୍ରଟି ଆଖି ଆଗରେ ନାଚି ଯାଉଥାଏ । 'ଆମ୍ବାସାଡର' ହୋଟେଲ ମ୍ୟାନେଜର ଏୟାର୍ ପୋର୍ଟକୁ ଫୋନ କରି ବୁଝିଛନ୍ତି—ସବୁ ଠିକ୍ ଅଛି । ତଥାପି ଉଦ୍‌ବେଗ—ଗାଡ଼ି ଜାମ୍‌ରେ ଟାକ୍ସି କାଳେ କେଉଁଠି ଅଟକି ଯିବ ! ଗୋଟାଏ କିଛି ଅସୁବିଧା କାଳେ କେଉଁଠି ଘଟିଯିବ ! ଦୁଇଘଣ୍ଟା ଆଗରୁ ଏୟାର୍ ପୋର୍ଟକୁ ଯିବା କଥା ସ୍ଥିର କଲି । ବିଦାୟ ନେଲି ପରେ ହୋଟେଲରେ ଆଉ ଗୋଟିଏ ମୁହୂର୍ତ୍ତ ରହିବାକୁ ଇଚ୍ଛା ହେଲା ନାହିଁ—ଦଳ ଦଳ ହୋଇ ନୂଆ ଯାତ୍ରୀ ଆସୁଥାନ୍ତି—ତମ୍ବା ମୁହଁ, ଧଳା କାଗଜ ବର୍ଣ୍ଣର ମୁହଁ—ଚଟ୍‌କା, ଚେପ୍‌ଟା, ଲମ୍ବା, ତିନି କୋଣିଆ ମୁହଁ, ଗୁମ୍ଫରେ ଢ଼ଙ୍କା ହେଲା ପରି ମୁହଁ, ତୂଳୀରେ ଅଙ୍କା ହେଲାପରି ମୁହଁ ।

ମ୍ୟାନେଜର ଟାକ୍ସି ଡକାଇ ଜିନିଷପତ୍ର ଲଦାଇ ଦେଲେ । ଜଗନ୍ନାଥଙ୍କୁ ସ୍ମରଣ କରି ମୁଁ 'ବେରେଜିଂ' ଏୟାର୍ ପୋର୍ଟକୁ ଯାତ୍ରା କଲି ।

ଇନ୍ଦ୍ରାଗେଟରୁ ବଦାସ୍ପୀ ମନ ଏଜ ମନ୍ତୁଥାଏ ଯେପରି କ; ଆଖି ଖସି ଆସୁଥାଏ ଦୃଶ୍ୟ ପରେ ଦୃଶ୍ୟରୁ । ଏୟାର୍‌ପୋର୍ଟରେ Newyork Herald Tribune' ଖଣ୍ଡିଏ କଣି ପଢ଼ିଲି—ଇଂଲଣ୍ଡର 'ଆବର୍‌ଭେନ୍' ସହରରେ ଗୋଟିଏ ଘୋର ଦୁର୍ଘଟଣା ଘଟି ଯାଇଛି । ପାହାଡ଼ ଧସି ପଡ଼ିବାରୁ ୧୩୫ ଜଣ ମରି ଯାଇଛନ୍ତି । ସେଥିମଧ୍ୟରୁ ୧୦୯ ଜଣ ବାଳକ ବାଳିକା । ମନଟା ମଉଳି ଗଲା । ବହୁଦିନ ହେଲା କଣ୍ଟ ଜାଣୁ ନ ଥିଲି— ପୃଥିବୀର ଘଟଣା ବା ଦୁର୍ଘଟଣା । ମନ ଘୂରି ବୁଲୁଥିଲା କେଉଁ ଆନନ୍ଦ ଲୋକରେ ।

ଦେନାନ୍ଦ୍ରକ ର କୌଣସି କାର୍ଯ୍ୟରେ ଲାଗିବ ନାହିଁ; ବ୍ୟାଙ୍କ୍ ମଧ୍ୟ ଅନ୍ୟ ମୁଦ୍ରାକୁ ବଦଳାଇ ଦେବନାହିଁ । ଯେ ସବୁ ଦେଇ 'ଆଇଫେଲ୍' ଟାୱାର୍ ମିନାକରା ଦୁଇଟି ପ୍ଲେଟ ଥାଳିଆ କଣିଲି, ଗୋଟିଏ ଉଷ୍ଣଟି ଫ୍ରି ସପ୍‌ରୁ ।

'ଇଉନାଇଟେଡ଼୍ ଆରବ୍ ଏୟାର୍ ଲାଇନ୍‌ସ୍' ବିମାନରେ ବସିଲି ପାଞ୍ଚଟା ପଞ୍ଚାଳିଶ ମିନିଟ୍‌ରେ । ପ୍ରଥମ ଶ୍ରେଣୀରେ କେତେ ଯାତ୍ରୀ ଥିଲେ ଜାଣେ ନାହିଁ; ଆମ ଏକନମି କ୍ଲାସରେ ମୋଟ ଷାଠିଏଟି ସିଟ୍; କିନ୍ତୁ ଶୂନ ନେଇଗଲା ଡାମସ୍ କାଉ । ମୋଟ ଯାତ୍ରୀ ଥିଲେ ଛ, ଏୟାର୍ ହୋଷ୍ଟେସ୍‌କୁ ମିଶାଇ ସାତ, ଏତେ ବଡ଼ ଜେଟ୍ ବିମାନରେ ମୋଟ ସାତ ଜଣ ଯାତ୍ରୀ ।

ବିମାନ ଉଠିଲା । କୁହୁଡ଼ିରେ କୁଆଡ଼େ କଣ୍ଟ ଦିଶୁ ନ ଥାଏ । ଅନ୍ଧାର ଭିତରେ ବିମାନଟି ଅନ୍ଧାଧିନିଆ ମାଡ଼ି ଚାଲିଲା; ଭଗବାନ ଭରସା । ବିମାନଟି ଅତି ଉଚ୍ଚକୁ ଉଠି କିଛି ସମୟ ପରେ ଭୂମଧ୍ୟ ସାଗରରେ ପହଞ୍ଚିଲା; ଏଠି ଆକାଶ କିଛି ନିର୍ମଳ । ସମୁଦ୍ର ଉପରେ ବନ୍ଦ ବନ୍ଦ ମେଘ, ଗୋଧୂଳିରେ ଆରକ୍ତ ହୋଇ ଉଠିଥିଲା । କିନ୍ତୁ ସେଇ ସନ୍ଧ୍ୟାର ପୀଠିକାରେ ଦେଖିଲି ଖଣ୍ଡିଏ କୃଷ୍ଣ ମେଘ, ଫସିଲ୍ ଗଛ ଭଳି ପତ୍ରହୀନ ଶାଖା କେତୋଟି ମେଲି ରହିଛି । ସନ୍ଧ୍ୟା ମନ୍ଦିରେ ସତେ ବା ଅପାଙ୍କ୍ତେୟ । କିଏ ସତେ ବା ମିଞ୍ଜି ମିଞ୍ଜି ଜଳୁଥିବା ଦୀପଟିକୁ ଫୁଙ୍କି ଲିଭାଇ

ହେଲା; କୁହୁଡ଼ ଭିତରେ ସନ୍ଧ୍ୟାର କ୍ଷୀଣ ସତ୍ତା ଆଉ ଦେଖିବାକୁ ମିଳଲା ନାହିଁ । ବିଜୁଳି ଚମକଲା ହଠାତ୍ ବଲକୁ ।

ହଠାତ୍ ଜେଟଟା ତଳକୁ କାହିଁକି ଖସିଗଲା ? ହେ ଭଗବାନ, ଏଇ କଣ ଶେଷ ? ହେ ଜଗନ୍ନାଥ........, ଯାହା ହେଉ, ଅଟକି ଗଲା ଦୁର୍ଘଟଣାର ଏଇ ଆଶ୍ୱାସରେ ସମସ୍ତେ ଚମକି ପଡ଼ିଥିଲେ । କାହିଁକି ଏପରି ହେଲା ? ସବୁଠିକ ଯାତ୍ରୀ ଗୋଟିଏ ପାଖରେ ବସିଛନ୍ତି, ବାଲାନ୍‌ସ ହେଉ-ନାହିଁ । 'ସମସ୍ତେ ପ୍ରଥମ ଶ୍ରେଣୀକି ଆସ, ବୁଝି ହୋଇ ବସ'; ସେଇଆ ହେଲା । ପଞ୍ଚାଳିଶ ମିନିଟ ପରେ ଜେଟ୍ ସୁଇଜରଲାଣ୍ଡର ଜେନେଭା ସହରରେ ପହଞ୍ଚିଲା । ଏବେ ବସ୍‌ରେ ବସି ଆମେ ଜେନେଭା ବନ୍ଦରକୁ ଗଲୁ । ସହଯାତ୍ରୀ ମହମ୍ମଦ ଅବଦୁଲ୍ ଖାନଙ୍କ ସଙ୍ଗେ ସେଠି ପରିଚୟ ଜମିଲା । ବନ୍ଦରର ଏକ୍‌ସଚେଞ୍ଜ୍ ବ୍ୟାଙ୍କରେ କିଛି ଫ୍ରେଞ୍ଚ ଫ୍ରାଙ୍କ୍‌କୁ ବଦଳାଇ ଇଜିପ୍ଟିର ନୋଟ୍ ଦେବାକୁ କହିଲି ।

ସଂପୃକ୍ତ କର୍ମଚାରୀ କହିଲେ—କାଏରୋରେ ତୁମ ପକେଟରେ ଇଜିପ୍ଟି ନୋଟ୍ ଦେଖିଲେ ଧରିବେ । ନାସେର୍ ସାହେବଙ୍କ ଆଇନ୍—ଏ ସବୁ କାଏରୋରେ ଭଙ୍ଗା ହେବ ! ପଚାରିଲି—ରାତି ଗୋଟାଏ ବେଳେ ବିମାନ କାଏରୋରେ ପହଞ୍ଚିବ; ସେତେବେଳେ ବ୍ୟାଙ୍କ୍ ଖୋଲାଥିବ ?

କର୍ମଚାରୀ କହିଲେ—ସେ କଥାର ଜବାବ୍ ମୁଁ ଦେଇ ପାରିବି ନାହିଁ; ତୁମେ ୨୫ ଫ୍ରାଙ୍କ୍‌ର ଇଜିପ୍ଟି ନୋଟ୍ ନେବ ନା ନାଁ ।

ନେଲେ ଧରା ପଡ଼ିବ, ନ ନେଲେ ଅସୁବିଧାରେ ପଡ଼ିବ । ଟାକ୍‌ସି ଭଡ଼ା, କୁଲିର ପାଉଣା ଦେବ କିପରି ? ମୁଁ ଦୋଛାଇରେ ପଡ଼ିଥିବାର ଦେଖି ଅବଦୁଲ୍ ଖାନ କହିଲେ—ଡରିବାର କିଛି କାରଣ ନାହିଁ । ବନ୍ଦରରେ ଘୋଷଣା କରିବାକୁ ହେବ—ମୋ ନିକଟରେ କୌଣସି ଇଜିପ୍ଟ ନୋଟ୍ ନାହିଁ ! ସେ ସବୁ ଖୋଜିବା ଲାଗି କେହି ପକେଟରେ ହାତ ପୂରାଇବେ ନାହିଁ । ନାସେର୍ ନିଜ ଦେଶର କଲ୍ୟାଣ ଲାଗି ଏ ବ୍ୟବସ୍ଥା କରିଛନ୍ତି, କିଛି ଫରେନ୍ ଏକ୍‌ସ୍‌ଚେଞ୍ଜ ଆୟ କରିବା ଉଦ୍ଦେଶ୍ୟରେ ।

ବମାନରେ ପୁଣି ଯାଇ ବସିଲୁ । ବାକି ପଥ ଘଟଣାହୀନ । ଓଲ୍ହାଇ ବାର କିଛିକାଳ ଆଗରୁ ଏୟାର୍ ହୋଷ୍ଟେସ୍‌କୁ ଦେଖାଇଲି କାଏରୋ'ର 'ନେଟସ୍' ହୋଟେଲର ଠିକଣା । ଇଜପ୍ଟର ଶିକ୍ଷିତା ମହିଳା । ସେ ଜବାବ ରେ ମୋତେ ଓଲଟି ପଚାରିଲେ—ତୁମେ କଣ ମୁସଲମାନ୍ ?

ଏ ପ୍ରଶ୍ନ କାହିଁକି ପଚାରୁଛ ? 'ନେଟସ୍' ହୋଟେଲ୍‌ରେ କଣ କେବଳ ମୁସଲମାନ ରହନ୍ତି ? ମୁଁ ହିନ୍ଦୁ ବୋଲି ତୁମେ ଜାଣିବ ନାହିଁ, ତୁମେ ମୁସଲମାନ ବୋଲି ମୁଁ ଜାଣିବ ନାହିଁ । ସେଇଟା ଧର୍ମ ତାର; ଅନ୍ୟର ସେଥିରେ ମୁଣ୍ଡ ଘୂରେଇବାର କିଛିନାହିଁ । ଆମେ ସମସ୍ତେ ମଣିଷ, ମାଟି ମାଆର ସନ୍ତାନ । ଏତକ ବୁଝିବା ଅସଲ ଧର୍ମ । କର୍ତ୍ତବ୍ୟ ବାହାର ପ୍ରଶ୍ନ ପଚାରିଛି ବୁଝି ଏୟାର୍ ହୋଷ୍ଟେସ୍ ଟିକଏ ଅପ୍ରସ୍ତୁତ ହେଲା ପରି ଲାଗିଲା; ତାପରେ 'ନେଟସ୍' ହୋଟେଲର ଠିକଣା ବତାଇ ଦେଲା ।

—❊—

କାଏରେ ବନ୍ଦରରେ ପାସ୍‌ପୋର୍ଟ, ଭିସା ଚେକ୍ ପରେ ଜଣେ କୁଲି ଆସି ମୋ ଜିନିଷ ଉଠାଇଲା -- ବସ୍ ନା ଟାକ୍‌ସି ?

'ଟାକ୍‌ସି'; କୁଲି ଜିନିଷତକ ଟାକ୍‌ସିରେ ଲଦିଲା । ଇଜିପ୍ଟ ନୋଟ୍ ସଙ୍ଗେ ପରିଚୟ ତ ହୋଇନାହିଁ । ତଥାପି ସବୁ ଜାଣିଲା ପରି ଖଣ୍ଡିଏ ନୋଟ୍ କାଢ଼ି ଦେଲି । କୁଲି କହିଲା—ଆଉ ଗୋଟିଏ । ଭଙ୍ଗାଇ ଥିବା ନୋଟତକ ଅଞ୍ଜୁଳା କରି ଧରିଲି—ନିଅ, ତୁମ ଧରମ, ମୋ କରମ । ସେ ସେଥିମଧ୍ୟରୁ ଆଉ ଖଣ୍ଡିଏ ନୋଟ୍ ଉଠାଇ ନେଲା । ସେ ଯଥାର୍ଥ ପ୍ରାପ୍ୟ ନେଲା, କି ଅଧିକ ନେଲା, ଜାଣିବାର ଉପାୟ ନାହିଁ, କାହାକୁ ପଚାରିବାର ଉପାୟ ନାହିଁ; ସବୁ ସାତ ଗୋଟାଏ ।

ଟାକ୍‌ସିବାଲା ଦ୍ରୁତ ବେଗରେ ଗାଡ଼ି ଛୁଟାଇଲା; ତା ଟାକ୍‌ସିର ରେଡ଼ିଓ ଝଙ୍କା । ତା ମଧ୍ୟରୁ ଆରବିକ ସଙ୍ଗୀତ ଓ ବାଦ୍ୟର ମଧୁର ସ୍ୱର ଭାସିଆସିଲା, କର୍ଣ୍ଣ ରସାୟନ; ଚତୁର୍ଦ୍ଦିଗ ନିର୍ଜନ; କ୍ଷୀଣ ଚନ୍ଦ୍ରିକା । ମଟର କାଚ ଖୋଲା, ହାଓ୍ୱାଟିକ ଦେହରେ ଚନ୍ଦନ ଲିପି ଦେଲା ପରି

ନଗୁଥାଏ— ଗୋଟାଏ ଲମ୍ବା ସହର—ଅଟୋମାଟିକ୍ ଆଲୋକ ଯାନର ଗତି ନିୟନ୍ତ୍ରଣ କରୁଥାଏ । ଆକାଶ ସ୍ୱଚ୍ଛ; ଦପ୍‌ଦପ୍ ତାରା । ଟାକ୍‌ସି ପ୍ରାୟ ଅଧଘଣ୍ଟାଏ ଚାଲିଲା ପରେ ମୋର ସନ୍ଦେହ ହେଲା—କୌଣସି ନିର୍ଜନ ସ୍ଥାନକୁ ନେଉନି, ଯାଉଛି କି ? କିନ୍ତୁ ନାଁ, ସେ ଠିକ୍ 'ଲୋଟସ୍' ହୋଟେଲରେ ପହଞ୍ଚାଇ ଦେଲା । ସବୁଠାରୁ ବଡ଼ ନୋଟ୍‌ଟି ଡାକୁଦେଲି । ସେ 'ହାଁ', 'ହାଁ' କହି ଖୁବ ଖୁସି ହୋଇଯିବାଲାଗିଲା ।

ପହଞ୍ଚିଲି ବେଳକୁ ବେହେରା ଲୋଟସ୍ ହୋଟେଲ୍‌ର ଦ୍ୱାର ଖୋଲୁଥିଲା । ସେ ଜାଣି ଅପେକ୍ଷା କରି ରହିଥିଲା, ମାସେ ଆଗରୁ ସିଟ୍ ରିଜର୍ଭ ହୋଇଛି । ସେ ମୋତେ ଅଟୋମେଟିକ୍ ଲିଫ୍‌ଟରେ ସପ୍ତମ ମହଲାକୁ ନେଇଗଲା । ମ୍ୟାନେଜରଙ୍କ ସଙ୍ଗେ ସାକ୍ଷାତ୍ ଓ ସାମାନ୍ୟ ଆଳାପ ପରେ ମୁଁ ଶୋଇବାକୁ ଗଲି । ବେହେରା ଶେଯ ସଜାଡ଼ି ଦେଇ ସ୍ମିତରେ ହାତ ମାରି କହିଲା—'ଆଇ ଗୋଇଙ୍ଗ୍' ? ସେଭେନ୍ ସ୍ଲିପ୍, ଆଇ ଗୋଇଙ୍ଗ୍ ?

କହିଲି— ଯା, ଯା;—ମୁଁ ସାତଟା ଆଗରୁ ଉଠିବି; ବକ୍‌ସିସ୍ ନେଇଯିବୁ ।

## ମେମ୍ଫିସ୍

ସ୍ନାନ ପରେ ହୋଟାମ୍ ଚିଠିଲି । ବେହେରା ମୋତେ ନବମ ମହଲାକୁ ନେଇଗଲା—ବ୍ରେକ୍ ଫାଷ୍ଟ ! ଅନେକ ଦିନ ପରେ ଟୋଷ୍ଟ୍ ଓ ଲହୁଣୀ ଖାଇବାକୁ ମିଳିଲା । ଖାଇସାରି ବସ୍‌ରେ ମେମ୍ଫିସ୍ ଯାତ୍ରା କଲି, କାଏରୋରୁ ପ୍ରାୟ ୨୨ ମାଇଲ୍ ଦୂରବର୍ତ୍ତୀ । ଦୃଶ୍ୟର ପୀଠିକା ବଦଳି ଯାଇଛି, ଆକାଶ ଅତି ସ୍ୱଚ୍ଛ, ଶୁଷ୍କ ରୁକ୍ଷ ପର୍ବତମାଳା ଦିଶୁଛି ଦୂରରେ, ସ୍ୱଚ୍ଛ ବାଲୁକା, ମଝେ ମଝେ ଖଜୁରୀ ବଣ; ପିଠିରେ ଘାସ ଗେଣ୍ଡୁ ନଦା ହୋଇଛି, ତା ଉପରେ ବସିଛନ୍ତି ଦି ଜଣ ପିଲା । ଗଧ ମୁହଁ ବୁଲାଇ ବେଳେ ବେଳେ ପିଠିରୁ ଘାସ ଟାଣି ନେଉଛି । ଘୋଡ଼ାଟଣା ଶଗଡରେ ଆଖୁ ଗଦା ହୋଇ ଯାଉଛି ପେଡ଼ା ହେବା ପାଇଁ ।

କେତେକ ଯୁବତୀ ଜାଳେଗୋଛ ମୁଣ୍ଡେଇ ଚାଲିଛନ୍ତି । ଆମକୁ ଦେଖି ହାତ ପତାଇଲେ, ମାଗିବାରେ ସଂକୋଚ ନାହିଁ, ବିକଟ ଦାରିଦ୍ର୍ୟର ଦୃଶ୍ୟସବୁ ଦେଖିବାକୁ ମିଳିଲା ।

ଜଣେ ଯୁବତୀ ଗୋଛାଏ କାକୁଡ଼ି ଲଟା ମୁଣ୍ଡେଇ ଚାଲିଛି, ହାତରେ ଗୋଟିଏ କେମ୍ପା କାକୁଡ଼ି । ଗଧ ପିଠିରେ ଖଜୁରି ପଟି ବସ୍ତା, ଥୋଡ଼ େଗଧ ପହଁ ଅଡ଼ାଇ ନେଉଛି ଜଣେ । ଆଉ ଜଣେ ନଦ ନେଉଛି ଖଜୁରି କୋଳିର ଏକ ପିଣ୍ଡ । କେତେକ ସ୍ତ୍ରୀଲୋକ କଳା ବୁର୍ଖା ପିନ୍ଧି ଚାଲିଛନ୍ତି । ମେମ୍ଫିସ୍‌ରେ ପହଞ୍ଚିଲି ।

ଟାଣ ଖରା ମାରୁଥାଏ, ମନ୍ଦ ବା ପବନ ଶୀତଳ । ଜଣେ ରାସ୍ତା କଡ଼ରୁ ମାଟି ବୋହି ନେଉଛି । ମେମ୍ଫିସ୍ ଗ୍ରାମର ଘରସବୁ ମାଟିରେ ତିଆରି; ଛାତସବୁ ମାଟିର । ପିଲାଟିଏ ମେଣ୍ଢା ଚରାଇ ନେଉଛି । ଅଜବ ବାଲି, ସାହାରା ଆଉ 'ମେମ୍ଫିସ୍', ମଝିରେ ଅନେକ ବାଲିବନ୍ତ; ଏ ସବୁ ଝଡ଼ବାଲିରୁ ବାଲିକୁ ରକ୍ଷା କରେ ।

କୌଣସି ଯୁବତୀ ମୁଣ୍ଡେଇ ନେଉଛି ଆଖୁପତ୍ର ଗୋଛା । କାଖରେ ଚାରି ପିଲା; ଦଳେ ସ୍ତ୍ରୀ ଲୋକ ଗଛ ମୂଳେ ବସି ଗପ ଜମେଇଛନ୍ତି; ଖଣ୍ଡିଆ ଭୂତ ବୁଲୁଛି । ମୁଁ ସ୍ଫିଙ୍କ୍ସ୍ ପାଖେ ଛିଡ଼ା ହେଲି । ଏହାର ପୁରୁଷ ମୁହଁ, ସ୍ତ୍ରୀ ମୁଣ୍ଡ, ସିଂହ ଦେହ । ଏହା ଖ୍ରୀ. ପୂ. ଦ୍ୱାଦଶ ବା ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ବୋଲି ଐତିହାସିକମାନେ କହୁଥାନ୍ତି । ଏଠି ମେମ୍ଫିସ୍‌ର ମୁଖ୍ୟ ଦେବତା 'ଟା' ଓ ମୃତଙ୍କ ଦେବତା 'ଏସର'ଙ୍କ ମୂର୍ତ୍ତି ରହିଛି ।

ମେମ୍ଫିସ୍ ଖ୍ରୀ. ପୂ. ୩୨୦୦ ରେ ଇଜିପ୍ଟର ରାଜଧାନୀ ଥିଲା । ସେତେବେଳେ ଇଜିପ୍ଟ ଦୁଇଟି ରାଜ୍ୟରେ ବିଭକ୍ତ ଥିଲା । ଉତ୍ତର ଇଜିପ୍ଟର କ୍ଷମତାଶାଳୀ ରାଜା ମେନସ୍ ଦକ୍ଷିଣ ଇଜିପ୍ଟକୁ ଜୟ କରିଥିଲେ ଓ ଏହାକୁ ନିଜ ଅକ୍ତିଆରରେ ରଖିବା ପାଇଁ ମେମ୍ଫିସ୍‌କୁ ରାଜଧାନୀ କରିଥିଲେ ।

ଏହି ସହରର ଚତୁର୍ଦ୍ଦିଗ ଉଚ୍ଚ ପ୍ରସ୍ତର ପ୍ରାଚୀର ଦ୍ୱାରା ବେଷ୍ଟିତ ହୋଇଥିଲା । ଆସିରିଆ ଓ ପାରସ୍ୟବାସୀ ଏହି ପ୍ରାଚୀରକୁ ଅଜେୟ ମନେ କରୁଥିଲେ ।

ଏ ଦେଶବାସୀ ବହୁ ଦେବତାଙ୍କୁ ପୂଜା କରୁଥିଲେ । ଦେବତାଙ୍କ ଆତ୍ମାକୁ 'କା' କୁହା ଯାଉଥିଲା । 'କା' ପ୍ରବେଶ କଲେ ପ୍ରାଣୀ ପବିତ୍ର ହେଉଥିଲା । 'କା' ପ୍ରାଣୀମାନଙ୍କ ଦେହରେ ରହି ମଣିଷଙ୍କ ଭଲମନ୍ଦ କାର୍ଯ୍ୟ ଲକ୍ଷ୍ୟ କରୁଥିଲା । ମେଣ୍ଡେସ୍ ଦେବତାଙ୍କ ମେଷ, ବୁବାଷ୍ଟିସ୍‌ଙ୍କ ମାର୍ଜାର, ସେଖ୍‌ମେଟ୍‌ଙ୍କ ସିଂହ, ହାଥର୍‌ଙ୍କ ଗାଈ, ପବିତ୍ର ପ୍ରାଣୀ ଭାବରେ ପରିଗଣିତ ହେଉଥିଲେ । ଏହି ପବିତ୍ର ପ୍ରାଣୀ ବିନାଶ କଲେ ମୃତ୍ୟୁଦଣ୍ଡ ଦିଆ ହେଉଥିଲା ।

ଏହି ପବିତ୍ର ପ୍ରାଣୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ 'ଏପିସ୍' ବା ବୃଷଭ । ସେ 'ଓସିରିସ୍' ଦେବତାଙ୍କ ଅବତାର । ବୃଷଭର ବିନା ସଙ୍ଗମରେ ଗାଈର ଉଦରରୁ 'ଏପିସ୍' ଜନ୍ମଲାଭ କରୁଥିଲା, ବିଶ୍ୱାସ । ବିଶେଷ ଲକ୍ଷଣବନ୍ତ—ବର୍ଣ୍ଣ କଳା, ମୁଣ୍ଡ ଛୋଟ, ପିଠିରେ ଧଳା ଚିହ୍ନ, ଡେଣା ମେଲାଇଥିବା ଶାଗୁଣା ଆକୃତିର । ଏପରି ଲକ୍ଷଣବନ୍ତ ବାଛୁରି ମିଳିଲେ ନଗରସାରା ଉତ୍ସବ ଅନୁଷ୍ଠିତ ହୁଏ । 'ଥା' ଦେବତାଙ୍କ ମନ୍ଦିର ନିକଟରେ ତାକୁ ରଖାଯାଏ, ସୁଖାଦ୍ୟ ଦିଆଯାଏ, ୨୫ ବର୍ଷ ମଧ୍ୟରେ ବୃଷଭଟି ନ ମଲେ ତାକୁ ପାଣିରେ ବୁଡ଼ାଇ ମାରି ଦିଆହୁଏ, ପୁରୋହିତ-ମାନେ ତାର ମାଂସ ଆହାର କରିଥାନ୍ତି । ତାର ମୃତ୍ୟୁ ଦିବସକୁ ଏକ ଶୋକଦିବସ ରୂପେ ଇଜିପ୍ଟରେ ପାଳନ କରାଯାଏ ।

ପ୍ରାକୃତିକ ଭାବେ 'ଏପିସ୍' ମଲେ ତାର ଶରୀରକୁ ରକ୍ଷା କରା-ଯାଉଥିଲା; ବିଶ୍ୱାସ ଯେ ଆତ୍ମା ତା ଦେହକୁ ପୁଣି ଫେରି ଆସିବ ଓ ସେ ଏକ ପର୍ଣ୍ଣତର ପ୍ରଦେଶକୁ ଯାତ୍ରା କରିବ । 'ଏପିସ୍'କୁ ରାଜାଙ୍କ ପରି ଅଡ଼ମ୍ବର ସହକାରେ ସମାଧି ଦିଆ ହେଉଥିଲା । 'ଏପିସ୍' ପୂଜା ଯୋଗୁଁ ମେମ୍ଫିସ୍ ସାରା ଇଜିପ୍ଟରେ ଅତି ପବିତ୍ର ତୀର୍ଥ ରୂପେ ପରିଗଣିତ ହେଉଥିଲା ।

ମେମ୍ଫିସ୍ ଉନ୍ନତ ମହାକାର ଜେଦ୍ ସ୍ତମ୍ଭ ରୂପେ ଏବେ ଦର୍ଶକଙ୍କ ଆକର୍ଷଣ କରି ଆସିଥାଏ । "ରାମ୍‌ସେସ୍' ମ୍ୟୁଜିଅମ୍ ଦେଖିଲି । 'ମା' ଦେବତାଙ୍କ ମନ୍ଦିରର ପ୍ରବେଶ ଦ୍ୱାରରେ ସମ୍ରାଟ ରାମ୍‌ସେସ୍ ଦ୍ୱିତୀୟ ପଶ୍ଚିମ ଏସିଆ ଯୁଦ୍ଧରେ ବିଜୟୀ ହେବା ପରେ ନିଜ ମୂର୍ତ୍ତି ସ୍ଥାପନ କରିଥିଲେ; କେଉଁ ଯୁଗରେ ତା ଉପରେ ନୀଳ ନଦୀର ପଙ୍କ ଓ ଝଡ଼ର ବାଲି ମାଡ଼ି ଯାଇଥିଲା, କିଏ କହିବ ?

୮୫ ଟନର ଏକ ଚଟାଣ ପ୍ରସ୍ତର ମୂର୍ତ୍ତି, ପାଦ ଭଗ୍ନ, ଏବେ ମ୍ୟୁଜିଅମ୍‌ର ଦୋମହଲରେ ଶାୟିତ ଅବସ୍ଥାରେ ରଖା ହୋଇଛି । ପ୍ରସ୍ତୁ ପଟରେ ଗୋଟିଏ ପୁଷ୍କରିଣୀ, କୂଳରେ କାଶତାଣ୍ଡୀମୂ ଘାସ ଫୁଲ ଫୁଟିଛି; ନଳରେ କିଛି ଅନାବନା ଗଛ, ମରୁଭୂମିରେ ଏହାର ମୂଲ୍ୟ ଅଛି—ମୂଲ୍ୟ ଅଛି ଯାହା କିଛି ସବୁଜର ।

## ଶକ୍‌କାରା

ମେମ୍ଫିସ୍‌ଠାରୁ ବାର କିଲୋମିଟର ଦୂରରେ ପଶ୍ଚିମରେ ଶକ୍‌କାରା । ପ୍ରାଚୀନ ଇଜିପ୍ଟର ସଞ୍ଚଶମ୍ଭୃଙ୍ଗା ଦେବତା 'ସେକେର୍' ନାମରୁ 'ଶକ୍‌କାରା' ଶବ୍ଦର ଉତ୍ପତ୍ତି ହୋଇଅଛି । ସେକେର୍ ମୃତ୍ୟୁର ଦେବତା, ଯେପରି ଆମ ଯମ । ଶ୍ମଶାନର ମାଲିକ ସେକେର୍ ।

ଘୋର ମରୁଭୂମି, ଚୋପା ଖରା; ବାଲିର ଅଭ୍ରବନ୍ଦୁ ଚକ୍‌ଚକ୍ କରୁଥାଏ । ଦୂର ଦିଗବଳୟକୁ ବୃଷ୍ଟି ଦେଉ ନ ଥାଏ । ମରୁଭୂମି ମଧ୍ୟରେ ଏ ଶକ୍‌କାରା, ଶ୍ମଶାନ ମଧ୍ୟରେ ଶ୍ମଶାନ ପରି ।

ରାଜା ବା ଫାରୋଆଙ୍କ ପ୍ରାସାଦର ସତ୍ତା ନାହିଁ । ସେକାଳ ନଗରର ଅବଶେଷ ମଧ୍ୟ ବିରଳ । କିନ୍ତୁ ସେ ଯୁଗର ସମାଧି ମଧ୍ୟରୁ କେତେକ ଅଦ୍ୟାପି ଅକ୍ଷୁଣ୍ଣ ଅବସ୍ଥାରେ ରହିଅଛି । ସଂସାର, ତାର ଧନସମ୍ପଦ, ବିଳାସବ୍ୟସନ ଅସ୍ଥାୟୀ । ରୂଢ଼ଁ ରୂଢ଼ଁ ଗଳିଯାଏ ଦେହ— ଲିଭିଯାଏ ରୂପର ଛଟାପ, ଶୁଖିଯାଏ ହସର ଝରଣା, ହଜିଯାଏ ବହୁ ଯତ୍ନସଞ୍ଚିତ ସମ୍ପଦ । ସଂସାର ଏକ ପ୍ରବାସ, ସଂସାରର ଗୃହ ଏକ ବିଶ୍ରାମ ଭବନ । ତା ଉ[illegible]ର

ଫାରୋଆମାନଙ୍କର ଆସ୍ଥା ନ ଥିଲ । ସେମାନେ ବିଶ୍ୱାସ କରୁଥିଲେ ଜୀବନ ପରବର୍ତ୍ତୀ ଜୀବନକୁ । ତେଣୁ ପ୍ରାସାଦକୁ ସଜେଇବା ପରିବର୍ତ୍ତେ ସଜାଉଥିଲେ ସମାଧିକୁ । ଯାହା କିଛି ଜୀବନରେ ଉପଭୋଗ କରିଥିଲେ ସବୁ ନେଉଥିଲେ ସଙ୍ଗରେ, ପରବର୍ତ୍ତୀ ଜୀବନକୁ ଉପଭୋଗମୟ କରିବାଲାଗି— ରାଣୀ, ଦାସଦାସୀ; ଧନସମ୍ପଦ, ଖାଦ୍ୟପେୟ, ପ୍ରିୟ ଜୀବଜନ୍ତୁ— ହଂସ, କନକ, ଇଗଲ୍; ମୃତ ରାଜାଙ୍କ ସଙ୍ଗେ ସମାଧି ପାଉଥିଲେ ତାଙ୍କର ଦାସଦାସୀ, ଫାରୋଆଙ୍କ ପରବର୍ତ୍ତୀ ଜୀବନରେ ଦାସଦାସୀ ହୋଇ ରହିବା ପାଇଁ; ସେମାନଙ୍କ ଜୀବନର ସ୍ୱତନ୍ତ୍ର ମୂଲ୍ୟ ଅଛି କଣ ଥିଲ ?

ସାହାରର ଶ୍ମଶାନକୁ ଭୟଙ୍କର କରିଛି ଏଇ ସମାଧିସବୁ, ନିଷ୍ଠୁର କାହାଣୀରେ ଭରା । ଦୁର୍ଦ୍ଧର୍ଷ ରାଜା; ଦୁର୍ଦ୍ଦମ ଖିଆଲରେ ଆତ୍ମହରା; ମୃତ୍ୟୁକୁ କରିଛି ମହାନ୍, ସମାଧି ହୋଇଛି ଜୀବନ ପରବର୍ତ୍ତୀ ଜୀବନର ଲୀଳାସ୍ଥଳୀ; ମରଣରେ କିଛି ଶେଷ ହୁଏ ନାହିଁ, ତାହା ଦେଖାଦିଏ ଏକ ନୂତନ ଅଧ୍ୟାୟରେ । ମର୍ତ୍ତ୍ୟଲୀଳା ଖସିଯାଏ ପାତାଳ ତଳକୁ । ସେଇ ରାଣୀ, ଦାସଦାସୀ, ସେଇ ରାଜା; ତାଙ୍କର ସୁବର୍ଣ୍ଣ ସିଂହାସନ, ସୁବର୍ଣ୍ଣ ରାଜମୁକୁଟ, ତାଙ୍କର ରତ୍ନ ଭଣ୍ଡାର, ବାକ୍ସ ସିନ୍ଦୁକ, ସୁଗନ୍ଧିଦ୍ରବ୍ୟ, ବାସନକୁସନ ସବୁ ପାଇଛି ସମାଧି; ସ୍ୱର୍ଗ ବିହାରରେ ବ୍ୟବହାର କରିବା ଲାଗି ରଖାଯାଇଛି ଗୋଟିଏ ନୌକା ।

ଗଢ଼ା ହୋଇଛି ରାଜାଙ୍କ ମୂର୍ତ୍ତି, ଲିପିବଦ୍ଧ ହୋଇଛି ତାଙ୍କର ନାମ । ଜୀବନ କାଳର କେତେକ ଘଟଣା ଚିତ୍ରିତ ହୋଇଛି ଫ୍ରେସ୍‌କୋରେ, କେତେକ ପ୍ରାର୍ଥନା ମଧ୍ୟ ସମାଧି କନ୍ଥରେ ଖୋଦିତ ହୋଇଛି । ଅକ୍ଷର, ଚିତ୍ର, ମୂର୍ତ୍ତି—ଏଥିରେ ହିଁ ପରିଚୟ ମିଳୁଛି ଅତୀତର; ପ୍ରକୃତି ସବୁ ଭାଙ୍ଗି ଚୁର୍‌ମାର୍ କରିଛି, ମଣିଷ ମଧ୍ୟ ଲୋପ କରି ଦେଇଛି ଅବଶେଷ । ପୁରାତନର ଉପାଦାନରେ ଗଢ଼ିଛି ତାର ନୂତନ ସୌଧ ।

ପୁରୋହିତମାନେ କାନ୍ଧରେ ମୃତ ରାଜାଙ୍କୁ ସମାଧି କ୍ଷେତ୍ରକୁ ବୋହି ଆଣୁଥିଲେ । ପୁରୋହିତଙ୍କର ଅଖଣ୍ଡ ପ୍ରତିପତ୍ତି ଥିଲ ସେ କାଳ ସମାଜରେ । ସେ ମଧ୍ୟ ରାଜାଙ୍କ ପରି ଉଚ୍ଚସ୍ତରର ସମାଧି ପାଉଥିଲେ । 'କଫିନ୍'

ବାକ୍ସକୁ ବାଲି ଉପରେ ରଖି ଚକ୍ରୁ ଆସ୍ତେ ଆସ୍ତେ ବାଲି କାଢ଼ି ଦିଆ ହେଉଥିଲା; ବାକ୍ସଟି ବାମ୍ପି ପରି ଗର୍ତ୍ତକୁ ଖସି ଯାଉଥିଲା । ତାପରେ 'ସାର୍କୋ ଫାଗସ୍' ବା ପ୍ରସ୍ତର ବାକ୍ସକୁ ବାଲୁକାରେ ଆବୃତ କରା ହେଉଥିଲା ।

ରାଜା ମେନସଙ୍କ ଉତ୍ତରାଧିକାରୀ 'ହୋର୍ ଆହ୍ୱ'ଙ୍କ ସମାଧି ଦେଖି 'ସେରାପିଅମ୍' ବା 'ଏପିସ୍ ବୃଷଭର ସମାଧି କ୍ଷେତ୍ର ଦେଖିଗଲୁ । ପାହାଡ଼-କଟା ଗାତମାନଙ୍କରେ ସେ କାଳର ବହୁ 'ଏପିସ୍'ଙ୍କୁ ସମାଧି ଦିଆ ହୋଇଥିଲା । ଲାଲ, ଧୂସର ମୃଣ୍ମୟରେ 'ସାର୍କୋ ଫାଗସ୍'ଟି ତିଆରି ହୋଇଛି । ଏହି ପ୍ରସ୍ତର ବାକ୍ସଟିକୁ ମ୍ୟୁଜିଅମ୍‌କୁ ବୋହିନେବା ପ୍ରଚେଷ୍ଟା ହୋଇଥିଲା ; କିନ୍ତୁ ସାମାନ୍ୟ ଯୋଡ଼ାଏଟି ପଥ ବୋହିନେଇ ହେଲା ନାହିଁ ।

ଧନଲୋଭୀ ପାରସ୍ୟ ରାଜା ଏହି ଶ୍ମଶାନ ଅଞ୍ଚଳ ଲୁଣ୍ଠନ କରିଥିଲେ । ସେ ମୂଲ୍ୟବାନ୍ ଧନରତ୍ନ ବୋହି ନେଇ ଏପିସ୍‌ର ହାଡ଼ସବୁ ଫିଙ୍ଗି ଦେଇଥିଲେ । ନିଜେ ରାଜା କେମ୍ବିସ୍‌ର ଗୋଟିଏ 'ଏପିସ୍' ବୃଷଭକୁ ନିଜ ହସ୍ତରେ ବିନାଶ କରିଥିଲେ । ଜନଶ୍ରୁତି ଅଛି ଯେ ସେ ନିଜେ ସେହି ସ୍ଥାନରେ ଆହତ ହୋଇ ମୃତ୍ୟୁମୁଖରେ ପଡ଼ିଥିଲେ । ଲୋକଙ୍କ ଧର୍ମବିଶ୍ୱାସକୁ ନଷ୍ଟ କରିବାର ପ୍ରତ୍ୟକ୍ଷ ଫଳ ତାଙ୍କୁ ମିଳି ଯାଇଥିଲା ।

## 'ଟାଇ'ଙ୍କ ସମାଧି

ଟାଇ ସେ କାଳର ଜଣେ ବଡ଼ ଭୂମ୍ୟଧିକାରୀ, ରାଜଦରବାରର ଜଣେ ସମ୍ମାନିତ, ଉପାଧିଧାରୀ ବ୍ୟକ୍ତି । ରାଜାଙ୍କ ବିଶେଷ ବିଶ୍ୱସ୍ତ ଓ ଗୁଣୀ, ରାଜା ତାଙ୍କୁ ଜାମାତା ରୂପେ ବରଣ କରିଥିଲେ; ଟାଇଙ୍କ ପୁତ୍ରମାନେ ରାଜପୁତ୍ରମାନଙ୍କ ପରି ସମ୍ମାନିତ ହୋଇଥିଲେ । ତାଙ୍କ ସମାଧି ମନ୍ଦିରଟି ସବୁଠୁଁ ମନୋହର, କାନ୍ଥର ଚିତ୍ରଣ ଚମତ୍କାର । ଫ୍ରେସ୍କୋରୁ ସେ କାଳର ଦୈନନ୍ଦିନ ଜୀବନ ଚର୍ଯ୍ୟା ଓ ଲୋକଚଳଣିର ପରିଚୟ ମିଳିଥାଏ ।

ଗୋଟିଏ ଦରଜାବାଟେ ନବେ ଫୁଟ୍‌ର ଚତୁଷ୍କୋଣ ମଧ୍ୟରେ ପ୍ରବେଶ କରିବାକୁ ହୁଏ; ଏଥିରେ ବାର ଗୋଟି ସ୍ତମ୍ଭ ରହିଅଛି । ଏସବୁ ସଦ୍ୟ

ଅଙ୍କିତ ହୋଇ ପର ଜଣା ଯାଉଛି—କେଉଁଠି 'ଟାଇ' ହିପୋପୋଟାମସ୍ ଶିକାର କରୁଛନ୍ତି, କେଉଁଠି ବା ଗୃହବାସ ପରିଦର୍ଶନ କରୁଛନ୍ତି; କେଉଁଠି ମାଲଙ୍କ ଉପରେ ପାଟଛନ୍ତି; 'ଟାଇ' ପଟ୍ଟ ଆଗରେ ଯାତ୍ରା କରୁଛନ୍ତି। ପାଲଙ୍କରେ କୁକୁର କାଠର ଦଉଡ଼ିଟି ବନ୍ଧା ହୋଇଛି; ଗୃହ, କୁକ୍କୁଟ ପାଳନ ଓ ଗୋପାଳନର ନାନା ଦୃଶ୍ୟ ମଧ୍ୟରେ 'ଟାଇ'ଙ୍କ ପ୍ରିୟତମ ପ୍ରାଣୀ 'ମର୍କଟ' ଅଙ୍କିତ ହୋଇଛି।

ତାପରେ ଟାଇଙ୍କ ଶବଯାତ୍ରା; ସ୍ତ୍ରୀମାନେ ରୋଦନ କରୁଛନ୍ତି। କଫିନ ପାଖରେ ତାଙ୍କ ବିଧବା ସ୍ତ୍ରୀ ଛିଡ଼ା ହୋଇଛି। ସମାଧିରେ ଗୋଟିଏ ଗର୍ତ୍ତ, ଏ ବାଟେ 'କା' ଜୀବନ୍ତ ରାଜ୍ୟକୁ ଫିରା ଆସିବା କଥା। ପୁରୋହିତ ଓ ପ୍ରିୟ ବ୍ୟକ୍ତିମାନେ ଦେଇଥିବା ଅର୍ଘ୍ୟ ଗ୍ରହଣ କରେ। ଦ୍ୱାର-ବାତାୟନହୀନ ଏକ ପ୍ରସ୍ତର ଗୃହରେ 'ଟାଇ'ଙ୍କର ଗୋଟିଏ ମୂର୍ତ୍ତି, ମୁଖରେ ଜୀବନ୍ତର ହାସ। 'କା' ଏହାକୁ ଆଧାର କରି ରହେ ବୋଲି ଲୋକବିଶ୍ୱାସ ପ୍ରଚଳିତ ଥିଲା।

## ଷ୍ଟେପ୍ ପିରାମିଡ୍

ଖ୍ରୀଷ୍ଟପୂର୍ବ ୨୬୮୦ରୁ ୨୬୭୦ ମଧ୍ୟରେ ନିର୍ମିତ। ଇଜିପ୍ଟର ପିରାମିଡ୍ ମଧ୍ୟରେ ଏହା ପ୍ରାଚୀନତମ। ଫାରୋଆ ଜୋସେର୍ ପୃଥିବୀର ପ୍ରଥମ ପ୍ରସ୍ତର ଗୃହ ନିର୍ମାଣକାରୀ। ତାଙ୍କ ରାଜତ୍ୱକାଳରେ ଇମ୍‌ହୋଟେପ୍ ନାମକ ଜଣେ କୃତୀ ଶିଳ୍ପୀ ଷ୍ଟେପ୍ ପିରାମିଡ୍ ନିର୍ମାଣ କରିଥିଲେ। ଇମ୍‌ହୋଟେପ୍ ମେମ୍ଫିସ୍‌ର ଲୋକଦେବତା 'ପ୍ଟା'ଙ୍କ ପୁତ୍ର। ଜଣେ ଚିକିତ୍ସକ ହିସାବରେ ସେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ; ପରେ ସେ ଔଷଧର ଦେବତା ରୂପେ ପୂଜିତ ହେଲେ। ମନୁଷ୍ୟ କିପରି ସତ୍କର୍ମ ଯୋଗୁଁ ଦେବତା ରୂପେ ପ୍ରତିଷ୍ଠିତ ହୁଏ, ହୋଟେପ୍ ତାର ପ୍ରମାଣ।

## ଓନସ୍ ପିରାମିଡ୍

ଓନସ୍ ଇଜିପ୍ଟର ପଞ୍ଚମ ବଂଶର (ଖ୍ରୀ:ପୂ. ୨୪୫୦-୨୪୨୦) ଶେଷ ରାଜା। ଏହି ପିରାମିଡ୍‌ର ଶିଳାଲେଖ ପୃଥିବୀର ପ୍ରାଚୀନତମ ଲେଖ। ରାଜା

କପାଳି 'ନଥ୍' ଦେବତାଙ୍କ ପବିତ୍ର ପକ୍ଷୀ 'ଆଇବସ୍'ର ଡେଣାରେ ଝୁଲି ସ୍ୱର୍ଗ ସମୃଦ୍ଧ ଅତିକ୍ରମ କରିବେ, ସୂର୍ଯ୍ୟଦେବତାଙ୍କ ନୌକାରେ ବସି ସ୍ୱର୍ଗରେ ବିହାର କରିବେ, ଖାଦ୍ୟ ପାନୀୟ ଉପଭୋଗ କରିପାରିବେ, ଶତ୍ରୁ-ମାନଙ୍କୁ ଅକ୍ଳେଶରେ ଜୟ କରିପାରିବେ, ସର୍ପ ବା ରାକ୍ଷସ ତାଙ୍କର କୌଣସି କ୍ଷତି କରିପାରିବେ ନାହିଁ, ଏଥିଲାଗି ପୁରୋହିତମାନେ ପିରାମିଡ଼ରେ ମନ୍ତ୍ରସବୁ ଲିପିବଦ୍ଧ କରିଥାଇଛନ୍ତି । ମନ୍ତ୍ରବଳରେ ସବୁ ଅସାଧ୍ୟ ସାଧିତ ହୋଇ ପାରିବ ବୋଲି ସେମାନଙ୍କର ବିଶ୍ୱାସ ଥିଲା ।

୧୮୮୧ ଖ୍ରୀଷ୍ଟାବ୍ଦରେ ଏହି ପିରାମିଡ଼ ଆବିଷ୍କୃତ ହେଲା । 'ସାର୍କୋ-ଫାଗସ୍'ର ଘୋଡ଼ଣିଟି କେହି ହରଣ କରିଛନ୍ତି । ଭିତରେ କେତେଖଣ୍ଡ ଅସ୍ଥି ବ୍ୟତୀତ ଆଉ କିଛି ନାହିଁ ।

## ଗିଜାର ପିରାମିଡ୍

ଇଜିପ୍ଟରେ ଅଶୀଟି ପିରାମିଡ୍ ଅଛି । ସବୁଗୁଡ଼ିକ ନୀଳ ନଦୀର ପଶ୍ଚିମରେ । ଫାରୋଆଙ୍କୁ ସୂର୍ଯ୍ୟଦେବତାଙ୍କ ସଙ୍ଗେ ତୁଳନା କରି ହେଉଥିଲା । ସୂର୍ଯ୍ୟ ପୂର୍ବରେ ଉଦିତ ହୋଇ ପଶ୍ଚିମରେ ଅସ୍ତଯାନ୍ତି । ସେହିପରି ପରାକ୍ରମ-ଶାଳୀ ଫାରୋଆମାନେ ପଶ୍ଚିମରେ ବିଲୀନ ହୁଅନ୍ତି ।

ତା ଛଡ଼ା ଇଜିପ୍ଟର ପୂର୍ବ ଉପକୂଳ ଉର୍ବର, ଶସ୍ୟ ଉତ୍ପାଦନ ଲାଗି ଉତ୍କୃଷ୍ଟ, ଜୀବନର ଇଲାକା ଏ । ପଶ୍ଚିମରେ ଦିଗନ୍ତବ୍ୟାପୀ ମରୁଭୂମି, ମୃତ୍ୟୁର ଲୀଳାକ୍ଷେତ୍ର, ସ୍ୱାଭାବିକ ଶ୍ମଶାନ ସେ, ପୂର୍ବ ଉପକୂଳ ସନ୍ତସନ୍ତିଆ, ସମାଧି ଓ ତାର ସମ୍ଭାର ସଂରକ୍ଷଣ ଲାଗି ଅନୁପଯୁକ୍ତ ।

ଫାରୋଆମାନେ ନିଜ ଆବାସ ନିର୍ମାଣ ଲାଗି ବିଶେଷ ପ୍ରୟାସ କରୁନ ଥିଲେ । କାରଣ ଏହା ଏକ କ୍ଷଣସ୍ଥାୟୀ ବିଶ୍ରାମସ୍ଥଳ । ସମାଧି ଚିର-ସ୍ଥାୟୀ । ତେଣୁ ତାର ନିର୍ମାଣରେ ସମସ୍ତ ଶକ୍ତି ବ୍ୟୟିତ ହେଉଥିଲା । ପିରାମିଡ଼ ଭିତରର ସାର୍କୋଫାଗସ୍‌ରେ 'କା' ପାର୍ଥିବ ସଂସାର ସୁଖ କଥା ଚିନ୍ତାକରି ଆନନ୍ଦରେ କାଳଯାପନ କରିପାରିବ, ଏଇ ବିଶ୍ୱାସ ଥିଲା । କାନ୍ଥମାନଙ୍କରେ ଜୀବନର ଯାବତୀୟ ଘଟଣା ଚିତ୍ରିତ ବା ଖୋଦିତ

ହୋଇଥିଲା । ଏ ଚିହ୍ନ କେବଳ ଅଳଙ୍କରଣ ନୁହେଁ । ପୁରୋହିତ ଯାଦୁମନ୍ତ୍ର ବଳରେ ଆତ୍ମାକୁ ଏକ ଦ୍ୱିତୀୟ ଜୀବନ ପ୍ରଦାନ କରୁଥିଲେ । ତା ବଳରେ 'କା' ଆହାର ପାନୀୟ ଓ ଦାସଦାସୀଙ୍କ ସେବା ଗ୍ରହଣ କରିପାରୁଥିଲା ।

ଲିବିଆନ ମରୁଭୂମିର ଧାରେ ଧାରେ ପ୍ରାୟ ୨୫ ମାଇଲ୍ ମଧ୍ୟରେ ଆବୁରଓ୍ୱାସ, ଆବୁସିର, ଶକ୍କାରା, ଦହସୁର ଓ ଗିଜାର ପିରାମିଡ୍ ସବୁ ଅବସ୍ଥିତ । ମୋଟ ଅଶିଟି ମଧ୍ୟରେ ଗିଜାର ତିନିଗୋଟି ପିରାମିଡ୍ ବିଶେଷ ପ୍ରସିଦ୍ଧ; ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରେ ଏମାନଙ୍କ ନାମ ସର୍ବ ପ୍ରଥମରେ ଆସେ ।

ପିରାମିଡ୍ ଦେଖି ପରବର୍ତ୍ତୀ ଜନ କଳ୍ପନା ନାନା ଦିଗକୁ ପ୍ରସାରିତ ହୋଇଥିଲା । କେହି କେହି ଏହାକୁ ପ୍ରଳୟକାଳର ବନ୍ୟାବେଳେ ମାନବର ଶେଷ ବିଶ୍ରାମସ୍ଥଳ ବୋଲି ମନେ କରୁଥିଲେ । କେହି କେହି ଏହାକୁ ପୃଥିବୀର ଧନଭଣ୍ଡାର, ଶସ୍ୟକୋଠି, କେହି ବା ପର୍ଯ୍ୟବେକ୍ଷଣ କେନ୍ଦ୍ର, ମରୁପଥହରା ମାନଙ୍କର ସଙ୍କେତସ୍ତମ୍ଭ ବୋଲି ମନେ କରୁଥିଲେ ।

## ଅଖେଟ୍ ଖୁଫୁ

ଅଖେଟ୍ ଖୁଫୁ ଅର୍ଥ ଫାରୋଆ ଖୁଫୁଙ୍କ ଦିଗ୍‌ବଳୟ । ଖୁଫୁ ଆନୁମାନିକ ଖ୍ରୀ: ପୂ ୨୬୨୩-୨୫୬୩ ମଧ୍ୟରେ ଏହା ନିର୍ମାଣ କରିଥିଲେ । ପିରାମିଡ୍‌ର ଗୋଟିଏ ପ୍ରସ୍ତରରେ ଖୁଫୁଙ୍କ ନାମ ଖୋଦିତ ହୋଇଛି ।

ଖୁଫୁ ପୃଥିବୀରେ ସବୁଠାରୁ ଶକ୍ତିଶାଳୀ ଓ ଧନଶାଳୀ ରାଜା ଭାବରେ ପ୍ରସିଦ୍ଧ ଥିଲେ । ପିରାମିଡ୍ ନିର୍ମାଣରେ ତାଙ୍କର ସମସ୍ତ ଜୀବନ ଅତିବାହିତ ହୋଇଥିଲା । ସମସ୍ତ ପିରାମିଡ୍‌ଟି ନିର୍ମାଣ କରିବାକୁ ୨୦ ବର୍ଷ ଲାଗିଥିଲା; ଅସ୍ୱାନ୍‌ରୁ ମୁରଗୁନ ଓ ଦୂରବର୍ତ୍ତୀ ଅଞ୍ଚଳରୁ ଚୂନ ପଥର ସବୁ ନୀଳ ନଦୀରେ ବୁହା ହୋଇ ଆସିଥିଲା । ୧୩ ଏକର ଜମିରେ ଏହା ଅବସ୍ଥିତ । ଏହାର ଉଚ୍ଚତା ୪୫୦ ଫୁଟ୍ । ପୃଥିବୀର ସମୁନ୍ନତ କୀର୍ତ୍ତି ମଧ୍ୟରେ ଏହାକୁ ସର୍ବଶ୍ରେଷ୍ଠ ବୋଲି ଧରାଯାଏ ।

ପଥର ସଙ୍ଗେ ପଥରକୁ ଏମନ୍ତ କୌଶଳରେ ମିଶ୍ରେଇ ଦିଆ ହୋଇଛି ଯେ ଯୋଡ଼ା ଦେଖା ପଡ଼ ଜଣାପଡ଼େ ନାହିଁ । ସାରକୋଫାଗସ୍ ମଝିରେ ରାଜାଙ୍କ 'ମମି' ଥିଲା; ମନୁଷ୍ୟ ବା ପଶୁପକ୍ଷୀ ଏହାକୁ କେହି କଳୁଷିତ କରିପାରିବେ ନାହିଁ; କିନ୍ତୁ ଧନଲୋଭୀ ତାକୁ ଚୋରି କରି ଏହାକୁ ଲୁଣ୍ଠନ କରି ନେଇଛନ୍ତି; ସାର୍କୋଫାଗସ ଚୂର୍ଣ୍ଣବିଚୂର୍ଣ୍ଣ; ଫାରୋଆ ହିନେ ଏଠି ଚିରକାଳ ବାସ କରିବେ ବୋଲି କଳ୍ପନା କରିଥିଲେ, ଖଣ୍ଡିଏ ଅସ୍ଥିମଧ୍ୟ ସେହି କଳ୍ପନାର ସ୍ୱାକ୍ଷର ହୋଇ ନାହିଁ ।

ଶୁଣାଯାଏ, ଫାରୋଆ ଏଠି ପ୍ରଜାମାନଙ୍କୁ ବେଠି ଖଟାଇଥିଲେ । କେବଳ ମୁଠିଏ ଖାଇବାକୁ, ଖଣ୍ଡିଏ ପିନ୍ଧିବାକୁ ଦିଆହେଉଥିଲା । କ୍ରୋଧରେ ହତଜ୍ଞାନ ହୋଇ ପ୍ରଜାମାନେ ମୃତ୍ୟୁ ପରେ ରାଜାଙ୍କ ଶବକୁ ଟେକିଆଣି ଘୋଷାରି ନେଇ ମରୁଭୂମିରେ ଫିଙ୍ଗି ଦେଇଥିଲେ ।

କିନ୍ତୁ ପାହାଡ ଉଠି ପିରାମିଡ୍‌ର ଏକାଂଶରୁ ଲକ୍ଷ୍ୟକଲେ ଗିଜା ସହର ଓ ମରୁଭୂମିର ରେଖା ସ୍ପଷ୍ଟ ବାରି ହୁଏ । ଧୂସର ପାଣ୍ଡୁର ବାଲୁକା; ବାଲିବନ୍ତ, ପବନର ଝିଆର ପିରାମିଡ୍ ସବୁ । ପ୍ରକୃତି ପ୍ରଭଞ୍ଜନ ସଙ୍ଗେ ଗଢ଼େ; ବାଲିଖେଳ ଲାଗିଛି ତାର ସବୁଦିନେ । ବାଲିକୁ ଉଠାଉଛି, ପକାଉଛି, ଗଢ଼ୁଛି କମନୀୟ କରି ନୂଆ ନୂଆ ମଡ଼ରେ ସବୁ । ନଈକୂଳ ଧରି ଜମିବାଡ଼, ଅଦ୍ଭୁତ ଦିଶେ ସାହାରାର ଧୂଷରବାଲି ସଙ୍ଗେ ଗାଢ଼ ସବୁଜ ରେଖା, ଯୁଗ ଯୁଗବ୍ୟାପୀ ଶ୍ମଶାନ ସହିତ ସବୁଜ ଜୀବନର ଲାଗିଛି ସଂଗ୍ରାମ ।

ତାକୁ ନିର୍ମିତ ଗର୍ଭ ବାଟେ ନଇଁ ନଇଁ ପିରାମିଡ୍ ଭିତରେ ପଶିଲି; କଟି ଭଗ୍ନ, ଶ୍ୱାସ ରୁଦ୍ଧ ହେଲାପରି ଲାଗିଲା । ଆଗରୁ ପଛରୁ ଠେଲା, ଅପ୍ରଶସ୍ତ ପଥ; ପ୍ରାଣ ଗୁଣ୍ଡଗଲା ପରି ଲାଗିଲା । କାହିଁକି ଏତେ କଷ୍ଟ କରି ଏଥି ଭିତରେ ପଶିଲି ?

ଗାଇଡ୍ ବୁଝାଇ ଲାଗିଥାଏ; କିନ୍ତୁ ଗରମରେ ଦେହ ପୋଡ଼ି ଜଳି ଯାଉଥିଲା ବେଳେ ତା କଥା କିଏ ଶୁଣିବ ? ପିରାମିଡ୍‌ର ଏକ ଚତୁର୍ଥାଂଶ ମାତ୍ର ଉଠି ହୁଏ । କୌଣସିମତେ ତଳକୁ ଆସି ଦୀର୍ଘ ଦୀର୍ଘ

ନିଃଶ୍ୱାସ ଶୋଷିନେଲ; ଅଧଘଣ୍ଟାକ ପରେ ନିଃଶ୍ୱାସ ସ୍ୱାଭାବିକ ଅବସ୍ଥାକୁ ଫେରିଲା ।

'ଏଲ୍ ଆହ୍ରାମ୍' ଏହି ପିରାମିଡ୍ର ସ୍ଥାନୀୟ ନାମ; ଏହା ଦେଖି ସାରିବା ପରେ ରାଜା ଖାଫ୍ରାଙ୍କ ନିର୍ମିତ ପିରାମିଡ଼ ଦେଖି ଗଲୁ । ଏଗାର ଏକର ଜମିରେ ଏହା ନିର୍ମିତ । ରାଜା ଖାଫ୍ରା ପ୍ରତାପଶାଳୀ, କିନ୍ତୁ ଅତି ନିର୍ଦ୍ଦୟ ଥିଲେ; ପ୍ରଜାମାନଙ୍କୁ ବେଠି ଖଟାଉଥିଲେ । ଦେବମନ୍ଦିରସବୁ ବନ୍ଦ କରି ଦିଆ ହୋଇଥିଲା । ଲୋକେ ଚରମ ଲାଞ୍ଛନା ଓ ଦୁଃଖ ଭୋଗ କରୁଥିଲେ ।

'ମେନ୍—କ—ରା' ଖାଫ୍ରୁଙ୍କ ପୁତ୍ର, ଗିଜାର ତୃତୀୟ ପିରାମିଡ୍ର ନିର୍ମାତା । ଏହାର ଉଚ୍ଚତା ୨୦୪ ଫୁଟ୍, ଅନ୍ୟ ଦୁଇଟି ଅପେକ୍ଷା ଆକାରରେ କ୍ଷୁଦ୍ରତର । ଜନଶ୍ରୁତି ଅଛି ଯେ ସେ ସେକାଳରେ ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦରୀ କନ୍ୟାକୁ ବିଭା ହୋଇଥିଲେ ।

ତା ନାଆଁ ନେଫର୍ଟ । ସ୍ନାନ କଲାବେଳେ ତାର ସୁବର୍ଣ୍ଣ ପାଦୁକାରୁ ଗୋଟିଏ ସଞ୍ଚାଣ ଝାମ୍ପିନେଇ ରାଜା ଦରବାରରେ ବସିଥିଲା ବେଳେ ତାଙ୍କ କୋଳରେ ପକାଇ ଦେଲା । ଏଟି କାହାର ? ରାଜା ରାଜ୍ୟ ତମାମ୍ ଖୋଜାଇଲେ । ନେଫର୍ଟ ପ୍ରମାଣ ସ୍ୱରୂପ ଅନ୍ୟ ପାଦୁକାଟି ଦେଖାଇଲା । ନେଫର୍ଟକୁ ଦେଖିବାମାତ୍ରେ ରାଜା ତାର ପ୍ରେମରେ ପଡ଼ିଥିଲେ । ସେ ହୋଇଥିଲା ଇଜିପ୍ଟର ରାଣୀ ।

୧୮୩୭ ଖ୍ରୀଷ୍ଟାବ୍ଦରେ ଏହି ପିରାମିଡ୍ ଖୋଲା ହେଲା । ସାର୍କୋଫାଗସ୍ରେ ଗୋଟିଏ ସୁନ୍ଦର ଖଚିତ କାଷ୍ଠ କଫିନ୍ । ତା ଉପରେ ଲେଖା 'ମେନ୍—କ—ରା', ଗୋଟିଏ ବ୍ରିଟିସ୍ ଜାହାଜ ସାର୍କୋଫାଗସ୍ଟି ନେଇ ସମୁଦ୍ରରେ ଯାତ୍ରା କରିଥିଲା, ସ୍ପେନ୍ ଉପକୂଳରେ ଜାହାଜ ବୁଡ଼ିଗଲା । ବହୁ କଷ୍ଟରେ କଫିନ୍ର କେତେକାଂଶ ଓ କେତେ ଖଣ୍ଡି ଅସ୍ଥି ଉଦ୍ଧାର କରାଗଲା । ସେସବୁ ଏବେ ବ୍ରିଟିସ୍ ମ୍ୟୁଜିଅମ୍ରେ ରଖାଯାଇଛି ।

୧୯୦୭ରେ ଖୋଦନ କଲେ ରାଜା ଓ ରାଣୀଙ୍କର ମୂର୍ତ୍ତି ଦୁଇଟି ବାହାରିଲା । ଏବେ ସେସବୁ ଆମେରିକାର ଗୋଟିଏ ମ୍ୟୁଜିଅମ୍‌ରେ ରଖା ଯାଇଛି ।

ଯେତେବେଳେ ଖଣ୍ଡିଏ ଘୁଲଘର ତୋଳିବା ବଡ଼ କାରଗରୀ ଥିଲା, ସେତିକବେଳେ ଇଜିପ୍ଟର ଲୋକେ ଏ ବିପୁଳ ପିରାମିଡ଼୍‌ମାନ ନିର୍ମାଣ କରିଥିଲେ; ମନୁଷ୍ୟ ସଭ୍ୟତାର ବିକାଶ ମୂକସାକ୍ଷୀ ସେମାନେ, ବିସ୍ମୃତ ଅତୀତର ସର୍ବଶ୍ରେଷ୍ଠ ସ୍ମାରକ; ଗ୍ରୀଷ୍ମ ମଧ୍ୟାହ୍ନର ରୌଦ୍ରରେ ଗୁରୁଗମ୍ଭୀର, ଚନ୍ଦ୍ରାଲୋକରେ ବାକ୍‌ମୁଖର; ତାରକିତ ଆକାଶ ତଳେ ଇତିହାସର ବୋଝ ଯେମିତି ଛିଡ଼ାହୋଇଛନ୍ତି ସେମାନେ, ସମସ୍ତଙ୍କୁ ଉପହାସ କରି ।

## ସ୍ଫିଙ୍କ୍‌ସ୍

ଛୟଷଠି ଫୁଟ୍ ଉଚ୍ଚ, ଦୁଇଶ ଚାଳିଶ ଫୁଟ୍ ଲମ୍ବ ସ୍ଫିଙ୍କ୍‌ସ୍—ମନୁଷ୍ୟର ମୁଖ, ସିଂହର ଶରୀର—ବିଶ୍ୱବିସ୍ମୟର ଏକ ମହାନ୍ ବସ୍ତୁ, ମରୁଭୂମିର ରୁକ୍ଷ ପରିବେଶରେ ମହାକାଳ ପରି ଛିଡ଼ା ହୋଇଛି ସେ ଯୁଗ ଯୁଗ ଧରି, ଅଗଣିତ ଘଟଣାପ୍ରବାହର ମୂକ ସାକ୍ଷୀ ରୂପେ ।

ଫାରୋଓ ଖେଫ୍‌ରେନ୍‌ଙ୍କ ପିରାମିଡ୍ ଲାଗି ପ୍ରସ୍ତର କାଟି ନେଲା ବେଳେ ପାହାଡ଼ର ଗୋଟିଏ ଅଂଶ ଉଦ୍ଧତ ଭାବେ ଛିଡ଼ା ହୋଇ ରହିଲା—ଶିଳ୍ପୀ ମନରେ କଳ୍ପନା ଖେଳିଲା— ଗୋଟିଏ ମୂର୍ତ୍ତି ଗଢ଼ିବ; ବାସ୍ତବ ପ୍ରାଣୀଜଗତ୍ ସହିତ ଯାହାର କୌଣସି ସାମ୍ୟ ନାହିଁ— ଫାରୋଓ ଖେଫ୍-ରେନ୍‌ଙ୍କ ମୁଖ, ଉଷ୍ଣୀଷଯୁକ୍ତ ମସ୍ତକ, ତେଜଭରା ସଙ୍କେତ ସ୍ୱରୂପ ପବିତ୍ର ନାଗ (ଏବେ ଭଗ୍ନ, ବ୍ରିଟିଶ୍ ମ୍ୟୁଜିଅମ୍‌ରେ ସଂରକ୍ଷିତ) —ସିଂହର ଦେହ । ଯୁଗ ଯୁଗର ମରୁଝଞ୍ଜାରେ ଆହତ, କ୍ଷତବିକ୍ଷତ ଏ ଅଦ୍ଭୁତ ଭୟଙ୍କର ବଦନ । ତଥାପି ମନେ ହୁଏ, ମରୁଭୂମିର ଅଭିଭାବକ ସେ, କଠୋର ଶାସକ, ବିସ୍ମୃତ ଅତୀତର ସ୍ମୃତିଧର, ପ୍ରାଚ୍ୟ ଓ ପ୍ରତୀଚ୍ୟ ବିଶ୍ୱକଳାସ୍ପୃହର ପ୍ରହରୀ, ମହା ଶ୍ମଶାନର ମହାକାଳ ।

କେତେ ଯୁଗ ବିତିଗଲା — ମିଶରୀୟମାନେ ସ୍ଫିଙ୍କ୍ସ୍‌କୁ ଦେବତାଙ୍କ ସହିତ ସମ୍ପୃକ୍ତ କରିବାକୁ ଲାଗିଲେ । ତାଙ୍କ ନାମ ହେଲା 'ହୋର୍-ଏମ୍-ଆଖେଟ୍' । ଗ୍ରୀକ୍‌ମାନେ ତାଙ୍କ ନାମ ଦେଲେ 'ହର୍‌ମାଖିସ୍'—ସମାଧି ଦେବତା, ଫୋଏନିକ୍ସ ତାଙ୍କର ପବିତ୍ର ପକ୍ଷୀ । ତାପରେ ଗ୍ରୀକ୍ ପୁରାଣରେ ସ୍ଫିଙ୍କ୍ସ୍ ଗୋଟିଏ ରାକ୍ଷସୀ ସହିତ ଚିହ୍ନିତ ହେଲା—ନାରୀର ମସ୍ତକ, ବକ୍ଷୋଜ, ପକ୍ଷଯୁକ୍ତା ଦୁର୍ଦ୍ଧାନ୍ତା, ସିଂହୀ ସେ । ଅକଳନ୍ତୀ ତାର ବଳ ।

କେତେ ଯୁଗ ସାହାରାର ବାଲିରେ ପୋତିହୋଇ ରହିଥିଲା, ତାର କଳନା ନାହିଁ; କେବଳ ତାର ମସ୍ତକଟି ଦିଶୁଥିଲା । ତାର ଛାୟାରେ କ୍ଲାନ୍ତ ରାଜକୁମାର ଶୋଇ ପଡ଼ିଲେ; ସ୍ୱପ୍ନରେ ସେ ଦେଖିଲେ—ସ୍ଫିଙ୍କ୍ସ୍ ଜୀବନ୍ୟାସ ପାଇଛି, କଥା କହୁଛି, ପିତା ପୁତ୍ରକୁ କହିଲା ପରି ସ୍ନେହରେ ।

'ମୋ ନାଆଁ ହୋର୍—ଏମ୍—ଅଖେଟ୍'; ଭଗବାନଙ୍କ ଆଶୀର୍ବାଦ ତୁମ ଉପରେ ଅଛି । ତୁମେ ଯୁଗରାଜ ଭୋଗ କରିବ । ମେତେ ଏ ବାଲୁକାରୁ ଉଦ୍ଧାର କର, ମୁଁ ଘୋର କଷ୍ଟ ପାଉଛି ।'

କୁମାର ସ୍ୱପ ବୃତ୍ତାନ୍ତ ସଙ୍ଗୀମାନଙ୍କୁ କହିଲେ ନାହିଁ । ସେ (ପ୍ରଥମ ବଂଶର ଥୋଟେମ୍ ଚତୁର୍ଥ) ରାଜା ହେବା ପରେ ବାଲି କଢ଼ାଇଲେ, ବାଲୁକାଝଡ଼ରୁ ସ୍ଫିଙ୍କ୍ସ୍‌କୁ ରକ୍ଷାକରିବାଲାଗି ଗୋଟିଏ ପ୍ରାଚୀର ତୋଳାଇଲେ । ସ୍ଫିଙ୍କ୍ସ୍ ପାଦତଳର ଗୋଟିଏ ପ୍ରସ୍ତରରେ ଏ କାହାଣୀ ଲିପିବଦ୍ଧ ହୋଇ ରହିଅଛି ।

ଗିଜା ମରୁଭୂମିରେ ଉଭା ହୋଇ ସ୍ଫିଙ୍କ୍ସ୍ ଏବେ ବି କହୁଛି ଗୁରୁଗମ୍ଭୀର ସ୍ୱରରେ ଅମୃତ ଅକ୍ଷରରେ ବହୁ କାହାଣୀ, ନିବିଡ଼ ଅନୁଭୂତିର କଥା, କହୁଛି ଗୋଟାଏ ଜାତିର ଇତିହାସ, ମହତ୍ ମହିମାସ୍ୱ, ସାମ୍ରାଜ୍ୟବାଦର କବଳରେ ପଡ଼ି ସେ କିପରି ନାରଖାର ହୋଇଥିଲା, ଏବେ ଜୀବନ, ଗୌରବାନ୍ୱିତ ଜୀବନର ଜୟଗୀତ ଚତୁର୍ଦ୍ଦିଗରେ ।

ଦଳ ଦଳ ଓଟ; ଯାତ୍ରୀଙ୍କୁ ପିଠିରେ ବସାଇ ବୁଲାଇ ମାଲିକ ପଇସା ଆଦାୟ କରୁଥାନ୍ତି । ଅନ୍ୟ ଯାତ୍ରୀମାନଙ୍କ ସହିତ ବସ୍‌ରେ ଫେରିଲି ମୁଁ, ଜଣେ କଏ ଉଇଲେ ଗଛମୂଳେ ବସି ଖଜୁରପଟି ବୁଣୁଛି । ଆଉ ଜଣେ ଘାସ ଗୋଛାରେ ମୁଣ୍ଡ ଦେଇ ଶୋଇଛି । ବିଲରେ ପାଣି ମାଡ଼ୁଛି, ବଗଦଳ ଝୁଣ୍ଟି ଖାଉଛନ୍ତି, ହିଡ଼ରେ କାଶଫୁଲ, ପାଣି କଖାରୁ ମାଡ଼ୁଛି ଝାଟି ମାଟିଦିଆ ଘର ଉପରେ । ଗୋରୁଙ୍କଲ କଣ୍ଠା ଝୁଲୁଛି ।

ଗୋଟିଏ ରେସ୍ତୋରାଁରେ ପଶିଲୁ—ଭାରି ଗରମ୍, ହଠାତ୍ ବରଫରୁ ଆସି ଅଗ୍ନି ଶିଖାରେ ପଡ଼ିଲା ପରି ଲାଗୁଥାଏ, ଫ୍ୟାନ୍ ନାହିଁ । ବହୁଦିନ ପରେ ପୁଞ୍ଜିଏ ଅନ୍ନ, ମନରେ ବଡ଼ ଶାନ୍ତି ଆଣିଲା, ତା ସଙ୍ଗକୁ ମିଳିଲା ଲୋହିତ ସାଗରର ଚିଙ୍ଗୁଡ଼ିଭଜା, ଭୂମଧ୍ୟସାଗରର କଙ୍କଡ଼ାଝୋଳ, ଶେଷକୁ ଗାଜାର ଖଜୁରି କୋଳି—ପରମ ଶାନ୍ତି ।

## ଯାଦୁଘର

ପିରାମିଡ୍, ସ୍ଫିଙ୍କ୍‌ସ୍, ମରୁଭୂମି, ମସ୍‌ଜିଦ୍—ମିଶରରେ ଆଉ ଦେଖିବି କଣ ? ଯାଦୁଘର ଦେଖି ଦେଖି ମନ ଚଟା ଧରିଥିଲା; ତଥାପି ଗଲି, ମିଶରର ପ୍ରାଚୀନ ସଂସ୍କୃତି ଉପରେ ଥରେ ଆଖି ବୁଲେଇ ଆଣିବା ଲାଗି ।

ଯାଦୁଘର ହତାରେ ଦୁଇଟି ବଡ଼ କୁଣ୍ଡ, ଗୋଟିକରେ ପଦ୍ମଲତା, ନବାଗତ ହେମନ୍ତର ଶିଶିରରେ ପତ୍ରସବୁ ପୋଡ଼ି ଯାଉଛି । ଅନ୍ୟ କୁଣ୍ଡଟିରେ ନାଲି କଇଁ, ପ୍ରତି ପାଖୁଡ଼ାରେ ଶିଶିରବିନ୍ଦୁ, ସକାଳ କିରଣରେ ଝଟକୁଛି ।

ଯାଦୁଘରେ ବହୁ ଲୋକଦେବତା—'ରା'; ତାଙ୍କର ପ୍ରିୟ ଓ ପବିତ୍ର ପ୍ରାଣୀ ବୃଷଭ, ସେଖ୍‌ମେନ୍, 'ରା'ଙ୍କ ସ୍ତ୍ରୀ; ନେଥ ଶିକାର ଓ ଯୁଦ୍ଧର ଦେବୀ, ତାଙ୍କର ପବିତ୍ର ପ୍ରାଣୀ ସିଂହ, ଖନ୍‌ସୁ—ଚନ୍ଦ୍ରଦେବତା, ତାଙ୍କର ପବିତ୍ର ପକ୍ଷୀ ସଞ୍ଚାଣ ବା ପେଚକ, ମୁଟ୍—ପୃଥିବୀର ମାତା, ତାଙ୍କର

ପବିତ୍ର ପକ୍ଷୀ ଶାଗୁଣା, ଓସିରିସ୍ ପାତାଳ ଦେବତା, ତାଙ୍କର ପବିତ୍ର ପ୍ରାଣୀ ଶ୍ୱେତ ବୃଷଭ, ଆଇସିସ୍ ପ୍ରକୃତିମାତା, ଓସିରିସ୍‌ଙ୍କ ସ୍ତ୍ରୀ, ଏଇ ଦେବତାଙ୍କ ମଧ୍ୟରୁ କାହାରି ପକ୍ଷୀମୁଖ, କାହାର ଶ୍ୱାନମୁଖ ଦେଖିଲେ ହସ ମାଡ଼େ; କିନ୍ତୁ ଆମର ତ ଫେର୍ ଅଶ୍ୱିନୀକୁମାର, ଅଶ୍ୱମୁଖୀ ବାଣେଳୀ ଅଛନ୍ତି ! ଗ୍ରୀସ, ଇଜିପ୍ଟ ଓ ଭାରତର ପୌରାଣିକ ଦେବତା କଳ୍ପନାରେ ଯେଉଁ ବୈଶିଷ୍ଟ୍ୟ ରହିଛି ତାହାହିଁ ଲକ୍ଷ୍ୟ କରିବାର କଥା, ଆମର ଦୁର୍ଗାଙ୍କ ସିଂହ, ଲକ୍ଷ୍ମୀଙ୍କ ପେଚକ, ବିଷ୍ଣୁଙ୍କ ଗରୁଡ଼, ଶିବଙ୍କ ବୃଷଭ, ଅଗ୍ନିଙ୍କ ମେଷ ବାହନ ପରି ଇଜିପ୍ଟର ଦେବତାମାନଙ୍କର ପବିତ୍ର ପ୍ରାଣୀସବୁ ରହିଛନ୍ତି ।

ହେଭଲ୍ସ ପଛେ ରାଜା, ରାଣୀ, ରାଜମୁକୁଟ, ରାଜସିଂହାସନ, ରାଜପୋଷାକ, ଅଳଙ୍କାରପତ୍ର, ପ୍ରସାଧନ ସାମଗ୍ରୀ, ବହୁ ପ୍ରକାରର ମମି ଓ ତା ଉପରର କାରୁକାର୍ଯ୍ୟ, ଦ୍ୱାରର ତୋରଣ, ସାର୍କୋଫାଗସ୍, ସ୍ଫିଙ୍କ୍ସ୍ ଓ ସମାଧି ଭିତରୁ ବାହାରିଥିବା ମାଞ୍ଜେଟ୍ ବା ସୂର୍ଯ୍ୟପୋତ ଦେଖିଲୁ, ସୂର୍ଯ୍ୟଦେବତାଙ୍କ ସହିତ ଫାରୋଆ ସ୍ୱର୍ଗ ଭ୍ରମଣ କରିବେ ବୋଲି ଏହି ନୌକାର ବ୍ୟବସ୍ଥା ହୋଇଥିଲା ।

ସମୁଦ୍ରରୁ ଫେରି ଆସିଲି; ଧାଡ଼ ଧାଡ଼ କରିବାର; ଗୋଟିଏ ନିଃଶ୍ୱାସରେ ଶୋଷିନେଲି ସତେ ବା ଶ୍ରୀକ୍ଷେତ୍ରର ସେଇ ସୁରଭିକୁ । ବାଲୁକାମୟ ଶ୍ରୀକ୍ଷେତ୍ର, କେବଳ ଖର୍ଜୁର ବଦଳରେ ନାରିକେଳ, ପିରାମିଡ୍ ବଦଳରେ ଶ୍ରୀମନ୍ଦିର, ରାଜସିଂହ ବା ନାଗକନ୍ୟା ନାହାନ୍ତି, ଏଠି ସ୍ଫିଙ୍କ୍ସ୍ ।

ସାନନଦୀ କୂଳର ପୁଟ୍ ପାଥିରେ ରହିଲି, ଝଙ୍କା ଝଙ୍କା ଖଜୁରି ଗଛସବୁ ଏ କୂଳେ ସେ କୂଳେ; ଆମଆଡ଼ର ଖଜୁରି ଉଦ୍ୟାନ ବା ପାର୍କରେ ଏକ ମଣ୍ଡନ ନୁହେଁ, ସେ ଅନାବନା ଉଠେ, ନଈ କୂଳେ, ସଡ଼କ ଧାଡ଼େ ବା ଏଠି ସେଠି, ନଦୀଭିତରର କାହାଣୀ ତାର ସ୍ତରେ ସ୍ତରେ; ତାକୁ ଶୋଷଣ କରି ଦଣ୍ଡିତ ମରୁଅଞ୍ଚଳ ହୁଏ; ଖଜୁରି ତ ଏ ଦେଶର ଏକ ସମ୍ପଦ, ଆମ ଦେଶର ନାରିକେଳ ପରି, ହୃଷ୍ଟପୁଷ୍ଟ, ବଳିଷ୍ଠ, ଉନ୍ନତ ତାର ଶ୍ରୀ ।

ବର୍ଷ ଯୋଗୁଁ ନୀଳ ନଦୀର ସ୍ରୋତ ଆଜ ପ୍ରଖର ନୁହେଁ, ଜଳ ମଧ୍ୟ ନିର୍ମଳ ନୁହେ, ଆଜ୍ଞାର ମାର ନୌକା ଚଳାଇ କଏ ସବୁ ଯାଉଛନ୍ତି; ଗୋଟିଏ ମାଟିଆ ରଙ୍ଗ ନୀଳ ନଦୀର ଆକାଶରେ ଚକଚକ ଦେଖାଉଛି। ସୂର୍ଯ୍ୟାଲୋକରେ ପାଣି ଛଳଛଳ କରୁଛି, ମାଛସବୁ ଡେଉଁଛନ୍ତି, ରୂପା ପାଖ୍ୟା ପର ଚକ ଚକ୍; ଅଦୂରରେ ମରୁଭୂମି, ଅପ୍ରୀତିକର ଦୃଶ୍ୟ, ମଧ୍ୟାହ୍ନ ହେଲେ, ମରୀଚିକା ନୃତ୍ୟ କଲେ, ଝଞ୍ଜା ପ୍ରବାହିତ ହେଲେ, ଟାଙ୍ଗର ପାହାଡ଼ସବୁ ଜୀବନ୍ତ ହୋଇ ପିରାମିଡ଼ ସଙ୍ଗେ ହାତ ମିଳାଇବେ; ଏ ପଟକୁ ଚାହିଁଲେ ସବୁଜ ଶସ୍ୟ, ସମୃଦ୍ଧ ଖର୍ଜୁର, ଅକଳନ୍ତ ଜଳସମ୍ପଦ, ପ୍ରକୃତରେ ଇଜିପ୍ଟ ହିଁ ନୀଳନଦୀର ଦାନ।

କୃଷ୍ଣଚନ୍ଦ୍ରା; କାପୁର୍ (ନୀଳ ନୀଳ ଫୁଲ ତାର); ତା ଘରେ ଛୁଡ଼ା ହୋଇ ନୀଳ ନଦୀର ଦୃଶ୍ୟ ଦେଖୁଥିଲି ବେଳେ ପଦାର୍ପଣ ମହାମ୍ମଦ ଲତିଫ୍, କାଏରୋ ବିଶ୍ୱବିଦ୍ୟାଳୟର ଛାତ୍ର; ଆରବୀ ତାର ମାତୃଭାଷା, ସର୍ବସାଧାରଣ ଫରାସୀ, କଥାବାର୍ତ୍ତା ଚଳାଇବା ଭଳି ଇଂରେଜୀ ଜାଣେ। ସ୍ୱତଃପ୍ରବୃତ୍ତ ହୋଇ ମୋତେ କହିଲା—ଚାଲ, ନୀଳ ନଦୀରେ ବୁଲିଆସିବା। ମୋଠାରୁ ଚାରି ପିଏଷ୍ଟର୍ (୧ପାଉଣ୍ଡ=୧୦୦ପିଏଷ୍ଟର୍) ନେଇ ତା ଲାଗି ଓ ମୋ ଲାଗି ଟିକେଟ କରି ଆଣିଲା।

ଆକାଶରେ ସଫେଦ ମେଘ, ଉଲଗ୍ନ ଆକାଶର ଲଜ୍ଜାନିବାରଣ ତାର କାର୍ଯ୍ୟ, ସେ ବର୍ଷେ ନାହିଁ, ଧୂସର ଧୂସର ମରୁଭୂମିରେ କୁଆଡ଼େ ମିଳେଇ ଯାଏ। ଭଗବାନଙ୍କ କରୁଣାର ଧାରା ଏଇ ନୀଳ ନଦୀ, ହଜାର ହଜାର ମାଇଲ ବାଲୁକା ମଧ୍ୟରେ ବୋହି ଆସୁଛି—ଏଠି ଜୀବନ ଗଢ଼ିଛି, ମଣିଷର ପ୍ରଥମ ସଂସ୍କୃତି ଗଢ଼ିଛି।

ବାଟରେ ପ୍ରଥମେ ଦୃଷ୍ଟି ଆକର୍ଷଣ କଲା କାଏରୋର ଟାଓ୍ୱାର୍, ତାପରେ କାଏରୋ ବିଶ୍ୱବିଦ୍ୟାଳୟ, ନ୍ୟାସନ୍ୟାଲ୍ କ୍ଳବ୍, ଆର୍ମ୍ସେନାଲ୍ କ୍ଳବ୍, ନାଇଟ୍ କ୍ଳବ୍, ଜୁ, ମ୍ୟୁଜିଅମ୍ ଅଫ୍ ଇଣ୍ଡଷ୍ଟ୍ରି ଆଣ୍ଡ୍ ଏଗ୍ରିକଲ୍‌ଚର୍, ମିଲିଟେରି ମ୍ୟୁଜିଅମ୍, କେତେକ ଗୀର୍ଜା ଓ ମସ୍‌ଜିଦ୍।

ଶୀତଳ ହାଓ୍ୱା ଓ ଜଳୋଚ୍ଛ୍ୱାସର କଳକଳ ନାଦରେ ତନ୍ଦ୍ରା ଲାଗି ଆସୁଥିଲା, ଲଫେଙ୍ଗ୍ ପଚାରିଲା—ଇଜିପ୍ଟର ଝିଅମାନଙ୍କ ବିଷୟରେ ତୁମର ମତ କଣ ? ମନେ ମନେ ଭାବିଲି—ଏ ଟୋକାଟାର କମ୍ ସାହସ ତ ନୁହେଁ ! କିନ୍ତୁ ତା ମନ କଥା ଜାଣିବାକୁ ହେବ । କହିଲି—ଏଠା ସୁବକ୍ଷା ଗୌରାଙ୍ଗୀ, ସ୍ୱାସ୍ଥ୍ୟବତୀ, ସୁନ୍ଦରୀ, ଫୁଟ୍‌ପାଥ୍‌ରେ ଯାହା ଦେଖିଛି ।

'ଭାରତୀୟ, ମିଶରୀୟ ସ୍ତ୍ରୀ ମଧ୍ୟରେ ତୁମେ କାହାକୁ ବାହାହେବ ?' ମନେ ମନେ ଭାବିଲି—ଏ ପିଲାଟାର କାଣ୍ଡଜ୍ଞାନ ନାହିଁ ନା କଣ ? ମୋ ପରି ଜଣେ ପ୍ରୌଢ଼କୁ ବିବାହ କଥା ପଚାରୁଛି !
କହିଲି—'ଇଜିପ୍ଟୀୟ'।

'କାରଣ ?

'ସେ ସୁନ୍ଦରୀ !'

ଆଚ୍ଛା, ତୁମର ଏଠା ସ୍ତ୍ରୀଲୋକଙ୍କ ବିଷୟରେ ମତ କଣ ?'

'ଏଠି ଦୁଇ ପ୍ରକାର ସ୍ତ୍ରୀଲୋକ ଅଛନ୍ତି, ସୁନ୍ଦରୀ, କିନ୍ତୁ ଚରିତ୍ର ଭଲ ନୁହେଁ; ଅସୁନ୍ଦରୀ, ଚରିତ୍ର ଭଲ ।'

'ତୁମେ କେମିତି ଝିଅ ବାହା ହେବାକୁ ଚାହୁଁଛ ?'

'ଯେ ସୁନ୍ଦରୀ, ଚରିତ୍ରବତୀ ହୋଇଥିବ ।'

'ଇଜିପ୍ଟରେ ସେମିତି ଝିଅ ମିଳିବେ ?'

'ନ ମିଳିଲେ ଆମେରିକାରେ ବାହା ହେବି ।'

'ଚରିତ୍ର ବୋଇଲେ ଯାହା ବୁଝ ଆମେରିକାରେ ତା ମିଳିବ ?'

'ଏକ ଦେଶରେ ପୁଅ ଅନ୍ୟ ଦେଶର ଝିଅକୁ ବାହା ହେବା ଭଲ ।'

'କାହିଁକି ? ସେଠି ଚରିତ୍ର ଖୋଜିବ ନାହିଁ, ସୌନ୍ଦର୍ଯ୍ୟ ଖୋଜିବ ନାହିଁ, ଖାଲି ଭଲ, କାହିଁକି ଭଲ ?'

ଲତିଫ ଚୁପ ରହିଲା, ଅଧିକ ସେ ଭାବିନାହିଁ ଭାବିପାରି ନାହିଁ ବୋଲି, କେବଳ ଗୋଟାଏ ସ୍ୱପ୍ନ ଏ ତାର, ବର୍ତ୍ତମାନ ବୟସ ଓ ପ୍ରାନ୍ତରେ ଅବାନ୍ତର ।

ତଥାପି ତା ମନର ଗଳିକନ୍ଦି ମୁଁ ଖୋଜି ବୁଲିଲି, କେଉଁଠି କିଛୁ ଅଲୁଚା ରହିଯାଇଥିବ ବୋଲି । କହିଲି—ଆଚ୍ଛା, ମୁଁ ଭାଇ ପାଖକୁ ଲେଖିବି, ସେ ତୁମ ଲାଗି ଗୋଟିଏ ଆମେରିକାନ୍ ଝିଅ ଠିକ୍ କରିଦେବ । ତୁମେ କେମିତି ଝିଅ ଚାହଁ ?—

ବ୍ଲଣ୍ଡ୍, ବ୍ରୁନେଟ୍ ନା ଶ୍ୱେତକେଶା ?

ଲତିଫ କହିଲା—କୃଷ୍ଣକେଶ, ସବୁଜ ଆଖି······

ମୋ ପାଖେ ମିସେସ୍‌ଙ୍କ ସହିତ ଜଣେ ଇଟାଲୀୟ ଭଦ୍ରଲୋକ ବସିଥିଲେ—ନାଆଁ ହାରି ଏନ୍ ମାର୍ଗେଟି । ସେ ଦୁହେଁ ଆମର ଇଂରେଜୀ ଆଳାପ ଶୁଣୁଥିଲେ, ମିସେସ୍ ମାର୍ଗେଟୀ ଆମେରିକାନ୍; ସେ ଆମର ଇଂରେଜୀ ଆଳାପ ଶୁଣି ଟିକିଏ ଟିପ୍‌ପଣି ଦେଲେ, ପ୍ରଶ୍ନ ବି ପଚାରିଲେ; ଆମେରିକାରେ ଝିଅଙ୍କ ଲାଗି ବହୁତ ଟଙ୍କା ଖର୍ଚ୍ଚ କରିବାକୁ ହେବ; ରୋଜଗାର କରିପାରିବ ?

ଲତିଫ୍ କହିଲା—"ହଁ" ।

'ତାହେଲେ ଉପଯୁକ୍ତ ଭାବେ ନିଜକୁ ଶିକ୍ଷିତ କର, ସୁଶିକ୍ଷିତ ନ ହେଲେ ବେଶୀ ରୋଜଗାର ନ କଲେ ସେ ବିଭା ହେବ ନାହିଁ ।'

ଲତିଫ୍‌କୁ ପଚାରିଲି—କେବେ ପ୍ରେମ କରିଛ ?

'ହଁ'

ଏତେ ଅଳ୍ପ ବୟସରେ ପ୍ରେମ ଶିଖିଲ; ଆଉ ପାଠ ପଢ଼ୁଛ କେତେବେଳେ ? ସେ ବୁଦ୍ଧି ଗୁଡ଼ । ଭଲ ନ ପଢ଼ିଲେ ଆମେରିକାର ଝିଅ ବିବାହ ବା ଚନ୍ଦ୍ରା ବାତୁଳତା ।

ମିସେସ ମାଗ୍ରେଟୀ କହିଲେ—ମୋ କଥା ସେ ଭଲଭାବେ ବୁଝିପାରୁ ନାହିଁ, ତାକୁ ବୁଝାଇ ଦଅ—ସେ ଆମେରିକାନ୍ ଏମ୍ବାସିକୁ ଦରଖାସ୍ତ କରୁ, ୟୁଥ ଏକ୍ସଚେଞ୍ଜ ପ୍ରୋଗ୍ରାମରେ ଆମେରିକା ଯାଉ, ଗୋଟିଏ ଆମେରିକାନ ପରିବାରରେ ରହୁ, ସେଠା ଚାଲିଚଳଣି ଶିଖୁ ; କଲେଜରେ ତ ବହୁତ ଝିଅ ପଢ଼ନ୍ତି, ଯାହାକୁ ସେ ଭଲ ପାଇବ, ବାହା ହେବ ।

ମୁଁ ତାକୁ ବୁଝାଇ ଦେଲି—ଉଚ୍ଚଶିକ୍ଷା, ବହୁତ ଅର୍ଜନ, ତାପରେ ବିବାହ !

କେତେ କେତେ ପାଲ ନଦୀରେ 'ସ୍କିଙ୍ଗ' କରୁଥାନ୍ତି, କେତେ କେତେ ପହଁରୁ ଥାନ୍ତି ; ମାଛ ଧରା ବି ହେଉଥାଏ—ବୋକାଳ, ବଲଚ, ଟାଇଗର୍ ; ମାଟିଆ ଚିଲ ଚକ୍କର ଦେଉଥାନ୍ତି—ଚୋପା ଖରା, ସଫା ଆକାଶ, ଟଳମଳ ଢେଉରେ ଝଲମଲ ଖରା— ଖଜୁରି, କୃଷ୍ଣଚୂଡ଼ା, କରବୀର, କାଏନ୍ଟେର ଟାଓ୍ୱାର୍ ଶେଷ ପଲକରେ ଦେଖିନେଲି; ସାହେବଦମ୍ପତି ବିଦାୟ ନେଲେ । ଲତଫ୍ ମୋ ସଙ୍ଗେ ସଙ୍ଗେ ଚାଲିଲା, ମୋ ପକେଟର ପେନସିଲଟି ଉପରେ ତାର ଲୋଭିଲା ଆଖି, ନିରେଖି ଦେଖୁଛି, ଲେଖୁଛି । ଇଚ୍ଛା ନ ଥିଲେ ବି ତାକୁ ଉପହାର ଦେଇଦେଲି ।

ସେ କହିଲା—ପେନସିଲଟି ଦେଖିଲେ ଆପଣଙ୍କ କଥା ମନେ ପଡ଼ିବ ।

ମୁଁ କହିଲି—ହଉ ଏବେ ଯାଅ ।

ଲତଫ୍ ଗଲା ନାହିଁ ; ବୋଟ ଟିକେଟ କରିବା ଲାଗି ଦଶ ଡଏଷ୍ଟରର ନୋଟ ନେଇ ବାକି ପଇସା ଫେରାଇ ନାହିଁ । ଆଉ କଣ ?

ଲତଫ୍ ଅଙ୍ଗେଇ ଅଙ୍ଗେଇ କହିଲା—ଘର ଅନେକ ବାଟ, ଖରା !

'ତେବେ କଣ କହୁଛ ?'

'ଟାକ୍ସି !

'୨୫ ଦଏଷ୍ଟର୍ ଚଳିବ ?

'ନା, ୫୦ ଦଏଷ୍ଟର୍ ।'

ଚେକ ନେଇ ଖୁସି ମନରେ ସେ ବିଦାୟ ନେଲା । ଜଣେ ଗ୍ରାହକୁ ମୋ ସଙ୍ଗେ ଦେଖି ଲୋଟସ ହୋଟେଲର ଦରୱାନ କହିଲା—ସବୁ ଦେଶରେ ଭଲ ଲୋକ, ମନ୍ଦ ଲୋକ ଅଛନ୍ତି । ବିଶ୍ୱାସରେ ଫସ ଦେଇ-ଦେବେ । କେତେ ଲଫଙ୍ଗା ଏମିତି ବୁଲୁଛନ୍ତି, ଠକେଇମାନ୍ତି; ମୋତେ ପଚାରିଲା—କଣ ନେଲା କି ? କହିଲି—ନା କିଛି ନୁହେଁ, ସେ ମୋତେ ବହୁତ ସାହାଯ୍ୟ କରିଛି ।

ଅଟୋମାଟିକ ଲିଫଟରେ ଉଠିଲି । ହୋଟେଲ୍ 'ଲୋଟସ' ଦଶବର୍ଷ ହେଲା ଖୋଲା ହୋଇଛି, ଅଧୁନିକ ଇଉରୋପୀୟ ହୋଟେଲର ସମସ୍ତ ସୁବିଧା ଏଠି ମିଳେ । ନଗରର କେନ୍ଦ୍ର ସ୍ଥଳରେ ଅବସ୍ଥିତ, ଆମେରିକାନ ଏକସ୍‌ପ୍ରେସ ଓ ସବୁ ଏୟାର୍ ଅଫିସ ହୋଟେଲ ପାଖରେ । ଟୁର୍ ଲାଗି ଏଠି ବସ୍ ବ୍ୟବସ୍ଥା ହୁଏ, ଟିକେଟ ମିଳେ । ଗାଇଡ ଭେଳା ଭେଳା । ଖାଦ୍ୟପେୟ ବ୍ୟତୀତ ଦୈନିକ ଦେୟ ୯ ଡଲାର୍ ।

୨୭-୧୦-୭୭, ପ୍ରାୟ ଗୋଟାଏ ବେଳ; ପାଉଣା ଦେବାକୁ ଗଲାବେଳେ ମ୍ୟାନେଜର କହିଲେ—ଟ୍ରାଭେଲେର୍ସ ଚେକ୍ ନେବେନାହିଁ । ଶୀଘ୍ର ଯାଅ, ବ୍ୟାଙ୍କ୍ ବନ୍ଦ ହୋଇଯିବ ।

ର ଲ୍‌ନାହିଁ, ସେ ନୋଟିସ୍ ଦେଇଛନ୍ତି । ମୋ ଆଖିରେ ପଡ଼ି-ନାହିଁ । ମୁଣ୍ଡରେ ଚିନ୍ତାଳିଆ ବିଛା କାମୁଡ଼ିଲା, ଅଳ୍ପ ସମୟ ମଧ୍ୟରେ କିପରି ଚେକ୍ ଭଙ୍ଗାଇବି ? ଅପରିଚିତ ଜାଗା । ବାଟ ବାଜିଲା ହେବା ଶଙ୍କା ପଦେ ପଦେ । ପ୍ରକୃତରେ ଯାଇ ପହଞ୍ଚିଲା ବେଳକୁ ସବୁ ବ୍ୟାଙ୍କ ବନ୍ଦ ହୋଇ ଯାଇଛି । ବଜାରରେ ଇତସ୍ତତଃ ହେବାର ଦେଖି ଜଣେ ଦୋକାନୀ ପଚାରିଲେ—କଣ ହୋଇଛି ଆପଣଙ୍କର ? ଆସନ୍ତୁ ଆମ ଦୋକାନକୁ; କିଛି କିଣନ୍ତୁ; ଆପଣଙ୍କ ସମସ୍ୟା ସମାଧାନ କରିଦେବା । ଜଣେ ମୋତେ ଟିକିଏ ଦୂରକୁ ଡାକି ନେଇ କହିଲା—ଗୋଟିଏ ଡଲାର୍ ବଟା ଦିଅ;

ଇଳପ୍‌ଟ ମୁଦ୍ରା ଦେଇ ଦେବା । ପ୍ରସ୍ତାବଟି ମନ୍ଦ ନୁହେଁ ; କିନ୍ତୁ ମନରୁ କିଏ ବାଧା ଦେଲା । ପଳାଇଗଲି । ଜଣେ ଭଦ୍ରଲୋକଙ୍କୁ ପଚାରିବାରୁ ସେ କହିଲେ । ପଲଟାନ୍ ହୋଟେଲରେ ଚେକ୍ ଭଙ୍ଗାଇବା ବ୍ୟବସ୍ଥା ଅଛି ବୋଲି କହିଲେ । ଧାଇଁଲି ।

କର୍ମଚାରୀ ପଚାରିଲେ—ଆପଣ ହୋଟେଲରେ ଅଛନ୍ତି ?

'ନା ।'

'ତେବେ ଅପେକ୍ଷା କରନ୍ତୁ, ବୁଝି ଆସେ । ସେ ଗଲେ ଯେ ଗଲେ; ପ୍ରାୟ ଅଧଘଣ୍ଟାଏ ଡେରି । ତାପରେ ସେ ମୋତେ ୨୦ ଡଲାରକୁ ୮ ପାଉଣ୍ଡ, ୬୦ ପିଆଷ୍ଟର ଦେଲେ । ମୋ ପାଖେ କିଛି ପାଉଣ୍ଡ ଥିଲା । ସବୁ ମିଶାଇ ବିଲ ଦେଇ ଦେଲି । ତାପରେ କେତେକ ନୋଟ ବଳିଲା । କଣ ହେବ ? ମ୍ୟାନେଜରଙ୍କୁ କହିଲି—ଏ ସବୁ ବସ୍ତୁମାନଙ୍କ ମଧ୍ୟରେ ବିତରଣ କରିଦିଅ—ଯେ ମୋ ସୁଟକେସ୍‌ଟି ଜର୍ମାନ ଏୟାର ଲାଇନ ଲୁଫ୍‌ଟହାଂସକୁ ବୋହି ନେବ ତାକୁ ବେଶୀ ଦିଅ ; ବାକୀ ବସ୍ତୁଙ୍କୁ କିଛି କିଛି ଦିଅ ।'

ମ୍ୟାନେଜର ହସି ହସି କହିଲେ—ସବୁ ଦିଅନ୍ତୁ ନାହିଁ, କିଛି ପାଖରେ ଥାଉ, କାଏରୋର ଏୟାର୍ ପୋର୍ଟକୁ ନେବା ଲାଗି ଲୁଫ୍‌ଟ ହାଂସର ବସ୍ ଭଡା ୫୦ ପିଆଷ୍ଟର । ସେତିକ ଦେଇ ସେ ବାକୀତକ ବାଣ୍ଟିଦେଲେ । ଅପରିଣାମଦର୍ଶୀ ମୁଁ ; ମନେ ମନେ ନିଜକୁ ଧିକ୍‌କାର କଲି । ଲୁଫ୍‌ଟହାଂସ ଅଫିସକୁ ଆସି ବୁଝିଲି ଯେ ଯାତ୍ରୀ ପିଛା ଲୁଫ୍‌ଟ-ହାଂସକୁ ୮୦ ପିଆଷ୍ଟର୍ ଟିକସ ଦେବାକୁ ହୁଏ । ଏଥର ଧାଇଁଲି ଆମେରିକାନ ଏକସପ୍ରେସ କମ୍ପାନୀ ଅଫିସକୁ, ଗୋଟିଏ ଟାକ୍‌ସିରେ । ଭାଗ୍ୟକୁ ଏହା ଖୋଲା ଥିଲା; ଇଜିପ୍‌ଟ ପାଉଣ୍ଡ ମିଳିଗଲା । ଲୁଫ୍‌ଟହାଂସ ଅଫିସରେ ପହଞ୍ଚିଲା ବେଳକୁ ଏୟାର୍‌ପୋର୍ଟ ବସଗୁଡ଼ିକ ଗୁଡ଼ିବ ଗୁଡିବ ହେଉଥାଏ—ମାତ୍ର ୪ଜଣ ଯାତ୍ରୀ—ଜଣେ ଜାପାନୀ ଝିଅ, ଜଣେ ମରିସସ୍ ଦ୍ୱୀପର ଭାରତୀୟ, ମୁଁ ଭାରତୀୟ ଓ ଆଉ ଜଣେ ମାଲୟେସିଆ ଅଧିବାସୀ । ସହରରୁ ବହୁ ଦୂରରେ ସାହାରା ମରୁଭୂମି ମଧ୍ୟରେ ଏୟାର୍‌ପୋର୍ଟ ।

ପାର୍କ ; ବଟବୃକ୍ଷ ରୋପଣ କରାଯାଇଛି । କିନ୍ତୁ ସେସବୁ ଏତେ କ୍ଷୀଣକାୟ, ଅତି ଯତ୍ନରେ ଦୁର୍ବଳ ହୋଇ ପଡୁଛି ମନେ ହୁଏ । କେତେକ ଦୁଆରେ ଆମ୍ବ ବୃକ୍ଷ, ଫଳ ପକ୍ୱ ହୁଏ ଶରତ୍ରେ; ଆମ ଦେଶ ବାଡ଼ରେ ଯେପରି ନଡ଼ିଆ, ଏଠି ସେହିପରି ଖଜୁରି ଗଛ ; ଫଳ ଦୋକାନରେ ପେଣ୍ଡା ପେଣ୍ଡା ଖଜୁରି କୋଳ ଝୁଲୁଛି । ସଦ୍ୟ କୋଳର ଆସ୍ୱାଦ ପ୍ୟାକେଟ ବା ଟେଣ୍ଟାରେ ମିଳିବ କାହିଁ ? ଏ ମରୁସ୍ଥାନକୁ କି ସ୍ୱସ୍ତୁଆଳ ଫଳଟିଏ ଭଗବାନ ଦେଇଛନ୍ତି ! ଦୁଇ ଗୋଟି ଖାଇ ପାଣି ମୁନ୍ଦିଏ ପିଇଦେଲେ ମନ ବୋଧ ।

ବସ୍ ଚଲିଲା ଏକ ଜନବିରଳ ସ୍ଥାନରେ, ଦୁଇ ପଟେ ସ୍ୱଚ୍ଛ ବାଲୁକା, ମଝିରେ କଜ୍ଜ୍ୱଳ ବର୍ଣ୍ଣର ପିଚ୍ଛଳ ପଥ ; ପୋର୍ଟ ଷ୍ଟେସନରେ ବହୁ ଚେକ୍, ବହୁ ପ୍ରଶ୍ନ, ଘଣ୍ଟି ପରେ ଘଣ୍ଟି ମାରି ହୋଇ ଲୁପ୍ଟହଂସର ଜେଟ୍ରେ ଯାଇ ବସିଲି । ବିମାନ ଆକାଶକୁ ଉଠିଲା । କାଏରୋ ଉପରେ ଶେଷ ଦୃଷ୍ଟି ପକାଇଲି—କାଏରୋ, ଆଫ୍ରିକାର ବୃହତ୍ତମ ସହର, ଇଜିପ୍ଟର ରାଜଧାନୀ, ଏହାର ପ୍ରାଚୀନ ନାମ 'ଖେର୍ ଓହେ' ; ଫାରୋଆମାନଙ୍କ ଶାସନ ପରେ ଏହା ରୋମାନ ଅଧିକାରକୁ ଆସିଲା, 'ଖେର-ଓହେ'ର ନାମ ହେଲା ବେବିଲୋନ, ମୁସଲମାନ ଅଧିକାର, ନେପୋଲିଅନଙ୍କ ଆକ୍ରମଣ, ଟ୍ରାଫାଲଗାର୍ ଯୁଦ୍ଧ, ନେପୋଲିଅନଙ୍କ ପରାଜୟ, ବ୍ରିଟିଶ ଶାସନ, ଅନ୍ତ୍ୟାଗୃଣ ଫାରୋଙ୍କ ବିଦାୟ ନାସେରଙ୍କ ଶାସନ, ଇଂରେଜ ଫରାସୀ ଆକ୍ରମଣ ଇତ୍ୟାଦି ଗୋଟିକ ପରେ ଗୋଟିଏ ଘଟଣା ଆଖି ଆଗରେ ନାଚି ଉଠିଲା ; ପିରାମିଡ—ସ୍ଫିଙ୍କ୍ସ—ମମି—ସାହାରା ଓ ନୀଳନଦୀ; ଦେଖିଛି ସେ ସବୁ ଛପା ହୋଇ ରହିଛି ମୋର ମନରେ ।

କେତେ କୋଣଯାଏ ବିମାନ ସାହାରା ଆକାଶରେ ଚାଲିଥିଲା ଜାଣେନାହିଁ; ସନ୍ଧ୍ୟା, ଆହା—ଏ ଅସ୍ଥାନରେ କି ସୁନ୍ଦରଶ୍ରୀ ଢ଼ାଳି ଦେଇଛି ! କି ଲଳିତ ଲାବଣ୍ୟମୟ ରୂପ ! କୌମୁଦୀକାନ୍ତ ମରୁଭୂମିକୁ ଆଉଁସି ପାଉଁସି ଦେଉଛି ତାର ଚମ୍ପକ ଅଙ୍ଗୁଳିରେ ।

ଡାହାଣରେ ଶରଚ୍ଚନ୍ଦ୍ର, କୁମାର ପୂର୍ଣ୍ଣିମା ଆସନ୍ନ ପ୍ରାୟ, ମରୁଭୂମିର ବାଲୁକା ଝଟକ ଉଠିଲା ତାର କିରଣରେ—ଦିଗଦିଗନ୍ତ ବ୍ୟାପୀ ମରୁଭୂମି; ପ୍ରସାରିତ ଚନ୍ଦ୍ରିକା ।

ମରୁଭୂମିର ଆକାଶରେ ମେଘ ସବୁ ଧାଇଁଛନ୍ତି, ଓଟପକ୍ଷୀ ପଲ ପଛ ପଛ । ସନ୍ଧ୍ୟାର ଓଠ ଫିକା ପଡ଼ି ଆସିଲଣି, ତଥାପି ପ୍ରଜ୍ୱଳିତ କରୁଛି ସେ ଚନ୍ଦ୍ରିକାକୁ, ଚନ୍ଦ୍ରିକା ଘଷିତ ମେଘକୁ, ମଳିନ ପାଣ୍ଡୁର ମରୁଭୂମି କୁଆଡେ଼ ଲୁଚିଗଲା । ଏ କେଉଁସ୍ଥାନ ? ଗୋଟିଏ ଗୋଟିଏ ଆଲୋକ ଦିଶୁଛି, ଓଏସିସ୍‌ର କୌଣସି ଘର ?

ଉଡ଼ାଜାହାଜରେ ଖାଦ୍ୟ ପରିବେଷିତ ହେଲା, ଏୟାର୍ ହୋଷ୍ଟେସ୍‌ଙ୍କୁ ଜଣାଇଦେଲି—ମୁଁ ବିଫ୍ ବା ପର୍କ ଖାଏ ନାହିଁ । ସେ 'ଭିଲଷ୍, ଆଶିଟେନ୍—ଖାଅ, ଖୁବ ଭଲ, କଅଁଳା ବାଛୁରୀ ମାଂସ ମୁଁ ଖାଇଛ ! ବାଛୁରୀ ଗାଈର ଛୁଆ ନୁହେଁ ? ଯେ ବିଫ ଖାଏ ନାହିଁ, ସେ 'ଭିଲ' କପରି ଖାଇବ ? ଗୋଟିଏ ଉପାସ ରହିଲେ ବା କ୍ଷତି କଣ ? ଫେରାଇ ଦେଲି ।

ତାପରେ ହୋଷ୍ଟେସ୍ ମୋ ଲାଗି ଲେମ୍ବୁ ରସ ଦିଆ ମଟର ଛୁଇଁ ଶିମ୍ବା, ଟମାଟୋ, ମାଛ, ସାଲାଡ଼, ମାକାରୋନି ଓ ପୁଡ଼ିଂ ଆଣି ଦେଲା । ଦିବ୍ୟ ଭୋଜନ ।

ଆମ ବିମାନ ଗୋଟିଏ ମରୁଭୂମିରୁ ଯାଇ ଆଉ ଗୋଟିଏ ମରୁଭୂମିରେ ପହଞ୍ଚିଲା—ଟେହେରାନ୍; ଫ୍ରାଙ୍କ୍ ଫୋର୍ଟରୁ ଟୋକିଓକୁ ସେ ଯାଉଛି, ଟେହେରାନ୍‌ରେ ଅଧଘଣ୍ଟାଏ ରହଣି । ବାଲି ଗଦାରେ ଗୋଟାଏ ଗୋଟାଏ ବେଣାବୁଦା, ନାଲି ନାଲି ଆଲୋକମାଳା ଦେଖୁ ଦେଖୁ ଆମେ ଆକାଶକୁ ଉଠିଗଲୁ । ଦୁଇଘଣ୍ଟା ପରେ କରାଚୀ । ପାକିସ୍ଥାନ ମାଟିରେ ଥରେ ପାଦ ପକେଇବା ଲାଗି ତଳକୁ ଗଲି । ଏୟାର୍ ହୋଷ୍ଟେସ୍ ମୋତେ ଟ୍ରାଞ୍ଜିଟ୍ କାର୍ଡ଼ଟି ଦେଇନାହିଁ, ମୁଁ ବି ମାଗିନେଇ ନାହିଁ । ତେଣୁ ବିଶ୍ରାମାଗାରରେ ମୁଁ ଫଳରସ ପାନରୁ ବଞ୍ଚିତ ହେଲି ।

ବିମାନରେ ପଶିଲା ବେଳକୁ ହୋଷ୍ଟେସ୍ ନାନା ପ୍ରଶ୍ନ କଲା, ଅଚିହ୍ନା ଅଜଣା ପର—କେଉଁଠିକି ଯିବ ? କେଉଁ ଉଡ଼ାଜାହାଜରେ ?

ହସି ହସି କହିଲି—ଅଯଥା ପ୍ରଶ୍ନ କରନାହିଁ, ଯାନବନ୍ଧୁ ମୁଁ, ଏବେ ଯାନଚ୍ୟୁତ ନ କର ।

କରାଚୀରେ ପୁଣି ପାସ୍‌ପୋର୍ଟ ଚେକ୍ ହେଲା । ପଥଯାତ୍ରା ଏ ଉପଦ୍ରବ ଯାତ୍ରୀ ପକ୍ଷରେ ଘୋର ବିରକ୍ତିକର । ଆକାଶର ଅସୀମ ଶୂନ୍ୟତା ଲଘୁ ଲଘୁ ହୁଏ ଘୁଞ୍ଚିଯାଏ ।

କରାଚୀରୁ କଲିକତା ଅଢ଼େଇ ଘଣ୍ଟାର ବାଟ; ମନରେ ଉଦ୍‌ବେଗ, ସାଢ଼େ ଦୁଇମାସ ପରେ ଘରକୁ ଫେରୁଛି । ଆଖିରେ ପଲକ ପଡ଼ୁନାହିଁ ।

ଦେଖୁ ଦେଖୁ ସକାଳର ଫାଟକ ଫିଟିଗଲା; ଘରଚର ଗଛବୃକ୍ଷ ମଧ୍ୟରେ କୋଠାବାଡ଼ି ହସି ଉଠୁଥିଲା ସୁବର୍ଣ୍ଣ କିରଣରେ—ସୁଖ ସ୍ୱପ୍ନପରି ସୁନ୍ଦର ସବୁ । ଦମ୍ ଦମ୍ ବିମାନଘାଟି ମୋ ମନର ରଙ୍ଗରେ ଅଦ୍ଭୁତ ରଙ୍ଗୀନ୍ ହୋଇ ଉଠିଥିଲା । ଯଥା ସ୍ଥାନରୁ ସୁଟ୍‌କେସ୍‌ଟି ଧରି ଆସିଲି । ଚେକ୍ ହେଉଥିଲା ବେଳେ ଦୃଷ୍ଟି ପଡ଼ିଲା ମୋର ଗୁରୁ ଓ ଗୁରୁପତ୍ନୀଙ୍କ ଉପରେ—ଅଧ୍ୟାପକ ମହେଶ୍ୱର ବାବୁ ଓ ତାଙ୍କ ପତ୍ନୀ ମୋତେ ନେବା ଲାଗି ଆସିଛନ୍ତି । ଟାକ୍‌ସିରେ ଯାଇ ଶ୍ରୀ ଗୋପାଳ ମଲ୍ଲିକ୍ ଲେନ୍‌ରେ ତାଙ୍କ ବାସଭବନରେ ପହଞ୍ଚିଲି ।

ତା ପରଦିନ କଟକଯାତ୍ରା ।

ମାଲଗୋଦାମରେ ଆଣୁଏ କାଦୁଅ—ଖାଲଖମା ଯେପରି ଦେଖି ଯାଇଥିଲି ସେହିପରି ରହିଛି । ଲେଭଲ୍ କ୍ରସିଂର ସେହିପରି ଗାଡ଼ି ଅଟକି ରହୁଛି । ଆଉପଟେ ଆମ୍ବୁଲେନ୍ସରେ ରୋଗୀ ମରୁଛନ୍ତି, ପିଲା ଜନ୍ମ ହୋଇ ଯାଉଛନ୍ତି । ସବୁ ଚାଲିଛି ଗତାନୁଗତିକ ସ୍ରୋତରେ—ଲୋକେ ଯନ୍ତ୍ରଣାରେ ସନ୍ତୁଷ୍ଟ, ଆଶ୍ଚର୍ଯ୍ୟ, ସେମାନେ 'ଯେଉଁଥା ତା' ବରଦାସ୍ତ କରୁଛନ୍ତି । ନଇଲେ

ଏ ମହାନଗରୀ କାଠଯୋଡ଼ି ମଧ୍ୟର ଭୂସ୍ୱର୍ଗଃପାଗ୍ୟ ଭୂମି ଅନ୍ତନର୍କରେ ପରିଣତ ହୋଇଥାନ୍ତା ? ପଥ ମଧ୍ୟରେ ବୃଷଭ ଯୁଦ୍ଧ; ବିବାହ ପଟୁଆର, ସାଇପାଖା ; ଏଠି ସମୟର ଗତି ନାହିଁ ; ଶଗଡ଼ିଆ ନିର୍ବିକାର, ମଝରୁ ମଟର ପେଁ ପେଁ କରୁଛି । ସାଇ ସାଇ ମଧ୍ୟରେ ସଂଗ୍ରାମ ଲାଗିଛି, ଠାକୁରଙ୍କ ନାମରେ ପଥେ ପଥେ ଜୁଲମ୍; କେତେକ ଅଶିକ୍ଷିତ, ଅର୍ଦ୍ଧ ଶିକ୍ଷିତ ଜୀବନର ଗତି ନିୟନ୍ତ୍ରଣ କରୁଛନ୍ତି । ତଥାପି ଏଇ ଗୋବର ଗାଡ଼ିଆରେ ଫୁଟିଛି— ସଂସ୍କୃତିର ଶତଦଳ; ଏଇ ମୋର ପ୍ରିୟ ଜନ୍ମଭୂମି ଓଡ଼ିଶା, ପ୍ରାଣପ୍ରିୟ କଟକ ନଗର ।

୧୯ । ୮ । ୭୭ ସମାପ୍ତ

କଟକ

# ଆମେରିକା-ଅତୀତ ଓ ବର୍ତ୍ତମାନ

ଆମେରିଗୋ ଭେସ୍‌ପୁଚି ଜଣେ ଇଟାଲୀୟ ବ୍ୟବସାୟୀ । ସେ ଦକ୍ଷିଣ ଆମେରିକା ଆବିଷ୍କାର କରିଥିଲେ । ୧୪୯୭ ଖ୍ରୀଷ୍ଟାବ୍ଦରେ ସେ ବନ୍ଧୁମାନଙ୍କ ନିକଟକୁ ଯେଉଁ ଚିଠିପତ୍ର ଲେଖିଥିଲେ, ସେଥିରେ ସେ ଏକ ନୂତନ ଜଗତର ଆବିଷ୍କର୍ତ୍ତା ବୋଲି ଉଲ୍ଲେଖ କରିଥିଲେ । ଜଣେ ଜର୍ମାନ୍ ଅଧ୍ୟାପକ ଟଲେମୀଙ୍କ ଭୂଗୋଳର ନୂତନ ସଂସ୍କରଣ ପ୍ରକାଶ କରିବାକୁ ଯାଇ ସେଥିରେ ଏହିସବୁ ପତ୍ର ପ୍ରକାଶ କରିଥିଲେ । ଅମେରିଗୋଙ୍କ ନାମାନୁସାରେ ସେହି କାଳରୁ ଏହି ଦୁଇ ମହାଦେଶ 'ଆମେରିକା' ନାମରେ ପରିଚିତ ହୋଇ ଆସୁଛି ।

## ଉପନିବେଶକାରୀ

ଅଟୋମାନ୍ ତୁର୍କଙ୍କ କବଳରୁ ଖ୍ରୀଷ୍ଟିଆନ ଧର୍ମପୀଠ କନ୍‌ଷ୍ଟାଣ୍ଟି-ନୋପଲ୍‌କୁ ରକ୍ଷା କରିବା ଲାଗି କେତେକ ଇଉରୋପୀୟ ସ୍ୱେଚ୍ଛାସେବକ ଧର୍ମଯୁଦ୍ଧ କରିଥିଲେ । ତାପରେ ବିଦେଶଯାତ୍ରା ତଥା ଉପନିବେଶ ସ୍ଥାପନ ଲାଗି ଇଉରୋପୀୟ ମନରେ ପ୍ରବୃତ୍ତି ଜାତ ହୋଇଥିଲା । ଖ୍ରୀଷ୍ଟିଆନ ରାଜା ଓ ଧର୍ମଗୁରୁମାନଙ୍କ ଅତ୍ୟାଚାର ସହି ନ ପାରି ଅନେକ ସ୍ୱଦେଶ ପରିତ୍ୟାଗ କରି ପଳାୟନ କରିବାକୁ ଲାଗିଲେ । ଏହି ସମୟରେ ଆମେରିକା ଆବିଷ୍କୃତ ହେଲା । ଲୋକଙ୍କ ମନରେ ନୂତନ ଦେଶରେ ବାସର ମୋହ ଅଳ୍ପ ନ ଥିଲା । ପୁଣି ପ୍ରଚୁର ସୁବର୍ଣ୍ଣ ସମୃଦ୍ଧ ଅବସ୍ଥାର

ସେମାନଙ୍କୁ ପ୍ରଲୋଭିତ କରିବାକୁ ଲାଗିଲା । ପୁଞ୍ଜିପତି, ବ୍ୟବସାୟୀ, ହୋଟେଲ୍‌ୱାଲା, ଶ୍ରମିକ, ମହାଜନ, ଜମାଇ ସୁବର୍ଣ୍ଣ ଅଞ୍ଚଳରେ ବସତି ସ୍ଥାପନ କରିବାକୁ ଲାଗିଲେ । ପ୍ରଥମେ ନଦୀତୀରବର୍ତ୍ତୀ ଉର୍ବରଜମି, ପରେ ସୁବର୍ଣ୍ଣ, ନଗର ନିର୍ମାଣର ପ୍ରଧାନ ହେତୁ ହୋଇ ଉଠିଲା ।

ପ୍ରଥମେ ପର୍ତ୍ତୁଗାଲ୍ ତାପରେ ସ୍ପେନ ଉପନିବେଶ ସ୍ଥାପନରେ ଅଗ୍ରଣୀ ହୋଇଥିଲେ । ନୂତନ ଉପନିବେଶସବୁ ଦୁଇଦେଶ ବାଣ୍ଟି ନେଇଥିଲେ । ଇଂଲଣ୍ଡର ରାଣୀ ପ୍ରଥମ ଏଲିଜାବେଥ୍‌ଙ୍କ ଅମଳରେ ସ୍ପାନିସ୍ ଆରମାଡାର ଧ୍ୱଂସ ପରେ ଫରାସୀ ଓ ଇଂରେଜ ସାମ୍ରାଜ୍ୟ ସ୍ଥାପନ ଲାଗି ପଥ ଉନ୍ମୁକ୍ତ ହୋଇଥିଲା । ସ୍ପେନ୍ ସେତେବେଳେ ସମଗ୍ର ଦକ୍ଷିଣ ଆମେରିକା ଓ ଉତ୍ତର ଆମେରିକାର ଅଧିକାଂଶ ସ୍ଥାନ ଦଖଲ କରି ରଖିଥିଲା । ଅର୍ଥନୈତିକ ମାନବୃଦ୍ଧି, ଦୁଃସାହସିକ କର୍ମ ସାଧନ ଲିପ୍‌ସା ଶକ୍ତିଶାଳୀ ରାଜ୍ୟମାନଙ୍କୁ ସାମ୍ରାଜ୍ୟ ସ୍ଥାପନ ଦିଗରେ ପ୍ରରୋଚିତ କଲା । ଇଂରେଜମାନେ ସ୍ପେନୀୟ ଓ ପର୍ତ୍ତୁଗିଜମାନଙ୍କ ଏକଚାଟିଆ ବାଣିଜ୍ୟ ଭାଙ୍ଗିବାକୁ ଚେଷ୍ଟା କଲେ । ଦାସ ବ୍ୟବସାୟ ପ୍ରତିଯୋଗିତାରେ ଉଭୟ ଦେଶ ମଧ୍ୟରେ ବିବାଦ ବଢ଼ିବାକୁ ଲାଗିଲା । ୧୫୮୪ ଖ୍ରୀଷ୍ଟାବ୍ଦରେ ସାହସୀ ଇଂରେଜ ନାବିକ ସାର୍ ୱାଲ୍‌ଟର୍ ରାଲେ ଆମେରିକାରେ ବସତି ସ୍ଥାପନ କରିଥିଲେ । ସେ ନୂତନ ରାଜ୍ୟର ନାମ ଦେଇଥିଲେ ଭର୍ଜିନିଆ ।

ତା'ପରେ ଭର୍ଜିନିଆ କମ୍ପାନି ପରି ଆମେରିକାରେ ଲଣ୍ଡନ କମ୍ପାନି, ପ୍ଲାଇମାଉଥ୍ କମ୍ପାନି ବାଣିଜ୍ୟ ବ୍ୟବସାୟ ଚଳାଇଥିଲେ । କାଳକ୍ରମେ ସ୍ପାନିସ୍ ଓ ଫରାସୀଙ୍କୁ ବିତାଡ଼ନ କରି ଇଂରେଜମାନେ ଏକାଧିପତ୍ୟ ବର୍ତ୍ତୀ ହେଲେ । ଜର୍ମାନ, ସ୍ପାନିସ, ପର୍ତ୍ତୁଗିଜ, ଫରାସୀ ହଲାଣ୍ଡ, ସୁଇସ୍ ଓ ଇଂରେଜ—ସବୁ ମିଶି ଏକ ନୂତନ ଜାତି ତିଆରି ହେଲା । କିନ୍ତୁ ସମସ୍ତେ ଇଉରୋପୀୟ, ସେମାନେ ହେଲେ ପ୍ରଭୁ; ସେମାନଙ୍କ ସେବାକାରୀ ନିଗ୍ରୋ ଦାସ ।

ଭର୍ଜିନିଆ ରାଜ୍ୟର ନଈ କୂଳେ କୂଳେ ଘୋର ଅରଣ୍ୟମାଳି । ବନଜଙ୍ଗଲ କାଟି ଇଂରେଜମାନେ ସେଠି ଧୂଆଁପତ୍ର ଚାଷ କଲେ ।

ସେତେବେଳକୁ ସେମାନଙ୍କ ହାତରେ ଧର୍ମଗତର ଏକଚ୍ଛତ୍ରିଆ କାରବାର ; ପ୍ରତ୍ୟେକ ଇଂରେଜ ଚାଷୀକୁ ଏକଶହ ଏକର ଲେଖାଏଁ ଜମି ମାଗଣା ଦିଆ ଯାଉଥିଲା । ସେମାନଙ୍କ ସୁଖ ସମୃଦ୍ଧିର ସମ୍ବାଦ ଇଂଲଣ୍ଡରେ ଖେଳିଗଲା । ବହୁ ଲୋକ ଆମେରିକା ଯିବାକୁ ପ୍ରସ୍ତୁତ, କିନ୍ତୁ ଗଣ୍ଠିରେ ଧନ ନାହିଁ । ସେମାନେ ଏହି ଚାଷୀଙ୍କ ପାଖେ ବନ୍ଧା ପଡ଼ି ରହିଲେ । ନିର୍ଦ୍ଦିଷ୍ଟ କେତେ ବର୍ଷ ଲାଗି ସେମାନେ ସାହୁକାରର ଚାଷ କଲେ । କେତେକ ଇଂରେଜ ଦାଗୀଙ୍କୁ ଆମେରିକା ନିର୍ବାସନ କରି କରି ଯାଉଥିଲା । ସେମାନେ ସମସ୍ତେ ପଚାଶ ଏକର ଲେଖାଏଁ ଜମି ପାଇଗଲେ । ତାପରେ ଅଷ୍ଟାଦଶ ଶତାବ୍ଦୀବେଳକୁ ଛେଳି ମେଣ୍ଢାଙ୍କ ପରି ଜାହାଜ ଜାହାଜ ନିଗ୍ରୋ ଆଫ୍ରିକାରୁ ଅଣାଗଲେ । ସେମାନେ ହେଲେ ଦାସ—ନାନା ଦୁର୍ବ୍ୟବହାରର ଶରବ୍ୟ, ନାନା ଭାବେ ନିପୀଡ଼ିତ, ଧନ ସମ୍ପଦର ପ୍ରାଚୁର୍ଯ୍ୟ ମଧ୍ୟରେ ପ୍ରଭୁମାନଙ୍କର ସହଜ ଜୀବନ ଯାତ୍ରା—ବଳକା ସମୟକୁ ସେମାନେ ଭୋଜଭାତ, ଶିକାର ଓ ଘୋଡ଼ା ଦୌଡ଼ରେ କଟାଇଲେ । ଶିକ୍ଷା ଓ ସମ୍ବାଦପତ୍ର ପାଠ ପ୍ରତି ସେମାନଙ୍କ ଧ୍ୟାନ ନ ଥିବା ଦେଖି ଇଂରେଜ ଗଭର୍ଣ୍ଣର ବର୍କଲେ କହିଥିଲେ—ଏ ଦୁଇଟି ମନୁଷ୍ୟକୁ ଅବାଧ୍ୟ କରେ, ନାନା ଗୋଷ୍ଠୀ ଭେଦ ସୃଷ୍ଟି କରେ । ଏଠି ଯେ ସବୁ ନାହିଁ, ବେଶ୍ ଭଲ ହୋଇଛି ।

ଉପନିବେଶବାସୀଙ୍କ ମଧ୍ୟରେ ଇଂରେଜଙ୍କ ସଂଖ୍ୟା ଅଧିକ । ସେମାନଙ୍କ ଭାଷା ଓ ସଂସ୍କୃତି, ଶାସନ ପ୍ରଣାଳୀ ଓ ସାମାଜିକ ଚଳଣି ଏଠି ଚାଲୁ ହେଲା । ଇଂରେଜ ଉପନିବେଶବାସୀ ଇଂଲଣ୍ଡରୁ ସମସ୍ତ ମନୋହାରୀ ଜିନିଷ ଓ ଲୁଗାପଟା ଜମା କରୁଥିଲେ । ପିଲାମାନଙ୍କୁ ଇଂଲଣ୍ଡ ପଠାଇ ଉଚ୍ଚ ଶିକ୍ଷିତ କରୁଥିଲେ । କ୍ରମେ ଇଂରେଜ ଧରଣର ଶିକ୍ଷା ଆମେରିକାରେ ଚାଲୁ ହେଲା, ପାଠ୍ୟ ପୁସ୍ତକ ସବୁ ଇଂଲଣ୍ଡରୁ ମଗା ହୋଇ ଶ୍ରେଣୀମାନଙ୍କରେ ପଢ଼ା ହେଲା ।

ଉପନିବେଶବାସୀମାନେ ଇଂରେଜ ସମ୍ରାଟଙ୍କ ଅଧୀନରେ ରହି ସ୍ୱାୟତ୍ତଶାସନ ଭୋଗ କରୁଥିଲେ । ଫରାସୀ ଓ ନେଟିଭ ଆମେରିକାବାସୀଙ୍କ ଭୟ ସେମାନଙ୍କ ମଧ୍ୟରେ ନିବିଡ଼ ଐକ୍ୟ ଆଣିଥିଲା ।

୧୭୬୩ରେ ପ୍ୟାରିସ୍ ସନ୍ଧିରେ ଫ୍ରାନ୍ସ ଆମେରିକାର ଅଧିକାଂଶ ଉପନିବେଶ ହରାଇଲା । ସ୍ପେନ୍ ମଧ୍ୟ ଉପେକ୍ଷିତ ହେଲା । ଇଂରେଜ ନୌବାହିନୀ ହେଲା ଜଗତରେ ଅଜେୟ । ଇଂରେଜ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହେଲେ ନାହିଁ ।

## ସ୍ୱାଧୀନତା ଆନ୍ଦୋଳନ

୬୧ ଖ୍ରୀଷ୍ଟାବ୍ଦର ନାଭିଗେସନ୍ ଆକ୍ଟ ଔପନିବେଶିକମାନଙ୍କ ମଧ୍ୟରେ ସ୍ୱାଧୀନତା ଆନ୍ଦୋଳନର ମୂଳ ବୀଜ ବପନ କରିଥିଲା । ତଦନୁସାରେ ଏସିଆ, ଆଫ୍ରିକା ଓ ଆମେରିକାରୁ ଇଂଲଣ୍ଡକୁ ଆସୁଥିବା ଦ୍ରବ୍ୟସମ୍ଭାର ଇଂରେଜ ଜାହାଜରେ ବୁହା ହୋଇ ଆସିଲା । ଇଉରୋପୀୟ କୌଣସି ଦେଶର ଜାହାଜରେ ସେ ଦ୍ରବ୍ୟ ଆସିଲେ ଇଂଲଣ୍ଡର ବନ୍ଦର ଦେଇ ଯିବାକୁ ବାଧ କରାଗଲା । ଏହା ଫଳରେ ଶୁଳ୍କ ଆଦାୟ କରି ଇଂଲଣ୍ଡ ଲାଭବାନ ହେଲା, ଇଂଲଣ୍ଡର ନୌଶକ୍ତି ପ୍ରବଳ ଭାବେ ବୃଦ୍ଧି ପାଇଲା । ଔପନିବେଶିକ ଶିଳ୍ପ ଧ୍ୱଂସପ୍ରାପ୍ତ ହେଲା । ଇଂଲଣ୍ଡ ପକ୍ଷରୁ ଔପନିବେଶିକମାନଙ୍କ ଉପରେ ନାନା କର ଧାର୍ଯ୍ୟ କରାଗଲା । ଆମେରିକାବାସୀ ଏକାଠି ତାର ତୀବ୍ର ପ୍ରତିବାଦ କଲେ—

‘ପାର୍ଲିଆମେଣ୍ଟରେ ଆମ ପ୍ରତିନିଧି ସ୍ଥାନ ନ ପାଇବା ପର୍ଯ୍ୟନ୍ତ ଆମେ ଟିକସ ଦେବୁ ନାହିଁ ।’

ସାଲିସ୍ ମନୋବୃତ୍ତିରେ ପିତୃଦେଶ ସବୁ କର ଉଠାଇ ଦେଇ କେବଳ ଚା ଉପରେ କର ଧାର୍ଯ୍ୟ କଲା । ଆମେରିକାବାସୀ ଏଥିରେ ସମ୍ମତ ହେଲେ ନାହିଁ । ଜାହାଜ ବନ୍ଦରରେ ଲାଗିବା ମାତ୍ରେ ବଷ୍ଟନବାସୀ ଚାପେଟିସବୁ ସମୁଦ୍ରକୁ ଫିଙ୍ଗିଦେଲେ । ସ୍ୱାଧୀନତା ଆନ୍ଦୋଳନରେ ସେମାନେ ହେଲେ ଅଗ୍ରଣୀ ନେତା ।

ତେର ରାଜ୍ୟର ନେତାମାନେ ଫିଲାଡେଲ୍ଫିଆରେ ଗୋଟିଏ ସମ୍ମିଳନୀ କଲେ । ସେଥିରେ ସ୍ଥିର ହେଲା ଯେ ଆମେରିକାବାସୀଙ୍କ

ଦୁଃଖ ନ ବୁଝିଲେ ସେମାନେ ଟିକସ୍ ତ ଦେବେ ନାହିଁ, ପୁଣି ବ୍ରିଟିଶ ଜିନିଷ ବୟକଟ କରିବେ ।

ଜର୍ମାନ, ଅଇରିଶ୍ ବା ସ୍କଟିସ୍‌ମାନଙ୍କର ଇଂଲଣ୍ଡ ପ୍ରତି ଆନୁଗତ୍ୟ ନ ଥିବାର କଥା । ପୁଣି ଇଂରେଜମାନେ ତ ରାଜା ବା ଚର୍ଚ୍ଚ ଦ୍ୱାରା ନିପୀଡ଼ିତ ହୋଇ ଏ ଦେଶକୁ ପଳାଇ ଆସିଥିଲେ । ତଥାକଥିତ ପିତୃଦେଶ ପ୍ରତି ସେମାନଙ୍କର ଶ୍ରଦ୍ଧା ବା ଭକ୍ତି କାହିଁକି ? ଏ ଯୁଗର ଆମେରିକାବାସୀ ପିତୃଦେଶର ନାମମାତ୍ର ଶୁଣିଥିଲେ । ଇଂଲଣ୍ଡର ଶାସକମାନେ ସ୍ୱଦେଶବାସୀଙ୍କ ପରି ଆମେରିକାବାସୀଙ୍କ ପ୍ରତି ସୁବ୍ୟବହାର କରୁ ନଥିଲେ, ସେମାନଙ୍କ ଉପରେ ନାନା ରାଜନୈତିକ ଓ ଅର୍ଥନୈତିକ କଟକଣା ଜାରି କରିଥିଲେ ।

୧୭୭୫ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ରାଜା ଆମେରିକାନ୍‌ମାନଙ୍କୁ ବିପ୍ଳବୀ ବୋଲି ଘୋଷଣା କରି ସେମାନଙ୍କୁ କୌଣସି ସାହାଯ୍ୟ ନ ଦେବା ଲାଗି ବନ୍ଧୁ ରାଷ୍ଟ୍ରମାନଙ୍କୁ ଅନୁରୋଧ କରିଥିଲେ ଓ ଏହି ବିପ୍ଳବକୁ ଦମନ କରିବା ଲାଗି କୋଡ଼ିଏ ହଜାର ଜର୍ମାନ୍ ଭଡ଼ାଟିଆ ସୈନ୍ୟ ପଠାଇଲେ; ସେମାନେ ଆସି ଆମେରିକାର କେତେକ ବନ୍ଦରକୁ ପୋଡ଼ି ଜାଳି ଦେଲେ । ୱାସିଂଟନ ଆମେରିକାବାସୀଙ୍କ ସେନାପତି ହେଲେ ।

୧୭୭୬ ମସିହା, ଜୁନ୍ ସାତ ତାରିଖ । ଏହି ଦିବସଟି ଆମେରିକାବାସୀଙ୍କ ପକ୍ଷେ ଅତି ପବିତ୍ର । ସେଦିନ ଆମେରିକା ସ୍ୱାଧୀନତା ଘୋଷଣା କରିଥିଲା ।

ଥୋମାସ୍ ଜେଫରସନ୍ ଏହି ଘୋଷଣାପତ୍ର ଲେଖିଥିଲେ । ମଣିଷ ସଙ୍ଗେ ମଣିଷ ସମାନ ହୋଇ ସୃଷ୍ଟ ହୋଇଛି । ସମାନ ସୁଖ ଓ ସ୍ୱାଧୀନତା ଭୋଗ କରିବାର ଅଧିକାର ତାର ରହିଛି । ଶାସିତର ବିନାନୁମତିରେ ଶାସକ ଶାସନ କରିବା ଅନ୍ୟାୟ । ଶାସିତକୁ ତାର ଜନ୍ମଗତ ଅଧିକାରରୁ ଚ୍ୟୁତ କରିବାକୁ ଚେଷ୍ଟିତ ହେଲେ ଶାସକକୁ ଦୂର କରିବାର ଅଧିକାର ତାର ଅବ୍ୟାହତ ରହିଛି ।

ତେବେ ତିନି ମାତ୍ର ରାଜ୍ୟ ସ୍ୱାଧୀନତା ସଂଗ୍ରାମରେ ଅଗ୍ରଣୀ ହେଲେ । ସେତେବେଳକୁ ସେମାନଙ୍କ ଆର୍ଥିକ ଅବସ୍ଥା ଶୋଚନୀୟ । ନିୟମିତ ଭାବେ ଟିକସ ଆଦାୟ ହୋଇ ପାରୁ ନଥିଲା । ସେମାନଙ୍କର ନିୟମିତ ସୈନ୍ୟବାହିନୀ ମଧ୍ୟ ନଥିଲା; ପ୍ରଦେଶ ପ୍ରଦେଶ ମଧ୍ୟରେ ନାନା କଳହ ବିଭେଦ ଲାଗି ରହିଥିଲା । ତଥାପି ଆମେରିକାବାସୀ ଜୟଯୁକ୍ତ ହେଲେ କିପରି ?

ଭୌଗୋଳିକ ପରିସ୍ଥିତି ସେମାନଙ୍କ ପକ୍ଷରେ ଅନୁକୂଳ ଥିଲା । ଇଂରେଜଙ୍କୁ ତିନି ହଜାର ମାଇଲ ଦୂରରୁ ସୈନ୍ୟ ବା ଗୁଳିଗୁଳା ବୋହି ଆଣିବାକୁ ପଡ଼ୁଥିଲା । ସାମ୍ରାଜ୍ୟହରା ଫରାସୀମାନେ ଇଂରେଜଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାକୁ ସୁଯୋଗ ଖୋଜି ବୁଲୁଥିଲେ, ସ୍ୱାଧୀନତା ସଂଗ୍ରାମରେ ଆମେରିକାନମାନଙ୍କୁ ପର୍ଯ୍ୟାପ୍ତ ପରିମାଣରେ ସାହାଯ୍ୟ ପ୍ରଦାନ କରିଥିଲେ । ୱାସିଂଟନଙ୍କ ସଂଗଠନ ଶକ୍ତି, ସାହସ, ଓ ରଣକୌଶଳ ଅପୂର୍ବ ଥିଲା ।

୧୭୭୭ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ବହୁ ଆମେରିକାନ୍ ନାରୀ ଓ ଶିଶୁ ହତ୍ୟା କରିଥିଲେ । ଫରାସୀମାନେ ୧୭୭୮ରେ ଆମେରିକାନ ସ୍ୱାଧୀନତାକୁ ସ୍ୱୀକାର କଲେ; ଇଂରେଜ ବାହିନୀ ସମ୍ପୂର୍ଣ୍ଣ ରୂପେ ପରାଭୂତ ହେଲା । ୧୭୮୩ ଖ୍ରୀଷ୍ଟାବ୍ଦରେ ଶାନ୍ତି ସନ୍ଧି ସ୍ୱାକ୍ଷରିତ ହେଲା, ଆମେରିକାର ସ୍ୱାଧୀନତାକୁ ଇଂଲଣ୍ଡ ସ୍ୱୀକାର କଲା ।

ଯୁଦ୍ଧ ଓ ସ୍ୱାଧୀନତା ପରେ ବିଶେଷ ଶିଥିଳତା ଆସିଲା । ଆର୍ଥିକ ଦୁର୍ଗତି ଚୂଡ଼ାନ୍ତ ସ୍ତରରେ ପହଞ୍ଚିଲା । କେନ୍ଦ୍ର ଶକ୍ତିର ଦୁର୍ବଳତାର ସୁଯୋଗ ନେଇ ରାଜ୍ୟମାନ ସୀମା ବିବାଦ ଓ ନାନା କଳହରେ ଲିପ୍ତ ରହିଲେ । ମୁଦ୍ରାସ୍ଫୀତି ବିଶେଷ ବଢ଼ି ଯାଇଥିଲା । ସରକାର ଟିକସ ଆଦାୟ କରିବାକୁ ଗଲେ ଲୋକେ ଠେଙ୍ଗା ଉଠାଉଥିଲେ । କେନ୍ଦ୍ରର ସେପରି ଶୃଙ୍ଖଳିତ ପୁଲିସ ଶକ୍ତି ନଥିଲା । ପ୍ରତି ରାଜ୍ୟ ନିଜକୁ ସର୍ବେସର୍ବା ମନେ କରୁଥିଲେ । ବୋଧ ହେଉଥିଲା—ସରକାର ଭାଙ୍ଗି ପଡ଼ିବ, ଦେଶଟା କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଯିବ । ବାହ୍ୟ ଶତ୍ରୁ ଏହି

ଐକ୍ୟର ସୁଯୋଗ ଗ୍ରହଣ କରିବେ ।

୧୭୮୧ ଖ୍ରୀଷ୍ଟାବ୍ଦରେ ଫିଲାଡେଲଫିଆର ସ୍ୱାଧୀନତା ନିକେତନରେ ଗୋଟିଏ ବିରାଟ ସମ୍ବିଧାନ ସଭା ବସିଲା । ଧନୀ, ବଣିକ, ସୈନ୍ୟ, ଅଇନଜ୍ଞ, ଅଭିଜ୍ଞ ସରକାରୀ କର୍ମଚାରୀ ନିମନ୍ତ୍ରିତ ହୋଇ ସେହି ସଭାରେ ଯୋଗଦେଲେ ।

ନିଗ୍ରୋମାନଙ୍କୁ ଭୋଟ ଦେବାର ଅଧିକାର ଦିଆ ହେଲନାହିଁ । ଦକ୍ଷିଣ କାରୋଲାଇନାର ଜଣେ ଅଧିବାସୀ କହିଲେ—ଏ ପ୍ରଶ୍ନ ସହିତ ଧର୍ମ ବା ମନୁଷ୍ୟତା ଜଡ଼ିତ ନୁହେ । ଜାତୀୟ ସ୍ୱାର୍ଥସାଧନ ଆମର ଲକ୍ଷ୍ୟ । ଉତ୍ତରାଞ୍ଚଳବାସୀ ଚାହାଁକଲେ ବୁଝି ପାରିବେ—କୃଷିଉତ୍ପାଦନ ଲାଗି ଆମେ ନିଗ୍ରୋଙ୍କୁ ଚାହୁଁ; ଏହା ଉତ୍ତରାଞ୍ଚଳର ସ୍ୱାର୍ଥବିରୋଧୀ ନୁହେ ।

ବହୁ ତର୍କବିତର୍କ ପରେ କଂଗ୍ରେସ ଏହି ମୀମାଂସାରେ ଉପନୀତ ହେଲା—କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଏହା ନିଗ୍ରୋ ଆମଦାନୀରେ ବାଧା ଦେବ ନାହିଁ ।

୧୭୮୭ ଖ୍ରୀଷ୍ଟାବ୍ଦରେ ପ୍ରଥମ ଗଣତନ୍ତ୍ର ସରକାର ଗଢ଼ା ହେଲା । ସୁଖଶାନ୍ତି ଓ ସ୍ୱାଧୀନତାରେ ବାସ କରିବାକୁ ଦେଇ ଥିବାରୁ ଲୋକ ସାଧାରଣ ପ୍ରଥମ ଗଣତନ୍ତ୍ର ଗଠନ ଦିବସକୁ ବଡ଼ ପବିତ୍ର ମନେ କରିଥାନ୍ତି ।

ଜର୍ଜ ୱାଶିଂଟନ ଯୁକ୍ତରାଷ୍ଟ୍ରର ପ୍ରଥମ ସଭାପତି ହୋଇଥିଲେ । ତାପରେ ୧୭୮୯ରୁ ୧୮୦୧ ପର୍ଯ୍ୟନ୍ତ ଫେଡେରାଲିଷ୍ଟଦଳ ଶାସନତନ୍ତ୍ର ଅଧିକାର କରିଥିଲେ । ଇଉରୋପୀୟ ରାଜନୀତିରୁ ଆମେରିକା ନିଜକୁ ଦୂରେଇ ରଖିଥିଲା । ଫରାସୀ ରାଷ୍ଟ୍ରବିପ୍ଳବରେ ଏ ଦେଶ କୌଣସି ପକ୍ଷକୁ ସମର୍ଥନ କରି ନଥିଲା । ଗୋଟିଏ ଦୁର୍ବଳ ଦେଶ ପକ୍ଷରେ ଏହା ହିଁ ସେତେବେଳେ ଶ୍ରେୟସ୍କର ଥିଲା ।

## ଥୋମାସ୍ ଜେଫରସନ୍

ସେ ରିପବ୍ଲିକାନ୍ ଦଳରୁ ଯୁକ୍ତରାଷ୍ଟ୍ରର ପ୍ରଥମ ସଭାପତି ହୋଇ-ଥିଲେ । ସେ ଫିଲାଡେଲ୍‌ଫିଆରୁ ୱାଶିଂଟନକୁ ରାଜଧାନୀ ଉଠାଇ

ଆଣିଥିଲେ । ସେତେବେଳକୁ ଓ୍ୱାସିଂଟନ ଗୋଟିଏ ଗ୍ରାମ ମାତ୍ର । ଦୀର୍ଘ କିନ୍ତୁ କ୍ଷୀଣାଙ୍ଗ, ସରଳ, ଅମାୟିକ; ଦାର୍ଶନିକ, ଲେଖକ; ସଙ୍ଗୀତଜ୍ଞ ବୈଜ୍ଞାନିକ । ଜେଫରସନ୍‌ଙ୍କ ବ୍ୟକ୍ତିତ୍ୱ ବହୁମୁଖୀ ଥିଲା । ତାଙ୍କ ଘର ଭର୍ଜିନିଆଁର ମଣ୍ଟିସେଲୋ ଗ୍ରାମ । ତାଙ୍କୁ ମଣ୍ଟିସେଲୋର ମହର୍ଷି ବୋଲି କୁହା ଯାଉଥିଲା । କାରଣ ସେ ଲୋକଜୀବନ, ସ୍ୱାଧୀନତା ଓ ସୁଖଶାନ୍ତି ଲାଗି ଜୀବନ ଉତ୍ସର୍ଗ କରିଥିଲେ । ଧନୀକଙ୍କ ଘରେ ସାଧାରଣ ଲୋକ ଯେପରି ସୁଖ ସୁବିଧା ପାଏ, ଅଳ୍ପ ବ୍ୟୟରେ ସୁବିଚାର ପାଏ, ଧର୍ମାଚରଣରେ, କଥନ ଲିଖନରେ ଯେପରି ଅଖଣ୍ଡ ସ୍ୱାଧୀନତା ଲାଭ କରେ, ସକଳ ପନ୍ଥାରେ ଯେପରି ଶାସନ ଚଳେ ତାର ବ୍ୟବସ୍ଥା ସେ କରିଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ସେ ନେପୋଲିଅନଙ୍କଠାରୁ ଲୁଇସିଆନା ରାଜ୍ୟ କ୍ରୟ କରିଥିଲେ ।

ତାପରେ ଜେମସ ମାଡ଼ିସନ୍ ନିର୍ବାଚିତ ହୋଇଥିଲେ । ତାଙ୍କ ସମୟରେ ଇଂଲଣ୍ଡ ସହିତ ଆମେରିକାର ବହୁ ସ୍ଥଳ ଓ ଜଳଯୁଦ୍ଧ ହୋଇଥିଲା ।

କେଉଁଠି ଆମେରିକା କେଉଁଠି ବା ଇଂଲଣ୍ଡ ଯୁଦ୍ଧରେ ଜୟଲାଭ କରିଥିଲା । ଶେଷରେ ବେଲ୍‌ଜିଅମ୍‌ର ଘେଣ୍ଟ ସହରରେ ଦୁଇ ଦେଶ ମଧ୍ୟରେ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା—ତଦନୁସାରେ ଇଂଲଣ୍ଡର ସାମ୍ରାଜ୍ୟ ଓ ଆମେରିକା ଦେଶର ପୂର୍ବ ସୀମା ବଜାୟ ରହିଲା । ଆମେରିକା ଇଉରୋପୀୟ ରାଜନୀତିରୁ ଦୂରେଇ ରହି ସ୍ୱଦେଶର ପଶ୍ଚିମ ସୀମା ଉପରେ ଦୃଷ୍ଟି ନିକ୍ଷେପ କଲା ।

ଇଉରୋପ ଆମେରିକାରେ ଆଉ ଉପନିବେଶ ସ୍ଥାପନ ଚେଷ୍ଟା କଲା ନାହିଁ; ଆମେରିକା ରାଜନୀତିରୁ ଦୂରେଇ ରହିଲା । ଏହି ସନ୍ଧି ସ୍ୱାକ୍ଷରିତ ହେବା ପରେ ଆମେରିକାରେ ଜାତୀୟତାର ସ୍ରୋତ ପ୍ରବାହିତ ହେବାକୁ ଲାଗିଲା, ସ୍ୱାଦେଶିକତାର ଅଭିମାନ ଜାଗ୍ରତ ହେଲା ।

ଆଣ୍ଡ୍ରୁ ଜାକ୍‌ସନ ଲୋକସାଧାରଣଙ୍କ ସମ୍ମତି ସ୍ୱଭାବରେ ପରିଚିତ; ସେ ସାର୍ବଜନିକ ଭୋଟ୍‌ରେ ନିର୍ବାଚିତ ହୋଇଥିଲେ ଓ ତାଙ୍କ କାଳର ଶାସନ ପ୍ରକୃତ ଲୋକଶାସନ ନାମରେ ପ୍ରସିଦ୍ଧି ଲାଭ କରିଥିଲା ।

**ଦାସ ବ୍ୟବସାୟ—**

ଯୁକ୍ତରାଷ୍ଟ୍ରର ଉତ୍ତରାଂଶରେ ଗୋରାଙ୍କ ଅପେକ୍ଷା ନିଗ୍ରୋ ସଂଖ୍ୟାରେ ଅଧିକ ଥିଲେ । ଉତ୍ତରାଞ୍ଚଳରେ ଗୋରାମାନେ ନିଗ୍ରୋ ଚାକର ରଖୁଥିଲେ; ମଧ୍ୟ ଆମେରିକାର ଏକ ଚତୁର୍ଥାଂଶ ଲୋକ ଥିଲେ ନିଗ୍ରୋ; ମଧ୍ୟ ଓ ଦକ୍ଷିଣାଞ୍ଚଳରେ ଧାନ, ଗହମ, ଆଖୁ ଓ ତମାଖୁ ଚାଷରେ ନିଗ୍ରୋମାନଙ୍କୁ ଲଗାଯାଉଥିଲା । ଉତ୍ତରାଂଶରେ ଦାସପ୍ରଥା ଥିଲା ବେଆଇନ୍, ୱାସିଂଟନ; ଜେଫର୍‌ସନ୍ ଦାସମାନଙ୍କୁ ମୁକ୍ତିଦେବାର ବ୍ୟବସ୍ଥା କରିଥିଲେ । କିନ୍ତୁ ଦକ୍ଷିଣାଞ୍ଚଳବାସୀ ଏହି ଆଇନ ସହିତ ନିଜକୁ ଖାପ ଖୁଆଇ ପାରିଲେ ନାହିଁ । ସେମାନେ ତୁଳାଚାଷ ଆରମ୍ଭ କଲେ; ନିଗ୍ରୋଙ୍କ ବିନାସାହାଯ୍ୟରେ ଏହା ଚଳିବା ଅସମ୍ଭବ ।

୧୮୦୦ ଖ୍ରୀଷ୍ଟାବ୍ଦ ତୁଳନାରେ ୧୮୬୦ରେ ଦକ୍ଷିଣର ତୁଳାଚାଷ ପ୍ରାୟ ତେରଗୁଣ ବଢ଼ିଥିଲା । 'ଅଧିକ ଚାଷ, ଅଧିକ ଦାସ'— ପୃଥିବୀର ଆଠଭାଗରୁ ସାତଭାଗ ତୁଳା ଏଠି ଉତ୍ପାଦିତ ହେଉଥିଲା ।

ଉତ୍ତରରେ ଥିଲେ ପୁଞ୍ଜିପତି, ଦକ୍ଷିଣରେ ଜମିଦାର; ଜଣେ ଜଣେ ଜମିଦାରଙ୍କ କର୍ତ୍ତୃତ୍ୱରେ ଶତାଧିକ ଦାସ ରହୁଥିଲେ । ଉତ୍ତର ଶିଳ୍ପ ଉତ୍ପାଦନକାରୀ, ବ୍ୟାଙ୍କ୍ ମାଲିକ୍, ବ୍ୟବସାୟୀ; ଦକ୍ଷିଣର ସମସ୍ତ ବାଣିଜ୍ୟ ବ୍ୟବସାୟ ସେମାନଙ୍କ ହାତରେ ଥିଲା । ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଦୃଷ୍ଟିରୁ ଉଭୟ ଅଞ୍ଚଳର ଚିନ୍ତା ଭିନ୍ନ ଭିନ୍ନ ମାର୍ଗରେ ଗତି କରୁଥିଲା । ଶେଷକୁ ଦାସତ୍ୱ ପକ୍ଷପାତୀ ଓ ଦାସ—ମୁକ୍ତିକାମୀମାନଙ୍କ ମଧ୍ୟରେ ମତଭେଦ ବୃଦ୍ଧିଲାଭ କରିବାକୁ ଲାଗିଲା । ମିସୌରୀରେ ମିଳାମିଶା ଲାଗି ଶେଷ ଚେଷ୍ଟା ହୋଇଥିଲା । ଜର୍ଜିଆର

ମି. କବ ସେଠି କହୁଥିଲେ—ଯେଉଁ ଅଗ୍ନି ଜାଳିଛ ତାକୁ ସାତ ସମୁଦ୍ରର ଜଳ ଲିଭାଇ ପାରିବ ନାହିଁ, କେବଳ ସମୁଦ୍ରେ ରକ୍ତ ଲିଭାଇ ପାରିବ ।

ଉତ୍ତର ଦାସବ୍ୟବସାୟୀଙ୍କୁ ଦୃଣ୍ୟ ମନେକରି ଆକ୍ରମଣ କଲାବେଳେ ଦକ୍ଷିଣ ଆତ୍ମରକ୍ଷା କରୁଥିଲା । ଦକ୍ଷିଣ ପକ୍ଷର ପ୍ରଧାନ ଯୁକ୍ତି ଥିଲା—ସମ୍ବିଧାନ ଦାସତ୍ୱକୁ ସମର୍ଥନ କରେ; ଆଫ୍ରିକାର ଲୋକେ ଜଙ୍ଗଲୀ; ସେମାନେ ସଭ୍ୟଙ୍କର ଦାସ ହେବାରେ ଦୋଷ କଣ ? ଦାସ ପ୍ରଥା ପରମ୍ପରା କ୍ରମେ ଚାଲି ଆସିଛି, ଆମେ ନୂଆ କଥା ବା କଣ କରିଛୁ ? ନିଗ୍ରୋମାନେ ବେକାର ହୋଇ ବୁଲୁଥାନ୍ତେ ; ଆମେ ସେମାନଙ୍କୁ ଗୃହକର୍ମ ଦେଉଛୁ । ରୋଗବ୍ୟାଧି ହେଲେ ଔଷଧ ଯୋଗାଉଛୁ ; ବୁଢ଼ା ହେଲେ ଅନ୍ନ ଦେଉଛୁ । ତୁମ କାରଖାନା ବସ୍ତିର ଦୁର୍ଗନ୍ଧରେ ଲୋକେ କଣ ବେଶୀ ଭଲ ଅଛନ୍ତି ? ଆମେ ଅତ୍ୟାଚାର କରୁଛୁ – ଏ ଏକ ଭୁଲ ହୁଜୁଗ । ହଜାରେ ଡଲାର୍ ଦେଇ ଯେ ଘୋଡ଼ା କିଣେ, ସେ କଣ ତାକୁ ମାରେ ? ମାରୁ ମାରୁ ମାରି ପକାଏ ?

ଶସ୍ତାରେ ଶ୍ରମ ମିଳୁଛି ବୋଲି ଆମେ ଶସ୍ତାରେ ତୂଳା ବିକି ପାରୁଛୁ; ଆଉ ତୁମେ ସେଥିରେ ବ୍ୟବସାୟ କରି ଲାଭବାନ୍ ହେଉଛ । ଦାସତ୍ୱ ପ୍ରଥା ଉଠିଗଲେ ତା ଆଉ ସମ୍ଭବ ହେବ କି ? ଆମେ ତ ତୁମ ମଜଦୁରଙ୍କୁ ମତାଉନୁ, ତୁମେ ଆମ ମୁଲିଆଙ୍କୁ ଚେତାଉଛ କାହିଁକି ?

ଉତ୍ତରରେ ଦାସତ୍ୱ ପ୍ରଥା ବିରୁଦ୍ଧରେ ଜନମତ ସୃଷ୍ଟି ହୋଇ-ଥିଲା । ଏହାର ନେତା ଉଇଲିୟମ୍ ଲଏଡ୍ ଗାରିସନ୍—ନିରନ୍ନ, ବନ୍ଧୁହୀନ, କେବଳ କଳ୍ପନା ତାଙ୍କର ସମ୍ବଳ । ତାଙ୍କ କଣ୍ଠରେ ବାଣୀ ବଜେ କରି ଥିଲେ, ତାଙ୍କ ଆବେଗପୂର୍ଣ୍ଣ ଆହ୍ୱାନରେ ସମସ୍ତ ଉତ୍ତର ଉତ୍ତପ୍ତ ହୋଇଗଲା । ଜୀବନ, ସ୍ୱାଧୀନତା, ସୁଖ ଏଇ ତାଙ୍କର ଦାବୀ ଥିଲା । ଦାସତ୍ୱ ପ୍ରଥାକୁ ସମ୍ବିଧାନ ସମର୍ଥନ କରୁଥିବାରୁ ସେ ତହିଁରେ ଅଗ୍ନିସଂଯୋଗ କରିଥିଲେ ।

ଉତ୍ତରାଞ୍ଚଳର ଲୋକେ ପଳାତକ ନିଗ୍ରୋମାନଙ୍କୁ ଭୂଇଁତଳ ରେଲ୍‌ଗାଡ଼ିରେ କାନେଡ଼ାକୁ ପଳାୟନ କରିବାରେ ସାହାଯ୍ୟ କରିଥିଲେ ।

ମୁକ୍ତ ଦାସମାନଙ୍କୁ ସ୍ଥାନ ଦେବା ଲାଗି ଆଫ୍ରିକାରେ ଗୋଟିଏ ସ୍ୱତନ୍ତ୍ର ଦେଶ ସଙ୍ଗଠିତ ହୋଇଥିଲା । ଏହାର ନାମ ଲବେରିଆ ।

୧୮୫୨ ଖ୍ରୀଷ୍ଟାବ୍ଦରେ ଷ୍ଟୋଓ୍ୱେଙ୍କ 'ଅଙ୍କଲ୍ ଟମସ୍ କାବନ୍' ପ୍ରକାଶିତ ହେଲା—ନାଟ୍ୟରୂପ ନେଇ ଏହା ଅଭିନୀତ ହେଲା ଓ ଦାସ-ମାନଙ୍କ ପ୍ରତି ସମବେଦନା ଜାଗ୍ରତ ହେଲା ।

ଦାସତ୍ୱ ପକ୍ଷପାତୀ ଓ ମୁକ୍ତିକାମୀ ରାଜ୍ୟସବୁ ପରସ୍ପରର ସୀମା ବୃଦ୍ଧି ଲାଗି ଚେଷ୍ଟା କଲେ । କଂଗ୍ରେସ ଏଥି ନେଇ ବିବାଦର ମୂଳ କାରଣ ହେଲା, ବହୁ ବାଦ ପ୍ରତିବାଦ ମଧ୍ୟରେ ଆବ୍ରାହମ୍ ଲିଙ୍କନ୍ ସଭାପତି ନିର୍ବାଚିତ ହେଲେ (୧୮୬୦) ତାଙ୍କ ନିର୍ବାଚନ ପରେ ପରେ ଦକ୍ଷିଣ କାରୋଲାଇନା, ଲୁଇସିଆନା, ମିସିସିପି, ଆଲାବାମା, ଫ୍ଲୋରିଡ଼ା, ଜର୍ଜିଆ ଯୁକ୍ତରାଷ୍ଟ୍ରରୁ ଅଲଗା ହୋଇଗଲେ । ସଭାପତି, ଉପସଭାପତି ନିର୍ବାଚିତ ହୋଇ ସେମାନଙ୍କର ଏକ ସ୍ୱତନ୍ତ୍ର ଦେଶ ଗଢ଼ିଲେ ।

ଦକ୍ଷିଣରେ ଏଗାରଟି ଓ ଉତ୍ତରରେ ତେଇଶିଟି ରାଜ୍ୟ—ଯୁଦ୍ଧ ନିଶ୍ଚିତ ଜାଣି ଦକ୍ଷିଣରେ ଏକ ଲକ୍ଷ ସୈନ୍ୟ ସଂଗ୍ରହ ଲାଗି ଆୟୋଜନ ଚାଲିଲା । ଦକ୍ଷିଣର ସୈନ୍ୟମାନେ ପ୍ରଥମେ ଉତ୍ତରର ଗୋଟିଏ ଦୁର୍ଗ ଦଖଲ କରି ନେଲେ; ଉତ୍ତରର ସୈନ୍ୟମାନେ ଦକ୍ଷିଣର ବନ୍ଦରସବୁ ବ୍ଲକେଡ୍ କଲେ । ତୁଳା ବ୍ୟବସାୟ ଅଚଳ ଅବସ୍ଥାରେ ପଡ଼ିଥିଲା । ଫଳରେ ସେମାନଙ୍କର ବହୁତ ଆର୍ଥିକ କ୍ଷତି ହେବାକୁ ଲାଗିଲା ।

ଉତ୍ତର ବଳବଶାଳୀ, ତା ପକ୍ଷରେ ଅଧିକ ପ୍ରଦେଶ, ଜନସଂଖ୍ୟା ବେଶୀ । ତାର ଜାହାଜ ଭେଳା ବି ବେଶି । ସବୁ ବାଣିଜ୍ୟ ବ୍ୟବସାୟର ମୂଳସୂତ୍ର ତା ହାତରେ । ଦକ୍ଷିଣ ପକ୍ଷର ସେନାପତିମାନେ କିନ୍ତୁ ଅଭିଜ୍ଞ, ବିଶେଷ ରଣକୌଶଳୀ । 'ଲି' ମୁଖ୍ୟ ସେନାପତି । ଉତ୍ତରର ସେନାପତିଙ୍କ ନାମ 'ଗ୍ରାଣ୍ଟ୍' । ବର୍ଷ ବର୍ଷ ଯୁଦ୍ଧରେ ବହୁ ଜନକ୍ଷୟ ପରେ ଦକ୍ଷିଣ ଅବନତ ହେଲା; ଦାସତ୍ୱ ପ୍ରଥା ଦକ୍ଷିଣରୁ ଉଠିଲା ।

ଉତ୍ତର ଓ ଦକ୍ଷିଣ ମଧ୍ୟରେ ଏହି ଗୃହ ଯୁଦ୍ଧ ୧୮୬୧ ରୁ ୧୮୬୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଲାଗି ରହିଥିଲା । ଉତ୍ତର ଦେଶକୁ ଅଖଣ୍ଡ ରଖିବା ଲାଗି, ଦକ୍ଷିଣ ଦାସତ୍ୱପ୍ରଥାରେ ତାର କୃଷିସ୍ୱାର୍ଥର ରକ୍ଷା ଲାଗି ଯୁଦ୍ଧ କରୁଥିଲେ । ନିଗ୍ରୋଙ୍କୁ ମୁକ୍ତ ଦେବାଲାଗି ଉତ୍ତରପକ୍ଷର ଏ ବିବାଦ; କିନ୍ତୁ ଆଶ୍ଚର୍ଯ୍ୟ, ନିଗ୍ରୋମାନେ ଏ ଯୁଦ୍ଧରେ ଓଲଟି ଦକ୍ଷିଣକୁ ସମର୍ଥନ କରୁଥିଲେ ।

ଗୃହିଣୀମାନେ ନିଗ୍ରୋମାନଙ୍କ ସାହାଯ୍ୟରେ ଯୁଦ୍ଧକାଳରେ ସୁରୁଖୁରୁରେ କୃଷିକାର୍ଯ୍ୟ ଚଳାଇଥିଲେ । ଫଳରେ ଦୀର୍ଘକାଳ ଯୁଦ୍ଧ ଚଳାଇବା ଦକ୍ଷିଣ ପକ୍ଷେ ସମ୍ଭବ ହୋଇଥିଲା ।

ଯୁଦ୍ଧ ଫଳରେ ଉତ୍ତର ଅଧିକ ଧନଶାଳୀ ହେଲା । ତୂଳା ଚାଷ ଉପରୁ ଦକ୍ଷିଣର ଦୃଷ୍ଟି ଅପସାରିତ ହେଲା, ବିବିଧ ଶସ୍ୟ ଉତ୍ପାଦନ ଲାଗି ମନ ବଳାଇଲା । କେନ୍ଦ୍ର ସରକାର ସୁଦୃଢ଼ ଓ ଶକ୍ତିଶାଳୀ ହେବାକୁ ଲାଗିଲା । ଉତ୍ତରରେ କୃଷି ଓ ଦକ୍ଷିଣରେ ଶିଳ୍ପ ଅଧିକ ପ୍ରସାରିତ ହେବାକୁ ଲାଗିଲା ।

ଦକ୍ଷିଣର ନଗର, ଗ୍ରାମ ବିଧ୍ୱସ୍ତ ହୋଇଗଲା; ବାଣିଜ୍ୟ ବିପର୍ଯ୍ୟସ୍ତ ଓ କୃଷି ବିପନ୍ନ ହୋଇଥିଲା । ମୁକ୍ତି ଲାଭ କଲାପରେ ନିଗ୍ରୋମାନଙ୍କ ଅବସ୍ଥା ଆହୁରି ଶୋଚନୀୟ ହୋଇ ପଡ଼ିଲା । ସେମାନେ ଦଳ ଦଳ ହୋଇ ସହର ଆଡ଼କୁ ଗ୍ଲଲିବାକୁ ଲାଗିଲେ । ଗ୍ଲକିରି ନ ପାଇ ରୋଗଗ୍ରସ୍ତ ହୋଇ ବହୁତ ନିଗ୍ରୋ ମରିବାକୁ ଲାଗିଲେ । ବୃଦ୍ଧମାନେ କୁଆଡ଼େ ଯାଇ ନପାରି ପୂର୍ବ ପ୍ରଭୁଙ୍କର ଗଳଗ୍ରହ ସ୍ୱରୂପ ହୋଇ ରହିଲେ । ଗୋରା ସାମନ୍ତମାନେ ଚାଷ କରିବାକୁ ସମର୍ଥ ନ ହୋଇ ନିଗ୍ରୋମାନଙ୍କୁ ଜମି ଭାଗ ଦେଲେ । ଦକ୍ଷିଣରେ ପୁଣି ପୂର୍ବ ପରି ତୂଳା ଚାଷ ଗ୍ଲଲିଲା କାରଣ ତୂଳା ଛଡ଼ା ଦକ୍ଷିଣବାସୀ ଅନ୍ୟ ଚାଷ ଜାଣି ନ ଥିଲେ ।

ଯୁଦ୍ଧ ପରେ ଦକ୍ଷିଣର ଯେଉଁମାନେ ଯୁକ୍ତରାଷ୍ଟ୍ରର ସମ୍ବିଧାନକୁ ସ୍ୱୀକାର କରିଥିଲେ, ଧର୍ମପ୍ରାଣ ଆବ୍ରାହମ୍ ଲିଙ୍କନ ସେମାନଙ୍କୁ କ୍ଷମା

ଦେଇଥିଲେ । ତାଙ୍କର ଉଦାର ନୀତି ଫଳରେ ଦକ୍ଷିଣ ପକ୍ଷରେ ସେନାପତି ଲିଙ୍କ ଆତ୍ମସମର୍ପଣର ମାତ୍ର ପାଞ୍ଚ ଦିନ ପରେ ଲିଙ୍କନ ନିହତ ହୋଇଥିଲେ । ସ୍ପ୍ରିଙ୍ଗ୍ ଫିଲ୍ଡ୍‌ରେ ସମାଧିବେଳେ ତାଙ୍କ ଉଦାର ଉକ୍ତି ଆବୃତ୍ତି କରାଯାଇଥିଲା—

କାହା ପ୍ରତି ଆମର ଅସୂୟା ନାହିଁ, ସମସ୍ତଙ୍କ ପ୍ରତି ସମଭାବ ରହିଛି; ନ୍ୟାୟ ଧର୍ମ ଉପରେ ଦୃଢ଼ ଆସ୍ଥା ରହିଛି; ଚାଲ, ଆମେ ଆମର ଅପୂର୍ଣ୍ଣ କାର୍ଯ୍ୟ ପୂର୍ଣ୍ଣ କରିବା— ଜାତିର କ୍ଷତସବୁ ଆରୋଗ୍ୟ କରିବା, ବିଧବାର ଅଶ୍ରୁଜଳ ପୋଛିବା, ଅନାଥ ପତିତର ସେବା କରିବା— ଏମିତି କାର୍ଯ୍ୟ କରିବା, ଯଦ୍ଵାରା ଆମେରିକାରେ ପୂର୍ଣ୍ଣ ଶାନ୍ତି ବିରାଜମାନ କରିବ—ଅନ୍ୟ ଦେଶମାନଙ୍କ ସହିତ ଆମର ବିରୋଧ ଦୂର ହୋଇ ପାରିବ ।

ପରବର୍ତ୍ତୀ ସଭାପତି ଆଣ୍ଡ୍ରୁ ଜନସନ୍ ଲିଙ୍କନଙ୍କ ନୀତି ଗ୍ରହଣ କରିଥିଲେ । ଜଣେ ଦଢ଼ିଆଳ ପୁଅ, ମାତ୍ର ତିନି ବର୍ଷ ବୟସରେ ସେ ଅନାଥ ହୋଇଥିଲେ । ବିବାହ ପର୍ଯ୍ୟନ୍ତ ତାଙ୍କର ଅକ୍ଷର ପରିଚୟ ହୋଇ ନ ଥିଲା । ତାପରେ କଠୋର ପରିଶ୍ରମ ଫଳରେ ଯୁକ୍ତରାଷ୍ଟ୍ରର ସଭାପତି ଆସନ ମଣ୍ଡନ କରିବାକୁ ସେ ସମର୍ଥ ହୋଇଥିଲେ ।

କିନ୍ତୁ କଂଗ୍ରେସ ତାଙ୍କର ନୀତି ଗ୍ରହଣ କଲା ନାହିଁ, ଓଲଟି ତାଙ୍କୁ ନାନା ଭାବେ ଦୋଷୀ ସାବ୍ୟସ୍ତ କଲା । ବାସ୍ତବରେ କୌଣସି ଅଭିଯୋଗ ପ୍ରମାଣିତ ହେଲା ନାହିଁ ।

ଉତ୍ତର ପକ୍ଷର ସୈନ୍ୟମାନେ ଏବେ ବି ଦକ୍ଷିଣାଞ୍ଚଳ ଅଧିକାର କରି ରହିଥିଲେ । କ୍ଷମତାସୀନ ଲୋକଙ୍କ ମଧ୍ୟରେ ନାନା ଦୁର୍ନୀତି ପ୍ରବେଶ କରିଥିଲା । ପ୍ରିୟାପ୍ରୀତି ତୋଷଣ ଲାଗି ରହିଥିଲା, ରାଜନୀତି ହୋଇଥିଲା ଏକ ବ୍ୟବସାୟ । ବନ୍ଦର, ରେଲପଥ, କଳ କାରଖାନା, ରାସ୍ତା ନିର୍ମାଣ, କୋର୍ଟ କଚେରି, ଶୁଳ୍କ ଆଦାୟର ସମସ୍ତ ସ୍ତରରେ ଲାଞ୍ଚ, ଜୁଆଖେଳ, ଠକାମି ଲାଗି ରହିଥିଲା । ରାଜନୀତିକ ଦଳ ସରକାରଙ୍କୁ

ଋକରଅମାନଙ୍କୁ ଯୋଗାଉଥିଲେ, ଋକରୀ ପାଇବାର ଏହି ସର୍ତ୍ତ ଥିଲ ଯେ ଋକରଅମାନେ ନିଜ ବେତନର ଏକାଂଶ ସରକାରଙ୍କୁ ଦାନ କରିବେ।

ଫସଲ ଉତ୍ପାଦନ ବଢ଼ି ଦରଦାମ୍ କମିଯିବାରୁ ଋଷୀମାନଙ୍କ ଅବସ୍ଥା ଶୋଚନୀୟ ହୋଇଥିଲ । ବେକାର ସମସ୍ୟା ଜଟିଳ ହୋଇଥିଲା । ଶିଳ୍ପପତିମାନେ ନିଜଘରେ ବସି ଗାଁ ଗଣ୍ଡା, ଜମିବାଡ଼ି ସବୁ ହସ୍ତଗତ କରିଥିଲେ । ପୁଞ୍ଜିପତିଙ୍କ ହାତରେ ଶ୍ରେଷ୍ଠ ବାଙ୍କ୍, ସମ୍ବାଦ ପତ୍ର; ସେମାନେ ଜାଣ ସରକାର ଚଳାଉ ଥିଲେ । ଏହି ଅବସ୍ଥାରେ କ୍ଳେଭଲଣ୍ଡ ସଭାପତି ହୋଇଥିଲେ; ନିଜ ଦଳରେ ଅପ୍ରିୟ ହେଲେବ ସେ ଦୁର୍ନୀତି ଦୂର କରିବାକୁ ଚେଷ୍ଟିତ ହୋଇଥିଲେ ।

୧୮୯୭ ଖ୍ରୀଷ୍ଟାବ୍ଦରେ ମାକ୍ କିନ୍‌ଲେ ସଭାପତି ହେଲେ— ସେ ସ୍ୱଭାବତଃ ଧୀର, ନମ୍ର, ସୁଚତୁର ଥିଲେ । ଶାସକ ହିସାବରେ ବିଶେଷ ଲୋକପ୍ରିୟ ହୋଇଥିଲେ । ସେ ସ୍ପେନ୍ ସହିତ ଯୁଦ୍ଧକରି ଗୁଆମ୍, କ୍ୟୁବା ପ୍ରଭୃତି ଅଧିକାର କରିଥିଲେ । ଫର୍ଦ୍ଦି ସ୍ଥିରରେ ଫିଲିପାଇନ୍ ଦ୍ୱୀପପୁଞ୍ଜ ଲାଭ କରିଥିଲେ । ୧୯୦୧ରେ ଦ୍ୱିତୀୟବାର ସଭାପତି ହେବାର ଅଠ ଦିନ ପରେ ସମ୍ବର୍ଦ୍ଧନା ସଭାରେ ସେ ନିହତ ହୋଇ ଥିଲେ ।

ତା ପରେ ସଭାପତି ହେଲେ ଥିଓଡ଼ୋର ରୁଜ୍‌ଭେଲ୍ଟ । ୧୮୮୦ ରେ ସେ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟରୁ ବି. ଏ. ପାସ୍ କରିଥିଲେ । ସେ ନିଉୟର୍କ ସହରର ପୁଲିସ କମିସନର, ନୌବାହିନୀର ଆସିଷ୍ଟାଣ୍ଟ ସେକ୍ରେଟେରୀ, ସ୍ପାନିସ୍ ଆମେରିକା ଯୁଦ୍ଧରେ ଜଣେ କର୍ଣ୍ଣେଲ ଓ ନିଉୟର୍କର ଗଭର୍ଣ୍ଣର ଭାବରେ କାର୍ଯ୍ୟ କରିଥିଲେ । ସେ ବାଧାବିଘ୍ନ ବିପଦକୁ ଭ୍ରୂକ୍ଷେପ କରୁ ନ ଥିଲେ, କଷ୍ଟ ସହିଷ୍ଣୁ ଜୀବନର ପକ୍ଷପାତୀ ଥିଲେ । ବିଦ୍ୱାନ୍ ଭାବରେ ଦେଶରେ ତାଙ୍କର ପ୍ରତିଷ୍ଠା ଥିଲା । ସେ ଇତିହାସ, ରାଜନୀତି ଓ ପ୍ରକୃତି ସମ୍ବନ୍ଧରେ ନାନା ପୁସ୍ତକ ରଚନା କରି ଥିଲେ ।

ମ୍ୟାକକାର୍ଥୀ ସରକାର ଅମଳରେ ସ୍ୱାଧୀନବାଦୀ ନାନା ସ୍ୱାଧୀ ମାନ ହେଉଥିଲେ । ସେ ତାହା ଦୃଢ଼ ହସ୍ତରେ ବନ୍ଦ କଲେ । ସରକାର ଓ ସାଧାରଣଙ୍କ ମଧ୍ୟରେ କ୍ରମବର୍ଦ୍ଧିତ ଦୂରତାକୁ ସେ ଦୂରୀଭୂତ କରିଥିଲେ । ଧର୍ମଦ୍ରୋହୀ, ଗୌରକୃଷ୍ଣ, ପ୍ରୋଟେଷ୍ଟାଣ୍ଟ, କାଥୋଲିକ୍ ବା ଜୁଇ ଯେ କେହି ଦୋଷୀ ସାବ୍ୟସ୍ତ ହେଲେ ତାଙ୍କ ସମୟରେ ଦଣ୍ଡିତ ହେଉଥିଲେ ।

ରୁଜ୍‌ଭେଲ୍‌ଟଙ୍କ ପରେ ଉଡ୍‌ରୋ ଉଇଲସନ୍ ସଭାପତି ହେଲେ, ଭର୍ଜିନିଆରେ ତାଙ୍କର ଜନ୍ମ । ମାତ୍ର ଅଣତିରିଶ ବର୍ଷ ବୟସରେ ଆମେରିକାର କଂଗ୍ରେସ୍ ସରକାର ଉପରେ ଖଣ୍ଡିଏ ବହି ଲେଖିଥିଲେ । ଏହା ବହୁ ବର୍ଷ ପର୍ଯ୍ୟନ୍ତ ରାଜନୀତି ବିଜ୍ଞାନ ଛାତ୍ରଙ୍କର ଅବଶ୍ୟ ପାଠ୍ୟ ପୁସ୍ତକ ହିସାବରେ ଗୃହୀତ ହୋଇଥିଲା, ଆଇନ ବ୍ୟବସାୟ ଭଲ ନ ଲାଗିବାରୁ ସେ ଶିକ୍ଷକ ହେଲେ; ତାପରେ ଇତିହାସ ଅଧ୍ୟାପକ ହେଲେ । ପଞ୍ଚାବନ ବର୍ଷ ବୟସରେ ସେ ନିଉ ଜେରେସିର ଗଭର୍ଣ୍ଣର ହୋଇ ଥିଲେ । ଜେଫରସନ୍, ଲିଙ୍କନ ଓ ଥିଓଡ଼ର୍ ରୁଜ୍‌ଭେଲ୍‌ଟଙ୍କ ପରି ସେ ଗଣତନ୍ତ୍ରରେ ଏକାନ୍ତ ବିଶ୍ୱାସୀ ଥିଲେ । ସଭାପତି ଯେ ଦେଶର ପ୍ରକୃତ ନେତା ଏହା ସେ ବିଶ୍ୱାସ କରୁଥିଲେ, କିନ୍ତୁ ଲୋକସାଧାରଣଙ୍କ ସଙ୍ଗେ ସମ୍ପର୍କ ରଖିପାରି ନ ଥିଲେ । ସେ ହ୍ୱାଇଟ୍ ହଲର ବିଦଗ୍ଧ ଋଷି ବୋଲି କଥିତ; ଏକଛତ୍ରବାଦୀ ବୋଲି କେବେ କେବେ ସମାଲୋଚିତ ହେଉଥିଲେ । ୧୯୧୭ ଖ୍ରୀଷ୍ଟାବ୍ଦରେ ପ୍ରଥମ ମହା ଯୁଦ୍ଧରେ ଯୋଗ ଦେବା ଦ୍ୱାରା ଆମେରିକା ଆନ୍ତର୍ଜାତିକ ରାଜନୀତିରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କଲା, ଜଗତ୍ ସହିତ ଏବେ ତାର ଅର୍ଥନୈତିକ ସ୍ୱାର୍ଥ ଏଭଳି ଭାବେ ଜଡ଼ିତ ହୋଇଛି ଯେ ବିଶ୍ୱ ରାଜନୀତିରୁ ଅଲଗା ହୋଇ ରହିବା ତା ପକ୍ଷରେ ଏକ ଅସମ୍ଭବ ବ୍ୟାପାର ହୋଇଛି । ତା ଛଡ଼ା କେତେକ ଦେଶ ସହିତ ତାର ଆଦର୍ଶଗତ ବିରୋଧ ବି ରହିଛି । ପ୍ରଧାନତଃ ଉଇଲ୍‌ସନ୍‌ଙ୍କ ପ୍ରଚେଷ୍ଟାରେ ହିଁ ଜାତିସଂଘ ଗଢ଼ା ଯାଇଥିଲା । କିନ୍ତୁ ତାଙ୍କ ଦୁର୍ଭାଗ୍ୟ ଯୋଗୁଁ ରିପବ୍ଲିକାନ୍ ସିନେଟ୍ ଦ୍ୱାରା ବିଶେଷ ନିନ୍ଦିତ ହୋଇଥିଲେ । ଅସ୍ତମିତ ହେବା ପୂର୍ବରୁ ସେ କହିଲେ—I would

rather lose a cause that would ultimately win than win a cause that will some day lose.

୧୮୨୪ ଖ୍ରୀଷ୍ଟାବ୍ଦରେ ହୁଭର୍ ସଭାପତି ହେଲେ । ସେ ଜଣେ ଇଞ୍ଜିନିଅର । ତାଙ୍କ ସମ୍ପର୍କରେ କଲୋରାଡୋ ନଦୀରେ ହୁଭର୍ ଡ୍ୟାମ୍ ନିର୍ମିତ ହୋଇଥିଲା । ମହାଯୁଦ୍ଧ ପରେ ଇଉରୋପରେ ଆର୍ତ୍ତ ପୀଡ଼ିତର ସେବା କରି ସେ ବିଶେଷ ପ୍ରତିଷ୍ଠା ଅର୍ଜନ କରିଥିଲେ । କିନ୍ତୁ ରାଜନୀତି, କୂଟନୀତି ବା ଅର୍ଥନୀତି କାର୍ଯ୍ୟରେ ସେ କୃତିତ୍ୱ ପ୍ରଦର୍ଶନ କରିପାରି ନ ଥିଲେ । ଫଳରେ ଆମେରିକା ଘୋର ଅର୍ଥନୈତିକ ସଙ୍କଟର ସମ୍ମୁଖୀନ ହୋଇଥିଲା । ବେକାର ସଂଖ୍ୟା କୋଟିକରୁ ଅଧିକ ହୋଇଥିଲା । ଦୁର୍ବଳ ନେତୃତ୍ୱ ଯୋଗୁଁ ଆମେରିକା କୃଷି ବା ଶିଳ୍ପ କାର୍ଯ୍ୟରେ ଅଗ୍ରଗତି କରିପାରି ନଥିଲା ।

ଡ଼ି ଫ୍ରାଙ୍କଲିନ୍ ରୁଜ୍‌ଭେଲ୍‌ଟ ଥିଓଡର୍ ରୁଜ୍‌ଭେଲ୍‌ଟଙ୍କର ସଂପର୍କୀୟ ଥିଲେ । ଡ଼ିମୋକ୍ରାଟିକ୍ ଦଳରୁ ନିର୍ବାଚିତ ହୋଇ ସେ ସଭାପତି ଆସନ ଅଳଙ୍କୃତ କରିଥିଲେ । ସେତେବେଳକୁ ବ୍ୟାଙ୍କ୍‌ସବୁ ବନ୍ଦ, ବ୍ୟବସାୟ ମାନ୍ଦା, ବେକାର ସମସ୍ୟା ଅତି ଜଟିଳ, କୃଷି ବିପନ୍ନ । ସଭାପତି ହେବାର ମାତ୍ର ଚାରିମାସ ମଧ୍ୟରେ ସେ ତାଙ୍କ ନିର୍ବାଚନ ଘୋଷଣାକୁ ଆଇନରେ ପରିଣତ କରିଥିଲେ । କୃଷକର କ୍ରୟଶକ୍ତି ବୃଦ୍ଧି ଲାଭ କରିଥିଲା, ବ୍ୟବସାୟ ଅଗ୍ରଗତି କରିଥିଲା, ସୁବିଧାବାଦୀର ଲାଭ ସୀମିତ ହୋଇଥିଲା । ବେକାର ସମସ୍ୟାର ସମାଧାନ ହୋଇଥିଲା । ଅଳ୍ପ ଦିନ ମଧ୍ୟରେ ଆମେରିକା ସମୃଦ୍ଧି ଓ ରାଜନୀତି କ୍ଷେତ୍ରରେ ଅଗ୍ରଗାମୀ ହୋଇ ଉଠିଥିଲା—ଏହା ହିଁ ମହାନ୍ ନେତୃତ୍ୱର ଫଳ ।

## ପଲ୍ଲୀ ଜୀବନ

ଭାରତ ପରି ଆମେରିକାରେ ଦୀର୍ଘ ଗ୍ରାମ କେବେ ନଥିଲା । ଗୃହକୁ ଗୃହ ଲଗେଇ ଘର କରି ଲୋକେ ରହୁ ନ ଥିଲେ । ଏକ ପରିବାର ଅନ୍ୟଠାରୁ ଦୂରରେ ଥିଲା । ଗୃହ ଆଡ଼େ ବିସ୍ତୃତ ଜମି, ମଝିରେ ଘର । ଜମିର ଆୟ ହିଁ ପରିବାରର ପ୍ରଧାନ ଆୟ ଥିଲା । ପୁରୁଷମାନେ କୃଷି କ୍ଷେତ୍ରରେ

କାର୍ଯ୍ୟ କରୁଥିଲେ । ସ୍ତ୍ରୀମାନେ ଲୁଗା ବୁଣୁଥିଲେ । ଘରେ ଘରେ ଅରଟ ଚାଲୁଥିଲା । ଲୋକଙ୍କ ମଧ୍ୟରେ ଜମିବାଡ଼ି ଘେନି ଖୁବ୍ ମାମଲାମକଦ୍ଦମା ହେଉଥିଲା । ଆଇନ ବ୍ୟବସାୟ ଏକ ମୁଖ୍ୟ ବ୍ୟବସାୟ ଥିଲା । ଘୋଡ଼ା ଦୌଡ଼ ପ୍ରତିଯୋଗିତା, ଦ୍ୟୁତକ୍ରୀଡ଼ା, ଶିକାର, କୁକୁଡ଼ାଲଢ଼େଇ ପ୍ରଧାନ ଚିତ୍ତବିନୋଦନ ଥିଲା । ବେଳେ ବେଳେ ନାଟକ ଅଭିନୟ ମଧ୍ୟ କରା ହେଉଥିଲା । ସ୍ତ୍ରୀ ପୁରୁଷ ଉଭୟ ପିକା ଖାଉଥିଲେ । ୧୮୦୦ ଖ୍ରୀଷ୍ଟାବ୍ଦ ପରେ ସିଗାରେଟ୍ ଉଦ୍ଭାବିତ ହେଲା । ଜନସଂଖ୍ୟା ଦ୍ରୁତଗତିରେ ବୃଦ୍ଧି-ଲାଭ କରୁଥିଲା । ମାସାଚୁସେଟ୍‌ସ୍‌ର ଜୋଟିଏ ଦମ୍ପତିର ଷୋଳ ଗୋଟି ସନ୍ତାନ ହୋଇଥିଲେ; ସେଥିମଧ୍ୟରୁ ସାତଜଣଙ୍କର ସନ୍ତାନ—ନାତି ଅଣନାତି, ପଣନାତି ହୋଇ ହୋଇଥିଲେ ୧୭୫ । ନିଉ ଇଂଲଣ୍ଡର ମିସେସ୍ ମେରିଆଙ୍କର ନାତି ଅଣନାତି ହୋଇ ମୋଟରେ ହୋଇଥିଲେ ୫୦୦ ପିଲା । ଚିକିତ୍ସା ଲାଗି ଗାଆଁରେ ପୁରୁଣା ବୈଦ୍ୟ ଥିଲେ । ହଇଜା, ବସନ୍ତ ଲାଗି ବେଳେ ବେଳେ ଗାଆଁ ପଡ଼ା ହୋଇ ଯାଉଥିଲା ।

## ଶିଳ୍ପବିପ୍ଳବ

ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡରେ ଶିଳ୍ପ ବିପ୍ଳବ ଓ ଊନବିଂଶ ଶତାବ୍ଦୀରେ ଷ୍ଟିମ୍ ଇଞ୍ଜିନ୍ ପ୍ରଚଳିତ ହୋଇଥିଲା । ୧୮୨୯ ଖ୍ରୀଷ୍ଟାବ୍ଦରେ ଜର୍ଜ ଷ୍ଟିଫେନ୍‌ସନ୍ ରକେଟ୍ ନାମକ ଇଞ୍ଜିନକୁ ତେର ଟନ୍ ଓଜନର ଗାଡ଼ିରେ ଲଗାଇ ଲିଭରପୁଲ୍ ମାଞ୍ଚେଷ୍ଟର ରେଳରାସ୍ତାରେ ଚଳାଇ ନେଇଥିଲେ । ୧୮୩୮ରେ 'ଗ୍ରେଟ୍ ୱେଷ୍ଟର୍ଣ୍ଣ' ନାମକ ପ୍ରଥମ ବାଷ୍ପୀୟ ଜାହାଜ ବ୍ରିଷ୍ଟଲ୍‌ରୁ ବାହାରି ଆଟଲାଣ୍ଟିକ୍ ସମୁଦ୍ର ପାରହୋଇ ମାତ୍ର ପନ୍ଦର ଦିନରେ ନିଉୟର୍କ ସହରରେ ପହଞ୍ଚିଥିଲା । ଇଂଲଣ୍ଡ ଲୁଗାକଳ ତିଆରି ସୂତ୍ର ଦୀର୍ଘକାଳ ଲୁକ୍‌କାୟିତ ରଖିଥିଲା, ଏସବୁ ଶିଳ୍ପ ବିପ୍ଳବର ପ୍ରଭାବ ଏକ ସୃଷ୍ଟିଶୀଳ ନୂତନ ଜାତି ଉପରେ ଅଦ୍‌ଭୁତଭାବେ କାର୍ଯ୍ୟକାରୀ ହୋଇଥିଲା, ଅଳ୍ପକାଳ ମଧ୍ୟରେ ଗ୍ରାମାଞ୍ଚଳର ଚେହେରା ବଦଳି ଯାଇଥିଲା ଓ ଆମେରିକାନ୍ ଏକ ସ୍ୱାଧୀନ ଉଦ୍‌ଭାବକ ଜାତି ରୂପେ ପୃଥିବୀରେ ପ୍ରତିଷ୍ଠା ଲାଭ କରିଥିଲା ।

ଜନ୍ ଇଭାନ୍‌ସ୍ ପ୍ରଥମ ନିଉଯୁର୍କଠାରେ ବାଷ୍ପୀୟ ଜାହାଜ ଚଳାଇଲେ ବେଳେ ଦର୍ଶକମାନେ ହସୁଥିଲେ ଯେ ତାଙ୍କ ବୋଟ୍‌ଟି ଘଣ୍ଟାକେ ମାଇଲିଏ ମଧ୍ୟ ଯାଇପାରିବ ନାହିଁ, କିନ୍ତୁ ଇଭାନ୍‌ସ୍ ପରିପୂରି ଯଶସ୍ୱୀ ହୋଇଥିଲେ । ୧୮୪୭ ଖ୍ରୀଷ୍ଟାବ୍ଦରେ ହାଓ୍ୱେ ନାମକ ଆମେରିକାନ୍ ଜାମା ଓ ଜୋତା ସିଲାଇ କଳ ଉଦ୍ଭାବନ କରିଥିଲେ । ୧୮୭୦ରେ ଆମେରିକାରେ ଭୂଗର୍ଭୋତ୍ତୋଳନ କାର୍ଯ୍ୟରେ ଯନ୍ତ୍ରର ବ୍ୟବହାର ହୋଇଥିଲା । ମଧ୍ୟ ଯୁଗରେ ୩୬୦ ଜଣ ସେନ୍ତିକ ପଥର ଉଠାଇ ପାରୁ ନ ଥାନ୍ତେ, ଯନ୍ତ୍ରରେ ୨ଜଣ ଲୋକ ସେତିକ ପଥର ଉଠାଇଦେଲେ । ମଧ୍ୟ ଯୁଗରେ ଯେତିକ ସମୟରେ ଦୁଇ ହଳ ଜୋତା ତିଆରି ହେଉଥିଲା, ଏ ଯୁଗର ସେତିକ ସମୟରେ ୫୦୦ ହଳ ଜୋତା ତିଆରି ହୋଇ ପାରିଲା ।

ବହୁ କଳକାରଖାନା ବସିଲା ଓ ବ୍ୟବସାୟ ବୃଦ୍ଧି ଲାଗି ଅତ୍ୟାଗ୍ରହ ପ୍ରୟାସ ଚାଲିଲା । ତାକୁ କେନ୍ଦ୍ର କରି ସହରସବୁ ଗଢ଼ି ଉଠିଲା । କୁଟୀରଶିଳ୍ପ ଅବଲୁପ୍ତ ହେଲା । ୧୯୨୦ରେ ରେଡ଼ିଓ ଖୋଲା ହେଲା ଓ ଚାରି ପାଞ୍ଚ ବର୍ଷ ପରେ ଘରେ ଘରେ ରେଡ଼ିଓର ବ୍ୟବହାର ହେଲା । ଗ୍ୟାସଷ୍ଟୋଭ୍, ଭେକମ୍‌କ୍ଲିନର, ରେଫ୍ରିଜରେଟର୍ ପ୍ରଭୃତିର ବ୍ୟବହାର ଫଳରେ ଗୃହର ସୁଖ ବୃଦ୍ଧି ହୋଇଥିଲା । ୧୮୨୨ରେ ସହରରେ ଗ୍ୟାସ୍‌ବତ୍ତି ଜଳୁଥିଲା । ତାପରେ ବିଜୁଳି ବତ୍ତିର ବ୍ୟବହାର ଯୋଗୁଁ ସହର ଅତି ଉଜ୍ଜ୍ୱଳ ହୋଇ ଉଠିଲା । ୧୮୪୦ ବେଳକୁ ସହରବାସୀ-ମାନେ କଳ ପାଣି ବ୍ୟବହାର କରିଥିଲେ । ୧୭୯୦ରେ ଯୁକ୍ତରାଷ୍ଟ୍ରର ଜନସଂଖ୍ୟା ଚାରିନିୟୁତ ମାତ୍ର ଥିଲା । ୧୯୩୦ ବେଳକୁ ତାହା ବଢ଼ି ହୋଇଥିଲା ବାରକୋଟି ତିନି ନିୟୁତ । ଦାରିଦ୍ର୍ୟଦୂରୀକରଣ ଓ ରୋଗ-ବ୍ୟାଧି ନିବାରଣ ଲାଗି ନାନା ଚେଷ୍ଟା ହୋଇଥିଲା । ଟାଇଫଏଡ୍, ହଇଜା ବସନ୍ତ, ମ୍ୟାଲେରିଆ ଲୋପ ପାଇଥିଲା ।

## କେତେ ଜଣ ଧନୀଲୋକ

ଆଧୁନିକର ଧନ ଉତ୍ପାଦନ କ୍ଷେତ୍ର ଅଦ୍ଭୁତ । ଆଧୁନିକ ଦେଶମାନଙ୍କ ମଧ୍ୟରେ ଆମେରିକା ସବୁଠାରୁ ଧନଶାଳୀ ହୋଇ ଉଠିଛି,

ତାର ଭୂମି ଓ ଖଣିଜସମ୍ପଦ, ଅନ୍ତର୍ବାଣିଜ୍ୟ ଓ ବହିର୍ବାଣିଜ୍ୟ ଓ ଲୋକ-ସାଧାରଣଙ୍କ ବୈଜ୍ଞାନିକ ମନୋବୃତ୍ତି ଓ କ୍ରିୟାଶୀଳ ଶକ୍ତିଯୋଗୁଁ । ଦେଶେ ଦେଶେ ଆମେରିକାର ଅର୍ଥନୈତିକ ସାମ୍ରାଜ୍ୟ ବିସ୍ତୃତ । ଆମେରିକା ଜଗତର ସବୁଠାରୁ ବଡ଼ ଜମିଦାର—ତା ଦାନା ଖାଉନାହିଁ, ଏପରି ଦେଶ ନାହିଁ କହିଲେ ଚଳେ । ସେ ବଡ଼ ମହାଜନ, ତାଠାରୁ ଦି ପଇସା ଧାରିନାହିଁ, ଏପରି ଦେଶ ଅଳ୍ପ । ବାକି ପ୍ରତିରୁ ଏଇ ଧାରିବା ଏବେ ଜାତି ପ୍ରତିକୁ ବ୍ୟାପିଛି ।

ସାଧାରଣ ଜୀବନର ମାନ ଅତି ଉଚ୍ଚ; ଶିଳ୍ପ ସମୃଦ୍ଧି ସଙ୍ଗେ ସଙ୍ଗେ ଜୀବନର ମୂଲ୍ୟବୋଧ ଓ ମାନ ବଢ଼ି ଚାଲିଛି, ଧନୀଙ୍କ ସଂଖ୍ୟା ମଧ୍ୟ ଆଶ୍ଚର୍ଯ୍ୟଭାବେ ବଢ଼ି ଯାଇଛି । ୧୮୭୦ ଖ୍ରୀଷ୍ଟାବ୍ଦ ବେଳକୁ ଆମେରିକାରେ ମୋଟେ ତିନି ଜଣ କୋଟିପତି ଥିଲେ; ୧୯୦୦ ଖ୍ରୀଷ୍ଟାବ୍ଦ ବେଳକୁ ସେମାନଙ୍କ ସଂଖ୍ୟା ବଢ଼ିହେଲା ୩୮୦୦ । ଏକ ଦଶମାଂଶ ଲୋକଙ୍କ ହାତରେ ମୋଟ ଧନର ଦଶ ଭାଗରୁ ୯ ଭାଗ ରହିଛି । ମୁକୁଟ ନ ଥିଲେ ବି ସେମାନେ ଅତୀତର ଯେ କୌଣସି ମହାରାଜାଙ୍କଠାରୁ ସମୃଦ୍ଧତର । ସମଗ୍ର ଜଗତରେ ସେମାନଙ୍କ ବ୍ୟବସାୟ ଜାଲ ମେଲା ହୋଇ ଯାଇଛି । ରେସ୍ତୋରାଁ, ସିନେମା, ଥିଏଟର୍, ଟେଲିଭିଜନ୍, ଗ୍ୟାସ, ପେଟ୍ରୋଲ, ବେସ୍‌ବଲ୍, ଫୁଟବଲ, ସନ୍ତରଣ, ମୁଷ୍ଟିଯୁଦ୍ଧର କେଉଁଠି ବା ଏ ବ୍ୟବସାୟର ଖେଳ ଲଗି ନାହିଁ ? କେଉଁ ପ୍ରଦର୍ଶନୀ, ମେଳା; ଜାତୀୟ ଉଦ୍ୟାନ ବା ଚମତ୍କାର ପ୍ରାକୃତିକ ଦୃଶ୍ୟର ଉପଯୋଗ ବ୍ୟବସାୟୀ କରୁନାହାନ୍ତି ? ଉତ୍କୃଷ୍ଟ ଜୀବନ ଏଠି ବ୍ୟବସାୟରୁ ବିଚ୍ଛିନ୍ନ ନୁହେ । କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ସଙ୍ଗୀତ, ପୁଷ୍ପୋଦ୍ୟାନ ସବୁ ବ୍ୟବସାୟର ଲୀଳା ।

ବ୍ୟକ୍ତିଗତ ଧନ ଉତ୍ପାଦନ ପ୍ରତିଭା ଏଠି ବିକାଶର ସମସ୍ତ ସୁଯୋଗ ପାଇଛି, କେତେକ ପୁଞ୍ଜିପତି ଯେପରି ଅସମସାହସୀ, ସେହିପରି ମହତ୍ । ବହୁ ସତ୍‌କାର୍ଯ୍ୟରେ ସେମାନେ ଧନ ବ୍ୟୟ କରିଛନ୍ତି ଓ କରୁଛନ୍ତି । କେତେକଙ୍କ ଅପକାର୍ଯ୍ୟ ମଧ୍ୟ ଲୁକାୟିତ ରହି ପାରେ ନାହିଁ । ଧନ ଦୁର୍ମଦ, ଦୁର୍ଦ୍ଧର୍ଷ; କୌଣସି ବାଧାବନ୍ଧନକୁ ସେ ଭ୍ରୂକ୍ଷେପ

କରନାହିଁ, ପାପକୁ କେବଳ ମାତ୍ର ଭସ୍ମ କରନାହିଁ । କୌଣସି ଜମିରେ ତୈଳକୂପ ଯଦି ଚେଲ ଉଦ୍‌ଘାଟିତ ହେଲା, ମାଲିକକୁ ଇଚ୍ଛାକୃତ ଡଲାର୍ ଦେଇ ପୁଞ୍ଜିପତି କିଣିନେବା ଲାଗି ପ୍ରସ୍ତୁତ । ଯଦି ସେଥିରେ ସେ ଅରାଜି ହୁଏ, ତାକୁ ନିପାତ କରିବା ଲାଗି ତଳାର୍ଦ୍ଧ ସଙ୍କୁଚିତ ହୁଏ ନାହିଁ ! କମ୍ପାନି କମ୍ପାନି ମଧ୍ୟରେ ଏହି ଧନ ସ୍ୱାର୍ଥରେ ବହୁ ଯୁଦ୍ଧ ହୋଇଯାଏ, ଭଡ଼ାଟିଆ ଗୁଣ୍ଡାଙ୍କ ସାହାଯ୍ୟରେ ଜମି ଦଖଲ କରି ନିଆଯାଏ । ଏଥିଲାଗି ବର୍ଷ ବର୍ଷ ମାଲି ମକଦ୍ଦମା ବି ଲାଗିଯାଏ ।

ଏ ଦେଶର ଧନର କଳନା କରିବା ବା ଧନପତିମାନଙ୍କର ଚିତ୍ର ଦେବା ମୋ ପକ୍ଷେ ସମ୍ଭବ ନୁହେଁ । ଜଣେ ଅଧେଙ୍କ ବିଷୟରେ ଯତ୍‌ସାମାନ୍ୟ ଟିପ୍‌ପଣୀ ମାତ୍ର ଦେଉଅଛି ।

## ଜେ, ପିଏରପଣ୍ଟ ମରଗାନ୍—୧୮୩୭-୧୯୧୩

କନେକ୍ଟିକଟର ହାର୍ଟ୍‌ଫୋର୍ଡ ସହରରେ ତାଙ୍କର ଜନ୍ମ, ହାର୍‌ଭାର୍ଡ଼ ବିଶ୍ୱବିଦ୍ୟାଳୟରେ ସେ ଶିକ୍ଷିତ; ପିତାଙ୍କ ବ୍ୟାଙ୍କ ବ୍ୟବସାୟରେ ସେ ଟ୍ରେନିଂ ପାଇଥିଲେ, ନିଜ ଉଦ୍ୟମରେ ଜେ, ପି, ମରଗାନ୍ କମ୍ପାନୀର ମାଲିକ ହୋଇଥିଲେ । ୧୮୮୦ରୁ ୧୮୯୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଯେଉଁ ରେଳରାସ୍ତାସବୁ ହୋଇଥିଲା, ଯେଉଁ ଲୁହା କାରଖାନାସବୁ ବସିଥିଲା, ସେଥିଲାଗି ସମସ୍ତ ପୁଞ୍ଜି ମରଗାନ୍ ଯୋଗାଉଥିଲେ । ପ୍ରଥମ ମହାଯୁଦ୍ଧ ପୂର୍ବରୁ ସେ ଇଂଲଣ୍ଡ ଫ୍ରାନ୍‌ସକୁ ବହୁ ଟଙ୍କା କରଜ ଦେଉଥିଲେ ।

## ଜନ୍ ରକ୍ ଫେଲର୍

ମର୍‌ଗାନ୍‌ଙ୍କ ପରି ସେ ବଡ଼ ପୁଞ୍ଜିପତି ନୁହନ୍ତି, କିନ୍ତୁ ପୃଥିବୀର ସବୁ ଦେଶରେ ଶିକ୍ଷିତ ମହଲରେ ସୁପରିଚିତ । ତୈଳହିଁ ତାଙ୍କର ତରଳ ସୁବର୍ଣ୍ଣ । ଏଥିରୁ ସେ ଏତେ ଲାଭ ପାଇଲେ ଯେ ସେ ବୁଝି ପାରିଲେ ନାହିଁ—କଣ କରିବେ । ସେ ସେଥିରୁ କିଛି ରେଳ ରାସ୍ତା ବସାଇବାରେ, ଖଣି ଖୋଳିବାରେ, ଇନ୍‌ସୁରେନ୍‌ସ କମ୍ପାନି ଓ

ବ୍ୟାଙ୍କ ଖୋଲିବାରେ ଲଗାଇଲେ, ବାକୀ ଟଙ୍କା ଧର୍ମାର୍ଥରେ ବ୍ୟୟ କରିବାକୁ ଲାଗିଲେ । ତାଙ୍କ ଦୟାରୁ ଅଗଣିତ ଗ୍ରନ୍ଥ ଆମେରିକା ଯାଇ ବିବିଧ ବୈଜ୍ଞାନିକ ଶିକ୍ଷା ଲାଭ କରିବାକୁ ସମର୍ଥ ହେଉଛନ୍ତି ।

ଆଣ୍ଡ୍ରୁ କାର୍ଣ୍ଣେଗିଙ୍କ ପ୍ରତିଭା ବହୁ ସାଧାରଣ ଧନୀଙ୍କୁ ପୁଞ୍ଜିପତି କରି ଦେଇଛି । ଏମାନଙ୍କ ଏଜେଣ୍ଟମାନେ ବହୁ ଦେଶରେ ବାଣିଜ୍ୟ ଚଳାଉଛନ୍ତି, ନାନା ଶିଳ୍ପକାରଖାନାରେ ପ୍ରଚୁର ସମ୍ପଦ ବିନିଯୋଗ କରିଛନ୍ତି । ହେନେରି ଫୋର୍ଡ୍ ସେହିପରି ଏକ ଯନ୍ତ୍ରବିକାଶକ ପ୍ରତିଭା । ତାଙ୍କ ପରି ଆଉ କେତେକ ପୁଞ୍ଜିପତିଙ୍କ ଅର୍ଥାନୁକୂଲ୍ୟରେ ବହୁ କ୍ଷେତ୍ରରେ ଗବେଷଣା ଚାଲିଛି । ଆମେରିକାର ସର୍ବାଙ୍ଗୀନ ବିକାଶ ମୂଳରେ ରହିଛି ପୁଞ୍ଜିପତିର ଅର୍ଥ । କେବଳ ଲାଭ ଉଠାଇବା ବ୍ୟବସାୟୀର ଲକ୍ଷ୍ୟ ନୁହେଁ; ବ୍ୟବସାୟର ଉନ୍ନତି ସଙ୍ଗେ ଜାତିର ଉନ୍ନତି ଅଙ୍ଗାଙ୍ଗୀ ଭାବେ ଜଡ଼ିତ ରହିଛି—ବ୍ୟବସାୟୀ ହୋଇଛି ସୁପ୍ତ ପ୍ରତିଭାର ବିକାଶକ, ଲୁପ୍ତ ସଂସ୍କୃତିର ଉଦ୍ଧାରକ, ନବ ନବ ଆବିଷ୍କାରକ, ଉଦ୍ଭାବକ । ସେ ନିଷ୍ଠୁର ଶୋଷକ ନୁହେଁ, କପଟ ସ୍ୱାର୍ଥପର ନୁହେଁ । ତାର ସମ୍ପଦ ଜାତୀୟ ସମ୍ପଦ ରୂପେ ପରିଗଣିତ; ତାର ଶକ୍ତିବିକାଶକ ପ୍ରତିଭା ସ୍ୱଦେଶର ଶ୍ରଦ୍ଧା ଓ ସମ୍ମାନ ଆକର୍ଷଣ କରେ ।

୧୯୦୮ ଖ୍ରୀଷ୍ଟାବ୍ଦରେ ଇନ୍‌କ୍ୱାର୍ କମିଟି ବସି ଜାଣି ପାରିଥିଲା ଯେ ନିଉୟର୍କ ସହରରେ ମୋଟରେ ଚାରିଜଣ ବଡ଼ ଧନୀ ଲୋକ ରହିଛନ୍ତି । ସେମାନେ ବ୍ୟାଙ୍କ୍ ଓ କଳକାରଖାନାରେ ମୋଟ ବାଇଶି ହଜାର ଛବିଶ କୋଟି ପାଞ୍ଚନିୟୁତ ଡଲାର୍ ଖଟାଇଛନ୍ତି । ଏମାନଙ୍କ ହାତରେ ଛୋଟ ଛୋଟ ବ୍ୟବସାୟୀ ଉଧେଇ ପାରୁ ନାହାନ୍ତି । ସେମାନେ ସ୍ୱବ୍ୟବସାୟକୁ ବୃହତ୍ ବ୍ୟବସାୟ ପ୍ରତିଷ୍ଠାନ ସହିତ ସାମିଲ କରି ଦେଇଛନ୍ତି ।

## ଶ୍ରମିକ

ମୂଳଆର ମଜୁରି ଅଳ୍ପ, ଜୀବନ ନିତାନ୍ତ ଗତାନୁଗତିକ; ମଜୁରିଆର ଜୀବନରେ ବୈଚିତ୍ର୍ୟ ଅଛି, ମଜୁରି ବେଶୀ । ଶିଳ୍ପବିପ୍ଳବ

ପରେ ମଫସଲ ଛାଡ଼ି ବହୁ ଶ୍ରମିକ ସହରକୁ ଚାଲି ଆସିଲେ—ଜମିହୀନ, ନିର୍ଧନ । ଶ୍ରମ ଛଡ଼ା ବିକ୍ରୀ କରିବାକୁ ସେମାନଙ୍କର ଆଉ କିଛି ନ ଥିଲା ।

କିନ୍ତୁ ମହାନଗରୀରେ ଆସି କାନ୍ତାରରେ ପଡ଼ିବାକୁ ହେଲା ! ଅପରିଚ୍ଛନ୍ନ, ଦୁର୍ଗନ୍ଧ ବସ୍ତି, ଖଟଣି ହାଡ଼ଭଙ୍ଗା, ମଜୁରି ସ୍ୱଳ୍ପ । ଆଠ ଦଶ ବର୍ଷର ବାଳକ ବାଳିକାମାନେ ବଡ଼ ଭୋରରୁ ମଧ୍ୟରାତ୍ରି ପର୍ଯ୍ୟନ୍ତ ଖଟୁଥିଲେ—ସପ୍ତାହକୁ ମଜୁରି ମାତ୍ର ଏକ ଡଲାର୍ । ସ୍ତ୍ରୀ ଲୋକଙ୍କୁ କୌଣସି ସ୍ୱତନ୍ତ୍ର ସୁବିଧା ମିଳୁ ନଥିଲା । ଦୈନିକ ଖଟଣିର କିଛି ଗୋଟାଏ ସୀମା ମଧ୍ୟ ନ ଥିଲା ।

ସାଧାରଣ ଶିକ୍ଷା ଫଳରେ ଶ୍ରମିକମାନେ ଆତ୍ମସ୍ୱାର୍ଥ ପ୍ରତି ସଚେତନ ହେବାକୁ ଲାଗିଲେ; ଅବବୋଧଶକ୍ତି ବୃଦ୍ଧିଲାଭ କଲା । ଏକତାବନ୍ଧାନ ଯୋଗୁଁ କୌଣସି ଶ୍ରମିକ ସଂସ୍ଥା ଗଠନ କରିବା ସେମାନଙ୍କ ପକ୍ଷେ ସମ୍ଭବ ହେଲା । ନାନା ବିପ୍ଳବ, ଧର୍ମଘଟ ଫଳରେ ସେମାନଙ୍କ ସ୍ୱାର୍ଥ ଅନୁକୂଳ କେତେକ ଆଇନ ପାସ୍ ହେଲା । ଫିଲାଡେଲ୍‌ଫିଆର ଗୁପ୍ତ ଶ୍ରମିକ ଅନୁଷ୍ଠାନ (୧୮୬୯; ଏହାର ସଭ୍ୟ ସଂଖ୍ୟା ଏକ ଲକ୍ଷ) ର ଆନ୍ଦୋଳନ ଫଳରେ ଦୈନିକ ଶ୍ରମ ଆଠ ଘଣ୍ଟା ମଧ୍ୟରେ ସୀମିତ ହୋଇଥିଲା, ସେଭିଂସ୍ ବ୍ୟାଙ୍କ୍ ଉନ୍ମୋଚିତ ହୋଇଥିଲା ।

ତାପରେ ଆମେରିକା ଫେଡ଼ରେସନ୍ ଲେବର୍ ସଙ୍ଗଠିତ ହେଲା । ଏହାର ସଭ୍ୟ ସଂଖ୍ୟା ଚାରି ଲକ୍ଷ; କିନ୍ତୁ ଅଧିକାଂଶ ମିସ୍ତ୍ରୀ, ମହାଜଣା, ଯନ୍ତ୍ରବିତ୍ ବା ସେହି ଧରଣର ଅଭିଜାତ ଶ୍ରମିକ । ପ୍ରକୃତ ମଜୁରିଆ ଏହି ଅନୁଷ୍ଠାନରେ ପଶି ପାରିଲେ ନାହିଁ । ଏହି ଅନୁଷ୍ଠାନ କାରଖାନାର ଲାଭାଂଶ ଦାବୀ କରୁଥିଲେ—ତାହା ଏବେ ବି ପୂରଣ ହୋଇନାହିଁ ।

କାର୍ଯ୍ୟବେଳେ ଶ୍ରମିକର ଅଙ୍ଗହାନି ବା ମୃତ୍ୟୁ ହେଲେ ମାଲିକ କ୍ଷତିପୂରଣ ଦେଉଛି । କିଶୋର ଶ୍ରମିକମାନଙ୍କୁ କାରଖାନାରେ ଭର୍ତ୍ତି କରା ହେଉନାହିଁ । ସ୍ତ୍ରୀମାନଙ୍କ ଲାଗି ସ୍ୱତନ୍ତ୍ର ସୁବିଧା ହାସଲ କରା ଯାଇଛି । ନ୍ୟାୟୁକ୍ତିବାଦୀ ଓ ଶ୍ରମିକଙ୍କ ସହଯୋଗ ଦଲିଲ୍‌ରେ ଶ୍ରମିକଙ୍କ ସ୍ୱାର୍ଥାନୁକୂଳ

ବହୁ ସର୍ତ୍ତ ଖଞ୍ଜା ଯାଇଛି । ଜୀବନର ମାନ ବୃଦ୍ଧି ଏବେ ଟ୍ରେଡ୍ ଇଉନିଅନ ଆନ୍ଦୋଳନର ମୁଖ୍ୟ ଲକ୍ଷ୍ୟ ହୋଇଅଛି ।

ଏହା ବ୍ୟତୀତ କେତେକ କମ୍ୟୁନିଷ୍ଟ ମତବାଦୀ ଶ୍ରମିକ ଅନୁଷ୍ଠାନ ଆମେରିକାରେ ରହିଅଛି । ସେମାନେ ପୁଞ୍ଜିପତିଙ୍କ ଧ୍ୱଂସ ଚାହାନ୍ତି, କାରଖାନାରୁ ଅଧାଂଶ ଦାବୀ କରନ୍ତି; ଜଗତର ସମସ୍ତ ଶ୍ରମିକଙ୍କୁ ଶ୍ରେଣୀଭୁକ୍ତ କରି ଦାବୀ ହାସଲ କରିବାକୁ ଚେଷ୍ଟା କରୁଛନ୍ତି ।

ପୁଞ୍ଜିପତି ଓ ଶ୍ରମିକ ଅନୁଷ୍ଠାନ ଏବେ ଛକା ପଞ୍ଝା ମାଟରେ ଖେଳୁଛନ୍ତି, ଶ୍ରମିକଙ୍କ ହାତରେ ପାଶୁ ନାହିଁ । ଦୀର୍ଘ ଧର୍ମଘଟ ହେଲେ ପେଟରେ ଓଦା କନା ପକାଇ ଶୋଇବାକୁ ହୁଏ । କିନ୍ତୁ ପୁଞ୍ଜିପତି ହାତରେ ଅକଳନ୍ତ ପାଶୁ—ଧର୍ମଘଟ ଫଳରେ ବହୁ କ୍ଷତିଗ୍ରସ୍ତ ହେଲେ ବି ତାହା ସରିଯିବାର ଶଙ୍କା ନାହିଁ । ତେଣୁ ଶ୍ରମିକ ମନଇଚ୍ଛା ଦାବୀ ହାସଲ କରିପାରୁ ନାହିଁ । ଧର୍ମଘଟ ଫଳରେ ଦ୍ରବ୍ୟ ଦୁଷ୍ପ୍ରାପ୍ୟ ଓ ଶ୍ରମିକର ଦାବୀ ହାସଲ ପରେ ଦରବୃଦ୍ଧି ଏକ ନିଶ୍ଚିତ କଥା ହୋଇଅଛି ।

ଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଆମେରିକାରେ ପ୍ରାୟ ପଚିଶ ହଜାର ଧର୍ମଘଟ ହୋଇଅଛି । ୧୮୭୭ର ରେଲବାଇ ଧର୍ମଘଟ ସବୁଠାରୁ ବୃହତ୍ । ଏହା ଫଳରେ କୋଟି କୋଟି ଡଲାର୍ ସମ୍ପତ୍ତି ନଷ୍ଟ ହୋଇଥିଲା ଓ ବହୁ ବ୍ୟକ୍ତିଙ୍କୁ ମୃତ୍ୟୁ ବରଣ କରିବାକୁ ପଡ଼ିଥିଲା । ସଭାପତି କ୍ଲେଭ-ଲ୍ୟାଣ୍ଡ କେନ୍ଦ୍ର ସୈନ୍ୟ ପଠାଇ ଧର୍ମଘଟକାରୀମାନଙ୍କୁ ଦମନ କରିଥିଲେ । ସେତେବେଳେ ଗୋଟିଏ କଠୋର ଆଇନ ପାସ କରାଗଲା—ରେଲବାଇ ପ୍ରଭୃତି ଅତି ଆବଶ୍ୟକ ବିଭାଗରେ ଧର୍ମଘଟ ହୋଇ ପାରିବ ନାହିଁ । ଯେ ଏ ଢଗରେ ପ୍ରବର୍ତ୍ତାଇବ ତା ପ୍ରତି କଠୋର ଶାସ୍ତି ବିଧାନ କରାଯିବ । ସେ କାଳରୁ ଆଉ ରେଲବାଇ ଧର୍ମଘଟ ହୋଇନାହିଁ ।

୧୯୦୨ର କୋଇଲା ଖଣି ଧର୍ମଘଟ ମଧ୍ୟ ବିରାଟ । ସେତେବେଳେ ଆଠୋଟି ରେଲକମ୍ପାନୀ ଆମେରିକାର ସମସ୍ତ କୋଇଲା ଯୋଗାଣକୁ ନିଜ ଅକ୍ତିଆରରେ ରଖିଥିଲେ । ଦୀର୍ଘ ଧର୍ମଘଟ ପରେ ସଭାପତି

ଥିଓଡର୍ ରୁଜଭେଲ୍ଟ ସୈନ୍ୟ ପଠାଇ କର୍ମ ଫୁଲ୍ଲ ରଖିବେ ବୋଲି ଧମକ ଦେଲେ । ତାପରେ ଧର୍ମଘଟ ଭାଙ୍ଗିଲା, କମିସନ୍ ବସିଲା । ଟ୍ରେଡ ୟୁନିଅନ୍ ଆଂଶିକ ସ୍ୱୀକୃତ ଲାଭକଲା । ଶ୍ରମିକର ଦୈନିକ କାର୍ଯ୍ୟକାଳ କମାଇ ଦିଆ ହେଲା ।

ସ୍ୱାଧୀନତା ପରଠାରୁ ଆଜ ପର୍ଯ୍ୟନ୍ତ ଯୁଦ୍ଧରେ ଯେତେ ନ ମରିଛନ୍ତି, ତାଠାରୁ ଗତ ବାର ବର୍ଷରେ କାରଖାନାରେ ମରିଛନ୍ତି ବେଶୀ, ଝଣ୍ଡିଆ ଖାକସ୍ତ ହୋଇଛନ୍ତି ଆହୁରି ବେଶୀ । ପୁଞ୍ଜିପତିର ସମ୍ପଦ ରକ୍ଷା ଓ ଶ୍ରମିକଙ୍କ ସ୍ୱାର୍ଥ ସଂଘର୍ଷରେ କେତେ ଯେ ମରିଛନ୍ତି ତାର କଳନା କରି ହେବନାହିଁ । ଶେଷକୁ ଶ୍ରମିକର ମାନବିକ ଅଧିକାର ଉପଯୁକ୍ତ ହୋଇଅଛି—ନାନା ଶ୍ରମିକମଙ୍ଗଳ ଆଇନ ପାସ୍ ହେବା ଫଳରେ ।

## ଆମେରିକାର ନାରୀ

ଗୃହିଣୀ ଗୃହମୁଚ୍ୟତେ—ଘରଣୀକ କେନ୍ଦ୍ର କରି ଘର । କିନ୍ତୁ ଘରଣୀ ଆଜ କେନ୍ଦ୍ରଚ୍ୟୁତ ହୋଇଛି, ଗାର୍ହସ୍ଥ୍ୟ ଜୀବନରେ ଆସିଛି ବିପର୍ଯ୍ୟୟ । ଗୃହର ସେଇ ସାମାଜିକ ମୂଲ୍ୟ ଆଜ ନାହିଁ । ଘରଣୀ ହାଣ୍ଡିଶାଳରୁ ବାହାରି ଆସିଛି । 'ଭୋଜନଂ ଯତ୍ର କୁତ୍ରାପି'; ଗୃହ କେବଳ ଶୟନ ମନ୍ଦିର । ଗୃହିଣୀ ଉପରେ ରନ୍ଧାବଢ଼ାର ଦାୟିତ୍ୱ ଆଜ ନାହିଁ । ସେ ଘର ସ୍ତ୍ରୀ ଓ ପୁରୁଷ ଉଭୟେ ବହନ କରିଛନ୍ତି । ବେବିସିଟର୍ ବା ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପାଖେ ପିଲାଙ୍କୁ ଛାଡିଦେଇ ଉଭୟେ ଯାଉଛନ୍ତି ଅଫିସ୍, ଭିନ୍ନ ଭିନ୍ନ ଗାଡ଼ିରେ ।

ଗୃହକର୍ମ ଆଜ ଗୋଟାଏ ଜଞ୍ଜାଳ ହୋଇ ନାହିଁ । ଗୃହେ ଗୃହେ ବୈଜ୍ଞାନିକ ଉପକରଣର ଉପଯୋଗ ଫଳରେ ରନ୍ଧନ ସହଜ ହୋଇଅଛି; ପ୍ରଚୁର ଅବସର ମିଳୁଛି; ସ୍ୱାମୀ ସ୍ତ୍ରୀ ଯାଉଛନ୍ତି କ୍ଲବ୍ ବା ସିନେମା; ନଇଲେ ଘରେ ବସି ଦେଖୁଛନ୍ତି ଟେଲିଭିଜନ୍ ।

, ଅଳ୍ପ ଅବକାଶର ସମସ୍ତ ସୁଯୋଗ ମିଳୁଛି । ଆଜିର ନାରୀ ଅର୍ଥନୈତିକ ଦିଗରୁ ସ୍ୱାଧୀନା । କିଏ ନର୍ସ, କିଏ ଲାଇବ୍ରେରିଆନ୍, କିଏ ଷ୍ଟେନୋଗ୍ରାଫର୍, କିଏ ଏୟାର ହୋଷ୍ଟେସ୍, କିଏ ଦୋକାନରେ ବିକ୍ରୟକାରିଣୀ । ଅଫିସରେ ସେଇମାନେ, ହୋଟେଲରେ ରେଷ୍ଟୁରାଣ୍ଟରେ ସେଇମାନେ ; କେବଳ ସୈନ୍ୟବିଭାଗକୁ ଛାଡ଼ି ସବୁଠି ସେମାନେ ଆସନ ଜମେଇ ବସିଛନ୍ତି ।

ନାନା ଶିଳ୍ପସମ୍ଭାର, ଯନ୍ତ୍ରର ଇନ୍ଦ୍ରଜାଲ ଯେଉଁ ଆଧୁନିକ ଯୁଗ ଆଣିଲା—ପ୍ରକୃତି ଖୋଲ ଓ ମୁଖା ଫିଙ୍ଗି ଦେଇ ବାହାରି ଆସିବା ଲାଗି ଡାକ ଦେଲେ ନେତ୍ରୀସବୁ—ଏଲିଜାବେଥ କାଡି ଷ୍ଟାନ୍‌ଟନ୍, ସୁଜାନ୍ ବି, ଆନ୍ତୋନି, ଲୁକ୍ରେସିଆ ମୋଟ୍, ଲୁସିଷ୍ଟୋନ୍ । ୧୯୨୦ ବେଳକୁ ଆମେରିକାର ନାରୀମାନେ ଭୋଟ୍ ଦେବା ଆଇନରେ ମଞ୍ଜୁରିତ ହୋଇଗଲା । ବର୍ତ୍ତମାନ ନାରୀ ପ୍ରାୟ ପୁରୁଷ ସହିତ ସମାନ ଅଧିକାର ଲାଭ କରିଛନ୍ତି ।

ବର୍ତ୍ତମାନ ସ୍ତ୍ରୀଙ୍କ ତୁଳନାରେ ପୁରୁଷ ସଂଖ୍ୟା ଅଳ୍ପ । ତେଣୁ ବିବାହ ଲାଗି ନାରୀଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଲାଗି ଯାଇଛି । ଫେସନ୍ ଦିଗରୁ ସେତିକେ ଦୌଡ଼ା ଛୁଟୁଛି । ଅଧିକାଂଶ ପ୍ରବୀଣା ନାଇଲନ ଷ୍ଟାକିଂସ ଓ ହୋଜ୍ ପିନ୍ଧୁଛନ୍ତି । ଗୋଟିଏ ହାତରେ କେହି କେହି କଙ୍କଣ ଆଙ୍ଗୁଠିରେ ହୀରା ବା ଝଟ୍ ମୀନାକରା ମୁଦି ପିନ୍ଧୁଛନ୍ତି । କଠିନ ପରିଶ୍ରମବେଳେ ସ୍ତ୍ରୀମାନେ ରବରର ଗ୍ଲୋଭ ବ୍ୟବହାର କରୁଛନ୍ତି; ପାପୁଲିକୁ ନରମ ରଖିବା ଲାଗି କ୍ରିମ ଲଗାଉଛନ୍ତି । ନଖ ବଢ଼େଇବା, ସେଥିରେ ରଙ୍ଗ ଲଗେଇବା ଗୋଟିଏ ଫେସନ । ନଖ ବଢ଼େଇବା ଲାଗି ସେମାନେ ଗୁଣ୍ଡ ବା ଜେଲି ଜାତୀୟ ଖାଆନ୍ତି ।

ଡାକ୍ତରଖାନାରେ କୃତ୍ରିମ ଷ୍ଟେରିଲାଇଜ କରି କାନ ଫୋଡ଼ାଯାଏ । କୃତ୍ରିମ ଚୋଙ୍ଗ ଆଲ୍‌କୋହଲ ଲଗାଇ କେହି କେହି ଘରେ କାନ ଫୋଡ଼ନ୍ତି । ବନ୍ଧାକେଶର ସୂତା ଗଳାଇ ରଖିଲାପରେ ଦୁଲ ବା ମେକ୍ସିକୋ କାଟୁ ପିନ୍ଧନ୍ତି । ଆଖିପତାକୁ ସିଧା ରଖିବା ଲାଗି ଅଭ୍ୟାସ ଉଠିଥିବା

ବାଳକୁ ଉଖାଡ଼ି ଦଅନ୍ତି । ଓ୍ୱୋଲାକୁ ବୃହତ୍ ଓ ଚିତ୍ତାକର୍ଷକ କରିବା ଲାଗି ମାସ୍କରା ବ୍ୟବହାର କରନ୍ତି । ବ୍ଲଣ୍ଡ (ଉଜ୍ଜ୍ୱଳକେଶୀ), ବ୍ରୁନେଟ୍ (କୃଷ୍ଣକେଶୀ) ଅଧିକ । କେହି କେହି ଯୁବତୀ କେଶକୁ ରଜତାଭ କରି ବୁଲିବା ପରି ଦିଶନ୍ତି । ଶରୀରକୁ କୋମଳ ରଖିବା ଲାଗି ଗାଧୋଇବା ବେଳେ ଅଙ୍ଗୁର ପରି ପ୍ଲାଷ୍ଟିକ୍ କୋଳ ଦେହରେ ଘଷନ୍ତି । ଏକଠାରୁ ଅନ୍ୟର ଫେସନର ତାରତମ୍ୟ; ସେସବୁ ବର୍ଣ୍ଣିବା ଅସମ୍ଭବ ।

ଜଣେ କଲେଜ ଛାତ୍ରୀ ପ୍ରଶ୍ନ କରିଛି—କୁମାରୀ କାହିଁକି ଦୈହିକ ସୁଖ ଭୋଗ ନ କରିବ ? ଅବଶ୍ୟ ସେ ସନ୍ତାନ ଜନ୍ମ କରିବା ଅନ୍ୟାୟ । କିନ୍ତୁ ସନ୍ତାନନିରୋଧକ ଔଷଧ ବ୍ୟବହାର କରି ପୁରୁଷ ସଙ୍ଗସୁଖ ଭୋଗ ନ କରିବ କାହିଁକି ? ତାକୁ ସେହି ସୁଖରୁ ବଞ୍ଚିତ କରିବାର ଅଧିକାର ସମାଜର ଅଛି କି ?

ସମ୍ବାଦପତ୍ରରେ ଏହାର ଉତ୍ତର ମିଳିଛି—କୁମାରୀ ସାମୟିକ ସଙ୍ଗ ସୁଖ ଭୋଗ କରିପାରେ; କିନ୍ତୁ ତାହା ନିରର୍ଥକ । ନିଜେ ହିଁ ସେ ଶୋଷିତ ହୁଏ, ଅନ୍ୟର ଉଚ୍ଛିଷ୍ଟ ହୁଏ, ଏହା ଜାଣି ରଖିବା ଉଚିତ । ଏହି ସୁଖ ଭବିଷ୍ୟତ ଦାମ୍ପତ୍ୟ ଜୀବନରେ କଣ୍ଟକ ହୁଏ । ସଂସାର ପ୍ରତି ତାର ବିତୃଷ୍ଣା ଓ ସମାଜ ପ୍ରତି ଘୃଣା ଜନ୍ମେ । ଫଳତଃ କୁମାରୀ ଜୀବନ ହିଁ ଭବିଷ୍ୟତ ଦୁଃଖମୟ ଜୀବନର ଉତ୍ସ ।

ଭୌତିକ ସଭ୍ୟତାର କବଳରେ ପଡ଼ି ଜୀବନ କ୍ରମେ ଭୋଗସର୍ବସ୍ୱ ହୋଇ ଉଠୁଛି । ନିର୍ବାଧ ସ୍ୱାତନ୍ତ୍ର୍ୟ ଓ ନିରର୍ଗଳ ନିଃସଙ୍କୋଚ ଉପଭୋଗ ମଣିଷକୁ କେଉଁ ଦିଗକୁ ଟାଣି ନେଉଛି କିଏ ଜାଣେ ?